# ନଗର କଟକ

# ଓ

# ପଥଁ କଟକ





ଉତ୍କଳ ପାଠକ ସଂସଦ

# ନଗର କଟକ ଓ ପଞ୍ଚ କଟକ

( ଦ୍ୱିତୀୟ ସ୍ତବକ )

ସଂକଳକ : ଡଃ ବ୍ରଜମୋହନ ମହାନ୍ତି
ସହ ସଂକଳକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତ

ଉତ୍କଳ ପାଠକ ସଂସଦ ଆନୁକୂଲ୍ୟରେ

# ନଗର କଟକ ଓ ପଞ୍ଚ କଟକ

( ଦ୍ୱିତୀୟ ସ୍ତବକ )

ସଂକଳକ : ଡଃ ବ୍ରଜମୋହନ ମହାନ୍ତି

ସହ ସଂକଳକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

ପ୍ରକାଶକ :

**ଉତ୍କଳ ପାଠକ ସଂସଦ ଆନୁକୂଲ୍ୟରେ**

ଶ୍ରୀ ବିଜୟ ଶଙ୍କର ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩ ୦୦୨

ପ୍ରକାଶକାଳ : ୧୯୯୨

ପ୍ରଚ୍ଛଦ :

ଅସିତ୍ ମୁଖାର୍ଜୀ

ମୁଦ୍ରଣ :

**ରେଖା ପ୍ରେସ**

ବାଙ୍କି ସାହି, କଟକ-୭୫୩ ୦୦୯

REVISED PRICE : Rs. 350/-
ORISSA BOOK STORE

**NAGARA CUTTACK O PANCHA CUTTACK**

Part-II

Compiled by

**Dr. Braja Mohan Mohanty**

Assisted by : Subhas Ch. Mohanty

Published on behalf of

**UTKAL PATHAK SAMSAD**

by :

**Sri Bijoy Shankar Patra**

**ORISSA BOOK STORE**

Cuttack-753 002

Ist· Published : 1992

Printed at :

**REKHA PRESS**

Cuttack-753 009

## ସମ୍ପାଦନା :

ଶ୍ରୀ ପଠାଣି ପଟ୍ଟନାୟକ

ଶ୍ରୀ ପ୍ରସନ୍ନକୁମାର ଦାଶ

ଡକ୍ଟର ବୈଷ୍ଣବଚରଣ ସାମଲ

ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି

ଶ୍ରୀ ରମେଶ୍ୱର ତ୍ରିପାଠୀ

ଶ୍ରୀ ଅର୍ଜ୍ଜୁନ ଦାଶ

ଶ୍ରୀ ମହେଶ୍ୱର ମୂଳିଆ

## ସହ-ସମ୍ପାଦନା :

ଶ୍ରୀ ରାମଦାସ ରାୟ

ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ

ଶ୍ରୀ ଗୋବିନ୍ଦଚରଣ ପାଣି

ଶ୍ରୀ ବରଦାପ୍ରସନ୍ନ ପଟ୍ଟନାୟକ

ଡାକ୍ତର ଶୈଳେଶ୍ୱର ନନ୍ଦ

ଶ୍ରୀ ସୁବ୍ରତପ୍ରିୟବ୍ରତ ମହାନ୍ତି

ଶ୍ରୀ ଶୁଭନାରାୟଣ ସ୍ୱାଇଁ

ଶ୍ରୀ ଧାରକିଶୋର ସାହୁ

ଶ୍ରୀ ବସନ୍ତକୁମାର ମହାନ୍ତି

ଶ୍ରୀ ଅମ୍ବରୀଶ ଦାସ

# ଆମ ଘର କଥା

ନଗର କଣ୍ଟକ ସଙ୍କଳନର ୨ୟ ସ୍ତବକ "ନଗର କଣ୍ଟକ ଓ ପଞ୍ଚ କଣ୍ଟକ" । ଏହି ୨ଟି ସଙ୍କଳନରେ ପଞ୍ଚକଣ୍ଟକ ଓ ନଗର କଣ୍ଟକର ସମ୍ପୂର୍ଣ୍ଣ ବିବରଣୀ ସ୍ଥାନିତ ହୋଇ ପାରିଲା ନାହିଁ । ଅନେକ ଅତ୍ୟାବଶ୍ୟକ ବିଷୟ ବାକି ରହିଗଲା । ତେଣୁ ଏ ସଙ୍କଳନର ୩ୟ ସ୍ତବକ ପ୍ରକାଶ କରିବାର ଆବଶ୍ୟକତା ରହିଛି । ସମୟକ୍ରମେ ଏପରି ଏକ ସଙ୍କଳନ ପ୍ରକାଶ ପାଇଁ ଆମେ ସର୍ବାନ୍ତଃକରଣରେ ଉଦ୍ୟମ କରିବୁ ।

ନଗର କଣ୍ଟକ ଓ ପଞ୍ଚକଣ୍ଟକ ସଙ୍କଳନ ପାଇଁ ଉଦ୍ୟମ ଆରମ୍ଭ କରିବା ପୂର୍ବରୁ ଆମେ "ଓଡ଼ିଶାର ଲୋକବାଦ୍ୟ" ଉପରେ ଏକ ସଙ୍କଳନ ପ୍ରକାଶ କରିବାପାଇଁ ଉଦ୍ୟମ କରିଥିଲୁ । କିନ୍ତୁ ସେ ସମ୍ପର୍କୀୟ ଯଥେଷ୍ଟ ନିବନ୍ଧ ଆମର ହସ୍ତଗତ ହୋଇ-ପାରିଲା ନାହିଁ । ତଥାପି ଏପରି ଉଦ୍ୟମରୁ ଆମେ କ୍ଷାନ୍ତ ହୋଇ ନାହୁଁ । ଓଡ଼ିଶାର ଲୋକବାଦ୍ୟ ସମ୍ପର୍କୀୟ ଏକ ସଙ୍କଳନ ଏଥିମଧ୍ୟରେ ନିଶ୍ଚୟ ପ୍ରକାଶ କରିବୁ । ଏ ଦିଗରେ ସଂସ୍କୃତି ଓ ସଙ୍ଗୀତପ୍ରେମୀ ଲେଖକ ଲେଖିକାଙ୍କର ସହଯୋଗ ଆମେ କାମନା କରୁଛୁ ।

କେତେକ ଆଲୋଚକ ବନ୍ଧୁ ଚିଠି ଲେଖି ଜଣାଇଛନ୍ତି ଯେ—ଏଭଳି ସଙ୍କଳନ ପ୍ରକାଶ କରିବାରୁ କ୍ଷାନ୍ତ ହୁଅନ୍ତୁ ନାହିଁ । କାରଣ ଅନେକ ଲୋକବାଦ୍ୟ ନିଶ୍ଚିହ୍ନ ହୋଇଯାଉଛି । ଏ ସଂସ୍କୃତିକୁ ଚିହ୍ନିବା ପାଇଁ ଆଉ ଯତ୍ନ କରିବ କିଏ ? ସତ କଥା, ଅନେକ ଲୋକବାଦ୍ୟ ନିଶ୍ଚିହ୍ନ ପ୍ରାୟ । ଘଣ୍ଟି ଘାଗୁଡ଼ି ଆଉ ବଳଦ ବାପୁଡ଼ାଙ୍କ ବେକରେ ଝୁଲୁନାହିଁ କିମ୍ବା ମହୁରିକୁ ହାତରେ ଧରି ପାଲାଗାୟକ ସେହି ହାତକୁ ହଲେଇ ହଲେଇ ଆରହାତକୁ ଗାଲରେ ଦେଇ ସ୍ୱର ଲମ୍ବାଉ ନାହାନ୍ତି । ଅବଶ୍ୟ ଏହା ହେଉଛି ଯୁଗର ଗତି । ନିଶ୍ଚୟ ଦିନ ଆସିବ—ଯେତେବେଳେ ଅନେକ ଲୋକବାଦ୍ୟ କେବଳ ଯାଦୁଘରେ ସଂରକ୍ଷିତ ହୋଇ ରହିବ । ଆମ ପିଲାମାନେ ତାହା ଦେଖି କହିବେ—ଏଗୁଡ଼ିକ କି ବାଦ୍ୟ ?

କିନ୍ତୁ ସେହି ଲୋକବାଦ୍ୟ ସ୍ଥାନରେ ପହଞ୍ଚିଯାଇଥିବ କେତେ ବୈଦେଶିକ ବାଦ୍ୟଯନ୍ତ୍ର—କଙ୍ଗୋ, ବଙ୍ଗୋ, ଟ୍ରାଙ୍ଗୋ ଇତ୍ୟାଦି ।

ଏଣେ ଉତ୍କଳ ପାଠକ ସଂସଦ ଦ୍ୱାରା ପ୍ରକାଶିତ ଅନେକ ସଙ୍କଳନ ଶେଷ ହୋଇଯାଇଛି । ସେହି ସଙ୍କଳନଗୁଡ଼ିକର ପୁନଃ ପ୍ରକାଶ ନକଲେ ପାଠକ ସଂସଦର ପ୍ରକୃତ

ଲକ୍ଷ୍ୟ ସାଧିତ ହୋଇପାରିବ ନାହିଁ । କିନ୍ତୁ ପୁନଃ ପ୍ରକାଶ ପୂର୍ବରୁ ଯେଉଁ ଲେଖାଗୁଡ଼ିକର ଅଭାବ ଅଛି, କିମ୍ବା ଯେଉଁ ଗୁଡ଼ିକରେ ତଥ୍ୟଗତ ଭ୍ରମ ରହିଛି, ସେ ଗୁଡ଼ିକ ସୁଧାରିବାକୁ ନେବା କଥା ଏବଂ କିଛି ନୂଆ ଲେଖା, ଅଭାବ ରହିଥିବା ସ୍ଥାନରେ ସ୍ଥାନିତ ହେବା ଆବଶ୍ୟକ । ଦୁଃଖର କଥା ଯେ ଏଭଳି ଉଦ୍ୟମ ପାଇଁ ଯଥେଷ୍ଟ ସମୟ ମିଳୁନାହିଁ । ତଥାପି ଏବର୍ଷ ଓଡ଼ିଶାର 'ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା' ସଙ୍କଳନର ୨ୟ ସଂସ୍କରଣ ପ୍ରକାଶ କରିବା ପାଇଁ ସ୍ଥିର କରାଯାଇ ସେ ଦିଗରେ କାର୍ଯ୍ୟ ଆରମ୍ଭ ହୋଇଛି । ଆଶା କରାଯାଏ—ଏହି ସଙ୍କଳନଟି ମଧ୍ୟ ୨ଟି ଭାଗରେ ବିଭକ୍ତ ହେବ ।

ସେହିପରି ଓଡ଼ିଶାର ଦେବଦେବୀ ୨ୟ ଏବଂ ୩ୟ ସ୍ତବକ ପୁନଃ ପ୍ରକାଶ ଲାଭ କରିପାରି ନାହିଁ କିମ୍ବା ୪ର୍ଥ ସ୍ତବକ ପାଇଁ ଲେଖା ସଂଗ୍ରହର ପ୍ରାଥମିକ ଉଦ୍ୟମ ଶେଷ ହୋଇନାହିଁ । ଉତ୍କଳ ପାଠକ ସଂସଦ ଏ ଦିଗରେ ଅଗଣିତ ଲେଖକ ଲେଖିକାମାନଙ୍କର ସହଯୋଗ କାମନା କରେ ।

ସେହିପରି ଯେଉଁ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଉଛି—ତାଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକଗୁଡ଼ିକୁ ଏକାଠି କରି ୩।୪ ଖଣ୍ଡରେ ଖଣ୍ଡିଏ ଲେଖାଏଁ ପୁସ୍ତକ ସଂକଳନ କରିବାର ପ୍ରସ୍ତାବ ରହିଛି । କାରଣ ଯେଉଁ ସଙ୍କଳନଗୁଡ଼ିକ ଶେଷ ହୋଇଯାଉଛି ତାହା ଆଉ ମିଳିବା ଅସମ୍ଭବ କଥା ।

ଏତଦ୍‌ବ୍ୟତୀତ, କେତେକ ସଦସ୍ୟଙ୍କର ମତ ହେଲା ଯେ—ପାଠକ ସଂସଦ ଯେଉଁ ଦୁର୍ଲଭ ସଂକଳନଗୁଡ଼ିକ ପ୍ରକାଶ କରୁଛି, ତାହାପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ କିମ୍ବା ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନଙ୍କ ଠାରୁ ଯଥେଷ୍ଟ ଅର୍ଥ ସାହାଯ୍ୟ ମିଳିପାରିବ । ପରବର୍ତ୍ତୀ ସମୟରେ ସେହି ସଙ୍କଳନଗୁଡ଼ିକର ବିକ୍ରୟ ଲବ୍‌ଧ ଧନରେ ଉତ୍କଳ ପାଠକ ସଂସଦ ବିନା ଅସୁବିଧାରେ ତିଷ୍ଠି ରହିପାରିବ ।

ଏପରି ଆଶାବାଦୀ ଚିନ୍ତା ନିଶ୍ଚୟ ମଙ୍ଗଳକର । କିନ୍ତୁ ପାଠକ ସଂସଦ ସୃଷ୍ଟି ବେଳେ ଚିନ୍ତା କରାଯାଇଥିଲା ଯେ—ଆମେ ସରକାରୀ ଅନୁଦାନ ଗ୍ରହଣ କରିବୁ ନାହିଁ । ସେହି ମତକୁ ଶିରୋଧାର୍ଯ୍ୟ କରି ଉତ୍କଳ ପାଠକ ସଂସଦ ଆଜି ପର୍ଯ୍ୟନ୍ତ ସରକାରୀ ଅନୁଦାନ ଗ୍ରହଣ କରିନାହିଁ । ଏବେ ପରିବର୍ତ୍ତିତ ପରିସ୍ଥିତିରେ ଯଦି ସଦସ୍ୟମାନେ ପୁନର୍ବାର ମତ ପରିବର୍ତ୍ତିତ କରି ପରାମର୍ଶଦାତା କମିଟିରେ ସାହାଯ୍ୟ ଗ୍ରହଣ ପାଇଁ ପ୍ରସ୍ତାବ ଗ୍ରହଣ କରନ୍ତି ତାହାହେଲେ ସର୍ବସମ୍ମତ ମତ ଗ୍ରହଣ କରିବାରେ ବୋଧହୁଏ କାହାର ଅସୁବିଧା ହେବ ନାହିଁ । କିନ୍ତୁ ପ୍ରକୃତ ମତ ଓ ଆଦର୍ଶରୁ କିଛି ବାଟ ପଛକୁ ଘୁଞ୍ଚି ଆସିବାକୁ ପଡ଼ିବ ।

ଗୁହୁଁ ଗୁହୁଁ ୨୩ ବର୍ଷ ବିତିଗଲା । ଆଉ ଗୋଟିଏ ବର୍ଷ ପରେ ରୌପ୍ୟ ଜୟନ୍ତୀ । ଏଥିପାଇଁ ଆଜିଠୁଁ ପ୍ରସ୍ତୁତ ହେବାନିମିତ୍ତ ବହୁ ସଦସ୍ୟ ଅନୁରୋଧ ଜଣାଇଛନ୍ତି ଏବଂ

ପରାମର୍ଶ ମଧ୍ୟ ଦେଇଛନ୍ତି । ସେମାନଙ୍କ ପରାମର୍ଶ ଅନୁସାରେ ନିଷ୍ପତ୍ତି କାର୍ଯ୍ୟପନ୍ଥା ଗ୍ରହଣ କରାଯିବ ।

ଏସବୁ କାର୍ଯ୍ୟକ୍ରମ ସହିତ ପାଠକ ସଂସଦର ଏକ ଶାଖା ଅନୁଷ୍ଠାନ "ଚନ୍ଦ୍ରିକା" ଜରିଆରେ ଛୋଟ ଛୋଟ ସଭାସମିତି କରାଯାଉଛି ଓ ଛୋଟ ଛୋଟ ସଙ୍କଳନ ମଧ୍ୟ ପ୍ରକାଶ କରାଯାଉଛି । ଇତିମଧ୍ୟରେ ଭକ୍ତକବି ଜଗନ୍ନାଥ ଦାସ ଓ ଭକ୍ତକବି ବଳରାମ ଦାସଙ୍କ ପଞ୍ଚଶତ ଜନ୍ମ ଜୟନ୍ତୀ ଉପଲକ୍ଷେ 'ଭକ୍ତକବି ଜଗନ୍ନାଥ ଦାସ', 'ଜଗନ୍ନାଥ ଦାସ ଓ ଭାଗବତ ସଂସ୍କୃତି' ଏବଂ 'ଭକ୍ତକବି ବଳରାମ ଦାସ' ପ୍ରଭୃତି ସଙ୍କଳନ ପ୍ରକାଶ ଲାଭ କରିଛି । ଏଗୁଡ଼ିକ ଓଡ଼ିଶାର ସାରସ୍ୱତ ସାଧକ ପ୍ରାତଃସ୍ମରଣୀୟ ଜଗନ୍ନାଥ ଦାସ ଏବଂ ବଳରାମ ଦାସଙ୍କ ଜୀବନୀ ଉପରେ ଆଲୋକପାତ କରିବା ସହିତ ତାଙ୍କ ରଚିତ ଶ୍ରୀମଦ୍-ଭାଗବତ ଏବଂ ଦାଣ୍ଡି ରାମାୟଣ ସମ୍ପର୍କରେ ଓଡ଼ିଶାର ଅଗଣିତ ପାଠକ-ପାଠିକାମାନଙ୍କୁ କିଞ୍ଚିତ୍ ପରିମାଣରେ ଅବଗତ କରାଇଛି । ଏହିସବୁ ଛୋଟବଡ଼ ସଙ୍କଳନ ପ୍ରକାଶ ଦିଗରେ ଓଡ଼ିଶା ବୁକ୍ ଷ୍ଟୋରର ତତ୍ତ୍ୱାବଧାରକ ଶ୍ରୀଯୁକ୍ତ ଗୋବିନ୍ଦଚରଣ ପାତ୍ରଙ୍କ ସାହାଯ୍ୟ ସ୍ମରଣୀୟ ।

ଅବଶ୍ୟ ଯେତେବେଳେ ଖବର ମିଳୁଛି ଯେ—ଏ ବର୍ଷ ଉତ୍କଳ ପାଠକ ସଂସଦର ବହି କିଛି ବିକ୍ରୀ ହେଲ୍‌ନାହିଁ, ସେତେବେଳେ ମନ ନିରୁତ୍ସାହିତ ହୋଇପଡ଼ୁଛି । ଆଉ ଏଭଳି ଉଦ୍ୟମ ନ କରିବାପାଇଁ ଚିନ୍ତା ଆସୁଛି । କିନ୍ତୁ ସେହି ନିରୁତ୍ସାହିତ ମନକୁ ପୁଣି ନୂଆ ପ୍ରେରଣା ଦେଇ ଉତ୍ସାହିତ କରୁଛନ୍ତି ସଦସ୍ୟମାନେ । ସେମାନେ କହୁଛନ୍ତି, ଆମେ ସମସ୍ତେ ନିଜ ହାତରୁ କିଛି କିଛି ଅର୍ଥ ଦାନ କରି ସଙ୍କଳନ ପ୍ରକାଶ କରିବୁ । ତା'ହେଲେ ଆଉ କାହାରି ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ ।

ଏ ମଧ୍ୟ ଏକ ଆଶାବାଦୀ ଚିନ୍ତା । ଗୋଟିଏ ସଙ୍କଳନ ପ୍ରକାଶ କରି, ତାହାର ବିକ୍ରୟ ବ୍ୟବସ୍ଥା କରି, ପୁଣି ଅନୁଷ୍ଠାନ ଚଳାଇବା ଏତେ ସହଜ କଥା ନୁହେଁ । ଏଥିପାଇଁ ସଦସ୍ୟମାନଙ୍କୁ ଲେଖକ, ପ୍ରକାଶକ, ବ୍ୟବସାୟୀ, ପାଠକ ଏବଂ କ୍ରେତା ହେବାକୁ ପଡ଼ିବ । ଜଣେ ଲେଖକ ଯଦି ଗୋଟିଏ ଛାପାଖାନା ପ୍ରତିଷ୍ଠା କରେ, ତେବେ ତାର ଲେଖା ଦ୍ୱିଗୁଣିତ ହୋଇଯିବ କିମ୍ବା କଲମରୁ କାଳି ଶେଷ ହୋଇଯିବ ତାହା କେବଳ ଅନୁଭବୀମାନେ ହିଁ କହିପାରିବେ ।

ଏ ବର୍ଷ ଜଣେ ବନ୍ଧୁ କହିଲେ, ଉତ୍କଳ ପାଠକ ସଂସଦ ପକ୍ଷରୁ ଉଦ୍‌ଘାଟନ ଉତ୍ସବଗୁଡ଼ିକ କଟକ ବାହାରେ ଅନୁଷ୍ଠିତ ହେଉଛି । ଏହି ଉଦ୍‌ଘାଟନ ଉତ୍ସବର ପ୍ରଦର୍ଶନୀରେ ଓଡ଼ିଶାର ବରପୁତ୍ରମାନଙ୍କର ପ୍ରତିଛବି ରଖାଯାଉ ଏବଂ ସେମାନଙ୍କ ସମ୍ପର୍କରେ ଏକ ପୁସ୍ତିକା ମଧ୍ୟ ପ୍ରକାଶ ପାଉ । ଏଥିପାଇଁ ଯେଉଁ ଖର୍ଚ୍ଚ ହେବ ତାହାର ଅର୍ଦ୍ଧେକ ମୁଁ ବହନ କରିବି ।

ଏଭଳି ବନ୍ଧୁଙ୍କୁ ମୁଁ ସଂସଦ ପକ୍ଷରୁ ଶତ ଧନ୍ୟବାଦ ଦେଉଛି । ତାଙ୍କ ପରାମର୍ଶ କାର୍ଯ୍ୟକାରୀ କରିବାପାଇଁ ଆମ୍ଭେମାନେ ପ୍ରାଣପଣେ ଚେଷ୍ଟା କରିବୁ ।

ଗତ ନଭେମ୍ବର ମାସରେ ଅନୁଷ୍ଠିତ ପରାମର୍ଶଦାତା କମିଟିରେ ସ୍ଥିର ହୋଇଥିଲା ଯେ ସ୍ଥାୟୀ ସଭାପତି ଡକ୍ଟର ସଦାଶିବ ମିଶ୍ରଙ୍କୁ ସମ୍ମାନିତ କରାଯିବ ଏବଂ ତାଙ୍କ ଜୀବନୀ ପ୍ରକାଶିତ ହେବ । ତେଣୁ ସେହି ପ୍ରସ୍ତାବ ଅନୁସାରେ ଆସନ୍ତା ଜୁନ୍ ମାସ ୧୩ ତାରିଖ ଦିନ ତାଙ୍କ ଜୟନ୍ତୀ ଅବସରରେ ଜୀବନୀ ପୁସ୍ତକଟି ପ୍ରକାଶଲାଭ କରିବ ଏବଂ ତାଙ୍କୁ ସମ୍ମାନିତ କରାଯିବ ।

ଏଇମାତ୍ର ଫେବୃୟାରୀ ମାସ ୨୯ ତାରିଖ ଏବଂ ମାର୍ଚ୍ଚ ମାସ ୧ ତାରିଖରେ ୨୩ ତମ ବାର୍ଷିକ ଉଦ୍‌ଘାଟନ ଉତ୍ସବ କୁଜଙ୍ଗ କଲେଜ ପରିସର ମଧ୍ୟରେ ଅନୁଷ୍ଠିତ ହୋଇଯାଇଛି । ଏଠାରେ ଅଧ୍ୟକ୍ଷ ଡଃ କିଶୋର ଚନ୍ଦ୍ର ସାହୁ, ଅଧ୍ୟାପକବୃନ୍ଦ, ଛାତ୍ରଛାତ୍ରୀ-ମାନେ, କଲେଜ ପରିଚାଳନା କର୍ତ୍ତୃପକ୍ଷ, ପଞ୍ଚାୟତରାଜ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ ଏବଂ ସ୍ଥାନୀୟ ବାସିନ୍ଦାମାନେ ଯେଉଁ ସାହାଯ୍ୟ ସହଯୋଗ କରିଛନ୍ତି, ତାହା ଅବିସ୍ମରଣୀୟ । ସେହିପରି ଓଡ଼ିଶାର ବିଭିନ୍ନ ସ୍ଥାନରୁ ଯେଉଁ ଲେଖକ ଲେଖିକାମାନେ କଷ୍ଟ ସ୍ୱୀକାର କରି ଏ ଉତ୍ସବରେ ଯୋଗ ଦେଇଛନ୍ତି, ସେ ସମସ୍ତଙ୍କୁ ସଂସଦ ପକ୍ଷରୁ ଧନ୍ୟବାଦ ଜଣାଉଛୁ ।

ଅନେକ କହିଗଲିଣି । କହିଲେ ତ କଥା ଶେଷ ହୁଏନା । ଏ ଅସରନ୍ତି କଥାର ଡୋରି ଏଇଠି ବନ୍ଧାଯାଉ । ସାକ୍ଷାତ ହେବ ପୁଣି ବାରାନ୍ତରେ ।

ପୁଣିଥରେ ଧନ୍ୟବାଦ । । ଇତି ।

**ବ୍ରଜମୋହନ ମହାନ୍ତି**

ସଂପାଦକ

## ଉତ୍କଳ ପାଠକ ସଂସଦର ସ୍ୱତନ୍ତ୍ର ସଙ୍କଳନ

୧ । ପୁରାଣ ପରିକ୍ରମା
୨ । ଓଡ଼ିଶାର ପର୍ବପର୍ବାଣି-ଓଷାବ୍ରତ-ଯାନଯାତ୍ରା
୩ । ଓଡ଼ିଶାର ନାରୀ
୪ । ଯାହା ଓଡ଼ିଶାର ତାହା ଓଡ଼ିଶୀ
୫ । ଓଡ଼ିଶୀ ସଙ୍ଗୀତ
୬ । ଓଡ଼ିଶାର ଦେବଦେବୀ—ପ୍ରଥମ ଭାଗ
୭ । ଓଡ଼ିଶାର ଦେବଦେବୀ—ଦ୍ୱିତୀୟ ଭାଗ
୮ । ଓଡ଼ିଶାର ଦେବଦେବୀ—ତୃତୀୟ ଭାଗ
୯ । ଓଡ଼ିଶାରେ ସାଧୁସନ୍ଥ—ପ୍ରଥମ ଭାଗ
୧୦ । ଓଡ଼ିଶାରେ ସାଧୁସନ୍ଥ—ଦ୍ୱିତୀୟ ଭାଗ
୧୧ । ଓଡ଼ିଶାରେ ସାଧୁସନ୍ଥ—ତୃତୀୟ ଭାଗ
୧୨ । ଓଡ଼ିଶାର ଭକ୍ତକବି—ପ୍ରଥମ ଭାଗ
୧୩ । ଓଡ଼ିଶାର ଭକ୍ତକବି—ଦ୍ୱିତୀୟ ଭାଗ
୧୪ । ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ—ପ୍ରଥମ ଭାଗ
୧୫ । ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ—ଦ୍ୱିତୀୟ ଭାଗ
୧୬ । ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ—ତୃତୀୟ ଭାଗ
୧୭ । ଓଡ଼ିଶାର ସାଂସ୍କୃତିକ ପରମ୍ପରା—ପ୍ରଥମ ଭାଗ
୧୮ । ଓଡ଼ିଶାର ସାଂସ୍କୃତିକ ପରମ୍ପରା—ଦ୍ୱିତୀୟ ଭାଗ
୧୯ । ନଗର କଟକ—ପ୍ରଥମ ଭାଗ
୨୦ । ନଗର କଟକ ଓ ପଞ୍ଚ କଟକ—ଦ୍ୱିତୀୟ ଭାଗ

## ଉତ୍କଳ ପାଠକ ସଂସଦର ଜୀବନୀ ସଙ୍କଳନ

୧ । ପ୍ରଜ୍ଞା ପରିଚୟ
୨ । ସପ୍ତ ରଶ୍ମି
୩ । ସପ୍ତ ଶିଖା
୪ । ସପ୍ତ ପ୍ରଦୀପ
୫ । ସପ୍ତ ଶ୍ରୀ
୬ । ସପ୍ତ ଜ୍ୟୋତି
୭ । ସପ୍ତ ପୁଷ୍ପ
୮ । ସପ୍ତ ସ୍ୱର
୯ । ସପ୍ତ ସୁମନ
୧୦ । ସପ୍ତ ସ୍ତବକ
୧୧ । ସପ୍ତ ତରଙ୍ଗ
୧୨ । ସପ୍ତ ପ୍ରଭା
୧୩ । ସପ୍ତ ଧାରା
୧୪ । ସପ୍ତ ଶାଖା
୧୫ । ସପ୍ତ ତାରକା
୧୬ । ସପ୍ତ ସୌରଭ
୧୭ । ସପ୍ତ ସାଧକ

# ସୂଚିପତ୍ର

# ଯାଜପୁର କଟକ ଓ ଦେବୀ ବିରଜା

**ଡକ୍ଟର ଲକ୍ଷ୍ମଣ କୁମାର ପଣ୍ଡା**

ମହାଭାରତରେ ବିଖ୍ୟାତ ଶାକ୍ତପୀଠ ବିରଜା କ୍ଷେତ୍ର ବା ଯାଜପୁର ଏହାର ମହାନ୍ ପରମ୍ପରା, ଐତିହ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ, ଦେବଦେବୀ, ମଠ, ମନ୍ଦିର ଓ ପର୍ବପର୍ବାଣି ପାଇଁ ଜଗତ ବିଖ୍ୟାତ । ପୁଣ୍ୟତୋୟା ସ୍ୱଚ୍ଛନୀରା ବୈତରଣୀ ଏହି ତୀର୍ଥରେ ପ୍ରବାହିତ ହୋଇ ଏହାକୁ ପବିତ୍ର କରିବା ସଙ୍ଗେ ସଙ୍ଗେ ଏହି ତୀର୍ଥର ମାହାତ୍ମ୍ୟ ବୃଦ୍ଧି କରୁଅଛି । ମହାଭାରତର ବନପର୍ବରେ ସେଥିପାଇଁ ଉଲ୍ଲେଖ ରହିଛି, "ତତୋ ବୈତରଣୀଂ ଗତ୍ୱା ସର୍ବପାପ ପ୍ରମୋଚନୀମ୍, ବିରଜାତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ ।" ଏଥିରୁ ଜଣାପଡ଼େ ଯେ, ମହାଭାରତରେ ଶ୍ରୀକ୍ଷେତ୍ର ପ୍ରସଙ୍ଗ ନ ଥିବା ସ୍ଥଳେ, ବିରଜା କ୍ଷେତ୍ରର ନାମୋଲ୍ଲେଖ ଐତିହାସିକ ଦୃଷ୍ଟିକୋଣରୁ ନିଶ୍ଚିତ ଭାବରେ ସର୍ବପ୍ରାଚୀନ । ବ୍ରହ୍ମାଣ୍ଡ ପୁରାଣ, ବିରଜା କ୍ଷେତ୍ର ମାହାତ୍ମ୍ୟ, କପିଳ ସଂହିତା ତଥା ଅନ୍ୟାନ୍ୟ ପୁରାଣ ଗ୍ରନ୍ଥରେ ଯାଜପୁରକୁ ଅବିମୁକ୍ତ କ୍ଷେତ୍ର, ବିରଜଃକ୍ଷେତ୍ର ବିରଜା, ସିଦ୍ଧକ୍ଷେତ୍ର ଓ ଗୁପ୍ତକ୍ଷେତ୍ରାଦି ନାମରେ ନାମିତ କରାଯାଇଛି ।

ବରାହ, ବିରଜା, ବେଦ, ବିପ୍ର ଓ ବୈତରଣୀ, ଏ ସମସ୍ତ ଦୁର୍ଲ୍ଲଭ ପଞ୍ଚ 'ବ' କାର, ଯାଜପୁର ବ୍ୟତୀତ ଅନ୍ୟ କେଉଁଠି ଦୃଷ୍ଟିଗୋଚର ହେଉ ନ ଥିବାରୁ, ଏହି କ୍ଷେତ୍ର ଯେ, ସର୍ବଶ୍ରେଷ୍ଠ ଏହା କହିବା ବାହୁଲ୍ୟମାତ୍ର । ବିଷ୍ଣୁପୁରାଣରେ ବର୍ଣ୍ଣିତ ଗୟାସୁର ଉପାଖ୍ୟାନରେ ଏହା ହେଉଛି ସୁପ୍ରସିଦ୍ଧ ଗୟାତୀର୍ଥ ପରି ନାଭିଗୟା । ପିତୃପୁରୁଷଙ୍କୁ ପିଣ୍ଡଦେବା ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ସ୍ଥାନରୁ ବହୁ ତୀର୍ଥଯାତ୍ରୀ ଏଠାରେ ଉପସ୍ଥିତ ରହି ବିରଜାଙ୍କ ନିକଟସ୍ଥ ଗଦାଧର (ବିଷ୍ଣୁ)ଙ୍କୁ ସାକ୍ଷୀ ରଖି ପିଣ୍ଡଦାନ କରୁଥିବାରୁ ଏହି କ୍ଷେତ୍ରରେ ବୈଷ୍ଣବଧର୍ମର ପ୍ରଭାବ ସହଜରେ ଅନୁମିତ ହୋଇଥାଏ । ସେହିଭଳି ଏହି କ୍ଷେତ୍ରର ଯଜ୍ଞାନଳ ସମ୍ଭୂତା ଦେବୀ ପାର୍ବତୀ "ବିରଜା" ନାମ ଧାରଣ କରି କ୍ଷେତ୍ରାଧିଶ୍ୱରୀ ରୂପରେ ଏହାକୁ ଅଳଂକୃତ କରିବା ସଙ୍ଗେ ସଙ୍ଗେ, କ୍ଷେତ୍ରାଧିଶ୍ୱର 'ତ୍ରିଲୋଚନେଶ୍ୱର'ଙ୍କ ସହ ସହାବସ୍ଥାନ କରି ଏ କ୍ଷେତ୍ରର ଉତ୍କର୍ଷ ପ୍ରତିପାଦନ କରୁଥିବାରୁ, ଏହି କ୍ଷେତ୍ରକୁ 'ଅବିମୁକ୍ତ କ୍ଷେତ୍ର' ବା ହରଗୌରୀ କ୍ଷେତ୍ର ରୂପେ ନାମିତ କରାଯାଇଛି । ଏଥିରୁ ଯାଜପୁର ଅଞ୍ଚଳରେ ଏକଦା ଶୈବଧର୍ମର ପ୍ରାଧାନ୍ୟ ଥିବା ସହଜରେ ଅନୁମେୟ । ସମ୍ଭବତଃ ସେଥିପାଇଁ

ସୋମବଂଶୀ ଶାସକମାନେ ଏହାକୁ ଶୈବକ୍ଷେତ୍ର ଭୁବନେଶ୍ୱର ସହିତ ସମାନତା ଦାନ କରିବାକୁ ଯାଇ, ଏଠାରେ "ଏକ ଊଣା କୋଟିଏ ଲିଙ୍ଗ" ପ୍ରତିଷ୍ଠା କରିଛନ୍ତି । ବିରଜା ହିଁ ଯାଜପୁରର ଅଧିଷ୍ଠାତ୍ରୀ ଦେବୀ । ସେ ଶାକ୍ତ ପରମ୍ପରାର ପ୍ରତୀକ । କୁବ୍‌ଜିକାତନ୍ତ୍ର ବର୍ଣ୍ଣିତ ଚତୁର୍ବିଂଶତି ସିଦ୍ଧପୀଠ ଓ ଜ୍ଞାନାର୍ଣ୍ଣବ ତନ୍ତ୍ର ବର୍ଣ୍ଣିତ ପଞ୍ଚାଶତ୍ ଶାକ୍ତପୀଠ ମଧ୍ୟରେ ବିରଜାପୀଠ ଅନ୍ୟତମ ।

ବିରଜା ଦେବୀ ହିଁ ସମଗ୍ର ଭାରତବର୍ଷରେ ମହିଷମର୍ଦ୍ଦିନୀ ଦ୍ୱିଭୁଜା ଦୁର୍ଗାଙ୍କର ଏକକ ଓ ଅନନ୍ୟ ନିଦର୍ଶନ । ଜୈନ ଓ ବୌଦ୍ଧ ବଜ୍ରଯାନ ଶାଖାର ସିଦ୍ଧପୀଠ ଭାବରେ ମଧ୍ୟ ଯାଜପୁରର ପ୍ରସିଦ୍ଧି ସର୍ବଜନବିଦିତ । ସଂକ୍ଷିପ୍ତରେ କହିବାକୁ ଗଲେ, ଜୈନ, ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ, ସୌର ଓ ଗାଣପତ୍ୟ ପରମ୍ପରାର ଯାଜପୁର ଥିଲା ଏକ ମିଳନସ୍ଥଳୀ । କଳା, ଭାସ୍କର୍ଯ୍ୟ, ସାହିତ୍ୟ, ସଂସ୍କୃତି, ଶାସନ, ଅନୁଶାସନ ଓ ତନ୍ତ୍ରସାଧନା ପ୍ରଭୃତିର ଅଭ୍ୟୁଦୟ ଓ ବିକାଶ କ୍ଷେତ୍ରରେ ଏହା ଯୁଗେ ଯୁଗେ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳକୁ ପ୍ରଭାବିତ କରି ଆସିଅଛି ।

ସମ୍ଭବତଃ ଖ୍ରୀ: ପୂ: ୭ମ ବା ୬ଷ୍ଠ ଶତାବ୍ଦୀରେ ବିରଜା ମଣ୍ଡଳର ସର୍ବପ୍ରାଚୀନ ତୀର୍ଥ ଓ ସର୍ବପ୍ରଧାନ ସାଂସ୍କୃତିକ କ୍ଷେତ୍ର ଥିଲା ଯାଜପୁର । ବାୟୁପୁରାଣ ଓ ହରିବଂଶରେ ବିରଜାଙ୍କୁ ଆଦ୍ୟପା ନାମକ ପିତୃଗଣଙ୍କ ମାନସୀକନ୍ୟା ରୂପେ ବର୍ଣ୍ଣନା କରାଯାଇଛି । 'ସଦ୍‌ଧର୍ମ ପୁଣ୍ଡରୀକ' ନାମକ ଏକ ବୌଦ୍ଧଗ୍ରନ୍ଥରେ ମଧ୍ୟ 'ବିରଜା' ନାମ ଉଲ୍ଲେଖ କରାଯାଇଛି । ମୌର୍ଯ୍ୟ ସମ୍ରାଟ ଅଶୋକ ଏବଂ କଳିଙ୍ଗାଧିପତି ମହାମେଘ ବାହାନ ଖାରବେଳଙ୍କ ରାଜତ୍ୱ କାଳରେ ମଧ୍ୟ ବିରଜାମଣ୍ଡଳ ବା ଯାଜପୁର ପ୍ରାଚୀନ କଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଅଶୋକ ଓ ଖାରବେଳ ଯଥାକ୍ରମେ ବୌଦ୍ଧ ଓ ଜୈନଧର୍ମର ପୃଷ୍ଠପୋଷକ ଥିବାରୁ ସେମାନଙ୍କ ଶିଳାଲେଖରେ ସମ୍ଭବତଃ ସେଥିପାଇଁ ଏହି ହିନ୍ଦୁ ଧର୍ମପୀଠ ବିରଜାକ୍ଷେତ୍ର ବା ଯାଜପୁର ସ୍ଥାନ ପାଇନାହିଁ । ଅଭିଲେଖରେ ପ୍ରଥମେ 'ବିରଜା' ନାମ ୬ଷ୍ଠ ଶତାବ୍ଦୀର ଶେଷଭାଗରେ ଥିବା ପୃଥିବୀ ମହାରାଜାଙ୍କ ପାରଳାଖେମୁଣ୍ଡି ତାମ୍ର-ଫଳକରେ ମିଳିଥାଏ । ୭ମ ଶତାବ୍ଦୀର ଭାନୁଦତ୍ତଙ୍କ ତାମ୍ରପତ୍ର ଅନୁଦାନରେ ବର୍ଣ୍ଣିତ 'ବିରଞ୍ଜା' ନାମ, 'ବିରଜା'ର ବିକୃତ ହେବାର ଯଥେଷ୍ଟ ସମ୍ଭାବନା । ଶ୍ୱେତକର ଗଙ୍ଗରାଜା ଜୟବର୍ମଦେବ ତାଙ୍କ ଗଞ୍ଜାମ ତାମ୍ର ଶାସନରେ ମଧ୍ୟ ବିରଜାର ଉନ୍ମତ୍ତ କେଶରୀଙ୍କୁ ତାଙ୍କର ସାର୍ବଭୌମ ରାଜା ରୂପେ ସ୍ୱୀକାର କରିଛନ୍ତି । ଏହି ଉନ୍ମତ୍ତ କେଶରୀଙ୍କୁ ଅଷ୍ଟମ ଶତାବ୍ଦୀର ଭୌମରାଜା ଶିବକର ଉନ୍ମତ୍ତ ସିଂହଙ୍କ ସହିତ ଚିହ୍ନିତ କରାଯାଇଛି । ସେ ତାଙ୍କର ରାଜଧାନୀ "ବିରଜାକ୍ଷେତ୍ର" ବା ନିକଟସ୍ଥ ଗୁହଦେବପାଟକ ବା ଗୁହେଶ୍ୱର ପାଟକଠାରେ ପ୍ରତିଷ୍ଠା କରିଥିଲେ । ବିଭିନ୍ନ ଭୌମକର ଅଭିଲେଖ ଅନୁଯାୟୀ ସେହି ବଂଶର ରାଜା ଶାନ୍ତିକର ଦେବ ଏବଂ ଗଣେଶ ଗୁମ୍ଫାର ଖୋଦନକାରୀ ଭିମଟ 'ବିରଜା'ର ଅଧିବାସୀ ଥିଲେ । ଏହି ବଂଶର ପୂର୍ବତନ ରାଜାମାନେ ବୌଦ୍ଧ ଥିବା ସ୍ଥଳେ ପରବର୍ତ୍ତୀ ରାଜାମାନେ ଶୈବ ଓ ଶାକ୍ତ ଥିବାର ପ୍ରମାଣ ମିଳେ । ରାଜ୍ୟାସୀନ ହେବା ସମୟରେ ଏହି ବଂଶର

ତ୍ରିଭୁବନ ମହାଦେବୀ ନିଜକୁ କାତ୍ୟାୟିନୀଙ୍କ ସହିତ ତୁଳନା କରିଥିଲେ । ଯାଜପୁରରୁ ମିଳିଥିବା ଅଭିଲେଖ ସଂଯୁକ୍ତ ଏକ ଚାମୁଣ୍ଡା ମୂର୍ତ୍ତିରୁ ଜଣାଯାଏ ଯେ, ଏହା ଅଷ୍ଟମ ଭୌମକର ରାଜବଂଶର ଜନୈକ ରାଣୀ ବତ୍ସାଦେବୀଙ୍କ କୀର୍ତ୍ତି ଥିଲା । ଭୌମକରଙ୍କ ପରେ ସୋମବଂଶୀ ରାଜାମାନେ ଏ ଅଞ୍ଚଳ ଅଧିକାର କରି, ଦ୍ୱିତୀୟ ଯଯାତି ମହାଶିବ ଗୁପ୍ତଙ୍କ ସମୟରେ କୋଶଳର ଯଯାତି ନଗର (ଆଧୁନିକ ବିନ୍‌କା) ଠାରୁ ରାଜଧାନୀ ଗୁହେଶ୍ୱର-ପାଟକକୁ ଉଠାଇଆଣି ଏହାକୁ "ଅଭିନବ ଯଯାତି ନଗର" ନାମରେ ନାମିତ କରିଥିଲେ । ଏହି ଭଳି ଭାବରେ ପ୍ରାୟ ୧୧୧୦ ଖ୍ରୀଷ୍ଟାବ୍ଦରେ ସୋମବଂଶୀ କେଶରୀମାନଙ୍କ ରାଜତ୍ୱ ଶେଷହେବା ପର୍ଯ୍ୟନ୍ତ ଯାଜପୁର 'ଯଯାତିନଗର' ନାମ ବହନ କରି ସେମାନଙ୍କ ରାଜଧାନୀ ରୂପେ ବିଦ୍ୟମାନ ଥିଲା ।

ମଧ୍ୟଯୁଗରେ ଯାଜପୁର ଏକ ପ୍ରସିଦ୍ଧ ମାତୃକାଦେବୀ କ୍ଷେତ୍ର ରୂପେ ପରିଣତ ହୋଇ, 'ବିରଜା' ଏଠାରେ ଅଧିଷ୍ଠାତ୍ରୀ ଦେବୀ ରୂପେ ଗ୍ରହଣୀୟ ହେଲେ । 'ବିରଜା' ଦଶାଶ୍ୱମେଧ ଯଜ୍ଞର ପବିତ୍ର ବ୍ରହ୍ମଅଗ୍ନିରୁ ଆବିର୍ଭୂତା ବୋଲି କୁହାଯାଏ । ସେହି 'ବିରଜା'ଙ୍କ ଯଜ୍ଞମୂର୍ତ୍ତି ସଦାସର୍ବଦା ଲୁଗା ଦ୍ୱାରା ଆଚ୍ଛାଦିତ, କିନ୍ତୁ ବର୍ଣ୍ଣନାରୁ ଜଣାଯାଏ ଯେ ଏହା ଏକ ଦୁର୍ଗାମୂର୍ତ୍ତି । ସେ ଦ୍ୱିଭୁଜା, ସିଂହବାହିନୀ ଏବଂ ମହିଷାସୁରକୁ ନିଜର ଶୂଳଦ୍ୱାରା ବଧ କରିବା ପାଇଁ ଆବିର୍ଭୂତା ହୋଇଥିଲେ । ୬ ରମାପ୍ରସାଦ ଚନ୍ଦଙ୍କ ମତରେ 'ବିରଜା' ହେଉଛନ୍ତି ପ୍ରାଚୀନ ସପ୍ତମାତୃକାଙ୍କର ରୂପ ଓ ସେହି ଧର୍ମର ପ୍ରତୀକ । 'କପିଳ ସଂହିତା' ପରି 'ବ୍ରହ୍ମପୁରାଣ'ରେ ମଧ୍ୟ ସୃଷ୍ଟି ରକ୍ଷା ପାଇଁ ବ୍ରହ୍ମା ସ୍ୱୟଂ ଯଜ୍ଞ କରିବାର ପ୍ରାମାଣିକ ବର୍ଣ୍ଣନା ରହିଅଛି । ସେଥିରେ ବ୍ରହ୍ମା ଋଷିମାନଙ୍କୁ କହିଛନ୍ତି— 'ବିରଜେ ବିରଜାମାତା ବ୍ରହ୍ମଣା ସଂପ୍ରତିଷ୍ଠିତାଂ' । ମାତ୍ର କେତେକ ସ୍ଥାନରେ 'ବ୍ରହ୍ମାଣୀ ସଂପ୍ରତିଷ୍ଠିତା' ବୋଲି ପାଠାନ୍ତର ଦୃଷ୍ଟିଗୋଚର ହୁଏ । କାରଣ ବ୍ରହ୍ମା ସ୍ୱୟଂ 'ବ୍ରହ୍ମଣା' ବୋଲି କହିବା ସମୀଚୀନ ମନେହୁଏ ନାହିଁ । ଏଣୁ 'ବ୍ରହ୍ମାଣୀ ସଂପ୍ରତିଷ୍ଠିତା' ହିଁ ଅଧିକ ଯୁକ୍ତିଯୁକ୍ତ । କାରଣ ଅନ୍ୟତ୍ର ମଧ୍ୟ 'ବିରଜେ,ଯୋ ମମକ୍ଷେତ୍ରେ' ଇତ୍ୟାଦିରେ ମୋ କ୍ଷେତ୍ର ବୋଲି କହିଛନ୍ତି । ତେଣୁ କେହି କେହି ବିଦ୍ୱାନ ବିରଜା ଦେବୀଙ୍କୁ 'ବ୍ରହ୍ମାଣୀ'ଙ୍କର ସ୍ୱରୂପ ବୋଲି କହିଥାନ୍ତି । କିନ୍ତୁ ତନ୍ତ୍ରଶାସ୍ତ୍ରମାନଙ୍କ ବର୍ଣ୍ଣନାନୁଯାୟୀ ବ୍ରହ୍ମାଣୀ 'ହଂସଯୁକ୍ତା ବିମାନସ୍ଥା' ଓ 'କୌଶାମ୍ଭଃ କ୍ଷରିକା' ଅର୍ଥାତ୍ ତାଙ୍କର ବାହନ ହଂସ ଏବଂ ହସ୍ତଧୃତ କୁଶଗୁଚ୍ଛର ଜଳ ସ୍ରବିତ ହେଉଥାଏ । 'ମତ୍ସ୍ୟପୁରାଣ'ରେ 'ବ୍ରହ୍ମାଣୀ ବ୍ରହ୍ମ ସଦୃଶା, ଚତୁର୍ବକ୍ତ୍ରା, ଚତୁର୍ଭୁଜା, ହଂସାଧିରୂଢ଼ା କର୍ତ୍ତବ୍ୟା ସାକ୍ଷ୍ୟସୂତ୍ର କମଣ୍ଡଳୁଃ ।' 'ବାମନ ପୁରାଣ' ମତରେ ବ୍ରହ୍ମାଣୀ, ଦେବୀଙ୍କର ମୁଖରୁ ଜାତ ହୋଇଥିଲେ । 'ବରାହ ପୁରାଣ'ର ଉକ୍ତି ହେଉଛି ଯେ ସେ ଶିବଙ୍କର ମଦରୂପକ ମାନସିକ ଶକ୍ତିରୁ ଉତ୍ପନ୍ନା । ଏହିସବୁ ସ୍ୱରୂପ ତତ୍ତ୍ୱରୁ ଯଦିଓ ବିରଜା ଦେବୀ ବ୍ରାହ୍ମଣୀ ନୁହନ୍ତି, ତଥାପି ମାଘମାସର ଅମାବାସ୍ୟାରେ ବିରଜାଙ୍କ ସ୍ନାନୋତ୍ସବ ତିଥି ଉପଲକ୍ଷେ ତାଙ୍କର 'ବ୍ରହ୍ମାଣୀ' ବେଶ ହୁଏ ଏବଂ ତାଙ୍କୁ ସାବିତ୍ରୀ ମନ୍ତ୍ରରେ ଆରାଧନା କରାଯାଏ, ଯଦିଓ ଅନ୍ୟ ଦିନମାନଙ୍କରେ ସେ ବନଦୁର୍ଗା ମନ୍ତ୍ରରେ ପୂଜିତା ହୋଇଥା'ନ୍ତି । ସେହିଭଳି, 'ବ୍ରହ୍ମପୁରାଣ', ବିରଜାକ୍ଷେତ୍ର ଓ ତୀର୍ଥର ମାହାତ୍ମ୍ୟ ବର୍ଣ୍ଣନା ପ୍ରସଙ୍ଗରେ

ବିରଜାମଣ୍ଡଳରେ ଅନ୍ୟତମା ସପ୍ତମାତୃକା 'ବାରାହୀ' ଦେବୀଙ୍କର ପ୍ରଥମ ଦେବାଳୟ ଥିବା ବିଷୟ ବର୍ଣ୍ଣନା କରିଥିଲେ ମଧ୍ୟ, ସେହି 'ବାରାହୀ' ଦେବୀ କିଭଳି 'ବିରଜା' ରୂପେ ରୂପାନ୍ତରିତ ହେଲେ, ସେ ବିଷୟରେ କୌଣସି ସୂଚନା ଦେଇନାହାନ୍ତି । ଭାରତବର୍ଷରେ ମହାରାଷ୍ଟ୍ରର ବୁଲଧାନା ଜିଲ୍ଲା ଏବଂ ଗୋଦାବରୀ ସନ୍ନିକଟ 'ସହ୍ୟାଦ୍ରି' ପର୍ବତରେ 'ବିରନା' ନାମରେ କେତେକ ଦେବୀ ପୂଜିତ ହେଉଥିଲେ ମଧ୍ୟ ମହିଷମର୍ଦ୍ଦିନୀ ଦ୍ୱିଭୂଜା ଦୁର୍ଗାଙ୍କର ସର୍ବପ୍ରଧାନ ତଥା ପ୍ରାଚୀନ ନିଦର୍ଶନ ହେଉଛନ୍ତି ଯାଜପୁରର 'ବିରଜା' । ଯାଜପୁରର ଦଶାଶ୍ୱମେଧ ଘାଟର ସପ୍ତମାତୃକା ମୂର୍ତ୍ତି ବ୍ୟତୀତ, ସ୍ଥାନୀୟ ଉପଜିଲ୍ଲାପାଳଙ୍କ ଅଫିସ ପ୍ରାଙ୍ଗଣରେ ବାରାହୀ, ଚାମୁଣ୍ଡା ଓ ଇନ୍ଦ୍ରାଣୀ ପ୍ରଭୃତି ମାତୃକା ମୂର୍ତ୍ତି ସଂରକ୍ଷିତ ହୋଇ ରହିଅଛି । ସମ୍ଭବତଃ ଭୌମକର ରାଜତ୍ୱକାଳରେ ତନ୍ତ୍ରଯାନର ପ୍ରଭାବରେ ଏହି ବଂଶର ପ୍ରାରମ୍ଭରୁ ଦେବୀ ବିରଜାଙ୍କ ସହିତ ଏହି ମାତୃକା ମୂର୍ତ୍ତିଙ୍କର ପ୍ରତିଷ୍ଠା କରାଯାଇଥିଲା ।

ଭୌମ ରାଜତ୍ୱକାଳରେ ଯାଜପୁରରେ ଯେଉଁ ମନ୍ଦିରମାନ ନିର୍ମିତ ହୋଇଥିଲା, ସେଗୁଡ଼ିକର ଧ୍ୱଂସାବଶେଷ ବର୍ତ୍ତମାନ ହଂସେଶ୍ୱର ଓ ଆଖଣ୍ଡଳେଶ୍ୱର ମନ୍ଦିର ନିକଟରେ, ବିରଜା ମନ୍ଦିର ଓ ବେଢ଼ାର ଗାତ୍ରରେ, ସୋମେଶ୍ୱର ମନ୍ଦିର ନିକଟରେ, ବ୍ରହ୍ମକୁଣ୍ଡ ପୁଷ୍କରଣୀ ସୋପାନରେ ଓ ଅଠରନଳା ପୋଲ ଦେହରେ ପରିଦୃଷ୍ଟ ହୁଏ । ଆଖଣ୍ଡଳେଶ୍ୱର ମନ୍ଦିରର ଗଣେଶ ମୂର୍ତ୍ତି, ବିରଜା ମନ୍ଦିରର ନିଶା ପାର୍ବତୀ ଓ କାର୍ତ୍ତିକେୟ ମୂର୍ତ୍ତିରେ ଭୌମଯୁଗୀୟ ସ୍ଥାପତ୍ୟର ସମସ୍ତ ଲକ୍ଷଣ ବିଦ୍ୟମାନ । ଭୌମ ରାଜତ୍ୱକାଳର ଯେଉଁସବୁ ବୌଦ୍ଧମୂର୍ତ୍ତି ଯାଜପୁରର ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ଭାବରେ ପଡ଼ିରହିଛି, ସେଗୁଡ଼ିକ ମଧ୍ୟରେ ଉପଜିଲ୍ଲାପାଳଙ୍କ ବେଢ଼ାର ପ୍ରକାଣ୍ଡ ବୋଧିସତ୍ତ୍ୱ ପଦ୍ମପାଣି, ଭୂମିସ୍ପର୍ଶ ମୁଦ୍ରାରେ ଉପବିଷ୍ଟ ଧ୍ୟାନୀ ବୁଦ୍ଧ, ବିରଜା ମନ୍ଦିରର ଧ୍ୟାନୀବୁଦ୍ଧ ତଥା ଜାଉଁଳବନ୍ଧର ବିକଟରୂପା ଚାମୁଣ୍ଡା ପ୍ରଭୃତି ଅନ୍ୟତମ । ସେହିଭଳି, ଏଠାରେ ହିନ୍ଦୁ ଓ ବୌଦ୍ଧଧର୍ମ ସହିତ ଏକତ୍ର ସହାବସ୍ଥାନ କରୁଥିବା ଜୈନଧର୍ମର ମଧ୍ୟ ବହୁ ଜୈନତୀର୍ଥଙ୍କର ମୂର୍ତ୍ତି ନିକଟବର୍ତ୍ତୀ ନରସିଂହପୁର, ଆଖଣ୍ଡଳେଶ୍ୱର ମନ୍ଦିର, ହଂସେଶ୍ୱର ମନ୍ଦିର ଏବଂ ହାଟଡ଼ିହ ପ୍ରଭୃତି ଗ୍ରାମମାନଙ୍କରୁ ମିଳିଅଛିଛି ।

ଦଶମ ଶତାବ୍ଦୀରେ ସୋମବଂଶୀ ରାଜତ୍ୱ ସମୟର ମନ୍ଦିର ଓ ମୂର୍ତ୍ତିଗୁଡ଼ିକ ମଧ୍ୟରେ ଚଣ୍ଡେଶ୍ୱର ନିକଟବର୍ତ୍ତୀ ଶୁଭସ୍ତମ୍ଭ, ଯଯାତିଶ୍ୱର ମହାଦେବ ମନ୍ଦିର, ବରାହ ମନ୍ଦିରର ଦୁର୍ଗାମୂର୍ତ୍ତି, ବିରଜା ମନ୍ଦିରର ବୈତାଳକଗଣ ଏବଂ ଗୋଧନେଶ୍ୱର ମନ୍ଦିରଗାତ୍ରରେ ଥିବା ଗଙ୍ଗାମୂର୍ତ୍ତି ଓ ମିଥୁନ ବିଗ୍ରହ ଅନ୍ୟତମ । ସୋମ ରାଜତ୍ୱକାଳର ସେହି ମନ୍ଦିରମାନ କାଳର କରାଳଗ୍ରାସରେ ଲୋପ ପାଇଥିଲେ ମଧ୍ୟ, ସେଗୁଡ଼ିକର ଅବଶିଷ୍ଟାଂଶ ପରବର୍ତ୍ତୀ କାଳରେ ବିଭିନ୍ନ ମନ୍ଦିର ଗାତ୍ରରେ ବିକ୍ଷିପ୍ତ ଭାବରେ ବ୍ୟବହୃତ ହୋଇଅଛି । ଗଙ୍ଗ ରାଜତ୍ୱରେ ଅଭିନବ ବାରାଣସୀ କଟକ ତତ୍କାଳୀନ ଓଡ଼ିଶାର ରାଜଧାନୀର ମର୍ଯ୍ୟାଦା ଲାଭ କରିଥିଲେ ମଧ୍ୟ ବିରଜା କ୍ଷେତ୍ର ବା ଯାଜପୁର ଓ ବିରଜା ଦେବୀଙ୍କର ମାହାତ୍ମ୍ୟ କୌଣସି ପ୍ରକାରେ କ୍ଷୁଣ୍ଣ ହୋଇ ନ ଥିଲା । ଯାଜପୁରର ସିଦ୍ଧେଶ୍ୱର ମନ୍ଦିରରେ ଗଙ୍ଗରାଜା ଚତୁର୍ଥ

ନରସିଂହଦେବଙ୍କ ଅମଳର ପ୍ରାଚୀନ ଓଡ଼ିଆ ଲିପିରେ ଗୋଟିଏ ଶିଳାଲେଖ ଏବେ ମଧ୍ୟ ରହିଅଛି । ସେହିଭଳି ସପ୍ତରଥ ଶୈଳୀରେ ନିର୍ମିତ ସ୍ଥାପତ୍ୟ ତ୍ରିଲୋଚନେଶ୍ୱର ମନ୍ଦିରରେ ଗଙ୍ଗ ସ୍ଥାପତ୍ୟର ବିଶେଷତ୍ୱ ଥିବାରୁ, ଏହା ଗଙ୍ଗ ରାଜତ୍ୱକାଳର କୀର୍ତ୍ତି ବୋଲି ଜଣାଯାଏ । କପିଳେନ୍ଦ୍ରଦେବଙ୍କ ନାତି ଓ ପୁରୁଷୋତ୍ତମଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ରଦେବ ଯାଜପୁରର ବରାହ ମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳାପାଞ୍ଜିର କିମ୍ବଦନ୍ତୀରୁ ଜଣାଯାଇଛି । ଏହା ବ୍ୟତୀତ, ଯାଜପୁରରେ ଏକ ଜଗନ୍ନାଥ ମନ୍ଦିର ଖ୍ରୀଷ୍ଟୀୟ ସପ୍ତଦଶ ବା ଅଷ୍ଟାଦଶ ଶତାବ୍ଦୀରେ ନିର୍ମିତ ହୋଇଥିବାର ସୂଚନା ଏହାର କଳା ଓ ସ୍ଥାପତ୍ୟରୁ ହିଁ ମିଳିଥାଏ ।

ଏହିଭଳି ଭାବରେ ଆବହମାନ କାଳରୁ ବିରଜାକ୍ଷେତ୍ର ଯାଜପୁର ଓଡ଼ିଶାର ପଞ୍ଚପୀଠ ମଧ୍ୟରେ ଏକ ଶାକ୍ତପୀଠ ରୂପେ ପ୍ରସିଦ୍ଧି ଲାଭ କରିଅଛି । ତାନ୍ତ୍ରିକ ଜଗତରେ ଦ୍ୱିଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ଏଠାରେ ବିରଜା ଭୈରବୀ ଆଖ୍ୟା ଅର୍ଜନ କରିଛନ୍ତି । ଏଠାକାର ନାଭିଗୟା କ୍ଷେତ୍ର ହିନ୍ଦୁ ଜଗତରେ ବିଶେଷ ଭାବରେ ପ୍ରଖ୍ୟାତ ହେବା ସଙ୍ଗେ ସଙ୍ଗେ ଏଠାରେ ପୁଣ୍ୟତୋୟା ବୈତରଣୀ, ଦ୍ୱାଦଶ ମାଧବ ମନ୍ଦିର, ଅଷ୍ଟଶମ୍ଭୁ, ଅଷ୍ଟମାଧବ, ଅଷ୍ଟ ଭୈରବ ଓ ଭୈରବୀ, ବରାହନାଥ ମନ୍ଦିର, ସପ୍ତମାତୃକା ମନ୍ଦିର, ତ୍ରିଲୋଚନେଶ୍ୱର ମନ୍ଦିର, ସିଦ୍ଧେଶ୍ୱର ମନ୍ଦିର, ଦଶାଶ୍ୱମେଧ ଘାଟ ଓ ଯାଗସ୍ତମ୍ଭ ବା ଶୁଭସ୍ତମ୍ଭ, ବିଲେଶ୍ୱର, ବରୁଣେଶ୍ୱର ପ୍ରଭୃତି ବହୁ ଧାର୍ମିକ, ଐତିହାସିକ ତଥା ଦର୍ଶନୀୟ ସ୍ଥାନ ଏହାକୁ ଏକ ପ୍ରସିଦ୍ଧି ଆଧ୍ୟାତ୍ମିକ ପୀଠ ରୂପେ ପ୍ରତିପାଦିତ କରିଛି । ପ୍ରାଚୀନକାଳରୁ ବୈଦିକ, ବୌଦ୍ଧ, ଜୈନ, ଶାକ୍ତ, ବୈଷ୍ଣବ, ଶୈବ, ଗାଣପତ୍ୟ ଓ ସୌର ପ୍ରଭୃତି ସଂସ୍କୃତିର ନମୁନା ଓ ଐତିହ୍ୟର ସ୍ତୂପ ଏଠାରେ ବିକ୍ଷିପ୍ତ ଭାବେ ଓ ମିଳିତ ରୂପରେ ମଧ୍ୟ ପ୍ରତିଫଳିତ ହୋଇଅଛି । ଏହାର ଅଦୂରରେ ଅବସ୍ଥିତ ପ୍ରସିଦ୍ଧ ଐତିହାସିକ ସ୍ଥାନ ଗୋହିରାଟିକିରି, ବୌଦ୍ଧକ୍ଷେତ୍ର ଧର୍ମନଗର (ଧାମନଗର), ଖଡ଼ିପଦା, କ୍ଷୋଲମପୁର ଓ ପ୍ରସିଦ୍ଧ ଶୈବପୀଠ ଆରଢ଼ି ପ୍ରଭୃତି ଗବେଷକ ଓ ଆଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ଏକଦା ଭୌମକର ଓ ସୋମବଂଶୀ ରାଜବଂଶର ରାଜଧାନୀ ରୂପେ ଏହି କ୍ଷେତ୍ରର ସୁନାମ ଦେଶ ବିଦେଶରେ ବିଶେଷ ଭାବରେ ପ୍ରଚରିତ ହୋଇଥିଲେ ମଧ୍ୟ ଇତିହାସର ନିଷ୍ଠୁର ଚକ୍ରାନ୍ତରେ ଆଜି ଯାଜପୁର ଚିର ଅବହେଳିତ ହୋଇ ଏକ ପ୍ରକାର ସ୍ଥାଣୁ ପାଲଟିଯାଇଛି । ପୁଣ୍ୟ-ଭୂମି ବିରଜା କ୍ଷେତ୍ରର ଏହିସବୁ ଅମୂଲ୍ୟ ସମ୍ପଦ ଓ ସାଂସ୍କୃତିକ ପରମ୍ପରାର ଉପଯୁକ୍ତ ସଂରକ୍ଷଣ ତଥା ଅନୁଧ୍ୟାନ ହୋଇପାରିଲେ, ମଧ୍ୟଯୁଗୀୟ ଓଡ଼ିଶାର ଇତିହାସ ଓ ସଂସ୍କୃତି ଯେ ଅଧିକ ସମୃଦ୍ଧ ହୋଇ-ପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଐତିହାସିକ ଓ ପୌରାଣିକ ଦୃଷ୍ଟିରୁ ବିରଜା କ୍ଷେତ୍ର ଯାଜପୁର ସମଗ୍ର ଓଡ଼ିଶାରେ ଗୁରୁତ୍ୱପୂର୍ଣ୍ଣ । ଏହି ବିରଜା କ୍ଷେତ୍ର ସମ୍ପର୍କରେ ନାନା କିମ୍ବଦନ୍ତୀ ପ୍ରଚଳିତ । ଏହି କିମ୍ବଦନ୍ତୀ କହେ ଯେ ଦେବ ଦେବ ବ୍ରହ୍ମା ଏଠାରେ ଯଜ୍ଞବରାହ ସ୍ଥାପନ କରି ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ । ସେ ଯଜ୍ଞବରାହ ମୂର୍ତ୍ତି ଏବେ ମଧ୍ୟ ପୁଣ୍ୟତୋୟା ବୈତରଣୀ

ଓ ଗେଙ୍ଗୁଟୀ ନଦୀର ମଧ୍ୟବର୍ତ୍ତୀ ବରାହନାଥ ଗ୍ରାମରେ ଏକ କ୍ଷୁଦ୍ର ଅଥଚ କମନୀୟ ମନ୍ଦିରରେ ଅବସ୍ଥାପିତ । ଗେଙ୍ଗୁଟୀ ବା ଗଙ୍ଗୋଟୀ ନଦୀର ଅପରପାର୍ଶ୍ୱରେ ମଣିନାଥପୁର ଏବଂ ଏହି ସ୍ଥାନରେ ପୁରାତନ ଏକ ଗଡ଼ର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ । ସେହି ପବିତ୍ର ବୈତରଣୀ ନଦୀର ନିମ୍ନଭାଗ ଅର୍ଥାତ୍ ତଳ ମୁଣ୍ଡରେ ଯାଜପୁର ଠାରୁ ମାତ୍ର ଅଳ୍ପ କିଛି ଦୂରରେ ପ୍ରଭୁ ସିଦ୍ଧେଶ୍ୱର ଅବସ୍ଥାପିତ । ଏଠାରେ ଏକ ଶିଳାଲେଖ ଆଜି ମଧ୍ୟ ଦୃଷ୍ଟିଗୋଚର ହୁଏ ଏବଂ ସେହି ସିଦ୍ଧେଶ୍ୱର ମନ୍ଦିର ତଥା ବୈତରଣୀ ନଦୀର ତୀର ଦେଶରେ ଏକ ସୁପ୍ରସିଦ୍ଧ ମେଳା ଅଶୋକାଷ୍ଟମୀରେ ଅନୁଷ୍ଠିତ ହୁଏ । ଏହାକୁ ଅଶୋକାଷ୍ଟମୀ ମେଳା ବା ରସିକାକଡ଼ି ମେଳା ବୋଲି କୁହାଯାଏ । ଏହାର କିଛିଦୂର ତଳ ଅଂଶରେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ବୈତରଣୀର ଅପର ପାର୍ଶ୍ୱରେ ବିଦ୍ୟମାନ । ଏହି ପ୍ରାନ୍ତର ସୁବିଦିତ ଯୁଦ୍ଧକ୍ଷେତ୍ର ଗୋହିରାଟିକିରି । ଏଠାରେ ଓଡ଼ିଶାର ଶେଷ ସ୍ୱାଧୀନରାଜା ମୁକୁନ୍ଦଦେବ କଳାପାହାଡ଼ ସହିତ ଯୁଦ୍ଧରତ ଥିବା ସମୟରେ ଶିଖିମନାଇଙ୍କ ଦ୍ୱାରା ନିହତ ହୋଇଥିଲେ । ସେ କଳଙ୍କମୟ ଇତିହାସ ଆଜି ମଧ୍ୟ ଓଡ଼ିଆ ଜାତି ଭୁଲିପାରି ନାହିଁ ।

ଯାଜପୁରର ବୈତରଣୀ ତୀର ଦଶାଶ୍ୱମେଧ ଘାଟ ଭାବରେ ବେଶ୍ ସୁବିଦିତ । କିମ୍ବଦନ୍ତୀ କହେ ରାଜା ଯଯାତି କେଶରୀ ଏଠାରେ ଦଶାଶ୍ୱମେଧ ଯଜ୍ଞ ସମାପନ କରି ରାଜ ଚକ୍ରବର୍ତ୍ତୀ ହୋଇଥିଲେ । ଏହି ଦଶାଶ୍ୱମେଧ ଘାଟରେ ଆଜି ପର୍ଯ୍ୟନ୍ତ ଚୈତ୍ର ମାସରେ ବାରୁଣୀ ମେଳା ନାମରେ ଏକ ସୁପ୍ରସିଦ୍ଧ ମେଳା ଅନୁଷ୍ଠିତ ହୁଏ । ଲୋକେ ବାରୁଣୀ ଯୋଗ ସମୟରେ ଏହି ଘାଟରେ ସ୍ନାନ କରି ପୁଣ୍ୟ ଅର୍ଜନ କରନ୍ତି । ସେଥିପାଇଁ ଭକ୍ତମାନେ ଶ୍ଳୋକ ପାଠ କରନ୍ତି—

"ବୈତରଣୀ ପାପହାରିଣୀ
ଗଙ୍ଗାୟୀ ମାତୃରୂପିଣୀ"

ଅର୍ଥାତ୍ ପବିତ୍ର ପାପହାରିଣୀ ବୈତରଣୀ ନଦୀ ଗଙ୍ଗାନଦୀ ପରି ମାତୃସ୍ୱରୂପା । ଏହି ଯାଜପୁରରେ ଯଯାତିକେଶରୀ କେଉଁଠାରେ କଟକ ନିର୍ମାଣ କରିଥିଲେ ସେ ସମ୍ପର୍କରେ ସଠିକ ତଥ୍ୟ ପ୍ରାପ୍ତ ନହେଲେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ସ୍ଥାନ ପରିଦର୍ଶନ କଲେ ଇତିହାସର ଅନ୍ଧାରୀ ଗୁହା କେତେକାଂଶରେ ଆଲୋକିତ ହୋଇଯାଏ । ଏହି ସ୍ଥାନଗୁଡ଼ିକ ମଧ୍ୟରେ ବିନ୍ଧ୍ୟଗିରିର ଶେଷାଂଶ, ପୀରବଖାର ବିଦ୍ୟମାନ ଥିବା ସ୍ଥାନ, ମଣିନାଥପୁରର ଭଗ୍ନ ଗଡ଼, ବରାହନାଥ ବିଦ୍ୟମାନ ଥିବା ଦୀପାଞ୍ଚଳ, ପୁରୁଣା ବଜାର, ଶୁଭସ୍ତମ୍ଭ ବିଦ୍ୟମାନ ଥିବା ଅଞ୍ଚଳ ଏବଂ ଗରିଆପୁର ପ୍ରଭୃତି ଅଞ୍ଚଳକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଐତିହାସିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କଲେ ଆଜିମଧ୍ୟ କିଛି ତଥ୍ୟ ଦୃଷ୍ଟିପଥାରୂଢ଼ ହୁଏ ।

ବଡ଼ ବିଚିତ୍ର କଥା ଯେ ଏକଦା କଟକଭାବେ ସୁ-ବିଦିତ ଅମରାବତୀ, ଚୌହାର, ବଡ଼ାନାସୀ ଏବଂ ସାରଙ୍ଗଗଡ଼ ଇତ୍ୟାଦି ସ୍ଥାନରେ ଯେଉଁ ଅଧିବାସୀମାନେ ପରିଦୃଷ୍ଟ ହୁଅନ୍ତି ସେମାନଙ୍କ ମଧ୍ୟରୁ ସେ ସମୟରେ ରାଜକାର୍ଯ୍ୟ ପରିଚାଳନା କରୁଥିବା ବ୍ରାହ୍ମଣ,

କରଣ, କ୍ଷତ୍ରୀୟ ବଂଶଧରମାନେ ଦୃଷ୍ଟିଗୋଚର ନହେଉଥିବାବେଳେ ଯାଜପୁର ଅଞ୍ଚଳରେ ଏବେ ମଧ୍ୟ ଏ ବଂଶୀୟ ବ୍ୟକ୍ତିମାନେ ବହୁଳ ଭାବରେ ଅବସ୍ଥାନ କରୁଥିବାର ଲକ୍ଷ୍ୟ କରାଯାଏ ।

ପୁଣି କମ୍ବଦନ୍ତୀ କହେ—ରାଜା ଯଯାତିକେଶରୀ ଦଶାଶ୍ୱମେଧ ଯଜ୍ଞ କରିବା ପାଇଁ କାନ୍ୟକୁବ୍‌ଜରୁ ଦଶ ସହସ୍ର ବୈଦିକ ବ୍ରାହ୍ମଣ ଅର୍ଥାତ୍ ଋକ୍‌ବେଦୀ, ଯଜୁଃବେଦୀ ଓ ଶାମବେଦୀ ବ୍ରାହ୍ମଣମାନଙ୍କୁ ଅଣାଇଥିଲେ । ଏମାନଙ୍କର ବଂଶଧରମାନେ ଆଜିମଧ୍ୟ ଯାଜପୁର ଅଞ୍ଚଳରେ ପରିଦୃଷ୍ଟ ହୁଅନ୍ତି ।

ଏ କମ୍ବଦନ୍ତୀ ସତ୍ୟ ହେଉ ଅଥବା ମିଥ୍ୟା ହେଉ ଯାଜପୁର ଅଞ୍ଚଳ ଯେ ଏକ ଉର୍ବର ଶସ୍ୟଶ୍ୟାମଳା ଓ ସଂସ୍କୃତି ପରିପୂର୍ଣ୍ଣ ଅଞ୍ଚଳ ଥିଲା ଏଥିରେ ସନ୍ଦେହ ନାହିଁ । ସପ୍ତନଦୀର ଶଯ୍ୟାଉପରେ ଗଢ଼ିଉଠିଥିଲା ଏହି ଯାଯପୁର କଟକ ବା ଯାଜପୁର ତୀର୍ଥ । ସେହି ନଦୀ ଗୁଡ଼ିକର ଛିନ୍ନାବଶେଷ ଏବେ ମଧ୍ୟ ଦୃଷ୍ଟିପଥାରୂଢ଼ ହୁଏ । ଏହି ନଦୀ ଗୁଡ଼ିକ ହେଲା, ବୈତରଣୀ, ଗଙ୍ଗୋତ୍ରୀ, ହଂସରେଖା, ପଦ୍ମରେଖା, ମଦବୃରେଖା, ବେଙ୍ଗବଣ୍ଟି ଏବଂ କୃପା । ଏପର୍ଯ୍ୟନ୍ତ ବେଙ୍ଗାକୂଳ, ହଂସିଆକୂଳ ଓ ଗେଙ୍ଗୁଟୀକୂଳ କହି ଲୋକେ ଏ ନଦୀ ଗୁଡ଼ିକୁ ଚିହ୍ନଟ କରନ୍ତି । ତେବେ ସେ ଯାହାହେଉ ଯାଜପୁର ଅଞ୍ଚଳରେ ଉତ୍କଳର ଆଦିସଭ୍ୟତାର ସୂର୍ଯ୍ୟାଲୋକ ଯେ ପ୍ରଥମେ ଉଦ୍‌ଭାସିତ ହୋଇଥିଲା ଏବଂ ସେହି ସୂର୍ଯ୍ୟରଶ୍ମି ପରବର୍ତ୍ତୀ ସମୟରେ ସମଗ୍ର ଉତ୍କଳ, କଳିଙ୍ଗ ଏବଂ ଓଡ଼ିଶାକୁ ଆଲୋକିତ କରି ମହିମାମଣ୍ଡିତ କରିଥିଲା, ଏଥିରେ ସନ୍ଦେହ ନାହିଁ । ତାର ମୂକସାକ୍ଷୀ ଦ୍ୱିଭୁଜା ମା' ବିରଜା ବିନ୍ଧ୍ୟା-
ଚଳରେ ଅବସ୍ଥିତ ତ୍ରିଲୋଚନେଶ୍ୱର, ଦ୍ୱୀପାଞ୍ଚଳରେ ଅବସ୍ଥିତ ବରାହନାଥ, ଦଶାଶ୍ୱମେଧ ଘାଟରେ ପୂଜିତା ସପ୍ତମାତୃକା, ଶୁଭସ୍ତମ୍ଭ ଏବଂ ବିକ୍ଷିପ୍ତଭାବେ ବିଭିନ୍ନ ସ୍ଥାନରେ ପଡ଼ିଥିବା ଅସଂଖ୍ୟ ଜୀର୍ଣ୍ଣଶୀର୍ଣ୍ଣ ଭଗ୍ନମୂର୍ତ୍ତି । ଆଜିର ଯୁଗରେ ଏଗୁଡ଼ିକର ଅନୁସନ୍ଧାନ ଓ ଐତିହାସିକ ବିଶ୍ଳେଷଣ ଓଡ଼ିଆ ଜାତିର ସାଂସ୍କୃତିକ ଚିନ୍ତାଧାରକୁ ନିଶ୍ଚୟ ସମୃଦ୍ଧ କରିବ ।



# ସଂସ୍କୃତିର ପୀଠ ଯାଜପୁର କଟକ

**ଶ୍ରୀ ସୂର୍ଯ୍ୟମଣି ଖୁଣ୍ଟିଆ**

ଭାରତୀୟ ସଂସ୍କୃତି ଉପରେ ଆଲୋଚନା କଲାବେଳେ ଉତ୍କଳୀୟ ସଂସ୍କୃତି, ବିଶେଷ କରି ଜଗନ୍ନାଥ ସଂସ୍କୃତିକୁ ବାଦ୍‌ଦେଲେ ଯେପରି ଆଲୋଚନା ପୂର୍ଣ୍ଣାଙ୍ଗ ହୁଏନାହିଁ, ଠିକ୍ ସେହିପରି ଉତ୍କଳୀୟ ସଂସ୍କୃତି ଉପରେ ଆଲୋଚନା କଲାବେଳେ ଯାଜପୁରର ସଂସ୍କୃତିକୁ ବାଦ୍ ଦିଆଯାଇ ନପାରେ । ତେବେ ପ୍ରଶ୍ନଉଠେ, ଯାଜପୁରର କ'ଣ ଏକ ସ୍ୱତନ୍ତ୍ର ସଂସ୍କୃତି ଅଛି ? ଉତ୍ତରରେ ଅତି ସାଧାରଣ ଭାବରେ କୁହାଯାଇପାରେ ଯେ ସମଗ୍ର ଓଡ଼ିଶାରେ ଏହାର ଏକ ପରିଚୟ ଅଛି । ତେବେ ଏହି ଯାଜପୁରର ପରିଚୟ ଦେବାକୁ ଗଲାବେଳେ ଆମେ କ'ଣ କେବଳ ଯାଜପୁର ସହର ବା ଯାଜପୁର ମ୍ୟୁନିସ୍‌ପାଲିଟି ଅଞ୍ଚଳକୁ ନେଇ ବିଚାର କରିବା ନା ସମଗ୍ର ଯାଜପୁରମଣ୍ଡଳକୁ ବିଚାର କରିବା ? ବରଂ ଅଧିକ ସମୀଚୀନ ହେବ ସମଗ୍ର ଯାଜପୁର ଅଞ୍ଚଳ ନେଇ ବିଚାର କରିବା ।

ଆଧୁନିକ ଯାଜପୁର ସବ୍‌ଡିଭିଜନ ସାତଟି ବିଧାନସଭା ନିର୍ବାଚନମଣ୍ଡଳୀ, ଦଶଟି ବ୍ଲକ, ଗୋଟିଏ ମ୍ୟୁନିସିପାଲିଟି, (ଯାଜପୁର) ଗୋଟିଏ ବିଜ୍ଞାପିତ ଅଞ୍ଚଳ (ଯାଜପୁର ରୋଡ୍) ୧୭୭ଟି ଗ୍ରାମ ପଞ୍ଚାୟତ, ୧୭୮୫ଟି ଗ୍ରାମକୁ ନେଇ ଗଠିତ ହୋଇଛି । ପ୍ରାୟ ୧୨ ଲକ୍ଷ ଲୋକ ଏହି ଅଞ୍ଚଳରେ ବାସ କରନ୍ତି । ପୁଣ୍ୟତୋୟା ବୈତରଣୀ ଓ ବିରୂପାର ମଧ୍ୟବର୍ତ୍ତୀ ଅଞ୍ଚଳ ହିଁ ଯାଜପୁର ଅଞ୍ଚଳ ତା ମଧ୍ୟରେ ବ୍ରାହ୍ମଣୀ, ଖରସ୍ରୋତା, ଗେଙ୍ଗୁଟି, କେଲୁଅ, ବୁଢ଼ା ଇତ୍ୟାଦି ବହୁ ଶ୍ରେଷ୍ଠବଡ଼ ନଦୀ, ରତ୍ନଗିରି, ଉଦୟଗିରି, ଲଳିତଗିରି ଅଳତିଗିରି, ଚଣ୍ଡୀଖୋଲ ପାହାଡ଼, ଧବଳଗିରି ପରି ବହୁଗିରି ସୁଶୋଭିତ, ଏ ଅଞ୍ଚଳ ଯୁଗ ଯୁଗଧରି ଭାରତର ବିଭିନ୍ନ ପ୍ରାନ୍ତରୁ ବିଦ୍ୱାନମାନଙ୍କୁ ଆକର୍ଷଣ କରି ଆସିଛି ।

ଯାଜପୁରମଣ୍ଡଳର କେନ୍ଦ୍ରବିନ୍ଦୁ ଯାଜପୁର ସହରର ସାଂସ୍କୃତିକ ଐତିହ୍ୟ ଏବଂ ଜୀବନଧାରା ଉପରେ ପ୍ରଥମେ ଆଲୋକପାତ କରିବା ସମୀଚୀନ ହେବ । ଯାଜପୁର ସହର ପୁଣ୍ୟତୋୟା ବୈତରଣୀ ତଟ ଦେଶରେ ଅବସ୍ଥିତ । ଏହା ଏକ ପୁରାତନ ଓ ପ୍ରସିଦ୍ଧ ତନ୍ତ୍ରପୀଠ ଥିଲା । ମହାଭାରତ ଯୁଗରୁ ଏହା ମଧ୍ୟ ଧର୍ମକ୍ଷେତ୍ରଭାବେ ସୁପରିଚିତ । ବିଷ୍ଣୁପୁରାଣରେ ବର୍ଣ୍ଣିତ ଗୟାସୁର ଉପାଖ୍ୟାନରେ ଏହା ହେଉଛି 'ନାଭିଗୟା' । ବ୍ରହ୍ମପୁରାଣ ଏବଂ କପିଳ ସଂହିତା ଏହାର ପବିତ୍ରତା ଓ ଧର୍ମ ସମ୍ବନ୍ଧରେ ଆଲୋକପାତ

କରନ୍ତି । ଯାଜପୁର ଭୂମିର ଆରାଧ୍ୟା ଦେବୀ ହେଉଛନ୍ତି ମହାମାୟୀ ବିରଜା । କୁବ୍ଜିକା ତନ୍ତ୍ର ଅନୁସାରେ ୪୨ ସିଦ୍ଧପୀଠ ମଧ୍ୟରୁ 'ବିରଜା' ଅନ୍ୟତମ ପୀଠ । 'ଜ୍ଞାନାର୍ଣ୍ଣବତନ୍ତ୍ର'ରେ ବର୍ଣ୍ଣିତ ଷଡ଼ଙ୍ଗ ପଚିଶଟି ପୀଠ ମଧ୍ୟରେ ବିରଜା ପୀଠର ନାମ ଦେଖିବାକୁ ମିଳେ । 'ବୃହନ୍ନୀଳତନ୍ତ୍ର'ର ଅଷ୍ଟାଦଶପୀଠ ଓ ପୀଠନିର୍ଣ୍ଣୟ ଅନୁସାରେ ଏହା ଏକ ଶାକ୍ତପୀଠ ।

ଅଭିଲେଖରେ ପ୍ରଥମେ 'ବିରଜା' ନାମ ୬ଷ୍ଠ ଶତାବ୍ଦୀର ଶେଷ ଭାଗରେ ଥିବା ପୃଥ୍ୱୀ ମହାରାଜଙ୍କ ପାରଳାଖେମୁଣ୍ଡି ତାମ୍ରଫଳକରୁ ମିଳିଥାଏ । ୭ମ ଶତାବ୍ଦୀର ଭାନୁଦତ୍ତଙ୍କ ତାମ୍ରପତ୍ରରେ 'ବିରଜା' ନାମ ମିଳିଥାଏ । ଉଦ୍ଭବ କେଶରୀ (୭ମ ଶତାବ୍ଦୀ) ତାଙ୍କ ରାଜଧାନୀ 'ବିରଜାକ୍ଷେତ୍ର' ରେ ପ୍ରତିଷ୍ଠା କରିଥିଲେ । ଭୌମକରଙ୍କ ସମୟରେ ଜଣାପଡ଼େ ଯେ ଶାନ୍ତିକରଦେବ 'ବିରଜା'ର ଅଧିବାସୀ ଥିଲେ । ଭୌମକରଙ୍କ ସମୟରେ ଗୁହଦେବ ପାଟକ ବା ଗୁହେଶ୍ୱର ପାଟକ ଉତ୍କଳର ରାଜଧାନୀ ଥିଲା, ଏହି ବଂଶର ପୂର୍ବତନ ରାଜାମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ । କିନ୍ତୁ—ପରବର୍ତ୍ତୀ ରାଜାମାନେ ଶୈବ ଓ ଶାକ୍ତ ଥିବାର ପ୍ରମାଣ ମିଳେ । ଏହି ବଂଶର ତ୍ରିଭୁବନ ମହାଦେବୀ ନିଜକୁ କାତ୍ୟାୟନୀଙ୍କ ସହିତ ତୁଳନା କରିଥିଲେ । ଯାଜପୁରରୁ ମିଳିଥିବା ଅଭିଲେଖ ସଂଯୁକ୍ତ ଏକ ଚାମୁଣ୍ଡା ମୂର୍ତ୍ତିରୁ ଜଣାଯାଏ ଯେ ଏହା ଅଷ୍ଟମ ଭୌମକର ରାଜବଂଶର ଜନୈକା ରାଣୀ ବତ୍ସା ଦେବୀଙ୍କ କୀର୍ତ୍ତି ।

ଭୌମକରଙ୍କ ପରେ ଆସିଲେ ସୋମବଂଶୀ ରାଜାମାନେ । ଖ୍ରୀଷ୍ଟୀୟ ଯଯାତି ମହାଶିବ ଗୁପ୍ତଙ୍କ ସମୟରେ କୋଶଳରୁ ରାଜଧାନୀ ଗୁହେଶ୍ୱର ପାଟକକୁ ଉଠାଇ ନିଆଯାଇ ତାହାର ନୂତନ ନାମ ଅଭିନବ ଯଯାତି ନଗର ଦିଆଗଲା । ତବାକତ୍-ଇ-ନାସିର, ତାରିକ୍-ଇ-ଫିରୋଜ ସାହିରୁ ଜଣାପଡ଼େ ଯେ ଯଯାତି ନଗର ହେଉଛି ଯାଜନଗର ଏବଂ କାଳକ୍ରମେ ନଗର ଉଠାଇ ନିଆଯାଇ 'ପୁର' ଯୁକ୍ତ ହୋଇ ଏହା ଯାଜପୁର ହେଲା ।

ମଧ୍ୟଯୁଗରେ ଯାଜପୁର ଏକ ପ୍ରସିଦ୍ଧ ମାତୃକା ଦେବୀ କ୍ଷେତ୍ର ରୂପେ ପରିଚିତ ଥିଲା । 'ବିରଜା' ଏଠାରେ ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜିତା ହେଲେ । ଦଶାଶ୍ୱମେଧ ଯଜ୍ଞ ଅନୁଷ୍ଠାନ ଯୋଗୁ ଯାଜପୁରକୁ ପୂର୍ବେ ଯଜ୍ଞପୁର କୁହାଯାଉଥିବାର ପ୍ରମାଣ ମିଳେ । ସେହିପରି ସେହି ଯଜ୍ଞର ବ୍ରହ୍ମାଗ୍ନିରୁ ବିରଜା ଆବିର୍ଭୂତା ବୋଲି କୁହାଯାଏ । ବିରଜାଙ୍କ ଯଜ୍ଞ ମୂର୍ତ୍ତି ସର୍ବଦା ଲୁଗାଦ୍ୱାରା ଆଚ୍ଛାଦିତ । କିନ୍ତୁ ବର୍ଣ୍ଣନାରୁ ଜଣାଯାଏ ଯେ ଏହା ଏକ ଦୁର୍ଗାମୂର୍ତ୍ତି । ସେ ଦ୍ୱିଭୁଜା, ସିଂହବାହିନୀ ଓ ମହିଷାସୁରର ବଧକାରିଣୀ ।

ଯଦି ଆମେ ବିରଜାଙ୍କର ଆବିର୍ଭାବ ସମ୍ପର୍କରେ ଉପରୋକ୍ତ ମତକୁ ଗ୍ରହଣ କରିନେଉ ତେବେ ଯଯାତିଙ୍କ ସମୟରେ ବିରଜାଙ୍କ ଆବିର୍ଭାବ ଘଟିଥିଲା ବୋଲି ଧରିନେବାକୁ ହେବ । ଅନ୍ୟାନ୍ୟ ଗ୍ରନ୍ଥ ତଥା କିମ୍ବଦନ୍ତୀମାନଙ୍କରୁ ଜଣାପଡ଼େ ଯେ ଯଯାତି କୋଶଳରୁ ଆସି ବୈତରଣୀ ତଟରେ ବିନ୍ଧ୍ୟଗିରି ଉପରେ ଦେବୀ ବିରଜାଙ୍କ ପ୍ରତିମା ଅବଲୋକନ କରି

ଥିଲେ ଏବଂ ସେହି ସିଂହବାହିନୀ ମୂର୍ତ୍ତିର ଆରାଧନା କରୁଥିଲେ । ପରେ କନ୍ୟକୁବ୍‌ଜରୁ ଦଶହଜାର ବ୍ରାହ୍ମଣ ଆଣାଇ ବୈତରଣୀ ତଟରେ ଦଶାଶ୍ୱମେଧ ଯଜ୍ଞ କରୁଥିଲେ । ସେହି ସ୍ଥାନ ଆଜି ପର୍ଯ୍ୟନ୍ତ ଦଶାଶ୍ୱମେଧ ଘାଟ ନାମରେ ପରିଚିତ । ଏହା ସତ୍ୟ ଯେ ଯଯାତିଙ୍କ ସମୟରୁ ବିରଜା ଦେବୀଙ୍କ ପ୍ରସିଦ୍ଧି ହୋଇ ମାତ୍ର ବହୁ ପୂର୍ବରୁ ଏଠାରେ ବିରଜାଙ୍କ ପୂଜା ହେଉଥିଲା । ପ୍ରାଚୀନ ଶକ୍ତି ମୂର୍ତ୍ତିମାନଙ୍କ ମଧ୍ୟରେ ବିରଜା ସର୍ବ ପ୍ରାଚୀନା । ସେ ଦ୍ୱିଭୁଜା । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକ ବେଳକୁ ତାଙ୍କର ପ୍ରତିଷ୍ଠା ହୋଇ ଥିଲା ବୋଲି ଐତିହାସିକମାନେ ମତ ଦେଇଥାଆନ୍ତି । ବିରଜାଙ୍କ ନାମ ମଧ୍ୟ ବ୍ୟାସଙ୍କ ମହାଭାରତରେ ଦୃଷ୍ଟିପଥାରୂଢ଼ ହୁଏ । ଯଦି ମହାଭାରତର ରଚନା କାଳ ଯଦି ଖ୍ରୀଷ୍ଟପୂର୍ବ ୧୫୦୦ ବୋଲି ଧରାଯାଏ, ତେବେ ବିରଜା ସାଢ଼େ ତିନିହଜାର ବର୍ଷ ପୂର୍ବରୁ ଅଧିଷ୍ଠିତା ବୋଲି ବୁଝାଯିବ । ମହାଭାରତ ବନପର୍ବ ୮୩ ଅଧ୍ୟାୟରେ ଉଲ୍ଲେଖ ଅଛି—

> ତତୋ ବୈତରଣୀ ଗତ୍ୱେତ୍ ସର୍ବପାପ ପ୍ରମୋଚନୀମ୍
> ବିରଜାତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ । (ମହାଭାରତ)

ବିରଜାଙ୍କ ଭଳି ଦ୍ୱିଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ସମଗ୍ର ଭାରତରେ ବିରଳ । ସାଢ଼େ ତିନିହଜାର ବର୍ଷ ପୂର୍ବ ବିରଜାଙ୍କ ମୂର୍ତ୍ତି କିପରି ଥିଲା ତାହା ଜାଣିବା ସହଜ ନୁହେଁ । କେତେକଙ୍କ ମତରେ ପ୍ରଥମେ ବୌଦ୍ଧମାନେ ଏଭଳି ମୂର୍ତ୍ତି ଗଠନ କରି ଉପାସନା କରୁଥିଲେ । ଅଶୋକଙ୍କ ସମୟରୁ ବୌଦ୍ଧଧର୍ମ କେବଳ ଓଡ଼ିଶା ନୁହେଁ ସମଗ୍ର ଭାରତରେ ବିସ୍ତାର ଲାଭ କରିଥିଲା । ସେ ତରଫରେ ଯାଜପୁର ବୌଦ୍ଧଧର୍ମର ଏକ ପ୍ରଧାନ କେନ୍ଦ୍ର ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ତ୍ତମାନ ମଧ୍ୟ ବହୁ ବୁଦ୍ଧ ମୂର୍ତ୍ତି ଯାଜପୁରର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳନ୍ତି । ବର୍ତ୍ତମାନର ଦୁର୍ଗା ସେହି ସମୟରେ ବୌଦ୍ଧଙ୍କ ଦେବତା ତାରା ବା ପ୍ରଜ୍ଞାପାରମିତା ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ଯାଜପୁର ଥିଲା ବୌଦ୍ଧ ବଜ୍ରଯାନର ଏକ ପ୍ରସିଦ୍ଧ ପୀଠ । ତେଣୁ ବିଭିନ୍ନ ପ୍ରକାରର ତାରା, ହେରୁକା, କୁରୁକୁଲା ଏବଂ ଅପରାଜିତାଙ୍କ ମୂର୍ତ୍ତି ଯାଜପୁର, ରତ୍ନଗିରି, ଉଦୟଗିରି, ଲଳିତଗିରି ପ୍ରଭୃତି ସ୍ଥାନରୁ ମିଳିଥାଏ ।

ଏହା ବ୍ୟତୀତ ଶକ୍ତି ପୂଜାରେ ଯାଜପୁରର ପ୍ରସିଦ୍ଧି ଅତୀତରେ ବହୁଦିନ ଧରି ରହିଥିବାର ପ୍ରମାଣ କପିଳ-ସଂହିତା ସାରଳାଙ୍କ ମହାଭାରତ ଏବଂ ବହୁ ଅବକାଶରୁ ମିଳିଥାଏ । ଶାକ୍ତମାନଙ୍କ ମତରେ ଦୁର୍ଗା ହିଁ ଈଶ୍ୱର ବା ଶିବଙ୍କର ଶକ୍ତି ଓ ପତ୍ନୀ । ସତୀଙ୍କ ଅଙ୍ଗପ୍ରତ୍ୟଙ୍ଗ ପତିତ ହୋଇଥିବା ସ୍ଥାନଗୁଡ଼ିକ ମୁଖ୍ୟତଃ ପୀଠ ରୂପେ ଚିହ୍ନିତ ହୋଇ-ସେମାନଙ୍କ ମତରେ ଯାଜପୁରରେ ସତୀଙ୍କର ନାଭି ପତିତ ହୋଇଥିଲା । ତେଣୁ ଏହାକୁ ନାଭିକ୍ଷେତ୍ର ବୋଲି କୁହାଯାଇପାରେ । ଭିନ୍ନ ମତରେ—ଗୟାସୁରଙ୍କ ନାଭି ପାଇଁ ଏହା ନାଭିକ୍ଷେତ୍ର ରୂପେ ସର୍ବବିଦିତ ।

ଯାଜପୁର କେବଳ ଶାକ୍ତ ସଂସ୍କୃତିର ପୀଠ ନୁହେଁ । ଯାଜପୁରର ଗଳିକନ୍ଦି ବୁଲି ଆସିବା ପରେ ଯେକୌଣସି ବ୍ୟକ୍ତିର ମନେ ହେବ ଯେ ଯାଜପୁର ପଞ୍ଚଦେବତା

ଯଥା—ଗଣେଶ, ଶଙ୍କର, ବିଷ୍ଣୁ, ଶିବ ଓ ଦୁର୍ଗାଙ୍କର ଆଦିପୀଠ ଏବଂ ଗାଣପତ୍ୟ, ସୌର ବୈଷ୍ଣବ, ଶୈବ ତଥା ଶାକ୍ତ ସଂସ୍କୃତିର ଏକ ମିଳନ ସ୍ଥାନ ।

ପୁରାଣ ମତରେ ଯାଜପୁରକୁ ଶଙ୍କର କ୍ଷେତ୍ର, ହରଗୌରୀ କ୍ଷେତ୍ର, ଅବିମୁକ୍ତ କ୍ଷେତ୍ର ପ୍ରଭୃତି ନାମରେ ନାମିତ କରାଯାଇଛି ।

ଶୈବମାନଙ୍କ ପାଇଁ କାଶ୍ୟପେଶ୍ୱର, ହରକେଶ୍ୱର, ଗଙ୍ଗେଶ୍ୱର, ଖାଳକେଶ୍ୱର, ଘଟଭୂତେଶ୍ୱର, ବୈଦ୍ୟନାଥ ମୁକ୍ତେଶ୍ୱର, ଗୋକର୍ଣ୍ଣେଶ୍ୱର, ହାଟକେଶ୍ୱର, ମାର୍କଣ୍ଡେଶ୍ୱର, ଅମରେଶ୍ୱର, ଚନ୍ଦ୍ରଗୁପ୍ତେଶ୍ୱର ଓ ମାନସେଶ୍ୱରଙ୍କୁ ମିଶାଇ ତ୍ରୟୋଦଶ ରୁଦ୍ର ଏବଂ ଅଷ୍ଟୋତ୍ତର ଶତ ଶିବଲିଙ୍ଗ ଯାଜପୁରରେ ବିଭିନ୍ନ ସ୍ଥାନରେ ପୂଜିତ ହୁଅନ୍ତି । କେବଳ ସେତିକି ନୁହେଁ, ଯାଜପୁରଠାରୁ ଅନତି ଦୂରରେ ପୂର୍ବଦିଗକୁ ପବିତ୍ର ବୈତରଣୀର ପଠା ଉପରେ ସିଦ୍ଧେଶ୍ୱରଙ୍କ ପୀଠ ଓ ପ୍ରତିବର୍ଷ ଅଶୋକାଷ୍ଟମୀରେ ଏହି ପୀଠରେ ବିରାଟ ମେଳା ଆୟୋଜନ ଶୈବ ସଂସ୍କୃତିର ପରିଚୟ ପ୍ରଦାନ କରେ ।

ଏ କ୍ଷେତ୍ରର ଭୈରବୀ 'ବିରଜା' ଏବଂ ଭୈରବ ବିଷ୍ଣୁ ବରାହ ଅଟନ୍ତି । ବୈତରଣୀର ତଟଦେଶର ଦଶାଶ୍ୱମେଧ ଘାଟର ଅନତିଦୂରରେ ଯଜ୍ଞବରାହଙ୍କ ମନ୍ଦିର ଦଣ୍ଡାୟମାନ ଏବଂ ଏହି ମନ୍ଦିରରେ ଯଜ୍ଞବରାହଙ୍କ ସୁନ୍ଦର ପ୍ରତିମା ପୂଜିତ ହୁଅନ୍ତି । ବରାହ ମାଧବଙ୍କ ବ୍ୟତୀତ ଆଦିମାଧବ, ଅନନ୍ତ ମାଧବ, ଗଦାଧର ମାଧବ, ପୁରୁଷୋତ୍ତମ ମାଧବ, ନରକାନ୍ତ ମାଧବ, ବାସୁଦେବ ମାଧବ, ଚମ୍ପକ ମାଧବ, ହରିହର ମାଧବ, ସିଦ୍ଧିମାଧବ ଆଦି ଏ ପୀଠରେ ପ୍ରତିଷ୍ଠିତ ଓ ପୂଜିତ ।

ମାଧବମାନଙ୍କ ବ୍ୟତୀତ ଜଗନ୍ନାଥଙ୍କ ସୁଦୃଶ୍ୟ ମନ୍ଦିରରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ପରମ ବୈଷ୍ଣବୀ ଦେବୀ ଲକ୍ଷ୍ମୀଙ୍କର ମନ୍ଦିରରେ ଲକ୍ଷ୍ମୀ ମଧ୍ୟ ଆରାଧିତା । କେବଳ ସେତିକି ନୁହେଁ, ଯାଜପୁର ସହର ଅନ୍ତର୍ଗତ ନରହରିପୁର ଶାସନ ନିକଟରେ ବିଷ୍ଣୁଙ୍କର ବାହାନ ଗରୁଡ଼ଙ୍କର ସ୍ୱତନ୍ତ୍ର ମନ୍ଦିର ରହିଛି ଓ ଗରୁଡ଼ଙ୍କର ପୂଜା ମଧ୍ୟ କରାଯାଉଛି ।

ସୌରମାନଙ୍କର ପରମ ଆରାଧ୍ୟ ଦେବତା ସୂର୍ଯ୍ୟଙ୍କର ମନ୍ଦିର ଯଜ୍ଞବରାହଙ୍କ ମନ୍ଦିର ପାର୍ଶ୍ୱରେ ଦଣ୍ଡାୟମାନ । ସୂର୍ଯ୍ୟ ମନ୍ଦିର ପ୍ରାଚୀନ ନୁହେଁ, ହେଲେ ଯାଜପୁରଠାରେ ସୂର୍ଯ୍ୟପୂଜା ଯେ ବହୁ ପୁରାତନ କାଳରୁ ପ୍ରଚଳିତ ଏଥିରେ ସନ୍ଦେହ ନାହିଁ ।

ଶାକ୍ତମାନଙ୍କର ପରମାରାଧ୍ୟା ବିରଜାଙ୍କୁ ଛାଡ଼ିଦେଲେ ଅଷ୍ଟଭୈରବ, ଅଷ୍ଟଚଣ୍ଡୀ ଓ ନବଦୁର୍ଗାଙ୍କର ଦର୍ଶନ ଯାଜପୁର କ୍ଷେତ୍ରରେ ମିଳିଥାଏ । ଅଷ୍ଟଭୈରବ ଯଥା— ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ଗୁରୁଭୈରବ, କାଳ ଭୈରବ, ତାମ୍ରଚୂଡ଼ ଭୈରବ, କ୍ରୋଧ ଭୈରବ, ଚନ୍ଦ୍ରଚୂଡ଼ ଭୈରବ ଏ କ୍ଷେତ୍ରର କ୍ଷେତ୍ରପାଳ ତଥା ରକ୍ଷାକର୍ତ୍ତା ଅଟନ୍ତି ।

ଅବିମୁକ୍ତ କ୍ଷେତ୍ର ଯାଜପୁରରେ ମହାଶକ୍ତି ସଦୃଶୀ ଅଷ୍ଟଚଣ୍ଡୀଙ୍କର ପୂଜା ଅର୍ଚ୍ଚନାର ବିଧି ପ୍ରଚଳିତ । ଯଥା—

"ଉଗ୍ରଚଣ୍ଡା ପ୍ରଚଣ୍ଡା ଚ ଚଣ୍ଡୋଗ୍ରା ଚଣ୍ଡନାୟିକା
ଚଣ୍ଡା ଚଣ୍ଡବତୀ ଚୈବ ଚଣ୍ଡରୂପାତି ଚଣ୍ଡିକା ।"

ଚଣ୍ଡୀଙ୍କ ସାଙ୍ଗକୁ ନବଦୁର୍ଗାଙ୍କର ପୂଜାର୍ଚ୍ଚନା ଶାକ୍ତ ସଂସ୍କୃତିକୁ ଅଧିକ ଦୃଢ଼ୀଭୂତ କରେ ।

ଶାସ୍ତ୍ରମତରେ—

"ପ୍ରଥମଂ ଶୈଳ ପୁତ୍ରୀତି ଦ୍ୱିତୀୟଂ ବ୍ରହ୍ମଚାରିଣୀ
ତୃତୀୟ ଚନ୍ଦ୍ରଘଣ୍ଟେତି କୁଷ୍ମାଣ୍ଡେତି ଚତୁର୍ଥକମ୍
ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀ ତଥା
ସପ୍ତମଂ କାଳରାତ୍ରିତି ମହାଗୌରୀତି ଚାଷ୍ଟମମ୍
ନବମଂ ସିଦ୍ଧି ଦାତ୍ରୀତି ନବଦୁର୍ଗା ପ୍ରକୀର୍ତ୍ତିତା ।"

ଦଶାଶ୍ୱମେଧ ଘାଟ ଉପରେ ସପ୍ତମାତୃକାଙ୍କ ମନ୍ଦିର ଏବଂ ଚାମୁଣ୍ଡାର ମୂର୍ତ୍ତି ସମୃଦ୍ଧ ଶାକ୍ତ ସଂସ୍କୃତିର ବାର୍ତ୍ତା ବହନ କରନ୍ତି ।

ଯାଜପୁର କ୍ଷେତ୍ରରେ ଗାଣପତ୍ୟମାନଙ୍କର ଆରାଧ୍ୟ ବିଘ୍ନନାଶନ ଗଣେଶ ବିଭିନ୍ନ ସ୍ଥାନରେ ରହି ସକଳ ବିଘ୍ନ ବିନାଶ କରନ୍ତି । ଶାସ୍ତ୍ରରେ ସେମାନଙ୍କର ନାମ ଏହି ପ୍ରକାରେ କୁହାଯାଇଛି ଯଥା—

"ଏକଦନ୍ତୋ ମହାକାୟଃ କପିଳ ଗଜକର୍ଣ୍ଣକଃ
ଲମ୍ବୋଦରଶ୍ଚ ବିକଟ ବିଘ୍ନନାଶନ ଏବ ଚ
ବିନାୟକୋ ଧୂମ୍ରକେତୁଃ ଗଣାଧ୍ୟକ୍ଷ ତଥୈବ ଚ
ଏକାଦଶେ ଭାଲ ଚନ୍ଦ୍ରଃ ଦ୍ୱାଦଶେତୁ ଗଜାନନ ।"

ଦ୍ୱାଦଶ ଗଣେଶ ଏହି ଅବିମୁକ୍ତ କ୍ଷେତ୍ରରେ ବିଭିନ୍ନ ସ୍ଥାନରେ ରହିଛନ୍ତି ଓ ଅନାଦି କାଳରୁ ମାନବର ସମସ୍ତ ପ୍ରକାର ବିଘ୍ନକୁ ନାଶ କରୁଅଛନ୍ତି ।

ଧର୍ମଧାରଣା ଦୃଷ୍ଟିକୋଣରୁ ଉପରୋକ୍ତ ଆଲୋଚନା କରାଯାଇ ଦେଖାଯାଇ ପାରେ ଯେ—କିଭଳି ଭାବରେ ଯାଜପୁର ଏକ ମିଶ୍ର ସଂସ୍କୃତିର ପୀଠସ୍ଥଳ । ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ସୌର ଓ ଗାଣପତ୍ୟମାନଙ୍କର ମିଳନ ସ୍ଥଳ । ଏହି ପୀଠରେ ସମସ୍ତେ ଏକ ଓ ଅଭିନ୍ନ ।

ଯାଜପୁର 'ନାଭିଗୟା' ଭାବରେ ଆମ ସଂସ୍କୃତିର ଏକ ପ୍ରାଣକେନ୍ଦ୍ର । ସମଗ୍ର ଭାରତବର୍ଷରୁ ଲକ୍ଷାଧିକ ହିନ୍ଦୁ ପ୍ରତିବର୍ଷ ତାଙ୍କର ପିତୃଗଣଙ୍କୁ ଗୟାଶ୍ରାର୍ଥରେ ପିଣ୍ଡଦାନ କରିବା ପାଇଁ ଏଠାକୁ ଆଗମନ କରନ୍ତି । ଏହିଠାରେ ହିଁ ପିଣ୍ଡଦାନ ପୂର୍ଣ୍ଣତା ଲାଭ କରେ । ନାଭିଗୟାକୁ ଛାଡ଼ିଦେଲେ ବ୍ରହ୍ମକୁଣ୍ଡ ଏବଂ ଦଶାଶ୍ୱମେଧ ଘାଟରେ ପିଣ୍ଡଦାନ କଲେ ପିତୃଲୋକମାନେ ସନ୍ତୁଷ୍ଟ ହୁଅନ୍ତି । ବାରୁଣୀ ସ୍ନାନ ପରେ ଦଶାଶ୍ୱମେଧ ଘାଟରେ ପିଣ୍ଡଦାନ କରି ହିନ୍ଦୁମାନେ କୃତ କୃତ୍ୟ ହୁଅନ୍ତି । ବାରୁଣୀ ମେଳା ଯାଜପୁର ସଂସ୍କୃତିର

ଏକ ଅପରିହାର୍ଯ୍ୟ ଅଙ୍ଗ । ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥି ଓ ଶତଭିଷା ନକ୍ଷତ୍ର ଯୁକ୍ତରେ ଗଙ୍ଗା ବୈତରଣୀ ଓ ମହୋଦଧିରେ ବାରୁଣୀ ସ୍ନାନ ଯୋଗ ହୁଏ ।

"ବାରୁଣେନ ସମାଯୁକ୍ତା ମଧୌ କୃଷ୍ଣା ତ୍ରୟୋଦଶୀ
ଗଙ୍ଗାୟାଂ ଯଦି ଲଭ୍ୟେତ କୋଟି ସୂର୍ଯ୍ୟ ଗ୍ରହୈଃ ସମା ।"

ଯଜ୍ଞବରାହ ଓ ଦଶାଶ୍ୱମେଧ ଘାଟର ମଧ୍ୟବର୍ତ୍ତୀ ସ୍ଥଳ ବୈତରଣୀର ତଟଦେଶରେ ବିସ୍ତୀର୍ଣ୍ଣ ପ୍ରାନ୍ତର ହିଁ "ବାରୁଣୀ ପଡ଼ିଆ" ନାମରେ ଖ୍ୟାତ । ପ୍ରତିବର୍ଷ ଉପରୋକ୍ତ ତିଥିରେ ସ୍ନାନଯୋଗ ସହିତ ସପ୍ତାହବ୍ୟାପୀ ମେଳା ଆୟୋଜନ ଯାଜପୁରର ଐତିହ୍ୟକୁ ସୂଚେଇ ଦିଏ । ଖାଲି ଯାଜପୁର ସବ୍‌ଡିଭିଜନ ନୁହେଁ, ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ମୁକ୍ତିକାମୀ ମଣିଷମାନେ ଏଠାକୁ ଆସନ୍ତି ବାରୁଣୀ ସ୍ନାନ କରି ଯଜ୍ଞବରାହ ଦର୍ଶନପୂର୍ବକ କୋଟି-ଜନ୍ମର ସୁକୃତ ଅର୍ଜନ କରିବା ପାଇଁ ।

ବିରଜାଙ୍କ ମନ୍ଦିରରେ ନବଦିନ ବ୍ୟାପୀ ଶାରଦୀୟ ପୂଜାର୍ଚ୍ଚନା ଓ ରଥଯାତ୍ରା ଯାଜପୁରର ସାଂସ୍କୃତିକ ପୃଷ୍ଠଭୂମିରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ମହାଳୟାଠାରୁ ଦଶହରା ପର୍ଯ୍ୟନ୍ତ ଦେବୀଙ୍କର ପୂଜାର୍ଚ୍ଚନା ସାଙ୍ଗକୁ ରଥଯାତ୍ରା ଯାଜପୁରର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରେ । ପୂର୍ବରୁ କୁହାଯାଇଛି ଯେ ବୌଦ୍ଧ ସଂସ୍କୃତି ଯାଜପୁରର ସାଂସ୍କୃତିକ ଜୀବନଧାରାକୁ ବହୁ ପରିମାଣରେ ପ୍ରଭାବିତ କରିଥିଲା । ବିରଜା ହିଁ ଏ ସଂସ୍କୃତିର ପ୍ରାଣକେନ୍ଦ୍ର । ବୌଦ୍ଧମାନଙ୍କର ରଥଯାତ୍ରା କଥା ପ୍ରାୟ ସମସ୍ତେ ଜାଣନ୍ତି । ହୁଏତ ସେହି ଆଦର୍ଶରେ ବିରଜା ମନ୍ଦିରରେ ନବଦିନବ୍ୟାପୀ ରଥଯାତ୍ରା ହୁଏ । ଆଶ୍ୱିନ ଶୁକ୍ଳ ପ୍ରତିପଦ ତିଥିରେ ବିରଜାଙ୍କର ରଥ ପ୍ରତିଷ୍ଠା ପରେ ତାଙ୍କର ଚଳନ୍ତି ବିଗ୍ରହକୁ ନେଇ ରଥଯାତ୍ରାର ଶୁଭାରମ୍ଭ ହୁଏ ଏବଂ ତାହା ନଅଦିନ ପର୍ଯ୍ୟନ୍ତ ଗୁଳୁରହେ । ଏହି ରଥ 'ରୁକୁଣା ରଥ' ଓ ଏହା ଅଣନେଉଟା ବୋଲି ଲୋକମୁଖରେ ପ୍ରଚଳିତ । ବୌଦ୍ଧ ରଥଯାତ୍ରାର ଅନୁକରଣରେ ଏହା ଅନୁଷ୍ଠିତ ହୁଏ ବୋଲି କେତେକଙ୍କର ମତ ।

ଦେବତା କ୍ଷେତ୍ରକୁ ଶ୍ରଦ୍ଧା କରନ୍ତି । କ୍ଷେତ୍ର ଦେବତାଙ୍କ ପାଇଁ ବାସପାତ୍ର ହୁଅନ୍ତି । ତ୍ରିଗୁଣୀ ଶକ୍ତି ପାଳକପତି ବିଷ୍ଣୁ ସେ ସ୍ଥାନକୁ ଆପେ ଆପେ ବିରାଜମାନ ହୁଅନ୍ତି । କେହି କାହାଠାରୁ ମୁକ୍ତ ନୁହଁନ୍ତି ବୋଲି ଏହା ଅବିମୁକ୍ତ କ୍ଷେତ୍ର ।

ଏହାପରେ ଏକ ସୁରମ୍ୟ ପବିତ୍ର ସ୍ଥାନକୁ ସ୍ୱୟଂ ବ୍ରହ୍ମା ଆଦ୍ୟକ୍ଷେତ୍ର ରୂପେ ନିର୍ବାଚନ କରି କ୍ଷେତ୍ର ସୃଷ୍ଟି କଲେ ଏବଂ ଏହି ଅବିମୁକ୍ତ କ୍ଷେତ୍ରରେ ମହାଶକ୍ତିଙ୍କୁ କ୍ଷେତ୍ରେଶ୍ୱରୀ ଭାବେ ରଖାଇ କ୍ଷେତ୍ର ସ୍ଥାପନ କଲେ ବୋଲି ବ୍ରହ୍ମପୁରାଣ କହେ—

"ଅବିମୁକ୍ତାଭିଧଂ କ୍ଷେତ୍ରଂ ଶମ୍ଭୋରାୟତନଂ ସ୍ୱତଃ
ଯତ୍ରାରୋଚତ ସମ୍ବାସୋ ଦେବଦେବସ୍ୟ ଶୂଳିନଃ ।
ଯତ୍ପୁଣ୍ୟତମଂ କ୍ଷେତ୍ରଂ ତତ୍ରଦେବ ପିନାକଧୃକ୍
ତତ୍ରଦେବୀ ସ୍ୱୟଂ ଗୌରୀ ତତ୍ର ଦେବୋ ଜନାର୍ଦ୍ଦନ ।

ଭେଦବାନ ବର୍ଦ୍ଧତେ ତେଷାଂ କ୍ଷେତ୍ରଂ ନୈତୈର୍ବିନା କୃତମ୍
ଅବମୁକ୍ତ ବନାନେନ ମୋଦମାନସ୍ୟ ଶୂଳିନଃ ।"

ତେବେ ସଂସ୍କୃତିର ପୀଠ ଯାଜପୁରର ପ୍ରକୃତ ବାର୍ତ୍ତା ବହନ କରେ 'ବିରଜା ପଞ୍ଜିକା', ଯାହା କି ସମଗ୍ର ଯାଜପୁର ମଣ୍ଡଳର ଲୋକଙ୍କୁ ଏକ କରି ବାନ୍ଧିଦିଏ । ବିରଜା ମଣ୍ଡଳ ବା ଯାଜପୁର ମଣ୍ଡଳର ଅଧିବାସୀମାନେ ବିରଜା ପଞ୍ଜିକାକୁ ହିଁ ନଜର କରି ନେଇଛନ୍ତି । ଶାକଦ୍ୱୀପୀ ବ୍ରାହ୍ମଣ ସମାଜ ଦ୍ୱାରା ଏହି ପଞ୍ଜିକା ସ୍ୱୀକୃତ ହୋଇଥାଏ । ଭୂସ୍ୱର୍ଗ ମତରେ ଗଣନା କରାଯାଇଥିବା ଏହି ପଞ୍ଜିକା ସମ୍ବନ୍ଧରେ କୁହାଯାଇଛି ଯେ ଏହି ପଞ୍ଜିକାର ନାମ 'ବିରଜା' । ଦେବୀଙ୍କ ନାମ 'ବିରଜା' ଓ ପଞ୍ଜିକାର ନାମ 'ବିରଜା' ହୋଇଥିବାରୁ ସମଗ୍ର ଯାଜପୁର ମଣ୍ଡଳର ସଂସ୍କୃତିକୁ ବରଂ 'ବିରଜା ସଂସ୍କୃତି' ବୋଲି କହିବା ଅଧିକ ସମୀଚୀନ ହେବ । ପଞ୍ଜିକାର ନାମକରଣ ସମ୍ବନ୍ଧରେ କୁହାଯାଏ—

"ଯାଧାତ୍ରୀମିଖ ସମ୍ଭବା ଭଗବତୀ ଯାଜପୁରାଧୀଶ୍ୱରୀ
କ୍ଷେତ୍ରେ ବୈରଜସେ ପ୍ରସିଦ୍ଧ ବିରଜା ଦେବୀତି ଦେବୈର୍ମତା ।
ଯୋଽସ୍ୟଂ ବୈତରଣୀ ତଟାନ୍ତ ନିଳାସଦ୍ଦେବୋ ବରାହସ୍ଥିତଃ
ଧର୍ମ୍ମ୍ୟଂ କର୍ମ୍ୟଂ ତନୋତୁ ତତ୍ର 'ବିରଜା' ନାମ୍ନୀ ଶୁଭ ପଞ୍ଜିକା ।"

ପୁଣି ଏ ପଞ୍ଜିକା କଥନର ଶୈଳୀ ମଧ୍ୟ ମନୋରମ । ମହାମାୟୀ ମହାଶକ୍ତି ଗୌରୀ ଶିବା ଶିବଙ୍କୁ ପଚାରୁଛନ୍ତି ଓ ପଞ୍ଜିକାର କଥା ଶିବ କହୁଛନ୍ତି । ଏହି କ୍ରମରେ ପଞ୍ଜିକା କୁହାଯାଇଛି । ଯଥା—

"କୈଳାସ ଶିଖରାସୀନଂ ଗୌରୀ ପୃଚ୍ଛତି ଶଙ୍କରଂ
ଅଧୁନା ବ୍ରୂହିମେ ନାଥ ! ନବପଞ୍ଜି ଶୁଭାଶୁଭମ୍ ।"

—ଶ୍ରୀ ଶଙ୍କରୋବାଚ

"ଶୃଣୁ ଦେବି ! ପ୍ରବକ୍ଷ୍ୟାମି ନବପଞ୍ଜି ଶୁଭାଶୁଭଂ
ଯସ୍ୟ ଶ୍ରବଣ ମାତ୍ରେଣ ସର୍ବଜ୍ଞାନଂ ଲଭେନ୍ନରଃ ।"

ସୁତରାଂ ଯାଜପୁର ଅଧିବାସୀ କହିଲେ କେବଳ ଯାଜପୁର ସହରରେ ବାସ କରୁଥିବା ଜନସମୂହଙ୍କୁ ନ ବୁଝାଇ ଯାଜପୁରମଣ୍ଡଳରେ ବାସ କରୁଥିବା ଅଧିବାସୀଙ୍କୁ ବୁଝାଏ ।

ଷଷ୍ଠ ଶତାବ୍ଦୀରେ ନିର୍ମିତ ଯାଜପୁର ନିକଟବର୍ତ୍ତୀ ରତ୍ନଗିରି, ଉଦୟଗିରି, ଲଳିତଗିରି ଓ ଅଳତିଗିରିର ବହୁ ବୌଦ୍ଧ ଓ ତାନ୍ତ୍ରିକ ମୂର୍ତ୍ତିଗୁଡ଼ିକ ଦୃଷ୍ଟିଗୋଚର ହୁଏ । ଯେଉଁ ମୂର୍ତ୍ତିଗୁଡ଼ିକ ଦୃଷ୍ଟିଗୋଚର ହୁଏ ସେଥିରୁ ମନେହୁଏ ଏହି ଗୋଟିଏ ସ୍ଥାନକୁ ଓଡ୍ରପୀଠ କୁହାଯାଉଥିଲା ।

ରତ୍ନଗିରି ବ୍ରାହ୍ମଣୀ ଏବଂ ବିରୂପା କୂଳରେ ଅବସ୍ଥିତ । ଏବେ ବି ରତ୍ନଗିରି ଉପରେ ବହୁ ବୌଦ୍ଧସ୍ତୂପ ନିଖୁଣ ଭାବରେ ଦଣ୍ଡାୟମାନ । ମନ୍ଦିର ମଧ୍ୟରେ ଅବସ୍ଥାନ

କରୁଥିବା 'ମହାକାଳ' ଅଦ୍ୟାପି ଲୋକମାନଙ୍କ ଦ୍ୱାରା ପୂଜା ପାଉଛନ୍ତି । ମହାକାଳ ମୂର୍ତ୍ତି ଦ୍ୱିଭୁଜ, ଡାହାଣ ହାତରେ ଏକ ଛୁରିକା ଏବଂ ବାମ ହାତରେ ଏକ ପାନପତ୍ର ଧାରଣ କରିଛନ୍ତି । ସେହିଭଳି ମୂର୍ତ୍ତି ଅନ୍ୟତ୍ର ପ୍ରାୟ ପରିଦୃଷ୍ଟ ହୁଅନ୍ତି ନାହିଁ । ପରବର୍ତ୍ତୀ କାଳରେ ସେ ବୁଦ୍ଧତନ୍ତ୍ରର ଭୈରବ ଭାବରେ ଆରାଧିତ ହୋଇଥିଲେ । ତାଙ୍କର ମଧ୍ୟ କାନ ଦୁଇଟି ଟିକିଏ ଲମ୍ବା, ଠିକ୍ ବୁଦ୍ଧଙ୍କ କାନଭଳି ।

ରତ୍ନଗିରିରେ ୩।୪ ଫୁଟ ଉଚ୍ଚର ଠିକ୍ ଚଉରା ବା ବୃନ୍ଦାବତୀ ଭଳି ଶହ ଶହ ବୌଦ୍ଧସ୍ତୂପ ଏଣେତେଣେ ପଡ଼ିଛି । ପ୍ରତି ସ୍ତୂପରେ ବୁଦ୍ଧଙ୍କର ଅଥବା ତାରାଙ୍କର ମୂର୍ତ୍ତି ଖୋଦିତ ହୋଇଛି କେଉଁ ତାରା ଦ୍ୱିଭୁଜା ତ କେଉଁ ତାରା ଚତୁର୍ଭୁଜା । ବୁଦ୍ଧଙ୍କୁ ଛାଡ଼ି-ଦେଲେ ତାରା ହେଉଛନ୍ତି ବୌଦ୍ଧମାନଙ୍କର ପରମ ଉପାସ୍ୟା । ବୌଦ୍ଧମାନେ ଦାବି କରନ୍ତି ଯେ ହିନ୍ଦୁମାନଙ୍କ ପୂର୍ବରୁ ସେମାନେ ତାରାଙ୍କର ପରିକଳ୍ପନା କରିଥିଲେ । ପୁଣି ହିନ୍ଦୁ ତାରା ବୌଦ୍ଧ ତାରାଙ୍କ ମଧ୍ୟରେ ରୂପଭେଦ ଅଛି । ବୌଦ୍ଧ ତାରା ସୌମ୍ୟା କିନ୍ତୁ ହିନ୍ଦୁ ତାରା କରାଳବଦନା ଖର୍ବାକୃତି ।

ରତ୍ନଗିରିଠାରୁ ଅନତି ଦୂରରେ ପଣସପାଳ ନାମରେ ଏକ କ୍ଷୁଦ୍ର ପାହାଡ଼ ଅଛି । ସେହି ପାହାଡ଼ ଉପରେ ବନମାଧବୀ ନାମରେ ଏକ ଦେବୀ ପୂଜା ପାଉଛନ୍ତି ।

ଓଡ଼ିଶାର ଆଦିକବି ସାରଳା ଦାସ ତାଙ୍କର ଚଣ୍ଡୀ ପୁରାଣରେ ଦେବୀଦୁର୍ଗା ମହିଷାସୁର ବଧ ପାଇଁ ରତ୍ନଗିରି ଉପରେ ବିଜେ କଲେ ବୋଲି ଉଲ୍ଲେଖ କରିଛନ୍ତି, ମାତ୍ର ସେଠାରେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କର କୌଣସି ମୂର୍ତ୍ତି ପରିଦୃଷ୍ଟ ହୁଅନ୍ତି ନାହିଁ । ଖୁବ୍ ସମ୍ଭବତଃ ପଞ୍ଚଦଶ ଶତାବ୍ଦୀ ବେଳକୁ ରତ୍ନଗିରି ତନ୍ତ୍ରକ୍ଷେତ୍ର ରୂପେ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା । ତା'ର ପରେ ପରେ କୌଣସି ଏକ ସମୟରେ ଘରଗୁଡ଼ିକ ଭୂଷୁଡ଼ି ପଡ଼ି ଭଗ୍ନସ୍ତୂପରେ ପରିଣତ ହୋଇଗଲା । ମାତ୍ର ବିଂଶ ଶତାବ୍ଦୀର ମଧ୍ୟଭାଗରେ ତାହାର ଖନନ କରାଯାଇ ପ୍ରାଚୀନ ସଂସ୍କୃତିର ପୁନରୁଦ୍ଧାର କାର୍ଯ୍ୟ କିୟଦଂଶରେ ସାଧିତ ହୋଇଛି । ସେହିପରି ଉଦୟଗିରି ଓ ଲଳିତଗିରି ମଧ୍ୟ ପ୍ରାଚୀନ ସଂସ୍କୃତିର ବାର୍ତ୍ତା ବହନ କରନ୍ତି । ତେବେ ବୌଦ୍ଧ ସଂସ୍କୃତି ଏବଂ ଶାକ୍ତ ସଂସ୍କୃତି ଏ ଅଞ୍ଚଳର ସମ୍ପୂର୍ଣ୍ଣ ରୂପେ ମିଶାମିଶି ଓ ଫେଣ୍ଟାଫେଣ୍ଟି ହୋଇ ଯାଇଅଛି ।

ଯାଜପୁରମଣ୍ଡଳ ବା ବିରଜାମଣ୍ଡଳର ଆଉ ଏକ ସାଂସ୍କୃତିକ ମିଳନ ସ୍ଥଳ ଯାଜପୁରରୋଡ଼ ନିକଟବର୍ତ୍ତୀ ବ୍ୟାସ ସରୋବର । ଏଠାରେ ଗୁପ୍ତଗଙ୍ଗାର ଆବିର୍ଭାବ ଏବଂ ଏହି ସରୋବର ତୀରରେ ଦୁର୍ଯ୍ୟୋଧନଙ୍କର ଜାନୁଭଗ୍ନ ହୋଇଥିବା ପ୍ରଭୃତି କଥା ଜନଶ୍ରୁତିରେ ଏବେ ବି ପ୍ରଚଳିତ । ମାଘ ଶୁକ୍ଳ ଏକାଦଶୀଠାରୁ ଏଠାରେ ସୃଷ୍ଟି ହେଉଥିବା ସପ୍ତାହ ବ୍ୟାପୀ ବିରାଟ ମେଳା ଏକ ସାଂସ୍କୃତିକ ମିଳନର ଅନୁଷ୍ଠାନ ଭାବରେ ଐକ୍ୟର ବାର୍ତ୍ତା ବହନ କରେ । ବ୍ୟାସସରୋବର ନିକଟରେ ଯାଜପୁରମଣ୍ଡଳ ବିଷୟରେ ସଂକ୍ଷିପ୍ତ ଆଲୋଚନା ଅବକାଶରେ ଅମରାବତୀ କଟକ ବିଷୟରେ ସୂଚନା ନ ଦେଲେ

ତାହା ପୂର୍ଣ୍ଣାଙ୍ଗ ହେବ ନାହିଁ । ଛତିଆ ନିକଟବର୍ତ୍ତୀ ଧନିଆ ପାହାଡ଼ ପାଦଦେଶରେ ଅମରାବତୀ କଟକ ବିଦ୍ୟମାନ । ଏହାକୁ ମଧ୍ୟ ଛତିଆ କଟକ କୁହାଯାଏ । ଓଡ଼ିଶାର ପଞ୍ଚକଟକ ମଧ୍ୟରୁ ଏହା ଅନ୍ୟତମ । ଏଠାରେ ବସୁକଲ୍ପ ରାଜା ରାଜତ୍ୱ କରୁଥିଲେ ଓ ସେ ଏଠାରେ ଇନ୍ଦ୍ର ଏବଂ ଶଚୀଙ୍କ ମୂର୍ତ୍ତି ସ୍ଥାପନ କରି ପୂଜା କରୁଥିଲେ । କାଳକ୍ରମେ ବସୁକଲ୍ପ ନଗର ଧ୍ୱଂସ ହୋଇଗଲା । ଏଠାରେ ମଧ୍ୟ ବହୁ ଜୈନ ଓ ବୌଦ୍ଧ କୀର୍ତ୍ତି ଦେଖିବାକୁ ମିଳେ । ଅମରାବତୀ କଟକ ପରେ ପରେ ଛତିଆର ଉଁବୁରି ପାହାଡ଼ ଉପରେ ଛତିଆବଟ ଗଢ଼ି ଉଠିଲା । ପ୍ରସିଦ୍ଧ ସନ୍ଥ ମହାପୁରୁଷ ହାଡ଼ିଦାସ ଏହି ପୀଠର ପ୍ରତିଷ୍ଠାତା । ଏହା ଏକ ରହସ୍ୟବାଦୀ ପୀଠ ଓ ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ମୁକ୍ତ ପୀଠ ।

ଏହି ପୀଠ ଓ ଅମରାବତୀ କଟକ ସମ୍ପର୍କରେ ଷୋଡ଼ଶ ଶତାବ୍ଦୀର ସନ୍ଥକବି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ ସନ୍ଥ ହାଡ଼ିଦାସ ଓ ଖିମାଦାସଙ୍କ ପର୍ଯ୍ୟନ୍ତ ବିଭିନ୍ନ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି । ଏହାକୁ ଗୁପ୍ତ ଖଣ୍ଡଗିରି, କଳାଗିରି, ଧବଳଗିରି, ସ୍ୱର୍ଣ୍ଣକୂଟଗିରି, ଚଟ୍ଟେଶ୍ୱରିଗିରି, ବୌଦ୍ଧଡିହ ଇତ୍ୟାଦି କୁହାଯାଇଥାଏ । ବିଶ୍ୱାବସୁ ଶବର ମଧ୍ୟ ଏଠାରେ ନୀଳମାଧବଙ୍କୁ ଉପାସନା କରୁଥିବା କିମ୍ବଦନ୍ତୀ ପ୍ରଚଳିତ । ଏକ ମାଳିକା ପୀଠ ଭାବରେ ଏହାର ଖ୍ୟାତି ସର୍ବବାଦିତ ।

ଅତଏବ ଯାଜପୁର ବା ବିରଜାମଣ୍ଡଳ ଓଡ଼ିଶା ର ସ୍ୱତନ୍ତ୍ର ଐତିହ୍ୟର ପ୍ରମାଣ ଦିଏ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର ଆଦି ଧର୍ମ ସମ୍ପ୍ରଦାୟର ଏହା ଏକ ମିଳନ ଭୂମି । ଯୋଗ, ତନ୍ତ୍ର ଓ ଭକ୍ତିର ଏଠାରେ ହୋଇଛି ମହାମିଳନ । ଶ୍ରୀଚୈତନ୍ୟ ମଧ୍ୟ ଏଠାକୁ ଆସି ପ୍ରେମଧର୍ମ ପ୍ରଚାର କରିଥିଲେ । ସବୁ ତତ୍ତ୍ୱର ଏହା ଆଧାର ଭୂମି ହେଲେହେଁ ଯୋଗ ଓ ଜ୍ଞାନତତ୍ତ୍ୱ ଏହାର ମୁଖ୍ୟ ପ୍ରାସ୍ପନ୍ଦନ । ତେଣୁ ବିରଜା ମଣ୍ଡଳ ଚିର ରହସ୍ୟମୟ । ଏହି ଅଭିନବ ଯାଜନଗର ବା ଯାଜପୁର କେବେ ଓଡ଼ିଶାର ରାଜଧାନୀ ହେଲା ଓ ଏହାର ରାଜଧାନୀ ଏବଂ ଗଡ଼ କେଉଁଠି ପ୍ରକୃତରେ ଥିଲା, ତାହା ଉଦ୍‌ଘାଟିତ ହେଲେ ପ୍ରାଚୀନ ଓଡ଼ିଶାର ଏକ ଅବଲୁପ୍ତ ଅଧ୍ୟାୟ ଯେ ଉନ୍ମୋଚିତ ହେବ ଏଥିରେ ସନ୍ଦେହ ନାହିଁ ।



# ଅମରାବତୀ କଟକ

**ଡକ୍ଟର ରତ୍ନାକର ସାହୁ**

"ଓସ୍ନୂ ବଢ଼ାଇଲେ ବଳାଗଡ଼ ପ୍ରିୟା,
ଯା' କଟକେ ଟେକ ଟର୍କିଳ ଛତିଆ ।" (୧)

କଟକ ଜିଲ୍ଲାର ଉତ୍ତର ଦିଗରେ ପ୍ରାୟ ୧୬ ମାଇଲ୍ ଦୂରରେ ଅବସ୍ଥିତ ଛତିଆ ଗ୍ରାମ ପାର୍ଶ୍ୱବର୍ତ୍ତୀ 'ଧନିଆ ପାହାଡ଼' (୨)ର ପାଦଦେଶରେ 'ଅମରାବତୀ କଟକ'ର ଧ୍ୱଂସାବଶେଷ ଦେଖିବାକୁ ମିଳେ । ପ୍ରାଚୀନ କୀର୍ତ୍ତି-ସ୍ମୃତି-ପୂତ ଏହି କଟକଟି ଅତୀତରେ ଜନୈକ ପୁଣ୍ୟାତ୍ମା ଉତ୍କଳୀୟ ନରପତିଙ୍କର ଗଡ଼ ଥିବାର ଅନୁମିତ ହୁଏ । ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଗଡ଼ ଓ କଟକ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ ନାହିଁ (୩) । ସଂସ୍କୃତ ଅଭିଧାନରେ କଟକର ପାଞ୍ଚପ୍ରକାର ଅର୍ଥ ଅଛି । ତନ୍ମଧ୍ୟରୁ (କ)

---

(୧) ନନ୍ଦକେଶ୍ୱରୀ—ରାଧାନାଥ ରାୟ (ରାଧାନାଥ ଗ୍ରନ୍ଥାବଳୀ, କଟକ ଟ୍ରେଡ଼ିଂ କମ୍ପାନୀ, ପୃ-୬୦)

(୨) "କଟକ ନଗରର ପ୍ରାୟ ସପ୍ତକ୍ରୋଶ ଉତ୍ତରରେ ଏହି ଗିରିଟି ଅବସ୍ଥିତ । ଆଜକାଲି ବାଷ୍ପୀୟ ଶକଟରେ ଗଲେ ଟାଙ୍ଗି ପରବର୍ତ୍ତୀ ବଇତର ପୂର୍ବପାର୍ଶ୍ୱରେ ଏହି ଗିରିଟି ମଧ୍ୟଭାଗରେ ଗୋଟିଏ ଆପାଦଶିଖ ଋଜୁ ଗୈରିକ ରେଖାଦ୍ୱାରା ଦ୍ୱିଧା ବିଭକ୍ତ ହେଲପରି ଦେଖାଯାଏ । ପୂର୍ବମୁଖରେ ପ୍ରାୟ ଏକକ୍ରୋଶ ପଥ ଅତିକ୍ରମ କଲେ ପର୍ବତର ପାଦଦେଶରେ ଉପସ୍ଥିତ ହେବାକୁ ହୁଏ । ଏହି ଶୈଳର ସ୍ଥାନୀୟ ନାମ 'ଧନିଆ ପାହାଡ଼' । ଶୈଳଟି ତୃଣ, ଗୁଳ୍ମ, ଶ୍ୟାମଳ, ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଦ୍ରୁମ ମଧ୍ୟ ଅଛି । ଉଚ୍ଚତା ପ୍ରାୟ ୪୦୦ ଫୁଟ ହୋଇପାରେ । ଏହି ପାହାଡ଼ଟି ବର୍ତ୍ତମାନ ଦର୍ପଣ ରାଜ୍ୟର ଅନ୍ତର୍ଗତ ।"

ମୁକୁର—୫ମ ସଂଖ୍ୟା, ୭ମ ଭାଗ, ଭାଦ୍ର ୧୩୨୦, ପୃ: ୧୦୨ ।

(୩) "ଗଡ଼ ଓ କଟକ ଶବ୍ଦ ଏକାର୍ଥ ବାଚକ ଏବଂ ଉଭୟ ନାମ ଯୁଦ୍ଧ ସହିତ ସମ୍ପର୍କ ଥିବାର ଜଣାଯାଏ । କଟକ ଅର୍ଥ ସେନା ସନ୍ନିବେଶ ସ୍ଥାନ ବା ଶିବିର ଏବଂ ଗଡ଼ ଶବ୍ଦର ଅର୍ଥ ପରିଖାବେଷ୍ଟିତ ସ୍ଥାନ ବା ଦୁର୍ଗ । ଏହି ଅର୍ଥରେ ଏ ଶବ୍ଦମାନଙ୍କର ପ୍ରାଚୀନ ବ୍ୟବହାର ହୋଇଥିବାର ଦେଖାଯାଏ ।

ସ୍ଥଳଶୀ (ଖ) ଦୁର୍ଗ ବା ରାଜଧାନୀର ଅର୍ଥ କଟକ ପଦରେ ପ୍ରଯୁଜ୍ୟ । କଟକ ସମ୍ପର୍କରେ ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ଲେଖିଛନ୍ତି, "କଟକ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ନଗରର ନାମ ନଥିଲା । ମାତ୍ର 'କଟକ' ବର୍ତ୍ତମାନ ଯୋଗରୂଢ଼ ପଦ ହୋଇ ବାରବାଟୀ କଟକ ନାମରେ ଅଭିହିତ ହେଉଅଛି । ପୁରୁଷୋତ୍ତମ ଆଗେ କଟକ ନାମରେ ଅଭିହିତ ହେଉଥିଲା । ମାଦଳା ପାଞ୍ଜିରେ ଲେଖାଅଛି, 'ଶ୍ରୀପୁରୁଷୋତ୍ତମ କଟକେ ଶ୍ରୀନଗରେ' ଇତ୍ୟାଦି । ବାରବାଟୀ କଟକ ନିର୍ମାଣ ହେବାର ବହୁକାଳ ପୂର୍ବରୁ କଟକ ଶବ୍ଦର ବ୍ୟବହାର ଦେଖାଯାଏ । ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ ସମୟରେ କଟକ ଶବ୍ଦ ବ୍ୟବହୃତ ହୋଇ-ଅଛି ।" (୪)

ଅମରାବତୀ କଟକ ସମ୍ପର୍କରେ ଆଲୋଚକମାନେ ଯେଉଁ ଆଲୋଚନା-ମାନ କରି ଯାଇଅଛନ୍ତି ତାହା ସତ୍ୟର ଏକାନ୍ତ ନିକଟବର୍ତ୍ତୀ କି ନୁହେଁ ଠିକ୍ କହି ନ ହେଲେ ବି ପରବର୍ତ୍ତୀ ସମୟରେ ପ୍ରତ୍ନତାତ୍ତ୍ୱିକ ତଥା ଗବେଷକମାନଙ୍କ ପାଇଁ ପଥ ପ୍ରଦର୍ଶନ କରିବାରେ ଯେ ସହାୟକ ହୋଇଅଛି ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ । ଏ ସମ୍ବନ୍ଧରେ ବିଭିନ୍ନ ବ୍ୟକ୍ତିମାନଙ୍କ ବିବରଣୀ ବିଷୟରେ କୁହାଯାଇ ପାରେ । ଶ୍ରୀଯୁକ୍ତ ରାଜେନ୍ଦ୍ରଲାଲ ମିତ୍ର "The Antiquities of Orissa" ପୁସ୍ତକରେ ଲେଖିଛନ୍ତି, "କଟକରୁ ରାଜପଥ (Trunk Road) ଉପରେ ୧୬ ମାଇଲ ଦକ୍ଷିଣକୁ (ଏ ସ୍ଥଳରେ ମନେ ରଖିବାକୁ ହେବ ଯେ ଶ୍ରୀଯୁକ୍ତ ମିତ୍ର ତାଙ୍କ ପ୍ରତ୍ନତାତ୍ତ୍ୱିକ ଗବେଷଣା ନିମନ୍ତେ ଉତ୍ତରରୁ ଦକ୍ଷିଣକୁ ଯାତ୍ରା କରିଥିଲେ) ଗଲେ ପର୍ଯ୍ୟଟକ ଛତିଆ ଗ୍ରାମ ନିକଟରେ ଥିବା ପର୍ବତ-ମାଳାରେ ପହଞ୍ଚିବେ । ଗଙ୍ଗବଂଶର ଜନୈକ ରାଜା ଏହି ପର୍ବତମାଳାର ପାଦଦେଶରେ ପୂର୍ବପଟକୁ ତାଙ୍କର ରାଜଧାନୀ ନିର୍ମାଣ କରି ଇନ୍ଦ୍ରଙ୍କର ପ୍ରାସାଦର ନାମାନୁସାରେ 'ଅମରାବତୀ' ରଖିଥିଲେ ।" (୫) କେବଳ ସେତିକି ନୁହେଁ, ରାଜେନ୍ଦ୍ରବାବୁ ଛତିଆକୁ ଏକ ପ୍ରାଚୀନଗଡ଼ ମନେକରି କହିଛନ୍ତି, "ମହାନଦୀର ବାମପାର୍ଶ୍ୱରେ ଅନଙ୍ଗଗ୍ରାମ

---

(୪) ପ୍ରାଚୀନ ଉତ୍କଳ, ଜଗବନ୍ଧୁ ସିଂହ, ପୃ-୨୫୪, ୨ୟ ମୁଦ୍ରଣ, ୧୯୬୪ ।

(୫) "Going further south, within 16 miles of Cuttack, the traveller comes to a range of hills, which from its proximity of the village of that name on the Trunk Road, is called Chhatia. On the eastern side of it, close to its foot, one of the Uriya kings of the Gangetic line built his capital, and called after the heavenly palace of Indra, Amaravati.

The Antiquities of Orissa,' by R. L. Mitra, Vol II, P 266, 30th Sept, 1963.

ଦରବାର ଛାଡ଼ି ସପ୍ତମ ଛତିଆ (ଗଡ଼) ସ୍ଥାପନ କରିଥିଲେ । ଏମାନଙ୍କ ମଧ୍ୟରୁ ଶେଷୋକ୍ତ ଚୃରିଗୋଟି 'କଟକ' ନାମରେ ଅଭିହିତ ଥିଲା ।" (୬)

ମାତ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଶ୍ରୀଯୁକ୍ତ ମିତ୍ରଙ୍କ ମତକୁ ଗ୍ରହଣ କରି ନାହାନ୍ତି । ସେ କହନ୍ତି, "ଅନଙ୍ଗଭୀମ ଦେବ ଛତିଆରେ ନିଜ ଗଡ଼ ବସାଇଥିଲେ—ଏହା କୌଣସି ଐତିହାସିକ ଲେଖି ନାହାନ୍ତି । ଆଉ ମଧ୍ୟ ଏହି କେତେ ଶତ ବର୍ଷ ମଧ୍ୟରେ ଏପରି ଗୋଟିଏ ପ୍ରକାଣ୍ଡ ଗଡ଼ ଏକାବେଳକେ ବିଧ୍ୱସ୍ତ ହେବା ସମ୍ଭବ ନୁହେଁ । ଅନଙ୍ଗ-ଭୀମଙ୍କ ରାଜତ୍ୱକାଳରେ ନିର୍ମିତ ଯେଉଁସବୁ ଦେବାଳୟ ଓ ପୁଷ୍କରିଣୀ ଅଛି ସେମାନଙ୍କର ଏତେ ଜୀର୍ଣ୍ଣାବସ୍ଥା ହୋଇନି । ପୁରୀ, ଭୁବନେଶ୍ୱର ଯେଉଁମାନେ ଦେଖିଛନ୍ତି ସେମାନେ ଏହାକୁ ଅନାୟାସରେ ପ୍ରାଚୀନତର କହିବେ । ବରଂ ଏହା ଚୌଦ୍ୱାରର ସମକାଳୀନ ବା ତତ୍‌ପୂର୍ବବର୍ତ୍ତୀ । ଏହି ଗଡ଼ ଉପରେ ପାହାଡ଼ଟା ଅବିକଳ ଛତ୍ର ପ୍ରାୟ ଅବସ୍ଥିତ ଥିବାରୁ ସମ୍ଭବତଃ ଏହାର ନାମ 'ଛତ୍ରପୁର' ଅଥବା ଏହି ପାହାଡ଼ର ନାମ 'ଛତ୍ରଗିରି' ଥିଲା । (୭)

ପଣ୍ଡିତ ମହାଶୟ ଏତିକି କଥା କହି ନୀରବ ହୋଇ ନାହାନ୍ତି; ପରନ୍ତୁ-ଅମରାବତୀରେ ଥିବା ଇନ୍ଦ୍ର-ଇନ୍ଦ୍ରାଣୀ ମୂର୍ତ୍ତିକୁ ଲକ୍ଷ୍ୟକରି ତାହା ଜୈନକୀର୍ତ୍ତି ବୋଲି ସେ ମନେକରି ଅଛନ୍ତି । ମୂର୍ତ୍ତି ଦୁଇଟିର ପଦତଳେ ଅବସ୍ଥାପିତ ଥିବା ହସ୍ତୀର ଚିହ୍ନ ଅବଲୋକନ କରି ସେଥିରେ ଇରା ବାଇଳାବଂଶଜ ଐରଙ୍କର ସମ୍ପର୍କ ରହିଥିବା ବିଷୟ ସେ ବିଶ୍ୱାସ କରି ଅଛନ୍ତି । ତାଙ୍କ ମତରେ, "ଉଦୟଗିରିସ୍ଥ ହାତୀଗୁମ୍ଫାର ଐର ଲିପି ପାଠକଲେ ଜଣାଯାଏ ଯେ ମହାରାଜା ଐର 'ମହାମେଘବାହନ' ଥିଲେ । ଐରାବତ ହସ୍ତୀ ତାହାଙ୍କ ବାହନ ଥିଲା । ଜୈନ ଚତୁର୍ବିଂଶତି ଦେବତା ମଧ୍ୟରୁ ଅନ୍ୟତମ ଅଜିତନାଥଙ୍କର ମଧ୍ୟ ହସ୍ତୀ ବାହନ । × × × ଏହି ଗଡ଼ର ଅଳ୍ପଦୂରରେ ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଯେଉଁ ପ୍ରସିଦ୍ଧ 'ଇଳା ପୋଖରୀ' ବିଦ୍ୟମାନ ଅଛି, ତାହା ସମ୍ଭବତଃ 'ଇଳା' ନାମକୃତ । ଏହାର 'ମେଘନାଦ' ପାଚିରୀ ମେଘବାହାନ ରାଜାଙ୍କର ନାମର ଉପଯୁକ୍ତ ।" (୮)

---

(୬) "On the left bank of Mahanadi where Anangabhim left his court and the 7th Chhatia, where he put up for a time, of these the last four are frequently and promiscously called Kataka."

The Antiquities of Orissa, by-R. L. Mitra. Vol II P. 164. 30th, Sept, 1963.

(୭) ମୁକୁର, ୫ମ ସଂଖ୍ୟା, ୭ମ ଭାଗ, ଭାଦ୍ର ୧୩୨୦, ପୃ-୧୦୫-୧୦୭ ।

(୮) ମୁକୁର, ୫ମ ସଂଖ୍ୟା, ୭ମ ଭାଗ, ଭାଦ୍ର, ୧୩୨୦, ପୃ-୧୦୫ ୧୦୭ ।

ଏ ବିଷୟରେ ପୂର୍ବତନ 'ବିହାର ଓ ଓଡ଼ିଶା ଜିଲ୍ଲା ଗେଜେଟିୟର'ରେ ପ୍ରକାଶ ପାଇଥିବା ବିବରଣୀ ଉଲ୍ଲେଖଯୋଗ୍ୟ । ସେଥିରେ ଅମରାବତୀ ଦୁର୍ଗକୁ ସ୍ଥାନୀୟ ଲୋକ-ବିଶ୍ୱାସ ଅନୁଯାୟୀ ପ୍ରାଚୀନ ହିନ୍ଦୁ ରାଜାଙ୍କର ପଞ୍ଚକଟକ ମଧ୍ୟରୁ ଗୋଟିଏ ବୋଲି ସ୍ୱୀକାର କରାଯିବା ସଙ୍ଗେ ସଙ୍ଗେ ଏହି ପାହାଡ଼ର ପଶ୍ଚିମ ପାର୍ଶ୍ୱରେ ଥିବା ଏକ ଛୋଟ ଗୁମ୍ଫାଟିକୁ ଜୈନକୀର୍ତ୍ତିର ଅବଶେଷ ରୂପେ ଗ୍ରହଣ କରାଯାଇଅଛି । (୯)

ପ୍ରକାଶ ଥାଉକି, ଶ୍ରୀଯୁକ୍ତ ରଥ ଏବଂ ତତ୍କାଳୀନ 'ବିହାର ଓ ଓଡ଼ିଶା ଜିଲ୍ଲା ଗେଜେଟିୟର' ବର୍ଣ୍ଣନାନୁଯାୟୀ ଅମରାବତୀକୁ ଜୈନକୀର୍ତ୍ତି ବୋଲି ଘୋଷଣା କରାଯିବା ସ୍ଥଳେ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଏହି ପାହାଡ଼ର ଗୁମ୍ଫା (ଯାହାକି ଅହିଯ୍ୟାସ ଗୁମ୍ଫା ନାମରେ ନାମିତ) କୁ ବୌଦ୍ଧକୀର୍ତ୍ତିର ଭଗ୍ନାବଶେଷ ବୋଲି ସୂଚିତ କରିଅଛନ୍ତି । (୧୦) ତେଣୁ କେହି କେହି ଏହି ଗଡ଼କୁ ଜୈନଧର୍ମର କୀର୍ତ୍ତିବିଶେଷ ବୋଲି ମନେ କରିଥିବାରୁ ଏହାର ପ୍ରକୃତ ସ୍ୱରୂପ ନିର୍ଣ୍ଣୟ କରିବା ସମ୍ଭବ ହୁଏ ନାହିଁ । ସେଥିପାଇଁ ଏତାଦୃଶ ଆଲୋଚନା ନିମନ୍ତେ ଆମ୍ଭମାନଙ୍କୁ ପରବର୍ତ୍ତୀ ଆଲୋଚକମାନଙ୍କ ମତ ଉପରେ ନିର୍ଭର କରିବାକୁ ପଡ଼େ ।

ଷ୍ଟର୍ଲିଂ ସାହେବ 'Orissa' ପୁସ୍ତକରେ କଟକ ସମ୍ବନ୍ଧରେ କେତେକ ତଥ୍ୟ ସନ୍ନିବେଶ କରିଅଛନ୍ତି । ସେଥିରୁ ସୂଚନା ମିଳେ ଯେ ଗଙ୍ଗେଶ୍ୱରଦେବ ଯାଜପୁର, ଚୌଦ୍ୱାର, ଅମରାବତୀ, ଛତିଆ ଏବଂ ବାରାଣାସୀ ଏଭଳି ପାଞ୍ଚଗୋଟି କଟକ ସ୍ଥାପନ

---

(୯) "According to the local tradition, Amaravati fort was one of the five Katakas or citadels of the old Hindu kings of Orissa and covered an area of two square miles; × × × On the western side of the hill is a small cave with a verandah in front, which is probably the work of Jain ascetics."

Bihar and Orissa District Gazetteers (Cuttack) chap. XV, P. 224, 2nd Edition 1933.

(୧୦) "ଅମରାବତୀ କଟକ—ଦେ: ବି (ନାମ—କଟକ ଜିଲ୍ଲାର ଦର୍ପଣୀ କିଲ୍ଲା ଅନ୍ତର୍ଗତ ଛତିଆ ଗ୍ରାମ ନିକଟବର୍ତ୍ତୀ ପାହାଡ଼—A hill near village Chhatia; Cuttack district.

(ଦ୍ର :—ଏହି ପାହାଡ଼ ଉପରେ ଅହିଯ୍ୟାସ ଗୁମ୍ଫା ଅଛି ଓ ପାହାଡ଼ ତଳ ସ୍ଥାନର ନାମ ଅମରାବତୀ କଟକ । ଏ ପାହାଡ଼ରେ ପ୍ରାଚୀନ ବୌଦ୍ଧକୀର୍ତ୍ତିର କେତେକ ଭଗ୍ନାବଶେଷ ମିଳେ ।)

ଭାଷାକୋଷ—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ, ପୃ-୫୬୧ ।

କରିଥିଲେ । (୧୧) ପରବର୍ତ୍ତୀ ସମୟରେ ପ୍ରତ୍ନତାତ୍ତ୍ୱିକ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଷ୍ଟର୍ଲିଂ ସାହେବଙ୍କ ଦ୍ୱାରା ଉଲ୍ଲିଖିତ ଅମରାବତୀ ଓ ଛତିଆ ଏହି ଦୁଇଗୋଟି କଟକକୁ ଗୋଟିଏ ବୋଲି ଗ୍ରହଣ କରି 'ଶାରଙ୍ଗଗଡ଼' ବୋଲି ଆଉ ଏକ କଟକର ସୂଚନା ପ୍ରଦାନ କରିଛନ୍ତି । ସେ ଲେଖିଛନ୍ତି, "୧୯୨୭ରେ ମୁଁ ଯେତେବେଳେ ମାଦଳାପାଞ୍ଜି ଉପରେ ଗବେଷଣା କାର୍ଯ୍ୟ କରୁଥିଲି, ସେତେବେଳେ ଗୋଟିଏ ବିଷୟରେ 'ପଞ୍ଚକଟକ'ର କଥା ପାଇଥିଲି । ପଞ୍ଚକଟକର ନାମ ସେ ପୋଥିରେ ଥିଲା । ଯଥା—(୧) ଯାଜପୁର କଟକ, (୨) ଛତିଆ ବା ଅମରାବତୀ କଟକ, (୩) ଚଉଦ୍ୱାର କଟକ, (୪) ବାରାଣସୀ କଟକ, (୫) ସାରଙ୍ଗଗଡ଼ କଟକ ।" (୧୨) ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ବର୍ଣ୍ଣିତ ଏହି ପଞ୍ଚକଟକ ସହିତ ଅନ୍ୟତମ ପ୍ରଖ୍ୟାତ ପ୍ରତ୍ନତାତ୍ତ୍ୱିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ବର୍ଣ୍ଣନାକୁ ମିଳାଇ ଦେଖିଲେ ଉଭୟଙ୍କର ମତ ଏକ ବୋଲି ଜଣାପଡ଼େ । (୧୩) କେବଳ ସେତିକି ନୁହେଁ, ଅମରାବତୀର ନାମକରଣରୁ ତଥା ଏହି ଦୁର୍ଗ ମଧ୍ୟରେ ଥିବା ବିଭିନ୍ନ ମୂର୍ତ୍ତିଗୁଡ଼ିକର କାରୁକଳାରୁ ଡକ୍ଟର ପାଣିଗ୍ରାହୀ ଏହାକୁ ଚୋଡ଼ଗଙ୍ଗଦେବଙ୍କ କୀର୍ତ୍ତି ବୋଲି ସ୍ପଷ୍ଟଭାବେ ସ୍ୱୀକାର କରିଛନ୍ତି । (୧୪)

---

(୧୧) "Gangeswar Deo had five katakas or Royal Metropolises, viz Jajpur, Choudwar. Amaravati, Chhatia or Chatua and Biranasi, the modern Cuttack."
Orissa—by Sterling, P 71

(୧୨) ଝଙ୍କାର, ୨ମ ବର୍ଷ ୨ମ ସଂଖ୍ୟା ଦ୍ରଷ୍ଟବ୍ୟ ।

(୧୩) ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କ 'ଇତିହାସ ଓ କିମ୍ବଦନ୍ତୀ' ପୁସ୍ତକରେ ଯେଉଁ ପଞ୍ଚକଟକର ନାମ ସନ୍ନିବେଶ କରିଅଛନ୍ତି । ସେଗୁଡ଼ିକ ହେଲା ଯାଜପୁର କଟକ, ଛତିଆ କଟକ, ଚଉଦ୍ୱାର କଟକ, ବାରାଣସୀ କଟକ ଓ ସାରଙ୍ଗଗଡ଼ କଟକ ।

(୧୪) "କଳାମୁଗୁନି ପଥରରେ ନିର୍ମିତ ଅନ୍ୟ ପୂଜିତ ମୂର୍ତ୍ତି ଦୁଇଟି ହେଉଛନ୍ତି ଇନ୍ଦ୍ର ମୂର୍ତ୍ତି, କିନ୍ତୁ ଏଥି ମଧ୍ୟରୁ ଗୋଟିକୁ ଭ୍ରମରେ ଇନ୍ଦ୍ରାଣୀ ବୋଲି ସ୍ଥାନୀୟ ଲୋକେ କହିଥାନ୍ତି । ଏହି ମୂର୍ତ୍ତି ଦୁଇଟିରେ ଗଙ୍ଗ ରାଜତ୍ୱ କଳାର ସମସ୍ତ ଚିହ୍ନ ବିଦ୍ୟମାନ ରହିଛି । ଏମାନଙ୍କ ପ୍ରଭା ମଣ୍ଡଳ, ଅଙ୍ଗଭୂଷଣ ଓ 'ବନଲତା' ଇତ୍ୟାଦି ଗଙ୍ଗ କଳାର ଚିହ୍ନର ପରିଚାୟକ । × × × ଚୋଡ଼ଗଙ୍ଗ ଯେତେବେଳେ ଓଡ଼ିଶା ଦଖଲ କଲେ ସେତେବେଳେ କୃଷ୍ଣା ନଦୀ ମୁହାଣର ଅଳ୍ପ ଦୂରରେ ବୌଦ୍ଧକୀର୍ତ୍ତି ବିମଣ୍ଡିତ ହୋଇ ଅମରାବତୀ ନାମକ ନଗରୀ ବିଦ୍ୟମାନ ଥିଲା । ଏଣୁ ଚୋଡ଼ଗଙ୍ଗ ଓଡ଼ିଶା ଅଧିକାର କରି ଯେଉଁ ଦୁର୍ଗ ବା କଟକ ସ୍ଥାପନ କଲେ ତାର ନାମ ଦେଲେ ଦକ୍ଷିଣସ୍ଥ ଅମରାବତୀ କଟକ ବା ଅଭିନବ ଅମରାବତୀ କଟକ ।"

ଇତିହାସ ଓ କିମ୍ବଦନ୍ତୀ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପୃ. ୨୦-୨୧, ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ ।

ଏ ତ ଗଲା ଅମରାବତୀ କଟକ ସମ୍ବନ୍ଧରେ ସାମାନ୍ୟ ସୂଚନା ମାତ୍ର । କିନ୍ତୁ ଏହି ଗଡ଼ର ଭଗ୍ନାବଶେଷ ଦେଖି ଏହାର ନିର୍ମାଣ କୌଶଳ ସମ୍ପର୍କରେ ଯେଉଁମାନେ ବିଭିନ୍ନ ଅଭିମତ ସବୁ ପ୍ରଦାନ କରି ଯାଇଛନ୍ତି—ସେମାନେ ହେଲେ ଶ୍ରୀ ରାଜେନ୍ଦ୍ରଲାଲ ମିତ୍ର, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଶ୍ରୀ ବୈଦ୍ୟନାଥ ମହାନ୍ତି ଓ ସର୍ବୋପରି ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ । The Antiquities of Orissa' ରେ ଶ୍ରୀଯୁକ୍ତ ମିତ୍ର ଲେଖିଛନ୍ତି, The palace and its scrrounding fortifications are said to have once covered an area of over two miles. × × × A high platform with portions of broken walls and a number of pillars and capitals lying scattered here and there, now mark the site of the palace. On another platform, were found two images of Indrani, and within a short distance of the ruins there is a large tank called Nilapokharee" । (୧୫)

ରାଜେନ୍ଦ୍ରବାବୁଙ୍କୁ ଛାଡ଼ିଦେଲେ ବି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଅମରାବତୀ ଦୁର୍ଗର ଭଗ୍ନସ୍ତୂପ ଦେଖି ଯେଉଁ ଅଭିମତ ପୋଷଣ କରିଥିଲେ ତାହା ଏଇପରି ସେ ଉଦ୍ଧାର କରିଛନ୍ତି—

"ଏହି ଧନାଥ ପାହାଡ଼ର ପୂର୍ବ ପାର୍ଶ୍ୱରେ ଗୋଟିଏ ଗଡ଼ର ସୁସ୍ପଷ୍ଟ ଭଗ୍ନାବଶେଷ ରହିଅଛି । ଅଦ୍ୟାପି ସେହି 'ମେଘନାଦ' ନାମକ ମହାପ୍ରାଚୀରର ଭିତ୍ତିମୂଳରେଖା ଦେଖିଲେ ଦର୍ଶକ ସେ ମହାଦୁର୍ଗ ନିକଟରେ ସ୍ତବ୍ଧ ହୋଇଯାଏ । ପ୍ରସ୍ତରମୟ ପ୍ରାଚୀରର ବିସ୍ତୃତି ପାଞ୍ଚହାତ । ଏପରି ପ୍ରଶସ୍ତ ପ୍ରସ୍ତର ପ୍ରାଚୀର ଅନ୍ୟ କେଉଁଠି ଦେଖାଯାଏ ନାହିଁ । × × × ଏହି ଦୁର୍ଗ ପ୍ରାଚୀରର ଚାରୋଟି ଦ୍ୱାର ଥିଲା । ପୂର୍ବରେ ସିଂହଦ୍ୱାରର ସୁସ୍ପଷ୍ଟ ଭଗ୍ନାବଶେଷ ଅଛି । ଦ୍ୱାରର ଦକ୍ଷିଣରେ ଗୋଟିଏ ପ୍ରକାଣ୍ଡ ସିଂହ ହସ୍ତୀ ଉପରେ ମାଡ଼ି ବସିଅଛି । ଏହିଠାରେ ଦୁଇଟି ପ୍ରସ୍ତର ସ୍ତୂପର ମଧ୍ୟବର୍ତ୍ତୀ ସଂକୀର୍ଣ୍ଣ ପଥରେ ଗଡ଼ ଭିତରକୁ ଯିବାକୁ ହୁଏ । ସିଂହଦ୍ୱାରଠାରେ ଠିଆହୋଇ ଚାରିଆଡ଼କୁ ଚାହିଁଲେ ଅଦ୍ୟାପି ଯହିଁ ତହିଁ ପ୍ରସ୍ତର ସ୍ତୂପ ଦେଖାଯାଏ । × × × ସିଂହଦ୍ୱାରର ସମ୍ମୁଖୀନ ସ୍ତୂପକୁ ସ୍ଥାନୀୟ ଲୋକମାନେ 'ଖଜଣାଖାନା' ଥିଲା ବୋଲି ଦେଖାଇ ଦିଅନ୍ତି । ତାହାର ଅଦୂର ଉତ୍ତରବର୍ତ୍ତୀ ସ୍ତୂପର ନାମ 'ଝୁଙ୍ଗି' । ଏଥିରେ ନଗର ରକ୍ଷକ କୋଟୁଆଳମାନେ ବାସ କରୁଥିଲେ । ଦୁର୍ଗର ଏହି ଐଶାନ-ଝୁଙ୍ଗି ଛଡ଼ା ପ୍ରତି କୋଣରେ ଏହିପରି ଗୋଟିଏ ଗୋଟିଏ ଝୁଙ୍ଗି ଥିବାର ସ୍ଥାନୀୟ ବୃଦ୍ଧମାନେ କହନ୍ତି । ଦୁର୍ଗର ଉତ୍ତର ଦ୍ୱାରରେ ପ୍ରବେଶ କଲେ ସମ୍ମୁଖରେ ଗୋଟିଏ ପ୍ରକାଣ୍ଡ ସ୍ତୂପ ପଡ଼େ । ଏହା ରାଜାଙ୍କର 'ବୈଠକଖାନା' ଥିବାର ଲୋକେ ଅନୁମାନ କରନ୍ତି । ତାହାର କିଞ୍ଚିତ ଦକ୍ଷିଣ ପଶ୍ଚିମରେ ଗୋଟିଏ ବିଶାଳ ସ୍ତୂପୀକୃତ ବିଷମବେଦୀ ପଡ଼ିଛି । × × × ପ୍ରାୟ ଆଠହାତ ଉଚ୍ଚ ଏହି ପଥରବେଦୀଟି ପୂର୍ବ ରାଜପ୍ରାସାଦ ଥିଲା । ଏହା ଉପରେ ବୁଲିଲେ ଅଦ୍ୟାପି ପ୍ରକୋଷ୍ଠର ଚିହ୍ନ ଜାଣିହୁଏ । ପଶ୍ଚିମ ବାରଣ୍ଡାର ଅନତିଦୂରରେ ରାଣୀହଂସପୁରର ଭଗ୍ନାବଶେଷ ଦିଶେ । × × × ଉକ୍ତ

(୧୫) The Antiqutes of orissa, by R. L. Mitra, Vol II, P 163, 30th Sept 1963

ରାଜପ୍ରାସାଦର ପୂର୍ବ ଏବଂ ସିଂହଦ୍ୱାରର ପଶ୍ଚିମ, ମଧ୍ୟ ଭାଗରେ ଗୋଟିଏ ପ୍ରସ୍ତର ବେଦୀ ଉପରେ ପୂର୍ବମୁଖୀ ଦୁଇଟି ମୂର୍ତ୍ତି ଦେଖାଯାଏ । ଏହି ଦୁଇ ମୂର୍ତ୍ତିକୁ ସ୍ଥାନୀୟ ଲୋକମାନେ ଇନ୍ଦ୍ର ଇନ୍ଦ୍ରାଣୀ କହନ୍ତି ।" (୧୬)

ଶ୍ରୀଯୁକ୍ତ ଦୈତ୍ୟାରି ମହାନ୍ତିଙ୍କ ବିବରଣୀରୁ ଅମରାବତୀ ଗଡ଼ର ଅବସ୍ଥିତି ସମ୍ପର୍କରେ ଆଉ କେତେକ ସୂଚନା ମିଳିଥାଏ । ସେ ମହାଶୟ ଅମରାବତୀ ପରିଦର୍ଶନରେ ଯାଇ ଯାହା ଦେଖିଥିଲେ ତାହା 'ଉତ୍କଳ ସାହିତ୍ୟ'ରେ ଲିପିବଦ୍ଧ କରି ଯାଇଛନ୍ତି । ସେଥିରୁ ଜଣାଯାଏ, "ଅମରାବତୀ ବେଢ଼ା ଅତି ପ୍ରଶସ୍ତ, ତାହା ପ୍ରସ୍ତର ନିର୍ମିତ ଏକ ପ୍ରାଚୀର ଦ୍ୱାରା ବେଷ୍ଟିତ । ବେଢ଼ା ମଧ୍ୟକୁ ଗୋଟିଏ ମାତ୍ର ପ୍ରବେଶ ଦ୍ୱାର ଅଛି । ସେହି ପ୍ରବେଶପଥର ଉଭୟ ପାର୍ଶ୍ୱରେ ଥିବା ପ୍ରାଚୀରର ଅଂଶ ଦୃଢ଼ ଓ ପ୍ରଶସ୍ତ । ତାହା କେତେକାଂଶରେ ବାରବାଟୀ ଦୁର୍ଗର ପ୍ରବେଶଦ୍ୱାର ସଦୃଶ । ସମୁଦାୟ ପ୍ରାଚୀରରେ ଥିବା ପ୍ରସ୍ତରଖଣ୍ଡମାନ ଉପର୍ଯ୍ୟୁପରି ରକ୍ଷିତ ହୋଇଅଛି । ମାତ୍ର ସେଗୁଡ଼ିକ ଚୂନ ମସଲା ଦ୍ୱାରା ପରସ୍ପର ସଂଶ୍ଳିଷ୍ଟ ହୋଇଥିଲା କି ନାହିଁ ତାହା ଜଣାପଡ଼ୁ ନାହିଁ । ବୋଧହୁଏ କାଳକ୍ରମେ ପ୍ରସ୍ତର ଦେହରୁ ଚୂନ ମସଲା ଗୁଡ଼ିଯାଇଅଛି । ବେଢ଼ା ମଧ୍ୟରେ ଭିନ୍ନ ଭିନ୍ନ ସ୍ଥାନରେ ଭଗ୍ନ ଗୃହର ଭିତ୍ତିମାନ ରହିଅଛି । ଲତା ଗୁଳ୍ମ ଜଙ୍ଗଲ ହୋଇଥିବାରୁ ସର୍ପ ଭୟରେ ଲୋକେ ସେ ସ୍ଥାନ ମାଡ଼ି ନାହାନ୍ତି । ଭଗ୍ନଗୃହର ଦ୍ୱାର ଦେଶରେ ଥିବା ପ୍ରସ୍ତର ସ୍ତମ୍ଭମାନ ଦୂରକୁ ଦେଖାଯାଉଅଛି । ବେଢ଼ା ମଧ୍ୟରେ ଥିବା ଏକ ବୃକ୍ଷ ମୂଳରେ ପ୍ରସ୍ତର ନିର୍ମିତ ଦୁଇଗୋଟି ଦେବମୂର୍ତ୍ତି ଏବଂ ଆଉ କେତେକ କ୍ଷୁଦ୍ର ଓ ଭଗ୍ନମୂର୍ତ୍ତି ରହିଅଛି । ସେମାନଙ୍କ ମସ୍ତକରେ ସିନ୍ଦୂର ଦିଆଯାଇଅଛି । ସେହି ବଡ଼ ମୂର୍ତ୍ତି ଦିଓଟିକୁ ଲୋକେ ଇନ୍ଦ୍ର ଓ ଶଚୀଙ୍କର ବିଗ୍ରହ ବୋଲି କହିଲେ । ଆଉ ଗୋଟିଏ ଅପେକ୍ଷାକୃତ କ୍ଷୁଦ୍ର ବିଗ୍ରହ ସନ୍ନ୍ୟାସୀର ପ୍ରତିମୂର୍ତ୍ତି ପରି ବୋଧହେଲା । ଶୁଣିଲୁଁ, ଅନ୍ୟାନ୍ୟ ଭଗ୍ନମୂର୍ତ୍ତିଗୁଡ଼ିକ ବୃକ୍ଷରୋପଣ ବା ସେହିପରି ଅନ୍ୟ କୌଣସି ଉଦ୍ଦେଶ୍ୟରେ ଭୂମି ଖନନ କଲାବେଳେ ସେ ସ୍ଥାନରୁ ବାହାରି ଅଛି । ସେ ସ୍ଥାନରେ ଯେଉଁ ବାର୍ମ୍ଫିର ଜଳ ବ୍ୟବହାର କରାଯାଉ-ଅଛି, ତାକୁ ଲୋକେ ବସୁକଲ୍ପରାଜଙ୍କ ସମୟର ବାର୍ମ୍ଫି ବୋଲି କହିଲେ । ସେ ସମସ୍ତ ଦେଖି ଆମ୍ଭେମାନେ ବିଶ୍ୱାସ କଲୁଁ, ଅମରାବତୀ ପୂର୍ବେ କୌଣସି ଧର୍ମପରାୟଣ ଉତ୍କଳୀୟ ରାଜାଙ୍କର ଗିରି ଦୁର୍ଗ ଥିଲା ।" (୧୭)

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଅମରାବତୀଗଡ଼ର ଧ୍ୱଂସସ୍ତୂପ ଦେଖି କେତେକ ତଥ୍ୟ ତାଙ୍କ 'ଇତିହାସ ଓ କିମ୍ବଦନ୍ତୀ' ପୁସ୍ତକରେ ସନ୍ନିବେଶ କରିଅଛନ୍ତି । ସେଥିରେ ସେଥିରେ ଅଛି, "ଦୁର୍ଗଟି ଗୋଟିଏ ଲମ୍ବା ପାହାଡ଼ର ଅଳ୍ପ ଦୂରରେ ଅବସ୍ଥିତ ଥିଲା । ଏଣୁ ପାହାଡ଼ଟି ଦୁର୍ଗର ରକ୍ଷା ବ୍ୟବସ୍ଥାକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ ଏହାକୁ ପ୍ରଚ୍ଛନ୍ନ

(୧୬) ମୁକୁର, ୫ମ ସଂଖ୍ୟା, ୭ମ ଭାଗ, ଭାଦ୍ର, ୧୩୨୦, ପୃ. ୧୦୨-୧୦୪ ।

(୧୭) ଉତ୍କଳ ସାହିତ୍ୟ—୩୫ଶ ଭାଗ, ୧୦ମ ସଂଖ୍ୟା, ମାଘ ୧୩୩୯, ପୃ୩୮୩-୩୮୪ ।

ଅବସ୍ଥାରେ ରଖିବା ପାଇଁ ମଧ୍ୟ ସାହାଯ୍ୟ କରୁଥିଲା । ଦୁର୍ଗଟିର ପ୍ରାଚୀର ବର୍ତ୍ତମାନ ସୁଦ୍ଧା ସାମାନ୍ୟ ଅଂଶରେ ରହିଛି ଓ ଏଥିରୁ ଜଣାଯାଏ ଯେ ଏହାର ଆୟତନ ଖୁବ୍ ବଡ଼ ନ ଥିଲା । ଏହା ମଧ୍ୟରେ ଦୁଇଟି କୂପ; କେତେକ ବାସଗୃହର ଭଗ୍ନାବଶେଷ ଓ ସଭାମଣ୍ଡପ ନାମକ ଗୋଟିଏ ଉଚ୍ଚ ବେଦିକା ରହିଛି ।" (୧୮)

ଏ ସିନା ହେଲା ବିଭିନ୍ନ ଆଲୋଚକମାନଙ୍କର ବିବରଣୀ, ମାତ୍ର ଅମରାବତୀ ସମ୍ବନ୍ଧରେ ଯେଉଁ ବିବିଧ ଉକ୍ତିମାନ ପ୍ରାଚୀନ ଗ୍ରନ୍ଥ ସମୂହରେ ପରିଦୃଷ୍ଟ ହୁଏ ତାହା ଅବଶ୍ୟ ଲକ୍ଷ୍ୟ କରିବାର କଥା । ସେ ସମସ୍ତ ବିଷୟକୁ ଯଦି ବିଚାର କରାଯାଏ ତେବେ ଅମରାବତୀ କଟକର ମହିମା ସମ୍ପର୍କରେ ଅନେକ କିଛି ସ୍ପଷ୍ଟ ସଙ୍କେତ ମିଳି ପାରିବ । ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକରେ ବର୍ଣ୍ଣିତ ହୋଇଥିବା ବିବରଣୀରୁ ପ୍ରମାଣ ମିଳେ ଯେ ବସୁକଳ୍ପ ନାମଧେୟ ଜଣେ ରାଜା (ଯୁଧିଷ୍ଠିରଙ୍କ ପରବର୍ତ୍ତୀ) ଏହି ଗଡ଼ରେ ରାଜତ୍ୱ କରୁଥିଲେ । (୧୯) ସେ ସେଠାରେ ଇନ୍ଦ୍ର ଓ ଶଚୀଙ୍କ ମୂର୍ତ୍ତି ସ୍ଥାପନକରି ପୂଜା କରୁଥିବାରୁ କାଳକ୍ରମେ ସେ ସ୍ଥାନ ଇନ୍ଦ୍ର ଇନ୍ଦ୍ରାୟୁଣୀପୁର ରୂପେ ପ୍ରସିଦ୍ଧି ଲାଭ କରିଥିଲା । (୨୦) ତାଙ୍କ ପୌତ୍ର ହିବ୍ୟଲୋଚନଙ୍କୁ ବିବାହ ବାସରରେ ବ୍ୟାଘ୍ର ଭକ୍ଷଣ କରିବ ବୋଲି ଭବିଷ୍ୟତ ବାଣୀ ଶୁଣି ସେ ଅମରାବତୀ କଟକର ଅଦୂରବର୍ତ୍ତୀ ପୁଷ୍କରଣୀ 'ସାଳପୋଖରୀ' (ବର୍ତ୍ତମାନ ସ୍ଥାନୀୟ

---

(୧୮) ଇତିହାସ ଓ କିମ୍ବଦନ୍ତୀ—ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପୃ-୧୯, ପ୍ରକାଶକ-ଉତ୍କଳ ବିଶ୍ୱବିଦ୍ୟାଳୟ ।

(୧୯) "**ବସୁକଳ୍ପ** ରାଜା ନଗର ପ୍ରାଙ୍ଗଣ ଦୁରେ ଥିବ । କାହିଁ ହସୁଥିବ ମୁଁ କାହିଁ ବସି କାନ୍ଦୁଣ ଥିବ ।" ।୪୦।

କଳି ବସ୍ତ୍ରାଳଶ (ଉତ୍ତର ଖଣ୍ଡ) ଅଚ୍ୟୁତାନନ୍ଦ ଦାସ, ଅପ୍ରକାଶିତ, ପୋଥିଟି ଜଗିପଡ଼ା ନିବାସୀ ଶ୍ରୀ କ୍ଷେତ୍ରବାସୀ ବେହେରାଙ୍କ ଠାରୁ ପ୍ରାପ୍ତ । "ଜାଣିଥାଅ କହୁଅଛି ନିକଟ ବିଚାର । ଜାଣିଲେ ଅମରାବତୀ ନଗ୍ର ଯେ କୋଣର ଯହିଁ **ବସୁକଳ୍ପ** ରାଜା ଗଡ଼ କରିଥାଇ । × × × × × ।"

ଶିଶୁ ଅନନ୍ତଙ୍କ 'ଗୁପ୍ତ ଚଉତିଶା'—ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ ।

(୨୦) "ଯହିଁ ବସୁ କଳ୍ପ ନଗର କହି । କ୍ଷୀରଧାର ଯହିଁ ଗୁପତ ହୋଇ ।

ଯହିଁ **ଇନ୍ଦ୍ର ଇନ୍ଦ୍ରାଣୀ** ବାସସ୍ଥାନ । ତହିଁ ବାଲ୍ମିକ ତପୀ ଆଶ୍ରମ ।"

ଗୁପ୍ତକଳ୍ପ—ଜଗନ୍ନାଥ ଦାସ, ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ ।

(କ୍ଷୀର ଧାର ଗୁପ୍ତ ହେବା ପ୍ରସଙ୍ଗ ଯାହା ଏଥିରେ କୁହାଯାଇଛି ତାହା ଅମରାବତୀ ସ୍ଥାନ ବୋଲି ହାଡ଼ି ଦାସ ତାଙ୍କ 'କଳି ଚଉତିଶା'ରେ ପ୍ରକାଶ କରିଛନ୍ତି । ଯଥା:—
'କ୍ଷୀର ଧାର ବହି ଯାଉଛି ସ୍ଥାନ ଅମରାବତୀ ।' ୨/୧

"ଭେଟି ସାଗରକୁ ଲଟାଇ **ଇନ୍ଦ୍ରାୟୁଣୀ** ଭୁବନ । ଗଣ୍ଡୁ ହ୍ରଦ ନଦୀ ତଟରେ ପ୍ରଭୁ କରିବେ ସ୍ନାନ ।" ।୨୩।

ମହିମା ଲେଖନ ଭବିଷ୍ୟାନ୍ତ, ଜଗନ୍ନାଥ ଦାସ, ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ ।

ଗ୍ରାମାନୁସାରେ ଡାକ ନାମ ନେଳିଆ ପୋଖରୀ) ଭିତରେ ସ୍ୱକୀୟ ପୁତ୍ର ପଦ୍ମଲୋଚନଙ୍କ ଦ୍ୱାରା ଏକ ମହଲ ନିର୍ମାଣ କରିବା ପ୍ରସଙ୍ଗ ଏବେ ବି ଜନଶ୍ରୁତିରେ ଜୀବିତ ଅଛି ।(୨୧)

ପୁଣି ଆଉ କେତେକ ବିବରଣୀରୁ ପ୍ରକାଶ ପାଏ ଯେ ଏହି କଟକରେ ବିଶ୍ୱାବସୁ ନାମଧେୟ ଶବର ନୀଳମାଧବଙ୍କ ଉପାସନା କରିବା ପାଇଁ କୁଟୀର ନିର୍ମାଣ କରି ରହୁଥିଲେ ଏବଂ ବ୍ରାହ୍ମଣ ବିଦ୍ୟାପତି ମଧ୍ୟ ଏହି ସ୍ଥାନକୁ ନୀଳମାଧବଙ୍କୁ ଖୋଜିବାପାଇଁ ଆସି

---

[ଏଥିରେ ଇନ୍ଦ୍ରାୟୁଣୀ ଭୁବନ ବା ଅମରାବତୀ କଟକର ଅଦୂରରେ ଅବସ୍ଥିତ ଥିବା ଭଞ୍ଜସାଗର ତଥା ଗଣ୍ଡୁନଦୀ (ଗଙ୍ଗୋତ୍ରୀ ବା ଗେଙ୍ଗୁଟି) କଥା କୁହା ଯାଇଅଛି । ଭଞ୍ଜସାଗର ସମ୍ପର୍କରେ ସ୍ଥାନୀୟ କିମ୍ବଦନ୍ତୀ ଅଛି ଯେ, ପୂର୍ବେ ଭଞ୍ଜ ଉପାଧିଧାରୀ ଜଣେ ପଶ୍ଚିମ ବ୍ରାହ୍ମଣ ଜଗନ୍ନାଥଙ୍କ ଦର୍ଶନ ପାଇଁ ସଡ଼କରେ ଚାଲିଯିବା ବେଳେ ସ୍ନାନକ୍ରିୟା ସମ୍ପାଦନ ପାଇଁ ଏହି ପୁଷ୍କରିଣୀକୁ ଗମନ କଲେ । ଏଥିରେ ଗାଧୋଇବା ପରେ ତାଙ୍କ ଶରୀରରେ ଥିବା କୁଷ୍ଠରୋଗ ଆରୋଗ୍ୟ ହୋଇଯିବାରୁ ସେ ପ୍ରୀତ ହୋଇ ଯେଉଁ ପୁଷ୍କରିଣୀ ଖୋଳାଇଥିଲେ ତାହାର ନାମ ଭଞ୍ଜସାଗର । କଳ୍କି ରାମଙ୍କ 'ଜଣାଣ ଚଉତିଶା'ରେ ଏହି ବିଷୟ ମଧ୍ୟ ପ୍ରକାରାନ୍ତରେ ବର୍ଣ୍ଣିତ ହୋଇଅଛି । ଯଥା:—'ଭଞ୍ଜସାଗର ଉତ୍ତରକୁ ପଙ୍ଗୁଗିରି ଲଙ୍ଘିଣ ।' ୨୪/୧]

(ବିନୁ ପ୍ରେସ, କଟକ-୧, ଲେଖକ ଓ ପ୍ରକାଶକ—ଶ୍ରୀ ଦୀନବନ୍ଧୁ ସାହୁ ।)

ସେହିଭଳି ଗଣ୍ଡୁ ନଦୀର ପବିତ୍ରତା ବିଷୟ ନେଇ ପଦ୍ମପୁରାଣ ପାତାଳ ଖଣ୍ଡରେ ଉକ୍ତ ଅଛି ଯେ ପୁରା ପ୍ରଜାପତି ପ୍ରଜାବର୍ଗଙ୍କୁ ପାପରହିତ କରିବା ପାଇଁ ସ୍ୱକୀୟ ଗଣ୍ଡ ବିନ୍ଦୁମାନଙ୍କରେ ଗଣ୍ଡକୀ ନଦୀକୁ ସୃଷ୍ଟି କରିଥିଲେ । ସେଥିରେ ଅଛି—

"ଗଣ୍ଡକ୍ୟାଖ୍ୟଂ ନଦୀ ରାଜନ୍ ସୁରାସୁର ନିଷେବିତା ।<br>
ପୁରା ଦୃଷ୍ଟ୍ୱା ପ୍ରଜା ନାଥଃ ପ୍ରଜାଃ ସର୍ବାବପାପିନୀଃ ।<br>
ସ୍ୱଗଣ୍ଡ ବିପୃଷାନେକ ପାପଘ୍ନୀ ସୃଷ୍ଟବାନିମାଂ ।"

(ପଦ୍ମପୁରାଣ, ପାତାଳଖଣ୍ଡ, ୨୦ ଅଧ୍ୟାୟ)

(୨୧) ଏ ସମ୍ପର୍କରେ କବି କର୍ଣ୍ଣ ବିରଚିତ 'ପଦ୍ମଲୋଚନ ପାଲା' ଦ୍ରଷ୍ଟବ୍ୟ । ବିବାହ ବାସରରେ ବର ଓ କନ୍ୟାଙ୍କ ମଧ୍ୟରେ ହୋଇଥିବା ଉକ୍ତି-ପ୍ରତ୍ୟୁକ୍ତି ଏଥିରେ ନିମ୍ନୋକ୍ତରୂପେ ଲିପିବଦ୍ଧ ଅଛି ।

"ତଥାପି କରୁନା କରି ବୋଲେନ୍ ସ୍ୱାମୀକେ । ମହଲ ପଡ଼ିଆ କେନ ଜଲ ମଧ୍ୟେ ଥାକେ । ୨୩ ।

ବର ବୋଲେ ଆଗୋ କନ୍ୟା ଶୁନ ମୋ ଉତ୍ତର । ବିଦ୍ୟାବନ୍ତେ ବ୍ୟାଘ୍ର ଖାବେ ପୁଷ୍ପେର ମନ୍ଦର" । ୨୪ ।

(ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, ଅଲିଶା ବଜାର, କଟକ-୨)

ବିଶ୍ୱାବସୁଙ୍କ କନ୍ୟା ଲଳିତାଙ୍କ ସହିତ ପ୍ରଣୟସୂତ୍ରରେ ଆବଦ୍ଧ ହୋଇଥିଲେ (୨୨) ଏ ସବୁ ଦେଖିଲେ ମନେହୁଏ ଯେ ଅମରାବତୀ କଟକର ମାହାତ୍ମ୍ୟ ପ୍ରତିପାଦନ କରିବା ଲାଗି ସମ୍ଭବତଃ ପରବର୍ତ୍ତୀ ସମୟରେ କେହି କବି ଏହାକୁ ନୀଳମାଧବଙ୍କ ସ୍ଥାନ ରୂପେ ତାଙ୍କ ରଚନାରେ ସୂଚିତ କରିବାକୁ ପ୍ରୟାସୀ ହୋଇଅଛନ୍ତି । ଅମରାବତୀ ସମ୍ପର୍କରେ ଆଲୋଚନା କଲା ବେଳେ ଆଉ ଏକ ଲୋକବିଶ୍ୱାସ ମନରେ ଅଦ୍ଭୁତ ଧାରଣା ସୃଷ୍ଟି କରେ । ଏହି ବିଶ୍ୱାସ ପ୍ରସଙ୍ଗରେ ସ୍ଥାନୀୟ ଲୋକେ କହିଥାନ୍ତି ଯେ ଅମରାବତୀଠାରୁ ଛତିଆବଟ ପର୍ଯ୍ୟନ୍ତ ଏଭଳି ଅଢ଼ାଇପାଦ ସ୍ଥାନ ଅଛି ଯାହାକୁ ମାଡ଼ିଲେ ମନୁଷ୍ୟର ଆଉ ମୃତ୍ୟୁ ହୁଏ ନାହିଁ । ପ୍ରାଚୀନ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବା ବିଷୟ (ଏଥିରେ ଅମରାବତୀକୁ ଅମର ଭୂମିରୂପେ ସୂଚିତ କରାଯାଇଛି) ମଧ୍ୟ ଏଭଳି ଲୋକମତକୁ ଦୃଢ଼ୀଭୂତ କରେ । (୨୩) କିନ୍ତୁ ବାସ୍ତବ ଦୃଷ୍ଟିରୁ ତାହା କେତେଦୂର ସତ୍ୟର ସମୀପବର୍ତ୍ତୀ ଏକଥା ଲୋକମାନଙ୍କୁ ପଚାରିଲେ ସେମାନେ ସେହି ଅଢ଼େଇ ପାଦ ଅମରଭୂମି ଉପରେ ଅମରେଶ୍ୱର

---

(୨୨) ବିଶ୍ୱାବସୁ ନାମେ ଥିଲା ଏକଇ ଶବର । ଅମରାବତୀ କଟକ ପାଶେ ତା'ର ଘର ।
ଭକ୍ତ ବର ସେ । ସ୍ୱପ୍ନେ ଆଜ୍ଞା ଦେଲେ ନିରାକାର ଯେ । ୩ ।

× × ×

ଅମରାବତୀ ପର୍ବତେ କରନ୍ତେ ସନ୍ଧାନ । ଲଳିତା କନ୍ୟା ଦେଖିଲା ସୁ ରୂପ ରଚନ ।
ହୋଇ ସ୍ନେହୀ ସେ । ମିଳିଲା ତା'ର ପାଶେ ଯାଇଁ ସେ । ୨୬ ।
ନୀଳମାଧବ ଗୀତା, ହାଡ଼ିଦାସ, ଅପ୍ରକାଶିତ ପୋଥିଟି ଚମ୍ପାପୁର ନିବାସୀ ଶ୍ରୀ ଧଡ଼ି ଦାସଙ୍କ ସ୍ୱୀଙ୍କ ସୌଜନ୍ୟରୁ ପ୍ରାପ୍ତ ।
"କହିବ ମୁଁ ଏ ପାହାଡ଼ ନାମ କଳାଗିରି । ପୁଣି ଏକ ନାମ ୟାର ଗୁପ୍ତ ଖଣ୍ଡଗିରି ।
ଆଉ ଏକ ହେ । ଅମରାପୁର ସେ ପ୍ରତ୍ୟକ୍ଷ ହେ । ୨୦ ।

× × ×

ଜରାବଂଶେ ମହା ଭକ୍ତ ଜନମିଲା ଏକ । ବସୁକଲ୍ପ ନାମ ତା'ର ଖୋଜିଣ ଅନେକ ।
ମୋର ଭେଟ ହେ । ଏଠାରେ ପାଇଲା ଭକ୍ତ ଶ୍ରେଷ୍ଠ ହେ । ୩୪ ।

(ଶୂନ୍ୟ କଳ୍ପଗୀତା—୧୪ ବୋଲି, ଭଣିତା ଗଦାଧର ଦାସ, ପୋଥିଟି ଛତିଆ ନିବାସୀ ଶ୍ରୀ ମଣି ଦାସଙ୍କ ସୌଜନ୍ୟରୁ ପ୍ରାପ୍ତ ।)

(୨୩) "ଅମର ଭୂଇଁରୁ ଅମରାବତୀ । ଜାଣି ଅଚ୍ୟୁତ ହୋଇଥିବେ ସ୍ଥିତି । ୮ ।
ଅମର ଭୂଇଁରେ ସମର ସ୍ଥାନ । ଆବୋରି ଥିବେ ରେବତୀ ରମଣ । ୯ ।
(—ମାଳିକା (କ) ଶିଶୁ ଅନନ୍ତ ଅପ୍ରକାଶିତ, ମନ୍ତ୍ରକର୍ତ୍ତୃକ ସଂଗୃହୀତ ।)
"ଅମରାବତୀ ଯେ ବୋଲିଣ କଟକ ଅମର ଭୂଇଁଟି କହି ।
ଅମୂଲ୍ୟ ନିଧି ବୋଲିଣ ଏକ ଦ୍ରବ୍ୟ ଅଛି ହେ ଗରୁଡ଼ ତହିଁ । ୧୯ ।
ସେ ସ୍ଥାନର ଗୁଣ କହିବା ହୋ ଶୁଣ ଅପୂର୍ବ ସ୍ଥାନ ସେ ଜାଣ ।
ଦ୍ୱାପର ଯୁଗରେ ବନ୍ଧ ହୋଇଥିଲେ ଯୁଧିଷ୍ଠିର ନରଗଣ । ୨୦ ।

ଶିବଙ୍କ ଶକ୍ତି ଉଦ୍ଧାରେ ବୃଦ୍ଧି ସୂଚିତ କରିଥାନ୍ତି । ସୁତରାଂ ଏଥିରୁ ପ୍ରମାଣିତ ହୁଏ ଯେ ଶିବଙ୍କ ଶକ୍ତି ଉଦ୍ଧାରେ ଚିନ୍ତା ହେବା ଯେଉଁଭଳି ଅସମ୍ଭବ, କୌଣସି ମନୁଷ୍ୟ ପକ୍ଷରେ ଅମରତ୍ଵ ଲାଭ କରିବା ମଧ୍ୟ ସେଇଭଳି ଅସମ୍ଭବ ।

ଅମରାବତୀ କେବଳ ଅମର ସ୍ଥଳୀ ବୋଲି ଯେ ପ୍ରସିଦ୍ଧ ତା' ନୁହେଁ—ପରନ୍ତୁ ଏହା କଳିଯୁଗର ଏକ ପ୍ରଧାନ ତୀର୍ଥସ୍ଥାନ ରୂପେ ପୌରାଣିକ ଗ୍ରନ୍ଥରେ ପ୍ରତିପାଦ୍ୟ । ଏହି ସ୍ଥାନର ଅଦୂରବର୍ତ୍ତୀ କଳକଳାଗଡ଼ (୨୪)କୁ ସିଦ୍ଧମୁନି ଶାରଳା ଦାସ ତାଙ୍କ ମହାଭାରତରେ କଳିଯୁଗର ଏକ ପ୍ରଧାନ ପୀଠରୂପେ ଗୌରବ ଦେଇଛନ୍ତି । (୨୫) ପୁଣି

---

ସାଧୁମାନଙ୍କର ମେଳ ସେହିଠାରେ ହେଉଥାଏ ଗାବାଦନ ।
ମୋହଠାରେ ଚିତ୍ତ ରଖି ମୋ ଭକତ ନାମ କରନ୍ତି ଭଜନ । ୨୧ ।
ସେ ଠାବରେ କେବେ କାଳ ନ ଗ୍ରାସିବ କହୁଅଛି ଖାର ଚୋରେ ।
ସିଦ୍ଧଗିରି ବୋଲି ଯେଉଁ ଗିରି କହି ସେଠାରେ ମହିମା ଯେତେ । ୨୨ ।

(ଗରୁଡ଼ଗୀତା, ଅଚ୍ୟୁତାନନ୍ଦ ଦାସ ପୃ· ୯, Printed by H.M. Dutta, Dutta Press, Cuttcak, 1928)

(୨୪) କଳକଳା ଗଡ଼ ସମ୍ପର୍କରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ବିବରଣୀ ଉଲ୍ଲେଖଯୋଗ୍ୟ । ସେ ଲେଖିଛନ୍ତି—"ପୂର୍ବେ ଦର୍ପଣ ଓ କଳାକଳା ମିଶି ସମଗ୍ର ଅଞ୍ଚଳଟି ଦର୍ପଣ ଜମିଦାରୀ ନାମରେ ପରିଚିତ ଥିଲା । ଓଡ଼ିଶାର ସମ୍ରାଟ କପିଳେନ୍ଦ୍ର ଦେବ ତାଙ୍କ ଜାମାତା ଗୁରୁ ବିଦ୍ୟାଧରଙ୍କୁ ଦର୍ପଣ ଜମିଦାରୀଟି ଯୌତୁକ ସ୍ୱରୂପ ଦେଇଥିଲେ । ଗୁରୁ ବିଦ୍ୟାଧରଙ୍କ ଦଶ, ବାର ପୁରୁଷ ପରେ ଗୋପୀନାଥ ବିଦ୍ୟାଧରଙ୍କ ସମୟରେ ଓଡ଼ିଶାରେ ମୁସଲମାନ ରାଜତ୍ୱ ପ୍ରତିଷ୍ଠିତ ହେଲା । ମୁସଲମାନ ଶାସକ ତାଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରେଇବା ପାଇଁ ବହୁ ଚେଷ୍ଟା କରିଥିଲେ । ଗୋପୀନାଥ ବିଦ୍ୟାଧର ରାଜି ନ ହୋଇ ନିଜ ପ୍ରାଣ ରକ୍ଷା କରିବାକୁ ଭୟରେ କଳକଳା ଅଞ୍ଚଳରେ ଥିବା ଜଙ୍ଗଲ ଭିତରକୁ ଲୁଚି ପଳେଇଲେ । ଥରେ ଶାସକ ଶିକାର ଉଦ୍ଦେଶ୍ୟରେ ବଣକୁ ଯାଇଥିଲେ । ଗୋପୀନାଥ ତାଙ୍କୁ ଶିକାରରେ ବହୁତ ସାହାଯ୍ୟ କରିଥିବାରୁ ଶାସକ ଖୁଆଡ଼େ ସନ୍ତୁଷ୍ଟ ହୋଇ କଳକଳା ଅଞ୍ଚଳଟି ତାଙ୍କୁ ଦାନ କରିଥିଲେ ।"

( ଗତ ଶତାବ୍ଦୀର ଓଡ଼ିଶା, ପୃ ୫୦/୫୧, ପ୍ରକାଶକ-ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର, ପୁରୀ ।)

(୨୫) "କଳିଯୁଗ ବାନ୍ଧିଥିଲେ ଯେଉଁ ବନସ୍ତରେ ।
କଳକଳା ଗଡ଼ ବୋଲି ହୋଇଲା ସେଠାରେ ।"

(ମହାଭାରତ (ସ୍ୱର୍ଗାରୋହଣ ପର୍ବ), ଶାରଳା ଦାସ, ପୃ ୧୭, ଶ୍ରୀ ରାଧାରମଣ ପୁସ୍ତକାଳୟ, ବାମଚଉଡ଼ି, କଟକ-୨)

ଗୃହ୍ନୁତରେ ବିଦ୍ୟମାନ ଥିବା ଏହି ପବିତ୍ର ଭୂମିରେ ଜଗନ୍ନାଥଙ୍କର ମହିମା ପ୍ରକଟିତ ହେବ ବୋଲି ବିଭିନ୍ନ ଗ୍ରନ୍ଥଗୁଡ଼ିକରେ ଉଲ୍ଲେଖ ଅଛି । ପ୍ରାଚୀନ ଗ୍ରନ୍ଥରେ ଲିପିବଦ୍ଧ ହୋଇଥିବା ସେହିସବୁ ତଥ୍ୟରୁ ଜଣାଯାଏ ଯେ ଅମରାବତୀ ହେଉଛି କୁବେରଙ୍କ ଭଣ୍ଡାର । ଏଠାରେ ଧନପତି କୁବେର ତାଙ୍କର ସମସ୍ତ ସମ୍ପଦ ଗଚ୍ଛିତ କରି ରଖିଅଛନ୍ତି । ସେଥିନିମନ୍ତେ ସେଥିକୁ ଜଗିବା ପାଇଁ ଗୋପ କନ୍ୟାମାନେ ଗୁପ୍ତରେ ଦେହ ଧାରଣ କରି ଏହି ପୁଣ୍ୟସ୍ଥଳୀକୁ ଆବୋରି ରହିବା ପ୍ରସଙ୍ଗ ଗ୍ରନ୍ଥ ବର୍ଣ୍ଣନାରୁ ପ୍ରତିପାଦିତ ହୋଇଥାଏ । ଆଉ କେତେକ ଗ୍ରନ୍ଥରେ ଅମରାବତୀକୁ ଗୁପ୍ତ ଦ୍ୱାରିକାରୂପେ ଗ୍ରହଣ କରାଯାଇଅଛି ଏବଂ ଏହି ପୀଠର ଅଦୂରବର୍ତ୍ତୀ ସ୍ଥାନରେ ମହାତ୍ମା ହାଡ଼ିଦାସ କାଶିଗର କୂଳରେ ଜନ୍ମଲାଭ କରି ଅନନ୍ତ-ଗୋପାଳ ରୂପେ ପୂଜା ପାଇବା ବିଷୟ ମୁଦ୍ରିତ ହେଉଅଛି । ଏହି କଟକର ପାର୍ଶ୍ୱବର୍ତ୍ତୀ ସ୍ଥାନରୂପେ ଧନଆ ପାହାଡ଼, ଅମରେଶ୍ୱର ମହାଦେବ, ଦର୍ପଣୀ, ଛତିଆ, ରୁଦ୍ରପୁର, ଜଳେଶ୍ୱରୀକା, ଚମ୍ପାପୁର, ଭଞ୍ଜସାଗର, ନେଳିଆ ପୁଷ୍କରିଣୀ ଓ ବୁଢ଼ୀଭଇ ଦେବୀ ପ୍ରଭୃତିର ବର୍ଣ୍ଣନା ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ପରିଦୃଷ୍ଟ ହୁଏ । ସେହିସବୁ ତଥ୍ୟଗୁଡ଼ିକ ଏକତ୍ର ପ୍ରକାଶ କରିବା ସମ୍ଭବ ନ ହେଲେ ମଧ୍ୟ ବି ପ୍ରାମାଣିକତା ଦୃଷ୍ଟିରୁ ଅମରାବତୀ ସମ୍ବନ୍ଧରେ ବିଭିନ୍ନ କବିମାନଙ୍କର ପ୍ରକାଶିତ ଉକ୍ତିକୁ ନିମ୍ନୋକ୍ତ ମତେ ଦର୍ଶାଇ ଦିଆଯାଇ ପାରେ ।

**ଶାରଳା ଦାସଙ୍କ 'ମହାଭାରତ' :**

"ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି<br>
ପାଣ୍ଡବମାନେ ରହିଲେ ଯେ **ଅମରାବତୀ** ।<br>
ସୁହାଣୀ କନ୍ୟାକୁ ବିଭାହେଲେ ଧର୍ମସୁତ<br>
ରହିଲେ ଯେ ପଞ୍ଚସପ୍ତ ବର୍ଷ ପରିଯନ୍ତ ।<br>
ପରୀକ୍ଷିତେ ରାଜ୍ୟ ଦେଲେ ଯଜନ ନଗରୀ<br>
ପଞ୍ଚକଟକର ମଧ୍ୟେ ଏକ ଅଧିକାରୀ ।" (୨୭)<br>
(ସ୍ୱର୍ଗାରୋହଣ ପର୍ବ, ପୃ· ୨ ପ୍ରକାଶକ-ଶ୍ରୀ ରାଧାରମଣ ପୁସ୍ତକାଳୟ)

**ଜଗନ୍ନାଥ ଦାସଙ୍କ 'ମହିମାଲେଖା ଭବିଷ୍ୟାନ୍ତ' :**

"ଅମରାବତୀ ସେ ପୁରଟି ଛତିଆ ବୋଲି ଗ୍ରାମ<br>
ସେଠାରେ ମହିମା ଉଦୟେ ଥିବେ ପୁରୁଷୋତ୍ତମ" । ୫୭ ।<br>
(ଅପ୍ରକାଶିତ, ମତ୍କର୍ତ୍ତୃକ ସଂଗୃହୀତ)

---

(୨୭) ଉଲ୍ଲିଖିତ ପଦମାନଙ୍କରେ ଥିବା ଅମରାବତୀ ଓ ଯଜନ ନଗର (ଯାଜନଗର)କୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଯଥାକ୍ରମେ ଆଧୁନିକ ଛତିଆ ଏବଂ ଚଉଦ୍ୱାର ବୋଲି ତାଙ୍କ 'ଇତିହାସ ଓ କିମ୍ବଦନ୍ତୀ' ପୁସ୍ତକରେ ଗ୍ରହଣ କରିଅଛନ୍ତି । ଶାରଳା ଦାସଙ୍କ ଏହି ବର୍ଣ୍ଣନାରୁ ଜଣାଯାଏ ଯେ ସେତେବେଳେ ମଧ୍ୟ ଓଡ଼ିଶାରେ ପଞ୍ଚକଟକର ଅବସ୍ଥିତି ଥିଲା ।

**ଜଗନ୍ନାଥ ଦାସ 'ଭକ୍ତ ଚନ୍ଦ୍ରିକା' :**

"ମଣିନାଗ ନିକଟରେ ମହାରୁଦ୍ରପୁର
ମହିମା ପ୍ରକାଶ ହେବ ଅମରାବତୀର ।" ୨୦ ।

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଜଗନ୍ନାଥ ଦାସଙ୍କ 'ଉତ୍କଳ ଚଉତିଶା' :**

"ଖଣ୍ଡଗିରି ସ୍ଥାନ ଗୁପ୍ତ ପ୍ରମାଣ ଖ୍ୟାତବଟେ ଖ୍ୟାତ ହୋଇ
କ୍ଷୀର ଧାର ପୁଣ ଗଣ୍ଡକ ସଂଗମ ଉଦୟେ ହୋଇବ ମୁହିଁ ।"

× × ×

ଘର ଜମ୍ବୁଦ୍ୱୀପ ଭୂଅଖଣ୍ଡ ଜାଣ ଅମରାକଟକ ଯହିଁ
ଘୋଷଣ ଯେ ଦେବୁ ରାଜ୍ୟରେ ଫେରିବୁ ଗଣ୍ଡାକଡ଼ା ଭିକ୍ଷା ପାଇଁ ।

× × ×

ଠୁଳ ଶୂନ୍ୟନାଥ ଠୁଳେ ହୋ ବିଖ୍ୟାତ ଠାବ **ଅମରାପୁର**
ଠିକ ହୋ କଟକ କୁବେର ଭୁବନ ଯହିଁ ବା ଅମରେଶ୍ୱର ।"

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଅଚ୍ୟୁତାନନ୍ଦ ଦାସଙ୍କ 'ବାଲ୍ମୀକିକଳ୍ପ' :**

"ଧନଆ ବୋଲି ଗିରିବର । ଧନଆ ମହିମା ଅପାର ॥
ସେଠାରେ ଅମରାଧିବଟ । ଅମରେଶ୍ୱରଙ୍କ ନିକଟ ॥
ଅମରାବତୀ ସ୍ଥାନ ସେହି । ଛତିଆ ବୋଲି ଗ୍ରାମ କହି ॥
ନେଳିଆ ପୁଷ୍କରିଣୀ ତହିଁ । ବୁଢ଼େଇ ବୋଲି ଦେବୀ ରହି ॥
ସେଠାରେ ମହିମା ପ୍ରକାଶ । ରହିବୁ ରାମଚନ୍ଦ୍ର ଦାସ ॥
ତୋହ ମୋହର ଭେଟ ତହିଁ । ଭକ୍ତସାଗରକୁ ଅନାଇ ॥

(ପଞ୍ଚମ କଳ୍ପ, ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଅଚ୍ୟୁତାନନ୍ଦ ଦାସଙ୍କ 'ଶିବକଳ୍ପ' ଓ 'ନବଖଣ୍ଡ ନିର୍ଘଣ୍ଟ' :**

"ଅମରାଧିବଟ ତଳେ ଚହଟିବ ଲୀଳା
ଅଯୋଧ୍ୟାରେ ଲଗିଥିବ ଯୁଦ୍ଧ ଅନର୍ଗଳା ।"

(ଦ୍ୱାଦଶ ନିର୍ଘଣ୍ଟ, ବୟାଳିଶ ମୌଜା ପ୍ରେସ୍, ମଧୁପାଟଣା, କଟକ-୩)

**ଅଚ୍ୟୁତାନନ୍ଦ ଦାସଙ୍କ 'ଭବିଷ୍ୟ ଚଉତିଶା' :**

"ଠିକଣା ଆମରପୁର । ଠାକୁର ତହିଁରୁ ହେବେ ବାହାର
ରେ ରାମଚନ୍ଦ୍ର । ଠାରି ପଞ୍ଚସସ୍ତ୍ରଧର ।" ।୧୨।

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

"ଅଣଅ.ସ୍ତେ ଅନନ୍ତ ହେ ଅଖିଳ ଅନାଥନାଥ
'ଅମର କଟକେ' ବଜେ କରୁଥିବେ ପୂଜୁଥିବେ ଭକ୍ତବୃନ୍ଦ ।" ୧୫ ।

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଯଶୋବନ୍ତ ଦାସଙ୍କ 'ଭବିଷ୍ୟାନ୍ତ' :**

"ଗୁପତ ଦ୍ୱାରକା ସ୍ଥାନ **ଅମରା ଯେ ବଟୀ** ।
ସେଠାରେ ରହିବ ମୁଁ ଯେ କାଉଗର ମୂର୍ତ୍ତି । ୪୦ ।
ମୋହର ନାମ ହୋଇବ ଅନନ୍ତଗୋପାଳ ।
ଗୋପାଙ୍ଗନା ଘେରିଥିବେ ଯେ ଜନମଣ୍ଡଳ । ୪୧ ।

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଶିଶୁଅନନ୍ତଙ୍କ 'ଚଉତିଶା' :**

"ଝଗଡ଼ା ଲଗିବ ଅ**ମରାବତୀ କଟକ**ଠାରେ ।
ଝଲଣ ଅନାମେ ଅନନ୍ତ ଥିବେ ଯେ ଯୋଗରେ । ୯ ।
× × ×
ଠାବ ଯେ ଅମରାବତୀ ମୁଁ ଠାରେ କହିଲି ଶୁଣ ।
ଠୁଳ ଯେବେ ସର୍ବେ ହୋଇବେ ଚମ୍ପାଟରେ ହାଣ । ୧୨ ।

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଶିଶୁ ଅନନ୍ତଙ୍କ 'ଭବିଷ୍ୟତ ମାଳିକା' :**

"ଠାବ ସେ **ଅମରାବତୀ** ।
ଠୁଳ ଶୂନ୍ୟ ପ୍ରଭୁ ଖ୍ୟାତି ।
ଠାବ ନ ପାଇ ଭକତେ ।
ଠକ ଭ୍ରମିବେ ଜଗତେ ।
ଠାକୁରେ କହିଲେ ଶିଶୁ ଅନନ୍ତଙ୍କୁ
ହେତୁ ରଖିଥାଅ ଚିତ୍ତେ ।"

(ଅପ୍ରକାଶିତ, ମତ୍‌କର୍ତ୍ତୃକ ସଂଗୃହୀତ)

**ଶିଶୁ ଅନନ୍ତଙ୍କ 'ମାଳିକା' (ଖ) :**

"ଚମ୍ପାନଗ୍ରଠାରେ ଜନମ ହୋଇଣ **ଅମରାପୁରରେ ବାସ** ।
ଶାଳ ବନାଇଣ ଫାଳ ପଜାଇବ ନାମ ହେବ ହାଡ଼ିଦାସ ।"

(୧ମ ସଂସ୍କରଣ, ଇଉନାଇଟେଡ଼ ପ୍ରିଣ୍ଟର୍ସ-କଲିକତା)

**ଶିଶୁ ଅନନ୍ତଙ୍କ 'ଭକ୍ତିପ୍ରଦାୟିନ' :**

"**ଅମରାବତୀପୁର** ସ୍ୱର୍ଗକୁ କହନ୍ତି ଯହିଁ ଦେବତାଙ୍କ ମେଳ ।
ମାଳକନ୍ଦକଳ୍ପବଟ ବୋଲି ଯାହା ଥାନ୍ତି ଦଶଦିଗପାଳ ।
× × ×

କୁବେର ଯହିଁରେ ସମ୍ପଦ ରଖିଛୁ ଅମୂଲ୍ୟ ରତ୍ନଭଣ୍ଡାର ।
ଚନ୍ଦ୍ର ରବି ଯହିଁ ଉଦେ ଅସ୍ତ ହୋନ୍ତି ଯହିଁ ଥାନ୍ତି ଦିଗମ୍ବର ।"
(ଅପ୍ରକାଶିତ, ମଠକର୍ତ୍ତୃକ ସଂଗୃହୀତ)

**ଦୀନକୃଷ୍ଣଦାସଙ୍କ 'ଭବିଷ୍ୟତ ବାଣୀ' :**

"ଜଳୁକା ଛତିଆ **ଅମରାବତୀ କଟକ**
ଯହିଁ ହୁଲା ତହିଁ ଜାଣ ନ ଥିବ ଅଟକ ।" ୨୭ ।
(ଅପ୍ରକାଶିତ, ମଠକର୍ତ୍ତୃକ ସଂଗୃହୀତ)

**ଦୀନକୃଷ୍ଣ ଦାସଙ୍କ 'ଭବିଷ୍ୟ ବଞ୍ଜଳ ତଉଡଣା' :**

"ଛତିଆ ଗ୍ରାମ **ଅମରାବତୀ ଯେ କଟକ**
ଗୁଡ଼ ଚକା ଜଗନ୍ନାଥ ଦେଖିବ ସୁଜ୍ଞ ଲୋକ ।" ୭ ।
(ଅପ୍ରକାଶିତ, ମଠକର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ଜାମୁଡାଳ ଗୀତ' :**

"**ଅମରାବତୀ କଟକ ଲୋ ଅମରାବତୀ କଟକ**
ଦୁନିଆ ଭିତରେ ଯେତେ ନାଟକ ଶବସ୍ଥି ଲୋ
ନବନାଗସ୍ଥି ଲୋ,
ସବୁ ହୋଇବେ ଆକଟ—ଜାମୁଡାଳରେ" ।୨।
(ଅପ୍ରକାଶିତ, ମଠକର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'କଇଁ ଫୁଲ ମାଳିକା'**

"**ଅମରାବତୀ କଟକେ ।**
କାନ୍ଦାର ପଡ଼ିବ ମରିବେ ଲୋକେ ଲୋ କଇଁଫୁଲ ।
କଳିକାଳ ନବ ଅଙ୍କେ" ।୧।
(ଅପ୍ରକାଶିତ, ମଠକର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ନିଶ୍ଚଳ ଜ୍ଞାନ ଗୀତା' :**

"**ଅମରାବତୀ** ପର୍ବତ ସେ ଯେଣୁ ନିଗମ ସ୍ଥାନ
ସେହି ପର୍ବତରେ ଅଛନ୍ତି ସାଧୁ ଯୋଗୀଜନ ।
**ଅମରାବତୀ** ପର୍ବତ ସେ ଯେଣୁ ନିଗମ ଭୂଇଁ
ସୁବର୍ଣ୍ଣର ଚମ୍ପା ଅଛଟି ସଂଖ୍ୟା କେ ପାରୁ କହି ।"
(ଆଦିତ୍ୟ ପ୍ରସାଦ ପାଣ୍ଡେଙ୍କ ଦ୍ୱାରା ପ୍ରକାଶିତ, ତାଜମହଲ ପ୍ରେସ, କଟକ)

**ହାଡ଼ିଦାସଙ୍କ 'ଭାବନା ବର' :**

"ଧନ୍ୟାଗିରିଠାରେ ଛତିଆ ଗ୍ରାମରେ
**ଅମରାବତୀ**ର ପୂର୍ବକୋଣ

ଦର୍ପଣୀ ପ୍ରଣେ ବରୁଣି ଅଣେ

ସ୍ୱେଚ୍ଛାରେ ପାଉଛୁ କଣେ" ।୮୩।

(୨୨ ଅଧ୍ୟାୟ, ମତ୍କର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ଶଙ୍ଖନାଭି' :**

"**ଅମରାବତୀର** ପୂର୍ବକୋଣ

ଛତିଆ ବୋଲି ଗ୍ରାମ ନାମ ।୨୩୨।

ଅମରେଶ୍ୱର ବୋଲି ଶିବ

ସେ ପାଦକୁ ଅଧମ ଜୀବ ।୨୩୩।

ନରଟେ କଲି ପ୍ରତି ଆଶ

ଭୃଷାଙ୍କୁ ନୁହଁଇ ସନ୍ତୋଷ ।୨୩୪।

ଅମରେଶ୍ୱର ବଇଷ୍ଣବୀ

ଆଦ୍ୟ ଦୁର୍ଗା ସିଦ୍ଧ ସାଧବୀ ।୨୩୫।

ପର୍ବତ ନାମେ ଧନ୍ୟାଗିରି

ଏ ମୂଢ଼ ତହୁଁ ଆଶ୍ରେ କରି" ।୨୩୬।

(ଅପ୍ରକାଶିତ, ମତ୍କର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ଅନନ୍ତଗୋଇ' :**

"ଗୃଣ୍ଡାଳ ବ୍ରାହ୍ମଣ ହେବେ ଏକତ୍ର

କ୍ଷେତ୍ର ପ୍ରାୟ କରି ଖାଇବେ ଭାତ ।୨୭।

ନଷ୍ଟେ ଜାଣିବ ମାଳାକ୍ରି କପଟ

ଆମ୍ଭେ ଜନ୍ମିଥିବୁ ଉଦୟ ବଟ ।୨୮।

ତୁମ୍ଭେ ଜନ୍ମିଥିବ ସକଳ ଦେଶେ

ବଳଦେବ ଥିବେ ଅମର ବାସେ" ।୨୯।

(୧୦ମ ଛନ୍ଦ, ମତ୍କର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ଲକ୍ଷ୍ମୀଧର ବିଳାସ' :**

"ଦରପଣୀ ଗ୍ରାମ ଛତିଆ ପୂର୍ବ କୋଣେ ଉଦ୍ଧିତ

**ଅମରାବତୀ ସେ କଟକ** ଦେଖା ପୋଖରୀ ପାଖ ।୩୪।

**ଅମରାବତୀ** ସେ ସହିଁଟି ସତ୍ୟଯୁଗ ପ୍ରମାଣ

ମଣିନାଗଠାରେ ଅମର ଗନ୍ଧମାର୍ଦ୍ଦନ ନାମ ।୩୫।

× × ×

**ଅମରାବତୀ** ବୋଲି ସ୍ଥାନ କୁଞ୍ଜ ଛତିଆ ଗିରି

ଚମ୍ପାପୁର ଗ୍ରାମେ ଜନମ ନିକଟରେ କୋଠାରି ।୬୫।

× × ×

ବେଳକଟକର ଛନ୍ତି **ନାମ ଅମରାବତୀ**
ସେହିଠାରେ ନାମ ପ୍ରକାଶ ହାଡ଼ିଦାସ ବୋଲନ୍ତି ।୯୬।

× × ×

ଦରପଣୀ ବୋଲି ମଣ୍ଡଳା ନାମ **ଅମରାବତୀ**
ସେହିଠାରେ ଉଦେ ମହାତ୍ମା କହେ ଧାନ ଅଚ୍ୟୁତ । ୧୭୫ ।
ଚମ୍ପାପୁର ବୋଲି ଗ୍ରାମ ଯେ ଜନ୍ମ ବଢ଼ାଣି କୁଳେ
**ଅମରାବତୀ**ରେ ମହାତ୍ମା ତେଜ ପ୍ରକାଶ ଥରେ । ୧୭୬ ।

× × ×

**ଅମରାବତୀ** ବୋଲି ସ୍ଥାନ କୁବେରଙ୍କ ଭଣ୍ଡାର
ଗିରି ଶିଖେ ସାଧୁ ଅଛନ୍ତି ଅବନାର ନତ୍ୟର" । ୨୦୦ ।
(ଅପ୍ରକାଶିତ, ମତ୍କର୍ତ୍ତୃକ ସଂଗୃହୀତ)

**ହାଡ଼ିଦାସଙ୍କ 'ଭଜନ'**

"ପ୍ରାଣୀମାନଙ୍କ ହେବ ସତ୍ୟଶ୍ୟାନ୍ତି
ସୁନ୍ଦର ଦଶିବ **ଅମରାବତୀ** ।
ଏହି ମର୍ତ୍ତ୍ୟପୁରୀ ବସ୍ତୁ ଅବତରି କରିବେ ଯେମନ୍ତ ଭବ
କହିଲି ପାମର ହାଡ଼ିଆ କମାର ଜାଗିଲେ ଭେଟିବ" । ୫ ।
(ଅପ୍ରକାଶିତ, ମତ୍କର୍ତ୍ତୃକ ସଂଗୃହୀତ)

**ବୃନ୍ଦାବନ ଦାସଙ୍କ ବିରଚିତ 'ଛୟାଳିଶ ପଟଳ'**

"**ଅମରାବତୀ** ଯାହା ନାମ
ସେ ସିଦ୍ଧ ସ୍ଥାନ ଯେ ଉତ୍ତମ ।
ଛତିଆ **ଅମରାବତୀ**ରେ
ଉତ୍ସବ ନାନା ପରକାରେ ॥
ଚତୁର୍ବିଂଶ ପଟଳ-ପ୍ରଥମ ଭାଗ
(ପ୍ରକାଶକ-ଓଡ଼ିଶା ଜଗନ୍ନାଥ କୋମ୍ପାନି, କଟକ-୨
୧ମ ସଂସ୍କରଣ—୧୯୫୫)

**ଭୀମ ଭୋଇଙ୍କ 'ପଦକଳ୍ପ'**

"**ଅମରାବତୀ ଜଙ୍ଗଲେ** ଦେବଗଣ ଗୁପତେ ଖେଳ କରିବେ
କ୍ଷୀର ପାନ କରି ପ୍ରଭୁଙ୍କୁ ଦେଖିବା ଆଶା ପରିପୂର୍ଣ୍ଣ ହେବେ ।"
(୫ମ ଅଧ୍ୟାୟ, ଭୀମ ଭୋଇ ଗ୍ରନ୍ଥାବଳୀ, ସଂଗ୍ରାହକ—ଶ୍ରୀ ବିରକିଶୋର ଦାସ)

ପ୍ରକୃତିର ସୁରମ୍ୟ ପୀଠ, ବିଶୋକପାସୋରା ଅପ୍‌ସରା ଭୁବନ ଅମରାବତୀର ଐତିହ୍ୟ ଓ ପରମ୍ପରାକୁ ବର୍ଣ୍ଣନା କରିବାକୁ ଯାଇ ପ୍ରାଚୀନ କବିମାନେ ଶତମୁଖରେ ତାହାର ଉଚ୍ଛ୍ୱସିତ ପ୍ରଶଂସା ଗାନ କରିଅଛନ୍ତି ।

ଲେଖକର ମନେଅଛି ଯେ ତାହାର ବାଲ୍ୟ କାଳରେ ଏହି ଅମରାବତୀ ବିଭିନ୍ନ ବୃକ୍ଷ, ଲତା, ଗୁଳ୍ମାଦି ଦ୍ୱାରା ପରିବେଷ୍ଟିତ ହୋଇ ଦର୍ଶକର ମନନୟନ ହରଣ କରୁଥିଲା । ଅମରାବତୀର ଚତୁର୍ଦ୍ଦିଗରେ ଆବୋର ରହିଥିବା ବିଶାଳ ବୃକ୍ଷରାଜିର ସୁଶୀତଳ ଛାୟାରେ ବିଶ୍ରାମ ନେଇ ଦୂରାଗତ ଶ୍ରାନ୍ତ ପଥିକ ତା'ର କ୍ଲାନ୍ତି ଅପନୋଦନ କରୁଥିଲା । ଏହି ଦେବୋପମ ସ୍ଥଳୀର ସୁମଧୁର ମଳୟ ସ୍ପର୍ଶରେ ଦର୍ଶକର ଅପାର ଆନନ୍ଦ ଜାତ ହେଉଥିଲା । କୋକିଳର କୁହୁ ତାନରେ ଚତୁର୍ଦ୍ଦିଗ ମର୍ମରିତ ହୋଇ କି ଏକ ଅପୂର୍ବ ଭାବାବେଶ ସୃଷ୍ଟି କରୁଥିଲା । ସେତେବେଳେ ଏହି ମଠର ମହନ୍ତ ଥିଲେ ଋଷିପ୍ରତିମ ଜନୈକ ସିଦ୍ଧ ସାଧକ ସନ୍ଥ ବାଞ୍ଛାନିଧି ଦାସ । ନିଜର ସମଗ୍ର ଜୀବନକୁ ଭଗବାନଙ୍କ ପାଦପଦ୍ମରେ ଜଳାଞ୍ଜଳି ଦେଇ ଜଣେ ନିର୍ବିକାର ଓ ନିର୍ଲିପ୍ତ ସାଧୁଭାବରେ ସେ ଜଗତକୁ ସମୁଚ୍ଚ ଆଦର୍ଶ ଦେଖାଇ ଯାଇଛନ୍ତି । ଏହି ମହାନ୍ ପୁରୁଷଙ୍କ ନାମ ଅଚ୍ୟୁତାନନ୍ଦ ଦାସଙ୍କ ବିରଚିତ 'ବିଜ୍ଞାନ କଳ୍ପ'ରେ ଉକ୍ତ ନିର୍ଣ୍ଣୟ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଅଛି । (୨୭) ମାଘ ମାସର ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ପ୍ରାଣାୟାମ ବିଧି ଅନୁସରଣ ପୂର୍ବକ ଯୋଗନିଦ୍ରାରେ ରହି ମହାତ୍ମା ବାଞ୍ଛାନିଧି ଦାସଙ୍କର ପରଲୋକ ପ୍ରାପ୍ତି ହୋଇଥିଲା । (୨୮) ଅମରାବତୀର ମଣ୍ଡପସ୍ଥିତ ବଟବୃକ୍ଷ ମୂଳରେ ତାଙ୍କୁ ସମାଧିସ୍ଥ କରାଯାଇ ତଦୁପରି ତାଙ୍କର ଏକ ପ୍ରସ୍ତର ଖୋଦିତ ମୂର୍ତ୍ତି ଗଢ଼ାଯାଇଅଛି ଏବଂ ଅଦ୍ୟାବଧି ସେହି ସ୍ଥାନରେ ତାଙ୍କୁ ପୂଜାରାଧନା କରାଯାଉଅଛି ।

ସେହି ଧର୍ମାନୁରାଗୀ, ପୁଣ୍ୟାତ୍ମା ମହର୍ଷିଙ୍କ ପ୍ରାଣ ପ୍ରୟାଣ ପରେ ଅମରାବତୀ ଶ୍ରୀହୀନ ହୋଇଯାଇଛି । ଯାହା ଦିନେ ଦର୍ଶକ ଓ ଭକ୍ତଙ୍କ ମନରେ ଦେବରାଜ ଇନ୍ଦ୍ରଙ୍କ ନନ୍ଦନକାନନର ସ୍ୱପ୍ନଲୋକ ସୃଷ୍ଟି କରୁଥିଲା, ତାହା ଆଜି ଖାଣ୍ଡବବନ ପରି ସମୂଳେ ନଷ୍ଟ ହେବାକୁ ବସିଲାଣି । ବହୁ କଷ୍ଟରେ ମହନ୍ତଙ୍କ ସ୍ୱହସ୍ତରେ ସସ୍ନେହରେ ପରିବର୍ଦ୍ଧିତ ହୋଇଥିବା ସେହି ବୃକ୍ଷଗୁଡ଼ିକ ଆଜି ବିନାଶ ଲଭିଅଛି । ପ୍ରାଚୀନ ଗଡ଼ରୂପେ ପ୍ରଖ୍ୟାତ

---

(୨୭) "କ୍ଷେତ୍ର ଛାଡ଼ି ପ୍ରଭୁ ଛତିଆ ଗ୍ରାମରେ ହୋଇବେକ ଅଧିପତି ।
ରକ୍ତ ନଦୀ ବହି ପଡ଼ୁଥିବ ଭେଦ ନାମ ଯା ଅମରାବତୀ । ୧୫ ।
ଋଷିଙ୍କ ଆଶ୍ରମ ଅଟଇ ହୋ ରାମ ନାମ ଅଟେ ବାଞ୍ଛାନିଧି ।
ଅତି ଶାନ୍ତଶୀଳ ଅଟଇ ନିର୍ମଳ ଚତୁର୍ବର୍ଗ ତାର ସିଦ୍ଧି । ୧୬ ।

(ବିଜ୍ଞାନ କଳ୍ପ, ଅଚ୍ୟୁତାନନ୍ଦ ଦାସ, ୧ମ ଅଧ୍ୟାୟ,
ଅପ୍ରକାଶିତ, ମଠରକ୍ଷିତ ସଂଗୃହୀତ)

(୨୮) ବର୍ତ୍ତମାନର ମଠାଧୀଶ ଅଲେଖ ଦାସ (ପୂର୍ବନାମ କପିଳ ରାଉତ)ଙ୍କ ମୁଖରୁ ଆମ୍ଭେ ଶୁଣିବାକୁ ପାଇଅଛୁଁ ଯେ ଆଜକୁ ଅନ୍ୟୁନ କୋଡ଼ିଏ ବର୍ଷ ତଳେ ମହନ୍ତ ବାଞ୍ଛାନିଧି ଦାସଙ୍କର ତିରୋଧାନ ହୋଇଥିଲା ।

ଲଭିଥିବା ଏହି ଦୁର୍ଗ (୨୪)ରୁ ପ୍ରସ୍ତର ଖଣ୍ଡମାନ ଇଷ୍ଟେଟର ଖିମିପତ୍ତି ରାଣୀହଂସପୁରର ମୋହନକୁ ସନକ୍ଷ କରଅଛନ୍ତି । ପ୍ରାକୃତିକ ଆବେଷ୍ଟନୀ ମଧ୍ୟରେ ଗଢ଼ି ଉଠିଥିବା ଏହି ସ୍ଥାନଟିର ପର୍ଯ୍ୟବେକ୍ଷଣ ପାଇଁ କେହି ଯତ୍ନ ନେଉନାହାନ୍ତି । ମଠଟିର ପରିଚାଳନା ନିମନ୍ତେ ମୁଷ୍ଟିଭିକ୍ଷା ଆକାରରେ ଯାହା କିଛି ପାଣ୍ଠି ସଂଗୃହୀତ ହେଉଛି ତାହା ଯଥେଷ୍ଟ ନୁହେଁ । ସାଧକଙ୍କ ସ୍ୱୀକାରୋକ୍ତ ବିଭିନ୍ନ ପ୍ରାଚୀନ ଗ୍ରନ୍ଥ ସମୂହରେ ଏହି ପୀଠର ମାହାତ୍ମ୍ୟ ବର୍ଣ୍ଣନା ପରିକୀର୍ତ୍ତିତ ଏବଂ ଉତ୍କଳର ପ୍ରତ୍ନତାତ୍ତ୍ୱିକ ତଥା ଗବେଷକ ମଣ୍ଡଳୀଙ୍କ ଆଲୋଚନାରେ ଅମରାବତୀର ପ୍ରାଚୀନତା ପରିଦର୍ଶିତ ହୋଇଅଛି । କେବଳ ଅତୀତର ଏହି ସମୃଦ୍ଧ କୀର୍ତ୍ତିକୁ ସ୍ମରଣ କରି କେହି କେବେ ବଡ଼ ହୋଇପାରେ ନାହିଁ । ଏହାର ଐତିହ୍ୟ ଓ ପରମ୍ପରାକୁ ବଜାୟ ରଖିବାକୁ ହେଲେ ଆମ୍ଭମାନଙ୍କୁ ସର୍ବତୋଭାବେ ଏହି ଜାଗ୍ରତ ପୀଠର ସୁରକ୍ଷା କରିବାକୁ ହେବ । ଏତିକି ଯଦି କରିପାରିବା ତେବେ ସଦର୍ପରେ ଆମ୍ଭେମାନେ ଏହାକୁ ଆମ୍ଭ ପୂର୍ବ ପୁରୁଷମାନଙ୍କର କୀର୍ତ୍ତି ବୋଲି ପ୍ରଚାର କରିବାକୁ ସମର୍ଥ ହେବା ।

ଉତ୍କଳର ଅନ୍ୟତମ ପ୍ରଖ୍ୟାତ ତଥା ଐତିହାସିକ ପୀଠ ଏହି ଅମରାବତୀର ସର୍ବବିଧ ଉନ୍ନତି ପାଇଁ ଲେଖକ ଓଡ଼ିଶା ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଛି । ତା' ନ ହେଲେ କାଳକ୍ରମେ ପ୍ରାଚୀନ ସ୍ମୃତି ବିଜଡ଼ିତ ଏହି ସିଦ୍ଧସ୍ଥଳୀଟି ଅଚିରେ ଲୋପ ପାଇଯିବାର ସମ୍ଭାବନା । ପଛରେ ତ କିଛି କରିହେବ ନାହିଁ, ବରଂ ଅନୁତାପ ହିଁ ମାତ୍ର ସାର ହେବ । ସେତେବେଳେ କେବଳ ପଶ୍ଚାତ୍ତାପ କରିବାକୁ ପଡ଼ିବ—

'ହା ଯଦୁପତେ ! କ୍ୱ ଗତା ମଥୁରାପୁରୀ···!'

---

(୨୪) ପ୍ରକାଶ ଥାଉକି, ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ତାଙ୍କ ପ୍ରାଚୀନ ଉତ୍କଳ (୨ୟ ମୁଦ୍ରଣ, ୧୯୬୪)ର ୫୧ ପୃଷ୍ଠାରେ ବିଭିନ୍ନ ପ୍ରାଚୀନ ଗଡ଼ର ସୂଚନା ଦେବାକୁ ଯାଇ ଏମଧ୍ୟରେ ଛତିଆର ନାମୋଲ୍ଲେଖ କରି ଅଛନ୍ତି ।

## ସହାୟକ ଗ୍ରନ୍ଥସୂଚୀ :

(ପ୍ରକାଶିତ ପୁସ୍ତକ)

୧ । ଗୋପୀନାଥ ଗ୍ରନ୍ଥାବଳୀ, କଟକ ଟ୍ରେଡ଼ିଂ କମ୍ପାନୀ ।

୨ । ମୁକୁର, ୫ ସଂଖ୍ୟା, ୭ମ ଭାଗ, ଭାଦ୍ର, ୧୩୨୦ ।

୩ । ପ୍ରାଚୀନ ଉତ୍କଳ-ଜଗବନ୍ଧୁ ସିଂହ, ୨ୟ ମୁଦ୍ରଣ, ୧୯୬୪ ।

୪ । The Antiquities of Orissa by-R. L. Mitra, Vol II, 30th, Sept 1963 ।

୫ । Bihar and Orissa Disrtict Gazetteers (Cuttack) 2nd Edition, 1933 ।
୬ । ଭାଷାକୋଷ—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।
୭ । Orissa···Sterling
୮ । ଝଙ୍କାର, ୭ମ ବର୍ଷ, ୭ମ ସଂଖ୍ୟା ।
୯ । ଇତିହାସ ଓ କିମ୍ବଦନ୍ତୀ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ ।
୧୦ । ଉତ୍କଳ ସାହିତ୍ୟ, ୩୫ଶ ଭାଗ, ୧୦ମ ସଂଖ୍ୟା, ମାଘ ୧୯୩୯ ।
୧୧ । ନିଷ୍କଳଜ୍ଞାନଗୀତା, ତାଜମହଲ ପ୍ରେସ, କଟକ ।
୧୨ । ଭବିନାବର (ଓଡ଼ିଶା କୋହିନୂର ପ୍ରେସରୁ ୧୯୪୧ରେ ପ୍ରକାଶିତ) ।
୧୩ । ଭୀମଭୋଇ ଗ୍ରନ୍ଥାବଳୀ-ସଂଗ୍ରାହକ-ଶ୍ରୀ କାର୍ତ୍ତିକେଶ୍ୱର ଦାସ ।
୧୪ । କଳ୍କି ରାମଙ୍କ ଜଣାଣ ଚଉତିଶା—ଶ୍ରୀ ଦୀନବନ୍ଧୁ ସାହୁ, ବିନୁ ପ୍ରେସ, କଟକ-୧ ।
୧୫ । ପଦ୍ମପୁରାଣ (ପାତାଳଖଣ୍ଡ)—ସଂସ୍କୃତ ।
୧୬ । ଗରୁଡ଼ଗୀତା, ଅଚ୍ୟୁତାନନ୍ଦ ଦାସ, ଦେଓପ୍ରେସ, କଟକ ।
୧୭ । ଶତାବ୍ଦୀର ଓଡ଼ିଶା—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପ୍ରକାଶକ-ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର, ପୁରୀ ।
୧୮ । ଶାରଳା ମହାଭାରତ (ସ୍ୱର୍ଗାରୋହଣ ପର୍ବ)—ଶ୍ରୀ ରାଧାରମଣ ପୁସ୍ତକାଳୟ ।
୧୯ । ଶିବକଳ୍ପ ଓ ନବଖଣ୍ଡ ନିର୍ଘଣ୍ଟ, ବଗ୍ମାଳିଣ ମୌଲା ପ୍ରେସ, ମଧୁପାଟଣା, କଟକ-୩ ।
୨୦ । ପଦ୍ମଲୋଚନ ପାଲା, ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, ଝାଉଁଶାବଜାର, କଟକ-୨ ।

## ( ଅପ୍ରକାଶିତ ପୋଥି )

| | |
|---|---|
| ୧—କଳି ବଗ୍ମାଳିଣ (ଉତ୍ତରଖଣ୍ଡ) | ଅଚ୍ୟୁତାନନ୍ଦ ଦାସ |
| ୨—ଭବିଷ୍ୟ ଚଉତିଶା | ,, |
| ୩—କଳ୍କି ଚଉତିଶା | ,, |
| ୪—ବାଲ୍ମୀକି କଳ୍ପ | ,, |
| ୫—ବିଜ୍ଞାନ କଳ୍ପ | ,, |
| ୬—ଭକ୍ତ ଚନ୍ଦ୍ରିକା | ଜଗନ୍ନାଥ ଦାସ |
| ୭—ଉଦ୍ଧବ ଚଉତିଶା | ,, |
| ୮—ଗୁପ୍ତକଳ୍ପ | ,, |
| ୯—ମହିମା ଲେଖ ଭବିଷ୍ୟମାଳ | ,, |
| ୧୦—ଭବିଷ୍ୟମାଳ | ଯଶୋବନ୍ତ ଦାସ |
| ୧୧—ଚଉତିଶା | ଶିଶୁ ଅନନ୍ତ |
| ୧୨—ଭବିଷ୍ୟତ ମାଳିକା | ,, |

# ଅମରାବତୀ କଟକ : ଏକ ଦୃଷ୍ଟିପାତ

**ଡଃ. ବୈଷ୍ଣବ ଚରଣ ସାମଲ**

କଟକ ସମ୍ପ୍ରତି ଏକ ନିର୍ଦ୍ଦିଷ୍ଟ ସ୍ଥାନର ନାମକୁ ବୁଝାଏ । ମହାନଦୀ ଓ କାଠଯୋଡ଼ି ଅବବାହିକା ମଧ୍ୟରେ ଅବସ୍ଥିତ ନଗରର ନାମ କଟକ । ଇତିହାସପ୍ରସିଦ୍ଧ ଏହି ସ୍ଥାନ ଓଡ଼ିଶାର ଭୌଗୋଳିକ ମାନଚିତ୍ରରେ ସୂଚିତ । ଦୁଇ ନଦୀ ମଧ୍ୟବର୍ତ୍ତୀ ଅବବାହିକା ସୃଷ୍ଟି ପରେ ସେଠାରେ କ୍ରମେ ଲୋକବସତି ବୃଦ୍ଧି ଲାଭ କରିଛି ଓ ତାହା କ୍ରମେ ପ୍ରସିଦ୍ଧ ହୋଇ ଉଠିଛି ଇତିହାସ ଓ ସଂସ୍କୃତି ଦୃଷ୍ଟିରୁ । ସୋମବଂଶୀ ରାଜାମାନଙ୍କ ରାଜତ୍ୱ ସମୟରୁ (୯୪୦ ଖ୍ରୀ. ଅ.—୧୧୧୦ ଖ୍ରୀ. ଅ.) ଏହି କଟକ କ୍ରମେ ରାଜନୀତିକ ଓ ସାଂସ୍କୃତିକ ଖ୍ୟାତି ଲାଭ କରିଆସିଲା ଓ ଗଙ୍ଗବଂଶୀ ରାଜାମାନଙ୍କ ସମୟରୁ (୧୧୧୧ ଖ୍ରୀ. ଅ.) ଏହା ହୋଇଗଲେ ଓଡ଼ିଶାର ରାଜଧାନୀ । ଗଙ୍ଗ, ସୂର୍ଯ୍ୟ, ଭୋଇ ଓ ଚାଳୁକ୍ୟ ବଂଶ ଶେଷ ପର୍ଯ୍ୟନ୍ତ (୧୫୬୮ ଖ୍ରୀ. ଅ.) କଟକ ହୋଇଗଲା ଓଡ଼ିଶାର ସାଂସ୍କୃତିକ ଓ ରାଜନୀତିକ ପ୍ରାଣକେନ୍ଦ୍ର । ଚାଳୁକ୍ୟ ବଂଶ ଶେଷ ପରେ ଅର୍ଥାତ୍ ମୁକୁନ୍ଦଦେବଙ୍କ ମୃତ୍ୟୁପରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଗଲା ଏବଂ କଟକ ହୋଇଗଲା ଆଫଗାନ ମୁସଲମାନ, ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କ ଦ୍ୱାରା ପର୍ଯ୍ୟାୟକ୍ରମେ ଅଧିକୃତ । ଓଡ଼ିଶାର ଭାଗ୍ୟ ବିପର୍ଯ୍ୟୟ ସତ୍ତ୍ୱେ କଟକ ହିଁ ରାଜଧାନୀ ହୋଇ ରହିବାର ଗୌରବ ଲାଭ କଲା । ସ୍ୱାଧୀନତା ଲାଭ ପରେ କଟକରୁ ରାଜଧାନୀ ଉଠି ଗଲା ଭୁବନେଶ୍ୱରକୁ । ଫଳରେ କଟକ ଅତୀତର ଗୌରବୋଦୀପ୍ତ ରାଜନୀତିକ ପ୍ରାଣକେନ୍ଦ୍ରରୁ ବଞ୍ଚିତ ହୋଇପଡ଼ିଲା । କଟକର ଏହି ଐତିହାସିକ ଖ୍ୟାତି ଯୋଗୁ ଓଡ଼ିଶାର ଅନ୍ୟାନ୍ୟ କେତେକ ସ୍ଥାନର ନାମ ସହିତ କଟକ ଶବ୍ଦକୁ ଯୋଡ଼ି ଦିଆଗଲା । କଟକ କହିଲେ ଅଭିଧାନ ଅନୁସାରେ ଗଡ଼, ଦୁର୍ଗ, ସେନାଛାଉଣୀ, ରାଜଧାନୀ ଇତ୍ୟାଦିକୁ ବୁଝାଏ । କ୍ରମେ ଏହା ହୋଇଗଲେ ଏକ ଯୋଗାରୂଢ଼ ଶବ୍ଦ । ସ୍ୱର୍ଗତ ଜଗବନ୍ଧୁ ସିଂହ ଏ ପ୍ରସଙ୍ଗରେ ଲେଖିଛନ୍ତି—'କଟକ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ନଗରର ନାମ ନଥିଲା ମାତ୍ର 'କଟକ' ବର୍ତ୍ତମାନ ଯୋଗାରୂଢ଼ ପଦ ହୋଇ ବାରବାଟୀ କଟକ ନାମରେ ଅଭିହିତ ହେଉଅଛି । ପୁରୁଷୋତ୍ତମ ଆଗେ କଟକ ନାମରେ ଅଭିହିତ ହେଉଥିଲା । ମାଦଳା ପାଞ୍ଜିରେ ଲେଖାଅଛି, 'ଶ୍ରୀପୁରୁଷୋତ୍ତମ କଟକେ ଶ୍ରୀନଗରେ' ଇତ୍ୟାଦି । ବାରବାଟୀ

କଟକ ନିର୍ମାଣ ହେବାର ବହୁକାଳ ପୂର୍ବରୁ କଟକ ଶବ୍ଦର ବ୍ୟବହାର ଦେଖାଯାଏ । ଚୁଡ଼ଗଙ୍ଗ ଦେବଙ୍କ ରାଜତ୍ୱ ସମୟରେ କଟକ ଶବ୍ଦ ବ୍ୟବହୃତ ହୋଇଅଛି ।" (୧)

ଓଡ଼ିଶାର ଇତିହାସ ଆଲୋଚନା କଲେ ଦେଖାଯାଏ ଯେ ସୋମବଂଶୀ ରାଜାମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ସମଗ୍ର ଓଡ଼ିଶା କେବେ ଏକଶାସନାଧୀନ ନଥିଲା । ବହୁ ପୂର୍ବରୁ କଳିଙ୍ଗ, କୋଶଳ, କଙ୍ଗୋଦ ଓ ଉତ୍କଳ ପ୍ରତ୍ୟେକ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଭୌମକର ରାଜାମାନଙ୍କ ସମୟରୁ ଯାଜପୁରକୁ କେନ୍ଦ୍ର କରି ସମଗ୍ର ଓଡ଼ିଶାକୁ ଏକାଠି କରିବାର ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା । ସୋମବଂଶୀ ରାଜାମାନଙ୍କ ଦ୍ୱାରା ଏକାଦଶ ଶତାବ୍ଦୀରେ ତାହା ପୂର୍ଣ୍ଣତାଲାଭ କଲା । ଏହି ସମୟରେ କଳିଙ୍ଗ, କୋଶଳ, କଙ୍ଗୋଦ ଓ ଉତ୍କଳ ମିଶି ବୃହତ୍ତର ଉତ୍କଳ ପ୍ରତିଷ୍ଠିତ ହେଲା ଏବଂ ସୋମବଂଶୀ ରାଜାମାନେ ଏହି ମିଶ୍ରଣ ପ୍ରକ୍ରିୟାର କର୍ଣ୍ଣଧାର ହୋଇଥିବାରୁ ସେମାନେ 'ସକଳ ଉତ୍କଳ ଅଧିପତି' ଉପାଧି ଗ୍ରହଣ କଲେ । କୋଶଳରୁ ଆସି ସୋମବଂଶୀ ରାଜାମାନେ ଯାଜପୁରର ବୈତରଣୀ କୂଳରେ ଅବସ୍ଥାନ କଲେ । ଯାଜପୁରକୁ ସେମାନେ କଲେ—ଉତ୍କଳର ରାଜଧାନୀ । ତେଣୁ ଏହାର ନାମ ହେଲା ଯଯାତି ନଗର, ଅଭିନବ ଯଯାତି ନଗର, ଅଭିନବ କଟକ, ଯାଜପୁର କଟକ । ବିଶାଳ ଉତ୍କଳର ଏହା କେବଳ ରାଜନୀତିକ କେନ୍ଦ୍ର ହେଲା ନାହିଁ; ସାଂସ୍କୃତିକ କେନ୍ଦ୍ର ମଧ୍ୟ ହୋଇଗଲେ । ପୂର୍ବରୁ ଶୈବ, ବୈଷ୍ଣବ ଓ ଶାକ୍ତ ଧର୍ମ ମଧ୍ୟରେ ଯେଉଁ ସଂଘର୍ଷ ଲାଗି ରହିଥିଲା ତାର ଅବସାନ ଘଟିଗଲା । ଏହି ତିନୋଟି ମୁଖ୍ୟ ଧର୍ମ ମଧ୍ୟରେ ସଂଯୋଗ ଓ ସମନ୍ୱୟ ସଂସାଧିତ ହେଲା । ଠିକ୍ ଏହି ସମୟରେ ବା କାହାର କାହାର ମତରେ ପୂର୍ବରୁ ଛତିଆ କଟକ ବା ଅମରାବତୀ କଟକ ମଧ୍ୟ ଖ୍ୟାତି ଲାଭ କଲା । ବସୁକଳ୍ପ ରାଜାଙ୍କ ସମୟରୁ ଅମରାବତୀ କଟକ ପ୍ରସିଦ୍ଧି ଅର୍ଜନ କରି ଆସିଥିଲା ବୋଲି କେହି କେହି ମତ ଦେଇଥାଆନ୍ତି । ମାଦଳା ପାଞ୍ଜି ଅନୁସାରେ (୧) ଯାଜପୁର କଟକ (୨) ଛତିଆ ବା ଅମରାବତୀ କଟକ (୩) ଚୌଦ୍ୱାର କଟକ (୪) ବାରାଣସୀ କଟକ (୫) ସାରଙ୍ଗଗଡ଼ କଟକକୁ 'ପଞ୍ଚକଟକ' କୁହାଯାଏ । ଏହି ପଞ୍ଚକଟକକୁ ଫିରସ୍ତାଙ୍କ ବଙ୍ଗ ଇତିହାସ ଓ ଆଇନ୍-ଇ-ଆକବରୀ ସ୍ୱୀକାର କରିଛନ୍ତି । ଷ୍ଟର୍ଲିଂ ସାହେବଙ୍କ ପ୍ରଦତ୍ତ ବିବରଣୀ ଅନୁସାରେ ପଞ୍ଚକଟକ ହେଉଛି (୧) ଯାଜପୁର (୨) ଚୌଦ୍ୱାର (୩) ଅମରାବତୀ (୪) ଛତିଆ (୫) ବାରାଣସୀ । ଅମରାବତୀ ଓ ଛତିଆକୁ ସେ ଦୁଇଟି କଟକ ଭାବରେ ଭ୍ରମବଶତଃ ଗ୍ରହଣ କରି ନେଇଛନ୍ତି । ବସ୍ତୁତଃ ଅମରାବତୀ ଓ ଛତିଆ ଗୋଟିଏ କଟକ ଅନ୍ତର୍ଭୁକ୍ତ—ଯାହାକୁ କୁହାଯାଏ ଅମରାବତୀ କଟକ ବା ଛତିଆ କଟକ । ଏହି ପଞ୍ଚକଟକକୁ ଛାଡ଼ିଦେଲେ ଖୁରୁଧା କଟକ ବା ବରୁଣେଇ କଟକ, ନଆଳି କଟକ, କନ୍ଧ କଟକ ବା ପୁରୁଷୋତ୍ତମ କଟକ, ଶୂନପୁର କଟକ (ସୋନପୁର) ଇତ୍ୟାଦି ନାମ ମଧ୍ୟ ଦେଖିବାକୁ ମିଳିଥାଏ ।

---

(୧) ଜଗବନ୍ଧୁ ସିଂହ—ପ୍ରାଚୀନ ଉତ୍କଳ; ୨ୟ ମୁଦ୍ରଣ (୧୯୬୪) ପୃ. ୨୫୨

(୨) Sterling—Page 71

ପଞ୍ଚକଟକ ମଧ୍ୟରୁ ଅମରାବତୀ କଟକ ବା ଛତିଆ କଟକ କେବେ ପ୍ରତିଷ୍ଠା ଲାଭ କଲା ତାର ନାନା କିମ୍ବଦନ୍ତୀ ଓ ବିକ୍ଷିପ୍ତ ଇତିହାସ ବ୍ୟତୀତ ଅନ୍ୟ ସେମିତି କିଛି ପ୍ରାମାଣିକ ଇତିହାସ ମିଳେ ନାହିଁ । ସୋମ ବଂଶ ବା କେଶରୀ ବଂଶର ରାଜା ନୃପତକେଶରୀ ୯୮୯ ଖ୍ରୀ: ଅ:ରେ କଟକ ନଗରୀ ପ୍ରତିଷ୍ଠା କରିଥିଲେ ଓ ମର୍କତକେଶରୀ ୧୦୦୨ ଖ୍ରୀ:ଅ:ରେ ଏହି ନଗରକୁ ବନ୍ୟା ଧାଡ଼ିରୁ ରକ୍ଷା କରିବା ପାଇଁ ପଥରବନ୍ଧ ନିର୍ମାଣ କରାଇଥିଲେ । ତୃତୀୟ ଅନଙ୍ଗଭୀମ ଦେବ ବାରଣାସୀ କଟକ (୧୨୧୧—୧୨୨୯ ଖ୍ରୀ: ଅ:) ବସାଇ-ଥିଲେ । ତାଙ୍କର ସମୟରେ ଓଡ଼ିଶାର ରାଜଧାନୀ ସାରଙ୍ଗଗଡ଼ରୁ ବାରଣାସୀ କଟକକୁ ସ୍ଥାନାନ୍ତରିତ ହେଲା । ଅନଙ୍ଗଭୀମ ଦେବହିଁ ଅଭିନବ ବାରଣାସୀ କଟକ ପ୍ରତିଷ୍ଠା କଲେ । ମାଦଳାପାଞ୍ଜି ଅନୁସାରେ ସେ ରାଜଧାନୀ ଚୌଦ୍ୱାରରୁ ବିଦ୍ୟାନାସୀ ବା ବାରଣାସୀ କଟକକୁ ଉଠାଇ ଆଣିଥିଲେ । ଭୌମକର ରାଜାମାନେ ବିରଜା ନଗର ବା ଯାଜନଗରକୁ ରାଜଧାନୀ କରିଥିଲେ । ସୋମବଂଶ ବେଳେ ଯାଜନଗର ଥିଲା ରାଜଧାନୀ । ସେହି ସମୟରେ ମଧ୍ୟ ଚୌଦ୍ୱାରକୁ ରାଜଧାନୀ ଉଠିଆସିଥିଲା । କାଠଯୋଡ଼ୀ ନଦୀର ଦକ୍ଷିଣ ଭାଗରେ ସାରଙ୍ଗଗଡ଼ ବା ଚୂଡ଼ଙ୍ଗଗଡ଼ ବିଦ୍ୟମାନ । ସାରଙ୍ଗ କେଶରୀଙ୍କ ସମୟରେ ଏହି ଗଡ଼ ନିର୍ମିତ ହୋଇଥିଲା ବୋଲି କେହି କେହି କହିଥାଆନ୍ତି । ଅମରାବତୀ କଟକ ହେଉଛି ଅନନ୍ତ ବର୍ମଣ ଚୋଡ଼ଗଙ୍ଗ ଦେବଙ୍କ କୀର୍ତ୍ତି । ଓଡ଼ିଶା ବିଜୟ କରିବା ପୂର୍ବରୁ କୃଷ୍ଣାନଦୀ ମୁହାଣ ନିକଟରେ ବୌଦ୍ଧକୀର୍ତ୍ତି ମଣ୍ଡିତ ଅମରାବତୀ ନଗର ଅଧିକାର କରି ତାର ଅନୁ-କରଣରେ ଅମରାବତୀ କଟକ ବା ଛତିଆ କଟକ ବସାଇଥିଲେ ବୋଲି ଅନୁମାନ କରାଯାଇଥାଏ । ଏହାର ନିର୍ମାଣ କାଳ ନେଇ ପ୍ରାମାଣିକ ଇତିହାସ ଏବେ ମଧ୍ୟ ନମିଳି ଥିଲେହେଁ ଏହା ଯେ ଏକ ପ୍ରାଚୀନତମ କଟକ ଓ ଏଥି ସହିତ ଭୌମ-ସୋମ-ଗଙ୍ଗ-ସୂର୍ଯ୍ୟ ବଂଶ ଆଦି ଘନିଷ୍ଠ ଭାବରେ ସମ୍ପୃକ୍ତ; ଏଥିରେ କୌଣସି ସନ୍ଦେହ ନାହିଁ । ଏବେ ମଧ୍ୟ ଏହି କଟକର ଭଗ୍ନାବଶେଷ ବିଦ୍ୟମାନ । ଏହା ନିକଟରେ ନାନା ଶ୍ରେଷ୍ଠ ବଡ଼ ପାହାଡ଼ ରହିଥିବାରୁ ସେକାଳରେ ଏକ ସାମରିକ ଘାଟି ଭାବରେ ଏହାର ଯେ ଗୁରୁତ୍ୱ ଥିଲା; ଅବିସମ୍ବାଦିତ ସତ୍ୟ ।

ଭୌମକରବଂଶୀ ରାଜାମାନଙ୍କ ମଧ୍ୟରୁ ପ୍ରଥମ ଶୁଭଙ୍କର ରାଜାଥିଲେ ବୌଦ୍ଧ-ଧର୍ମାବଲମ୍ବୀ । ପଞ୍ଚମ ପୀଢ଼ୀରୁ ସେମାନେ ବ୍ରାହ୍ମଣ୍ୟ ଧର୍ମକୁ ଗ୍ରହଣ କରିଥିଲେ ଓ ବୌଦ୍ଧଧର୍ମ ପ୍ରତି ସେମାନଙ୍କର ଆଉ ଶ୍ରଦ୍ଧା ରହିଲା ନାହିଁ । ସୋମବଂଶୀ ରାଜାମାନେ ବ୍ରାହ୍ମଣ୍ୟଧର୍ମର ପୃଷ୍ଠପୋଷକତା କଲେ ଓ ବୌଦ୍ଧଧର୍ମର ବିଲୋପ ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଲେ । ଓଡ଼ିଶାରେ ବୌଦ୍ଧଧର୍ମ ବହୁ ପୂର୍ବରୁ ପ୍ରସାର ଲାଭ କରି ଆସିଥିଲା । ଯେଉଁବେଳେ ବଜ୍ରଯାନ ଓ ସହଜଯାନର ଉନ୍ମେଷ ଘଟିଲା । ସେତେବେଳେ ଓଡ଼ିଶାରେ ଭୌମକର ଓ ସୋମବଂଶ ଶାସନ କରୁଥିଲେ । ଭୌମକର ବଂଶର ତ୍ରିଭୁବନ ମହାଦେବୀ, ପ୍ରଥମଙ୍କ ଠାରୁ ଓ ସୋମବଂଶ ସମୟରେ ଯଦିଓ ବଜ୍ରଯାନ ବା ସହଜଯାନ, ପ୍ରତି ଶ୍ରଦ୍ଧା ରହିଲା ନାହିଁ ତଥାପି ତାହାର ଉନ୍ମେଷରେ ବାଧା ସୃଷ୍ଟି ହୋଇ ନଥିଲା । ବୌଦ୍ଧଧର୍ମକୁ ଅବଲମ୍ବନ କରି ନାନା କୀର୍ତ୍ତି ଓ ମୂର୍ତ୍ତି ଗଢ଼ି ଉଠିଲା । ଉଦୟଗିରି, ଲଳିତଗିରି ଓ ରତ୍ନଗିରିର ବୌଦ୍ଧ କୀର୍ତ୍ତି

ଏହାର ପ୍ରମାଣ ଦେଇଥାଏ । ରତ୍ନଗିରିରୁ ଆବିଷ୍କୃତ ବୌଦ୍ଧ ମୂର୍ତ୍ତିମାନଙ୍କ ମଧ୍ୟରେ ତାରା, ଲୋକେଶ୍ୱର, ଅପରାଜିତା, ବୁଦ୍ଧ ଇତ୍ୟାଦି ପ୍ରଧାନ । ଉଦୟଗିରିରେ ଅଛି ଭୂମିସ୍ପର୍ଶୀ ମୁଦ୍ରା ବିଶିଷ୍ଟ ନଅଫୁଟ ଉଚ୍ଚର ବୁଦ୍ଧ ମୂର୍ତ୍ତି । ଲଳିତଗିରିରେ ଲୋକେଶ୍ୱର ଓ ଅମିତାଭ ମୂର୍ତ୍ତି ବିଦ୍ୟମାନ । ଭୌମକରର ରାଜବଂଶର ପ୍ରଥମ ତିନି ପୀଢ଼ି ମଧ୍ୟରେ ଯାଜପୁରର ଗୋହିରା ଟିକିରି ଓ ଅନ୍ୟାନ୍ୟ ସ୍ଥାନରେ ବହୁ ବୌଦ୍ଧ ମୂର୍ତ୍ତି ନିର୍ମିତ ହୋଇଥିଲା । ଏସବୁଥିରୁ ଏତିକି ଜଣାଯାଏ ଯେ ଅଷ୍ଟମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଯାଜପୁର ବା ବିରଜା ନଗରକୁ କେନ୍ଦ୍ର କରି ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ନୂତନ ପ୍ରସାର ଘଟିଥିଲା । ଏକ ପକ୍ଷରେ ବୌଦ୍ଧ ହୀନଯାନ ପନ୍ଥାର ଯୋଗମାର୍ଗ ବିସ୍ତାର ଲାଭକରିବା ସଙ୍ଗେ ଅନ୍ୟ ପକ୍ଷରେ ବ୍ରାହ୍ମଣ୍ୟ ଧର୍ମର ମଧ୍ୟ ପ୍ରସାର ଘଟିଲା । ବିଷ୍ଣୁ, ଶିବ ଓ ଶକ୍ତି ଉପାସନାର ପ୍ରସାର ଫଳରେ ବୌଦ୍ଧ ବଜ୍ରଯାନ-ସହଜଯାନ-ତନ୍ତ୍ରଯାନ ପ୍ରଭୃତି ହୀନପ୍ରଭ ହେବାକୁ ଲାଗିଲା ଓ କେତେକ ବୌଦ୍ଧ ସିଦ୍ଧାଚାର୍ଯ୍ୟ ବ୍ରାହ୍ମଣ୍ୟ ଧର୍ମର ନାନା ଶାଖା ଉପଶାଖା ମଧ୍ୟରେ ପ୍ରବେଶ କରି ନୂତନ ନାମରେ ପରିଚିତ ହେବାକୁ ଲାଗିଲେ । ବୌଦ୍ଧ ଧର୍ମର ନିରୀଶ୍ୱରବାଦ ଏହି ଧର୍ମକୁ ଆଉ ବେଶୀ କାଳ ଜନ ସମାଜରେ ପ୍ରତିଷ୍ଠା ଦେଲା ନାହିଁ । ତେଣୁ ସପ୍ତମ/ଅଷ୍ଟମ ଶତାବ୍ଦୀରୁ ବୌଦ୍ଧ ଧର୍ମ ଭିତରେ ନାନା ଦେବ ଦେବୀ ଉପାସିତ ହେବାକୁ ଲାଗିଲେ ।

କାଳକ୍ରମେ ଏସବୁ ସନାତନ ହିନ୍ଦୁଧର୍ମ ଗର୍ଭିତ ହୋଇଗଲା । ଏହା ସତ୍ତ୍ୱେ ଏକ ଶୂନ୍ୟବାଦ ବହୁଦେବ ଉପାସନା ମଧ୍ୟରେ ସୁଦ୍ଧା ପ୍ରଭାବ ବିସ୍ତାର କରି ରହିଲା । ଏହି ଶୂନ୍ୟ ବୌଦ୍ଧ ଶୂନ୍ୟ ନୁହେଁ, ଯଦିଓ ବୌଦ୍ଧ ଶୂନ୍ୟର କିଛିଟା ଯେ ପ୍ରଭାବ ଏଥିରେ ନଥିଲା; ନୁହେଁ । ଏହି ଯେଉଁ ଶୂନ୍ୟ ଉପାସନା ବିକାଶଲାଭ କଲା ତାହା ନିର୍ଗୁଣ ବ୍ରହ୍ମବାଦକୁ ପ୍ରତିଷ୍ଠା ଦେଲା ଓ ଏଥିରେ ଏକ ପରମେଶ୍ୱର ଭାବନା ହେଲା ମୁଖ୍ୟ । ଏହି ପରମ୍ପରାରେ ନାନା ଦେବ ଦେବୀ ସ୍ୱୀକୃତି ଲାଭକଲେ । ମାତ୍ର ଊର୍ଦ୍ଧ୍ୱରେ ରହିଗଲେ ଏକ ପରମାତ୍ମା— ନିର୍ଗୁଣ ବ୍ରହ୍ମ । ଏହି ଅଧ୍ୟାତ୍ମଚିନ୍ତନ ଏକାଦଶ ଶତାବ୍ଦୀ ପରଠାରୁ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ମଧ୍ୟରେ ଐକ୍ୟ ସ୍ଥାପନ କଲା । ଉପାସନା ପ୍ରକ୍ରିୟାରେ ଏକ ରହସ୍ୟବାଦୀ ଭାବଧାରା ମୁଖ୍ୟସ୍ଥାନ ଗ୍ରହଣ କରିଗଲା । ଯାଜପୁରର ବିରଜାକ୍ଷେତ୍ର ଠାରୁ ଆରମ୍ଭ କରି ପୁଷ୍ପଗିରି ବିହାରର ବୌଦ୍ଧ କ୍ଷେତ୍ର ପର୍ଯ୍ୟନ୍ତ ସର୍ବତ୍ର ଏହି ପ୍ରକ୍ରିୟା ଅନୁଭୂତ ହେଲା । ଠିକ୍ ଏହି ସମୟରେ ଅମରାବତୀ କଟକର ହେଲା ନୂତନ ପ୍ରତିଷ୍ଠା । ବୋଧହୁଏ ଭୌମକର ରାଜବଂଶର ତୃତୀୟ/ଚତୁର୍ଥ ପୀଢ଼ିରୁ ଅମରାବତୀ କଟକ ପ୍ରାଧାନ୍ୟ ଲାଭ କରିବାକୁ ଲାଗିଲା । ସୋମବଂଶ ବା କେଶରୀ ବଂଶ ସମୟରେ ଏହାର ହେଲା ଖ୍ୟାତି । ଅତଏବ ଦଶମ/ଏକାଦଶ ଶତାବ୍ଦୀ ଠାରୁ ଅମରାବତୀ କଟକ ସନାତନ ହିନ୍ଦୁ ଧର୍ମର ଏକେଶ୍ୱର-ବାଦ ଓ ବୌଦ୍ଧ ଶୂନ୍ୟବାଦକୁ ନେଇ ଏକ ବିଶୁଦ୍ଧ ଏକେଶ୍ୱର ବ୍ରହ୍ମବାଦକୁ ପ୍ରତିଷ୍ଠା ଦେବାକୁ ଲାଗିଲା ।

ଅମରାବତୀ କଟକ ବା ଅମରେଶ୍ୱରପୁର ଏକଦା ଥିଲା ଘଞ୍ଚ ଅରଣ୍ୟସଙ୍କୁଳ । ଏହାର ନିକଟରେ ବିଦ୍ୟମାନ ଧନଆ ପାହାଡ଼, ଜଳୌକା ପାହାଡ଼, ମଣିନାଗଗିରି,

ଡୁଙ୍ଗୁରି ପାହାଡ଼ ଓ କଣ୍ଟଇ ଦୂରରେ ଚଣ୍ଡୀଖୋଲ ପାହାଡ଼ । ଆହୁରି ଅନେକ ଛୋଟ ଛୋଟ ପାହାଡ଼ ଏହି ସ୍ଥାନରେ ବିଦ୍ୟମାନ । ଏହା କଟକ ସହରଠାରୁ ଉତ୍ତରରେ ମାତ୍ର ତିରିଶ କିଲୋମିଟର ଦୂରବର୍ତ୍ତୀ ଛତିଆ ଅଞ୍ଚଳରେ ଏହା ବିଦ୍ୟମାନ । ସୋମବଂଶୀ (କେଶରୀ) ରାଜା ବସୁକଲ୍ପଙ୍କ ରାଜନଗର ଅମରାବତୀର ଉତ୍ତର ପଶ୍ଚିମ ଭାଗରେ ଅବସ୍ଥିତ ଥିଲା । ଏବେ ମଧ୍ୟ ସେଠାରେ ଭଗ୍ନାବଶେଷ ରହିଅଛି । ଏହାର କିଛି ଦୂରରେ, ଯେଉଁଠି ବର୍ତ୍ତମାନ ହାଡ଼ିଦାସ ମହାବିଦ୍ୟାଳୟ ପ୍ରତିଷ୍ଠା ଲାଭ କରିଅଛି, ସେହିଠାରେ ଅଛି ବସୁକଲ୍ପ ରାଜାଙ୍କର ଆଉ ଏକ ଭଗ୍ନ ସ୍ତମ୍ଭ ପୀଠ । ଏହା ସେ ସମୟରେ ରାଜାଙ୍କର ଥିଲା ବିଶ୍ରାମ କକ୍ଷ । ଅନତି ଦୂରରେ ଧନିଆ ପାହାଡ଼ । ତା' ଉପରେ ଅଛି ବସୁଶବରଙ୍କର ରାଜଧାନୀର ଭଗ୍ନାଂଶ । ଏହିଠାରୁ ଏକ ସୁଡ଼ଙ୍ଗ ମାଟି ତଳେ ଆସି ଛତିଆ ବଟଠାରେ ମିଶି ଅଛି । ଏବେ ମଧ୍ୟ ସେହି ସୁଡ଼ଙ୍ଗର ଭଗ୍ନାବଶେଷ ଦେଖିବାକୁ ମିଳେ । ପ୍ରବାଦ ଅଛି ଯେ ବସୁଶବର/ବିଶ୍ୱାବସୁ ରାଜନଗରରୁ ସୁଡ଼ଙ୍ଗ ପଥ ଦେଇ ଛତିଆବଟକୁ ଆସି ସେଠାରେ ବଟ ମୂଳେ ବିରାଜିତ ଥିବା ନୀଳମାଧବଙ୍କୁ ଉପାସନା କରୁଥିଲେ । ବିଦ୍ୟାପତି ବସୁଶବର ଘରକୁ ଆସି ତାର କନ୍ୟାକୁ ବିବାହ କରି ସୁଡ଼ଙ୍ଗ ବାଟେ ବଟ ଉପରକୁ ଯାଇ ନୀଳମାଧବଙ୍କୁ ଦର୍ଶନ କରିଥିଲା । ଇନ୍ଦ୍ରଦ୍ୟୁମ୍ନ ପରେ ବିଦ୍ୟାପତିଙ୍କ ଠାରୁ ଖବର ପାଇ ସୈନ୍ୟସାମନ୍ତ ସହିତ ଆସି ବସୁଶବର ସହିତ ଯୁଦ୍ଧ କରିଥିଲେ । ନୀଳମାଧବ ଅନ୍ତର୍ଦ୍ଧାନ ହୋଇ ଯାଇ ପରେ ପୁରୀରେ ଦାରୁବ୍ରହ୍ମ ହୋଇ ପୂଜା ପାଇଲେ । ଶିଶୁ ଅନନ୍ତ ଦାସ ତାଙ୍କର 'ନୀଳମାଧବ ଗୀତା'ରେ ଏ ପ୍ରସଙ୍ଗରେ ଲେଖିଛନ୍ତି :—

"ବିଶ୍ୱାବସୁ ନାମେ ଥିଲା ଏକଇ ଶବର
ଅମରାବତୀ କଟକ ପାଶେ ତାର ଘର ।
ଭକ୍ତ ବୀର ହେ । (ତାକୁ) ସ୍ୱପ୍ନେ ଆଜ୍ଞାଦେଲେ ନିରାକାର ହେ ।

ବୋଇଲେରେ ବିଶ୍ୱାବସୁ ହେତୁ ଚିତ୍ତ କର
ସାଗର ତୀରେ ଭାସୁଛି ମୋହର ଶରୀର ।
ଆଣି ପୂଜ ହେ । ଅନନ୍ତକାଳ ଲଭିବୁ ପଦାବ୍ଜ ହେ ।

× × ×

ବିଶ୍ୱାବସୁ ବୋଲଇ ଶୁଣିମା ମହାମେରୁ
ନେତ୍ର ଯନ୍ତ୍ର ହୀନ ମୁହିଁ ମୂର୍ଖଟି ଆଦ୍ୟରୁ
କେଉଁ ପରି ହେ । କେଉଁଠାରେ ପୂଜିବି କପରି ହେ ।

ନୀଳ ନବଘନ ମୂର୍ତ୍ତି ଦେଖିବୁ ମୋହର
ନୀଳମାଧବ ମୋ ନାମ ରଖି ହେତୁ କରି
କଳାଗିରି ହେ । କଳ୍ପବଟ ରହିଅଛି ଘେରି ହେ ।

× × ×

କଳି ଶେଷ ହେବ ମୁହିଁ ନର ରୂପ ଜାତ
ହ'କ୍ଷରେ ନାମ ମୋର ହୋଇବଟି ଖ୍ୟାତ
ନିଜ ବାସ ହେ । କଳ୍ପବେଳ ଗୁପ୍ତଗିରି ପାଶ ହେ ।"

ଏଥିରୁ ଜଣା ଯାଉଅଛି ଯେ ବିଶ୍ୱାବସୁ ନଗର ଅମରାବତୀ କଟକ ନିକଟରେ ଥିଲା । ନୀଳମାଧବ ମୂର୍ତ୍ତିଙ୍କୁ ବିଶ୍ୱାବସୁ କଳାଗିରି ଠାରେ କଳ୍ପବଟ ମୂଳରେ ପୂଜା କରୁଥିଲା । ସେହି ନୀଳମାଧବ କଳିଯୁଗରେ କଳାଗିରିରେ 'ହ' ଆଦ୍ୟ ଅକ୍ଷର ନାମରେ ନରରୂପ ଧାରଣ କରି ଲୀଳା କରିବେ । ଏହି 'ହ' ଆଦ୍ୟ ଅକ୍ଷରକୁ ଧରି ଛତିଆବଟର ପ୍ରତିଷ୍ଠାତା ହାଡ଼ି ଦାସଙ୍କୁ ଚିହ୍ନିତ କରାଯାଇଥାଏ ।

ଅମରାବତୀ କଟକ ବସୁକଳ୍ପ ରାଜାଙ୍କ ନଗରୀ ହୋଇଥିଲେ ହେଁ ଛତିଆବଟକୁ ମଧ୍ୟ ଅମରାବତୀ କଟକ କୁହାଯାଏ । ସମ୍ପ୍ରତି ଅମରାବତୀ ବୋଲି ଏକ ସ୍ଥାନ ଛତିଆବଟର ପଶ୍ଚିମ ଭାଗରେ ଅବସ୍ଥିତ । ସେଠାରେ ମଧ୍ୟ ଏକ ମନ୍ଦିର ବିଦ୍ୟମାନ । ଏହି ମନ୍ଦିର ମନେହୁଏ କେଶରୀ ବଂଶ ସମୟରୁ ପ୍ରତିଷ୍ଠା ଲାଭ କରିଥିଲା । କାଳକ୍ରମେ ସେହି ପୁରାତନ ମନ୍ଦିର ଭାଙ୍ଗି ଯିବାରୁ ସେଠାରେ ନୂତନ ମନ୍ଦିର ନିର୍ମିତ ହୋଇଅଛି । ହାଡ଼ି ଦାସଙ୍କ ସମୟରୁ ଛତିଆବଟ ପ୍ରସିଦ୍ଧି ଲାଭ କରିବାକୁ ଲାଗିଲା । ଏହାହିଁ ଅମରାବତୀ କଟକ ବା ଅମରାପୁର ନାମରେ ହେଲା ଖ୍ୟାତ ।

ଛତିଆବଟର ୧୦୮ ନାମ ରହିଅଛି । ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଶିଶୁଅନନ୍ତ ଦାସ, ହାଡ଼ି ଦାସ ପ୍ରମୁଖ ସମସ୍ତେ ଛତିଆବଟର ବିଭିନ୍ନ ନାମ ସମ୍ପର୍କରେ ସେମାନଙ୍କ ନାନା ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି । ଏପରିକି ଭୀମ ଭୋଇ ମଧ୍ୟ ଅମରାବତୀ କଟକ ସମ୍ପର୍କରେ ଉଲ୍ଲେଖ କରିଅଛନ୍ତି । ଏହାକୁ ଡୁବୁରି ପାହାଡ଼ କୁହାଯାଏ । କଳାଗିରି, ଧଳାଗିରି, ଚଢ଼େଇଗିରି, ରତ୍ନଗିରି, ଖଣ୍ଡଗିରି, ଗୁପ୍ତଗିରି, କଳ୍ପବଟ, ନୀପବଟ, ବଂଶୀବଟ, ବାଞ୍ଛାବଟ, ଉଦୟ ବଟ, ସତ୍ୟବଟ, ଛତ୍ରବଟ, ଲୀଳାବଟ, କନକପାଟଣା, କନକାବତୀ ନଗ୍ର, ଯାଜନଗ୍ର, ଅମରାପୁର, ଅମରାବତୀ ନଗର, ନୂଆପାଟଣା, ଅନନ୍ତ ପାଟଣା, କଂକର୍ଣ୍ଣନଗ୍ର, ସମ୍ବଳନଗ୍ର, ବଉଦ୍ଧଭଡ଼ହ, ସିଦ୍ଧପୀଠ, ଗୁପ୍ତଦ୍ୱାରକା, ମଥୁରା କଟକ, ବ୍ୟାଘ୍ର ଗୁମ୍ଫା, ବିରୂପାକ୍ଷେତ୍ର, ବସୁକଳ୍ପପୁର, ବିନ୍ଧ୍ୟଗିରି, ବିସ୍ତରବଟ, ଦେବନାଶନ ବଟ, ନୈମିଷ୍ୟାରଣ୍ୟ, ଚନ୍ଦ୍ରମୁହାଣ, କାଶୀନଗ୍ର, ହରିହରପୁର, ହରିଦ୍ୱାର, ପୁରୁଷୋତ୍ତମପୁର, କୁଆଁରପୁର, ଅଚ୍ୟୁତପୁର, ସଦାନନ୍ଦପୁର, ପାଞ୍ଚାଳନଗ୍ର; କଳାପୀନଗ୍ର, ବିଶ୍ୱକର୍ମାପୁର, ବିଦୁରପୁର, ବିଷ୍ଣୁଦଶାନ୍ତର, ଅନନ୍ତପୁର, ଅମନପୁର, ବିଷ୍ଣୁପୁର, ଝାଡ଼ଖଣ୍ଡ, ଅନନ୍ତକ୍ଷେତ୍ର, କାଞ୍ଚିପୁର, କାଞ୍ଚିନଗ୍ର, ଗିରିଗୁହାଳ, ଅର୍କସ୍ଥଳ, କାଳିଆଘାଇ, ହରିହାଟପୁର, କୁଞ୍ଜବନ, ମଣ୍ଡାପଡ଼ା, କାମ୍ୟକବନ, ଜମ୍ବୁନଗ୍ର, ରତ୍ନଯୋଡ଼, ପ୍ରାଚୀଦେଶ, ସିନ୍ଧୁପୁର, ଶ୍ରୀକଣ୍ଠପୁର, ଧାମନଗ୍ର, ଚମ୍ପାପୁର, ଇନ୍ଦ୍ରପ୍ରସ୍ଥ, ଅଯୋଧ୍ୟାପୁରୀ, ତାଳବଣ, ବଡ଼ଖିଣ୍ଡ, ବାଲିକୁଦା, ସିଦ୍ଧକେଦାର, କମଳପୁର, ପଦ୍ମବନ, କାଉଁରୀମଣ୍ଡଳ, କାମାକ୍ଷା ପାଟଣା, ଦଶାସମାଘାଟ, ନନ୍ଦଭବନ, ସତ୍ୟବତୀପୁର, ବାରୁଣୀବନ୍ତ କଟକ,

ଉଦୟାଚଳ, ଶିଶୁଅନନ୍ତ ଗାଦ, ମୁହୂର୍ତ୍ତି ମଠ୍ଠର, ଦେଉଳ ପାଟଣା, ଏକାମ୍ରକାନନ, କୃଷ୍ଣୀନଗର, ଡାଳିମ୍ବାଭୁବନ, ବାରଣାସୀ, କାଶୀଧାମ, ଭକତପେଣ୍ଠ, ଭୁବନେଶ୍ୱର, ଚଉଦୁଆର, ଧାନୁଆଣି, କ୍ଷୀରପାଟଣା, ବଉଲାଗ୍ରାମ, ଛତ୍ରଆବଟ ଆଦି ନାମଗୁଡ଼ିକ ଛତ୍ରଆବଟ ସମ୍ବନ୍ଧ ବିଭିନ୍ନ ଗ୍ରନ୍ଥମାନଙ୍କରେ ଉଲ୍ଲେଖ କରାଯାଇଥିବା ଦେଖାଯାଏ । ଅମରାବତୀ କଟକ ଯେ ଛତ୍ରଆବଟ ଏଥିରେ ସନ୍ଦେହ ରହେ ନାହିଁ । ଏହାହିଁ ଅମରାପୁର । ସିଦ୍ଧାନ୍ତରେ ଏତିକି କୁହାଯାଇ ପାରେ ଯେ କେଶରୀ ବଂଶର ବସୁକଲ୍ପ ନଗର ଠାରୁ ଆରମ୍ଭକରି ଅମ ଈଶ୍ୱର ଅମରାବତୀ—ଛତ୍ରଆ ହେଉଛି ଅମରାବତୀ କଟକ ।

ଛତ୍ରଆବଟକୁ କେନ୍ଦ୍ର ବିନ୍ଦୁ ଭାବରେ ଧରି ଅମରାବତୀ କଟକ ବିସ୍ତାର ଲାଭ କରିଥିଲା ଏବଂ ଏହିପୀଠ ବିଶୁଦ୍ଧ ଅଦ୍ୱୈତ ବ୍ରହ୍ମବାଦର ବିଜୟ ବୈଜୟନ୍ତୀ ଉଡ଼ାଇଥିଲା । ବୌଦ୍ଧ ଶୂନ୍ୟବାଦକୁ ଏହା ଅଙ୍ଗୀଭୂତ କରି ନେଇ ସନାତନ ବ୍ରହ୍ମବାଦକୁ ସ୍ୱୀକୃତି ଦେଇଥିଲା । ଏହା ଲୀଳାକୁ ସ୍ୱୀକାର କରିଛି ମାତ୍ର ଲୀଳା ଲୀଳା ଭିତରେ ରହିଯାଇ ନାହିଁ । ଏଗୁଣକୁ ସମର୍ଥନ କରିଛି ମାତ୍ର ସଗୁଣରୁ ନିର୍ଗୁଣକୁ ଗତି କରି ମଣିଷ ସମାଜପ୍ରତି ପରମ ସତ୍ୟ ପ୍ରଦାନ କରିଛି । ଶୈବ, ଶାକ୍ତ ଓ ବୈଷ୍ଣବ ମତକୁ ମିଳାଇ ଦେଇଛି । ସତ୍ୟ, ଶାନ୍ତି, ଦୟା ଓ କ୍ଷମା—ଏହି ଚାରୋଟି ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇଛି । ତେଣୁ ଏହା ହୋଇଯାଇଛି ଅତ୍ୟନ୍ତ ରହସ୍ୟମୟ । ଗୃହସ୍ଥ ଧର୍ମକୁ ସ୍ୱୀକୃତି ଦେଇଛି ମାତ୍ର ଗୃହାସ୍ଥାଶ୍ରମରେ ସନ୍ନ୍ୟାସତ୍ୱକୁ ଦେଇଛି ଗୁରୁତ୍ୱ । ଏଥିରେ କର୍ମର ପ୍ରାଧାନ୍ୟ ଅଛି ଏବଂ କର୍ମ ମଧ୍ୟ ଦେଇ ଜ୍ଞାନର ଉପାସନା କରାଯାଇଛି । କର୍ମ ଓ ଜ୍ଞାନ ମିଳିତ ହୋଇ ଭକ୍ତିର ବିକାଶ କରିଛି ।

ଛତ୍ରଆବଟ ବନାମ ଅମରାବତୀ କଟକ'ମଥୁରା କଟକ ଆଉ ଏକ ଗୁରୁତ୍ୱ ପୂର୍ଣ୍ଣ ତଥ୍ୟ ପ୍ରଦାନ କରିଅଛି । ସେହି ତଥ୍ୟ ଓ ତତ୍ତ୍ୱ ହେଉଛି ଜାତିଭେଦର ଉଚ୍ଛେଦ । ଏହା ଜାତି ପ୍ରଥାକୁ ସ୍ୱୀକାର କରିଛି । ଅର୍ଥାତ୍ ଯିଏ ଯେଉଁ ଜାତିରେ ଜନ୍ମ ନେଇଛି ସିଏ ତାର କୌଳିକ କର୍ମ କରିବା ଉଚିତ । ଏହାର ଅର୍ଥ ନୁହେଁ ଯେ ସେ ଶ୍ରେଷ୍ଠ ହୋଇଗଲା । ପ୍ରତ୍ୟେକ କର୍ମ ପବିତ୍ର । ନିଷ୍ଠାପର ଭାବରେ ସେହି କର୍ମ କରିବା ଉଚିତ । କର୍ମରେ ଶୁଦ୍ଧତା ଓ ନିଷ୍କାମ ଭାବ ସୃଷ୍ଟି ହେଲେ କର୍ମ ହୋଇଯାଏ ଜ୍ଞାନ ଏବଂ ଏହି ଜ୍ଞାନରୁ ଜାତ ହୁଏ ଭକ୍ତି । ଯେଉଁଠି ଜାତି ପ୍ରଥା ଜାତି ଭେଦରେ ପରିଣତ ହୋଇ ଯାଇ ପରସ୍ପର ଭିତରେ ଗୋଟାଏ ଦୁର୍ଭେଦ୍ୟ ପ୍ରାଚୀର ପକାଇ ଦିଏ ସେଇଠି ତାହା ନିନ୍ଦନୀୟ ହୋଇଯାଏ । ଏହାକୁ ଛତ୍ରଅବଟର ଆଧ୍ୟାତ୍ମିକ ତତ୍ତ୍ୱ ନିନ୍ଦା କରିଛି । ତେଣୁ ଛତ୍ରଆବଟରେ ଶୂଦ୍ରଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତେ ସମାନ । ଏପରିକି ଏହି ପୀଠକୁ ଇସ୍‌ଲାମ ଓ ଖ୍ରୀଷ୍ଟିୟାନ ଧର୍ମର ଲୋକେ ମଧ୍ୟ ଯାଇପାରନ୍ତି । କୌଣସି ବାଧା କାହାପ୍ରତି ନଥାଏ । ଧର୍ମକୁ ଉଦାର ଦୃଷ୍ଟିକୋଣରୁ ଏଠାରେ ବିଚାର କରାଯାଇଛି ।

ମାନବିକତାର ଭିତ୍ତି ଭୂମି ଉପରେ ଧର୍ମର ହୋଇଛି ପ୍ରତିଷ୍ଠା । ଏକ ଶୁଦ୍ଧ-ଚେତନା ତେଣୁ ହୋଇଯାଇଛି ଏହି ପୀଠର ଅନ୍ତଃସ୍ୱର । ଯେଉଁ ଶୁଦ୍ଧ ଚେତନା ପଞ୍ଚଦଶ

ଶତାବ୍ଦୀରେ ସାରଳା ଦାସଙ୍କଠାରୁ ସୃଷ୍ଟି ହୋଇଥିଲା ତାହା ଷୋଡ଼ଶ ଶତାବ୍ଦୀର ବଳରାମ-ଜଗନ୍ନାଥ-ଅଚ୍ୟୁତ-ଯଶୋବନ୍ତ ଓ ଶିଶୁ ଅନନ୍ତଙ୍କ ମଧ୍ୟ ଦେଇ ପରବର୍ତ୍ତୀ ଦିବାକର ଦାସ-ଚୈତନ୍ୟ ଦାସ ଦ୍ୱାରିକା ଦାସ-ସାଧୁ ଦାସ, ଦୟା ଦାସ, ଶିବ ଦାସ, ଶରଣ ଦାସ, ନାରଣ ଦାସ, ନନ୍ଦ ଦାସ, ନିରାକାର ଦାସ; ଶିଖର ଦାସ, ବାହୁଣ୍ଡ ଦାସ, ହାଡ଼ିଦାସ, ଅରକ୍ଷିତ ଦାସ ଓ ଖିମଭୋଇଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା ଓ ପ୍ରତ୍ୟେକ ନିଜ ନିଜକୁ ମୂର୍ଖ, ପାମର, ହୀନ, ପତିତ ଅଧମ ଓ ଶୂଦ୍ର କହିଥିଲେ ମଧ୍ୟ ସେମାନେ ତହିଁର ଦୁର୍ବଳତା ପ୍ରକାଶ କରିନାହାନ୍ତି । ବରଂ ରାଜା, ବ୍ରାହ୍ମଣ ଓ ସଂସ୍କୃତକୁ ଅସ୍ୱୀକାର କରି ମାଟି, ମାଟିମଣିଷ ଓ ମାଟିମଣିଷର ଭାଷାକୁ ସ୍ୱୀକୃତି ଦେଇଥିଲେ । ମାଟି ମଣିଷ ସହିତ ସେମାନେ ସାମିଲ ହୋଇ ଯାଇଥିଲେ । ବାହାରକୁ ସଗୁଣ ବ୍ରହ୍ମର ଉପାସକ ପରି ଜଣା ଯାଉଥିଲେହେଁ ଭିତରକୁ ନିର୍ଗୁଣ ବ୍ରହ୍ମର ଥିଲେ ଉପାସକ । ମୋଟ ଉପରେ ସଗୁଣ ଓ ନିର୍ଗୁଣ ସମନ୍ୱୟର ଏକ ସ୍ୱତନ୍ତ୍ର ଦୃଷ୍ଟିକୋଣର ଥିଲେ ସେମାନେ ସମର୍ଥକ । ସେମାନେ ଜାତି ମାନୁ ନଥିଲେ । କାହାରି କୌଳିକ ବୃତ୍ତିକୁ ଅସ୍ୱୀକାର କରୁ ନଥିଲେ । ସେମାନେ ସ୍ୱୀକାର କରୁଥିଲେ ମଣିଷକୁ ଓ ମଣିଷ ମଧ୍ୟ ଦେଇ ବ୍ରହ୍ମର ଉପଲବ୍ଧି ଥିଲା ସେମାନଙ୍କର ଶ୍ରେଷ୍ଠ ଆଧ୍ୟାତ୍ମିକ ଦର୍ଶନ ।

ଅମରାବତୀ କଟକ ଏହି ବୈପ୍ଳବିକ ଆଭିମୁଖ୍ୟର ନିଦର୍ଶନ । ହାଡ଼ିଦାସ ଏହି ଆଦର୍ଶର ସଦର୍ପ ଅଭିବ୍ୟକ୍ତି । ସେ ଜଗନ୍ନାଥଙ୍କୁ ସ୍ୱୀକାର କରିଅଛନ୍ତି । ଜଗନ୍ନାଥଙ୍କ ମଧ୍ୟଦେଇ ସକଳ ଧର୍ମର ସମନ୍ୱୟ ପାଇଁ ଦେଇଛନ୍ତି ଆହ୍ୱାନ । କୌଣସି ସଂପ୍ରଦାୟ ଭିତରେ ସେ ଆବଦ୍ଧ ନୁହନ୍ତି । ସଂପ୍ରଦାୟ ବିନିର୍ମୁକ୍ତ ଏକ ନୂତନ ଆଧ୍ୟାତ୍ମିକ ମାର୍ଗର ସେ ପ୍ରତିଷ୍ଠାତା । ସମାଜର ସେ ଥିଲେ ଏକ ଜାଗ୍ରତ ଚେତନା । ଭବିଷ୍ୟତ ପାଇଁ ସେ ଥିଲେ ବୈପ୍ଳବିକ ଚେତାବନୀ । ଦର୍ପଣୀର ରାଜା ଗୁଲଜାର ହୋସେନଙ୍କଠାରୁ ଛତିଆବଟର ଅଧିକାରିତ୍ୱ ଲାଭ କରି ସେ ଚମ୍ପାପୁରରୁ ଉଠିଆସି ସେହିଠାରେ ଅବସ୍ଥାନ କଲେ ଓ ତାଙ୍କ ପରେ ସାଧୁବର ଦାସ, ରଘୁବର ଦାସ, ଭଗବାନ ଦାସ, ହରେକୃଷ୍ଣ ଦାସ, ପରମାନନ୍ଦ ଦାସ, ରାମଚନ୍ଦ୍ର ଦାସ ପ୍ରମୁଖ ସେଠାରେ ବଂଶାନୁକ୍ରମେ ବସବାସ କରିବାକୁ ଲାଗିଲେ । ଛତିଆବଟ ହୋଇଗଲା ଏକ ବିରାଟ ଆଧ୍ୟାତ୍ମିକ ପୀଠ । ଏହି ପୀଠରେ ହାଡ଼ିଦାସଙ୍କ ସମାଧି ଉପରେ ବଳଦେବଙ୍କ ବିରାଟ ବିଗ୍ରହ ବିଦ୍ୟମାନ ।

ସାଧୁବର ଦାସଙ୍କ ସମାଧି ଉପରେ ଜଗନ୍ନାଥଙ୍କ ବିଗ୍ରହ ଓ ରଘୁବର ଦାସଙ୍କ ସମାଧି ଉପରେ ସୁଭଦ୍ରାଙ୍କ ବିଗ୍ରହ ବିଦ୍ୟମାନ । ବଳଭଦ୍ର ଓ ଜଗନ୍ନାଥଙ୍କର ହାତ ନାହିଁ; ଗୋଡ଼ ଅଛି । ସୁଭଦ୍ରାଙ୍କର ହାତ ଓ ଗୋଡ଼ଅଛି । ଏହି ମୂର୍ତ୍ତିତ୍ରୟ ତିନୋଟି ମନ୍ଦିରରେ ବିଦ୍ୟମାନ । ଏକ ସରଳ ରେଖାରେ ଏହି ମନ୍ଦିରତ୍ରୟୀ ନିର୍ମିତ । ଏହାର ଶେଷ ଭାଗରେ କନକଦୁର୍ଗାଙ୍କ ବିରାଟ ମନ୍ଦିର । ଏହି ମନ୍ଦିରର ପୂର୍ବ ଭାଗରେ ହନୁମାନ, ଉତ୍ତରରେ ଯମ, ପଶ୍ଚିମରେ କାଳୀ ମୂର୍ତ୍ତି ନିର୍ମିତ ହୋଇଅଛି । ଏହି ମନ୍ଦିରକୁ ଲାଗି ସ୍ନାନମଣ୍ଡପ । ବଟର ପଶ୍ଚିମ ଭାଗରେ ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା ଏକ ପ୍ରାସାଦ ମଧ୍ୟରେ ବିରାଜିତ । ଏଠାରେ

ମଧ୍ୟ ଲକ୍ଷ୍ମୀ ଓ ବିମଳା ବିଦ୍ୟମାନ । ମୁଖ୍ୟମନ୍ଦିରର ଅର୍ଥାତ୍ ବଳଭଦ୍ର ମନ୍ଦିରର ଚୂଡ଼ାରେ ତ୍ରିଶୂଳ ଓ ସର୍ପ ବିରାଜିତ । ଏହି ମନ୍ଦିରକୁ ଲାଗିଅଛି କଳ୍ପବଟ । ଏହାର ଦକ୍ଷିଣକୁ ଗୋଲକ ବୈକୁଣ୍ଠ । ଏଠାରେ ରାଧାକୃଷ୍ଣଙ୍କ ବିଗ୍ରହ ପୂଜିତ । ମୁଖ୍ୟ ମନ୍ଦିରର ପୂର୍ବ ପଟରେ ତ୍ରିପୁରା ଦେବୀ ରହିଅଛନ୍ତି । ପଞ୍ଚମୁଖୀ ଅଟ୍ଟାଳିକା ମଧ୍ୟରେ ଅଛନ୍ତି ନାନା ଦେବଦେବୀଙ୍କ ବିଗ୍ରହ ଓଁକାର ଆକୃତି ବିଶିଷ୍ଟ ସର୍ପ ମଧ୍ୟରେ ଶେଷଦେବଙ୍କ ବିଗ୍ରହ ନିର୍ମିତ। ଏହି ପଞ୍ଚମୁଖୀ ଅଟ୍ଟାଳିକାକୁ ଲାଗି ବକୁଳେଶ୍ୱର ଶିବ ମନ୍ଦିର । ଏତଦ୍‌ବ୍ୟତୀତ ଏହି ପୀଠରେ ସ୍ୱାମୀ ହରେକୃଷ୍ଣ ଦାସ, ପରମାନନ୍ଦ ଦାସ ଓ ରାମଚନ୍ଦ୍ର ଦାସଙ୍କର ସମାଧି ମନ୍ଦିର ବିଦ୍ୟମାନ । ଏଠାରେ ବ୍ୟକ୍ତ ମୂର୍ତ୍ତି ମଧ୍ୟକୁ ଯାଇ ମୂର୍ତ୍ତି ମଧ୍ୟରେ ଅମୂର୍ତ୍ତ ହୋଇଯାଇଛନ୍ତି । ନର ଦେହରେ ବ୍ରହ୍ମଙ୍କ ବିରାଜମାନର ଏହା ଏକ ଯାନ୍ତ୍ରିକ ଆଦର୍ଶ । ଅନ୍ୟ ଅର୍ଥରେ ଏହିଠାରେ ହିଁ ନର ହୋଇଛନ୍ତି ସ୍ୱୟଂ ବ୍ରହ୍ମ । ସେ ଏକାଧାରରେ ହୋଇଛନ୍ତି ଶକ୍ତି ଓ ସତ୍ତ୍ୱ, ରୂପ ଓ ଅରୂପ, ବ୍ୟକ୍ତ ଓ ଅବ୍ୟକ୍ତ ।

ଏହି ପୀଠ ଏକାନ୍ତ ରହସ୍ୟମୟ । ଏହାର ପୂର୍ବ ଭାଗରେ ବିରାଜିତ ଚନ୍ଦ୍ରତୀର୍ଥ । ଏହି ପୀଠର ଉତ୍ତର ଭାଗରେ ପଦ୍ମବନ । ଗଙ୍ଗା ଯମୁନା ଏଇଠାରେ ଗୁପ୍ତ ଭାବରେ ପ୍ରବାହିତ । ଏହିଠାରେ କ୍ଷୀର ନଦୀ ଓ ଗଣ୍ଡକୀ ନଦୀ ପ୍ରବାହିତ । ଏହା ଦ୍ୱିତୀୟ ନୀଳାଚଳ । ହାଡ଼ିଦାସ ଠାକୁର ପାହାଡ଼/ଛତିଆବଟକୁ ଗୁଲଜାର ହୋସେନଙ୍କ ଠାରୁ ପଟ୍ଟାସୂତ୍ରେ ପାଇଥିଲେ । ସେ ଅମରାବତୀ ସମ୍ପର୍କରେ ପରିଚୟ ଦେଇଛନ୍ତି—

"ଚମ୍ପାପୁର ବୋଲି ଗ୍ରାମ ଯେ ଜନ୍ମ ବିନ୍ଧାଣି କୁଳେ
ଅମରାବତୀରେ ମହିମା ତେଜ ପ୍ରକାଶ ଥିରେ ।୧୭।"

(ଲକ୍ଷ୍ମୀଧର ବିଳାସ)

"ଅମରାବତୀ ପୂର୍ବକୋଣ । ଛତିଆ ବୋଲି ଗ୍ରାମ ନାମ ॥
ଅମରେଶ୍ୱର ବୋଲି ଶିବ । ସେ ପାଦକୁ ଅଧମ ଜୀବ ॥
ନିରତେ ଗଲା ପ୍ରତିଆଶ । ତୃଷାରେ ନୁହଇ ସନ୍ତୋଷ ॥
ଅମରେଶ୍ୱରୀ ବଇଷ୍ଣବୀ । ଆଦ୍ୟଦୁର୍ଗା ସିଦ୍ଧ ସାଧବୀ ॥
ପର୍ବତ ନାମେ ଧନ୍ୟାଗିରି । ଏ ମୂଢ଼ ତହିଁ ଆଶ୍ରା କରି ॥"

(ଶଙ୍ଖନାଭି-୭ମ ଅଧ୍ୟାୟ)

"ଅମରାବତୀ ବୋଲିସ୍ଥାନ କୁବେରଙ୍କ ଭଣ୍ଡାର
ଗିରି ଶିଖେ ସାଧୁ ଅଛନ୍ତି ଅବନୀରେ ନିତ୍ୟର ।
ମୁହିଁ ସେହିଠାରେ ପ୍ରବେଶ ହେବି ବିନ୍ଧାଣି କୁଳେ
ଏକ ଜ୍ୟୋତି ବେନି ଅଙ୍ଗଟି ନାମ ହେବ ମନ୍ଦରେ ।
× × ×
ତ୍ରିପୁରା ସେ ନିତ୍ୟ ଦ୍ୱାରଟି ନୃସିଂହଜୀ ସହିତେ
ହେଥିପରେ ପଦ୍ମକେଶର ବାରି ଶାଖା ସଙ୍ଗତେ ।

ମହାନଟ୍ୟ ଯହିଁ ସ୍ୱହାସ ମହାଯୋଗୀଙ୍କ ଠଣା
ଅନାହତ ଜ୍ୟୋତି ଜ୍ୱଳାଟି ଯହିଁ ନାହିଁ ଉପମା ।
× × ×
ସୁରସ୍ତମ୍ଭପୁର କ୍ଷେତ୍ରଟି ହେବ ବନକୁ ବନ
ବନମଣି ଜ୍ୟୋତି ଉଦୟେ ପ୍ରଭୁଙ୍କର ଭିଆଣ ।
କେ ସାନ କେ ବଡ଼ ବାରଣ ହେବ ପ୍ରକଟ ଘୋର
କୁଟିଳ ସେ ଜ୍ୟୋତି ଜପ୍ରାତ ଖେଳ ହେବ ସେଠାର ।
କଂକଟ ନବର କ୍ଷେତ୍ରଟି ଫୁଲତୋଟା ପାଖର
ପୁରୁଣା ସେ ପଦ ପ୍ରକାଶ ହେବ ମଣିନାଗର ।”

(ଲକ୍ଷ୍ମୀଧର ବିଳାସ)

“ଅମରାବତୀ ପୂର୍ବକୋଣେ ଗ୍ରାମ ଛତିଆ ନାମ
ସେହିଠାରେ ବସି ଭବୁଛୁ ଗୁରୁ ପୁରୁଷୋତ୍ତମ ।
ଜ୍ଞାନ ଧ୍ୟାନ ମୋର ନାହିଁ ଗୋ ନତ୍ୟେ ତାଙ୍କର ଚିନ୍ତା
ତାଙ୍କ ବିନୁ ହର କେ ଅଛୁ ନାହିଁ ଅନ୍ୟ ରଖନ୍ତା ।
ବ୍ରାହ୍ମଣୀ କୂଳରେ ଜନମ କାହୁଁ ଜାଣିବ ପଣ୍ଡ
ମୋର ବୋଲ ମୁଁ କହୁନାହିଁ ଭଣିଛନ୍ତି ଅଚ୍ୟୁତ ।
ଅମରାବତୀ ପର୍ବତ ସେ ଯେଣୁ ନିଗମ ସ୍ଥାନ
ସେହି ପର୍ବତରେ ଅଛନ୍ତି ସାଧୁ ଯୋଗୀଧି ଜନ ।
ଅମରାବତୀର ପ୍ରବତ ସେ ଯେ ନିଗମ ଭୂଇଁ
ସୁବର୍ଣ୍ଣ ଚମ୍ପା ଅଛୁଟି ସଂଖ୍ୟା କେ ପାରେ କହି ।
ବେଲ ବଉଳ ବରକୋଳ ତହିଁ ନିକଟେ ଅଛୁ
ହୁଙ୍କା ସ୍ୱରୂପରେ ନୃସିଂହ ଯହିଁ ଜଗି ବସିଛୁ ।
ବାରହାତ ତେର ଅଙ୍ଗୁଳ ହୁଙ୍କା ହୋଇବ ଉଚ
ତେବେ ଜାଣିବୁ ରାମଚନ୍ଦ୍ର କଳକୀର ପ୍ରକାଶ ।

(ନିଶ୍ଚଳ ଜ୍ଞାନଗୀତା)

ହାଡ଼ିଦାସ ତାଙ୍କର ହିଭନ୍ନ ଗ୍ରନ୍ଥରେ ଅମରାବତୀ କଟକ ସମ୍ପର୍କରେ ଉଲ୍ଲେଖ କରିଅଛନ୍ତି । ଜଗନ୍ନାଥ ଦାସ ମଧ୍ୟ ଅମରାବତୀ କଟକ ସମ୍ପର୍କରେ ଲେଖିଛନ୍ତି—

“ଅମରାବତୀ ସେ ପୁରଟି ଛତିଆ ବୋଲି ଗ୍ରାମ
ସେଠାରେ ମହିମା ଉଦୟେ ଥିବେ ପୁରୁଷୋତ୍ତମ ।
× × ×
ଅନନ୍ତ ଲୀଳା ପ୍ରକାଶିବ ଅନନ୍ତ ମାଳା ଭୂଇଁ
ଅନନ୍ତ ଗୋପାଳ ମହିମା ଉଦେ ହେବ ସେଠାଇଁ ।
× × ×

କାରିଗର ହାଡ଼ି ଦାସଟି ଦେଖ ରେବଣ ପାଇଁ
ସଖା ଅଙ୍ଗରେ ଦୃଶ୍ୟ ହେବେ ଭାବ ସହାର ପାଇଁ ।"
(ମନ୍ତ୍ରମାଲେଖ ଭବିଷ୍ୟାନ୍ତଃ-୨ୟ ଅଧ୍ୟାୟ)

ଶିଶୁ ଅନନ୍ତ ଦାସ ଅମରାବତୀପୁର ଓ ହାଡ଼ି ଦାସଙ୍କ ସମ୍ପର୍କରେ କହନ୍ତି—

"ପକ୍ଷୀବର ବାଣୀ ବଳଦେବ ଶୁଣି ବୋଲନ୍ତି ଖଗପ ଶୁଣ
ନଷ୍ଟେ ମାଳଗିରି ଯିବ ତେଜ କରି ଓଡ଼ରାଷ୍ଟ୍ରରେ ଜନମ ।
ଚମ୍ପାନଗ୍ରଠାରେ ଜନମ ହୋଇଣ ଅମରାପୁରରେ ବାସ
ଶାଳ ବନାଇଣ ଫାଳ ପଜାଇବ ନାମ ହେବ ହାଡ଼ିଦାସ ।"
(ଶିଶୁଅନନ୍ତ ମାଳିକା)

ଅଚ୍ୟୁତାନନ୍ଦ ଦାସ ବହୁତ ରଚନାରେ ଅମରାବତୀ କଟକ, ଗୁପ୍ତଗିରି, ଛତିଆବଟ, ମଣିନାଗ ଗିରି ପ୍ରସଙ୍ଗରେ ବର୍ଣ୍ଣନା କରିଅଛନ୍ତି । 'ଅଷ୍ଟଗୁଜ୍ଜରୀ'ରେ ସେ କହିଛନ୍ତି—'ଅମରାବତୀ ଯେ କଟକ ମଣିନାଗ ପାଖରେ ।' ଏହି ଅମରାବତୀ କଟକ ହିଁ ଆଧ୍ୟାତ୍ମିକ ମାର୍ଗରେ ଛତିଆବଟ । ଏହିଠାରେ କଳ୍କି ଅବତାର ହେବ ବୋଲି ଅଚ୍ୟୁତାନନ୍ଦ କହନ୍ତି—

"ଗୁପତ ହୋଇଣ ବିରଜା ଗିରି ମଧ୍ୟରେ ଥିବେ
ଘୋଟିବ ଜଗତେ କାଳ ଯେ କଳ୍କି ମୂର୍ତ୍ତି ହେବେ ।
ଉଦୟ ବଟର ପାରୁଶେ ଲୀଳା ଉଦେ ହୋଇବ
ଚେତା ଭକ୍ତମାନେ ବେଢ଼ିବେ ଚଉଁ ଭଗତ ଥିବ ।
ଛିନ୍ନଛତ୍ର ହେବ ଜଗତ ଛତ୍ର ଟେକ ଅନନ୍ତ
ଜଗତ ବିଖ୍ୟାତ ହୋଇବ ଏହୁ କଥାଟି ସତ୍ୟ ।"
(କଳିଲୀଳା ଚଉତିଶା)

ଛତିଆବଟ ହିଁ ଉଦେବଟ ଏବଂ ଏହିଠାରୁ କଳ୍କି ଲୀଳା ଆରମ୍ଭ ହେବ ବୋଲି ଅଚ୍ୟୁତାନନ୍ଦ ସୂଚେଇ ଦେଇଅଛନ୍ତି । ଏହା ହିଁ ଲୀଳାବଟ । ଏହିଠାରେ କ୍ଷୀରଧାର ବହି ଯାଉଛି ଓ ତାର ତଟରେ କୁଞ୍ଜ ଭୁବନ ଦୃଶ୍ୟମାନ । ଏହା ମଧ୍ୟ ତାଳମ୍ବ ଭୁବନ । ଏହିଠାରେ ଅନନ୍ତ ବିରାଜିତ । ଏହି ବଟପୃଷ୍ଠରେ ସ୍ୱୟଂ ଭଗବାନ ତେରଜନ୍ମ ଧରି ନର ଶରୀରରେ ଲୀଳା କରିବେ । 'ଘଟ ପରଚେ ଚଉତିଶା' ରେ ଅଚ୍ୟୁତାନନ୍ଦ ଏ ସମ୍ପର୍କରେ କହନ୍ତି—

"ତପସ୍ୟା କରିଥିବୁ ବଟ ପୃଷ୍ଠରେ
ତେର ଜନମ ଭୋଗ ନର ଶରୀରରେ ହେ । ତେରକୁ ଅନା
ତତ୍ତ୍ୱ କରି ଅଚ୍ୟୁତ କରେ ଭାବନା ହେ ।

× × ×

ଦର୍ପଣୀ ଛତିଆର ଗ୍ରାମ ମଧ୍ୟରେ
ଦିନ ମୁଁ ଗଣୁଥିବ ରହି ଗୁପ୍ତରେ ହେ । ଦେଖିବୁ ଗ୍ରାମ ।
ବଟବୃକ୍ଷ ତଳେ ଜଳୁଥିବ ପ୍ରମାଣ ହେ ।

× × ×

ମଳୟ ଧବଳ ବର୍ଣ୍ଣ ମିଶିଣ ଥିବ
ମାଡ଼ ଅଭଡ଼ା ତହିଁ ବଳା ଲଗିବ ହେ । ନାମ ପ୍ରସ୍ଥର
ନୈତ୍ୟ ସେ ଥିବ ଲୀଳା ବଟ ପୂଟରେ ହେ ।
ପାଟଛତା ଉଡ଼ିବ ସେହି ସ୍ଥାନରେ
ପରମାନନ୍ଦ ରୂପ ଦେଖିବୁ ଲୋକେ ହେ । ପାଇ ଭୁକ୍ତମା
ପାପ ତୋ ହରିଯିବ ଅତ୍ୟନ୍ତ ଆଶା ହେ ।"

ଦର୍ପଣୀ ତାଲୁକା ମଧ୍ୟରେ ଛତିଆବଟ ବିଦ୍ୟମାନ । ଏହିଠାରେ କଲ୍କୀ ଅବତାର ହେବ ବୋଲି ଜଗନ୍ନାଥ ଦାସ ମଧ୍ୟ 'ଉଦ୍ଧବ ଚଉତିଶା'ରେ କହିଛନ୍ତି :—

"କହନ୍ତି କେଶବ ଶୁଣ ହେ ଉଦ୍ଧବ କଂକଟ ନଗ୍ରଟି ଜାଣ
କଲ୍କୀ ଅବତାର ହେବ ସେହିଠାରେ ଲୋହିତ ଆମ୍ଭର ବର୍ଣ୍ଣ ।
ଖଣ୍ଡଗିରି ନାମ ଗୁପତ ପ୍ରମାଣ ଖ୍ୟାତ ବଟ ଅଛି ତହିଁ
କ୍ଷୀରଧାର ତହିଁ ଗଣ୍ଡୁକୀ ସଂଗମ ଉଦୟ ହୋଇବି ମୁହିଁ ।

× × ×

ଗୋପାଳ ସେ ଦେବ ଅନନ୍ତ ମୂରତି ଉଦୟ ହେବଣ ସ୍ଥାନ
ଗୁପ୍ତ ଖଣ୍ଡଗିରି ତାହାକୁ ଜାଣିବୁ ତହିଁରେ ଆମ୍ଭ ଆଶ୍ରମ ।
ଗରବ କରିଟି କହିବେ ବଚନ ଲଙ୍ଘିବେ ସଂସାର ଲୋକ
ଗିରିରେ ରହିବୁ ସବୁ ଶୁଣୁଥିବୁ ଗ୍ରହିଁଥିବୁ ଦିନ ଠାବ ।

× × ×

ଉଦେ ଯୋଗମାୟା ଯହିଁ ତୁ ଦେଖିବୁ ଉଦେ ପବନ ନନ୍ଦନ
ଉଦେ ବଟଠାରେ ଉଦେ ମୁଁ ହୋଇବି ଲଙ୍ଗ ପଶ୍ଚିମରେ ପୁଣ ।

× × ×

ଖ୍ୟାତ ବଟଠାରେ ଅନନ୍ତ ପ୍ରକାଶ ଗୁଡ଼ିବେ ଯେ ସିଂହ ରଡ଼
ତୁମ୍ଭୁ ଆଜ୍ଞା ଦେବେ ଦେବୀ ଗ୍ରାସିଯିବେ ପୃଥ୍ୱୀରେ ଯେସନେ ବଡ଼ି ।
ଯାଜନଗ୍ର ବୋଲି ତାହାକୁ ବୋଲିଟି ଯହିଁରେ ଉଭା କନକ
ଯମୁନା କାଳନ୍ଦୀ ଉତ୍ତରେ ରହିଛି ସେଠାରେ ଭୈରବୀ ଡାକ ।
ଯହିଁ ମଣିନାଗ ଅମରାବତୀପୁର କୁବେର ଘର ଯହିଁରେ
ଜଗନ୍ନାଥ ଜାତ ସେଠାରେ ଜାଣିବୁ ଇନ୍ଦ୍ର ଇନ୍ଦ୍ରାଣୀ ସେଠାରେ ।

× × ×

ଠୂଳ ଶୂନ୍ୟ ନାଥ ଠୂଳ ହେବୁଁ ଖ୍ୟାତ ସ୍ଥାନ ଅମରାବତୀପୁର
ଠିକ୍ ଯେ କଟକ କୁବେର ଭଣ୍ଡାର ଯେଉଁଠାରେ ଅମରେଶ୍ୱର ।

×　　×　　×

ଅନନ୍ତ କେତେଶ ବର୍ଣ୍ଣ ମୁଁ କରିବ ଅମରାପୁରର ବାସ
ଅଣସାଧନାରେ ଯେ ଭକ୍ତ ପଡ଼ୁଛି ସେ ଭକ୍ତ ଖଣ୍ଡିବ ପାଶ ।

×　　×　　×

ତାଙ୍କ ପାଇଁ ମୁହିଁ କଳ୍କୀ ରୂପ ହେବ ଦେହିତ ଆମ୍ଭର ବର୍ଣ୍ଣି
ତରକେ ଖେଳିବ ଗିରିପୁରର ଥିବ ବୈଷ୍ଣବ ଭେକ ଧରଣି ।

×　　×　　×

ଲୀଳା ଲଗିବ ଯେ ଗର ବିବସରର ଉଦ୍ଦ ବଟଠାରେ ମୋର
ନିରକ୍ଷ ଜନଙ୍କୁ ନଷ୍ଟଯୁ ଉଖିବୁ ସତ୍ୟ ସତ୍ୟ ତିନିବାର ।"

ଭକ୍ତକବି ଖ୍ରୀମ ଭୋଇ ମଧ୍ୟ 'ପଦ୍ମକଳ୍ପ'ରେ ଅମରାବତୀ କଟକ ସମ୍ପର୍କରେ ଲେଖିଛନ୍ତି—"ଅମରାବତୀ କଟକେ ଦେବଗଣ ଗୁପତେ ଖେଳ କରନ୍ତି ।" ଏହି ଅମରାବତୀ ହିଁ ଖଣ୍ଡଗିରି ଗୁମ୍ଫା । ଏହିଠାରେ ଅନାଦି ବ୍ରହ୍ମ ବୈଷ୍ଣବ ରୂପ ଧାରଣ କରି ଛନ୍ଦରେ ଖେଳ କରିବେ । ତାଙ୍କୁ ଅବଲମ୍ବନ କରି 'ଉଦୟ ବଟ ପାରୁଶରେ ସବୁ ଭକ୍ତ ହୋଇବେଟି ମେଳ ।' ଖ୍ରୀମ ଭୋଇ ବାରମ୍ବାର ଦର୍ଶାଇ ଦେଇଛନ୍ତି ଯେ କଳ୍କୀ ଭଗବାନଙ୍କର ସୈନ୍ୟ ସାମନ୍ତ ଏହି ଉଦେବଟ ଠାରୁ ସଂହାର ନିମନ୍ତେ ବାହାରି ହେବେ । ଅମରାବତୀର ସାମରିକ ଓ ରାଜନୀତିକ ଖ୍ୟାତି ସୂର୍ଯ୍ୟବଂଶ ଶାସନ ବେଳକୁ କମିଯାଇ ସେଠାରେ ଆଧ୍ୟାତ୍ମିକ ସାଧନାର ପୀଠ ହୋଇଛି ପ୍ରତିଷ୍ଠିତ । ସେହି ପୀଠକୁ ସାରଳା ଦାସ ପ୍ରଥମେ ତାଙ୍କର ମହାଭାରତରେ ସୂଚାଇ ଦେଲେ—"ପାଣ୍ଡବମାନେ ରହିଲେ ଯେ ଅମରାବତୀ ।" ଯେତେବେଳେ ପାଣ୍ଡବ ପାଞ୍ଚଭାଇ ଓ ଦ୍ରୌପଦୀ ସ୍ୱର୍ଗାରୋହଣ ପଥରେ ବାହାରି ଆସିଥିଲେ ସେତେବେଳେ ସେମାନେ ଏହି ଅମରାବତୀ କଟକରେ ଅବସ୍ଥାନ କରିଥିଲେ ଓ ଏହିଠାରୁ ଯାଇ ଯୁଧିଷ୍ଠିର ସୁହାଣୀ କନ୍ୟାକୁ ବିବାହ କରିଥିଲେ । ଷୋଡ଼ଶ ଶତାବ୍ଦୀରେ ଅମରାବତୀ କଟକର ଆଧ୍ୟାତ୍ମିକ ମହିମା ଆହୁରି ଦୀପ୍ତିମାନ ହୋଇଉଠିଛି । ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ, ଶିଶୁଅନନ୍ତ ଦାସ ପ୍ରମୁଖ ଅମରାବତୀ ଓ ଛତିଆବଟ ସମ୍ପର୍କରେ ପର୍ଯ୍ୟାପ୍ତ ଉଲ୍ଲେଖ କରି ଯାଇଅଛନ୍ତି ।

ଜଗନ୍ନାଥ ଦାସ 'ଭକ୍ତି ଚନ୍ଦ୍ରିକା'ରେ ସୂଚାଇ ଦେଲେ ଯେ ଅମରାବତୀରେ ହିଁ ଭଗବାନଙ୍କ ମହିମା ପ୍ରକାଶ ହେବ । ଅଚ୍ୟୁତାନନ୍ଦ ଭବିଷ୍ୟରେ ଉଲ୍ଲେଖ କଲେ 'ବାଲ୍ମୀକି କଳ୍ପ'ରେ ଯାହା ଅମରାବତୀ ତାହାହିଁ ଛତିଆ ଏବଂ ସେହିଠାରେ ମହିମା ବିକଶିତ ହେବ । ତାଙ୍କର ଅନ୍ୟାନ୍ୟ ବିଭିନ୍ନ ଗ୍ରନ୍ଥରେ ମଧ୍ୟ ଅମରାଧିବଟ, ଅମରପୁର, ଅମର କଟକ, ଅମରାବତୀ କଟକ ବିଷୟରେ ଉଲ୍ଲେଖ ଅଛି । ଯଶୋବନ୍ତ ଅମରାବତୀକୁ ଗୁପ୍ତ ଦ୍ୱାରକା କହି ସେହିଠାରେ କାଉରୀର କୂଳରେ ଅନନ୍ତ ଗୋପାଳଙ୍କର ଆବିର୍ଭାବ ହେବ ବୋଲି ସୂଚାଇ ଦେଇଛନ୍ତି । ଶିଶୁଅନନ୍ତ କହନ୍ତି ଯେ ଏହି ଅମରାବତୀ ଠାରେ

ଠାକୁ ଶୂନ୍ୟ ପ୍ରଭୁଙ୍କର ଲୀଳା ଖ୍ୟାତହେବ । ଭକ୍ତକବି ଦୀନକୃଷ୍ଣ ଦାସ ମଧ୍ୟ ଅମରାବତୀ କଟକ ବିଷୟରେ ସୂଚାଇ ଦେଇଛନ୍ତି । ମହାପୁରୁଷ ହାଡ଼ି ଦାସଙ୍କ ବିଭିନ୍ନ ଗ୍ରନ୍ଥରେ ଅମରାବତୀ ଓ ଛତିଆ ବିଷୟରେ ବର୍ଣ୍ଣନା କରାଯାଇଅଛି । ସେ କହନ୍ତି ଯେ ଅମରାବତୀ କଟକରେ ଦୁନିଆର ସବୁ ନାଟକ ଅଭିନୀତ ହେବ। ସେହି ସ୍ଥାନ ହିଁ ନିଗମ ଭୂଇଁ ।

ଓଡ଼ିଆ ସନ୍ଥୀୟ କାବ୍ୟ-ଧାରାରେ ଅମରାବତୀ କଟକର ନାନା ବର୍ଣ୍ଣନା ଦେଖିବାକୁ ମିଳେ । କେଶରୀ ବଂଶ ବା ସୋମବଂଶ ସମୟରେ ଏହା ଥିଲା ଏକ ସ୍ଥାନ ବିଶେଷ । ରାଜାଙ୍କ ଗଡ଼ ଓ ସାମରିକ ଦୁର୍ଗ ଭାବରେ ମଧ୍ୟ ଏହାର ଖ୍ୟାତି ଥିଲା । କ୍ରମେ ଏହା ସୀମିତ ଅର୍ଥରୁ ଗତି କଲା ଏକ ତାତ୍ତ୍ୱିକ ଅର୍ଥକୁ । ଏହାର ଅର୍ଥ ହୋଇଗଲା ଦେବତାଙ୍କ ଆବାସ ଭୂମି ଓ ଗୁପ୍ତ ଲୀଳାକ୍ଷେତ୍ର । ଏହି କାରଣରୁ ଏହାକୁ କୁହାଗଲା ଅମରାବତୀ ବା ଅମରାପୁର । ଛତିଆବଟ ମଧ୍ୟ ଅମରାବତୀ କଟକ ଭାବାତ୍ମକ ଦୃଷ୍ଟିରୁ ସଂପୃକ୍ତ ହୋଇଗଲା ଓ ଉଭୟ ହୋଇଗଲେ ଏକ ଏବଂ ଅଭିନ୍ନ । ଏହିଠାରେ କଳ୍କୀ ଅବତାର ହେବ ଓ ତେର ଜନ୍ମ ଧରି ଭଗବାନ ନର ରୂପ ଧାରଣ କରି ଗୁପ୍ତରେ ଲୀଳା କରିବେ ବୋଲି ସନ୍ଥକବିମାନେ କହିଥିଲେ । ଏଠାକୁ ମଧ୍ୟ ଆସିବେ ପୁରୁଷୋତ୍ତମ କଟକରୁ ଶ୍ରୀଜଗନ୍ନାଥ । ଏହି କ୍ଷେତ୍ରରେ ମଧ୍ୟ କୁହାଗଲା ଯେ ଲୋକମାନଙ୍କ ଭିତରେ ଶାନ୍ତି ଓ ଧର୍ମଜ୍ଞାନ ରହିବ ନାହିଁ । ବ୍ୟଭିଚାର ବଢ଼ିଯିବ ସମାଜରେ । ନାନା ପ୍ରକାର ଅନୀତି ଓ ଅନ୍ୟାୟ ଦେଖା ଦେବ । ପାପ ବୃଦ୍ଧି ପାଇବ । ଗୋଚର, ଦାଣ୍ଡ ଓ ଶ୍ମଶାନ ରହିବ ନାହିଁ । ହତ୍ୟା ଓ ଯୁଦ୍ଧର ବିଭୀଷିକା ସୃଷ୍ଟି ହେବ । ଯୌନ ଅବକ୍ଷୟ ବୃଦ୍ଧି ଲାଭ କରିବ । ଭୋଗବାଦ ଚରମ ସ୍ଥାନକୁ ସ୍ପର୍ଶ କରିବ । ପାପ ଓ ଅଧର୍ମର ବିନାଶ ପାଇଁ କଳ୍କୀ ଅବତାର ହେବ । ଓଡ଼ିଆ ସନ୍ଥ—ସାହିତ୍ୟରେ ତେଣୁ ଅମରାବତୀ କଟକ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇ ଅଛି । ଅତୀତର ରାଜ ନଗର ଓ ରାଜଗଡ଼ ପାଇଁ ନୁହେଁ, ସେନା ଛାଉଣୀ ପାଇଁ ନୁହେଁ, ଏକ ରହସ୍ୟବାଦୀ ଆଧ୍ୟାତ୍ମିକ ମାର୍ଗ ପାଇଁ ଏହାର ହୋଇଛି ପ୍ରସିଦ୍ଧି । ଏ କ୍ଷେତ୍ରରୁ ପ୍ରକାଶ ପାଇଛି ଏକ ନିଃଶବ୍ଦ ଆଧ୍ୟାତ୍ମିକ ଧ୍ୱନି । ଏହା ହେଉଛି ଅଦ୍ୱୈତ ବ୍ରହ୍ମବାଦର ଧ୍ୱନି । ଏହାର ପ୍ରେରଣା ହେଉଛି ସତ୍ୟ, ଶାନ୍ତି, ଦୟା ଓ କ୍ଷମାକୁ ସର୍ବାନ୍ତକରଣରେ ଗ୍ରହଣ କରିନେବା ଓ ଜାତି ବର୍ଣ୍ଣ-ଧର୍ମ ନିର୍ବିଶେଷରେ ସକଳ ମଣିଷମାନଙ୍କୁ ସମାନ ଭାବରେ ସ୍ୱୀକାର କରି ସମସ୍ତଙ୍କ ଭିତରେ ଅନନ୍ତ ବ୍ରହ୍ମଚେତନା ସୃଷ୍ଟି କରିବା । ଗୃହସ୍ଥାଶ୍ରମକୁ ପବିତ୍ର ତୀର୍ଥଭୂମି ଭାବରେ ପ୍ରାଧାନ୍ୟ ଦେଇ କର୍ମ, ଜ୍ଞାନ ଓ ଭକ୍ତିର ତ୍ରିବେଣୀ ସଂଗମରେ ସେହି ଆଶ୍ରମକୁ ଦୀପ୍ତିମନ୍ତ କରିବା ଓ ଅନ୍ତର ଭିତରେ ବିଶୁଦ୍ଧ ଅଦ୍ୱୈତ ବ୍ରହ୍ମବାଦକୁ ପ୍ରତିଷ୍ଠା ଦେବା ହେଉଛି ଏହି କ୍ଷେତ୍ରର ମଧୁମୟ ଉଦାତ୍ତବାଣୀ । ଅତଏବ ଅମରାବତୀ କଟକ/ଛତିଆବଟ ଯେ ଏକ ମହତ୍ତର ଆଧ୍ୟାତ୍ମିକ ମାର୍ଗର ସଙ୍କେତ ବହନ କରେ, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।

# ପ୍ରାଚୀନ ରାଜଧାନୀ 'ଚୌଦ୍ୱାର-କଟକ' :

**ଶ୍ରୀ ଅପୂର୍ବ ରଂଜନ ରାୟ**

ଚୌଦ୍ୱାର ପ୍ରାଚୀନ ଉତ୍କଳର ରାଜଧାନୀ । କେଶରୀ ବଂଶର ରାଜା ଜନ୍ମେଜୟ କେଶରୀ ତାଙ୍କ ରାଜତ୍ୱ କାଳରେ ଚୌଦ୍ୱାରକୁ ନିଜ ରାଜ୍ୟର ରାଜଧାନୀ ରୂପେ ମନୋନୀତ କରିଥିଲେ । ଓଡ଼ିଶା ଇତିହାସରେ ଚୌଦ୍ୱାରର ନାମ ଗୁରୁତ୍ୱପୂର୍ଣ୍ଣ ଓ ସ୍ମରଣୀୟ । ଏପରିକି ଏକଦା କଟକକୁ ଲୋକେ ଜାଣି ନଥିଲେ । ଚୌଦ୍ୱାର ସେତେବେଳେ କଟକ ରୂପେ ପରିଚିତ ହୋଇଥିଲା । ତେଣୁ କଟକ ଠାରୁ ଚୌଦ୍ୱାର ପୁରାତନ ।

ବଙ୍ଗଳାରେ ଲିଖିତ 'ବିଶ୍ୱକୋଷ'ରେ ଗୁପ୍ତବଂଶର ରାଜା ଭବଗୁପ୍ତଙ୍କର ସୂଚନା ମିଳେ । ତାଙ୍କ ଅନୁଶାସନ ପତ୍ରରେ କଟକ ସମ୍ପର୍କରେ ଉଲ୍ଲେଖ ହୋଇଥିବା ଜଣାପଡ଼େ । ତେବେ ଏଠାରେ ଅନ୍ୟ ଏକ ପ୍ରଶ୍ନ ଉଠେ ଯେ, ବର୍ତ୍ତମାନ ଯେଉଁ କଟକ ଜୀବନ୍ତ ରହିଛି, ଯା'ର ଅବସ୍ଥିତି ଦେଖିବାକୁ ମିଳୁଛି, ତାହାକୁ ଗୁପ୍ତ ବଂଶର ରାଜା ଭବଗୁପ୍ତ ରାଜତ୍ୱ କରୁଥିବା ସମୟରେ ଏହି କଟକ ସ୍ଥାପନ କରିଥିଲେ କି ? ସେ ଯାହାହେଉନା କାହିଁକି, ଏହା ପୂର୍ବରୁ ଚୌଦ୍ୱାର କଟକ ପରିଚିତ ହୋଇ ସାରିଥିଲା । ଜନସାଧାରଣ କଟକ ବୋଇଲେ ଚୌଦ୍ୱାରକୁ ବୁଝୁଥିଲେ । କେଶରୀ ବଂଶର ରାଜା ନୃପକେଶରୀ ନିଜ ରାଜତ୍ୱ ସମୟରେ କଟକ ସ୍ଥାପନ କରିଥିବାର ଇତିହାସ ମିଳୁଥିଲେ ହେଁ, ଏହା ପୂର୍ବରୁ ଯେ କଟକ ନଥିଲା ତାହା କୁହାଯାଇ ନପାରେ । ବର୍ତ୍ତମାନ ଚୌଦ୍ୱାର ପ୍ରସଙ୍ଗ ବର୍ଣ୍ଣନ କରାଯାଉ ।

ଅନେକଙ୍କ ଧାରଣା ଓଡ଼ିଶାରେ କେଶରୀ ବଂଶର ପ୍ରତିଷ୍ଠାତା ହେଉଛନ୍ତି ଯଯାତି କେଶରୀ । ସେ ଥିଲେ ଏହି ବଂଶର ପ୍ରଥମ ରାଜା । ଏହା ଠିକ୍ ନୁହେଁ । ରାଜା ଜନ୍ମେଜୟ ହେଉଛନ୍ତି କେଶରୀ ବଂଶର ପ୍ରତିଷ୍ଠାତା । ସେ ଗୁପ୍ତ ରାଜତ୍ୱରୁ ଉତ୍କଳକୁ ମୁକ୍ତକରି, କେଶରୀ ସାମ୍ରାଜ୍ୟ ଆରମ୍ଭ କରିଥିଲେ ।

ସେ ୪୪୨ରୁ ୪୭୪ ଶକାବ୍ଦ ବା ୫୨୦ ରୁ ୫୫୨ ଖ୍ରୀଷ୍ଟାବ୍ଦ, ଏହିଭଳି ପ୍ରାୟ ୩୨ ବର୍ଷଧରି ଶାସନ କରିଥିବା ଇତିହାସରେ ଉଲ୍ଲେଖ ରହିଛି । ତାଙ୍କ ଉଦ୍ୟମରେ

ମହାନଦୀର ଉତ୍ତର ଓ ବିରୂପା ନଦୀର ପଶ୍ଚିମରେ 'ଚୌଦ୍ୱାର' ସ୍ଥାପିତ ହୋଇଥିଲା । ଚୌଦ୍ୱାର ନଗରେ ସ୍ଥାପନ ପରେ, ରାଜା ଜନ୍ମେଜୟ କେଶରୀ ସେଠାରେ ରାଜଧାନୀ ପାଇଁ ମନସ୍ଥ କଲେ । ରାଜଧାନୀର ଭଗ୍ନାବଶେଷ ଏବଂ ସୂଚନା ସେଠାରେ ଦେଖିବାକୁ ମିଳେ । କଟକ ଜିଲ୍ଲା ଅନ୍ତର୍ଗତ ତାଳଘୋଡ଼ାର ଆଗ୍ରାହାଟ ଠାରେ ସେ ଗୋଟିଏ ଯଜ୍ଞ କରିଥିଲେ । ସେହି ଯଜ୍ଞ ପୀଠର ପରିଚୟ ବର୍ତ୍ତମାନ ସୁଦ୍ଧା ବିଲୋପ ହୋଇନାହିଁ । ଜନ୍ମେଜୟଙ୍କ ପରେ ତାଙ୍କ ପୁତ୍ର ଯଯାତି କେଶରୀ ଖ୍ରୀଷ୍ଟ ୫୫୨ରୁ ଖ୍ରୀଷ୍ଟାବ୍ଦ ୫୯୮ ପର୍ଯ୍ୟନ୍ତ ରାଜତ୍ୱ କଲେ । ତାଙ୍କ ରାଜତ୍ୱ କାଳରେ ସେ ଚୌଦ୍ୱାରରୁ ରାଜଧାନୀ ଯାଜପୁରକୁ ଉଠାଇ ଆଣିଲେ । ସେ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ତେଣୁ ପବିତ୍ର ବୈତରଣୀ କୂଳ ତାଙ୍କ ପାଇଁ ଅନୁକୂଳ ହୋଇ ପାରିଥିଲା ।

ନୃପକେଶରୀ ବଡ଼ାନାସୀରେ ଦୁର୍ଗ ନିର୍ମାଣ କରିବା ପୂର୍ବରୁ ଚୌଦ୍ୱାର ଠାରେ ଦୁର୍ଗ ନିର୍ମାଣ କରିସାରିଥିଲେ । ତେବେ ଏହା ନିଶ୍ଚିତ ଯେ, କଟକ ଯେତେବେଳେ ପରିଚିତ ହୋଇ ଉଠିଥିଲା । ଚୌଦ୍ୱାର ରାଜଧାନୀ ହୋଇ ସୁଦ୍ଧା ତାହା ଖ୍ୟାତି ଅର୍ଜନ କରିପାରି ନଥିଲା । ଏପରିକି କଟକରେ ଦୁର୍ଗ ନିର୍ମାଣ ପୂର୍ବରୁ ଚୌଦ୍ୱାର ଦୁର୍ଗ ନିର୍ମିତ ହୋଇଥିଲା ବୋଲି ଅନେକ ଗବେଷକଙ୍କ ମତ ।

'ଚୌଦ୍ୱାର-କଟକ'ର କୀର୍ତ୍ତି କଳାପର ଆଲୋଚନା ପାଇଁ କେବଳ ଚୌଦ୍ୱାର ଗ୍ରାମକୁ ଦୃଷ୍ଟିରେ ରଖିଲେ, ଏହାର ଐତିହ୍ୟ ପ୍ରତି ଅବହେଳା କରାଯିବ । ସେଥିପାଇଁ ସଂପୃକ୍ତ ଅଞ୍ଚଳକୁ ସଂପୂର୍ଣ୍ଣ ଭାବରେ ବିଚାର କରାଯିବା ଉଚିତ । ବିଶେଷତଃ ମୁଣ୍ଡମାଳ, କପାଳେଶ୍ୱର, କେଦାରେଶ୍ୱର, ଗୋବିନ୍ଦପାଟଣା, ମଙ୍ଗୁଳି, ଉଗ୍ରଣ୍ଡି, ଅଙ୍ଗାରଜୋର, ବଣିପଦା, ଆଗ୍ରାହାଟ, ଯାଜଭୈରବ ଓ ଚୌଦ୍ୱାର ଆଦି ଗ୍ରାମକୁ ବିଶ୍ଳେଷଣ କରାଯିବା ଆବଶ୍ୟକ ।

ଏହା ଓଡ଼ିଶାର ପ୍ରାଚୀନ ରାଜଧାନୀ ତଥା ଓଡ଼ିଶା ରାଜ୍ୟର ପୁରାତନ ନଗରୀ କଟକ ଠାରୁ ପ୍ରାୟ ୭ କିଲୋମିଟର ଦୂରରେ ଅବସ୍ଥିତ । କଟକର ବିପରୀତ ଦିଗରୁ ଓଡ଼ିଶାର ବଡ଼ନଦୀ ମହାନଦୀ ସ୍ରୋତରୁ ବିରୂପା ପ୍ରବାହିତ । ସେଠାରୁ ଉତ୍ତର ଦିଗକୁ ପ୍ରାୟ ୩ କିଲୋମିଟର ଦୂରରେ ବିରୂପାର ପଥରବନ୍ଧ ରହିଛି । ସେହି ପଥରବନ୍ଧ ଉତ୍ତର ଆଡ଼କୁ ଚୌଦ୍ୱାର ଆରମ୍ଭ ହୋଇଛି । କେବଳ ଦୂରତା ଦୃଷ୍ଟିରୁ ନୁହେଁ, ବିଭିନ୍ନ ଦୃଷ୍ଟିକୋଣରୁ କଟକ ଓ ଚୌଦ୍ୱାର ଭିତରେ ସୁସଂପର୍କ ରହିଆସିଛି ।

ଚୌଦ୍ୱାରର ଅବସ୍ଥିତିକୁ ଇତିହାସ ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ, ଏହାର ପୂର୍ବକୁ ଏକ ନାଳ ପରି ଜଳସ୍ରୋତ ପ୍ରବାହିତ, ଏହା ଗନ୍ଧନଦୀ ନାମରେ ପରିଚିତ । ଏଠାରେ ସ୍ଥାପିତ ପ୍ରାଚୀନ ଦୁର୍ଗର ପୂର୍ବ ଆଡ଼କୁ ୪ଟି ବଡ଼ ପୋଖରୀ ଖୋଳା ହୋଇଛି । ଏହି ୪ଟି ପୋଖରୀ ନାମ ହେଉଛି 'ଲୋକେଇ ଘାଘି', ଉଗ୍ରଣ୍ଡି, ଘାଘି ଓ ପଡ଼ିଆରୀ ।

ବର୍ତ୍ତମାନ ସେଠାରେ ନିର୍ମିତ ଦୁର୍ଗ ନାହିଁ । ତେବେ ତା'ର ଭଗ୍ନାବଶେଷରୁ ଦୁର୍ଗ ନିର୍ମାତାଙ୍କ ଦୂରଦୃଷ୍ଟିର ପରିଚୟ ମିଳିପାରୁଛି । ସାଧାରଣତଃ ଦୁର୍ଗକୁ ଗୋଟିଏ ଉଚ୍ଚ ସ୍ଥାନ ଉପରେ ନିର୍ମାଣ କରାଯିବା ଉଚିତ । ନିମ୍ନଭୂମି, ଦୁର୍ଗ ନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନ ନୁହେଁ । ବର୍ତ୍ତମାନର ଭଗ୍ନାବଶେଷ ଯେଉଁ ଉଚ୍ଚଭୂମି ଉପରେ ଦଣ୍ଡାୟମାନ, ସେହି ଉପଯୁକ୍ତ ସ୍ଥାନକୁ ଦୁର୍ଗ ନିର୍ମାଣ ପାଇଁ ମନୋନୀତ କରାଯାଇଥିବା ସୂଚିତ ହୁଏ । ଦୁର୍ଗ ଭିତରେ ରାଜାଙ୍କର ଉଆସ ନିର୍ମିତ ହୁଏ । ରାଜଉଆସରେ ରାଜା ରହନ୍ତି ।

ତାଙ୍କ ପରିବାରର ନିରାପତ୍ତା ପାଇଁ ସେନାବାହିନୀ ପ୍ରହରୀ ରହିଅନ୍ତି । ସବୁ ସମୟରେ ସେନାବାହିନୀ ଅସ୍ତ୍ରଶସ୍ତ୍ର ସଜ୍ଜିତ କରି ଦୁର୍ଗକୁ ଜଗି ରହନ୍ତି । ଦୁର୍ଗ ଭିତରେ ରାଜାଙ୍କର କେବଳ ନିରାପତ୍ତା ପାଇଁ ବିଭିନ୍ନ ପ୍ରକାରର ଅସ୍ତ୍ର ଶସ୍ତ୍ର ସଜା ହୋଇ ରହେନାହିଁ । ସେଠାରେ ରାଜାଙ୍କର ବିପୁଳ ଧନ ସମ୍ପତ୍ତି ମଧ୍ୟ ଲୁକ୍କାୟିତ ଅବସ୍ଥାରେ ରଖାଯାଇଥାଏ । ନିମ୍ନ ସ୍ଥାନରେ ଦୁର୍ଗ ନିର୍ମିତ ହେଲେ, ଦୁର୍ଗ ଭିତରକୁ ଜଳ ପ୍ରବେଶର ଆଶଙ୍କା କେବଳ ନଥାଏ, ସହଜରେ ଶତ୍ରୁପକ୍ଷ ଆକ୍ରମଣ କରିପାରନ୍ତି । ସେଥିପାଇଁ ଉଚ୍ଚ ସ୍ଥାନକୁ ଦୁର୍ଗ ଲାଗି ନିରାପଦ ସ୍ଥାନ ବିଚାର କରାଯାଇଥାଏ ।

ବର୍ତ୍ତମାନର ଆଧୁନିକ ସଭ୍ୟତାମଣ୍ଡିତ ଚୌଦ୍ୱାର ଓଡ଼ିଶାବାସୀଙ୍କର ଦୃଷ୍ଟି ଆକର୍ଷଣ କରିଛି । ଏଠାରେ ଥିବା ଓଡ଼ିଶା ଟେକ୍‌ସଟାଇଲ୍ ମିଲ୍‌ସ (ଓ.ଟି.ଏମ୍.) ସମଗ୍ର ଭାରତବର୍ଷରେ ପରିଚିତ । ପ୍ରାଚୀନ କାଳରେ ଚୌଦ୍ୱାରରେ ଏକ ସମୃଦ୍ଧଶାଳୀ ସହର ଗଢ଼ି ଉଠିଥିଲା ଏବଂ ସ୍ଥାନୀୟ ଜନସାଧାରଣ ସୁଖ ସୁବିଧା ଉପଭୋଗ କରିପାରୁଥିଲେ । ଏଠାରେ ସ୍ଥାପିତ ଦୁର୍ଗ କେତେ ଜମି ମାଡ଼ିଥିଲା ତାହା କହି ନହେଲେ ସୁଦ୍ଧା ଏହା ଯେ ପ୍ରାୟ ଦୁଇ କିଲୋମିଟର ବିଶିଷ୍ଟ ସ୍ଥାନ ଉପରେ ନିର୍ମିତ ହୋଇଥିଲା, ଏପରି ଅନୁମାନ ଅମୂଳକ ନୁହେଁ ।

ଦୁର୍ଗ ମଝିରେ ଆଠଟି ମାଙ୍କଡ଼ା ପଥର ବିଶିଷ୍ଟ ଗୋଟିଏ ଖମ୍ବ ନିର୍ମିତ ହୋଇଥିଲା । ଏହି ଖମ୍ବଟି ସ୍ତୂପାକାର ସ୍ଥାନରେ ପ୍ରସ୍ତୁତ କରାଯାଇଥିଲା । ପ୍ରାଚୀର ବାହାରେ, ପରିଖା ରହିଥିବା ଜଣାପଡ଼ୁଛି । ଅନଙ୍ଗଭୀମ ଦେବ ତାଙ୍କ ରାଜତ୍ୱର ପ୍ରଥମାବସ୍ଥାରେ ଏହି ଦୁର୍ଗରେ ରହିଥିବା କୁହାଯାଏ । ଏ ସମ୍ପର୍କରେ ଇତିହାସ କହେ—"ଉତ୍ତର ଦିଗରୁ କ୍ରମେ ଆଫଗାନ ଆକ୍ରମଣର ଆଶଙ୍କା ଦେଖି ଗୋଟିଏ ସୁରକ୍ଷିତ ସ୍ଥାନରେ ସୁଦୃଢ଼ ଦୁର୍ଗ ନିର୍ମାଣର ଆବଶ୍ୟକତା ରାଜା ଅନଙ୍ଗଭୀମ ଦେବ ଅନୁଭବ କଲେ । ସେ ଅତ୍ୟନ୍ତ ପରାକ୍ରମୀ ଯୋଦ୍ଧା ଥିଲେ ଏବଂ ବହୁ ଦେଶ ଜୟ କରି ସ୍ୱୀୟ ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । କଟକରେ ଦୁର୍ଗ ସ୍ଥାପିତ ହେବା ପୂର୍ବରୁ ବର୍ତ୍ତମାନ କଟକ 'ବାରବାଟୀ ଗ୍ରାମ' ନାମରେ ପରିଚିତ ଥିଲା ।

ଏହି ଦୁର୍ଗ ସ୍ଥାପନ ବିଷୟରେ ପାଞ୍ଜିରେ ଲେଖାଅଛି । ଏ ରାଜା (ଭୀମ ପରିଚ୍ଛେଦ ବା ଦ୍ୱିତୀୟ ଅନଙ୍ଗଭୀମ ଦେବ) ନଗର ଚୌଦ୍ୱାର କଟକେ ବିଜେ କରିଥାନ୍ତି ।

ମାତ୍ର ଏକ ଦିନକରେ ରାଜା ବଜ୍ରକେଶରୀ ଆସି ମହାନଦୀ ପାରହୋଇ, ଏ ନଗରର ଦକ୍ଷିଣ ଧାରରେ ଦେଖିଲେ କୋଦଣ୍ଡ ଚନ୍ଦ୍ରପାଟର ବାରବାଟୀ ଗ୍ରାମର ବଟେଶ୍ୱର ଦେବଙ୍କ ସନ୍ନିଧି ଶାମଳ ପକ୍ଷୀକ ବଗ ମାଡ଼ି ବସିଛି । ଏହା ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ପାଇଁ ଶୁଭଯୋଗ ଦିନରେ ବାରବାଟୀ ଗ୍ରାମରେ ଶୁଭ ଦେଇ ନଅର ତୋଳାଇଲେ । ଏ କଟକର ନାମ ବାରବାଟୀ କଟକ ନାମ ଦେଇ ନଗର କଟକ-ଚୌଦ୍ୱାର ଛାଡ଼ି ଆସିଲେ ଏବଂ ଏ କଟକରେ ରହିଲେ ।" ('ପ୍ରାଚୀନ ଉତ୍କଳ' ଲେଖକ—ଜଗବନ୍ଧୁ ସିଂହ)

ଚୌଦ୍ୱାର ଅଞ୍ଚଳରେ ବହୁ କାଳରୁ ଶିବ ଉପାସନା ହୋଇ ଆସୁଥିବାର ପ୍ରମାଣ ରହିଛି । ସେ ସମୟରେ ରାଜତ୍ୱ କରୁଥିବା ରାଜା ଶିବ ପୂଜକ ଥିବାରୁ, ଶିବଲିଙ୍ଗ ସ୍ଥାପନ ସହିତ, ଶିବ ମନ୍ଦିର ପ୍ରତିଷ୍ଠା ଦିଗରେ ମନପ୍ରାଣ ଢାଳି ଦେଇଥିଲେ । ଜନସାଧାରଣ ଶିବ ଉପାସନା ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ସେଥିପାଇଁ ସେ ଅଞ୍ଚଳରେ 'ଅଷ୍ଟଶମ୍ଭୁ' ମନ୍ଦିର ଅତ୍ୟନ୍ତ ଲୋକପ୍ରିୟ ହୋଇଛି । ଗଣ୍ଠେଶ୍ୱର, ବୁଢ଼ାଲିଙ୍ଗ, ମୁକ୍ତେଶ୍ୱର, ଝଣ୍ଟେଶ୍ୱର, ମଣି-ନାଗେଶ୍ୱର, ବୈଦ୍ୟେଶ୍ୱର, କପାଳେଶ୍ୱର ଓ ଉତ୍ତରେଶ୍ୱର ଶିବଲିଙ୍ଗ ଗୁଡ଼ିକ 'ଅଷ୍ଟଶମ୍ଭୁ' ମନ୍ଦିର ଭାବେ ପରିଚିତ । ଏଥି ମଧ୍ୟରୁ ମୁଣ୍ଡମାଳ ଗ୍ରାମରେ ଝଣ୍ଟେଶ୍ୱର ମନ୍ଦିର, ଆଗ୍ରାହାଟରେ ଉତ୍ତରେଶ୍ୱର ମନ୍ଦିର, ବୈଦ୍ୟେଶ୍ୱର ମନ୍ଦିର ମଣି-ନାଗେଶ୍ୱର ମନ୍ଦିର ଓ ନୂଆ ଗାଁରେ ବୁଢ଼ାଲିଙ୍ଗ ମନ୍ଦିର ପ୍ରତିଷ୍ଠିତ ହୋଇଛି ।

ଏସବୁ ଶିବ ମନ୍ଦିରରେ ମାଙ୍କଡ଼ା ପଥର ବ୍ୟବହାର କରାଯାଇଛି । ମନ୍ଦିରରେ ପୂଜିତ ହେଉଥିବା ନବଗ୍ରହ ମୂର୍ତ୍ତି ଆକର୍ଷଣୀୟ ପଥରରେ ନିର୍ମାଣ କରାଯାଇଛି । ଦ୍ୱାର ବନ୍ଧରେ ବ୍ୟବହୃତ ପଥର ମଧ୍ୟ ଅତ୍ୟନ୍ତ ସୁନ୍ଦର ଓ ମନୋମୁଗ୍ଧକର । ଏହି ମନ୍ଦିର ନିର୍ମାଣରୁ ତତ୍କାଳୀନ ରାଜାଙ୍କର ରୁଚିବୋଧର ପରିଚୟ ମିଳେ । ମନ୍ଦିରରେ ଶିଳା ଖଣ୍ଡି ଏ ସ୍ଥାପନ କରିବାରେ କେତେ ଆନ୍ତରିକତା ଓ ଶ୍ରଦ୍ଧା ତାହା ସୂଚିତ ହୁଏ ।

ଶିବ ଆରାଧନାକୁ ଆଖିରେ ରଖି ଶିବ ମନ୍ଦିର ଗଢ଼ି ଉଠିଥିଲେ ସୁଦ୍ଧା, ସେସବୁରେ ଅନ୍ୟ ମୂର୍ତ୍ତି ମଧ୍ୟ ରହିଛନ୍ତି । ଅନ୍ୟ ଦେବତାମାନେ ପାର୍ଶ୍ୱଦେବତା ଭାବରେ ଶୋଭା ପାଆନ୍ତି । ବହୁ କ୍ଷେତ୍ରରେ ଶିବ ତତ୍ତ୍ୱକୁ ପ୍ରସାରିତ କରିବା ଲକ୍ଷ୍ୟ ନେଇ ବିଭିନ୍ନ ପାର୍ଶ୍ୱଦେବତାଙ୍କୁ ସ୍ଥାପନ କରାଯାଇଥିବା ଅନୁଭବ କରାଯାଏ । ସବୁ ମନ୍ଦିର ଅକ୍ଷତ ଅବସ୍ଥାରେ ନାହିଁ । ବହୁ ବର୍ଷ ତଳେ ନିର୍ମିତ ମନ୍ଦିରଗୁଡ଼ିକ ଭଲ ଅବସ୍ଥାରେ ରହିବ ବୋଲି କେହି ଆଶା କରିବା ମଧ୍ୟ ବୃଥା । ତେବେ ବର୍ତ୍ତମାନ ଯେଉଁଭଳି ଅବସ୍ଥାରେ ରହିଛି, ତାହା ଗବେଷଣା ପାଇଁ ଯଥେଷ୍ଟ ଉପାଦାନ ଯୋଗାଉଛି । ପ୍ରତ୍ନତାତ୍ତ୍ୱିକମାନେ ଭଗ୍ନାବଶେଷକୁ କେନ୍ଦ୍ର କରି, ଅନେକ ନୂଆ ତଥ୍ୟ ପରିବେଷଣ କରିପାରିବେ ।

ଗଣ୍ଠେଶ୍ୱର ମନ୍ଦିରରେ ପାର୍ଶ୍ୱଦେବତା ରୂପେ କାର୍ତ୍ତିକ ରହିଛନ୍ତି । ଉତ୍ତରକୁ ବୌଦ୍ଧ ମାରିଚ ମୂର୍ତ୍ତି ରଖାଯାଇଛି । କେବଳ ବୌଦ୍ଧ ମୂର୍ତ୍ତି ନୁହେଁ, ମନ୍ଦିରକୁ ଲାଗି ଜୈନ

ମୂର୍ତ୍ତି ମଧ୍ୟ ରହିଛି । ବୌଦ୍ଧ ମାଟ୍ରିକ ମୂର୍ତ୍ତି ସହିତ, ଜୈନ ମହାବୀର ସ୍ଥାନ ଅତ୍ୟନ୍ତ ରହସ୍ୟମୟ । ଜୈନ ଓ ବୌଦ୍ଧ ଧର୍ମ ଭିତରେ ହୃଦ୍ୟତ ସମନ୍ୱୟ ଆଣିବା ପାଇଁ ଦୁଇ ଧର୍ମକୁ ପ୍ରାଧାନ୍ୟ ଦିଆଯାଇ ପାରିଥାଏ । ପୁଣି ଏହା ସହିତ ଦୁଇଟି ବୁଦ୍ଧ ମୁହଁଣ୍ଡାକୁ କାହିଁକି ରଖାଯାଇଥିଲା ? ମନ୍ଦିର ଭିତରେ ରଖାଯାଇଥିବା ଦୁଇଟି ଯାକ ପିତଳ ବୁଦ୍ଧ ମୁହଁଣ୍ଡାରେ ଯାହା କିଛି ଲିଖିତ ହୋଇ ପାରିଥାଆନ୍ତା ।

ମାତ୍ର ଦୁଇଟି ସ୍ଥଳରେ ଗୋଟିକରେ ଲିଖିତ ହେଲା କାହିଁକି ? ବୁଦ୍ଧ ମୁହଁଣ୍ଡା କାରୁକାର୍ଯ୍ୟ ଖଚିତ ହୋଇଥିଲା । ଓଡ଼ିଆ ଶିଳ୍ପୀର ଶିଳ୍ପ ଚାତୁରୀ ସେହି ମୁହଁଣ୍ଡାରେ ଚର୍ଚ୍ଚିତ ହୋଇଛି । ଓଡ଼ିଶାର ଭାସ୍କର୍ଯ୍ୟ କେତେ ଉଚ୍ଚକୋଟୀର, ତାହା ଏଥିରୁ ଅନୁମାନ କରାଯାଇଥାଏ । ବଡ଼ ଦୁଃଖର ବିଷୟ ଲିଖିତ ମୁହଁଣ୍ଡା କଲିକତା ଯାଦୁଘରକୁ ଚାଲି ଯାଇଛି । ଲିଖିତ ହୋଇନଥିବା ମୁହଁଣ୍ଡା—ମନ୍ଦିରରେ ରହିଯାଇଛି । ଉଭୟ ମୁହଁଣ୍ଡାରେ ଭାସ୍କର୍ଯ୍ୟ ଫୁଟି ଉଠିଛି ।

ଏପରି ମୁହଁଣ୍ଡାକୁ କାହିଁକି ଶିବ ମନ୍ଦିରରେ ରଖାଯାଇଥିଲା ତାହା ଏବେ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ଆଲୋଚନାର ବିଷୟ ହୋଇଛି । ମହାଦେବଙ୍କ ଅନ୍ୟତମ ପୁତ୍ର ଭାବେ କାର୍ତ୍ତିକଙ୍କୁ ସ୍ଥାନ ଦିଆ ଯାଇଛି ।

କପାଳେଶ୍ୱର ମନ୍ଦିର ଭିତରେ କାର୍ତ୍ତିକ ଓ ପାର୍ବତୀ ଉଭୟଙ୍କୁ ସ୍ଥାନ ଦିଆ-ଯାଇଛି । ଗଣେଶ ମୂର୍ତ୍ତି ମଧ୍ୟ ଏଠାରେ ରଖାଯାଇଥିବା ଗବେଷକମାନେ ମତ ଦିଅନ୍ତି । ମାତ୍ର ଏ ମୂର୍ତ୍ତିଟି ମନ୍ଦିର ଭିତରୁ ଅନ୍ୟତ୍ର ଚାଲି ଯାଇଥିବାର ସନ୍ଦେହ କରାଯାଉଛି । ତେବେ କାହାଦ୍ୱାରା ମାତା ପାର୍ବତୀଙ୍କ ସହିତ ଜଣେ ପୁତ୍ର କାର୍ତ୍ତିକଙ୍କୁ ଅବସ୍ଥାପିତ କରାଯାଇ, ଅନ୍ୟ ଜଣେ ପୁତ୍ର ଗଣେଶଙ୍କୁ ସେଠାରୁ ନେଇ ଆଗଲା, ତାହା ଅତି ରହସ୍ୟଜନକ ଘଟଣା । ଏହି ମନ୍ଦିର ଅକ୍ଷତ ଅବସ୍ଥାରେ ରହିପାରି ନାହିଁ । ଏହାର ଉପର ଭାଗ ଭାଙ୍ଗି ପଡ଼ିଛି । ପଞ୍ଚରଥ ବିଶିଷ୍ଟ ଏହି ମନ୍ଦିର ଆକର୍ଷଣୀୟ ଦେଖାଯାଏ ।

ସାଧାରଣ ମନ୍ଦିର ସମ୍ମୁଖରେ ଯେପରି ନାଟଶାଳାଟିଏ ରହିଥାଏ, ଏହି ମନ୍ଦିର ସମ୍ମୁଖ ଭାଗରେ ମଧ୍ୟ ନାଟଶାଳା ରହିଥିବାର ସୂଚନା ମିଳେ । ନାଟଶାଳାର ଏକାଧିକ ଦ୍ୱାର ରହିଛି । ସମ୍ଭବତଃ ତିନୋଟି ଦ୍ୱାର ଥିବା ଜଣାପଡ଼େ । ନାଟମନ୍ଦିରରେ ଏକାଧିକ ଦ୍ୱାର ରଖାଯିବା ଉଦ୍ଦେଶ୍ୟ ହେଉଛି, ଭକ୍ତମାନଙ୍କୁ ଗହଳିରୁ ରକ୍ଷା କରିବା । ମହାଦେବଙ୍କ ବିଶେଷ ପୂଜା ଉତ୍ସବରେ ଭକ୍ତମାନେ ଯେପରି ଅନ୍ତତଃ ନାଟମନ୍ଦିରରେ ପହଞ୍ଚି ପ୍ରଭୁଙ୍କୁ ଦର୍ଶନ କରିପାରିବେ, ସେହି ଲକ୍ଷ୍ୟ ନେଇ ଏପରି ବହୁ ପ୍ରବେଶ ଦ୍ୱାରର ବ୍ୟବସ୍ଥା କରାଯାଇଥିବାର ଅନୁମାନ କରାଯାଏ । ଅବଶ୍ୟ ଏକାଧିକ ଦ୍ୱାର ବ୍ୟବସ୍ଥା ବିଶେଷ ବଡ଼ ଘଟଣା ନୁହେଁ । ପୂର୍ବ କାଳରେ ଗାଁ ଗହଳରେ ନିର୍ମିତ ହୋଇଥିବା ମନ୍ଦିର-ମାନଙ୍କରେ ଭକ୍ତମାନଙ୍କ ସୁବିଧା ପାଇଁ ଏପରି ବ୍ୟବସ୍ଥା ରହିଥିବା ଦେଖାଯାଏ ।

ନୂଆ ଗାଁରେ ନିର୍ମିତ ବୃଦ୍ଧାଲିଙ୍ଗ ମନ୍ଦିର ଅନ୍ୟ ଏକ ଶିବ ମନ୍ଦିର । ଏହା ଭାଙ୍ଗି ଗଲାଣି । ମନ୍ଦିର ଭିତରେ ସ୍ଥାପିତ ହୋଇଥିବା ପାର୍ଶ୍ୱଦେବତାମାନଙ୍କ ପରିଚୟ ମିଳୁ ନାହିଁ । କାରଣ ମନ୍ଦିରର ବହୁ ଅଂଶ ମାଟିତଳେ ପୋତି ହୋଇ ପଡ଼ିଥିବାରୁ ଏହା ଜାଣିବା ସହଜ ହେଉ ନାହିଁ । ପ୍ରବେଶ ଦ୍ୱାରରେ ପ୍ରାଚୀନ ଲିପିରେ କିଛି ଲେଖା ହୋଇଥିବା ସୂଚିତ ହୁଏ । ସମ୍ଭବତଃ ତାହା ଏକାଦଶ କିମ୍ବା ଦ୍ୱାଦଶ ଶତାବ୍ଦୀର ଲିପି ବୋଲି ପ୍ରତ୍ନତତ୍ତ୍ୱବିତ୍‌ଙ୍କ ମତ । ମନ୍ଦିରର ଉତ୍ତର ଆଡ଼କୁ ଦେବୀ ଦୁର୍ଗାଙ୍କୁ ରଖାଯାଇଛି । ଅବଶ୍ୟ ଏହି ମୂର୍ତ୍ତିବିଶେଷ ବୃଷ୍ଟି ପିଥାରୂଢ଼ ହେଉନାହାନ୍ତି । ତେବେ ଏହା ଯେ ଦୁର୍ଗା ମୂର୍ତ୍ତି, ଏଥିରେ ସନ୍ଦେହ ନାହିଁ । ଶିବଲିଙ୍ଗ ପୂଜିତ ହେଉଥିବା ମନ୍ଦିରରେ ଦୁର୍ଗାଙ୍କୁ ଆଣି ରଖାଯିବା ତାତ୍ପର୍ଯ୍ୟପୂର୍ଣ୍ଣ ।

ଅନ୍ୟ ଏକ ଶିବ ମନ୍ଦିର ଉତ୍ତରେଶ୍ୱର ମନ୍ଦିରର ଅଗ୍ରଭାଗ ନଷ୍ଟ ହୋଇ ଗଲାଣି । ଉତ୍ତର ଭାଗରେ ପାର୍ଶ୍ୱଦେବତା ରୂପେ ପାର୍ବତୀଙ୍କୁ ପ୍ରତିଷ୍ଠା କରାଯାଇଛି । ଏଠାରେ ସ୍ଥାପିତ ପାର୍ବତୀ ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ସ୍ଥାପିତ ପାର୍ବତୀ ମୂର୍ତ୍ତି ଭିତରେ ପାର୍ଥକ୍ୟ ଦେଖାଯାଏ । ଲିଙ୍ଗରାଜ ମନ୍ଦିରରେ ଥିବା ପାର୍ବତୀ ତ୍ରିଭଙ୍ଗ ରୂପରେ ଗଠିତ ହୋଇଥିବା ବେଳେ, ଏହା ସାଧାରଣ ମୂର୍ତ୍ତି ପରି ସ୍ଥାପନ କରାଯାଇଛି । ମନ୍ଦିରରେ ଉମା ମହେଶ୍ୱର ମୂର୍ତ୍ତି ଥିବା ଗବେଷକଙ୍କ ମତ । ଆଗ୍ରାହାଟ ଠାରେ ପ୍ରତିଷ୍ଠିତ ଏହି ଉତ୍ତରେଶ୍ୱର ମନ୍ଦିରରେ ରାଜା ଜନ୍ମେଜୟ ଗୋଟିଏ ଯଜ୍ଞ କରିଥିଲେ । ଏହାକୁ 'ସର୍ପଯଜ୍ଞ' କୁହାଯାଇଥାଏ ।

ଏହି ଯଜ୍ଞ ସମ୍ପର୍କରେ ନାନା ଜନଶ୍ରୁତି ରହିଥିବା ଶୁଣାଯାଏ । କଟକ ଜିଲ୍ଲାର ଡାଳିଯୋଡ଼ାର ଆଗ୍ରାହାଟ ଠାରେ ଜନ୍ମେଜୟ ସର୍ପଯଜ୍ଞ କରିବା ପାଇଁ ଏହି ମନ୍ଦିର ପ୍ରତିଷ୍ଠା କରିଥିଲେ କି ? 'ଅଷ୍ଟଶମ୍ଭୁ' ମନ୍ଦିର ମଧ୍ୟରୁ ଅନ୍ୟ ଶିବ ମନ୍ଦିର ସମ୍ପର୍କରେ ବିଶେଷ କିଛି କୁହାଯିବା ସମ୍ଭବପର ନୁହେଁ । ସେସବୁ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲାଣି । ତେବେ ସବୁ ମନ୍ଦିରରେ ମୁଖଶାଳା ରହିଥିବା ଅନୁମାନ କରାଯାଏ । ବର୍ତ୍ତମାନ ସବୁଠୁ ବଡ଼ ପ୍ରସଙ୍ଗ ହେଉଛି ମନ୍ଦିରରେ ଶିବ, ଜୈନ ଓ ବୌଦ୍ଧ ସବୁ ପ୍ରକାରର ଦେବତାଙ୍କୁ ସ୍ଥାନ ଦିଆଗଲା କାହିଁକି ? ଜନ୍ମେଜୟ କେଶରୀ ହେଉଛନ୍ତି ବାସ୍ତବରେ କେଶରୀ ବଂଶର ପ୍ରତିଷ୍ଠାତା ଓ ପ୍ରଥମ ନରପତି । କେଶରୀ ବଂଶ ଶୈବଭକ୍ତ ଥିଲେ । ସେଥିପାଇଁ ସମ୍ଭବତଃ ରାଜଧାନୀ ଚୌଦ୍ୱାର ଠାରେ ଏତେ ଶିବ ମନ୍ଦିର ପ୍ରତିଷ୍ଠା କରାଯାଇଥିଲା ।

କେଶରୀ ବଂଶରେ ସ୍ଥାପିତ ଶିବ ମନ୍ଦିରଗୁଡ଼ିକରେ ଜୈନ ଓ ବୌଦ୍ଧ ମୂର୍ତ୍ତିକୁ ରଖାଗଲା କାହିଁକି ? କେଶରୀ ବଂଶର ରାଜାମାନେ ଜୈନ ଓ ବୌଦ୍ଧ ଧର୍ମକୁ ପସନ୍ଦ କରୁନଥିଲେ ।

ଯଯାତିକେଶରୀଙ୍କ ରାଜତ୍ୱ କାଳରେ ବ୍ରାହ୍ମଣ୍ୟ ଧର୍ମର ପୁନଃଉଦ୍ଧାର କରାଯାଇ-ଥିଲା । ବୌଦ୍ଧମାନଙ୍କ ଆଧିପତ୍ୟ ଫଳରେ ବ୍ରାହ୍ମଣ୍ୟ ଧର୍ମର ଗୁରୁତ୍ୱ ହ୍ରାସ ପାଇ

ଆସିଥିଲା । ଫଳରେ ବୈଦିକ ରୀତିରେ କର୍ମମାନ କରାଯିବା ପାଇଁ ସେତେବେଳେ ବ୍ରାହ୍ମଣ-ମାନଙ୍କର ଅଭାବ ଦେଖାଗଲା । ସେତେବେଳେ ଯଯାତିକେଶରୀ ବୈଦିକ କର୍ମକାଣ୍ଡର ସୁରକ୍ଷା ପରିଚାଳନା ପାଇଁ ବ୍ରାହ୍ମଣମାନଙ୍କ ଉପରେ ଗୁରୁତ୍ୱ ଦେଇଥିଲେ । କାନ୍ୟକୁବ୍ଜରୁ ଦଶ ହଜାର ନୈଷ୍ଠିକ ବ୍ରାହ୍ମଣ ସେ ଓଡ଼ିଶାକୁ ଅଣାଇ, ସେମାନଙ୍କ ବସବାସର ବ୍ୟବସ୍ଥା କରିଥିଲେ । ଯେତେବେଳେ ବ୍ରାହ୍ମଣମାନଙ୍କର ଗୁରୁତ୍ୱ ବଢ଼ିଗଲା, ସେତେବେଳେ ବୌଦ୍ଧମାନଙ୍କ ଆଦର ହ୍ରାସ ପାଇବାକୁ ଲାଗିଲା । ବୌଦ୍ଧମାନଙ୍କ ଅବସ୍ଥା ଶୋଚନୀୟ ହୋଇପଡ଼ିଲା ।

ସେତେବେଳେ କୁଆଡ଼େ ୭୦୦ ବୌଦ୍ଧଙ୍କ ମଧ୍ୟରୁ ୬୧୭ ଜଣ ବୌଦ୍ଧଙ୍କୁ କେଶରୀ ବଂଶ ପକ୍ଷରୁ ହତ୍ୟା କରାଯାଇଥିଲା । ଏହି ପ୍ରସଙ୍ଗ ଯେଉଁ "ଚୈତନ୍ୟ ଭାଗବତ"ରେ ଉଲ୍ଲେଖ ହୋଇଛି, ସେଥିରେ ଅବଶ୍ୟ ବୌଦ୍ଧମାନଙ୍କୁ ହତ୍ୟାକାରୀ କେଶରୀ ରାଜାଙ୍କ ନାମ ମିଳୁ ନାହିଁ । ଏ ପ୍ରସଙ୍ଗ ଉପରେ ଆଉ ଅଧିକ ବିଶ୍ଳେଷଣ କରାନଯାଇ, ଏତିକି ଅନ୍ତତଃ କୁହାଯାଇପାରେ ଯେ, କେଶରୀ ବଂଶ ବ୍ରାହ୍ମଣ୍ୟ ଧର୍ମର ବୈଶିଷ୍ଟ୍ୟ ପ୍ରଚାର ପାଇଁ ଅଧିକ ଆଗ୍ରହୀ ଥିଲା । କେଶରୀ ବଂଶ ଶୈବଭକ୍ତ ଥିବାର ପ୍ରମାଣ ରହିଛି । ଯାଜପୁରରେ ଯେତେବେଳେ କେଶରୀ ବଂଶ ରାଜାଙ୍କ ରାଜଧାନୀ ସ୍ଥାପିତ ହେଲା, ସେତେ-ବେଳେ ସେଠାରେ ଅନେକ ଶିବଲିଙ୍ଗ ଓ ଶିବ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିବା ସୂଚନା ମିଳୁଛି । ଏହା ଏକଦା ବିଶିଷ୍ଟ ଶୈବକ୍ଷେତ୍ର ଭାବେ ଖ୍ୟାତି ଲାଭ କରିଥିଲା ।

ଯଯାତିକେଶରୀ ବ୍ରାହ୍ମଣମାନଙ୍କ କାର୍ଯ୍ୟାବଳୀକୁ ଅଧିକ ସମ୍ମାନିତ କରିବା ପାଇଁ ହୁଏତ ସେ ସେମାନଙ୍କ ଦ୍ୱାରା ବୈତରଣୀ ତୀରରେ ଏକ ଯଜ୍ଞ କରିଥିଲେ । ଯଜ୍ଞରେ ନବାଗତ ବ୍ରାହ୍ମଣମାନେ ବୈଦିକ ରୀତିନୀତି ଓ ପରମ୍ପରାର ଦକ୍ଷତା ପ୍ରଦର୍ଶନ କରି ରାଜାଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ଏହି ପ୍ରିୟତାରୁ ସେମାନେ ରାଜା ଅନୁଗ୍ରହରେ ବହୁ ଜମିବାଡ଼ି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିବା ଅସମ୍ଭବ ନୁହେଁ । ବ୍ରାହ୍ମଣ-ମାନଙ୍କ ଦ୍ୱାରା ଯଯାତିକେଶରୀ ଯେଉଁ ସ୍ଥାନରେ ପବିତ୍ର 'ଯାଗ' କରିଥିଲେ, ସେହି ସ୍ଥାନର ନାମ ଯାଜନଗର ରଖାଯାଇଥିଲା ।

କେହି କେହି ଏହାକୁ ଯଜ୍ଞପୁର କହୁଥିଲେ । କାଳକ୍ରମେ ଏ ଦୁଇ ନାମ ଲୋପ ପାଇଯାଇ ତାହା ଯାଜପୁରରେ ପରିଣତ ହୋଇଛି । ସେ ଯାଜପୁର ଅଞ୍ଚଳରେ ଦୂରରୁ ଆସିଥିବା ବ୍ରାହ୍ମଣମାନଙ୍କ ରହିବାର ବ୍ୟବସ୍ଥା କରାଇବା ସଙ୍ଗେ ସଙ୍ଗେ, ତାଙ୍କ ପିତା ଜନ୍ମେଜୟଙ୍କ ରାଜଧାନୀ ଗୈଦ୍ୱାର ଅଞ୍ଚଳରେ ମଧ୍ୟ ବ୍ରାହ୍ମଣମାନଙ୍କୁ ରଖାଇଲେ । ସେଥିପାଇଁ ଅନେକ ବ୍ରାହ୍ମଣଶାସନ ଗଢ଼ି ଉଠିଲା ।

ଶିବ ମନ୍ଦିରରେ ଦୁର୍ଗାଙ୍କ ମୂର୍ତ୍ତି କିପରି ସ୍ଥାନ ପାଇଲା, ତାହା ହୁଏତ ଅନେକଙ୍କ ପାଇଁ ପ୍ରଶ୍ନବାଚୀ ହୋଇପାରେ । ଶାକ୍ତ ଓ ଶୈବଧର୍ମ ଭିତରେ ଥିବା ସାମଞ୍ଜସ୍ୟକୁ ହୁଏତ ଅଧିକ ଦର୍ଶାଇବା ପାଇଁ ଏପରି ବ୍ୟବସ୍ଥା କରାଯାଇ ପାରିଥାଏ ।

କେବଳ ଦୁଇ ଧର୍ମ ନୁହେଁ, ଶାକ୍ତ, ଶୈବ ଓ ବୈଷ୍ଣବ ଏହି ତିନି ସମ୍ପ୍ରଦାୟ ଭିତରେ ବିବାଦ ନାହିଁ । କାହାକୁ ଅଧିକ ଗୁରୁତ୍ୱ ଦିଆଯାଇ ଉପାସନା କରାଯାଇ ନଥାଏ । ସମସ୍ତଙ୍କୁ ଅଦ୍ୱିତୀୟ ଈଶ୍ୱର ରୂପେ ପୂଜା କରାଯାଏ । ଏହା ଉଚିତ ମନେକରି, କୋଣାର୍କ ମନ୍ଦିରରେ ଶିଳ୍ପୀର ନିହାଣ ମୂନରେ ବି ସାମଞ୍ଜସ୍ୟ ପ୍ରକଟିତ ହୋଇଥିବା କଳ୍ପନା କରାଯାଏ । ପଣ୍ଡିତ କୃପାସିନ୍ଧୁ ମିଶ୍ର ତାଙ୍କ 'କୋଣାର୍କ' ଗ୍ରନ୍ଥରେ କହନ୍ତି— "ଅନୁମାନ କରାଯାଏ ଯେ ଶାକ୍ତ, ଶୈବ ଓ ବୈଷ୍ଣବ ଧର୍ମ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ଦେଖାଇବା ନିମନ୍ତେ ଶିଳ୍ପୀ ଏହି ଦୃଶ୍ୟର କଳ୍ପନା କରିଥିଲେ । ଉକ୍ତ ତିନି ସମ୍ପ୍ରଦାୟ ମଧ୍ୟରେ କେବେ କୌଣସି ବିବାଦ ନଥିଲା । ଶିବ, ଦୁର୍ଗା ଓ ବିଷ୍ଣୁଙ୍କୁ କୌଣସି ସମ୍ପ୍ରଦାୟ ସ୍ୱତନ୍ତ୍ର ଜ୍ଞାନ କରି ଆରାଧନା କରୁନଥିଲେ, ବରଂ ସେମାନଙ୍କୁ ଏକ ଅଦ୍ୱିତୀୟ ପରମେଶ୍ୱରଙ୍କର ବିଭିନ୍ନ ବିଭାବ ମାତ୍ର ମନେ କରୁଥିଲେ ।" ଶ୍ରୀ ବିଷନ ସ୍ୱରୂପ କହନ୍ତି— "ଓଡ଼ିଶାରେ କୌଣସି ଯୁଗରେ ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟମାନଙ୍କ ମଧ୍ୟରେ କଦାପି ମିତ୍ରତା ନଥିଲା ।"

ଏହି ମନ୍ତବ୍ୟ ଉପରେ ପଣ୍ଡିତ ମିଶ୍ର ପୁଣି ମତ ଦିଅନ୍ତି—"ଏହି ରୂପ ମନ୍ତବ୍ୟ ତାହାଙ୍କର ବ୍ୟକ୍ତିଗତ ଅଭିରୁଚି ଭିନ୍ନ ଐତିହାସିକ ସତ୍ୟ ବୋଲି ବୋଧ ହୁଏ ନାହିଁ । ବରଂ ପ୍ରତ୍ୟେକ ସମ୍ପ୍ରଦାୟ ଆପଣା ଆପଣାର ଆରାଧ୍ୟ ଦେବତାଙ୍କର ଆରାଧନା ସଙ୍ଗେ ସଙ୍ଗେ, ଅନ୍ୟ ସମ୍ପ୍ରଦାୟର ଆରାଧ୍ୟ ଦେବ ଦେବୀମାନଙ୍କର ଉପାସନା କରୁଥିବା ଇତିହାସରୁ ବହୁତ ପ୍ରମାଣ ମିଳେ । ଯଯାତି ଶୈବରାଜା । ତଥାପି ସେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଶଙ୍କରାଚାର୍ଯ୍ୟ ମଧ୍ୟ ଶିବ ଉପାସନା ସଙ୍ଗେ ସଙ୍ଗେ, ବିଷ୍ଣୁ, ଦୁର୍ଗା ଓ ଗଣେଶ ପ୍ରଭୃତିଙ୍କର ଆରାଧନା କରୁଥିବା ତାହାଙ୍କ ଗ୍ରନ୍ଥାବଳୀରୁ ଜଣାଯାଏ । କୋଣାର୍କ କର୍ତ୍ତା ନରସିଂହ ଦେବ ବୈଷ୍ଣବ ଥାଇ ସୁଦ୍ଧା ଶିବ ଓ ଦୁର୍ଗା ପ୍ରଭୃତି ହିନ୍ଦୁ ଦେବଦେବୀମାନଙ୍କୁ ଯଥେଷ୍ଟ ଭକ୍ତିରେ ଉପାସନା କରୁଥିଲେ । ଏହା ଅସମ୍ଭବ ନୁହେଁ, କି କୌଣସି ପ୍ରମାଣର ଅପେକ୍ଷା ରଖେ ନାହିଁ ।"

ଜନ୍ମେଜୟ ତାଙ୍କ ରାଜତ୍ୱ କାଳରେ ଚୌଦ୍ୱାର ଅଞ୍ଚଳରେ ଯେଉଁ ସବୁ ଶିବ ମନ୍ଦିର ନିର୍ମାଣ କରିଥିଲେ, ସେ ସବୁରେ ଜୈନ ଓ ବୌଦ୍ଧ ମୂର୍ତ୍ତି ରହିଛି । ଅଥଚ ତାଙ୍କ ପୁତ୍ର ଯଯାତି କେଶରୀ ବୌଦ୍ଧ ଧର୍ମର ବିଲୋପ ପାଇଁ ଉଦ୍ୟମ କରିଥିଲେ । ଏହା ରହସ୍ୟମୟ ମନେହେଉଛି । ତେବେ ପିତା ଜନ୍ମେଜୟ ଜୈନ ଓ ବୌଦ୍ଧ ମୂର୍ତ୍ତିଗୁଡ଼ିକୁ ଶିବ ମନ୍ଦିରରେ ରଖାଯିବା ପାଇଁ ଅନୁମତି ଦେଲେ କିପରି ? ଏହି ମନ୍ଦିରଗୁଡ଼ିକ ତେବେ କଣ ତାଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇ ନାହିଁକି ? ଏପରି କେତେ ପ୍ରଶ୍ନ ସୃଷ୍ଟି ହେବା ସ୍ୱାଭାବିକ । ଏହାର ସମାଧାନ ପାଇଁ ଅଧିକ ବିଶ୍ଳେଷଣ ଆବଶ୍ୟକ । ଓଡ଼ିଶାର କେତେକ ସ୍ଥାନରେ ବିଭିନ୍ନ ଦେବଦେବୀ ପୂଜିତ ହେଉଛନ୍ତି ।

ସେମାନେ କିନ୍ତୁ ପ୍ରକୃତରେ ବୌଦ୍ଧ ମୂର୍ତ୍ତି । ବାଣପୁର ପଲଟଣ ପଡ଼ିଆ ନିକଟରେ ଅବସ୍ଥିତ ଟିକିରେଇ ମନ୍ଦିରରେ ହିନ୍ଦୁଧର୍ମର ଦେବୀ ଦୁର୍ଗାମୂର୍ତ୍ତି ରୂପେ ଯିଏ ପୂଜିତା, ସେ

ହେଉଛନ୍ତି ବୌଦ୍ଧ ତାରାମୂର୍ତ୍ତି । ତାଙ୍କ ମସ୍ତକରେ ଶୋଭା ପାଉଛନ୍ତି ଅକ୍ଷୋଭ୍ୟ ବୁଦ୍ଧ । ବାଣପୁରସ୍ଥ ଗୋଦାବରୀଶ ବିଦ୍ୟାପୀଠରେ ରଖାଯାଇଥିବା ତାରାମୂର୍ତ୍ତି ହେଉଛି ବୌଦ୍ଧ ମୂର୍ତ୍ତି । ବାଲୁଙ୍କେଶ୍ୱର ମନ୍ଦିରର ଉତ୍ତର ଦିଗ କାନ୍ଥରେ ସ୍ଥାପନ କରାଯାଇଥିବା ପାର୍ବତୀ ମୂର୍ତ୍ତିକୁ ଦୁର୍ଗା ଭାବେ ପୂଜା କରାଯାଉଛି । ମାତ୍ର ତାହା ବୌଦ୍ଧ ତାରାମୂର୍ତ୍ତି । ଆହୁରି ମଧ୍ୟ ଗୋଦାବରୀଶ ବିଦ୍ୟାପୀଠ ପରିସରସ୍ଥ ଶାଳଆ ଗାଁର ନିକଟବର୍ତ୍ତୀ ସ୍ଥାନରେ ଯେଉଁ ଉଗ୍ରତାରାମୂର୍ତ୍ତି ପୂଜିତା ହେଉଛନ୍ତି, ତାହା ବୌଦ୍ଧଧର୍ମର ପ୍ରତୀକ । ବାଣପୁର ନିକଟରେ ଥିବା ଲୋକମୁଖରେ ପରିଚିତ 'ଅମୁହାଁ ଶିବ ମନ୍ଦିର' ହେଉଛି ଗୋଟିଏ ବୌଦ୍ଧସ୍ତୂପ ।

ଏହା ବାଣପୁର ନିକଟବର୍ତ୍ତୀ ବିଦ୍ୟାଧରପୁରରେ ଅବସ୍ଥିତ । ସେହି ଦୃଷ୍ଟିରୁ ସେତେବେଳର ମନ୍ଦିରମାନଙ୍କରେ ଅନୁରୂପ ବୌଦ୍ଧ ମୂର୍ତ୍ତି ରହିପାରୁଥିଲା କି ? କେଶରୀ ବଂଶ ବୌଦ୍ଧ ବିରୋଧୀ ବୋଲି ଅନେକ ପ୍ରମାଣ ରହିଛି । ଡଃ ହରେକୃଷ୍ଣ ମହତାବ ତାଙ୍କ 'ଓଡ଼ିଶା ଇତିହାସ'ରେ "ସୋମବଂଶୀୟ (କେଶରୀ ବଂଶ) ରାଜାମାନେ ପ୍ରଧାନତଃ ଶୈବଧର୍ମାବଲମ୍ବୀ ଥିଲେ ; ସେମାନେ ତ୍ରିଭୁବନ ମହାଦେବୀଙ୍କ ବେଳକୁ ତ୍ରିକଳିଙ୍ଗରେ ନିଜର ସ୍ଥାନ ଦୃଢ଼କରି ତୋଷାଳୀ ଓ କଙ୍ଗୋଦରେ ମଧ୍ୟ ରାଜ୍ୟ ବିସ୍ତାର କରି ସାରିଲେଣି । ତ୍ରିଭୁବନ ମହାଦେବୀ ନାଗବଂଶର କନ୍ୟା ଥିବାରୁ ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ନହେବା ସମ୍ଭବ" ବୋଲି ପ୍ରକାଶ କରିଛନ୍ତି ।

ଶୈବଦ୍ୱାର ଅଞ୍ଚଳରେ ନିର୍ମିତ ହୋଇଥିବା ୮ଟି ଶିବ ମନ୍ଦିର ଭିତରୁ ଅବଶିଷ୍ଟ ଆଉ ୪ଟି ମନ୍ଦିରର ବିବରଣୀ ବିଶେଷ ଭାବରେ ମିଳିପାରୁନାହିଁ । ସେଗୁଡ଼ିକ ଜରାଜୀର୍ଣ୍ଣ ହୋଇ ଭାଙ୍ଗି ଗଲାଣି । ସବୁଗୁଡ଼ିକ ମୁଖଶାଳାରେ ଶୋଭିତ ହେଉଥିଲା । ବର୍ତ୍ତମାନ ମୁଖଶାଳା ନାହିଁ । ସେସବୁ ମନ୍ଦିରଗୁଡ଼ିକ ବର୍ତ୍ତମାନର କେଉଁ ପ୍ରାଚୀନ ମନ୍ଦିର ସହିତ ତୁଳନୀୟ, ତାହା ଜାଣିବା ସହଜ ହେଉନାହିଁ । ତଥାପି ପ୍ରତ୍ନତତ୍ତ୍ୱବିତ୍‌ମାନେ ଗବେଷଣା କରି ଜାଣିପାରିଛନ୍ତି ଯେ, ମନ୍ଦିର ଗୁଡ଼ିକର ଅଗ୍ରଭାଗ ଭିନ୍ନ ରୂପରେ ନିର୍ମିତ ହୋଇଥିବାରୁ, ଏସବୁର ରୂପରେଖ ଭିନ୍ନ ପ୍ରକାରର ଥିଲା ବୋଲି କୁହାଯାଇପାରେ । ମନ୍ଦିର ନିର୍ମାଣରେ ମାଙ୍କଡ଼ା ପଥରକୁ ବ୍ୟବହାର କରାଯାଇଛି ।

ତେଣୁ ଏହା ହେଉଛି ମନ୍ଦିରର ଅନ୍ୟ ଏକ ଆକର୍ଷଣୀୟ ବିଭବ । ଶିବ ମନ୍ଦିର ଭାବେ ପରିଚିତ ହୋଇଥିବା ମନ୍ଦିର ଭିତରେ ମହାଦେବ ନଥିବା ଆହୁରି ବିସ୍ମୟକର ବିଷୟ । ଯେଉଁ ଦେଵଙ୍କ ନାମରେ ମନ୍ଦିର ଗଠିତ ହୋଇଛି, ସେହି ଦେଵ ସେଠାରେ ନାହାନ୍ତି । କ'ଣ ପାଇଁ ଦେଵ ସେଠାରେ ରହି ନାହାନ୍ତି ଏବଂ ଦେଵ ନଥାଇ, କାହିଁକି ମନ୍ଦିରର ନାମକରଣ ଏପରି କରାଯାଇଛି, ତାହା ଗବେଷଣାସାପେକ୍ଷ । ସବୁଠାରେ ଯୋନିପୀଠ ରହିଥିବା ଜଣାଯାଏ । ଯାହାଙ୍କ ନାମରେ ମନ୍ଦିର ପ୍ରତିଷ୍ଠିତ, ଅନ୍ତତଃ ସେହି ଦେଵଙ୍କ ଲିଙ୍ଗଟିଏ ରଖାଯାଇ ପାରିଥାଆନ୍ତା ? କିନ୍ତୁ ଶିବଲିଙ୍ଗଟିଏ ସୁଦ୍ଧା ମନ୍ଦିର ଭିତରେ ସ୍ଥାପନ କରାଯାଇ ନାହିଁ । ଅଥଚ ମନ୍ଦିର ଶିବମନ୍ଦିର ଭାବେ ପରିଚିତ । ଅବଶ୍ୟ କେବଳ

ଟେଣ୍ଟିଦ୍ୱାର ଅଞ୍ଚଳରେ ଏପରି ମନ୍ଦିର ନାହିଁ, ଅନ୍ୟାନ୍ୟ କେତେକ ସ୍ଥାନରେ ମଧ୍ୟ ଅନୁରୂପ ମନ୍ଦିର ରହିଛି । ବାଲେଶ୍ୱର ଜିଲ୍ଲାର ନୀଳଗିରି ହରିଚନ୍ଦନ ଅନ୍ତର୍ଗତ ଅଯୋଧ୍ୟା ଠାରେ ଏହିପରି ଶିବଲିଙ୍ଗବିହୀନ ଶିବମନ୍ଦିର ରହିଛି । ମୟୂରଭଞ୍ଜ ଜିଲ୍ଲାରେ ଖିଚିଙ୍ଗ ଠାରେ ମଧ୍ୟ ଅନୁରୂପ ମନ୍ଦିର ଅଛି ।

କେଶରୀ ବଂଶର ଧର୍ମ ସମ୍ପର୍କରେ ନାନା ପ୍ରକାରରେ ମତ ଓ ଅଭିମତ ଶୁଣିବାକୁ ମିଳେ । ମୁଖ୍ୟତଃ ସେହି ବଂଶ ଶିବ ଉପାସକ ଥିଲା । ଶିବ ଉପାସନା ପ୍ରତି କେଶରୀ ରାଜାମାନଙ୍କର ଶ୍ରଦ୍ଧା ଓ ଆଗ୍ରହ ଯଥେଷ୍ଟ ରହିଥିଲା । ଏହାସତ୍ତ୍ୱେ ଜୈନ ଓ ବୌଦ୍ଧଧର୍ମ ଲୋପପାଇ ଯାଇ ନଥିବା କେତେକ କହନ୍ତି । ଓଡ଼ିଶାରେ ତାହା ଜୀବିତ ଥିବାର ପ୍ରମାଣ ରହିଛି । ଶୈବ ଧର୍ମ ରାଷ୍ଟ୍ରୀୟ ଧର୍ମ ହେବା ସଙ୍ଗେ ସଙ୍ଗେ, ଶତାଧିକ ବୌଦ୍ଧ ଧର୍ମାବଲମ୍ବୀଙ୍କୁ ଜଣେ କେଶରୀ ରାଜା କରିବା ସତ୍ତ୍ୱେ ବୌଦ୍ଧଧର୍ମ ସମ୍ପୂର୍ଣ୍ଣ ଭାବେ ଲୋପ ହୋଇ ନଥିଲା । କେବଳ ବୌଦ୍ଧ ନୁହେଁ, ଜୈନ ଧର୍ମ ମଧ୍ୟ ବିଲୋପ ହୋଇନଥିବା କୁହାଯାଇପାରେ । କେଶରୀ ବଂଶର ଜଣେ ରାଜା ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ପ୍ରତି ବୀତସ୍ପୃହ ହୋଇ, ସେମାନଙ୍କୁ ହତ୍ୟା କରିଥିବା ବେଳେ, ସେହି ବଂଶର ଅନ୍ୟ ଜଣେ ରାଜା ବୌଦ୍ଧ ଗ୍ରନ୍ଥ ପ୍ରତି ଶ୍ରଦ୍ଧାଳୁ ହେବା ଆହୁରି ଉଦାରତାର ନିଦର୍ଶନ । ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ କେଶରୀ ବଂଶର ରାଜା ଶୁଭକର କେଶରୀ ତତ୍କାଳୀନ ଚୀନ ସମ୍ରାଟଙ୍କୁ ଶ୍ରଦ୍ଧାରେ ଗୋଟିଏ 'ବୌଦ୍ଧ ଗ୍ରନ୍ଥ' ଉପହାର ଦେଇଥିଲେ । ସେହି ବୌଦ୍ଧ ଗ୍ରନ୍ଥର ନାମ ହେଉଛି 'ବୁଦ୍ଧା ବତଂସକ ସୂତ୍ର' ।

ସେଠାକାର ବୌଦ୍ଧ ବିପିଟକଙ୍କ ମହଲରେ ଏହି ପୁସ୍ତକ ଆଦୃତ ହୋଇଥିଲା । ସେହି ଆଦର ଓ ଲୋକପ୍ରିୟତା ଏବେ ସୁଦ୍ଧା ପୁସ୍ତକଟି ହରାଇ ନାହିଁ । ବରଂ ଚୀନା ଭାଷାରେ ତାହା ଅନୂଦିତ ହୋଇ, ବହୁଳ ପ୍ରଚରିତ ହେବାରେ ଲାଗିଛି । ସେ ପରେ ପୁଣି, ଚୀନ ସମ୍ରାଟଙ୍କୁ ଗୋଟିଏ ଚନ୍ଦ୍ରାତପ ଉପହାର ଦେଇଥିଲେ । ଏହି ଚନ୍ଦ୍ରାତପ ଚିତ୍ରବିଚିତ୍ର ହୋଇ, ଅତ୍ୟନ୍ତ ଆକର୍ଷଣୀୟ ଦିଶୁଥିଲା । ସେତେବେଳେ ସମ୍ରାଟଙ୍କୁ ଏହା ଖୁବ୍ ଆକୃଷ୍ଟ କରିଥିଲା । ବର୍ତ୍ତମାନ ସୁଦ୍ଧା ତାହା ଚୀନ ରାଜଧାନୀରେ ଶୋଭାପାଉଛି । ଚୀନବାସୀମାନେ ଉତ୍କଳୀୟ ଚନ୍ଦ୍ରାତପ ପ୍ରତି ଶ୍ରଦ୍ଧା ଅତୁଟ ରଖିଥିବା ଆନନ୍ଦର ବିଷୟ । ପଣ୍ଡିତ କୃପାସିନ୍ଧୁ ମିଶ୍ର ତାଙ୍କ ରଚିତ 'ଉତ୍କଳ ଇତିହାସ'ରେ ଦର୍ଶାଇଛନ୍ତି—"କେଶରୀମାନେ ପ୍ରଧାନ ଶିବ-ଉପାସକ ଥିଲେ ସୁଦ୍ଧା ଏବଂ ଶୈବଧର୍ମ ରାଷ୍ଟ୍ରୀୟ ଧର୍ମ ରୂପେ ଚଳୁଥିଲେ ସୁଦ୍ଧା, ଜୈନ ଓ ବୌଦ୍ଧ ଧର୍ମ ଉତ୍କଳରୁ ଲୋପ ପାଇ ନଥିଲା । ଭୁବନେଶ୍ୱର ମନ୍ଦିରମାନଙ୍କରେ କେତେକ ଯୋଗୀ ଚିତ୍ର ଅଛି । ସେମାନଙ୍କର ଲମ୍ବା ଦାଢ଼ି, ମୁଣ୍ଡରେ ଉଚ୍ଚଜଟା, କୌପୀନ ବସନ, ମାଳ କି ପଇତା ସେମାନଙ୍କ ଦେହରେ ନାହିଁ । ସେମାନଙ୍କୁ ଦେଖିଲେ ଦେଶରେ ଜୈନ ଓ ବୌଦ୍ଧ ତପସ୍ୱୀମାନେ ହିଁ ତପସ୍ୟା କରୁଥିଲେ, ବୋଧହୁଏ ।"

ଚୀନ ପରିବ୍ରାଜକ ହୁଏନସାଂ ଭାରତ ଭ୍ରମଣ କାଳରେ ବୌଦ୍ଧଧର୍ମର ଆଦର ଉପରେ ମନ୍ତବ୍ୟ ଦେଇଛନ୍ତି । ତାଙ୍କ ଭ୍ରମଣ କାଳ ଖ୍ରୀଷ୍ଟ ୬୩୦ ରୁ ୬୪୩ ଅବ୍ଦ ମଧ୍ୟରେ

ସୀମିତ । ଓଡ଼ିଶାରେ ସେତେବେଳେ ବହୁ ସଂଖ୍ୟକ ବୌଦ୍ଧ ମଠ ରହିଥିଲା । ହିନ୍ଦୁ ଓ ବୌଦ୍ଧ ସମ୍ପ୍ରଦାୟ ନିଜ ନିଜର ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ଉତ୍କଳ ସେସମୟରେ ବୌଦ୍ଧ ଧର୍ମର ମୁଖ୍ୟସ୍ଥଳ ହୋଇ ପାରିଥିଲା । ଶହ ଶହ ବୌଦ୍ଧମଠ ସ୍ଥାପିତ ହୋଇଥିଲା । ଦଶ ସହସ୍ର ବୌଦ୍ଧ ସନ୍ନ୍ୟାସୀ ଏଠାରେ ରହିଥିବା ବେଳେ, ଉତ୍କଳରେ ୫୦ଟି ମାତ୍ର ହିନ୍ଦୁ ମନ୍ଦିର ରହିଥିଲା ବୋଲି ସେ ତାଙ୍କ ଭାରତ ଭ୍ରମଣ ଅବସରରେ ଉତ୍କଳ ପ୍ରସଙ୍ଗରେ ମତ ଦେଇଛନ୍ତି । କେଶରୀ ବଂଶ ଅତ୍ୟନ୍ତ ଧର୍ମପ୍ରେମୀ । ଶୈବ ଧର୍ମକୁ କେଶରୀରାଜାମାନେ ଶ୍ରଦ୍ଧା କରୁଥିଲେ । ସେଥିପାଇଁ ବିଭିନ୍ନ ସ୍ଥାନରେ ଶିବମନ୍ଦିର ସ୍ଥାପନ କରି ଶିବ ପୂଜାର ବ୍ୟବସ୍ଥା କରିଥିଲେ । ହିନ୍ଦୁ ଓ ବୌଦ୍ଧମାନେ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ ବୋଲି ହୁଏନ୍‌ସାଂ ମତ ଦେଇଛନ୍ତି । ବୌଦ୍ଧଧର୍ମ ଲୋପ ପାଇଯିବା ପରେ, ଅନେକ ବର୍ଷ ଧରି ଜୈନଧର୍ମ ତା'ର ସ୍ୱାତନ୍ତ୍ର୍ୟ ବଜାୟ ରଖିଥିଲା । ବିଭିନ୍ନ ଧର୍ମ ସଂପ୍ରଦାୟ ଭିତରେ ସଦ୍‌ଭାବ ଲୋପ ପାଇ ନଥିଲା । ତେବେ ଶୈବଧର୍ମ ପ୍ରଭାବରେ ଅନ୍ୟାନ୍ୟ ଧର୍ମ ମଳିନ ପଡ଼ିଯାଇଥିବା ଲକ୍ଷ୍ୟ କରାଯାଇଥିଲା । ସେ ଯାହା ହେଉନା କାହିଁକି, କେଶରୀ ବଂଶ ରାଜତ୍ୱ କାଳରେ ଶୈବ, ଜୈନ ଓ ବୌଦ୍ଧ ଧର୍ମାବଲମ୍ବୀମାନେ ନିଜ ନିଜର ଧର୍ମ ପାଳନରେ ବ୍ରତୀ ହୋଇପାରିଥିଲେ, ଏଥିରେ ସନ୍ଦେହ ନାହିଁ । ଚୌଦ୍ୱାରରୁ ସେ ଦୃଷ୍ଟିରୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ବୌଦ୍ଧ, ଜୈନ ଓ ଶୈବ ମୂର୍ତ୍ତିର ସନ୍ଧାନ ପାଇପାରିଛନ୍ତି । ଜନ୍ମେଜୟ କେଶରୀ, ଯେତେବେଳେ ଚୌଦ୍ୱାରକୁ ରାଜଧାନୀ କଲେ, ସେତେବେଳେ ସେଠାରେ ଏହି ତିନି ଧର୍ମାବଲମ୍ବୀମାନେ ବସବାସ କରୁଥିଲେ ।

ସେଥିପାଇଁ ସମ୍ଭବତଃ ବର୍ତ୍ତମାନ ସୁଦ୍ଧା ଜୈନ ମୂର୍ତ୍ତି ମିଳିବା ସଙ୍ଗେ ସଙ୍ଗେ ବୌଦ୍ଧ ମୂର୍ତ୍ତି ମଧ୍ୟ ମିଳୁଛି । ଶୈବ ମୂର୍ତ୍ତି ମିଳିବା ତ ସ୍ୱାଭାବିକ । ବିଭିନ୍ନ ପ୍ରତିକୂଳ ପରିସ୍ଥିତି ଭିତରେ କେଶରୀ ରାଜାଙ୍କ ରାଜତ୍ୱ କାଳରେ ବୌଦ୍ଧ ଓ ଜୈନ ଧର୍ମ ତିଷ୍ଠି ପାରିଥିବାର ଏହା ହେଉଛି ଜ୍ୱଳନ୍ତ ନିଦର୍ଶନ । ଏହି ମୂର୍ତ୍ତିଗୁଡ଼ିକରୁ ଆହୁରି ସୂଚନା ମିଳେ ଯେ, ତିନି ସଂପ୍ରଦାୟର ଲୋକମାନେ ଚୌଦ୍ୱାର ଅଞ୍ଚଳରେ ରହୁଥିଲେ । ପଡ଼ୋଶୀ ଭାବେ ଚଳପ୍ରଚଳ କରୁଥିଲେ । ବରିଷ୍ଠ ପ୍ରତ୍ନତତ୍ତ୍ୱବିତ୍ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ମତରେ— "ଚୌଦ୍ୱାରରୁ ଶୈବ, ବୌଦ୍ଧ ଓ ଜୈନ ମୂର୍ତ୍ତି ମିଳିଅଛି । ଏଣୁ ଏଥିରୁ ଅନୁମିତ ହେଉଅଛି ଯେ, ଏଠାରେ ପୂର୍ବେ ଶୈବ, ବୌଦ୍ଧ ଓ ଜୈନ ଧର୍ମ ସଂପ୍ରଦାୟର ଲୋକେ ଏକତ୍ର ବସବାସ କରୁଥିଲେ ।"

ଓଡ଼ିଶାର ପ୍ରାଚୀନ ରାଜଧାନୀ ଚୌଦ୍ୱାରରେ ସ୍ଥାପିତ ଶିବ ମନ୍ଦିରରେ ବୌଦ୍ଧ ମୂର୍ତ୍ତି ସ୍ଥାନ ପାଇବାର କାରଣ ହେଉଛି, ସେଠାରେ ଶୈବଧର୍ମ ସହିତ ବୌଦ୍ଧ ଧର୍ମର ସଂପର୍କ ରହିଥିଲା । ପୂର୍ବରୁ ଏ ସମ୍ପର୍କରେ ସୂଚନା ଦିଆଯାଇଛି । ଏବେ କେତୋଟି ବୌଦ୍ଧ ମୂର୍ତ୍ତିରୁ ଏପରି ନାନା କଳ୍ପନା ଜଳ୍ପନା କରାଯାଇ ପାରୁଛି । ବରିଷ୍ଠ ପ୍ରତ୍ନତତ୍ତ୍ୱବିତ୍ ଗବେଷକ ରାମପ୍ରସାଦ ଚନ୍ଦ ଏହା ଉପରେ ଗବେଷଣା କରିଛନ୍ତି । ତାଙ୍କ ଗବେଷଣା ନିବନ୍ଧରୁ କିୟଦଂଶ ଉଦ୍ଧାର କରାଯାଉଅଛି । "ଚୌଦ୍ୱାରରୁ ପ୍ରାପ୍ତ ମୂର୍ତ୍ତିଗୁଡ଼ିକର ସମସ୍ତ ଦଶମ

ଶତାବ୍ଦୀର ଶେଷଭାଗ ବୋଲି ନିରୂପିତ କରାଯାଇପାରେ । ଏଣୁ ଆମ୍ଭର ମନେହୁଏ ଯେ, ଏଗୁଡ଼ିକ ଓଡ଼ିଶାର ଅନ୍ତ-ମଧ୍ୟ-ଯୁଗ ଭାସ୍କର୍ଯ୍ୟର ପ୍ରାଥମିକ ନିଦର୍ଶନ ।

ବ୍ରାହ୍ମଣ୍ୟ ଧର୍ମର ଭାସ୍କର୍ଯ୍ୟ ମଧ୍ୟରେ ପାର୍ବତୀ ଓ କାର୍ତ୍ତିକେୟ ମୂର୍ତ୍ତିଗୁଡ଼ିକ କପାଳେଶ୍ୱର ମହାଦେବଙ୍କ ମନ୍ଦିରର ପାର୍ଶ୍ୱଦେବତା । ଉମା-ମହେଶ୍ୱର ମୂର୍ତ୍ତିଟି ଉତ୍ତରେଶ୍ୱର ମନ୍ଦିରରେ ଥିଲା । ଏଗୁଡ଼ିକ ଉଦାହରଣ ସ୍ୱରୂପ ଏଠାରେ ଦିଆଗଲା । ବାବୁ କୃଷ୍ଣଚନ୍ଦ୍ର ମଙ୍ଗରାଜ ମହାଶୟ ବୈରୁଣ୍ଡାର ଗୋଟିଏ ମୂର୍ତ୍ତି ଯାଦୁଘରକୁ ଦାନ କରିଅଛନ୍ତି । ବୋଧହୁଏ ଏହି ମୂର୍ତ୍ତିଟି କୌଣସି ଶିବ ମନ୍ଦିରର ଥିଲା । ଚୌଦ୍ୱାରରେ ଶୈବ ଧର୍ମ ସହିତ ବୌଦ୍ଧ ଧର୍ମ ଚଳୁଥିବାର ବହୁ ପ୍ରମାଣ ମିଳେ । ହାସ୍ୟମୁଖୀ ପ୍ରଜ୍ଞା ପାରମିତା ମୂର୍ତ୍ତିଟି କିଛିକାଳ ପୂର୍ବେ ମାଟି ଭିତରୁ ବାହାରିଥିଲା ।

ବର୍ତ୍ତମାନ ଗ୍ରାମବାସୀମାନେ ତାହାକୁ ଧାନକିଆରିରେ ରଖି ପୂଜା କରୁଅଛନ୍ତି । ଗ୍ରାମର ଗୋଟିଏ ବିଷ୍ଣୁ ମନ୍ଦିରରେ ଦୁଇଟି ମହାଯାନ ବୌଦ୍ଧମୂର୍ତ୍ତି ସ୍ଥାନ ପାଇଅଛି । ତନ୍ମଧ୍ୟରୁ ଗୋଟିଏ ଦ୍ୱିଭୁଜ ତାରାର ଠିଆମୂର୍ତ୍ତି ଓ ଅପର ଦ୍ୱିଭୁଜ ଦେବୀ ମୂର୍ତ୍ତିଟି ଡାହାଣ ହାତରେ ବଜ୍ର ଓ ବାଁ ହାତରେ ପାନପତ୍ର ଧରି କାଣ୍ଡ ବନ୍ଧନୀ ପରି ଠିଆ ହୋଇଅଛି । ଯାଦୁଘର ପାଇଁ ଗୋଟିଏ ଦ୍ୱିଭୁଜ ଅବଲୋକିତେଶ୍ୱର ମୂର୍ତ୍ତି ଅଣା ଯାଇଅଛି । କେନ୍ଦ୍ରାପଡ଼ାରୁ ସଂଗୃହୀତ ଅବଲୋକିତେଶ୍ୱର ମୂର୍ତ୍ତି ସଦୃଶ ଏହାର ପିଠି ପଟର ପଥରରେ ଭୂଷାବଳି ଅଛି ଓ ପଦ୍ମାସନ ତଳେ ରାଜକୀୟ ସପ୍ତରତ୍ନ (ଚକ୍ର ଅଶ୍ୱ, ହସ୍ତୀ, ଅଳଙ୍କାର, ସ୍ତ୍ରୀ, ଗୃହୀ ଓ ସେନାପତି) ଖୋଦିତ ଅଛି । ଦୁଇଟିଯାକ ମୂର୍ତ୍ତି ମଧ୍ୟରେ କେବଳ ଖମ୍ଭର ପାର୍ଥକ୍ୟ ଅଛି । ପ୍ରଜ୍ଞାପାରମିତା ମୂର୍ତ୍ତିରେ ସପ୍ତରତ୍ନ ମଧ୍ୟରୁ ପାଞ୍ଚଟି ରତ୍ନ ଖୋଦିତ ଅଛି । ପୂର୍ବୋକ୍ତ ମଙ୍ଗରାଜ ମହାଶୟ ମଧ୍ୟ ଯାଦୁଘର ପାଇଁ ଗୋଟିଏ ପିତଳର ନିଖୁଣ ବୁଦ୍ଧମୁଣ୍ଡ ଦାନ କରିଅଛନ୍ତି । ମୁଣ୍ଡାର କାନ ପାଖରେ ବୌଦ୍ଧ ମନ୍ତ୍ର "ଯେ ଧର୍ମା ହେତୁ ପ୍ରଭବା" ଇତ୍ୟାଦି ଲେଖାରୁ ଜଣାଯାଏ ଯେ, ଏହା ଏକାଦଶ ଦ୍ୱାଦଶ ଶତାବ୍ଦୀର ଅକ୍ଷର ।

ଲଳିତଗିରି ଓ ଉଦୟଗିରିର ମୁଖ ସହିତ ତୁଳନା କଲେ ଏହାର ମୁଖରେ ଅନୁକୃତତର ତନ୍ତ୍ରତାର ଯଥେଷ୍ଟ ପରିଚୟ ମିଳେ । ଭୁବନେଶ୍ୱରର ଲିଙ୍ଗରାଜ ପ୍ରମୁଖ ମନ୍ଦିରାଦିର ପାର୍ଶ୍ୱଦେବତା ମୂର୍ତ୍ତି ଓ ପୁରୀ ଜଗନ୍ନାଥ ମନ୍ଦିରର ନିଶାମୂର୍ତ୍ତିଗୁଡ଼ିକର ସମସ୍ତ ୧୧ଶ ବା ୧୨ଶ ଶତାବ୍ଦୀର କାର୍ଯ୍ୟ ବୋଲି କେଉଁଥିରେ ଆହୁରି ଅଧିକ ପତନର ଚିହ୍ନ ଦେଖାଯାଏ । ଯାଦୁଘରେ ସୁରକ୍ଷିତ କାର୍ତ୍ତିକେୟ ମୂର୍ତ୍ତିଟି ବୋଧହୁଏ ଭୁବନେଶ୍ୱରର କୌଣସି ମନ୍ଦିରରେ ଥିଲା । ଏହି ମୂର୍ତ୍ତିଟି ଓଡ଼ିଶାର ଅନ୍ତ-ମଧ୍ୟଯୁଗ ଭାସ୍କର୍ଯ୍ୟର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ଗୃହୀତ ହୋଇପାରେ । ଆଦି-ମଧ୍ୟଯୁଗର ବୋଧିସତ୍ତ୍ୱ ଓ ମାତୃଗଣ ମୂର୍ତ୍ତିରେ ଯେଉଁ ସଜୀବତା ଓ ସ୍ୱାଚ୍ଛନ୍ଦ୍ୟ ଦେଖାଯାଏ, ଏହି ଜାତୀୟ ମୂର୍ତ୍ତିଗୁଡ଼ିକରେ ତାହା ନାହିଁ ।"

ଚୌଦ୍ୱାରର ମାଟି ଭିତରେ ଲୁଚି ଯାଇଥିବା ସେକାଳର ସ୍ୱର୍ଣ୍ଣମୁଦ୍ରା, ବିଭିନ୍ନ ପ୍ରକାରର ମୂର୍ତ୍ତି, ତାମ୍ରଫଳକ, ପ୍ରାସାଦ, ମନ୍ଦିର ଓ ଘାଟ ଆଦିରୁ ପ୍ରମାଣ ମିଳଥାଏ ଯେ,

ଚୌଦ୍ୱାର ୧୦ ଶତାବ୍ଦୀରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ଏକ ଉନ୍ନତ ମାନର ସହର ହୋଇ ରହିଥିଲା । ଆଜି କଟକ ସହରକୁ ଦେଖି ଏହାକୁ ଆଧୁନିକ ସହର ବୋଲି କୁହାଯାଉଛି । ଅତୀତରେ ଏହିପରି ନାମରେ ଏକାଧିକ କଟକ ସୃଷ୍ଟି ହୋଇ ପୁଣି କାଳଗର୍ଭରେ ଲୀନ ହୋଇଯାଇଛି । କେଶରୀ ବଂଶର ପ୍ରଥମ ରାଜା ଚୌଦ୍ୱାର କଟକକୁ ରାଜଧାନୀ ଭାବେ ମନୋନୀତ କରିଥିଲେ ସୁଦ୍ଧା, ଏହି ରାଜାଙ୍କ ଉତ୍ତରାଧିକାରୀମାନେ ଏହାକୁ ରାଜଧାନୀ ଲାଗି ଉପଯୁକ୍ତ ସ୍ଥାନ ଭାବିପାରି ନାହାନ୍ତି ।

ନୃପକେଶରୀ ଯାଜପୁର କିମ୍ବା ଚୌଦ୍ୱାରକୁ ରାଜଧାନୀ ପାଇଁ ଉପଯୁକ୍ତ ସ୍ଥାନ ଭାବି ପାରିଲେ ନାହିଁ । କଟକକୁ ରାଜଧାନୀ ପାଇଁ ଉପଯୁକ୍ତ ସ୍ଥାନ ଭାବେ ମନୋନୀତ କଲେ । ମହାନଦୀ ଓ କାଠଯୋଡ଼ି ମଧ୍ୟବର୍ତ୍ତୀ ସ୍ଥଳରେ ବାରାଣସୀ କଟକ ନଗର ସ୍ଥାପନ କରି ସେଠାରେ ରାଜଧାନୀ ପ୍ରତିଷ୍ଠା କଲେ । ବର୍ତ୍ତମାନର ବଡ଼ାନାସୀ ଦେଖିଲେ, ଏସବୁ ଇତିହାସ ସ୍ମରଣ ହୁଏ । ସେଦିନର ବାରାଣସୀ କଟକ ଆଜିର ବଡ଼ାନାସୀ ଭାବରେ ପରିଚିତ । ଜନ୍ମେଜୟଙ୍କ ପୂର୍ବରୁ ଭୌମବଂଶୀ ରାଜାମାନେ କଟକରେ ରାଜତ୍ୱ କରିଥିଲେ । ତେବେ ଯାହା ହେଉନା କାହିଁକି, ଚୌଦ୍ୱାର ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ । ଚୌଦ୍ୱାର ବହୁ ବଣିଷ୍ଟ ଗବେଷକ, ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ବଡ଼ ବଡ଼ ଉଚ୍ଚପଦସ୍ଥ ଅଫିସରମାନେ ଚୌଦ୍ୱାର ସମ୍ପର୍କରେ ଯେଉଁ ମନ୍ତବ୍ୟମାନ ଦେଇଯାଇଛନ୍ତି, ସେସବୁ ଅତ୍ୟନ୍ତ ଉଲ୍ଲେଖନୀୟ ।

ଚୌଦ୍ୱାର ବହୁ କୃତୀ ବରପୁତ୍ରଙ୍କ ଯୋଗୁଁ ଧନ୍ୟ ହୋଇଛି । ବହୁବର୍ଷ ଧରି ଏହା ଅବହେଳିତ ଅବସ୍ଥାରେ ରହିଥିଲା । ଚୌଦ୍ୱାର ଇତିହାସର କାହାଣୀ ହୋଇ ରହିଯାଇଥିଲା । ଏବେ କିନ୍ତୁ ଆଧୁନିକ ଚୌଦ୍ୱାର ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଛି । ଚୌଦ୍ୱାରରେ ଲୁଗାକଳ ଓ. ଟି. ଏମ୍. ସ୍ଥାପିତ ହେଲା । ଭାରତର ଅନ୍ୟତମ ବୃହତ୍ ଲୁଗାକଳ ଭାବେ ଗଢ଼ି ଉଠିଲା । ଯାହାହେଉ, ବହୁ ସମସ୍ୟା ଭିତର ଦେଇ, ଲୁଗାକଳ ଗର୍ବରେ ମୁଣ୍ଡଟେକି ରହିଛି । ଏଠାରେ 'କଳିଙ୍ଗ ଟ୍ୟୁବ୍‌ସ କାରଖାନା' ଗଢ଼ି ଉଠିଛି ଓ ଏକ କାଗଜକଳ ମଧ୍ୟ ପ୍ରତିଷ୍ଠା ଲାଭ କରିଛି । ଏହାକୁ ଏକ ଶିଳ୍ପ ନଗରୀରେ ପରିଣତ କରିବା ପାଇଁ ଯାହାର ଅବଦାନ ଥାଉନା କାହିଁକି, ଏହାଦ୍ୱାରା ଓଡ଼ିଶାବାସୀ ଉପକୃତ ହେବା ସଙ୍ଗେ ସଙ୍ଗେ, ପ୍ରାଚୀନ କୀର୍ତ୍ତିସ୍ଥଳୀ ଚୌଦ୍ୱାର ଯେ ସ୍ମରଣୀୟ ହୋଇପାରିଛି ଏଥିରେ ସନ୍ଦେହ ନାହିଁ । ଶ୍ରୀ ବିଜୁ ପଟ୍ଟନାୟକ ଚୌଦ୍ୱାରର ନୂତନ ସ୍ରଷ୍ଟା ନିର୍ମାଣ ପାଇଁ ସ୍ମରଣୀୟ ହୋଇ ରହିବେ ।

ଚୌଦ୍ୱାରରେ ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁ ପ୍ରତିଷ୍ଠା କଲେ 'ସେବାଶ୍ରମ' ଓ 'କୁଷ୍ଠାଶ୍ରମ' । ସେ ପୁଣି ଏଠାରେ ୧୯୪୫ ମସିହା ଅଗଷ୍ଟ ୧ ତାରିଖରୁ ୧୨ ତାରିଖ ପର୍ଯ୍ୟନ୍ତ ବିଭିନ୍ନ ୧୨ଟି ସମ୍ମିଳନୀ କରାଇଥିଲେ । ଏହା ଫଳରେ ଚୌଦ୍ୱାରରେ ଏକ ନୂତନ ଜାଗରଣ ସୃଷ୍ଟି ହୋଇଥିଲା ।

ପ୍ରାଚୀନ ରାଜଧାନୀ ଚୌଦ୍ୱାର ସମ୍ପର୍କରେ ଗବେଷଣା କରାଗଲେ, ଅନେକ ତଥ୍ୟ ମିଳିପାରନ୍ତା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମିଳୁଥିବା ସେକାଳର ମୂର୍ତ୍ତି ଓ ତାମ୍ରପଟ୍ଟାରୁ ଚୌଦ୍ୱାରର ରୂପରେଖ ଜଣାପଡ଼ିଥାଏ । ଉଦ୍ୟୋତ କେଶରୀଙ୍କର ଯେଉଁ ତାମ୍ରପଟ୍ଟା ମିଳିଛି, ସେଥିରେ କେଶରୀ ବଂଶର ଜନ୍ମେଜୟ କେଶରୀ ଉତ୍କଳ ଜୟ କରିଥିବା ଉଲ୍ଲେଖ ହୋଇଛି । ୧୮୭୪ ଖ୍ରୀଷ୍ଟାବ୍ଦରେ ଚୌଦ୍ୱାରରେ ଥିବା କପାଳେଶ୍ୱରରୁ ଜନ୍ମେଜୟଙ୍କର ଯେଉଁ ତାମ୍ରପଟ୍ଟା ମିଳିଛି, ସେଥିରୁ ଜନ୍ମେଜୟ ଉତ୍କଳ ବିଜେତା ଓ ଚୌଦ୍ୱାରର ସ୍ଥାପନକାରୀ ବୋଲି ଐତିହାସିକମାନେ ସ୍ୱୀକାର କରିଥାନ୍ତି ।

ସେହି ତାମ୍ରପଟ୍ଟା ଉପରେ ୧୮୭୭ ମସିହାରେ "ଇଣ୍ଡିଆନ୍ ଏଣ୍ଟିକ୍ୱେରି" ୫ମ ଭାଗରେ ଏକ ଆଲୋଚନା ପ୍ରକାଶ ପାଇଛି । ତତ୍କାଳୀନ ଡେପୁଟୀ କଲେକ୍ଟର ରଙ୍ଗଲାଲ ବାନାର୍ଜିଙ୍କ ମତରେ—"ଜନ୍ମେଜୟ ହେଉଛନ୍ତି ଜଣେ ଭାରତ ସମ୍ରାଟ । ସେ ସର୍ପଯଜ୍ଞ ଶେଷ କରିବା ପରେ, ଚୌଦ୍ୱାର ଦୁର୍ଗ ତୋଳାଇ ସେଠାରେ ରାଜଧାନୀ କରିଥିଲେ ।" କେଶରପୁରବାସୀ ମଦନ ନାହାକଙ୍କ ପାଞ୍ଜିରେ ଅନୁରୂପ ମନ୍ତବ୍ୟ ଦିଆଯାଇଛି । କେଶରପୁର ହେଉଛି ଚୌଦ୍ୱାର ନିକଟବର୍ତ୍ତୀ । ସେ ଦର୍ଶାଇଛନ୍ତି—"ଶ୍ରୀ ଜନ୍ମେଜୟ ଦେବ ରାଜ୍ୟ କଲେ ୧୭୫ ବର୍ଷ । ଏ ରାଜା ଜନ୍ମ-ମରଣ କଥା ଜାଣନ୍ତି । ଏ ରାଜା ଚୌଦ୍ୱାର କଟକ କଲେ । ଶ୍ରୀ ଉତ୍ତରେଶ୍ୱର ଦେଉଳ କଲେ । ଏ ରାଜା ଉତ୍ତରେଶ୍ୱରଙ୍କଠାରେ ସର୍ପଯଜ୍ଞ କଲେ । ମାଦଳାପାଞ୍ଜି କହେ—କେଶରୀ ବଂଶ ପଞ୍ଚବଂଶ ରାଜା ଚୌଦ୍ୱାରକୁ ଓଡ଼ିଶାର ରାଜଧାନୀ କରିଥିଲେ । ଏହି ପଞ୍ଚବଂଶ ରାଜା ହେଉଛନ୍ତି ଜୟୁକେଶରୀ ବୋଲି ମାଦଳାପାଞ୍ଜିରେ, ଗଣନାକାରୀମାନେ କହିଛନ୍ତି । 'ଜନ୍ମେଜୟ କେଶରୀଙ୍କୁ 'ଜୟୁକେଶରୀ' ବୋଲି ଏଠାରେ କୁହାଯାଇଥିବା ଐତିହାସିକ-ମାନେ ମତ ଦିଅନ୍ତି । 'ଜନ୍ମେଜୟ', 'ଜୟୁକେଶରୀ' ଶବ୍ଦରୁ ମିଳିପାରୁଛି ବୋଲି ସେମାନେ କହିଥାଆନ୍ତି । ତେଣୁ 'ଜୟୁକେଶରୀ' ଶବ୍ଦ ପାଇଁ ଆଉ ସ୍ୱୀକାର ବିଭ୍ରାଟ ହେବା ଅନାବଶ୍ୟକ ବୋଲି ଐତିହାସିକମାନେ କହନ୍ତି । ଚୌଦ୍ୱାର ଅଞ୍ଚଳରୁ ମିଳୁଥିବା ଛୋଟ ଛୋଟ ସ୍ୱର୍ଣ୍ଣମୁଦ୍ରାକୁ ଗବେଷକମାନେ ବିଶ୍ଳେଷଣ କରୁଛନ୍ତି ।

ଏହାର ଗୋଟିଏ ପାଖରେ ଓଡ଼ିଆ ଅଙ୍କ ଲେଖାଯାଇଛି । ଅନ୍ୟ ପାଖରେ ଷଣ୍ଢର ଚିହ୍ନ ରହିଛି । ଯେଉଁ ପାଖରେ ଓଡ଼ିଆ ଅଙ୍କ ଲେଖା ହୋଇଛି, ସେହି ପାଖରେ ରାଜାଙ୍କ ନାମ ତେଲୁଗୁ ଅକ୍ଷରରେ ଲିଖିତ ହୋଇଥିବା ଜଣାପଡ଼ିଛି ।

ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗଦେବ ଚୌଦ୍ୱାରକୁ ନିଜ ରାଜଧାନୀ କରିଥିବା ପ୍ରମାଣ ମିଳିଥାଏ । ଏଠାରୁ ଯେଉଁ ମୁଦ୍ରା ମିଳୁଛି, ସେଥିରେ ରାଜାଙ୍କର ନାମ ସଂକ୍ଷିପ୍ତ ଆକାରରେ ଲେଖା ହୋଇଛି । ଯଥା—'ଶ୍ରୀ ଅନ' ବା 'ଶ୍ରୀ ଗଗ' । ଗବେଷକଙ୍କ ମତ 'ଶ୍ରୀ ଅନ' ଅନନ୍ତ ବର୍ମାଙ୍କୁ ଓ 'ଶ୍ରୀ ଗଗ' ସମ୍ଭବତଃ ଗଙ୍ଗେଶ୍ୱରଙ୍କୁ ବୁଝାଉଅଛି । ତେଣୁ ଏହା ଗଙ୍ଗେଶ୍ୱର ଅନନ୍ତବର୍ମା ଚୋଡ଼ଗଙ୍ଗଙ୍କ ସମୟର ମୁଦ୍ରା ହୋଇ ପାରିଥାଏ ବୋଲି

ମତାମତ ପ୍ରକାଶ ପାଉଛି । ପୁଣି ଚୌଦ୍ୱାରଠାରେ ନିର୍ମିତ ଦୁର୍ଗ ଭିତରେ ଯେଉଁ ପୋଖରୀ ଖୋଳା ଯାଇଥିଲା, ତାହାର ନାମ 'ଗ୍ଙ୍ଗେଡ଼ଗଙ୍ଗ' ପୋଖରୀ ନାମରେ ପରିଚିତ ବୋଲି ସୂଚନା ମିଳିଲଣି । ଏ ସମ୍ପର୍କରେ ଯାହା ଲିଖିତ ପ୍ରମାଣ ମିଳୁଛି ତାହା ଏହିପରି । ଶ୍ରୀ ଗ୍ଙ୍ଗେଡ଼ଗଙ୍ଗ ଦେବ ରାଜ୍ୟ କଲେ ୯୦ ବର୍ଷ । ଏ ରାଜା ଗ୍ଙ୍ଗେଡ଼ଗଙ୍ଗ ପୋଖରୀ ଖୋଳାଇଲେ । ପ୍ରଥମେ ଯାଜନଗ୍ର କଟକ କଲେ । ଦ୍ୱିତୀୟେ ଅମରାବତୀ କଟକ କଲେ । ତୃତୀୟେ ଚୌଦ୍ୱାର କଟକ କଲେ । ଚତୁର୍ଥେ ବାରାଣସି କଲେ । ପୂର୍ବ ପଶ୍ଚିମ ପୋଖରୀ ଖୋଳାଇଲେ ।" (ମଦନ ମାହାଳଙ୍କ ପାଞ୍ଜି) ।

ଏହି ଲେଖା ସହିତ ଚୌଦ୍ୱାରଠାରେ ମିଳିଥିବା ମୁଦ୍ରାର ସାମଞ୍ଜସ୍ୟ ରହିଥିବାରୁ, ଗବେଷକଙ୍କ ମତ ଯେ ସମ୍ଭବତଃ ଗ୍ଙ୍ଗେଡ଼ଗଙ୍ଗ ଓଡ଼ିଶା ଦଖଲ କରିବା ପରେ, ଚୌଦ୍ୱାରଠାରେ କିଛି ବର୍ଷ ବିତାଇଥିଲେ । ଏହି ଅବସରରେ ସେ ହୁଏତ ସେଠାରେ ରାଜଧାନୀ ପାଇଁ ସ୍ଥାନକୁ ମନୋନୀତ କରିପାରି ଥାଆନ୍ତି । ବର୍ତ୍ତମାନ ଏସବୁ ଆଲୋଚନା ପରେ, ଆଉ ଗୋଟିଏ ଅମୀମାଂସିତ ପ୍ରଶ୍ନ ମନକୁ ଆସିବା ସ୍ୱାଭାବିକ । 'ଚୌଦ୍ୱାର' ରାଜଧାନୀ ହେବା ପୂର୍ବରୁ ଏହାର ପୂର୍ବ ନାମକରଣ କ'ଣ ଥିଲା ? ଯଦି ଏହାର ନାମକରଣ କିଛି ହୋଇଥିଲା, ତେବେ ତାହାକୁ କିଏ ସୃଷ୍ଟି କରିଥିଲା ? ଚୌଦ୍ୱାରକୁ ଓଡ଼ିଶା ମାନଚିତ୍ରରେ ସ୍ୱତନ୍ତ୍ର ସ୍ଥାନ ଦିଆଯାଇ, ଏହା ଉପରେ ଅଧିକ ଆଲୋଚନା ହେବା ଆବଶ୍ୟକ । ଉତ୍କଳ ଇତିହାସର ଏହା ଏକ ଅଜ୍ଞାତ ଅଧ୍ୟାୟ ନହେଉ, ଏଥିପ୍ରତି ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଓ ଗବେଷକମାନେ ଦୃଷ୍ଟି ଦେବା ଉଚିତ୍ ।

ଆଜି ଚୌଦ୍ୱାର ଆଧୁନିକ ଶିଳ୍ପ, ସଭ୍ୟତା ଓ ସଂସ୍କୃତିରେ ଉନ୍ନତ ହୋଇ ପାରିଛି ବୋଲି ଯାହା ଦେଖାଯାଉଛି, ୧୧ଶ ବା ୧୨ଶ ଶତାବ୍ଦୀରେ ଏହି ସ୍ଥାନ ଏହାଠାରୁ ଆହୁରି ଅଧିକ ସମୃଦ୍ଧ ହୋଇପାରି ଥିଲା କହିବା ଅସଙ୍ଗତ ନୁହେଁ । ଚୌଦ୍ୱାର ପଛରେ ଯେଉଁ ଇତିହାସ ରହିଛି, ସେହି ଇତିହାସକୁ ପୁନର୍ଜୀବିତ କରାଇବା ଉତ୍କଳବାସୀଙ୍କ କର୍ତ୍ତବ୍ୟ । ଏ ଦିଗରେ କେବଳ ବେସରକାରୀ ଭାବେ ନୁହେଁ, ସରକାରୀ ଉଦ୍ୟମର ମଧ୍ୟ ଅବହେଳା ହେବା ଉଚିତ୍ ନୁହେଁ । ଚୌଦ୍ୱାର-କଟକ ସମ୍ପର୍କରେ ଏହା ପୂର୍ଣ୍ଣାଙ୍ଗ ବିବରଣୀ ନୁହେଁ--ସଂକ୍ଷିପ୍ତ ପରିଚୟ ମାତ୍ର ଉପସ୍ଥାପନ କରାଯାଇଛି ।



# ଶାରଙ୍ଗଗଡ଼

ଡଃ. ଜଗନ୍ନାଥ ପଟ୍ଟନାୟକ

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସ ଏକ ଘଟଣାବହୁଳ ତଥା ଗୌରବଗରିମାମୟ କାହାଣୀ । ତତ୍କାଳୀନ ଓଡ଼ିଶା ବହୁବିଧ କୀର୍ତ୍ତିରେ ବର୍ଣ୍ଣାଢ଼୍ୟ ହୋଇଥିଲା । ତନ୍ମଧ୍ୟରୁ କେତେକ କାଳର କବଳତାର ଶିକାର ହୋଇ ଭୂଗର୍ଭରେ ଲୁକ୍‌କାୟିତ । ଅନ୍ୟ କେତେକ ମଧ୍ୟ ଅଦ୍ୟାବଧି ମୂକସାକ୍ଷୀ ରୂପେ ଦଣ୍ଡାୟମାନ ହୋଇ ଓଡ଼ିଆଙ୍କର କାରିଗରି ନୈପୁଣ୍ୟ ଓ ପରାକାଷ୍ଠାର ପ୍ରମାଣ ଦେଇଥାଏ । ସେହିପରି ଏକ କୀର୍ତ୍ତିର ଭଗ୍ନାବଶେଷ ଭୁବନେଶ୍ୱରଠାରୁ ୨୦ କିଲୋମିଟର ଉତ୍ତରକୁ ଓ କଟକଠାରୁ ୧୦ କିଲୋମିଟର ଦୂର ବାରଙ୍ଗ ରେଳଷ୍ଟେସନଠାରେ ଅବସ୍ଥିତ । ତାହା ହେଉଛି ଶାରଙ୍ଗଗଡ଼ । ପଞ୍ଚକଟକର ମଧ୍ୟରେ ଏହା ଅନ୍ୟତମ ।

ଏହି ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ମାତ୍ର ରହିଥିବାରୁ ସେ ବିଷୟରେ ଏକ ବର୍ଣ୍ଣନା ଦେବା ସମ୍ଭବପର ନୁହେଁ । କେବଳ ମାତ୍ର ଦୁଇଟି ପ୍ରାଚୀର, କୂପ, ଗୋଲର ସଙ୍କେତ ରହିଛି । ତାହା ମଧ୍ୟ ଜଙ୍ଗଲ ମଧ୍ୟରେ ଲୁକ୍‌କାୟିତ । ଏହି କେତେକ ସଙ୍କେତକୁ ବିଶ୍ଳେଷଣ କରି ଅଳ୍ପ କିଛି ବର୍ଣ୍ଣନା ଦିଆଯାଇପାରେ । ଏ ସମ୍ପର୍କରେ ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତଃ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଇତିହାସ ଓ କିମ୍ବଦନ୍ତୀ' ପୁସ୍ତକରେ ପ୍ରବନ୍ଧଟିଏ ଲେଖିଛନ୍ତି । ତାଙ୍କର ବର୍ଣ୍ଣନାନୁସାରେ ଏହି ଦୁର୍ଗଟି ବେଶ୍ ସୁରକ୍ଷିତ ଥିଲା । ଦୁର୍ଗଠାରୁ କିଛି ଦୂରକୁ ପ୍ରାୟ ୩ କିଲୋମିଟର ଲମ୍ବ ଓ ୨୫ ଫୁଟ ପ୍ରଶସ୍ତ ଏକ ବହିଃପ୍ରାଚୀର ରହିଥିଲା । ବାରଙ୍ଗନାଳଠାରୁ ପୂର୍ବରୁ ପଶ୍ଚିମକୁ ଏହା ବିସ୍ତାରଲାଭ କରିଥିବାର ଜଣାଯାଏ । ଏହି ବହିଃପ୍ରାଚୀରର ଧାରେ ଧାରେ ଗୋଟିଏ ଜଳପୂର୍ଣ୍ଣ ପରିଖା ବା ଗଡ଼ଖାଇ ଓ ତା'ର ମଧ୍ୟବର୍ତ୍ତୀ ସ୍ଥାନରେ ଗୋଟିଏ ବିରାଟ ସୁଡ଼ଙ୍ଗ ବା ଗୁପ୍ତଦ୍ୱାର ରହିଥିଲା । କେବଳ ସେଠାରେ କାହିଁକି, ସେହି ସମୟରେ ନିର୍ମିତ ବହୁ ଦୁର୍ଗରେ ଏହି ବ୍ୟବସ୍ଥା ରହିଥିବାର ଦେଖାଯାଏ । ଦୁର୍ଗଟିକୁ ସୁରକ୍ଷିତ କରି ରଖିବା ଥିଲା ଏହାର ଆଭିମୁଖ୍ୟ । ଏପରିକି ମଧ୍ୟଯୁଗୀୟ ୟୁରୋପରେ ସାମନ୍ତମାନଙ୍କ ଦ୍ୱାରା ନିର୍ମିତ ଦୁର୍ଗଗୁଡ଼ିକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ତା'ର ଚତୁର୍ଦ୍ଦିଗରେ ଏହିପରି ଜଳପରିପୂର୍ଣ୍ଣ ଗଡ଼ଖାଇର ବ୍ୟବସ୍ଥା ରହିଥିବାର ଜଣାଯାଏ । ବହିଃପ୍ରାଚୀର ବ୍ୟତୀତ ଦୁର୍ଗକୁ ପ୍ରାୟ ସଂଲଗ୍ନ କରି ଏକ ଭିତର

ପାଚେଶୀ ନିର୍ମାଣ କରାଯାଇଥିଲା । ଏହି ପ୍ରାଚୀରରେ ଠାଏ ଠାଏ ସୈନ୍ୟମାନଙ୍କର ବାସଗୃହ ଓ କୂପ ଇତ୍ୟାଦିର ଭଗ୍ନାବଶେଷ ଦେଖାଯାଏ । ସୈନ୍ୟମାନଙ୍କ ପାଇଁ ମଧ୍ୟ ଏକ ଶସ୍ୟାଗାର ରହିଥିଲା । ତାହା ଏବେ ଭଗ୍ନସ୍ତୂପରେ ପରିଣତ ହୋଇଥିଲେ ମଧ୍ୟ ସେଥିରେ ଗଚ୍ଛିତ ତଣ୍ଡୁଳ ବର୍ତ୍ତମାନ ସୁଦ୍ଧା ଅର୍ଦ୍ଧ ମୃତ୍ତିକାକାରରେ ଦେଖାଯାଇଥିବା ବିଷୟ ଡକ୍ଟର ପାଣିଗ୍ରାହୀଙ୍କ ବର୍ଣ୍ଣନାରୁ ଜାଣିବାକୁ ମିଳେ । ସେହିପରି ବହିଃପ୍ରାଚୀର ନିକଟରେ ମାଙ୍କଡ଼ା-ପଥରରେ ନିର୍ମିତ ଏକ ଗୋଲ ମଧ୍ୟ ରହିଥିଲା । ଏହି ବ୍ୟବସ୍ଥା ଦୁର୍ଗଟିକୁ ସୁରକ୍ଷିତ କରି ରଖିଥିଲା । ଏତଦ୍‌ବ୍ୟତୀତ ଦୁର୍ଗଟିର ପ୍ରାକୃତିକ ପରିବେଶ ମଧ୍ୟ ଏହାକୁ ଅଧିକ ସୁଦୃଢ଼ କରାଇଥିଲା । ଅନତିଦୂରରେ କୁଆଖାଇ ନଦୀ, ବାରଙ୍ଗନାଳ, ଅରଣ୍ୟ, ଅନୁଚ୍ଚପର୍ବତ ଓ ବିସ୍ତୀର୍ଣ୍ଣ ହ୍ରଦ ଆଦି ପରିବେଶ ମଧ୍ୟରେ ଏହାର ଥିଲା ଅବସ୍ଥିତି । ଏହା ହେଉଛି ଦୁର୍ଗଟି ସମ୍ବନ୍ଧରେ ଏକ ସଂକ୍ଷିପ୍ତ ବର୍ଣ୍ଣନା ।

ତା'ପରେ ଦେଖାଯାଉ ଦୁର୍ଗଟିର ନିର୍ମାତା କିଏ ଓ କେଉଁ ସମୟରେ ଏହା ନିର୍ମାଣ କରାଯାଇଥିଲା ? ଏହା ଇତିହାସରେ ଏକ ବିବାଦୀୟ ଅଧ୍ୟାୟ । ଡକ୍ଟର ପାଣିଗ୍ରାହୀ ଓ ଡକ୍ଟର ମହତାବ ପ୍ରମୁଖ ଐତିହାସିକ ଏହାକୁ ପ୍ରଥିତଯଶା ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ନିର୍ମାଣ କରିଛନ୍ତି ବୋଲି ମତବ୍ୟକ୍ତ କରିଥିବାସ୍ଥଳେ ମାଦଳାପାଞ୍ଜି ଓ କୃପାସିନ୍ଧୁ ମିଶ୍ରଙ୍କ ପୁସ୍ତକରେ ଏହାର ନିର୍ମାଣ ସୋମବଂଶୀ କେଶରୀ ନରପତି ଶାରଙ୍ଗ-କେଶରୀ ବୋଲି ଉଲ୍ଲେଖ କରାଯାଇଛି । ମାତ୍ର ପ୍ରକୃତପକ୍ଷେ ତତ୍କାଳୀନ ଅନ୍ୟାନ୍ୟ ତଥ୍ୟ ଓ ପରବର୍ତ୍ତୀ ସମୟର ବର୍ଣ୍ଣନାକୁ ଅନୁଶୀଳନ କଲେ ଚୋଡ଼ଗଙ୍ଗଦେବ ଏହାର ପ୍ରକୃତ ନିର୍ମାତା ବୋଲି କୁହାଯାଇ ପାରିବ । ଉପରୋକ୍ତ ସିଦ୍ଧାନ୍ତରେ ଉପନୀତ ହେବାରେ ଦର୍ଶା-ଯାଇଥିବା କାରଣ ହେଉଛି ନିମ୍ନପ୍ରକାରର ।

ଡକ୍ଟର ପାଣିଗ୍ରାହୀ ଲେଖିଛନ୍ତି ଯେ ଶାରଙ୍ଗଗଡ଼ର ସ୍ଥାପୟିତା ଚୋଡ଼ଗଙ୍ଗଦେବଙ୍କ ନାମାନୁସାରେ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଚୁଡ଼ଙ୍ଗଗଡ଼ ବା ଚୁଡ଼ଙ୍ଗ କଟକ ନାମରେ ଅଭିହିତ ହୋଇଥିଲା । ଏହାର ପ୍ରମାଣ ଆମେ ପଞ୍ଚଦଶ ଶତାବ୍ଦୀର ପ୍ରଥମ ପାଦରେ ରଚିତ ଶାରଳା ଦାସଙ୍କ ମହାଭାରତ ପୃଷ୍ଠାରୁ ଜାଣିବାକୁ ପାଉଁ । ବିରାଟ ରାଜାଙ୍କ ରାଜ୍ୟରେ ଭୀମ ଯେଉଁ ମଲ୍ଲ ସହିତ ଯୁଦ୍ଧ କରିଥିଲେ, ସେହି ମଲ୍ଲଙ୍କ ବୀରବିକ୍ରମ ଉପରେ ବର୍ଣ୍ଣନା କରିବାକୁ ଯାଇ ଶାରଳା ଦାସ ବିରାଟ ପର୍ବରେ ଲେଖିଛନ୍ତି "ବୀର ଚୁଡ଼ଙ୍ଗ ନଗର ପଶ୍ଚିମର କୋଣେ; ବଜ୍ରବାହୁ ପଡ଼େ ନବ ସହସ୍ର ଯୋଜନେ । ପଞ୍ଚସହସ୍ର ଯୋଜନ ଯେ କଟକ ସ୍ଥଳୀ; ସେ ମାର ପଡ଼ିଲା ପାଞ୍ଚଯୋଜନ ଉଗୁଳି ।" ଏଠାରେ ଚୁଡ଼ଙ୍ଗ କଟକ ବା ଚୁଡ଼ଙ୍ଗ-ଗଡ଼କୁ ଚୁଡ଼ଙ୍ଗନଗର ବୋଲି ବର୍ଣ୍ଣନା କରାଯାଇଛି । ଏ ସମ୍ପର୍କେ ଡକ୍ଟର ପାଣିଗ୍ରାହୀ ମତବ୍ୟକ୍ତ କରି ଯଥାର୍ଥରେ ଲେଖିଛନ୍ତି "ଏହି ଚୁଡ଼ଙ୍ଗନଗର ବା ଚୁଡ଼ଙ୍ଗକଟକ ଯେ ଓଡ଼ିଶାରେ ଅବସ୍ଥିତ ଥିଲା ଓ ଏହା ଯେ କାଳ୍ପନିକ ନାମ ନୁହେଁ—ଏହା ମଧ୍ୟ ଶାରଳା ଦାସଙ୍କ ମହାଭାରତରୁ ନିଶ୍ଚିତ ରୂପେ ଜଣାଯାଏ । ତା'ଛଡ଼ା ଚୁଡ଼ଙ୍ଗଦେଶ ବା ଚୁଡ଼ଙ୍ଗ-କଟକ ତାଙ୍କ ମହାଭାରତରେ ଅନେକ ସ୍ଥାନରେ ବର୍ଣ୍ଣିତ ହୋଇଛି । ଏଠାରେ ଉଲ୍ଲେଖ-ଯୋଗ୍ୟ ଯେ ଶାରଳା ଦାସଙ୍କ ମହାଭାରତ ମୂଳ ସଂସ୍କୃତ ମହାଭାରତର ଅନୁକରଣ,

ଅନୁଶୀଳନ ବା ଅନୁବାଦ ନୁହେଁ । ଏହା ତତ୍କାଳୀନ ଓଡ଼ିଶାର ବିଶ୍ୱକୋଷ କହିଲେ ଚଳେ” । (ଇତିହାସ ଓ କିମ୍ବଦନ୍ତୀ ପୃଷ୍ଠା ୪୩-୫୭)

କେବଳ ସେତିକି ନୁହେଁ । ଚୁଡ଼ଙ୍ଗ କଟକର ସ୍ଥାପୟିତା ଚୋଡ଼ଗଙ୍ଗ ଦେବ ଓ ଏହା ଚୁଡ଼ଙ୍ଗଗଡ଼ ବୋଲି ଅନ୍ୟ କେତୋଟି ପ୍ରମାଣ ଦେଖିବାକୁ ମିଳେ । ୧୮୨୨ ଖ୍ରୀଷ୍ଟାବ୍ଦରେ ଏ. ଷ୍ଟାର୍ଲିଂ ‘An account of Orissa proper on Cuttack’ ପୁସ୍ତକରେ ଲେଖିଛନ୍ତି ଯେ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗ ଦେବ ପଞ୍ଚକଟକ ନିର୍ମାଣ କରିଥିଲେ । ମାଦଳାପାଞ୍ଜିରେ ମଧ୍ୟ ପଞ୍ଚକଟକ ବିଷୟରେ ଉଲ୍ଲେଖ କରାଯାଇଛି । ତନ୍ମଧ୍ୟରୁ ଯାଜପୁର କଟକ, ଅମରାବତୀ କଟକ, ଚୌଦ୍ୱାର କଟକ ଓ ବାରଣାସୀ କଟକ । ଏହିପରି ୪ଟି କଟକର ନାମ ଉଲ୍ଲେଖ ଅଛି । ପଞ୍ଚମ କଟକର ନାମ ଲେଖା ନାହିଁ । ଏଥିରେ ଲେଖାଅଛି “ଚୁଡ଼ଙ୍ଗଦେବ ଭୋଗ କଲେ ୭୪ ବର୍ଷ—ଏ ରାଜା ପ୍ରଥମେ କଟକ କଲେ, ଦ୍ୱିତୀୟେ ଅମରାବତୀ କଲେ, ତୃତୀୟେ ଚଉଦ୍ୱାର କଲେ । ଚତୁର୍ଥେ ବାରାଣାସୀ କଟକ କଲେ, ପଞ୍ଚମେ ଅଙ୍ଗଦେଶ କଲେ, ଷଷ୍ଠେ କାଶୀକ୍ଷେତ୍ର କଲେ । ଏ ଗଙ୍ଗାଠାରୁ ଗୌତମୀ ପର୍ଯ୍ୟନ୍ତ ଏକଛତ୍ର କଲେ ।” (ମାଦଳାପାଞ୍ଜି ପୃଷ୍ଠା ୧୪୦)

ଏ ସମ୍ପର୍କରେ ଡକ୍ଟର ପାଣିଗ୍ରାହୀ ମତବ୍ୟକ୍ତ କରି କହିଛନ୍ତି ଯେ, “ଅଙ୍ଗଦେଶ ବା କାଶୀକ୍ଷେତ୍ର ବୋଲି ଓଡ଼ିଶାରେ କୌଣସି ସ୍ଥାନ ବା ଦୁର୍ଗ ନାହିଁ । ମାତ୍ର ପ୍ରଥମ ୪ଟି ଦୁର୍ଗ ସହିତ ଏହି ନାମ ଦୁଇଟିକୁ ବିଚାର କଲେ ଜଣାଯାଏ ଯେ ଶାରଙ୍ଗଗଡ଼ ଓ କାଣିଆ-ଗଡ଼କୁ ପାଞ୍ଜିକାର ବିକୃତ ବା ପ୍ରଚ୍ଛନ୍ନ ଭାବରେ ଅଙ୍ଗଦେଶ ଓ କାଶୀକ୍ଷେତ୍ର ବୋଲି ବର୍ଣ୍ଣନା କରିଛନ୍ତି ।” (ଇତିହାସ ଓ କିମ୍ବଦନ୍ତୀ ପୃଷ୍ଠା ୪୩-୫୭) ଏହି କାଣିଆଗଡ଼ ଚନ୍ଦକାରୁ ଖୋର୍ଦ୍ଧାଗଡ଼ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତାର ଡାଲୁଗ୍ରାମ ନିକଟରେ ଅବସ୍ଥିତ ହୋଇଥିଲା ବୋଲି ଡକ୍ଟର ପାଣିଗ୍ରାହୀ ଲେଖିଛନ୍ତି । ସେ ଯାହା ହେଉ, ଚୋଡ଼ଗଙ୍ଗ ଦେବ ଥିଲେ ଜଣେ ପ୍ରବଳ ପରାକ୍ରମଶାଳୀ ନରପତି । ସେ ଓଡ଼ିଶାରେ ୭୯ ବର୍ଷ (ଖ୍ରୀଷ୍ଟ ୧୦୭୮-୧୧୪୭) ରାଜୁତି କରି ଉତ୍ତରରେ ଗଙ୍ଗାନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏକ ବିଶାଳ ସାମ୍ରାଜ୍ୟ ସ୍ଥାପନ କରି ତାକୁ ସୁରକ୍ଷିତ କରି ରଖିବା ପାଇଁ ଚାହିଁଥିଲେ । ପୁନଶ୍ଚ ୧୧୩୫ ଖ୍ରୀଷ୍ଟାବ୍ଦରେ ନିଜର ରାଜଧାନୀ କଳିଙ୍ଗ ନଗରରୁ କଟକକୁ ସ୍ଥାନାନ୍ତରିତ କରି ତା’ର ନାମ ରଖିଥିଲେ ଅଭିନବ ବାରାଣସୀ କଟକ । ସୁତରାଂ ବିଶାଳ ସାମ୍ରାଜ୍ୟ ଓ ନବନିର୍ମିତ ରାଜଧାନୀକୁ ସୁରକ୍ଷିତ କରି ରଖିବା ପାଇଁ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ସେ କେତୋଟି ଦୁର୍ଗ ନିର୍ମାଣ କରିଥିଲେ । ତନ୍ମଧ୍ୟରୁ ଏହି ଚୁଡ଼ଙ୍ଗଗଡ଼ ଥିଲା ଅନ୍ୟତମ । ତାଙ୍କ ଦ୍ୱାରା ନିର୍ମିତ ଅନ୍ୟାନ୍ୟ କୀର୍ତ୍ତି ସେ ତାଙ୍କ ରାଣୀଙ୍କ ନାମରେ ନାମିତ କରାଇଥିବାର ଜଣାଯାଏ । ରାଣୀ କୌଶଲ୍ୟାଗଙ୍ଗା ଓ ଲକ୍ଷ୍ମୀ ଦେବୀଙ୍କ ନାମରେ ସେ ଦୁଇଟି ଜଳାଶୟ ଖୋଦନ କରାଇ ତା’ର ନାମ ରଖିଥିଲେ ଯଥାକ୍ରମେ କୌଶଲ୍ୟାଗଙ୍ଗା ଓ ଲକ୍ଷ୍ମୀସାଗର । ତା’ର ସଙ୍କେତ ଭୁବନେଶ୍ୱର ଓ ତା’ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଏବେ ମଧ୍ୟ ଦେଖାଯାଏ, ସେପରି ସ୍ଥଳେ ସେ ଦୁର୍ଗ ନିର୍ମାଣ କରି ତା’ର ନାମ ଚୁଡ଼ଙ୍ଗଗଡ଼

ରଖିପାରି ଥାଆନ୍ତି । ସମ୍ଭବତଃ ଉକ୍ତ ଅଞ୍ଚଳର ତତ୍କାଳୀନ ନାମ ଥିଲା ଶାରଙ୍ଗ । ଏପରି ନାମକରଣ ଯଥା: ବାରଙ୍ଗ, ତେଲଙ୍ଗ ଟାପଙ୍ଗ, ରେଡାଙ୍ଗ, ଏହି ଅଞ୍ଚଳର ସ୍ଥାନଗୁଡ଼ିକର ନାମ ରହିଛି । ଶାରଙ୍ଗଗଡ଼ର ଗୋଟିଏ ଅଞ୍ଚଳ ଅଦ୍ୟାବଧି ଚୁଡ଼ଙ୍ଗଗଡ଼ ନାମରେ ଅଭିହିତ । ଏଥିରୁ ଅନୁମାନ କରାଯାଇପାରେ ଯେ, ଚୋଡ଼ଗଙ୍ଗଦେବଙ୍କ ଦ୍ୱାରା ସ୍ଥାପିତ ଦୁର୍ଗଟି ସେତେବେଳେ ଉଭୟ ଶାରଙ୍ଗଗଡ଼ ଓ ଚୁଡ଼ଙ୍ଗଗଡ଼ ନାମରେ କଥିତ ହୋଇଥିଲା । ପରବର୍ତ୍ତୀ ସମୟରେ ଚୁଡ଼ଙ୍ଗଗଡ଼ ନାମଟି ଲୋପ ପାଇ ଶାରଙ୍ଗଗଡ଼ ନାମଟି ପ୍ରାଧାନ୍ୟ ଲାଭ କରିଛି । ଏ ସମ୍ପର୍କରେ ଡକ୍ଟର ହରେକୃଷ୍ଣ ମହତାବ ମଧ୍ୟ ଲେଖିଛନ୍ତି ଯେ, ଚୁଡ଼ଙ୍ଗଗଡ଼ର ପରବର୍ତ୍ତୀ ନାମ ଶାରଙ୍ଗଗଡ଼ ହୋଇଛି । (ଓଡ଼ିଶା ଇତିହାସ, ପୃଷ୍ଠା ୧୮୯-୧୯୦) ।

ଅପରପକ୍ଷେ ମାଦଳାପାଞ୍ଜି, କୃପାସିନ୍ଧୁ ମିଶ୍ରଙ୍କ ଓଡ଼ିଶା ଇତିହାସ (ପୃଷ୍ଠା ୪୭) ଓ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ (ସପ୍ତମଖଣ୍ଡ-ପୃଷ୍ଠା ୮୪୩୧)ରେ ବର୍ଣ୍ଣିତ ଶାରଙ୍ଗଗଡ଼ର ନିର୍ମାତା କେଶରୀବଂଶର ନରପତି ଶାରଙ୍ଗକେଶରୀ ତଥ୍ୟଟି ସଠିକ୍ ବୋଲି କୁହାଯାଇ ନ ପାରେ । କାରଣ ତାମ୍ର ଓ ଶିଳାଲେଖରୁ ପ୍ରାପ୍ତ କେଶରୀବଂଶର ନରପତିଙ୍କ ନାମ ଥିଲା ଜନ୍ମେଜୟ, ପ୍ରଥମ ଯଯାତି, ଭୀମରଥ, ଧର୍ମରଥ, ନହୁଷ, ଇନ୍ଦ୍ରରଥ, ଦ୍ୱିତୀୟ ଯଯାତି, ଉଦ୍ୟୋତ କେଶରୀ । ମାତ୍ର ଶାରଙ୍ଗ କେଶରୀ ନାମରେ କେହି ନରପତି ଉକ୍ତ ବଂଶରେ ନ ଥିଲେ । ଏପରିକି ମାଦଳାପାଞ୍ଜିରେ ପ୍ରଦତ୍ତ କେଶରୀବଂଶର ନରପତିଙ୍କ ନାମ ଥିଲା ଜନ୍ମେଜୟ କେଶରୀ, ଯଯାତି କେଶରୀ, ଭୀମ କେଶରୀ, ଧର୍ମକେଶରୀ, ଇନ୍ଦ୍ରକେଶରୀ ଓ ଜନ୍ମେଜୟ କେଶରୀ । ଏଥିରେ ମଧ୍ୟ ଶାରଙ୍ଗକେଶରୀଙ୍କ ନାମ ନାହିଁ । ସୁତରାଂ ଶାରଙ୍ଗକେଶରୀ ଏକ ସୃଷ୍ଟ ନାମ । ଏତଦ୍‌ବ୍ୟତୀତ ଡକ୍ଟର ପାଣିଗ୍ରାହୀଙ୍କ ମତରେ, "ମାଦଳାପାଞ୍ଜି କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ଓ ଏହା ଚୋଡ଼ଗଙ୍ଗ ଦେବଙ୍କ ପ୍ରାୟ ପାଞ୍ଚଶତ ବର୍ଷ ପରେ ଲିଖିତ" (ଇତିହାସ ଓ କିମ୍ବଦନ୍ତୀ ପୃଷ୍ଠା ୧୨୭) ସେହି ଦୃଷ୍ଟିରୁ ବିଚାର କଲେ ମାଦଳାପାଞ୍ଜିରେ ପ୍ରଦତ୍ତ ତଥ୍ୟ ଭ୍ରମାତ୍ମକ ହୋଇପାରିଥାଏ ।

ତା'ପରେ ଦେଖାଯାଉ, ଶାରଙ୍ଗଗଡ଼ର ନିର୍ମାଣ ସମୟ । ଚୋଡ଼ଗଙ୍ଗଦେବ ୧୧୧୦ ଖ୍ରୀଷ୍ଟାବ୍ଦରେ ଉତ୍କଳ ଅଧିକାର କରିଥିଲେ । ସୁତରାଂ ତା'ପରେ ଯେ ଏହା ନିର୍ମିତ ହୋଇଥିବ, ଏଥିରେ ସନ୍ଦେହ ନାହିଁ । ପରେ ପରେ ସେ ବେଙ୍ଗୀ ଗୌଡ଼, ମନ୍ଦାରନ ଓ କୋଶଳ ଆଦି ରାଜ୍ୟ ଜୟ କରିବାରେ ବ୍ୟସ୍ତ ରହି ନିଜ ସାମ୍ରାଜ୍ୟ ବିସ୍ତାର କରିଥିଲେ । ତେଣୁ ଉତ୍କଳ ଅଧିକାର କରିବା ପରେ ପରେ ସେ ଯେ ତାକୁ ନିର୍ମାଣ କରିଥିବେ, ତାହା ମଧ୍ୟ ନୁହେଁ । ସମ୍ଭବତଃ ୧୧୩୫ ଖ୍ରୀଷ୍ଟାବ୍ଦରେ ସେ କଟକକୁ ନିଜର ରାଜଧାନୀ ସ୍ଥାନାନ୍ତରିତ କରିବା ପରେ ତାକୁ ସୁରକ୍ଷିତ କରିବା ପାଇଁ ଦୁର୍ଗ ନିର୍ମାଣର ଆବଶ୍ୟକତା ଉପଲବ୍ଧି କରିଥିଲେ । ସୁତରାଂ ଶାରଙ୍ଗଗଡ଼ଟି ୧୧୩୫ରୁ ୧୧୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମିତ ହୋଇ-ପାରିଥାଏ ।

ଏହା ହେଉଛି ଶାରଙ୍ଗଗଡ଼ର ଏକ ଐତିହାସିକ ଚିତ୍ର ।



# ଶାରଙ୍ଗଗଡ଼ କଟକ

ଡଃ. ବଚନ୍ଦ୍ରାନନ୍ଦ ମହାନ୍ତି

ପଞ୍ଚକଟକ ନାମରେ ବର୍ଣ୍ଣିତ କଟକଗୁଡ଼ିକ ହେଲା ଯାଜପୁର କଟକ, ଛତିଆ କଟକ, ଚୌଦ୍ୱାର କଟକ, ଅଭିନବ ବାରାଣସୀ କଟକ ଓ ଶାରଙ୍ଗଗଡ଼ କଟକ । 'କଟକ'ର ଅର୍ଥ ସେନା ଛାଉଣି । ଏହିସବୁ କଟକର ମୁଖ୍ୟ ଉଦ୍ଦେଶ୍ୟ ଥିଲା ରାଜଧାନୀକୁ ଶତ୍ରୁ ଆକ୍ରମଣରୁ ସୁରକ୍ଷିତ ରଖିବା ପାଇଁ ରାଜଧାନୀକୁ ପ୍ରବେଶ ପଥରେ ଶତ୍ରୁକୁ ପ୍ରତିରୋଧ କରିବା । ଓଡ଼ିଶାର ରାଜଧାନୀ ବାରାଣସୀ କଟକ ମହାନଦୀ ଓ କାଠଯୋଡ଼ି ମଧ୍ୟବର୍ତ୍ତୀ ଅଞ୍ଚଳରେ ଥିବାବେଳେ ବୈତରଣୀ କୂଳରେ ଯାଜପୁର କଟକ, ବିରୂପା ଓ ମହାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳରେ ଛତିଆ ବା ଅମରାବତୀ କଟକ, ମହାନଦୀର ଉତ୍ତରରେ ଚୌଦ୍ୱାର କଟକ ଓ କାଠଯୋଡ଼ି ନଦୀର ଉତ୍ତର ପାର୍ଶ୍ୱରେ ଶାରଙ୍ଗଗଡ଼ କଟକ ବା ଦୁର୍ଗମାନ ନିର୍ମିତ ହୋଇଥିଲା ।

କଟକ ସହରଠାରୁ ୧୦ କିଲୋମିଟର ଉତ୍ତରରେ କାଠଯୋଡ଼ି ନଦୀ ଅତିକ୍ରମ କରିବା ଉତ୍ତରେ ବାରଙ୍ଗ ରେଳଷ୍ଟେସନ ନିକଟବର୍ତ୍ତୀ ଜଙ୍ଗଲ ଭିତରେ ଅଦ୍ୟାବଧି ଶାରଙ୍ଗଗଡ଼ କଟକର ଅବଶେଷ ଦେଖିବାକୁ ମିଳେ । ଉତ୍ତର ପଟରେ ବାରଙ୍ଗ ନାଳଠାରୁ ପୂର୍ବରୁ ପଶ୍ଚିମକୁ ୩ କିଲୋଟର ଦୀର୍ଘ ଓ ୨୫ ଫୁଟ ଓସାରରେ ଏକ ବହିଃପ୍ରାଚୀର ଏହି ଦୁର୍ଗକୁ ବେଢ଼ି ରହିଥିଲା । ବହିଃପ୍ରାଚୀରର ଧାରେ ଧାରେ ଜଳପୂର୍ଣ୍ଣ ପରିଖାଟିଏ ଥିଲା । ଏହାର ମଧ୍ୟବର୍ତ୍ତୀ ସ୍ଥଳରୁ ଏକ ଗୁପ୍ତଦ୍ୱାର ବା ସୁଡ଼ଙ୍ଗ ରହିଥିଲା । ବାହାର ପ୍ରାଚୀରଠାରୁ ବହୁ ଦୂରରେ ନିବିଡ଼ ଅରଣ୍ୟ ମଧ୍ୟରେ ଅବସ୍ଥିତ ଥିବା ଯୋଗୁଁ ଏହି ଦୁର୍ଗ ଶତ୍ରୁ ଦ୍ୱାରା ଅଜେୟ ଓ ଅଭେଦ୍ୟ ରହିଥିଲା ।

ଏବେ ସୁଦ୍ଧା ଏହି ଦୁର୍ଗ ଭିତରେ ସୈନ୍ୟମାନଙ୍କ ବାସଗୃହ, କୂପ ଓ ଭିତର ପାଚେରୀର ଅବଶେଷ ଦେଖିବାକୁ ମିଳେ । ସୈନ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ ଶସ୍ୟାଗାର ଧ୍ୱଂସ ହୋଇଥିଲେହେଁ ଶସ୍ୟାଗାରରେ ରକ୍ଷିତ ଅର୍ଦ୍ଧ-ମୃତ୍ତିକାକାର ତଣ୍ଡୁଳ ଏବେ ସୁଦ୍ଧା ଦେଖାଯାଏ ।

ସ୍ୱର୍ଗତ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ମାଦଳା ପାଞ୍ଜିରେ ଚୋଡ଼ଗଙ୍ଗ ଦେବଙ୍କ ପ୍ରସଙ୍ଗରେ ଉଲ୍ଲେଖ ଅଛି, "ଏ ରାଜା ପ୍ରଥମେ କଟକ କଲେ । ଦ୍ୱିତୀୟେ ଅମରାବତୀ କଲେ । ତୃତୀୟେ ଚଉଦ୍ୱାର କଲେ । ଚତୁର୍ଥ ବାରାଣସୀ କଟକ କଲେ । ପଞ୍ଚମେ ଅଙ୍ଗଦେଶ କଲେ । ଷଷ୍ଠେ କାଶୀକ୍ଷେତ୍ର କଲେ । ଏ ଗଙ୍ଗାଠାରୁ ଗୌତମୀ ପର୍ଯ୍ୟନ୍ତ ଏକଛତ୍ର କଲେ । (ମାଦଳାପାଞ୍ଜି ପୃ. ୧୦୪)।" ଏଥିରେ ଯାଜପୁର କଟକକୁ କେବଳ କଟକ, ଅମରାବତୀ କଟକ (ଛତିଆ)କୁ ଅମରାବତୀ, ଚୌଦ୍ୱାର କଟକକୁ ଚଉଦ୍ୱାର, ବାରାଣସୀ କଟକକୁ ବାଣାରସୀ କଟକ କୁହାଯାଉଥିବା ସ୍ପଷ୍ଟ ହେଉଛି । ମାତ୍ର ଶେଷୋକ୍ତ ଦୁଇଟି ଗଡ଼କୁ ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଶାରଙ୍ଗଗଡ଼ ଓ କାଶିଆଗଡ଼ ବୋଲି ଚିହ୍ନିତ କରିଛନ୍ତି ।

ଚୋଡ଼ଗଙ୍ଗ ଦେବଙ୍କ ସହିତ ଶାରଙ୍ଗଗଡ଼ ଓ କାଶିଆଗଡ଼ର ସମ୍ପର୍କରେ ଚୋଡ଼ଗଙ୍ଗ ନାମରେ ନାମିତ ଏକ ପୁଷ୍କରିଣୀ ଶାରଙ୍ଗଗଡ଼ରେ ଅଛି ଓ କାଶିଆଗଡ଼ ମଧ୍ୟରେ ଥିବା ପ୍ରସ୍ତରର ସ୍ତୁମ୍ଭସ୍ତମ୍ଭ 'ଚୋଡ଼ଗଙ୍ଗ ଦାଣ୍ଡଆଣୀ' ନାମରେ ପୂଜିତ ହେଉଅଛି । ଦକ୍ଷିଣ ଓଡ଼ିଶାରେ ରକ୍ଷିତା ସ୍ତ୍ରୀକୁ ଦାରଆଣୀ କୁହାଯାଏ । ତେଣୁ ଚୋଡ଼ଗଙ୍ଗଙ୍କର କୌଣସି ଓଡ଼ଆଣୀ ପତ୍ନୀଙ୍କ ଉଦ୍ଦେଶ୍ୟରେ ଏହି ସପ୍ତସ୍ତମ୍ଭ ସ୍ତମ୍ଭ ନିର୍ମିତ ହୋଇଥିଲା । ଚୋଡ଼ଗଙ୍ଗ ଦେବ ତେଲଙ୍ଗା ଥିବାରୁ ଓ ତାଙ୍କର ଓଡ଼ଆଣୀ ପତ୍ନୀଙ୍କୁ ତତ୍କାଳୀନ ସମାଜରେ ଲୋକେ ଦାରଆଣୀ ଆଖ୍ୟାତ କରିଥିବା ସମ୍ଭବ । କିମ୍ବା ବଡ଼ପୋଖରୀକୁ ସାଗର, ଦରିଆ ଆଦିରେ ଆଖ୍ୟାତ କରାଯାଏ । ଏହି ସପ୍ତଦେବୀ ଦରିଆରେ ସ୍ଥାପିତ ବୋଲି 'ଦରିଆଣୀ' ମଧ୍ୟ ହୋଇ ପାରନ୍ତି ।

କାଶିଆଗଡ଼ର ପୂର୍ବନାମ କାଶୀକ୍ଷେତ୍ର ବା କାଶୀଦୁର୍ଗ ଥିବା ଡ଼ଃ ପାଣିଗ୍ରାହୀଙ୍କ ମତ । ଦକ୍ଷିଣରୁ ଆସୁଥିବା ଶତ୍ରୁ ଉତ୍କଳ ରାଜଧାନୀରେ ପହଞ୍ଚିବା ପୂର୍ବରୁ ଏହି ଦୁର୍ଗର ଦୁର୍ଗପତି ତାହାକୁ ପ୍ରତିରୋଧ କରୁଥିଲେ । ଏଣୁ ଶାରଙ୍ଗଗଡ଼କୁ ସୁଦୃଢ଼ କରିବା ପାଇଁ ଆଉ ଏକ ପରିପୂରକ ଦୁର୍ଗ ଭାବରେ କାମ କରୁଥିଲା କାଶିଆଗଡ଼ । ନିବିଡ଼ ଜଙ୍ଗଲ ଭିତରେ ଥିବାରୁ ଶତ୍ରୁକୁ ଅତର୍କିତ ଆକ୍ରମଣ ପାଇଁ ଏହା ଥିଲା ପ୍ରଶସ୍ତ ।

ଚନ୍ଦକାଠାରୁ ଖୋର୍ଦ୍ଧା ରାସ୍ତାରେ ଭଣ୍ଡାରିଆ ପାହାଡ଼ର ନିକଟବର୍ତ୍ତୀ ଜଳୁଆ ଗ୍ରାମ ପାଖେ ଘଞ୍ଚ ଜଙ୍ଗଲ ମଧ୍ୟରେ ଅବସ୍ଥିତ କାଶିଆଗଡ଼ର ଦଶଫୁଟ ଉଚ୍ଚତାର କଳାପଥର ନିର୍ମିତ ପ୍ରାୟ ୭ କିଲୋମିଟର ପରିଧିବିଶିଷ୍ଟ ପ୍ରାଚୀରର ଭଗ୍ନାବଶେଷ ଏବେ ବି ଦେଖାଯାଏ । ଏଠାରେ କେତୋଟି କୂଅ ଛଡ଼ା ଜନବସତି ଥିବାର କୌଣସି ପ୍ରମାଣ ମିଳୁ ନଥିବାରୁ ଏହା ଅସ୍ଥାୟୀ ସେନାଛାଉଣି ଭାବେ ବ୍ୟବହୃତ ହେଉଥିବା ସମ୍ଭବ । ତେଣୁ ଏହି ଉଭୟ ଦୁର୍ଗ ଦକ୍ଷିଣ ଆଡ଼ୁ ଆସୁଥିବା ଶତ୍ରୁର ପ୍ରତିରୋଧ କରିବା ପାଇଁ ଚୋଡ଼ଗଙ୍ଗ ଦେବ ସ୍ଥାପନ କରିଥିଲେ । ଗଞ୍ଜାମରୁ ପ୍ରାପ୍ତ ପାଞ୍ଜିର ଏ ଉକ୍ତିକୁ ଐତିହାସିକମାନେ ଗ୍ରହଣ କରିଅଛନ୍ତି । ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା ଚୋଡ଼ଗଙ୍ଗଗଡ଼ ବା କଟକ

ନାମରେ ନାମିତ ଥିବା ସାରଳା ଦାସଙ୍କ ମହାଭାରତରେ ଉଲ୍ଲିଖିତ ବର୍ଣ୍ଣନାରୁ ଜଣାଯାଏ । ବିରାଟ ପର୍ବରେ ବିରାଟ ରାଜାଙ୍କ ଦରବାରର ଭୀମ ଯେଉଁ ମଲ୍ଲକୁ ଯୁଦ୍ଧରେ ପରାସ୍ତ କରିଥିଲେ ସେହି ମଲ୍ଲର ପୂର୍ବପୁରୁଷଙ୍କ ବୀରତ୍ୱ ବର୍ଣ୍ଣନାରେ—

"ବୀର ଚୁଡ଼ଙ୍ଗ ନଗର ପଶ୍ଚିମ କୋଣେ
ବଜ୍ରବାହୁ ପଡ଼େ ନବ ସପ୍ତ ଯୋଜନେ ।
ପଞ୍ଚସପ୍ତ ଯୋଜନ ଅଟଇ ମୋ କଟକ ସ୍ଥଳୀ
ସେ ମାଲ ପଡ଼ିଲା ପାଞ୍ଚ ଯୋଜନ ଉଗୁଳି ।"

ଉଲ୍ଲେଖ କରିଥିବାରୁ ଏହି 'ବୀର ଚୁଡ଼ଙ୍ଗଗଡ଼'ର ନାମ ଶାରଙ୍ଗଗଡ଼ ବୋଲି ଉକ୍ତର ପାଣିଗ୍ରାହୀ ନିରୂପଣ କରନ୍ତି ।

ଏହି ମଲ୍ଲର ଅନ୍ୟତମ ପୂର୍ବପୁରୁଷର ବୀରତ୍ୱ ପ୍ରକାଶ ପାଇଁ ଉଲ୍ଲିଖିତ—

"ହରଣ କେଶରୀ ପୁତ୍ର ମରୁତକେଶୀ ବୀର
ଏହାଙ୍କ ପ୍ରହାରେ ଖଣ୍ଡଗିରି ଚୂର ।"

ଲେଖା ଥିବାରୁ ଏହି ଗଡ଼ଠାରୁ ୧୫।୧୬ କିଲୋମିଟର ଦୂରବର୍ତ୍ତୀ ଖଣ୍ଡଗିରିର ବର୍ଣ୍ଣନା କରିଛନ୍ତି ।

ମଧ୍ୟପର୍ବରେ ସାରଳା ଦାସ ବାରଙ୍ଗ ପାହାଡ଼ର କଥା ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ ପ୍ରଦର୍ଶନ ଅବକାଶରେ ଉଲ୍ଲେଖ କରନ୍ତି । ଚୁଡ଼ଙ୍ଗ ଦେଶ, ଚୁଡ଼ଙ୍ଗ କଟକ ନାମ-ଗୁଡ଼ିକ ସାରଳା ମହାଭାରତରେ ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ଚୁଡ଼ଙ୍ଗ ଦେବଙ୍କ ନାମାନୁସାରେ ଶାରଙ୍ଗଗଡ଼ର ଏକ ଅଂଶର ନାମ ଏବେ ବି ଚୁଡ଼ଙ୍ଗଗଡ଼ ଅଛି । ହୁଏତ ପୂର୍ବରୁ ରହିଥିବା ଶାରଙ୍ଗ ଦୁର୍ଗର ସଂସ୍କାର କରାଇ ଚୁଡ଼ଙ୍ଗଗଡ଼ ନାମରେ ନାମିତ କରିଥିବେ କିମ୍ବା ନିଜେ ଏହା ସ୍ଥାପନ କରିଥିବେ । ପରବର୍ତ୍ତୀ କାଳରେ ଚୁଡ଼ଙ୍ଗଗଡ଼ ଶାରଙ୍ଗଗଡ଼ରେ ପରିଣତ ହୋଇଥିବ ।

ମାଦଳାପାଞ୍ଜିର ଗୋଟିଏ ପୋଥିରେ ଅଛି, ନୃପକେଶରୀ (୯୪୧-୯୫୩) ବାରଣାସୀ (ବିଡ଼ାନାସୀ)ଠାରେ ଏକ ଦୁର୍ଗ ନିର୍ମାଣ କଲେ । ଷ୍ଟାର୍ଲିଂ ସାହେବ ଏହି କଟକର ନିର୍ମାଣକାଳ ୯୮୯ ଖ୍ରୀଷ୍ଟାବ୍ଦ କହନ୍ତି । କାଠଯୋଡ଼ି ଓ ମହାନଦୀ ବନ୍ୟାରୁ କଟକକୁ ରକ୍ଷା କରିବା ପାଇଁ ମର୍କତକେଶରୀ (୯୫୩-୯୬୧) ପଥରବନ୍ଧ ନିର୍ମାଣ କଲେ । ପରବର୍ତ୍ତୀ ରାଜା ମାଧବକେଶରୀ ନଦୀ ବନ୍ୟାରୁ ନିରାପଦରେ ରହିବା ପାଇଁ କାଠଯୋଡ଼ିର ଦକ୍ଷିଣ ଦିଗରେ ଶାରଙ୍ଗଗଡ଼ ନିର୍ମାଣ କଲେ ।

ଚୋଡ଼ଗଙ୍ଗଦେବ ଦକ୍ଷିଣ ଦିଗରୁ ସୋମବଂଶୀ ରାଜାଙ୍କୁ ଆକ୍ରମଣ କଲାବେଳେ କାଠଯୋଡ଼ିର ଦକ୍ଷିଣ ଦିଗରେ ସେନା ଶିବିର ସ୍ଥାପନ କରିଥିଲେ । ରାଧାନାଥଙ୍କ 'ନନ୍ଦିକେଶ୍ୱରୀ' କାବ୍ୟର ନାୟିକା ଯୁଦ୍ଧ ପୂର୍ବରୁ ରାଜଧାନୀର ଗୁପ୍ତ ସୁଡ଼ଙ୍ଗ ବାଟେ ଯାଇ ଚୋଡ଼ଗଙ୍ଗଙ୍କ ପାଖରେ ପହଞ୍ଚି ଆପଣାକୁ ସମର୍ପଣ କରିବାକୁ ଚାହିଁଥିବା ଉଲ୍ଲେଖ ଅଛି । ଗ୍ରୀକ୍ ଦେଶରୁ ଆନୀତ କଥାବସ୍ତୁର ଭିତ୍ତିରେ ନନ୍ଦିକେଶ୍ୱରୀ କାବ୍ୟ ପରିକଳ୍ପିତ ଓ

ଏହି ସତ୍ୟ ସାହିତ୍ୟର ସମାଲୋଚକମାନେ ଉଦ୍‌ଘାଟନ କରିଛନ୍ତି । ନନ୍ଦକେଶ୍ୱର ମହାଦେବଙ୍କ ଅଧ୍ୟୁଷିତ, ନନ୍ଦକେଶ୍ୱର ପଠାକୁ କବିବର ରାଧାନାଥ 'ନନ୍ଦିକେଶ୍ୱରୀ ପଠା'ରେ ପରିଣତ କରିଛନ୍ତି ଓ 'ନନ୍ଦିକା'ର ବନ୍ଦୀପ୍ରାଣ, ବନ୍ଦନୀୟ ଆତ୍ମାର ସ୍ୱପ୍ନ ଦେଖିଛନ୍ତି ଆଧୁନିକ କବି ଶଚି ରାଉତରାୟ, ନାଟ୍ୟକାର ଭିକାରୀ ଚରଣ ପଟ୍ଟନାୟକ ଓ ମନୋରଞ୍ଜନ ଦାସ । ୧୯ ଗୋଟି ରାଣୀ ରଖିଥିବା ଚୋଡ଼ଗଙ୍ଗ ନନ୍ଦିକାଙ୍କୁ ମିଶାଇ ୨୦ଟି ରାଣୀ ସହିତ ଓଡ଼ିଶା ରାଜ୍ୟ ପାଇବା ଆଶା ପ୍ରତ୍ୟାଖ୍ୟାନ କରନ୍ତି କି ? 'ନନ୍ଦିକେଶ୍ୱରୀ'ର ନାୟକ ଚୋଡ଼ଗଙ୍ଗଙ୍କୁ ଏକ ଆଦର୍ଶ ପୁରୁଷ ଭାବେ ଚିତ୍ରଣ କରିବାକୁ ପ୍ରୟାସ କରିଛନ୍ତି କବି ।

ସୋମବଂଶର କେଉଁ ଶେଷ ରାଜାଙ୍କୁ ପରାସ୍ତ କରି ଚୋଡ଼ଗଙ୍ଗ ଉତ୍କଳ ଅଧିକାର କଲେ ସେ ବିଷୟରେ ଐତିହାସିକମାନେ ନିଃସନ୍ଦେହ ନୁହନ୍ତି । ଏହି ରାଜାଙ୍କ ନାମ କର୍ଣ୍ଣକେଶରୀ, ସ୍ୱର୍ଣ୍ଣକେଶରୀ, ସୁବର୍ଣ୍ଣ କେଶରୀ, ଶୂନ୍ୟକେଶରୀ ଭାବରେ ମାଦଳାପାଞ୍ଜି ଓ ତମ୍ବାପଟାମାନଙ୍କରେ ଉଲ୍ଲେଖ ରହିଛି । ତେବେ କର୍ଣ୍ଣଦେବଙ୍କ ରତ୍ନଗିରି ତମ୍ବାପଟା ଓ ବାଲିଝରି (ନରସିଂହପୁର) ତମ୍ବାପଟାର ପାଠ ମିଳାଇ ପଣ୍ଡିତ ପରମାନନ୍ଦ ଆଚାର୍ଯ୍ୟ କର୍ଣ୍ଣଦେବଙ୍କ ରାଜତ୍ୱକାଳ ୧୧୦୦ ଖ୍ରୀଷ୍ଟାବ୍ଦର ନିକଟବର୍ତ୍ତୀ ବୋଲି ମତ ଦିଅନ୍ତି । ଚୋଡ଼ଗଙ୍ଗ ଦେବ ଖ୍ରୀଷ୍ଟାବ୍ଦ ୧୧୧୨ ପୂର୍ବରୁ ସୋମବଂଶୀ ଶେଷ ରାଜାଙ୍କୁ ପରାସ୍ତ କରି ଉତ୍କଳ ଅଧିକାର କରିଥିବାରୁ ଚୂଡ଼ଙ୍ଗଗଡ଼ ବା ସାରଙ୍ଗଗଡ଼ ମରାମତି ବା ସ୍ଥାପନ, ଏହି ସମୟର ପରବର୍ତ୍ତୀ କାଳରେ ଘଟିଥିବ ।

ବାରଣାସୀ କଟକରେ ରାଜଧାନୀ ଥିବା ସମୟରେ ନରସିଂହ ଦେବ ୧ମ (୧୨୩୮-୧୨୬୪) ବଙ୍ଗ ବିଜୟ ପରେ କୋଣାର୍କ ମନ୍ଦିର ଗଢ଼ାଇଲେ । ଦେଶରେ ସର୍ବତ୍ର ଶାନ୍ତି ବିରାଜମାନ କରୁଥିବାରୁ ଶିଳ୍ପୀକୁଳ-କଳା-କଳ୍ପନା ପଥରରେ ସାକାରଭୂତ ହେଲା । ଏହି ସମୟରେ ଉତ୍କଳ ନୃପତିଙ୍କ ଦିଗ୍‌ବିଜୟ ଯାତ୍ରାରେ ସାରଙ୍ଗଗଡ଼ର ଭୂମିକା ନିଷ୍ଟୟ ରହିଥିବ ।

ମୁସଲମାନ ଐତିହାସିକମାନେ ଓଡ଼ିଶା ପ୍ରତି ବଙ୍ଗ ସୁଲତାନ ଓ ଦିଲ୍ଲୀ ସମ୍ରାଟ-ମାନଙ୍କର ସମୃଦ୍ଧି ପ୍ରତି ଲୋଲୁପ ଦୃଷ୍ଟି ଓ ବାରମ୍ବାର ଆକ୍ରମଣ ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ୮ ପରମାନନ୍ଦ ଆଚାର୍ଯ୍ୟ ଏହିସବୁ ଉପାଦାନରୁ ସାର ସଂଗ୍ରହ କରି ବହୁ ଘଟଣା ଉଲ୍ଲେଖ କରିଛନ୍ତି ।

୧୩୦୩ ଖ୍ରୀଷ୍ଟାବ୍ଦରେ ଆଲ୍ଲାଉଦ୍ଦିନ ଖିଲଜୀ (୧୨୯୬-୧୩୧୬) ତେଲେଙ୍ଗାନାର କାକତୀୟ ରାଜାଙ୍କୁ ଆକ୍ରମଣ କରିବା ପାଇଁ ଓଡ଼ିଶା ମଧ୍ୟରେ ପୂର୍ବଉପକୂଳକୁ ପଠାଇଲେ । ମାତ୍ର ସେମାନେ ଯାଜନଗରରେ ପ୍ରବେଶ କରି ନପାରି ଫେରିଗଲେ ।

ଗିୟାସୁଦ୍ଦିନ ତୋଗଲକ ୧ମ (୧୩୨୦-୧୩୨୪)ଙ୍କ ପୁତ୍ର ଉଲୁଘ ଖାଁ ଔରଙ୍ଗଲ୍‌ରୁ ୧୦୨୩ ଖ୍ରୀଷ୍ଟାବ୍ଦରେ ଯାଜନଗର ଆକ୍ରମଣ କରିଥିଲେ । ସେଠାରୁ ୪ଟି ହାତୀ ଆଣି ତାଙ୍କ ପିତାଙ୍କୁ ଉପହାର ଦେଲେ । ଔରଙ୍ଗଲ୍‌ରୁ ବାରଣସୀ କଟକ ନ ଆସି

ଯାଜନଗର ପାର୍ଶ୍ୱବର୍ତ୍ତୀ କୌଣସି ସାମନ୍ତ ରାଜ୍ୟ ଆକ୍ରମଣ କରି ହାତୀଗୁଡ଼ିକୁ ସଂଗ୍ରହ କରିଥାଇ ପାରନ୍ତି । ଏହା ରାଜା ଭାନୁଦେବ ୨ୟ (୧୩୦୬-୨୭)ଙ୍କ ବେଳର ଘଟଣା ।

ବାକତ୍-ଇ-ଆକବସ୍ତରେ ଉଲ୍ଲେଖ ଅଛି, ଖ୍ରୀ: ୧୩୫୧ରେ ବଙ୍ଗ ସୁଲତାନ୍ ସାମସୁଦ୍ଦିନ ଇଲୟାସ୍ ସାହା ଯାଜନଗର ଆକ୍ରମଣ କଲେ ସେଠାରୁ ବହୁତ ବଡ଼ ବଡ଼ ହାତୀ ନେଇ ଫେରିଲେ । ଏହି ଲେଖାର ୧୦ ବର୍ଷ ପରେ ଲିଖିତ ସିରତ୍-ଇ-ଫିରୋଜ ସାହିରେ ଐତିହାସିକ ବାରନି ଖ୍ରୀ: ୧୩୫୮ରେ ଫିରୋଜ ସାହାଙ୍କ ବଙ୍ଗ ଅଭିଯାନ ବିଷୟ ଲେଖିଥିଲେହେଁ ସାମସୁଦ୍ଦିନ୍‌ଙ୍କ ଯାଜନଗର ଅଭିଯାନ ବିଷୟରେ କିଛି ଲେଖି ନାହାନ୍ତି ।

ସାମସ୍-ଇ-ସିରେଜ୍‌ଙ୍କ 'ତାରିଖ-ଇ-ଫିରୋଜସାହି' କୌଣସି ଅଜ୍ଞାତନାମା ଲେଖକ ବା ସ୍ୱୟଂ ଫିରୋଜସାହଙ୍କ ଲିଖିତ 'ସିରତ୍-ଇ-ଫିରୋଜସାହି' ଓ ଅଇନୁଲ-ମଲକ-ମାରୁଙ୍କ ଚିଠିମାନଙ୍କରୁ ଫିରୋଜସାହିଙ୍କ ଅଭିଯାନ ବିଷୟରେ ଜଣାଯାଏ ।

୧୩୬୦ ଖ୍ରୀଷ୍ଟାବ୍ଦରେ ଫିରୋଜସାହ (ଦିଲ୍ଲୀ ସୁଲତାନ) ଜୌନପୁରଠାରୁ ଯାଜନଗର (ଓଡିଶା)କୁ ଶିକାର ଅଭିଯାନରେ ଆସିଥିଲେ । ନାଳନ୍ଦା ନିକଟବର୍ତ୍ତୀ ବିହାର ସରିଫ୍‌ଠାରୁ ଦକ୍ଷିଣରେ ଆସି ହଜାରିବାଗ୍ ଜିଲ୍ଲା ପରେ ମାନଭୂମର ଶିଖର ଭୂମି ଜୟକରି ଖିଚିଙ୍ଗ ନଗର/କେଉଁଝରର ଓ କଳକଳା ଘାଟି (କଟକ ଓ ଢେଙ୍କାନାଳର ସୀମାରେ) ଦେଇ ୩ୟ ବୀରଭାନୁଦେବ (୧୩୫୨-୭୮)ଙ୍କ ରାଜଧାନୀ ବାରାଣସୀ କଟକରେ ପହଞ୍ଚି ଥିଲେ ।

ଫିରୋଜସାହାଙ୍କ ଆଗମନ ଜାଣି ରାଜା ଗଡ଼ ଛାଡ଼ି ପଳାଇ ଯାଇ ନଦୀ ମଧ୍ୟବର୍ତ୍ତୀ କୌଣସି ସ୍ଥାନରେ ଆଶ୍ରୟ ନେଲେ । ପଳାଇ ଯିବାବେଳେ ଏକ ମସ୍ତବଡ଼ ଭୟଙ୍କର ହାତୀକୁ ଦ୍ୱାର ସମ୍ମୁଖରେ ଛାଡ଼ି ଯାଇଥିଲେ । ସେହି ହାତୀ ଫିରୋଜଙ୍କ ସୈନ୍ୟମାନଙ୍କୁ ଭିନଦିନ ଅଟକାଇ ଦେଲା । ତାକୁ ଆୟତ୍ତ କରି ନପାରି ଗୁଳିକରି ମାରି ଦିଆଗଲା । ଏହା ପରେ ଫିରୋଜସାହା ଗଡ଼ ଭିତରେ ପଶିଲେ । ଶୁଣିଲେ ଏହାର ପାଖରେ ବିରାଟ ଜଙ୍ଗଲ ଅଛି ଓ ସେଠାରେ ସାତଟି ହାତୀ ଓ ଗୋଟିଏ ହାତୁଣୀ ଅଛନ୍ତି । ହାତୀଖେଦା କରି ସେଗୁଡ଼ିକୁ ସେ ଧରିଲେ । ଏହା ହୁଏତ ଶାରଙ୍ଗଗଡ଼ ଓ ଚନ୍ଦକା ଜଙ୍ଗଲ ଅଞ୍ଚଳ ହୋଇପାରେ ।

ଧର୍ମଲିଙ୍ଗେଶ୍ୱର ମନ୍ଦିର ପଥରଧାରଣ ଲିପିର ଆବିଷ୍କାର ପରେ ମୁସଲମାନ ଲେଖକମାନଙ୍କ ବିବରଣୀ କାଳ୍ପନିକ ପ୍ରମାଣିତ ହୋଇଛି । ମାହିଷ୍ମତୀର ରାଜା ଗ୍ରେଡ଼ି ୩ୟ ଏହି ଦାନ ଦେଇଛନ୍ତି । ଏହି ଗ୍ରେଡ଼ିମାନେ ସହସ୍ରାର୍ଜ୍ଜୁନ-ହୈହୟ ବଂଶୀୟ ରାଜା ଥିଲେ ଓ ଗଙ୍ଗମାନଙ୍କ ସହିତ ସେମାନଙ୍କର ବୈବାହିକ ସମ୍ବନ୍ଧ ଥିଲା । ଏହି ଲିପିର ସମୟ ଶକାବ୍ଦ ୧୩୨୫ ବା ଖ୍ରୀ: ୧୪୦୩ । ଏଥିରେ ୧୩୫୩ ଖ୍ରୀଷ୍ଟାବ୍ଦରେ ହୋଇଥିବା ଯୁଦ୍ଧ ବିଷୟ ବର୍ଣ୍ଣିତ । ଗ୍ରେଡ଼ି ୩ୟଙ୍କ ଜେଜେବାପା ୨ୟ ଗ୍ରେଡ଼ିଙ୍କ ବିରୁଦ୍ଧ ବର୍ଣ୍ଣନା

କରାଯାଇ ଲେଖାଯାଇଛି, "ଯେଉଁ ରାଜା ପାଣ୍ଡ୍ୟଦେଶର ସୁଲତାନଙ୍କ ଆକ୍ରାନ୍ତ ସେନାମାନଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ଯୁଦ୍ଧଯାତ୍ରା କରି ନିଜ ବାହୁବଳରେ ଦିଲ୍ଲୀପତିଙ୍କୁ ପରାଜିତ କରି ଉତ୍କଳ ଦେଶ ରାଜାଙ୍କୁ ୨୨ଟି ହାତୀ ସହିତ ବିଜୟଲକ୍ଷ୍ମୀ ଦାନ କରିଥିଲେ ଏବଂ ଭୂରିସ୍ମମାନଙ୍କୁ ନିହତ କରି ଅପ୍ସରାମାନଙ୍କୁ ପ୍ରଦାନ କରିଥିଲେ, ଏହା ନିଶ୍ଚୟ ଏକ ବିଚିତ୍ର ବ୍ୟାପାର ।"

ଏହି ସମସ୍ତ ଆଲୋଚନା ଫଳରେ ସ୍ୱର୍ଗତ ପରମାନନ୍ଦ ଆଚାର୍ଯ୍ୟ ଇଲିୟାସ ସାହିଙ୍କ ୧୩୫୧ରେ ଯାଜନଗର ଅଭିଯାନ କାଳ୍ପନିକ ବୋଲି ସିଦ୍ଧାନ୍ତ କରନ୍ତି । ଫିରୋଜସାହ ଯାଜନଗର ରାଜ୍ୟକୁ ଜୟ କରିଥିଲେ ଦିଲ୍ଲୀ ସାମ୍ରାଜ୍ୟଭୁକ୍ତ କରିଥାନ୍ତେ । ମାତ୍ର ଫିରୋଜସାହଙ୍କ ୧୩୬୧ରେ ଆକ୍ରମଣ କରିବା ସତ୍ତ୍ୱେ ଗଙ୍ଗନୃପତି ଭାନୁଦେବ ୩ୟ ଓଡ଼ିଶାରେ ଖ୍ରୀ: ୧୩୭୭-୭୮ ପର୍ଯ୍ୟନ୍ତ ନିର୍ବିଘ୍ନରେ ରାଜତ୍ୱ କଲେ କିପରି ? ତେଣୁ ଏହା ମଧ୍ୟ କାଳ୍ପନିକ ।

ଏଣୁ ଫିରୋଜଙ୍କ ଅଭିଯାନ ସମ୍ପର୍କରେ ଯାହା ଲେଖାଅଛି, "ଅଶ୍ୱାରୋହୀ ସୈନ୍ୟମାନଙ୍କ ଗତି ଯୋଗୁଁ ଯେଉଁ ଧୂଳିପଟଳ ଉଠିଲା, ତଦ୍ୱାରା ସାରଙ୍ଗଗଡ଼ ଆଚ୍ଛାଦିତ ହେଲା" ଏକ ନିରର୍ଥକ କଥା ।

ସେହିପରି ଆଇନୁଲ ମାଲିକ ମାରୁଙ୍କ 'ଆହଦମନାମା'ରୁ ଯାଜନଗର ରାୟ, ଅହମ୍ମଦ ଖାଁ ଓ କଳୀ ଧାରିଙ୍କୁ ଶାରଙ୍ଗଡ଼େ ରକ୍ଷାର ଭାର ଦେଇଥିଲେ । ଶାରଙ୍ଗଗଡ଼ ଯୁଦ୍ଧରେ ଓଡ଼ିଆ ସୈନ୍ୟ ପରାଭୂତ ହୋଇଥିବା କଥା ମଧ୍ୟ କପୋଳକଳ୍ପିତ ।

ମୁକୁନ୍ଦ ଦେବଙ୍କ ରାଜତ୍ୱକାଳରେ ଓଡ଼ିଆ ବାହିନୀଙ୍କ ସ୍ୱାଧୀନ ମନୋଭାବ, ପ୍ରତାପ ଓ ପରାକ୍ରମରେ ବିସ୍ମିତ ଓ ସ୍ତମ୍ଭିତ ହୋଇ ଆକବର ଓଡ଼ିଶାକୁ ମୋଗଲ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରି ନଥିଲେ । ବଙ୍ଗ ନବାବ ସୁଲେମାନଙ୍କ ଦମନରେ ଆକବରଙ୍କୁ ସାହାଯ୍ୟ କରିବା ପାଇଁ ମୁକୁନ୍ଦ ଦେବ ବଙ୍ଗ ବିଜୟରେ ବାହାରିଲେ । ଏହି ସମୟରେ ବଙ୍ଗ ନବାବଙ୍କ ସେନାପତି କଳାପାହାଡ଼ ପଶ୍ଚିମ ଦିଗରୁ କାଂଶ ବାଂଶ ନଦୀ ଦେଇ କଟକ ବାରବାଟୀ ଦୁର୍ଗ ଅବରୋଧ କଲେ । ଶିଖି ମହାପାତ୍ର ଓ ମନାଇ ମହାପାତ୍ର ନାମରେ ଦୁଇଜଣ ଖଣ୍ଡାୟତ ମୁକୁନ୍ଦ ଉପରେ ଆକ୍ରୋଶ ରଖି ପ୍ରତିଶୋଧ ନେବା ନିମନ୍ତେ ବଙ୍ଗ ନବାବଙ୍କ ସେନାପତି କଳାପାହାଡ଼କୁ ଗଡ଼ଜାତ ଜଙ୍ଗଲ ବାଟେ ଆଣି କଟକ ଆକ୍ରମଣ କରାଇଲେ । ମୁକୁନ୍ଦଙ୍କ ଅନୁପସ୍ଥିତିରେ ବାରବାଟୀ ଦୁର୍ଗରକ୍ଷକ କୋନ ସାମନ୍ତସିଂହାର କଳାପାହାଡ଼ ସଙ୍ଗେ ଯୁଦ୍ଧ କଲେ । ଏହି ସମୟରେ ସାମନ୍ତ ରାଜା ରାମଚନ୍ଦ୍ର ଭଞ୍ଜ ଶାରଙ୍ଗଗଡ଼ର ଦୁର୍ଗପତି ଥିଲେ । ମୁକୁନ୍ଦଙ୍କୁ ନାଶକରି ସେ ଓଡ଼ିଶାର ରାଜା ହେବାର କାମନା ପୋଷଣ କରିଥିଲେ । କାରଣ ମୁକୁନ୍ଦ ଦେବ 'ତେଲେଙ୍ଗା' ଥିବାରୁ ରାମଚନ୍ଦ୍ର ଭଞ୍ଜ ଓଡ଼ିଶାର ସିଂହାସନ ଉପରେ ଆପଣାର ଦାବି ସାବ୍ୟସ୍ତ କରିବାକୁ ଚାହୁଁଥିଲେ । ସେ ମୁକୁନ୍ଦଙ୍କ କଟକରେ ଅନୁପସ୍ଥିତିର ସୁଯୋଗରେ ଆପଣାକୁ ଓଡ଼ିଶାର ରାଜା ବୋଲି ଘୋଷଣା କଲେ ।

ଗଙ୍ଗାକୂଳବର୍ତ୍ତୀ କୋଟିଶମିଗଡ଼ ଠାରେ ଏ ଖବର ପାଇ ମୁକୁନ୍ଦ ଦେବ କଟକ ଫେରି ଶାରଙ୍ଗଗଡ଼ରେ ରାମଚନ୍ଦ୍ରଙ୍କୁ ଅବରୋଧ କଲେ । ଉତ୍ତର ଯାଜପୁର ଗୋହିରା ଟିକର ଠାରେ ୧୫୬୮ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ର ଓ ମୁକୁନ୍ଦଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ରାମଚନ୍ଦ୍ରଙ୍କ ଦ୍ୱାରା ମୁକୁନ୍ଦଦେବ ନିହତ ହେଲେ । ସୁଲେମାନଙ୍କ ପୁତ୍ର ବାୟାଜିତଙ୍କ ଦ୍ୱାରା ରାମଚନ୍ଦ୍ର ନିହତ ହେଲେ । ଓଡ଼ିଶା ଅରାଜକ ହେଲା । କଳାପାହାଡ଼ ଅତ୍ୟାଚାର କଲା । ବହୁ ଦେବତା ଓ ଦେବ ମନ୍ଦିର ଭାଙ୍ଗିଲା । ମୁକୁନ୍ଦଙ୍କ ରାଣୀ 'ସୁବର୍ଣ୍ଣ ଥାଳରେ ହୀରା ପରଶି (ଉପହାର ଦେଇ) ବାରବାଟୀ ଦୁର୍ଗ ରକ୍ଷା କରିଥାଇ ପାରନ୍ତି ।

ଶାରଙ୍ଗଗଡ଼ ଦୁର୍ଗପତି ରାମଚନ୍ଦ୍ର ଭଞ୍ଜଙ୍କୁ ଓଡ଼ିଶାର ଏହି ଦୁର୍ଗତି ପାଇଁ ଦାୟୀ କରାଯାଉଛି । କାରଣ ତାଙ୍କର ବିଶ୍ୱାସଘାତକତା ଯୋଗୁଁ ଓଡ଼ିଶାର ସ୍ୱାଧୀନତା ରବି ଗୋହିରାଟିକର ଠାରେ ଚିରଦିନ ପାଇଁ ଅସ୍ତମିତ ହେଲେ । ଦେଶରେ ଅନ୍ତର୍ବିବାଦର ଏହାହିଁ ଶୋଚନୀୟ ପରିଣତି ।

ଓଡ଼ିଶା ମୁସଲମାନଙ୍କ ଅଧିକାରଭୁକ୍ତ ହେଲା ଓ "ବୀର ରକ୍ତ ପିଣ୍ଡେ ଗଢ଼ା" ବାରବାଟୀ ପଦାନତ ହେଲା । ମୁକୁନ୍ଦ ଦେବଙ୍କ ନବତଳ ପ୍ରାସାଦ ମୁସଲମାନମାନଙ୍କର ବିଳାସ ଭବନରେ ପରିଣତ ହେଲା । ୧୫୭୪ ଖ୍ରୀଷ୍ଟାବ୍ଦରେ ଜଳେଶ୍ୱର ନିକଟବର୍ତ୍ତୀ ମୋଗଲମାରି ଯୁଦ୍ଧପରେ କଟକରେ ଯେଉଁ ସନ୍ଧି ସ୍ଥାପିତ ହେଲା, ତଦ୍ୱାରା ଦାଉଦ ବଙ୍ଗ ବିହାର ଆକବରଙ୍କୁ ଅର୍ପଣ କରି ନିଜେ ଓଡ଼ିଶାର ଶାସନକର୍ତ୍ତା ହେଲେ । ୧୫୯୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଶାସନକର୍ତ୍ତା କୁତୁଲ ଖାଁ ପୂର୍ବ ସନ୍ଧି ଭଙ୍ଗ କରନ୍ତେ ରାଜା ମାନସିଂହଙ୍କ ଅଧୀନରେ ମୋଗଲ ସୈନ୍ୟମାନେ ଜଳେଶ୍ୱର, ବାରବାଟୀ ଓ ଆଳ ଦୁର୍ଗମାନ ଅଧିକାର କଲେ । ଶାରଙ୍ଗଗଡ଼ରେ ଆଫଗାନ ସୈନ୍ୟମାନେ ମୋଗଲବାହିନୀଙ୍କୁ ଦୂର କରିବା ପାଇଁ ଶେଷ ଚେଷ୍ଟାକରି ପରାସ୍ତ ହେଲେ । ଫଳରେ ଓଡ଼ିଶା ତଥା ବାରବାଟୀ ଆକବରଙ୍କ ହସ୍ତଗତ ହେଲା ।

ସପ୍ତଦଶ ଶତାବ୍ଦୀରେ ବାରବାଟୀ ଆଫଗାନ ଓ ମରହଟ୍ଟାମାନଙ୍କର ରାଜଧାନୀ ହୋଇଥିଲା । ପୁଣି ୧୮୦୩ରେ ବାରବାଟୀ ଦୁର୍ଗ ଇଂରେଜମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ରହିଥିଲା । ବାରବାଟୀର ପତନାରମ୍ଭ ବେଳୁ ଶାରଙ୍ଗଗଡ଼ର ପତନ ଆରମ୍ଭ ହୋଇ ଯାଇଥିଲା ଓ ସପ୍ତଦଶ ଶତାବ୍ଦୀ ବେଳକୁ ଏହି ଦୁର୍ଗର ଆଉ ପ୍ରାଧାନ୍ୟ ଦେଖାଯାଏ ନାହିଁ । ସ୍ୱାଧୀନ ବାରବାଟୀକୁ ରକ୍ଷା କରିବା ପାଇଁ ସିନା ଶାରଙ୍ଗଗଡ଼ ନିର୍ମିତ ହୋଇଥିଲା । ବାରବାଟୀର ପତନପରେ ଶାରଙ୍ଗଗଡ଼ର ଆଉ ଆବଶ୍ୟକତା ବା କଣ ?



# ଖୁରୁଧା କଟକ

ଶ୍ରୀ ପଠାଣି ପଟ୍ଟନାୟକ

**କଳିଙ୍ଗଃ ସାହସିକଃ :**

ଆଧୁନିକ ଓଡ଼ିଶାର ପ୍ରାଚୀନ ନାମ ଶାସ୍ତ୍ରପୁରାଣରେ କଳିଙ୍ଗ ନାମରେ ବିଖ୍ୟାତ । ଏହି ପ୍ରାଚୀନ ଦେଶ ପୁନଶ୍ଚ ପ୍ରାଚୀନ ସାହିତ୍ୟରେ ଉତ୍କଳ ଦେଶ, ଓଡ୍ର ଦେଶ ନାମରେ ମଧ୍ୟ ପ୍ରସିଦ୍ଧ । ସାମନ୍ତବାଦୀ ଯୁଗରେ କଳିଙ୍ଗ, ଉତ୍କଳ ଓ ଓଡ୍ର ଦେଶ କେତେବେଳେ ଗୋଟିଏ ପତାକା ଅଧୀନରେ ଏକାଠି ହୋଇଥିଲେ ତ କେତେବେଳେ ନିଜ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । ମହାଭାରତର ଲେଖକ କଳିଙ୍ଗର ଅଧିବାସୀ ଅତ୍ୟନ୍ତ ବୀର ବୋଲି ଘୋଷଣା କରିଥିବା ଜଣାଯାଏ । ରାମାୟଣ ଯୁଗରୁ କଳିଙ୍ଗ ଏବଂ ଉତ୍କଳ ଅତ୍ୟନ୍ତ ପ୍ରସିଦ୍ଧି ଅର୍ଜନ କରିଥିବାର ପ୍ରମାଣ ମିଳୁଅଛି । ସୀତାଙ୍କ ଅନୁସନ୍ଧାନ ପାଇଁ ସୁଗ୍ରୀବ ଯେତେବେଳେ ସୁଷେଣଙ୍କୁ ନିର୍ଦ୍ଦେଶ ଦେଉଛନ୍ତି, ସେତେବେଳେ କୁହାଯାଇଛି—

"ତତୋ ଗୋଦାବରୀଂ ନଦ୍ୟାଂ କୃଷ୍ଣାବେଣ୍ୟାଂ ମହାନଦୀଂ
ମେକଳାନୁତ୍କଳାଂ ଚୈବ ଦଶାର୍ଣ୍ଣା ନଗରାଣ୍ୟପି
ତଥା ମତ୍ସ୍ୟାଃ କଳିଙ୍ଗାଶ୍ଚ କୌଶିକାଶ୍ଚ ସମନ୍ତତଃ
ଅନ୍ୱୀକ୍ଷ ଦଣ୍ଡକାରଣ୍ୟଂ ସପର୍ବତ ନଦୀ ଗୁହାମ୍ ।"

(କିଷ୍କିନ୍ଧ୍ୟାକାଣ୍ଡ—୪୧)

ସେହିପରି ବ୍ୟାସଦେବଙ୍କର ମହାଭାରତରେ ବାରମ୍ବାର କଳିଙ୍ଗ, ଓଡ୍ର ଓ ଉତ୍କଳର ନାମ ଉଲ୍ଲେଖ ହୋଇଥିବାର ଜଣାଯାଏ । ଭାରତର ବୀରଜାତିମାନଙ୍କ ମଧ୍ୟରେ କଳିଙ୍ଗ, ଉତ୍କଳ ଏବଂ ଓଡ୍ରଦେଶର ଅଧିବାସୀମାନେ ଅନ୍ୟତମ ଥିଲେ ବୋଲି କେବଳ ସ୍ୱୀକାର କରାଯାଏ ନାହିଁ, ସେମାନେ ଥିଲେ ଅତ୍ୟନ୍ତ ଆଧ୍ୟାତ୍ମିକବାଦୀ । ବ୍ରହ୍ମାଣ୍ଡପୁରାଣ କହିଛନ୍ତି—"ଓଡ୍ରଦେଶ ଇତି ଖ୍ୟାତଃ ସ୍ୱର୍ଗ ମୋକ୍ଷ ପ୍ରଦାୟକଃ ।" କପିଳ ସଂହିତା ଘୋଷଣା କରିଛନ୍ତି—

"ବର୍ଷଣାଂ ଭାରତଃ ଶ୍ରେଷ୍ଠୋ ଦେଶାନାମୁତ୍କଳଃ ଶ୍ରୁତଃ
ଉତ୍କଳସ୍ୟ ସମୋଦେଶଃ ଦେଶୋନାସ୍ତି ମହୀତଳେ ।"

କିନ୍ତୁ ଆମର ଦୁର୍ଭାଗ୍ୟ ଯେ ଇଂରେଜ ରାଜତ୍ୱର ପ୍ରଥମ କାଳରେ ହଣ୍ଟର ସାହେବ ଓଡ଼ିଶାର ଇତିହାସ ଲେଖିବାକୁ ଯାଇ ଓଡ଼ିଆ ଜାତି ସମ୍ବନ୍ଧ ଲେଖିଲେ—
"To the world's roll call of heroes it will add not one more"
ଏଥିର ସାରମର୍ମ ଏହି ଯେ ପୃଥିବୀର ବୀରମାନଙ୍କ ମଧ୍ୟରେ ଓଡ଼ିଆ ନାମରେ ଖଡ଼ି ପଡ଼ିବ ନାହିଁ । ସୁତରାଂ ଦେଖିବା ଆବଶ୍ୟକ ଓଡ଼ିଆଜାତି ଖଡ଼ି ପଡ଼ିବା ଭଳି କିଛି କାର୍ଯ୍ୟ କରିଛି କି ନା ? (କ) କେବଳ ସେତିକି ନୁହେଁ, ହଣ୍ଟର ସାହେବ ତାଙ୍କ ଲିଖିତ "ଓଡ଼ିଶା ଇତିହାସ" ମୁଖବନ୍ଧରେ ଓଡ଼ିଆ ଜାତି ବିଷୟରେ ଲେଖିଛନ୍ତି ଯେ 'ଓଡ଼ିଆମାନେ ଜୀବନରେ କୌଣସି ବଡ଼ ଯୁଦ୍ଧରେ ଅଂଶଗ୍ରହଣ କରିନାହାନ୍ତି । ଓଡ଼ିଆମାନଙ୍କ ମଧ୍ୟରେ ଜଣେ ହେଲେ ଲେଖକ କିମ୍ବା ବୈଜ୍ଞାନିକ ଦେଖାଯାଆନ୍ତି ନାହିଁ ଯାହାଙ୍କ ପାଇଁ ସମାଜ କୃତଜ୍ଞ ରହିବ । ଓଡ଼ିଆମାନେ କୌଣସି ସ୍ୱତନ୍ତ୍ର ଦର୍ଶନର ମଧ୍ୟ ପ୍ରବକ୍ତା ହୋଇପାରି ନାହାନ୍ତି । ଓଡ଼ିଆଙ୍କ ଲେଖନୀରୁ କୌଣସି ଉଲ୍ଲେଖଯୋଗ୍ୟ ମହାକାବ୍ୟ ସୃଷ୍ଟି ହୋଇନାହିଁ ।"

ଏହି ପ୍ରକାର ଉକ୍ତି କେବଳ ସତ୍ୟର ଅପଳାପ ନୁହେଁ, ଅଜ୍ଞତାର ପରିଚାୟକ ମଧ୍ୟ ।

ସମ୍ରାଟ ଅଶୋକଙ୍କ କଳିଂଗ ସମର ଏବଂ ସମ୍ରାଟ ଖାରବେଳଙ୍କ ଭାରତ ଅଭିଯାନ କାଳରେ ଓଡ଼ିଆ ବୀରମାନଙ୍କର ଶୌର୍ଯ୍ୟ ବୀର୍ଯ୍ୟର କାହାଣୀ ଧଉଳିଗିରି ଏବଂ ହାତୀଗୁମ୍ଫା ଶିଳାଲେଖରେ ଲିପିବଦ୍ଧ ହୋଇଅଛି । "ଗଂଗବଂଶୀ ରାଜା, ସୂର୍ଯ୍ୟବଂଶୀ ରାଜାମାନଙ୍କର ଉତ୍କଳ ଭୂମିରେ ସାମ୍ରାଜ୍ୟ ସ୍ଥାପନ ଭାରତର ସାମରିକ ଇତିହାସରେ ଚିରକାଳ ପାଇଁ ଲିପିବଦ୍ଧ ହୋଇ ରହିବ । କାରଣ ସମଗ୍ର ଭାରତବର୍ଷ ଆଫଗାନମାନଙ୍କର ଅଧୀନତା ସ୍ୱୀକାର କରି ବିଡ଼ମ୍ବିତ ଜୀବନ ଯାପନ କଲାବେଳେ ଦୀର୍ଘ ତିନଶତ ବର୍ଷକାଳ ଗଂଗାଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡରେ ଓଡ଼ିଆ ଖଣ୍ଡାୟତ ବାହିନୀକୁ ବିରକ୍ତ କରିବାକୁ କେହି ସାହସ କରି ନଥିଲେ । ଏପରିକି ଆଫଗାନ-ମୋଗଲ-ମରହଟ୍ଟା ଶାସନ କାଳରେ ଓଡ଼ିଆମାନେ ସେମାନଙ୍କୁ ଆଦୌ ଶାନ୍ତିରେ ଶାସନ କରିବାକୁ ସୁଯୋଗ ଦେଇ ନଥିଲେ । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲେହେଁ ସମଗ୍ର ଊନବିଂଶ ଶତାବ୍ଦୀର ଦୁଇ ତୃତୀୟାଂଶ ସମୟ ଇଂରେଜ ଶାସନ ବ୍ୟବସ୍ଥା କଠୋର ପ୍ରତିରୋଧର ସମ୍ମୁଖୀନ ହୋଇଥିଲା । ଆଫଗାନ ରାଜତ୍ୱରେ ଖୋର୍ଦ୍ଧା ରାଜବଂଶକୁ ଓଡ଼ିଶାର ରାଜା ବୋଲି ସ୍ୱୀକାର କରାଯାଇଥିଲା ।" ଏହି ରାଜବଂଶର ନେତୃତ୍ୱରେ ଆଫଗାନ—ଇଂରେଜ ରାଜତ୍ୱକାଳରେ ବହୁ ସାମରିକ ବିପ୍ଳବ ହୋଇଥିଲା କୈନ୍ଦ୍ରିକ ଶକ୍ତି ବିରୋଧରେ । ଖୋର୍ଦ୍ଧାର ଖଣ୍ଡାୟତ ପାଇକମାନେ ଏବେ ମଧ୍ୟ ଓଡ଼ିଆ ନାମରେ ଚିହ୍ନିତ । ସେହି ଓଡ୍ର ଜାତିଙ୍କ ନାମାନୁସାରେ ଏ ଦେଶର ନାମ ଓଡ଼ିଶା ଏବଂ ଭାଷାର ନାମ ଓଡ଼ିଆ । ଖୋର୍ଦ୍ଧା ପାର୍ଶ୍ୱବର୍ତ୍ତୀ ପୂର୍ବତନ ଗଡ଼ଜାତର ଅଧିବାସୀଗଣ ଖୋର୍ଦ୍ଧାକୁ 'ଓଡ଼ିଶା' ବୋଲି ଚିହ୍ନଟ କରି କରିଥାଆନ୍ତି ।

(କ) ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ, ୧୯୨୯—ପୃ. ୨୧୧

## କବି କଣ୍ଠରେ ବିସ୍ମୃତ ଖୋର୍ଦ୍ଧାର ପଦଧ୍ୱନି :

ବିଶାଳ ଉତ୍କଳ ସାମ୍ରାଜ୍ୟ ଯେତେବେଳେ ସଙ୍କୁଚିତ ହୋଇ ସ୍ୱାଧୀନ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଗଲା, ସେତେବେଳେ ଖୋର୍ଦ୍ଧା ହିଁ ଥିଲା ଓଡ଼ିଆ ଜାତିର ସ୍ୱାଭିମାନ ଏବଂ ସ୍ୱତନ୍ତ୍ର ଭାବନାର ସ୍ମାରକୀ । ଖୋର୍ଦ୍ଧାର ପାଇକ ଜାତି ଜାଗ୍ରତ ହେଲେ ସମଗ୍ର ଓଡ଼ିଶାରେ ତାହାର ପଦଧ୍ୱନି ଝଙ୍କୃତ ହେଉଥିଲା । ଖୋର୍ଦ୍ଧାର ରାଜାହିଁ ଥିଲେ ଜାତିର ଆଶା ଭରସାର କେନ୍ଦ୍ରବିନ୍ଦୁ । ରଣରଙ୍ଗ ଖୋର୍ଦ୍ଧାର ଖଣ୍ଡାୟତବାହିନୀ ଅକୁଣ୍ଠ ଚିତ୍ତରେ ଶତ୍ରୁର ମୁକାବିଲା କରିବାପାଇଁ ପ୍ରସ୍ତୁତ ରହିଥିଲେ । ପତିତ ପରାଧୀନ ଜାତିର ଦୁର୍ଗତି ସ୍ମରଣ କରି କବି ଗୋଦାବରୀଶ ମହାପାତ୍ର ଆହ୍ୱାନ ଦେଇଥିଲେ ଖୋର୍ଦ୍ଧାର ବୀରମାନଙ୍କୁ—

"ଦୁର୍ଗମ ଗିରି ଦୁର୍ଗ ପ୍ରାଚୀର ଜୀର୍ଣ୍ଣ ଦୁଆରେ ବସି,<br>
ଡାକେ ତାନ୍ତ୍ରିକ ମନ୍ତ୍ର ସାଧନେ ଜାଗ୍ରତ ପୁରବାସୀ ।<br>
ପୃଥ୍ୱୀ ବିଦାରି ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ<br>
ଖୋରଧାର ଶତ ସର୍ଦ୍ଦାର ଶିର କର ଉନ୍ନତତର ।<br>
ଉଠ କଙ୍କାଳ ଛିଣ୍ଡୁ ଶୃଙ୍ଖଳ ଜାଗ ଦୁର୍ବଳ ଆଜି<br>
ଉଠୁ ଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।"

(ଉଠ କଙ୍କାଳ)

ଆଧୁନିକ ଓଡ଼ିଆ ସାହିତ୍ୟରେ ଜାତୀୟ ଯୁଗର କବି ପଦ୍ମଚରଣ ପଟ୍ଟନାୟକ ଖୋର୍ଦ୍ଧା ରାଜ୍ୟକୁ ବୀରଭୂମି ବୋଲି ପ୍ରମାଣ କରିଛନ୍ତି । ଖୋର୍ଦ୍ଧା ରାଜ୍ୟର ଗରିମାମୟ ଇତିହାସ ତାଙ୍କର କବିପ୍ରାଣରେ ଅପୂର୍ବ ପୁଲକ ସଞ୍ଚାର କରିଅଛି । ସେ ବିହ୍ୱଳ ଚିତ୍ତରେ ଗାଇଛନ୍ତି "ଖୋରଧା ପ୍ରଥମ ଦର୍ଶନେ" କବିତାରେ—

"କି ଭୂମିରେ ଆଜି ଦେଲି ମୋର ପାଦ<br>
କି କଲି କି କଲି କେଡ଼େ ଅପରାଧ<br>
ଯେ ସେ ଭୂମି ନୁହେଁ ଏହି କ୍ଷୁଦ୍ର ସ୍ଥାନ<br>
କେତେ ବୀରର ଏ ଗୌରବ ଶ୍ମଶାନ<br>
ଯହିଁ ଟେକିଦେଲେ ଟେକା ଖଣ୍ଡେ ଏଥି<br>
ମିଳିଯିବ ବୀର ଅସ୍ଥି-ମେଦ-ଗ୍ରନ୍ଥି<br>
ପ୍ରତିରେଣୁ ସଂଗେ ବୀରର ଶୋଣିତ<br>
କାଳେ କାଳେ ଏଥି ରହିଛି ଲେପିତ ।"

ପବିତ୍ର ଖୋର୍ଦ୍ଧାଭୂମି ହେଉଛି ଅତୀତ ଉତ୍କଳର ବହୁ ପୂର୍ବ କୀର୍ତ୍ତି ଏବଂ ଗୌରବମୟ ସ୍ମୃତିର ସ୍ମାରକୀ । ସେହି ଭୂମିରେ ଯେଉଁ ବୀର ପାଇକମାନେ ଜନ୍ମଭୂମି ପାଇଁ ହସି ହସି ପ୍ରାଣବଳି ଦେଇଥିଲେ ଏବଂ ଦେଶମାତୃକାର ଗୌରବ ବଜାୟ ରଖିଥିଲେ, ସେହିମାନଙ୍କୁ ସ୍ମରଣ କରି କବିଙ୍କର ଖେଦୋକ୍ତି ଏହିପରି—

"ତବ ଗୀତ ପାଇଁ ନାହିଁ ଆଜ ସ୍ଥାନ
ତବ ଗାଥା ଲଗି ନାହିଁ ଦେଶେ ଗମନ ।
ପୂର୍ବ ଗର୍ବ ଯହିଁ ଏବେ ଶମଶାନ
ବଂଶେ, ନିଃସ୍ୱ ନାମେ ଆଜ ହେଯୁ ମ୍ଳାନ ।"

ଇଂରେଜ ରାଜତ୍ୱ କାଳରେ ସମଗ୍ର ଭାରତବର୍ଷ ପରାଧୀନ ହେଲାପରେ ଶେଷରେ ଓଡ଼ିଶା ପଦାନତ ହୋଇଥିଲା । ଭାରତର ଐତିହାସିକଗଣ ସିପାହୀବିଦ୍ରୋହକୁ ଭାରତରେ ପ୍ରଥମ ସ୍ୱାଧୀନତା ସମର ବୋଲି ମତବ୍ୟକ୍ତ କରୁଥିଲେହେଁ ୧୮୧୭ ସାଲରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଯେଉଁ ପାଇକବିଦ୍ରୋହ ହୋଇଥିଲା, ତାହାକୁ ଇଂରେଜ ରାଜଶକ୍ତି ବିରୋଧରେ ପ୍ରଥମ ଭାରତୀୟଙ୍କର ବିଦ୍ରୋହ ବୋଲି ଇତିହାସ ପ୍ରମାଣ କରିଅଛି । ଏହି ସଂଗ୍ରାମର ସେନାପତି ବକ୍ସିଜଗବନ୍ଧୁ ସ୍ୱାଧୀନତା ସଂଗ୍ରାମର ପ୍ରଥମ ମାର୍ତ୍ତିକ ଥିଲେ ବୋଲି କବି କୁଞ୍ଜବିହାରୀ ଆହ୍ୱାନ ଦେଇଛନ୍ତି—

"ଭୈରବ ରବେ ଅଶନି ନେସ ଦିନ
ଘୋଷିଲା ଖୋର୍ଦ୍ଧା ପ୍ରାନ୍ତରେ
ନିଜ ବୈଭବ ତେଜ ଗୌରବ
ମନ୍ଦ ମଧୁର ମନ୍ତ୍ରରେ ।
ସୁପ୍ତ ପାଇକ ଦୃପ୍ତ ଚମକେ
ପ୍ରାପ୍ତ ହେଲେ ସେ ଇଙ୍ଗିତେ
କନ୍ଦରେ ଗୁହା ଗର୍ଜି ଉଠିଲା
ଜୟ ଉତ୍କଳ ସଙ୍ଗୀତେ
ଛିନ୍ନ କର ହେ ବନ୍ଧନ
ଭିନ୍ନ କର ହେ ଛନ୍ଦନ
ସ୍ୱାଧୀନତା ଲଭେ କେଉଁ ଜାତି କେବେ
କରି ଶିଶୁ ସମ କ୍ରନ୍ଦନ ।"

## ଖଣ୍ଡାକୁଶଳ ଖଣ୍ଡାୟତ ଓ ଖୋର୍ଦ୍ଧାର ପାଇକ :

"The word Khandait literally means a "swords man". The Khandaits one to be found chiefly in Oriss a and in the adjoining districts of Chhotanagpur. They were the fighting class of Orissa under the Hindu kings of the provinu. They are divided in to two main sub-classes called the Mahanayak or the Ssestha Khandaits and the Paik or chasa khandaits. These names in dicate that the fosmer represent the ancient

military commanders and the latter the rank and file who are now mainly agriculturists and one therefore called chasa khandaits. Inter marriage between these sub-classes is not impossible, but is very sare in practice." (ଖ)

ଖୋର୍ଦ୍ଧାର ଖଣ୍ଡାୟତମାନଙ୍କୁ 'ଚଷା' ବୋଲି ନାମିତ କରାଯାଇଥାଏ । ଏହି ଚଷା ଖଣ୍ଡାୟତମାନେ ଶାନ୍ତି କାଳରେ କୃଷି କର୍ମରେ ନିପୁଣ ଥାଇ ରାଷ୍ଟ୍ରକୁ ଖାଦ୍ୟ ଯୋଗାଇଥାନ୍ତି ଏବଂ ଦେଶର ସୁରକ୍ଷା ପାଇଁ ଆହ୍ୱାନ ଆସିଲେ ଲଙ୍ଗଳ ଫିଙ୍ଗି ଦେଇ ଖଣ୍ଡା ତରୁଆଲରେ ଶତ୍ରୁରକ୍ତରେ ହୋଲିଖେଳ ଖେଳନ୍ତି । ଅତୀତର ସ୍ୱାଧୀନ ଉତ୍କଳରେ ଏହାହିଁ ଥିଲା ଖଣ୍ଡାୟତ ଜାତିର ସାଧନା ଓ ତପସ୍ୟା । ଏମାନେ ଏକ ସାମରିକ ଜାତିରେ ପରିଣତ ହୋଇ ଯାଇଥିଲେ । ରାଜା ସେମାନଙ୍କୁ ବିସ୍ତର ଜାଗିରଜମି ଭୋଗଦଖଲ କରିବାକୁ ଦେଇଥିଲେ । ରାଷ୍ଟ୍ରର ସ୍ୱାଭିମାନ ରକ୍ଷାପାଇଁ ଏମାନେ ଥିଲେ ସର୍ବଦା ଜାଗ୍ରତ ଏବଂ ତତ୍ପର । ଏମାନଙ୍କର କୁଳୋପାଧି ଥିଲା ରାଜଦତ୍ତ ଏବଂ ତାହା ସମରଭୂମିରେ ନିପୁଣତାର ପରିଚୟ । କେବଳ ଖଣ୍ଡାୟତ ନୁହଁନ୍ତି, ବ୍ରାହ୍ମଣ, କରଣ, ଖଣ୍ଡାୟତ ସମେତ ପ୍ରତ୍ୟେକ ଜାତିର ଲୋକ ନିଜନିଜର କୁଳ ବ୍ୟବସାୟ ସହିତ ସାମରିକ ବିଦ୍ୟାରେ ସୁଦ୍ଧା ନିପୁଣତା ହାସଲ କରୁଥିଲେ ଏବଂ ରାଜାଙ୍କର ଆହ୍ୱାନ ଆସିଲେ ହସି ହସି ରଣଭୂମିରେ ନିଜର ପାରଦର୍ଶିତା ପ୍ରଦାନ କରୁଥିଲେ । ସେଥିପାଇଁ ବଂଶଙ୍କାପ୍ତ ଏହି ସାମରିକ ଉପାଧିଗୁଡ଼ିକରୁ ତାହାର ପ୍ରମାଣ ମିଳିପାରିବ । ଉଦାହରଣ ସ୍ୱରୂପ ରାଉତ, ରାଉତରାୟ, ମାହାନ୍ତ, ସିଂହ, ବାଘ, ବଳିଆର ସିଂହ, ଝିପଟ ସିଂହ, ଯୋଦ୍ଧମାସିଂହ, ବାହାବଳେନ୍ଦ୍ର, ପାଇକରାୟ, ଭୁଜବଳ, ରଣସିଂହ, ପାହାଡ଼ସିଂହ, ଦକ୍ଷିଣକବାଟ, ମହାରଥୀ, ପଶ୍ଚିମକବାଟ, ସେନାପତି, ବାହିନୀପତି, ନାୟକ, ପଟ୍ଟନାୟକ, ନର୍ମଡସିଂହ, ଚମୂପତିରାୟ, ଗଡ଼ନାୟକ, ମାନସିଂହ, ଶତ୍ରୁଶଲ, ରାୟସିଂହ, କହଲସିଂହ, ମାନଧାତା, ପାଳଟସିଂହ, ବୀରବର, ବାଟସିଂହ, ଉତ୍ତରକବାଟ, ମଙ୍ଗରାଜ, ହାତି, ଜେନା, ମଲ୍ଲ, ଦଳବେହେରା, କଳାପାହାଡ଼, ସାମନ୍ତରାୟ, ସାମନ୍ତସିଂହାର, ଜୟସିଂହ ପ୍ରଭୃତି ।

ଦେଶର ସୁରକ୍ଷା ପାଇଁ ସ୍ୱାଧୀନ ଓଡ଼ିଶାର ରାଜାମାନେ ଦେଶକୁ ସାମରିକ ସ୍ୱାର୍ଥ ଦୃଷ୍ଟିରୁ କେତୋଟି କଟକରେ ବିଭକ୍ତ କରିଥିଲେ ଏବଂ ପ୍ରତ୍ୟେକ କଟକରେ ବହୁ ଦୁର୍ଗ ନିର୍ମାଣ କରାଯାଇଥିଲା । କଟକ କହିଲେ ମଧ୍ୟ ସେନା ଶିବିର ଏବଂ 'ଗଡ଼'କୁ ଦୁର୍ଗ ଅର୍ଥରେ ବ୍ୟବହାର କରାଯାଇଥାଏ । ଆଫଗାନ ଐତିହାସିକଗଣ ଓଡ଼ିଶାରେ ବହୁ ଗଡ଼ ଥିବାର ଲେଖିଯାଇଅଛନ୍ତି । କେବଳ ଖୋର୍ଦ୍ଧା ରାଜ୍ୟରେ ୭୨ଟି କିଲ୍ଲା ବା ଗଡ଼ ଥିଲା ବୋଲି ଜଣାଯାଇ ଅଛି । ସେହି ଗଡ଼ଗୁଡ଼ିକର ନାମ ହେଲା—(୧) ଖୁରୁଧା, (୨) ରଥିପୁର, (୩) ବରଗଡ଼, (୪) ଶିଶୁପାଳଗଡ଼, (୫) ଖାରପଡ଼ା, (୬) କପିଳପ୍ରସାଦ, (୭) ପାହପଡ଼ା, (୮) ଜେନାପୁର, (୯) ଜାମୁକୋଲି, (୧୦) ତାଙ୍ଗି, (୧୧) ଚତରମା,

(ଖ) Hindu castes and Sects-Bhattacharya-1880-PP. 147-148

(୧୨) ଲକ୍ଷ୍ମୀସିଂହ, (୧୬) ଗଙ୍ଗପଡ଼ା, (୧୪) ମଲ୍ଲପଡ଼ା, (୧୫) ଉମ୍ବୁଉମା, (୧୬) ପଲ୍ଲୀ, (୧୭) ରାମେଶ୍ୱର, (୧୮) ମଣିବନ୍ଧ, (୧୯) ମାଣିକଗୋଡ଼ା, (୨୦) ମଙ୍ଗୋଇ, (୨୧) କୋରମତି, (୨୨) କାଳାମାଟିଆ, (୨୩) କନକଗଡ଼, (୨୪) ମଙ୍ଗଳାଯୋଡ଼, (୨୫) ଜରିପଡ଼ା, (୨୬) ରେଡ୍ଡଙ୍ଗ, (୨୭) କଠମ୍, (୨୮) ନରସିଂହ ପ୍ରସାଦ, (୨୯) ବରନଗଡ, (ବାରଙ୍ଗଗଡ), (୩୦) କେରଙ୍ଗ, (୩୧) ମୃତ୍ୟୁଞ୍ଜୟ ଗଡ଼, (୩୨) କାଇମାଟିଆ, (୩୩) ଉସୁନା, (୩୪) ବରଣ୍ଡା (ବରମ୍ବାଦା), (୩୫) ବଳଭଦ୍ରପ୍ରସାଦ, (୩୬) ନଓଲ, (ନୂଆପଲ୍ଲ), (୩୭) ବନ୍ଧ୍ୟଗିରି, (୩୮) ତରକାଇ, (୩୯) ସେରଣଗଡ଼, (୪୦) ମାଟିଆପଡ଼ା, (୪୧) ବଙ୍ଗରେ, (୪୨) ଭଙ୍ଗରେ, (୪୩) କୋକଳ, (୪୪) କରକ, (୪୫)-(୫୨) ଲେମ୍ବାଇରେ ଆଠଟି କିଲ୍ଲା, (୫୩) ଅନ୍ଧାରୁଆ ଦାନ୍ତଙ୍ଗ, (୫୪) କଳାପଥର, (୫୫-୬୭) ତେରଟି ଘୋର ଖଣ୍ଡାୟତ ଗଡ଼, (୬୮) ନଷ୍ଟିକୋଟ, (୬୯) କାଇପଦର, (୭୦) ବୋଲଗଡ଼, (୭୧) ଗଙ୍ଗପଡ଼ା, (୭୨) ମୂଳଝର ।

ଏତଦ୍‌ବ୍ୟତୀତ ଖୋର୍ଦ୍ଧା ରାଜାଙ୍କ ଅଧୀନରେ ପ୍ରାୟ ୨୯ ଜଣ ହିନ୍ଦୁ ସରଦାର ଥିଲେ, ଯେଉଁମାନେ ପରେ ନିଜକୁ ରାଜା ବୋଲି ଘୋଷଣା କରିଥିଲେ । ସେମାନେ ହେଲେ—(୧) ବାଙ୍କୀ, (୨) ଡମପଡ଼ା, (୩) ଅଠିର, (୪) କାଳୁପଡ଼ା, (୫) ବଡ଼ମ୍ବା, (୬) ତିଗିରିଆ, (୭) ନରସିଂହପୁର, (୮) ଅନୁଗୁଳ, (୯) ତାଳଚେର, (୧୦) ମୁଦ୍ଗେଶ୍ୱର, (୧୧) ଢେଙ୍କାନାଳ, (୧୨) ଆଠଗଡ଼, (୧୩) ସରଣ୍ଡା, (୧୪) ଅନ୍ଧାରି, (୧୫) ବଜ୍ରକୋଟ, (୧୬) ଅଚଳକୋଟ, (୧୭) ନୟାଗଡ଼, (୧୮) ଖଣ୍ଡପଡ଼ା, (୧୯) ରଣପୁର, (୨୦) ଦଶପଲ୍ଲା, (୨୧) ବାଣପୁର (ଘୋରଣ, ବୋଟେଶ୍ୱର, ବଙ୍କାଡ଼, ପାରିକୁଦ ଓ ଛତ୍ରଗଡ଼ ଏହାର ଅନ୍ତର୍ଭୁକ୍ତ ଥିଲା), (୨୨) ଘୁମୁସର, (୨୩) ଖଲ୍ଲିକୋଟ, (୨୪) କୋଦଳା ଆଠଗଡ଼, (୨୫) ଚିକିଟି, (୨୬) ମଦ୍ଧୁର, (୨୭) ସେରଗଡ଼, (୨୮) ପାଲୁର, (୨୯) ଟିକାଲି ରଘୁନାଥପୁର ।

ଏହି ଜମିଦାରୀ ଅଞ୍ଚଳରେ ୧୨୯ଟି କିଲ୍ଲା ବା ଗଡ଼ ଥିଲା ବୋଲି ଜଣାଯାଇଛି । (ଗ)

## ସ୍ୱାଧୀନ ଗଜପତି ସାମ୍ରାଜ୍ୟର ପତନ ଓ ଖୋର୍ଦ୍ଧା ରାଜବଂଶ :

ଶେଷ ସ୍ୱାଧୀନ ରାଜା ଗଜପତି ମୁକୁନ୍ଦଦେବ ଆଫଗାନ ସେନାପତି ସୁଲେମାନ କରାନୀଙ୍କ ଦ୍ୱାରା ପରାସ୍ତ ହୋଇ ୧୫୬୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କଲେ । ସେକାଳର ଜଣେ ପ୍ରଧାନ ରାଜମାନ୍ତଙ୍କ ଜନାର୍ଦ୍ଦନ ବିଦ୍ୟାଧର ବାରବାଟୀ କିଲ୍ଲାରେ ମୁକୁନ୍ଦଦେବଙ୍କ ଦ୍ୱାରା ବନ୍ଦୀଜୀବନ ଅତିବାହିତ କରୁଥିଲେ । ତାଙ୍କର ପୁତ୍ର ରାମଚନ୍ଦ୍ରଦେବ ଥିଲେ ଅତ୍ୟନ୍ତ ଚତୁର ଏବଂ ସମର ବିଶାରଦ । ଓଡ଼ିଶାରେ ଅରାଜକତାର ସୁଯୋଗ ଗ୍ରହଣ

(ଗ)—ଖୁରୁଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର—୧୯୬୯, ପୃ. ୩୪-୩୫ ।

କରି ସେ ମୁକୁନ୍ଦଦେବଙ୍କ ମୃତ୍ୟୁ ଖବର ପାଇ ଦକ୍ଷିଣରେ ବଣାଖାପାଟଣା ଜିଲ୍ଲାର ଖାରଗୋଟମ୍ବୁ ଦୁର୍ଗରେ ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣା କରି କଟକ ରାଜଧାନୀ ଅଧିକାର କରିବା ପାଇଁ ଅଭିଯାନ କୋଇଲେ । ମାତ୍ର କଟକ ଅବରୋଧ କରିବାରେ ବିଫଳ ହୋଇ ଖୋର୍ଦ୍ଧା ଦୁର୍ଗକୁ ନିରାପଦ ମଣି ସେଠାରେ ରାଜଧାନୀ ସ୍ଥାପନ କରି ଶାସନ କରିବାକୁ ଲାଗିଲେ । ମୋଗଲ ସେନାପତି ରାଜା ମାନସିଂହଙ୍କ ବଶ୍ୟତା ସ୍ୱୀକାର କରି ସେ ଖୋର୍ଦ୍ଧାରେ ନିଜକୁ ଅଧିଷ୍ଠିତ କରାଇଥିଲେ । ରାଜା ମାନସିଂ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧାର ଶାସକ ବୋଲି ସ୍ୱୀକୃତି ପ୍ରଦାନ କରିଥିଲେ । (ଘ) ବାସ୍ତବରେ ଏହି ବଂଶର ପ୍ରତିଷ୍ଠାତା ରାଜା ରାମଚନ୍ଦ୍ରଦେବଙ୍କ ଅମଳରୁ ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଅଧିକାର କଲା ପର୍ଯ୍ୟନ୍ତ ଖୋର୍ଦ୍ଧା ରାଜବଂଶ ଓ ଖୋର୍ଦ୍ଧା ରାଜ୍ୟ ଓଡ଼ିଶାର ରାଜନୀତି ଏବଂ ସାଂସ୍କୃତିକ ଜୀବନରେ ନିରବଚ୍ଛିନ୍ନ ପ୍ରଭାବ ଅକ୍ଷୁର୍ଣ୍ଣ ରଖିପାରିଥିଲା । ଜାତୀୟ ଜୀବନର ସେହି ଦୁର୍ଗତି ସମୟରେ ହିନ୍ଦୁ ସଂସ୍କୃତିର ରକ୍ଷଣାବେକ୍ଷଣ ଏବଂ ପୃଷ୍ଠପୋଷକତା ପାଇଁ ଖୋର୍ଦ୍ଧା ରାଜବଂଶ ବ୍ୟତୀତ ଓଡ଼ିଶା ଭୂଖଣ୍ଡରେ ଆଉ କେହି ସହାୟକ ନଥିଲେ । ରାମଚନ୍ଦ୍ର ଦେବ ପୁରୁଷୋତ୍ତମ ପୀଠରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିର ପୁନଃପ୍ରତିଷ୍ଠା କରି କେବଳ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଭାବରେ ସମ୍ମାନିତ ହୋଇ ନଥିଲେ, ଷୋଳ ଶାସନର ପ୍ରତିଷ୍ଠା କରି ବ୍ରାହ୍ମଣ ପଣ୍ଡିତମାନଙ୍କର ପୃଷ୍ଠପୋଷକତା କରିବା ଫଳରେ ଦେଶରେ ସଂସ୍କୃତ ସାହିତ୍ୟର ବହୁ ପ୍ରସାର ହୋଇଥିଲା । ଅରାଜକତା ହେତୁ ଶ୍ରୀମନ୍ଦିରରେ ସେବାପୂଜାରେ ନାନା ବିଶୃଙ୍ଖଳା ଦେଖାଯାଇଥିଲା । ରାଜ୍ୟରେ ଶାନ୍ତି ପ୍ରତିଷ୍ଠା କରି ରାମଚନ୍ଦ୍ରଦେବ ପୁଣି ମନ୍ଦିରରେ ପୁନର୍ବାର ମହାପ୍ରସାଦ ଭୋଗରେ ପ୍ରଚଳନ କରାଇଥିଲେ । (ଙ)

ଷୋଳ ଶାସନର ପ୍ରତିଷ୍ଠା ଗଜପତି ରାମଚନ୍ଦ୍ର ଦେବଙ୍କର ଆଉ ଏକ ଅକ୍ଷୟ କୀର୍ତ୍ତି । ଅବଶ୍ୟ କଟକରେ ସ୍ୱାଧୀନ ହିନ୍ଦୁ ରାଜାମାନଙ୍କର ରାଜଧାନୀ ଥିଲାବେଳେ ସୂର୍ଯ୍ୟ-ବଂଶର ରାଜା ଗଜପତି ପୁରୁଷୋତ୍ତମ ଦେବ ଏବଂ ତାଙ୍କର ଆତ୍ମୀୟ ତଥା ପାରିଷଦଗଣ କଟକ ନିକଟରେ ଷୋଳ ଶାସନର ପରିକଳ୍ପନା କରିଥିଲେ । ମାତ୍ର ଆଫଗାନ-ମୋଗଲ

---

(ଘ) "He (Raja Man Singh) recognised Ramachandra Deva as the Gajapati king with control over the Khurda kingdom having seventy one forts (Killa) and overlord of thirty one sub-ordinate chiefs who commanded over one hundred twenty nine forts. ManSingh condueted the land revenue settlement in 1573 confirming the status and possession of Ramachandra Deva as above and recognising the son of the late Gajapati Mukunda Deva as the chief of Ali".

(History of Orissa—1981, Nalanda—P.311)

(ଙ) ମାଦଳାପାଞ୍ଜି—ପ୍ରାଚୀ ସମିତି, ପୃ. ୬୩ ।

ରାଜତ୍ୱ କାଳରେ ସ୍ୱାଧୀନ ହିନ୍ଦୁ ରାଜତ୍ୱର ବିଲୋପ ହେବାରୁ ଏହି ଶାସନଗୁଡ଼ିକ ମ୍ଳାନ ହୋଇଗଲେ । ସେଥିପାଇଁ ରାଜା ରାମଚନ୍ଦ୍ରଦେବ ଖୋର୍ଦ୍ଧାକୁ ରାଜଧାନୀ କରି ପୁରୁଷୋତ୍ତମ କ୍ଷେତ୍ରର ଅନତି ଦୂରରେ ଷୋଳ ଶାସନର ପରିକଳ୍ପନା କରିଥିଲେ । ପରବର୍ତ୍ତୀ ଭୋଇ ରାଜାଗଣ ମଧ୍ୟ ବହୁ ଶାସନ ପ୍ରତିଷ୍ଠା କରିଯାଇ ଅଛନ୍ତି । (ଚ) କେବଳ ସେତିକି ନୁହେଁ, ଭୋଇ ରାଜା ନରସିଂହଦେବ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକ ଥିଲେ । ସେ ବ୍ରାହ୍ମଣମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରି ସାମନ୍ତ, ଭଞ୍ଜ ମିଶ୍ର ଏବଂ ବୈଦିକ ଭାବରେ ସ୍ୱୀକୃତି ଏବଂ ସମ୍ମାନ ଦେବା ଯୋଗୁଁ ବୁଦ୍ଧି ଜୀବୀ ବ୍ରାହ୍ମଣମାନଙ୍କର ଅକୁଣ୍ଠ ଆନୁଗତ୍ୟ ଲାଭ କରିବା ପାଇଁ ସମର୍ଥ ହୋଇଥିଲେ ।

## ଅନ୍ତରୀଣ ବିପ୍ଳବ—
## ଖୋର୍ଦ୍ଧା ରାଜବଂଶର ଦୁର୍ଗତି ଏବଂ ଶ୍ରୀଜଗନ୍ନାଥଙ୍କର ବିପତ୍ତି :

ସ୍ୱାଧୀନ ଗଜପତି ସୂର୍ଯ୍ୟବଂଶର ଶେଷ ଦାୟାଦମାନଙ୍କର ଦୁର୍ବଳତାର ସୁଯୋଗ ନେଇ ଜଣେ ବିଚକ୍ଷଣ ରାଜକର୍ମଚାରୀଙ୍କର ପୁତ୍ର ରାମଚନ୍ଦ୍ରଦେବ ଭୋଇବଂଶର ପ୍ରତିଷ୍ଠା କରିଥିଲେ ହେଁ ଏହି ରାଜବଂଶ ଶାନ୍ତି ଓ ନିରାପଦରେ ଖୋର୍ଦ୍ଧା ସିଂହାସନରେ ବସିପାରି ନଥିଲେ । ବାରବାଟୀ କଟକରେ ଅବସ୍ଥାପିତ ଆଫଗାନ ଓ ମୋଗଲ ସୁବାଦାରମାନେ ବାରମ୍ବାର ଖୋର୍ଦ୍ଧା ଦୁର୍ଗକୁ ଆକ୍ରମଣ କରୁଥିଲେ । ଜନସାଧାରଣଙ୍କର ଧନଜୀବନ ନିରାପଦ ନଥିଲା । ଶ୍ରୀଜଗନ୍ନାଥ ମନ୍ଦିର ବାରମ୍ବାର ଲୁଣ୍ଠିତ ହେଉଥିଲା ଏବଂ ମହାପ୍ରଭୁଙ୍କର ସେବାପୂଜା ନିର୍ବିଘ୍ନରେ ହୋଇପାରୁ ନଥିଲା । ଖୋର୍ଦ୍ଧା ରାଜା ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ଖାନ-ଇ-ଦୁରାନ ଓଡ଼ିଶାର ସୁବାଦାର ଥିଲେ । ସେ ୧୬୬୭ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କରିବା ପୂର୍ବରୁ କେନ୍ଦ୍ରାପଡ଼ାର ବିଶାଳ ବଳଦେବଜୀଉ ମନ୍ଦିରକୁ ଧ୍ୱଂସ କରିଦେଲେ । ସେହି ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ସୁବାଦାର ଆସୁଦ୍ଧ ଖାଁ ଓଡ଼ିଶା ବିଖ୍ୟାତ ଝଙ୍କଡ଼ର ସାରଳାଙ୍କ ମନ୍ଦିରକୁ ମଧ୍ୟ ଭାଙ୍ଗି ଦେଇଥିଲେ । ଆସୁଦ୍ଧ ଖାଁଙ୍କ ପରେ ତାଙ୍କ ପୁତ୍ର ଆବୁନାସର ସୁବାଦାର ହେବା ମାତ୍ରେ ପୁରୀ ମନ୍ଦିରକୁ ଧ୍ୱଂସ କରିବା ପାଇଁ ଅଭିଯାନ ଆରମ୍ଭ କଲେ । ମାତ୍ର କୌଣସି ପ୍ରକାରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ ତାଙ୍କୁ ଅଜସ୍ର ଅର୍ଥ ପ୍ରଦାନ କରି ପିପିଲି ପାଖରୁ ଫେରାଇ ଆଣିବାରେ ସକ୍ଷମ ହୋଇଥିଲେ । ଗଜପତି ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ପିପିଲିର ବନ୍ଧୁ ହେବାଜନ୍ମ, ଯାଜପୁରର ଅନେକ ମନ୍ଦିର ଧ୍ୱଂସ କରାଯାଇ ପ୍ରତ୍ୟେକ ସ୍ଥାନରେ ମସ୍‌ଜିଦ୍ ନିର୍ମିତ ହୋଇଥିବା ଜଣାଯାଏ । ମୋଗଲ ସମ୍ରାଟ ଆଉରଙ୍ଗଜେବ ଜଗନ୍ନାଥଙ୍କ ମନ୍ଦିର ଭାଙ୍ଗିବା ପାଇଁ ଆଦେଶ ଦେବାରୁ ଓଡ଼ିଶାର ନବାବ ଏକରାମ ଖାଁ ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବଙ୍କୁ ଆଦେଶ ଦେଲେ ସମ୍ରାଟଙ୍କ ନିକଟକୁ ଶ୍ରୀଜଗନ୍ନାଥଙ୍କ ପ୍ରତିମା ପ୍ରେରଣ କରିବା ପାଇଁ । କପଟତା ଆଚରଣ କରି ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବ ଚନ୍ଦନ କାଠର ଏକ ପ୍ରତିମା ନିର୍ମାଣ ସହିତ ତାହାର ନେତ୍ରଦ୍ୱୟରେ ମୂଲ୍ୟବାନ ରତ୍ନ ଖଚିତ କରାଇଲେ ଏବଂ

(ଚ) ଖୁରୁଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର—୧୯୬୯, ପୃ. ୧୭-୧୮ ।

ବିଜାପୁରରେ ଅବସ୍ଥାନ କରୁଥିବା ସମ୍ରାଟଙ୍କ ନିକଟକୁ ତାହା ପ୍ରେରଣ କରାଗଲା । ଧର୍ମାନ୍ଧ ଆଉରଙ୍ଗଜେବ ସେହି ବିଗ୍ରହକୁ ଏକ ମସ୍‌ଜିଦ୍‌ର ପାହାଚ ତଳେ ପକାଇ ଦେଇଥିଲେ । ମୁସଲମାନ ରାଜତ୍ୱକାଳୀନ ଇତିହାସରୁ ଜଣାଯାଇଅଛି ମୁସଲମାନ ଆକ୍ରମଣ ଭୟରେ ଶ୍ରୀଜଗନ୍ନାଥ ବାରମ୍ବାର ଶ୍ରୀମନ୍ଦିରରୁ ସ୍ଥାନାନ୍ତର ହୋଇଛନ୍ତି । କେତେବେଳେ ଚିଲିକା କୂଳରେ ନଇଗାଁ ଗ୍ରାମରେ ଆତ୍ମଗୋପନ କରିଥିଲେ ତ କେତେବେଳେ ବାଣପୁରର ମାଳ ଅଞ୍ଚଳରେ ବଙ୍କାଉଡ଼ିରେ ଅବସ୍ଥାନ କରିଥିଲେ । ଏପରିକି ଯବନ ଅତ୍ୟାଚାରର ଭୟରେ ସୁଦୂର ଚିକିଲିକୁ ମଧ୍ୟ ଜଗନ୍ନାଥ ବିଗ୍ରହକୁ ସ୍ଥାନାନ୍ତର କରାଯାଇଥିଲା । ମନ୍ଦିରର ଦେବାପୂଜା ବହୁକାଳ ଧରି ବନ୍ଦ ରହୁଥିଲା ବୋଲି ଜଣାଯାଏ । ଗଞ୍ଜାମର ଆଠଗଡ଼ ରାଜ୍ୟରେ ମାରଡ଼ା ନାମକ ସ୍ଥାନରେ ଶ୍ରୀଜଗନ୍ନାଥ ପ୍ରବାସୀ ହୋଇଥିଲେ । ତେବେ ଖୋର୍ଦ୍ଧା ରାଜବଂଶ ସମ୍ପୂର୍ଣ୍ଣ ସ୍ୱାଧୀନ ନ ଥାଇ ମୋଗଲ ସୁବାଦାରମାନଙ୍କ ଦ୍ୱାରା ବାରମ୍ବାର ଉତ୍ପୀଡ଼ିତ ହେଉଥିଲେ ହେଁ ଯେତେବେଳେ ସମୟ ଓ ସୁଯୋଗ ମିଳିଅଛି, ଏହି ରାଜବଂଶ ଆନୁକୂଲ୍ୟରେ ଶ୍ରୀଜଗନ୍ନାଥଙ୍କର ନବକଳେବର, ରଥଯାତ୍ରା ଯାନଯାତ୍ରାର ପୁନଃପ୍ରଚଳନ ଏବଂ ପୁରୁଷୋତ୍ତମ ବିଗ୍ରହମାନଙ୍କର ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା ପାଇଁ ପ୍ରଚେଷ୍ଟା କରାଯାଇଅଛି । ସେଥିପାଇଁ ସମଗ୍ର ହିନ୍ଦୁଜଗତ ଖୋର୍ଦ୍ଧା ରାଜବଂଶ ନିକଟରେ ଋଣୀ ବୋଲି କୁହାଯାଇପାରେ ।

ତେବେ ଇତିହାସର ଏହି ବିଚ୍ଛିନ୍ନ ଅଧ୍ୟାୟ ଅତ୍ୟନ୍ତ ଦୁଃଖାବହ । ରାଜନୈତିକ ଅବକ୍ଷୟ ଯୁଗରେ ଖୋର୍ଦ୍ଧା ରାଜବଂଶ ବହୁ ଅନ୍ତଃସ୍ଥ ପାରିବାରିକ ବିଦ୍ରୋହ, ହତ୍ୟା ଓ ଅବିଶ୍ୱାସ ଆଚରଣର ଶିକାର ହୋଇଥିବା ଜଣାଯାଏ । ଦେଶର ଦୁର୍ଦ୍ଦିନ ବେଳେ ପ୍ରବଳ ପରାକ୍ରାନ୍ତ ବାହ୍ୟ ଶତ୍ରୁ ବିରୋଧରେ ଯେଉଁ ପ୍ରକାର ଐକ୍ୟ ଏବଂ ସଂହତିଜନିତ ନେତୃତ୍ୱ ଦେବାର ଆବଶ୍ୟକତା ଥିଲା, ତାହା ଖୋର୍ଦ୍ଧା ରାଜବଂଶ ଦେଇପାରି ନଥିଲେ । ରାମଚନ୍ଦ୍ର ଦେବ ପ୍ରଥମଙ୍କ ପୁତ୍ର ପୁରୁଷୋତ୍ତମ ଦେବ (୧୬୦୭-୧୬୨୨ଖ୍ରୀ.) ଦୀର୍ଘକାଳ ରାଜତ୍ୱ କଲେହେଁ ସୁବାଦାର ମକ୍ରମ ଖାନ ୧୬୧୭ରେ ଖୋର୍ଦ୍ଧା ଆକ୍ରମଣ କରିବାରୁ ଜୀବନ ବିକଳରେ ସେ ଖୋର୍ଦ୍ଧା ପରିତ୍ୟାଗ କରି ରାଜମହେନ୍ଦ୍ରୀରେ ଆଶ୍ରୟ ଗ୍ରହଣ କଲେ ଏବଂ ଭଗ୍ନମନୋରଥ ହୋଇ ୧୬୨୨ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କଲେ । ସେତେବେଳେ ରାଜା ନିଜକୁ ରକ୍ଷା କରିପାରୁ ନାହାନ୍ତି ଜଗନ୍ନାଥଙ୍କୁ କିଏ ପଚାରେ । ରାଜାମାନେ ଜୀବନ ଭୟରେ ବାରମ୍ବାର ଖୋର୍ଦ୍ଧାଗଡ଼କୁ ପରିତ୍ୟାଗ କଲାପରି ଶ୍ରୀମନ୍ଦିରର ଦେବ ପ୍ରତିମାକୁ ବାରମ୍ବାର ସ୍ଥାନାନ୍ତର କରାଯାଇଛି । ପୁରୁଷୋତ୍ତମଙ୍କ ପୁତ୍ର ନରସିଂହ ଦେବ ୧୬୨୨ରେ ସିଂହାସନ ଆରୋହଣ କରିଥିଲେ । ସେ ଉଭୟ ମୁସଲମାନ ଶାସକ ଏବଂ ତାଙ୍କର ପରିବାର ଲୋକର ବିରୋଧର ସମ୍ମୁଖୀନ ହୋଇଥିଲେ । ମୁସଲମାନ ଅତ୍ୟାଚାର ଭୟରେ ସେ ଜଗନ୍ନାଥଙ୍କୁ ନେଇ ନିଜ ରାଜଧାନୀ ଖୋର୍ଦ୍ଧାରେ ସାକ୍ଷୀଗୋପାଳ ମନ୍ଦିରରେ ରଖାଇଥିଲେ । ତାଙ୍କର କୌଳିକ ପ୍ରଥାର ପୃଷ୍ଠପୋଷକତା ନେଇ ଐତିହାସିକ କୃପାସିନ୍ଧୁ ହୋତା ଲେଖିଛନ୍ତି –

"ବର୍ତ୍ତମାନ ଦେଶ ଯେତେବେଳେ ମୁସଲମାନ ଆକ୍ରମଣ ଓ ଲୁଣ୍ଠନରେ ଛାରଖାର, ଓଡ଼ିଶାର ଗଜପତି ଯେତେବେଳେ ପ୍ରାଣ-ଭୟରେ ଇତସ୍ତତଃ, ଉତ୍କଳବାସୀଙ୍କ ପ୍ରାଣରୁ ଯେତେବେଳେ ସ୍ୱାଧୀନ ଚିନ୍ତା, ଉଚ୍ଚ ଆକାଂକ୍ଷା ଓ ଶିବ ବନ୍ଧୁକତା ଲୁପ୍ତପ୍ରାୟ, ସେତିକିବେଳେ ରାଜା ନରସିଂହ ଦେବ ଉତ୍କଳରେ କୌଳିନ୍ୟ କଳ୍ପନାରେ ଉନ୍ମାଦ ଅନୁଭବ କରୁଥିଲେ। ସେହି ଉନ୍ମାଦରେ ମାତି ନରସିଂହ ଦେବ ପୁରୀ ନିକଟରେ ବୀରନରସିଂହପୁର ନାମକ ଶାସନ ବସାଇଲେ। ଏହି ସମୟରେ ଉତ୍କଳ ବ୍ରାହ୍ମଣ ସମାଜରେ ସାମନ୍ତ, ଭଟ୍ଟ ମିଶ୍ର ଓ ବୈଦିକ ତିନି ଶ୍ରେଣୀର ସୃଷ୍ଟି ହେଲା। କୁଳ ମର୍ଯ୍ୟାଦା ଅନୁସାରେ ବ୍ରାହ୍ମଣମାନେ ଜମିବାଡ଼ି ବସ୍ତି ଦାନ ପାଇଲେ; ଏବଂ ଗ୍ରାମର ମୁଖ୍ୟ ସାମନ୍ତ 'ଦାନାଧ୍ୟକ୍ଷ' ହେଲେ। ଏଣିକି ସାମନ୍ତ ସୃଷ୍ଟିରେ ରାଜାମାନେ ଗୌରବ ଅନୁଭବ କଲେ। କାଳକ୍ରମେ ପୁରୀ ଜିଲ୍ଲାର ଶାସନମାନଙ୍କରେ ଚାରି ଶ୍ରେଣୀର ସାମନ୍ତ ସୃଷ୍ଟି ହେଲେ। ବତ୍ସ, ନନ୍ଦ, ବାଜପେୟୀ ଏବଂ ଗୋଆତ୍ରେୟ। ଏମାନଙ୍କ ମଧ୍ୟରେ ବତ୍ସମାନଙ୍କୁ ନରସିଂହ ଦେବ ପ୍ରଥମେ ସାମନ୍ତ କରିଥିଲେ।" (ଛ)

କୋଣାର୍କ ମନ୍ଦିର ପତିତ ହେବାରୁ ନରସିଂହ କୋଣାର୍କଦେବଙ୍କୁ ଆଣି ପୁରୀ ବେଢ଼ାରେ ଇନ୍ଦ୍ରଙ୍କ ମନ୍ଦିରରେ ସ୍ଥାପନ କଲେ। ସେ ନିଜର ପରିବାରଙ୍କ ପାଇଁ ପୁରୀ ସହରର ବାଲିସାହିରେ ଏକ ନଅର ତୋଳାଇଥିଲେ। କିନ୍ତୁ ପାରିବାରିକ କଳହଯୋଗୁ ୧୬୪୮ ଖ୍ରୀଷ୍ଟାବ୍ଦରେ ପୁରୀଠାରେ ଜଣେ ମୁସଲମାନ ସାମନ୍ତ ଫତେ ଖାଁ ରାଜାଙ୍କୁ ହତ୍ୟା କରିଥିଲେ। ନରସିଂହଙ୍କ ପୁତୁରା ଗଙ୍ଗାଧର ଦେବଙ୍କୁ ମୁସଲମାନ ସୁବାଦାର ଗାଦିନସୀନ କଲେହେଁ ମାତ୍ର କେତେ ମାସ ପରେ ରାଜକର୍ମଚାରୀମାନେ ତାଙ୍କୁ ଏକାଠି ମିଳି ହତ୍ୟା କଲେ। ଗୋପୀନାଥ ଦେବ ମାତ୍ର ସାତବର୍ଷ ରାଜତ୍ୱ କରିଥିଲେ। ସେତେବେଳେ ମୋଗଲ ଶାସକଗଣ ତାଙ୍କ ପାଇଁ କୌଣସି ଅସୁବିଧା ସୃଷ୍ଟି କରି ନଥିଲେ। ମାତ୍ର ପାରିବାରିକ କଳହ ଓ ଷଡ଼ଯନ୍ତ୍ରର ଶିକାର ହୋଇ ୧୭୨୭ ଖ୍ରୀଷ୍ଟାବ୍ଦରେ ନିଜର ରାଜ-ପ୍ରାସାଦରେ ତାଙ୍କୁ ହତ୍ୟା କରାଯାଇଥିଲା। ଏଥିରେ ନେତୃତ୍ୱ ନେଇଥିଲେ ଦେଓ୍ୱାନ ସମୃଦ୍ଧବେଗ। ଖୋର୍ଦ୍ଧା ରାଜବଂଶରେ ରାଜା ପୁରୁଷୋତ୍ତମ (୧୬୦୦-୧୬୨୦) ଏବଂ ରାଜା ରାମଚନ୍ଦ୍ର ଦେବ ୨ୟ (୧୭୨୭-୧୭୩୬)ଙ୍କ ରାଜତ୍ୱକାଳ ଅତ୍ୟନ୍ତ ଭୟାବହ କହିଲେ ଅତ୍ୟୁକ୍ତି ହେବନାହିଁ।

ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ଓଡ଼ିଶା ୧୬୦୭ ଖ୍ରୀଷ୍ଟାବ୍ଦରେ ଏକ ସ୍ୱତନ୍ତ୍ର ସୁବାରେ ପରିଣତ ହେଲା ଏବଂ ପ୍ରଥମ ସୁବାଦାର ହେଲେ ହସିମ ଖାଁ। ତାଙ୍କର ସମୟରେ ମୋଗଲ ସେନାଧ୍ୟକ୍ଷ ରାଜପୁତ କେଶୋଦାରମାରୁ ପୁରୀ ମନ୍ଦିର ଲୁଣ୍ଠନ କଲେ ଦିଲ୍ଲୀ ସମ୍ରାଟଙ୍କୁ ସନ୍ତୁଷ୍ଟ କରିବା ପାଇଁ। ଖୋର୍ଦ୍ଧା ରାଜା ଯୁଦ୍ଧ କରି ପରାସ୍ତ ହେଲେ ଏବଂ କେଶୋଦାରମାରୁଙ୍କ ସହିତ ଯେଉଁ ସନ୍ଧି ହେଲା ସେଥିରେ ସର୍ତ୍ତ ରହିଲା (୧) ଖୋର୍ଦ୍ଧା ରାଜାଙ୍କ କନ୍ୟା ଦିଲ୍ଲୀ ରାଜପ୍ରାସାଦକୁ ଉପଢ଼ୌକନ ସ୍ୱରୂପ ପ୍ରେରିତ ହେବ (୨) ରାଜାଙ୍କ

(ଛ) ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର, ୧୯୭୯—ପୃ-୧୫୫

ଭଗିମାକୁ କୋଣାଦାର ବିବାହ କରିବେ । (୩) ଦିଲ୍ଲୀ ସମ୍ରାଟଙ୍କୁ ରାଜା ଏକ ଲକ୍ଷ ଟଙ୍କା ଏବଂ ତାଙ୍କର ପାଟହସ୍ତୀ ଶେଖନୋକୁ ଅର୍ପଣ କରିବେ । ଏଭଳି ଅପମାନିତ ସନ୍ଧି ସର୍ତ୍ତରେ ଦସ୍ତଖତ କରିବାକୁ ରାଜା ବାଧ୍ୟ ହୋଇଥିଲେ କେବଳ ସେତିକି ନୁହେଁ, ପୁରୁଷୋତ୍ତମ ଦେବ ଅନୁଗତ ନ ହେବାରୁ ୧୬୧୭ ଖ୍ରୀଷ୍ଟାବ୍ଦରେ ମକରମ ଖାଁ ଖୋର୍ଦ୍ଧା ଦୁର୍ଗ ଆକ୍ରମଣ କରି ଧ୍ୱଂସ କରିଦେଲେ ଏବଂ ରାଜା ସପରିବାର ପଳାୟନ କରି ରଣପୁର ରାଜ୍ୟର ସୀମା ମାଣିକୀ ଦୁର୍ଗରେ ଆତ୍ମଗୋପନ କଲେ । (ଜ)

ଖୋର୍ଦ୍ଧା ରାଜବଂଶର ଇତିହାସରେ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ରାଜତ୍ୱକାଳ ଆଉ ଏକ ଉପହସିତ ଅଧ୍ୟାୟ । ସେ ଥିଲେ ଅତ୍ୟନ୍ତ ଦୁର୍ବଳ ଚିତ୍ତ ଏବଂ ହୀନବୀର୍ଯ୍ୟ । ଖୋର୍ଦ୍ଧାର ପାଇକବାହିନୀ ତାଙ୍କ ପ୍ରତି ଅନୁଗତ ନଥିଲେ । ଏହି ସୁଯୋଗ ଦେଖି ହାଇଦରାବାଦର ନିଜାମ ଚିଲିକା ପର୍ଯ୍ୟନ୍ତ ଓଡ଼ିଶାକୁ ଦଖଲ କରିଗଲେ ଏଣେ କଟକରେ ସୁବାଦାର ମହମ୍ମଦ ତକୀ ଖାନ୍ ଖୋର୍ଦ୍ଧା ଆକ୍ରମଣ କରି ରଥୀପୁର ଦୁର୍ଗ ଅବରୋଧ କଲେ । ଏହି ଦୁର୍ଗର ରକ୍ଷାକାରୀ ଥିଲେ ଦୁଇଜଣ ବିଶ୍ୱସ୍ତ ରାଜପୁରୁଷ ବେଣୁ ଭ୍ରମରବର ଏବଂ ତାଙ୍କର ପୁଅ ମାନାମ୍ବର ହରିଚନ୍ଦନ । ସେମାନେ ରାଜାଙ୍କର ପାରିବାରିକ ଥିଲେ । ପାଇକ ବିଦ୍ରୋହ କରିବାରୁ ଏହି ଦୁଇଜଣ ବୀରପୁରୁଷ ଶେଷରେ ରାମଚନ୍ଦ୍ରଙ୍କ ହାତ ବନ୍ଦୀ ହେଲେ ଏବଂ ସେମାନଙ୍କ ଶିରଚ୍ଛେଦ କରି ରାଜା ବାରବାଟୀ ଦୁର୍ଗକୁ ପ୍ରେରଣ କରିଥିଲେ । ତକି ଖାନ୍ ଏଥିରେ ସନ୍ତୁଷ୍ଟ ନହୋଇ ରାମଚନ୍ଦ୍ରଙ୍କୁ ପ୍ରଥମେ ରଥୀପୁର ଦୁର୍ଗରେ ବନ୍ଦୀ କଲେ ଏବଂ ପରେ ବାରବାଟୀ ଦୁର୍ଗକୁ ସ୍ଥାନାନ୍ତର କରିଦେଲେ । ସେଠାରେ ତାଙ୍କୁ ବାଧ୍ୟ ହୋଇ ମୁସଲମାନ ଧର୍ମ ଗ୍ରହଣ କରିବାକୁ ପଡ଼ିଥିଲା ।' ବନ୍ଦୀ ଅବସ୍ଥାରେ ରାମଚନ୍ଦ୍ର ନବାବ ସୁଜାଉଦ୍ଦିନଙ୍କ କନ୍ୟାର ପ୍ରେମରେ ପଡ଼ି ତାହାକୁ ବିବାହ କରିଥିଲେ ବୋଲି ଏକ ପ୍ରବାଦ ପ୍ରଚଳିତ । ମାତ୍ର ଏ ସମ୍ପର୍କରେ କୌଣସି ଲିଖିତ ଐତିହାସିକ ପ୍ରମାଣ ନାହିଁ । ମହମ୍ମଦ ତକୀ ଖାଁଙ୍କ ଅତ୍ୟାଚାରରୁ ମୁକ୍ତି ପାଇବା ପାଇଁ ରାମଚନ୍ଦ୍ର ନବାବଙ୍କ କନ୍ୟାକୁ ବିବାହ କରି ମୁସଲମାନ ହୋଇଥିଲେ ଏବଂ ସେହି ଅବସ୍ଥାରେ ତାଙ୍କର ନାମ ଥିଲା ହାଫିଜକାଦର । (ଝ)

ସେ ଜାତି ଭ୍ରଷ୍ଟ ହେବା ବିଷୟରେ ଶ୍ରୀମନ୍ଦିରର ଏକ ରେକର୍ଡ ମାଦଳାପାଞ୍ଜି ଘୋଷଣା କରିଥିଲେ ହେଁ ଐତିହାସିକ କେଦାରନାଥ ମହାପାତ୍ର ଏଥିରେ ସନ୍ଦେହ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି—

"ସେ (ସୁବାଦାର ସୁଜାଉଦ୍ଦିନ ଅହମ୍ମଦ ଖାଁ) ଇସ୍ଲାମ ଧର୍ମ ପ୍ରଚାରର ବିଶେଷ ପକ୍ଷପାତୀ ଥିଲେ । ତେଣୁ ରାମଚନ୍ଦ୍ର ଦେବ କଟକରେ ବନ୍ଦୀ ଥିବା ସମୟରେ ତାଙ୍କୁ ମୁସଲମାନ ରାଜକନ୍ୟାଙ୍କ ସହିତ ଅବାଧ ମିଳନର ସୁଯୋଗ ଦେଇ ଇସଲାମ ଧର୍ମରେ ଦୀକ୍ଷିତ କରିବା ପାଇଁ ଚେଷ୍ଟା ହୋଇଥିବା ସମ୍ପୂର୍ଣ୍ଣ ସମ୍ଭବପର । ଏହା ଫଳରେ ରକ୍ଷଣଶୀଳ ହିନ୍ଦୁମାନେ ତାଙ୍କୁ ନିଶ୍ଚୟ ଘୃଣା କରିଥିବେ । କିନ୍ତୁ ସେ ଇସଲାମ ଧର୍ମ ଗ୍ରହଣ

(ଜ) ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର—୧୯୭୯—ପୃ ୧୫୨-୧୫୩
(ଝ) History of Orissa—Sri Chitramani Acharya—P. 128

କରିଥିବାର କୌଣସି ପ୍ରମାଣ ମିଳେ ନାହିଁ । ବରଂ ସେ ୧୭୩୬ରେ କଟକରୁ ମୁକ୍ତିଲାଭ କରି ହିନ୍ଦୁ ଜଗତର ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥଙ୍କ ସୁରକ୍ଷା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ (୧୭୩୭) ବାରମ୍ବାର ଯୁଦ୍ଧ ଓ ବିଦ୍ରୋହ କରି ଯେପରି ଅଶେଷ ନିର୍ଯ୍ୟାତନା ଭୋଗ କରିଥିଲେ, ତାହା ତାହାଙ୍କର ପ୍ରଗାଢ଼ ସ୍ୱଧର୍ମ ନିଷ୍ଠାର ପରିଚାୟକ । ସେ ଅଗତ୍ୟା ଯବନୀ-ପ୍ରେମ ପାଶରେ ଆବଦ୍ଧ ହୋଇଥିଲେ ମଧ୍ୟ ମୁସଲମାନସୂଚ ନାମ ମଧ୍ୟ ଗ୍ରହଣ କରି ନଥିଲେ । କାରଣ, କଟକରୁ ଆସିବାପରେ ସେ ଆଠଗଡ଼ ରାଜାଙ୍କୁ ଦେଇଥିବା ପତ୍ର ତାଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ପ୍ରଦତ୍ତ ସମସ୍ତ ଦାନପତ୍ର ଓ ସମସାମୟିକ ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥମାନଙ୍କରେ ସେ ରାମଚନ୍ଦ୍ର ଦେବ ନାମରେ ହିଁ ପରିଚିତ ଥିଲେ । ସେ ଶ୍ରୀଜଗନ୍ନାଥଙ୍କ ଦର୍ଶନରୁ ବଞ୍ଚିତ ହୋଇ ସିଂହଦ୍ୱାରରେ ପ୍ରତିଷ୍ଠିତ ପତିତପାବନ ମୂର୍ତ୍ତି ଦର୍ଶନ ଦ୍ୱାରା ଶେଷ ଜୀବନ ଅତିବାହିତ କରିଥିବାର ଯେଉଁ କିମ୍ବଦନ୍ତୀ ପ୍ରଚଳିତ, ତାହା ତାଙ୍କ ହିନ୍ଦୁତ୍ୱକୁ ସମର୍ଥନ କରେ ।'' (୩)

ରାମଚନ୍ଦ୍ର ଦେବ ଖୁରୁଧା ରାଜ୍ୟର ପତନର ପ୍ରତିରୋଧ କରିବା ପାଇଁ ସମ୍ପୂର୍ଣ୍ଣ ଅସମର୍ଥ ହୋଇଥିଲେ ବୋଲି କେଦାର ବାବୁ ସ୍ୱୀକାର କରିଥିଲେହେଁ ସ୍ୱଧର୍ମ ଓ ସ୍ୱଦେଶର ରକ୍ଷା ପାଇଁ ତାଙ୍କର ବୀରତ୍ୱ ଏବଂ ବାରମ୍ବାର ଯୁଦ୍ଧର ପ୍ରଶଂସା କରିଛନ୍ତି । ଏହା ନିଶ୍ଚିତ ଭାବରେ ସତ୍ୟ ଯେ ସେ ବାଧ୍ୟ ହୋଇ ମୁସଲମାନ ଧର୍ମ ଗ୍ରହଣ କରିଥିଲେହେଁ ତାଙ୍କ ମଧ୍ୟରେ ଯେଉଁ ହିନ୍ଦୁ ସଂସ୍କାର ଏବଂ ଗଜପତି ରାଜାର ଦାୟିତ୍ୱବୋଧ ଥିଲା, ସେଥିରେ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ପାଇଁ କାର୍ଯ୍ୟ କରିବା ଅସମ୍ଭବ ହେବ କାହିଁକି ?

## ଖୋର୍ଦ୍ଧା ରାଜବଂଶ ଓ ଓଡ଼ିଆ ସାହିତ୍ୟ :

ସ୍ୱାଧୀନ ସୂର୍ଯ୍ୟବଂଶୀ ରାଜତ୍ୱର ପତନ ପରେ ଖୋର୍ଦ୍ଧା ରାଜବଂଶ ଗଜପତି ଉପାଧି ଧାରଣ କରୁଥିଲେ ଏବଂ ଓଡ଼ିଶାର ଜନସାଧାରଣ ଏହି ରାଜାମାନଙ୍କର ଶାସନ-କାଳ ଅନୁସାରେ ଅଙ୍କ ଗଣନା କରୁଥିବା ଜଣାଯାଏ । ତେଣୁ ଷୋଡ଼ଶର ଶେଷଭାଗରୁ ଊନବିଂଶର ଦ୍ୱିତୀୟ ଦଶକଯାଏଁ ଖୋର୍ଦ୍ଧାରାଜବଂଶର ସ୍ୱୀକୃତି ରହିଥିଲା ଗଜପତି ମୁକୁନ୍ଦଦେବ ୨ୟ (୧୭୯୫-୧୮୧୭) ଖୋର୍ଦ୍ଧା ରାଜା ଭାବରେ ଅଭିଷିକ୍ତ ହୋଇଥିଲେହେଁ ଇତିହାସର କଟାକ୍ଷପାତରେ ପୁରୀ ରାଜା ବୋଲି ଚିହ୍ନିତ ହୋଇଗଲେ । ତେବେ ଯେତେବେଳେ ଖୋର୍ଦ୍ଧା ରାଜବଂଶ ରାଜତ୍ୱ କରୁଥିଲେ, ବିଭିନ୍ନ ଗଡ଼ଜାତର (୪) ରାଜାମାନେ

(୩) ଖୁରୁଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର-୧୯୬୯-ପୃ ୧୮୮

(୪) "Raja Mukundeva was et sfree in 1807 and was allowed to reside in his palace at Balisahi in PURI. The Raja of the Khunda kingdom was reduced to the status of the Raja of PURI and was made the superintendent of the temple of Jagannath according to the Regulation IV of 1806 (also Regulation IV of 1809).

—History of Orissa-Nalanda-1981-P. 327

ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ଦେଶର କବିମାନେ ଖୋର୍ଦ୍ଧାରାଜା ଅଙ୍ଗଣରେ ନିଜର ରଚନାକାଳ ନିର୍ଦ୍ଦେଶ କରୁଥିଲେ । ଦେଶରେ ଯୁଦ୍ଧବିଗ୍ରହ ଓ ଅଶାନ୍ତି ଲାଗିରହିଥିଲେ ହେଁ ଦେଶର କବିମାନେ ରାଜକୀୟ ପୃଷ୍ଠପୋଷକତା ଏବଂ ପ୍ରେରଣା ଲାଭ କରି ଉଭୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ବହୁ ମୂଲ୍ୟବାନ ଗ୍ରନ୍ଥ ରଚନା କରି ଯାଇ-ଅଛନ୍ତି । ଓଡ଼ିଆ ସାହିତ୍ୟର ରୀତିକାଳ ଏବଂ ସଙ୍ଗୀତଯୁଗ ହେଉଛି ଖୋର୍ଦ୍ଧାରାଜବଂଶର ରାଜତ୍ୱକାଳର ପରିସୀମା ।

ଭୋଇବଂଶର ପ୍ରତିଷ୍ଠାତା ରାମଚନ୍ଦ୍ରଦେବଙ୍କ ରାଜତ୍ୱକାଳରେ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ ବିଶ୍ୱନାଥ ସାମନ୍ତରାୟ ରାଜାଙ୍କ ପୃଷ୍ଠପୋଷକତା ଲାଭ କରି ଦିଲ୍ଲୀ ଦରବାରରେ ସମ୍ରାଟ ଆକବରଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ । ସ୍ୱୀୟ ପାଣ୍ଡିତ୍ୟ ଯୋଗୁ ସେ କବିଚନ୍ଦ୍ର ଉପାଧି ପ୍ରାପ୍ତ ହୋଇଥିଲେ । ରାମଚନ୍ଦ୍ରଙ୍କ ରାଜତ୍ୱକାଳରେ ଦୁଇଜଣ ବିଶିଷ୍ଟ ଓଡ଼ିଆ କବି ହେଉଛନ୍ତି "ଗୋପୀଚନ୍ଦନ" କାବ୍ୟର ଲେଖକ ବୃନ୍ଦାବନ ଦାସ ଏବଂ ପ୍ରେମଲୋଚନା, କଳାବତୀ, ଲୀଳାବତୀ, ମାଧବୀଚରିତ ଏବଂ କେତେକ ଚଉତିଶାର ଲେଖକ ବିଷ୍ଣୁଦାସ । ରାମଚନ୍ଦ୍ରଙ୍କ ପୃଷ୍ଠପୋଷକତାରେ ଦୁର୍ଗୋତ୍ସବ ଚନ୍ଦ୍ରିକା ଓ ଶ୍ରୀକୃଷ୍ଣଭକ୍ତିବାତ୍ସଲ୍ୟ 'ଚରିତ ନାଟକମ୍' ଶୀର୍ଷକ ଦୁଇଟି ସଂସ୍କୃତ ଗ୍ରନ୍ଥ ରଚିତ ହୋଇଥିବା ଜଣାଯାଏ । ଏହି ସମୟର କବି ଚିନ୍ତାମଣି ମିଶ୍ର ସଂସ୍କୃତରେ କାଦମ୍ବରୀସାର ଓ ସମ୍ବରଚରିତ ରଚନା କରିଥିଲେ । ସେ କାଳରେ ବିଭିନ୍ନ ଗଡ଼ଜାତ ମଧ୍ୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଚର୍ଚ୍ଚାର କେନ୍ଦ୍ର ଥିଲା । ଗଜପତି ପୁରୁଷୋତ୍ତମଙ୍କ ରାଜତ୍ୱକାଳରେ ବାଣପୁର ରାଜା ରଘୁନାଥ ରାଜ ହରିଚନ୍ଦନ ସଂସ୍କୃତ ଭାଷାରେ ଅନେକ ସଙ୍ଗୀତ ରଚନା କରିଥିଲେ ବୋଲି 'ସଙ୍ଗୀତ କଳ୍ପଲତା' ଗ୍ରନ୍ଥରୁ ଜଣାଯାଉଅଛି । ପୁରୁଷୋତ୍ତମଙ୍କ ସମକାଳୀନ କେନ୍ଦୁଝର ରାଜା ଗୋବିନ୍ଦଭଞ୍ଜ ଥିଲେ କୃଷ୍ଣଭକ୍ତିରସାତ୍ମକ 'ଚରଣ ସୁଧାନିଧି' ଓ 'ଭକ୍ତ ବିନୋଦ' ଗ୍ରନ୍ଥର ଲେଖକ । ଖୋର୍ଦ୍ଧାରାଜା ନରସିଂହଦେବଙ୍କ ରାଜସଭାରେ କବିରତ୍ନ ପୁରୁଷୋତ୍ତମ ମିଶ୍ର ଏବଂ କବି ହଳଧର ମିଶ୍ର ଶୋଭା ପାଉଥିଲେ । ସେମାନଙ୍କ କୃତି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରିଅଛି । ତେବେ ଏହି କାଳରେ ଯବନ କବି ସାଲବେଗ ଜଗନ୍ନାଥ ଚରିତାମୃତ ପ୍ରଣେତା ଦିବାକର ଦାସ ଭାଗବତର ଅନୁବାଦକ ବିଲୋଚନ ମହାନ୍ତି ଓଡ଼ିଆ ସାହିତ୍ୟର ସାଧକ ହିସାବରେ ସ୍ମରଣୀୟ । ମୁକୁନ୍ଦଦେବ ପ୍ରଥମଙ୍କ ରାଜତ୍ୱକାଳରେ ଯତୀନ୍ଦ୍ର ରଘୁତ୍ତମ ତୀର୍ଥ, ବିଦ୍ୟାକର ପୁରୋହିତ, ଅନାଦି ମିଶ୍ର, ଦୀନବନ୍ଧୁ ମିଶ୍ର, କବି ନିତ୍ୟାନନ୍ଦ, ଲକ୍ଷ୍ମୀଧର ମିଶ୍ର, ଗୋପୀନାଥ ପଟ୍ଟନାୟକ ପ୍ରଭୃତି ସଂସ୍କୃତ ସାହିତ୍ୟରେ ଲେଖନୀ ଚଳାଇ-ଥିଲେ । ତେବେ ଏହି କାଳରେ ଢେଙ୍କାନାଳ ରାଜା ନୃସିଂହ ଭ୍ରମରବର 'ଦଶପୋଇ' ନାମକ ଏକ କ୍ଷୁଦ୍ରକାବ୍ୟ ଓଡ଼ିଆରେ ପ୍ରଣୟନ କରିଥିଲେ । ବଳରାମ ଦାସ ଗୀତଗୋବିନ୍ଦର ସରଳ ନବାକ୍ଷରୀ ବୃତ୍ତରେ ଅନୁବାଦକ ଥିଲେ । ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ବ୍ୟକ୍ତିତ୍ୱ ଗୋପୀଭାଷାର ଲେଖକ ଜନାର୍ଦ୍ଦନ ଦାସ ବା ଦନାଇ ଦାସ ଏହି ସମୟର କବି ଥିଲେ । ପରଚେଗୀତାର ଲେଖକ କବି ଦ୍ୱାରକା ଦାସ ମଧ୍ୟ ଏହି ସମୟରେ କାବ୍ୟସାଧନା କରିଥିଲେ । ଏତଦ୍‌ବ୍ୟତୀତ ଏହି କାଳରେ ଶ୍ରୀ ଚୈତନ୍ୟ ଦାସଙ୍କ ବିଷ୍ଣୁଗର୍ଭପୁରାଣ ଓ

ନର୍ମଦା ମାହାତ୍ମ୍ୟ, ହଳଧର ଦାସଙ୍କ ଅଧ୍ୟାତ୍ମ ରାମାୟଣ, ଦେବାନନ୍ଦ ଦାସଙ୍କ ବୈଦେହୀ ଗୀତା, ଧନଞ୍ଜୟ ଭଞ୍ଜଙ୍କ ଇଚ୍ଛାବତୀ, ଅନଙ୍ଗରେଖା, ରଘୁନାଥବିଳାସ ପ୍ରଭୃତି ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଅବଦାନ ।

ଗଜପତି ଦିବ୍ୟସିଂହ ଦେବଙ୍କ ରାଜତ୍ୱକାଳ ଓଡ଼ିଆ ଭକ୍ତିଯୁଗ ସାହିତ୍ୟର ସ୍ୱର୍ଣ୍ଣ-ଯୁଗ ବୋଲି କୁହାଯାଇଥାଏ । କାରଣ ଏହି କାଳରେ ଭକ୍ତକବି ରାମ ଦାସ, ବୃନ୍ଦାବତୀ ଦାସୀ, ଭୂପତି ପଣ୍ଡିତ, ଲୋକନାଥ ବିଦ୍ୟାଧର, କାହ୍ନୁ ଦାସ, ବିପ୍ରକଣ୍ଠ ଦାସ, କେଶବ-ରାଜ ହରିଚନ୍ଦନ, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ପୁରୁଷୋତ୍ତମ ମାନଧାତା, ବିଶ୍ୱନାଥ ଖୁଣ୍ଟିଆ, କୃପାସିନ୍ଧୁ ଦାସ, ଈଶ୍ୱର ବ୍ରହ୍ମା, ଦ୍ୱିଜ ଈଶ୍ୱର ଦାସ, ଶିଶୁ ଈଶ୍ୱର ଦାସ, ଦ୍ୱିଜ ଶ୍ରୀଧର, ପୁରୁଷୋତ୍ତମ ଦାସ, ବୈଶ୍ୟ ସଦାଶିବ, ଭକ୍ତ ହରିଦାସ, ମହାଦେବ ଦାସ, ବିପ୍ରମାଳାମ୍ବର ଦାସ, ନାରାୟଣ ଦାସ, ପୀତାମ୍ବର ଦେବ, କବି ଯଦୁମଣି, କୁଞ୍ଜବିହାରୀ ଭ୍ରମରବର, ରତ୍ନାକର ଦାସ, ଶିଶୁ ରାମ ଦାସ, ଗୋପୀନାଥ ଦାସ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ଏମାନଙ୍କର ଓଡ଼ିଆ କାବ୍ୟ, ସଙ୍ଗୀତ, ପୁରାଣ ଏବଂ ଭକ୍ତି ସାହିତ୍ୟକୁ ଦାନ ଅପରିସୀମ । ଏତଦ୍‌ବ୍ୟତୀତ ବହୁ କବି ସଂସ୍କୃତ ସାହିତ୍ୟକୁ ମଧ୍ୟ ସମୃଦ୍ଧ କରି ଯାଇଛନ୍ତି । ଖୋର୍ଦ୍ଧା ରାଜା ବୀରକେଶରୀଦେବଙ୍କ ରାଜତ୍ୱକାଳରେ ମଧ୍ୟ ଉଭୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ବିଶେଷ ସମୃଦ୍ଧି ସାଧିତ ହୋଇଥିଲା । ବିଶେଷତଃ ଓଡ଼ିଆ ସାହିତ୍ୟର ଚର୍ଚ୍ଚାରେ ବହୁ ଶକ୍ତିଶାଳୀ କବି ମନୋନିବେଶ କରିଥିଲେ । ଉଦାହରଣ ସ୍ୱରୂପ ଏହି ସମୟରେ କବି ଦୟାଳୁ ଦାସ, କବି କୃପାସିନ୍ଧୁ ଦାସ, କବି ବନମାଳୀ ଦାସ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, କବି ପୀତାମ୍ବର ଦାସ, କବି ରାମ ଦାସ, କବି ମାଗୁଣି ପଟ୍ଟନାୟକ, କବି ଲକ୍ଷ୍ମଣ ମିଶ୍ର, କବି ଦୟା ଦାସ, କବି ବିଶ୍ୱମ୍ଭର ଦାସ, ବାଙ୍କୀରାଜା ପଦ୍ମନାଭ ଶ୍ରୀଚନ୍ଦନ, ଘୁମୁସର ରାଜା ଘନ ଭଞ୍ଜ, ରାଜକବି ବିକ୍ରମ ଭଞ୍ଜ, ରାଜକବି ଜୟସିଂହ, ନରହରି କବିଶୀଳ ରାଜକବି କୃଷ୍ଣସିଂହ, ରାଜକବି ବାଲୁକେଶ୍ୱର ମର୍ଦ୍ଦରାଜ, ରାଜସିଂହ ମର୍ଦ୍ଦରାଜ, ଅନିରୁଦ୍ଧ ଶ୍ରେଷ୍ଠରାୟ, ନଳିନାକ୍ଷ ମର୍ଦ୍ଦରାଜ, ଆଠଗଡ଼ ରାଜା ମଧୁସୂଦନ ହରିଚନ୍ଦନ ଜଗଦେବ, ଗଜପତି ଜଗନ୍ନାଥ ନାରାୟଣ ଦେବ, କବିଭୂଷଣ ଗୋପୀନାଥ ପାତ୍ର, କବି ହରିକୃଷ୍ଣ ମହାରଣା, ଖେମିଣ୍ଡି ଅଧିପତି ଅନଙ୍ଗଭୀମଦେବ, କବିରାଜ କେଶବରଥ ଅରକ୍ଷିତ ଦାସ, ଚିକିଟି ଅଧିପତି କୁଳମଣି ରାଜେନ୍ଦ୍ର, କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, କେଶବ ହରିଚନ୍ଦନ, କୃପାସିନ୍ଧୁ ଦାସ, ବିକ୍ରମ ନରେନ୍ଦ୍ର, ବିପ୍ର ଜନାର୍ଦ୍ଦନ, ପୀତାମ୍ବର ରାଜେନ୍ଦ୍ର, ବଳଭଦ୍ର ଭ୍ରମରବର, ବାଳକ ରାମଦାସ, ଚକ୍ରପାଣି ପଟ୍ଟନାୟକ; ନିଶଙ୍କରାୟ ରାଣୀ, ଶ୍ରୀକୃଷ୍ଣଶ୍ୱର ହରିଚନ୍ଦନ, କବି ଗୋପାଳ ତେଲଙ୍ଗା, କବି ବ୍ରଜନାଥ ବଡ଼ଜେନା, ଅଭିମନ୍ୟୁ ସାମନ୍ତସିଂହାର, ଦୀନବନ୍ଧୁ ଖାଡ଼ଙ୍ଗା, ପଣ୍ଡିତ ଶ୍ରୀଚନ୍ଦନ, ଭକ୍ତଚରଣ ଦାସ, ରାମଚନ୍ଦ୍ର ପଟ୍ଟନାୟକ, ପ୍ରଭୃତି ବହୁ କବିଙ୍କୁ ସ୍ମରଣ କରାଯାଇପାରେ । ଐତିହାସିକ କେଦାରନାଥ ମହାପାତ୍ର ତାଙ୍କର ଖୁର୍ଦ୍ଧା ଇତିହାସ ପୁସ୍ତକରେ ଏହି କବିମାନଙ୍କର ଅପ୍ରକାଶିତ ବହୁ ଗ୍ରନ୍ଥ ବିଷୟରେ ସୂଚନା ପ୍ରଦାନ କରିଛନ୍ତି । ଏଗୁଡ଼ିକ ଅପ୍ରକାଶିତ ହେଲେ ଓଡ଼ିଆ ସାହିତ୍ୟର ଇତିହାସରେ

ନୂତନ ବିଗନ୍ତ ଉଦ୍‌ଘାଟିତ ହୋଇପାରିବ । ଖୋର୍ଦ୍ଧା ରାଜବଂଶର ରାଜତ୍ୱ କାଳରେ ରାଜନୈତିକ ଅସ୍ଥିରତା, ଆଭ୍ୟନ୍ତରୀଣ କଳହ ଓ ବିଦେଶୀ ଆକ୍ରମଣ ସତ୍ତ୍ୱ ଓଡ଼ିଆ ସାହିତ୍ୟର ସାଧକଗଣ ନିରବଚ୍ଛିନ୍ନ ସାଧନା ଅବ୍ୟାହତ ରଖିଥିଲେ । ଦେଶ ପାଇଁ ଏହା କମ୍ ସୌଭାଗ୍ୟର କଥା ନୁହେଁ ।

## ଖୋର୍ଦ୍ଧା ବିଦ୍ରୋହ ଓ ପାଇକ ବାହିନୀର ବିଲୋପ ସାଧନ :

୧୮୦୩ ସାଲରେ ଇଂରେଜମାନେ ମରହଟ୍ଟାମାନଙ୍କୁ ପରାଜିତ କରି ଓଡ଼ିଶାର ଶାସନ ଦାୟିତ୍ୱ ଗ୍ରହଣ କଲେ । ଦେଓଗାଁ ସନ୍ଧିପତ୍ରରେ ମରହଟ୍ଟା ଶାସକ ରଘୁଜୀ ଭୋନ୍‌ସଲ ସ୍ୱାକ୍ଷର କରି ଓଡ଼ିଶା-ଅଧିକାର ହସ୍ତାନ୍ତର କରିଦେଲେ । ୧୮୦୪ ଖ୍ରୀଷ୍ଟାବ୍ଦର ରଥଯାତ୍ରା ବେଳେ ପୁରୀର ପଣ୍ଡାମାନେ ଇଂରେଜ ସେନାପତି କମିସନର ହାରକୋର୍ଟଙ୍କୁ ଦିବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରି ଇଂରେଜ ଅଧିକାରକୁ ସ୍ୱାଗତ ଜଣାଇଥିଲେ । ସେତେବେଳେ ଖୋର୍ଦ୍ଧା ସିଂହାସନରେ ଆରୂଢ଼ ଥିଲେ ନାବାଳକ ରାଜା ମୁକୁନ୍ଦଦେବ । ତାଙ୍କର ଅଭିଭାବକ ସ୍ୱରୂପରେ ଦେଓ୍ୱାନ ଜୟୀ ରାଜଗୁରୁ ଥିଲେ ଦେଶର ପ୍ରକୃତ ଶାସକ । ଇଂରେଜମାନଙ୍କୁ ସମର୍ଥନ ଜଣାଇ ସେ ଆଶା କରୁଥିଲେ ଯେ ପୂର୍ବରୁ ମରହଟ୍ଟା-ମାନେ ଦଖଲ କରି ନେଇଥିବା ଲେମ୍ବାଇ, ରହାଙ୍ଗ, ସିରାଇ ଏବଂ ଚବିଶକୁଦ ଅଞ୍ଚଳର ଅଧିକାର ଖୋର୍ଦ୍ଧା ରାଜା ଫେରି ପାଇବେ । ଇଂରେଜମାନେ ଏହି ସର୍ତ୍ତ ରକ୍ଷା ନ କରିବାରୁ ବିଫଳ ମନୋରଥ ହୋଇ ଜୟୀ ରାଜଗୁରୁ ବିଦ୍ରୋହ ଘୋଷଣା କଲେ । ଇଂରେଜମାନେ ଖୋର୍ଦ୍ଧା ଆକ୍ରମଣ କରି ବିଦ୍ରୋହ ଦମନ କରିବା ସଙ୍ଗେ ସଙ୍ଗେ ରାଜା ମୁକୁନ୍ଦଦେବଙ୍କୁ ବାରବାଟୀ କଜ୍ଜାରେ ବନ୍ଦୀ କରି ରଖିଲେ । ପରେ ତାଙ୍କୁ ମେଦିନୀପୁର ଜେଲକୁ ପଠାଇ ଦିଆଯାଇଥିଲା । ବିଦ୍ରୋହର ମୂଳ ଜୟୀ ରାଜଗୁରୁ ସର୍ବସାଧାରଣଙ୍କ ସମକ୍ଷରେ ଏକ ବରଗଛରେ ଫାଶି ପାଇଲେ ବୋଲି କେତେକ ଐତିହାସିକ ମତବ୍ୟକ୍ତ କରିଥାଆନ୍ତି । (୦) ଶାସନ ଭାର ହାତକୁ ନେଇ ନେଇ ଖୋର୍ଦ୍ଧାବାସୀଙ୍କର ଏହି ବିଦ୍ରୋହରେ ଇଂରେଜ-ମାନେ ବିଚଳିତ ହୋଇ ପଡ଼ିଲେ । ବିଦ୍ରୋହକୁ କଠୋର ହସ୍ତରେ ଦମନ କଲେ ସୁଦ୍ଧା ଖୋର୍ଦ୍ଧାର ପାଇକବାହିନୀ ଇଂରେଜମାନଙ୍କୁ ୧୮୨୫ ସାଲ ପର୍ଯ୍ୟନ୍ତ ଶାନ୍ତିରେ ରଖାଇ ଦେଇ ନଥିଲେ । ୧୮୧୭ ସାଲର ପାଇକ ବିଦ୍ରୋହ ଖୋର୍ଦ୍ଧାର ଇତିହାସରେ ଆଉ ଏକ ଯୁଗାନ୍ତକାରୀ ଘଟଣା । ଇଂରେଜ ଶାସକମାନଙ୍କ ସହିତ କଲିକତାରୁ ଅନେକ ବଙ୍ଗୀୟ ରାଜକର୍ମଚାରୀ ଆସି ଓଡ଼ିଶାରେ ଇଂରେଜମାନଙ୍କ ସାହାଯ୍ୟରେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଥିଲେ । କଲିକତା ନିବାସୀ ଚକ୍ରବର୍ତ୍ତୀ ପାଇକପଡ଼ାର କୃଷ୍ଣଚନ୍ଦ୍ର ସିଂହ ପ୍ରଥମେ କଲେକ୍ଟରଙ୍କର ଦେବାନ ଥିଲେ । ସେ ତାଙ୍କର ଜଣେ ଭାଇ ଗୌରହରି ସିଂହଙ୍କୁ ଖୋର୍ଦ୍ଧାର ତହସିଲଦାର ରଖାଇଥିଲେ । ଦେବାନ କୃଷ୍ଣଚନ୍ଦ୍ର ନିଜର ଆତ୍ମୀୟ ଗୌରହରିଙ୍କ ସହିତ ଚକ୍ରାନ୍ତ କରି ପୁରୁଷାନୁକ୍ରମିକ ଭୋଗଦଖଲ କରୁଥିବା ଖୋର୍ଦ୍ଧା

(୦) ଖୁରୁଧା ଇତିହାସ—କେଦାରନାଥ ମହାପାତ୍ର—୧୯୬୯-ପୃ. ୨୯୩ ।
ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର--୧୯୬୯-ପୃ. ୧୯୨ ।

ରାଜାଙ୍କ ସେନାପତି ବକ୍‌ସି ଜଗବନ୍ଧୁଙ୍କ ରୋରଙ୍ଗ ଜମିଦାରୀକୁ ନିଜ ନାମରେ କରାଇ-ନେଲେ । ବଙ୍ଗାଳୀ କର୍ମଚାରୀ ପ୍ରଭାବିତ ଇଂରେଜ ସରକାରଠାରୁ ବକ୍‌ସି କୌଣସି ନ୍ୟାୟବିଚାର ଆଶା କରିପାରିଲେ ନାହିଁ । ପୂର୍ବରୁ ଖୋର୍ଦ୍ଧାର ବୀର ପାଇକମାନେ ଇଂରେଜ ରାଜସ୍ୱନୀତି ଯୋଗୁ ଅତିଷ୍ଠ ହୋଇ ପଡ଼ିଥିଲେ । ଏହି ସୁଯୋଗରେ ବକ୍‌ସି ଇଂରେଜଙ୍କ ବିରୋଧରେ ବିଦ୍ରୋହ ଘୋଷଣା କଲେ । ବାଣପୁର, ଘୁମୁସର, କନିକା, କୁଜଙ୍ଗର ପାଇକମାନେ ମଧ୍ୟ ବିଦ୍ରୋହୀ ହୋଇ ପଡ଼ିଲେ । ଇଂରେଜ ସରକାରଙ୍କ କଚେରୀ ପୋଡ଼ି ଦିଆଗଲା । ଟ୍ରେଜେରୀ ଲୁଟି କରି ନିଆଗଲା । ବହୁ ପାଇକ ଏବଂ ଇଂରେଜ ସେନା ପ୍ରାଣବଳି ଦେଲେ । ଖୋର୍ଦ୍ଧାରାଜା ଏବଂ କୁଜଙ୍ଗରାଜା ଧରା ହୋଇ ବନ୍ଦୀଶାଳାରେ ଜୀବନ ବିତାଇଲେ । ବହୁ ବିଦ୍ରୋହୀଙ୍କୁ ଦ୍ୱୀପାନ୍ତର କରି ଦିଆଗଲା । ଖୋର୍ଦ୍ଧାର ଏହି ବିଦ୍ରୋହ ସାରା ଓଡ଼ିଶାରେ ବ୍ୟାପ୍ତ ହୋଇଥିଲେ ହେଁ ଉପଯୁକ୍ତ ନେତୃତ୍ୱ ଅଭାବରୁ ବିଦ୍ରୋହ ଅଧିକକାଳ ତିଷ୍ଠି ପାରିଲା ନାହିଁ । ବିଦ୍ରୋହ ୧୮୧୭ରେ ଦମନ କରାଗଲେ ମଧ୍ୟ ବକ୍‌ସି ଜଗବନ୍ଧୁ ୧୮୨୫ ପର୍ଯ୍ୟନ୍ତ ଆତ୍ମଗୋପନ କରି ବିଦ୍ରୋହ ପରିଚାଳନା କରୁଥିଲେ ଏବଂ ଶେଷରେ ଆତ୍ମସମର୍ପଣ କରି ମାସିକ ଏକଶହ ପଚିଶ ଟଙ୍କା ପେନ୍‌ସନ ପ୍ରାପ୍ତ ହୋଇ କଟକରେ ୧୮୨୯ ସାଲ ଜାନୁଆରୀ ୨୪ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଇଂରେଜ ଶାସନ ବିରୁଦ୍ଧରେ ଭାରତରେ ବକ୍‌ସିଙ୍କ ପୂର୍ବରୁ କୁତ୍ରାପି ଏପରି ବିଦ୍ରୋହ ହୋଇ ନଥିଲା । ନ୍ୟାୟ ପାଇଁ ସେ ହସି ହସି ଯୁଦ୍ଧନିଆଁକୁ ପଛକେ ଲମ୍ଫ ପ୍ରଦାନ କଲେ, କିନ୍ତୁ ବିଦେଶୀ ଇଂରେଜମାନଙ୍କ କରଗତ ହେବାକୁ ଉପଯୁକ୍ତ ମଣିଲେ ନାହିଁ । ତାଙ୍କ ସମ୍ପର୍କରେ ବିଖ୍ୟାତ ଐତିହାସିକ ରାଖାଲ ଦାସ ବାନାର୍ଜୀ ଲେଖିଥିଲେ ଏହିପରି—

'He served a noble purpose, as his sising opened the eyes of the Bsitish Masters of Orissa to some extent. In any country other than India Jagabandhu Bidyadhara would have bзen segarded as a great national hero and benefactor of his own people because by his sising in sebellion and sacrificing his ownself, he saved the nobiltiy of Orissa from total extinction at the hands of Bengali adventurers and the common people from longer oppsession " (ଢ)

ବକ୍‌ସିଙ୍କୁ ସମ୍ମାନଜନକ ବ୍ୟବହାର ପ୍ରଦର୍ଶନ କରାଯିବ ବୋଲି ନୟାଗଡ଼ର ବେବର୍ତ୍ତା ବିରଜୁ ପାଇକରାୟଙ୍କ ମଧ୍ୟସ୍ଥତାରେ ଇଂରେଜ ରାଜକର୍ମଚାରୀ ଉଇଲ୍‌କିନସନ ରାଜି ହେବାରୁ ବକ୍‌ସି ଆତ୍ମସମର୍ପଣ କରିଥିଲେ । କୁହାଯାଇଥାଏ ଯେ "କଟକରେ ତାଙ୍କର ବାସସ୍ଥାନ ଏ ପର୍ଯ୍ୟନ୍ତ ବକ୍‌ସିବଜାର ଏବଂ ତାଙ୍କର ଗାଧୁଆପୋଖରୀ ବକ୍‌ସି ପୋଖରୀ ନାମରେ ଖ୍ୟାତ ।" (ତ) କିନ୍ତୁ ଏହା ସତ୍ୟର ଅପଳାପ ବୋଲି ବର୍ତ୍ତମାନ

(ଢ) History of Orissa—Vol II—R. D. Banerli

(ତ) ଖୁରୁଧା ଇତିହାସ—କେଦାରନାଥ ମହାପାତ୍ର—୧୯୬୯ ପୃ. ୨୯୭

ପ୍ରମାଣିତ ହେଉଛି । ୧୮୨୫ ଖ୍ରୀଷ୍ଟାବ୍ଦ ପୂର୍ବରୁ କେତେକ ସରକାରୀ ଚଠି ଆବିଷ୍କୃତ ହୋଇଛି ଯହିଁରେ ବକ୍‌ସିବଜାର ନାମ ଉଲ୍ଲେଖ ରହିଛି । ତେଣୁ ଏପରି ନାମକରଣର ଅନ୍ୟ କିଛି କାରଣ ଅନୁସନ୍ଧେୟ ।

ପାଇକ ବିଦ୍ରୋହ ପରେ ଇଂରେଜମାନେ ତାହାର କାରଣ ଜାଣିବାପାଇଁ Mr. Ewer ଙ୍କ ନେତୃତ୍ୱରେ ଏକ କମିସନ ବସାଇଥିଲେ । ଏହା ଏକ ଚମତ୍କାର ଦଲିଲ । ଏହି ରିପୋର୍ଟକୁ କାର୍ଯ୍ୟକାରୀ କରାଇ ଇଂରେଜମାନେ ଓଡ଼ିଆ ଜାତିର ପାଇକ ବାହିନୀକୁ ହୀନବୀର୍ଯ୍ୟ କରିଦେଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ଏହି ରିପୋର୍ଟର ଅନୁବାଦ କରିଛନ୍ତି ।

"କଙ୍କାଳର ଆର୍ତ୍ତନାଦ" ପୁସ୍ତକର ଦ୍ୱିତୀୟ ଭାଗରେ ସେଥିରେ ଲେଖାଅଛି— "ଭାରତର ଅନ୍ୟାନ୍ୟ ଅଞ୍ଚଳ ଲୋକଙ୍କ ତୁଳନାରେ ଓଡ଼ିଆଙ୍କ ବୁଦ୍ଧି ଖୁବ୍ କମ୍ । ତାଙ୍କର ଅଜ୍ଞାନ ଓ ମୂର୍ଖତା ତାଙ୍କୁ ଦେଖିଲେ ହିଁ ବୁଝାଯାଏ । + + + ଓଡ଼ିଆମାନେ ସରକାରୀ ଚାକିରୀରେ ନ ରହିବା ଫଳରେ ଆମ ଶାସନ ପଦ୍ଧତି ଲୋକଙ୍କ ଭିତରେ ପଶି ପାରିଲା ନାହିଁ । ସେମାନେ ଭିନ୍ନ ଭିନ୍ନ ପାହ୍ୟାରେ ରହିଥିଲେ ଆମ ଆଇନକାନୁନ କ୍ରମେ କ୍ରମେ ଯାଇ ଗାଁ ଗଣ୍ଡାରେ ପ୍ରବେଶ କରିଥାନ୍ତା । × × × ଓଡ଼ିଆମାନେ ଆମ ବିରୁଦ୍ଧରେ ଯେ ପ୍ରକାର ମତାମତ ଗଠନ କରିଛନ୍ତି, ତା ଲାଗି ଆଲି ଜମାନ, ମିର୍ଜା ମେହଦି, ସାହେବ ଯମାନ, ମୌଲବି ସାଲେମ ଅଲ୍ଲି ପ୍ରଭୃତି କର୍ମଚାରୀଙ୍କ କାର୍ଯ୍ୟ-କଳାପ ବହୁ ପରିମାଣରେ ଦାୟୀ । ସେହିପରି ଦାୟୀ ହେଉଛନ୍ତି ଗତ ବାରବର୍ଷ ଭିତରେ କାର୍ଯ୍ୟ କରିଥିବା ଦେବାନ, ସିରସ୍ତାଦାର, ନାଜର, ପୋଲିସ ଓ ଅବକାରୀ କର୍ମଚାରୀଗଣ । ସେମାନେ ଯେ ଯାହା ବାଟରେ ଧନ ସଂଗ୍ରହ ଓ ଜମିଦାରୀ ହସ୍ତଗତ କରିବାରେ ଲାଗିଲେ । ସେମାନଙ୍କ ତଳେ ପୁଣି ଦଳେ ଅସାଧୁ ଓ ଉପରଖିଆ ଲୋକ ରହି କେବଳ ଲୁଟି କରିବା ଓ ଲାଞ୍ଚ ଖାଇବା ଫଳରେ ଅବସ୍ଥାକୁ ଆହୁରି ଖରାପ କରି ପକାଇଲେ । + + + ମୋଗଲ ଅଧିକାର ବେଳେ ସୁଦ୍ଧା ବର୍ତ୍ତମାନ ତୁଳନାରେ ଓଡ଼ିଶା ବେଶ୍ ସୁଖ ସମୃଦ୍ଧିରେ ଥିଲା । ଏ ଦେଶର ବୁଣାଲୁଗା ବଙ୍ଗ ଏବଂ ମାନ୍ଦ୍ରାଜକୁ ରପ୍ତାନି ହେଉଥିଲା । ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ବାଲେଶ୍ୱରରେ ଯେ ଇଉରୋପୀୟ କଳକାରଖାନା ସବୁ ବସାଗଲା, ସେଥିରୁ ଓଡ଼ିଶାର ସେ ସମୟର ବାଣିଜ୍ୟ ବ୍ୟବସ୍ଥା ବେଶ୍ ଅନୁମାନ କରାଯାଇପାରେ । ଭାରତର ଆଉ ଯେତେ ଅଞ୍ଚଳ ମୁଁ ଦେଖିଛି, ସେ ସବୁ ତୁଳନାରେ ଓଡ଼ିଶାର ଅବସ୍ଥା ଉତ୍କୃଷ୍ଟ ଥିଲା । ଏ ଦେଶର ଶିଳ୍ପ ଓ ସ୍ଥାପତ୍ୟର ବହୁ ସମୃଦ୍ଧିଶାଳୀ ନିଦର୍ଶନ ରହିଛି । କାରୁକାର୍ଯ୍ୟ ଅତି ବଡ ବଡ ମନ୍ଦିର ମାନ ମୁଣ୍ଡଟେକି ଠିଆ ହୋଇଛି । ଏ ଦେଶର ଗଡ଼, ରାଜପ୍ରାସାଦ, ରାଜପଥ ଆଦି ଦେଖିଲେ ମନେହୁଏ ଯେ ଏ ଦେଶର ଲୋକେ ଅତ୍ୟନ୍ତ ଉନ୍ନତ ଥିଲେ । ପ୍ରଥମ ମୋଗଲ ସମ୍ରାଟଙ୍କ ସମୟରେ ଏ ଦେଶରୁ ଆଦାୟ ହୋଇଥିବା ରାଜସ୍ୱର ପରିମାଣ ତାହାର ଜ୍ୱଳନ୍ତ ପ୍ରମାଣ । ଏତେ ରାଜସ୍ୱ ଯେ ଏହି ଦେଶ ଖଣ୍ଡକରୁ ଆଦାୟ ହେଉଥିଲା, ଶୁଣିଲେ ବିସ୍ମୟ

ଲାଗେ । + + + ଖୋର୍ଦ୍ଧାର ପାଇକ ବିଦ୍ରୋହ ଇଂରେଜ ହାକମମାନଙ୍କର ଆଖି ଫିଟାଇ ଦେଇଛି । + + + ସୈନ୍ୟ ବିଭାଗରେ ସେମାନଙ୍କୁ ରଖିବା ବିପଦ-ଜନକ । ପୋଲିସ ବିଭାଗରେ ସେମାନେ ହୁଏତ ରହିପାରନ୍ତି । + + ତାଙ୍କୁ ସାଧାରଣ ପ୍ରଜାଙ୍କ ଅବସ୍ଥାକୁ ପେଲିଦେଇ ତାଙ୍କଠାରୁ ପ୍ରଚଳିତ ହାରରେ ଖଜଣା ଅସୁଲ କରିବା ଦରକାର । ଅବଶ୍ୟ ପାଖେ ପାଖେ କେତେଜଣ ଦଳବେହେରାଙ୍କୁ ପୂର୍ବ ଜାଗିରରୁ ଖଣ୍ଡ ଖଣ୍ଡେ ଦେଇ ରଖିବାକୁ ହେବ । କିନ୍ତୁ ପାଇକମାନଙ୍କୁ ସେ ସୁବିଧା ଦିଆଯାଇ ନପାରେ । + + ସେମାନଙ୍କ ବିଷଦାନ୍ତ ଭାଙ୍ଗିବା ପାଇଁ ପୋଲିସ-କର୍ମଚାରୀଙ୍କ ଦ୍ୱାରା ଅନେକକାଳ ସେମାନଙ୍କୁ ଜବତରେ ରଖିବାକୁ ପଡ଼ିବ । ପାଇକକୁଳକୁ ସମୂଳେ ଧ୍ୱଂସ ନକଲେ ମଙ୍ଗଳ ନାହିଁ । × × × ନେତା ରହିବେ ନାହିଁ । ପାଇକ ମାନଙ୍କ ପୂର୍ବ ଏକତାର ବନ୍ଧନ ତୁଟାଇ ଦିଆଯିବ; ତାହାହେଲେ ଭବିଷ୍ୟତକୁ ଆଉ ବିପଦ ଆଶଙ୍କାରୁ ଆମ୍ଭେମାନେ ପାର ପାଇଜିବା । × × × ଆମେ ବ୍ୟବହାର ଅଭାବରେ ଲୁହାରେ କଳଙ୍କି ଲଗାଇଦେବା ।” (ଣ)

ଇଂରେଜମାନେ ସୁଯୋଗ ପ୍ରଦାନ କରିଥିଲେ ଓଡ଼ିଶାର ବୀର ପାଇକବାହିନୀ ଆଧୁନିକ ଭାରତବର୍ଷରେ ପଞ୍ଜାବୀ ଓ ରାଜପୁତ୍‌ମାନଙ୍କ ପରି ଏକ ପ୍ରମୁଖ ସାମରିକ ଜାତି ହିସାବରେ ଦେଶରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିପାରିଥାଆନ୍ତେ । ସ୍ୱାଧୀନତା ପିପାସୁ ରଣରଙ୍ଗ ଓଡ଼ିଆ ଜାତିକୁ ଇଂରେଜମାନେ କିପରି ଭୟ କରୁଥିଲେ, ତାହା ଖୋର୍ଦ୍ଧାର ଇତିହାସ ଆଲୋଚନା କଲେ ପ୍ରମାଣିତ ହୋଇ ପାରିବ ।

(ଣ) କଙ୍କାଳର ଆର୍ତ୍ତନାଦ—ପରଭାଗ—ପଣ୍ଡିତ ଗୋଦାବରୀଶ ମିଶ୍ର ୧୯୪୮-ପୃ. ୨୯-୨୭ ।



# କିମ୍ବଦନ୍ତୀ ଓ ଇତିହାସରେ ପଞ୍ଚକଟକ

**ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ**
( ସବ୍ୟସାଚୀ )

## 'କଟକ' ବା 'ଅଭିନବ ବାରାଣସୀ କଟକ' :

ଏକ ତାମ୍ରଶାସନ ଅନୁସାରେ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଭୌମକର ବଂଶର ପ୍ରତିଷ୍ଠାତା ପ୍ରଥମ ଶିବକର ଦେବ ୭୩୬ ଖ୍ରୀ:ରୁ ୭୮୩ ଖ୍ରୀ: ପର୍ଯ୍ୟନ୍ତ ଓଡ଼ିଶାର ଶାସକ ଥିଲେ । ସେହି ଶିବକର ଦେବଙ୍କୁ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଉନ୍ମତ୍ତ ବା ଉନ୍ମତ୍ତ କେଶରୀ ବୋଲି ଚିହ୍ନିତ କରିବା ସହିତ ତାଙ୍କର ଏହି ନାମ କ୍ରମଶଃ ମର୍କତ ବା ମର୍କଟ କେଶରୀ ହୋଇଥିବାର ଯୁକ୍ତି କରିଅଛନ୍ତି । ଏତଦବ୍ୟତୀତ ମର୍କତ କେଶରୀ ବା ଶିବକର ଦେବଙ୍କର ଅନ୍ୟ ଏକ ଉପନାମ ନୃପ କେଶରୀ ଥିବାର ଅନୁମାନ କରନ୍ତି । ଏହି ଶିବକର ଦେବ ହିଁ ପ୍ରାଚୀନ କଟକ ସହରକୁ ବସାଇଥିବା କଥା ଐତିହାସିକମାନେ କୁହନ୍ତି । ତେଣୁ କିମ୍ବଦନ୍ତୀ ଅନୁସାରେ ଯେଉଁ ମର୍କତ କେଶରୀ କାଠଯୋଡ଼ି ପଥରବନ୍ଧର ନିର୍ମାତା ଏବଂ ଯେଉଁ ନୃପକେଶରୀ କଟକ ନଗରର ପ୍ରତିଷ୍ଠାତା, ସେ ଦୁଇଟି ବହୁ ପ୍ରସିଦ୍ଧ ନାମ ଯେ ଦୁଇ ଜଣଙ୍କର ନୁହେଁ ଓ ସେ ଦୁଇଟି, ଭୌମରାଜା ପ୍ରଥମ ଶିବକର ଦେବଙ୍କର—ଆପାତତଃ ଏଭଳି ଗ୍ରହଣ କରାଯାଇଛି । ଫଳତଃ ବିଂଶ ଶତାବ୍ଦୀକୁ କଟକ ସହରର ବୟସ ବାରଶହ ବର୍ଷରୁ ଅଧିକ—କହିବା ବାହୁଲ୍ୟ । କିନ୍ତୁ ଆରମ୍ଭରୁ କଟକ ସହର ଓଡ଼ିଶାର ରାଜଧାନୀ ହୋଇ ନଥିଲା ।

କଟକର ଝଡ଼ାନାସୀ ଓ ବାରବାଟୀ ଠାରେ ଦୁଇଟି ପ୍ରାଚୀନ ଦୁର୍ଗର ଧ୍ୱଂସାବଶେଷ ରହିଛି । ଏଥି ମଧ୍ୟରୁ ବାରବାଟୀ ଦୁର୍ଗଟି ନିର୍ମିତ ହୋଇଥିଲା ୧୨୩୦ ଖ୍ରୀ:ରେ ଭୌମକର ରାଜା ତୃତୀୟ ଅନଙ୍ଗ ଭୀମଦେବଙ୍କ ଦ୍ୱାରା ଏବଂ ସେହି ସମୟରେ କଟକ ନଗରଟି ଓଡ଼ିଶାର ରାଜଧାନୀ ତଥା ବାରବାଟୀ ଦୁର୍ଗଟି ରାଜପ୍ରାସାଦ ରୂପରେ ଗୌରବ ଅର୍ଜନ କରିଥିଲା । ଏହି କାଳରେ, ଓଡ଼ିଶାରେ ନଳମାପ ଦ୍ୱାରା, ଜମିବାଡ଼ି ସମସ୍ତର ବନ୍ଦୋବସ୍ତ ହୋଇଥିଲା । ତେଣୁ ବାରବାଟୀ ପରିମିତ ଭୂମି ଉପରେ ଗଢ଼ି ଉଠିଥିବା

ଦୁର୍ଗଟିକୁ 'ବାରବାଟୀ ଦୁର୍ଗ' ବୋଲି ନାମିତ କରାଯାଇଥିବାର ଅନୁମାନ କରାଯାଏ । ଏହି ବାରବାଟୀ ଦୁର୍ଗର ଆବଶ୍ୟକୀୟ ସଂସ୍କାର ଏବଂ ଗଡ଼ଖାଇ-ପ୍ରାଚୀରାଦିର ନିର୍ମାଣ କର୍ମ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ରାଜା କପିଳେନ୍ଦ୍ର ଦେବଙ୍କର ୧୪୩୫ରୁ ୧୪୬୮ ଖ୍ରୀଷ୍ଟାବ୍ଦ ଶାସନ କାଳ ମଧ୍ୟରେ ସମାହିତ ହୋଇଥିଲା । ଏତଦ୍‌ବ୍ୟତୀତ ବଡ଼ାନାସୀଠାରେ କେନେ ଯେଉଁ ଦୁର୍ଗଟି ମୁଣ୍ଡ ଟେକିଥିଲା, ତାହା ଶିବଙ୍କର ଦେବଙ୍କ ପରବର୍ତ୍ତୀ କୌଣସି ସୋମବଂଶୀୟ ରାଜା ପଶ୍ଚିମ ପାଖର ଏକ ରକ୍ଷାଦୁର୍ଗ ରୂପରେ ତୋଳାଇ ଥିଲେ ବୋଲି ଐତିହାସିକ ମତ ରହିଅଛି । ତେଣୁ ବଡ଼ାନାସୀ ଦୁର୍ଗଟି ବାରବାଟୀଠାରୁ ସ୍ପଷ୍ଟ ପ୍ରାଚୀନ ହେଲେ ମଧ୍ୟ କଟକ ସହର ପ୍ରତିଷ୍ଠାର ପରବର୍ତ୍ତୀ ଏକ ରାଜକୀୟ ସୁରକ୍ଷା ସମ୍ବଳିତ କୀର୍ତ୍ତି ବୋଲି କୁହାଯାଇ ପାରେ ।

ବଡ଼ାନାସୀ ନାମଟି ଆସିଛି ବାରାଣସୀରୁ । ସେଥିପାଇଁ ବାରାଣସୀରେ ବିଶ୍ୱନାଥ ମହାଦେବ ଥିବାପରି, କଟକରେ ପ୍ରତିଷ୍ଠିତ ବିଶ୍ୱେଶ୍ୱର ମହାଦେବ ଏବଂ ବାରାଣସୀଠାରୁ ପୃଥକ୍ ଦେଖାଇବା ପାଇଁ କଟକକୁ 'ଅଭିନବ ବାରାଣସୀ କଟକ' ବୋଲି ନାମିତ କରାଯାଇ ସୋମବଂଶର ରାଜତ୍ୱ କେବଳ ଏହାର ଅଭିବୃଦ୍ଧି ସାଧନ ହୋଇଥିଲା । ଏଭଳି ଭାବରେ ଦୁଇଟି ଦୁର୍ଗର ସମାହାର 'ଅଭିନବ ବାରାଣସୀ କଟକ' ହୋଇଥିବାରୁ ଏବଂ ତହିଁରୁ ଗୋଟିଏ ତୃତୀୟ ଅନଙ୍ଗଭୀମ ଦେବଙ୍କ କାଳରେ ନିର୍ମିତ ହୋଇ, ରାଜଭବନ ରୂପେ 'ବାରବାଟୀ' ନାମରେ ଚିହ୍ନିତ ହୋଇଥିବାରୁ, ପ୍ରାଚୀନ ଦୁର୍ଗଟିକୁ 'ବାରାଣସୀ ଦୁର୍ଗ' ନାମରେ ଅଭିହିତ କରାଯାଇଥିଲା, ଯାହାକି ଲୋକମୁଖରେ ଅପଭ୍ରଂଶ କ୍ରମେ 'ବଡ଼ାଣସି' ଓ ତହିଁରୁ 'ବଡ଼ାନାସୀ' ହୋଇ ରହିଯାଇଥିବା ସମ୍ଭବ । ଅନୁରୂପ 'ଅଭିନବ ବାରାଣସୀ କଟକ' ଏକ ଦୀର୍ଘ ନାମ ହୋଇଥିବାରୁ ଏବଂ ବଡ଼ାନାସୀ ଦୁର୍ଗଟିର ବାରବାଟୀ ଦୁର୍ଗ ସକାଶେ ଗୌଣତା ଅନୁଭୂତ ହୋଇଥିବାରୁ, ପ୍ରାଚୀନ ଦୁର୍ଗାଞ୍ଚଳର ବଡ଼ାନାସୀ ନାମଟି ଗୁରୁତ୍ୱ ହରାଇ, 'ଅଭିନବ ବାରାଣସୀ କଟକ' କ୍ରମଶଃ ଲୋକମୁଖରେ 'କଟକ' ହୋଇ ରହିଥିବା ଏକାନ୍ତ ସମ୍ଭବ ।

ବାରଶହ ବର୍ଷରୁ ଅଧିକ ବୟସର 'କଟକ' କିନ୍ତୁ ୧୨୩୦ ଖ୍ରୀଷ୍ଟାବ୍ଦ ବା ତା'ର ବର୍ଷକ ଆଗରୁ ଓଡ଼ିଶାର ରାଜଧାନୀ ଭାବରେ ମାନ୍ୟତା ପାଇ ପ୍ରସିଦ୍ଧି ଲାଭ କରିଥିଲା, ଯାହାକି ଏକ ତାମ୍ର ଶାସନରୁ ଜଣାଯାଏ । ୧୨୩୦ ଖ୍ରୀ:ରେ ତୃତୀୟ ଅନଙ୍ଗଭୀମ ଦେବଙ୍କ କର୍ତ୍ତୃକ ନିର୍ମିତ ହୋଇଥିବା ବାରବାଟୀ ଦୁର୍ଗ ଯେ ଏହି ପ୍ରସିଦ୍ଧିର ଆଧାର ଥିଲା, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ଏହି ଦୃଷ୍ଟିରୁ, ପ୍ରାଚୀନ କଟକ ସହର ବାରଶହ ବର୍ଷରୁ ଊର୍ଦ୍ଧ୍ୱ ବୟସର ହେଲେ ମଧ୍ୟ, ରାଜନୀତିକ ମାନ୍ୟତା ତଥା ଗୁରୁତ୍ୱ ପରିପ୍ରେକ୍ଷୀରେ ଏହାର ପର୍ଯ୍ୟାପ୍ତ କ୍ରମିକ ଐତିହାସିକ ଏବଂ ପ୍ରତ୍ନତାତ୍ତ୍ୱିକ ବୟସ, ବିଂଶ ଶତାବ୍ଦୀର ନବେ ଦଶକ ସୁଦ୍ଧା ୭୬୦ ବର୍ଷରୁ ଅଧିକ ହୋଇ ନ ପାରେ ।

× × × ×

କଟକ ନିର୍ମାଣ ତଥା ବୟସାନୁକ୍ରମିକ କେତେକ ପ୍ରାସଙ୍ଗିକ ବିବରଣୀ, ଇତିହାସ ତଥା କିମ୍ବଦନ୍ତୀରୁ ଅନୁମାନ ହୋଇଥିବା ବେଳେ 'କଟକ'ର ବ୍ୟାକରଣଗତ ଅର୍ଥ ଉର୍କି

ମାରିଥାଏ । କାରଣ ସହର ଓ ରାଜଧାନୀଗୁଡ଼ିକ ପ୍ରାଚୀନ କାଳରୁ କଟକ ସଂଜ୍ଞା ବହନ କରି ଆସିଥିବାର ପ୍ରମାଣ ଅପ୍ରଚୁର ନୁହେଁ । ଏହି ପରିପ୍ରେକ୍ଷୀରେ ଓଡ଼ିଶା-ଇତିହାସ ଆମକୁ କେତେଗୁଡ଼ିଏ କଟକକୁ ପ୍ରତିଭାତ କରିଅଛି ଏବଂ ସେଗୁଡ଼ିକ ଓଡ଼ିଶାର ବିଭିନ୍ନ ସମୟରେ ରାଜଧାନୀ ହୋଇ ଆସିଥିବାର ଦେଖାଯାଏ । ତେଣୁ କଟକର ପ୍ରକୃତ ଅର୍ଥ 'ରାଜଧାନୀ' ବା 'ସହର' ବା 'ଦୁର୍ଗ' ହେବାହିଁ ସମୀଚୀନ ।

ଇତିହାସ ଓ କିମ୍ବଦନ୍ତୀ ଅନୁସାରେ, ଓଡ଼ିଶାରେ 'ପଞ୍ଚ-କଟକ'ର ପ୍ରସିଦ୍ଧି ପ୍ରତିପାଦିତ ହୋଇଥାଏ । ସେଗୁଡ଼ିକ ଯଥାକ୍ରମେ—

୧ । ଅଭିନବ ଯଯାତିନଗରରେ ବା ଯାଜପୁର, କଟକ;

୨ । ଯଜନ ନଗର ବା ଚୌଦ୍ୱାର କଟକ;

୩ । ଅଭିନବ ବାରଣସୀ କଟକ ବା କଟକ;

୪ । ଅମରାବତୀ କଟକ ବା ଛତିଆ କଟକ, ଏବଂ

୫ । ଚୁଡ଼ଙ୍ଗ କଟକ ବା ଶାରଙ୍ଗଗଡ଼ କଟକ ।

ଏହି 'ପଞ୍ଚ-କଟକ' ବିଭିନ୍ନ ସମୟରେ ସମ୍ପୂର୍ଣ୍ଣ ଓଡ଼ିଶା ସାମ୍ରାଜ୍ୟର ରାଜଧାନୀ ହୋଇଥିଲା । ସେଥିପାଇଁ ସେସବୁ ସ୍ଥାନ ଏବେ ମଧ୍ୟ ଲୋକ-ଅଧିକ ଗୌରବରେ ଅତୀତର ସ୍ମୃତିକୁ ସ୍ମରଣ କରି ଆସୁଛନ୍ତି ଏବଂ ପ୍ରାଚୀନ ଦୁର୍ଗର ଅବଶେଷମାନ ଧାରଣ କରିଛନ୍ତି ।

## ଅଭିନବ ଯଯାତି ନଗର ବା ଯାଜପୁର କଟକ :

ଯାଜପୁର କଟକର ପୂର୍ବ ନାମ ଥିଲା ଗୁହଦେବ ପାଟକ ବା ଗୁହେଶ୍ୱର ପାଟକ ଏବଂ ସେଠାରେ ତୋଷଳୀର ଭୌମକର ରାଜବଂଶ ସ୍ଥାୟୀ ଭାବେ ରହି ଆସୁଥିବାରୁ ସେମାନଙ୍କର ଦାନପତ୍ରରେ ଏହି ନାମ ଦେଖିବାକୁ ମିଳେ । ଗୁହଦେବ ପାଟକ ବା ଗୁହେଶ୍ୱର ପାଟକ ସହିତ ଯାଜପୁରଠାରୁ ୫।୬ ମାଇଲ ଦୂରରେ ଅବସ୍ଥିତ ଖଡ଼ିପଡ଼ା ବା ଗୋହିରଟିକିରାକୁ ଐତିହାସିକମାନେ ଚିହ୍ନିତ କରନ୍ତି, ଯେଉଁଠାରେ ପ୍ରାଚୀନ ଧ୍ୱଂସାବଶେଷ ରହିଛି ଏବଂ ସେଠାରୁ ଉଦ୍ଧୃତ ପାଞ୍ଚଗୋଟି ପ୍ରକାଣ୍ଡ ବୌଦ୍ଧ ମୂର୍ତ୍ତିଙ୍କ ମଧ୍ୟରୁ ଗୋଟିକରେ ମଧ୍ୟ ଭୌମକର ବଂଶର ରାଜା ଶୁଭଙ୍କରଙ୍କ ନାମ ଖୋଦିତ ହୋଇଛି । ମୂର୍ତ୍ତିତକ ଏବେ ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ । ତା'ପରେ ଏକାଦଶ ଶତାବ୍ଦୀର ପ୍ରାରମ୍ଭ ଚରଣରେ ଭୌମକରଙ୍କ ଶାସନାଧୀନ 'ତୋଷଳୀ' ଯେତେବେଳେ 'ଉଡ୍ରଦେଶ' ଶାସକ ସୋମବଂଶୀୟ ଦ୍ୱିତୀୟ ଯଯାତି କେଶରୀଙ୍କର କବଳିତ ହୋଇଥିଲା, ସେ ଓଡ଼ିଶାର ଶାସନ ସୁବିଧା ନିମିତ୍ତ ନିଜର ରାଜଧାନୀ ବୌଦ ନିକଟସ୍ଥ 'ଯଯାତି ନଗର'ରୁ ୧୦୨୫ ଖ୍ରୀଷ୍ଟାବ୍ଦରେ ଯାଜନଗର ବା ଯାଜପୁରକୁ ଉଠାଇ ଆଣି ତା'ର ନାମକରଣ କରିଥିଲେ—'ଅଭିନବ ଯଯାତି ନଗର', ଯାହାକୁ ଯାଜପୁର ଇଲାକାର 'ରାଜନଗର' ନାମ ଚିହ୍ନିତ କରିବାକୁ କେହି କେହି ସୂଚନା ଦେଇଛନ୍ତି । ଏହି ଦ୍ୱିତୀୟ

ଯଯାତି ଚଣ୍ଡୀହର ସେଠାରେ ବ୍ରାହ୍ମଣମାନଙ୍କ ଦ୍ୱାରା ବିରାଟ ଯଜ୍ଞ କରିଥିବାରୁ ତାହା ଲୋକମୁଖରେ 'ଯଜ୍ଞନଗର', 'ଯାଗନଗର', 'ଯାଜନଗର' ଇତ୍ୟାଦି ହୋଇ ଅପଭ୍ରଂଶ କ୍ରମେ ଶେଷରେ 'ଯାଜପୁର' ହୋଇଥିବା ବିଶେଷ ସମ୍ଭବ ।

'ଅଭିନବ ଯଯାତି ନଗର' ବା 'ଯାଜପୁର କଟକ' ସ୍ଥାୟୀ ଭାବେ ଓଡ଼ିଶାର ରାଜଧାନୀ ହୋଇ ଯାଇଥିଲା । କାରଣ ସୋମବଂଶର ଶେଷ ରାଜା କର୍ଣ୍ଣଦେବ କେଶରୀଙ୍କ ହାତରୁ ଓଡ଼ିଶାର ରାଜଗାଦି ସମ୍ପୂର୍ଣ୍ଣ ରୂପରେ ଖସିଯାଇଥିଲା ୧୧୧୮ ଖ୍ରୀଷ୍ଟାବ୍ଦ ବେଳକୁ ଏବଂ ସୋମବଂଶର ପତନ ଘଟି, ଗଙ୍ଗବଂଶର ସାର୍ବଭୌମ ଶାସନର ଶୁଭାରମ୍ଭ ହୋଇ ସାରିଥିଲା ଦକ୍ଷିଣାଗତ ସଂସ୍ଥାପକ ଚୋଡ଼ଗଙ୍ଗ ଦେବଙ୍କ ହାତରେ । ଚୋଡ଼ଗଙ୍ଗ ଅବଶ୍ୟ ଆରମ୍ଭରେ 'କଳିଙ୍ଗ ନଗର'କୁ ସଂସ୍କାର କରି ସେଠାରେ ଅଭିଷିକ୍ତ କରିଥିଲେ, କିନ୍ତୁ ସୋମବଂଶର ସମ୍ପୂର୍ଣ୍ଣ ପତନ ଘଟିବା ହେତୁରୁ ଶାସନର ସୁବିଧା ଓ ସୁରକ୍ଷାକୁ ଆଖି ଆଗରେ ରଖି ସେ ଯାଜପୁର କଟକକୁ ହିଁ ୧୧୧୮ ଖ୍ରୀଷ୍ଟାବ୍ଦରେ ନିଜର ରାଜଧାନୀ ରୂପେ ଗ୍ରହଣ କରି ନେଇଥିଲେ । ପ୍ରତ୍ନତତ୍ତ୍ୱବିତ୍ ପ୍ରଭୃତିଙ୍କ ମତାନୁସାରେ, ସେଠାକାର ଭୌଗଳିକ ସ୍ଥିତି ହିଁ ରାଜନୀତିକ ଦୃଷ୍ଟିକୋଣରୁ 'କଟକ' ହେବା ନିମିତ୍ତ ଅନୁକୂଳ ଥିଲା ଏବଂ ସେଥି ନିମିତ୍ତ ଚୋଡ଼ଗଙ୍ଗଦେବ କଳିଙ୍ଗ ନଗର ଅପେକ୍ଷା ଅଧିକ ସୁରକ୍ଷିତ ମନେ କରିଥିଲେ, ଅଭିନବ ଯଯାତି ସେହି ନଗର ଯାଜପୁର କଟକକୁ ।

## ଚୌଦ୍ୱାର କଟକ ବା ଯଜନ ନଗର :

ଧର୍ମପୁର ବା ଚୌଦ୍ୱାର କଟକର ପ୍ରାଚୀନ ନାମ ଥିଲା—'ଯଜନ ନଗର' ଓ ଏହି ନାମଟି ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଇତିହାସ ପ୍ରସିଦ୍ଧ ହୋଇଥିବାର ପ୍ରମାଣ ମଧ୍ୟ ମିଳେ । ବ୍ରହ୍ମେଶ୍ୱର ଶିଳାଲିପି ଅନୁସାରେ, ସୋମବଂଶୀୟ ରାଜା ପ୍ରଥମ ଜନ୍ମେଜୟ ମହାଭବ ଗୁପ୍ତ ଉତ୍କଳର ରାଜାଙ୍କୁ କୁନ୍ତଦ୍ୱାରା ବଧ କରି ୮୫୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କରିଥିଲେ । ତାଙ୍କର ରାଜୁତି ଥିଲା ୮୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । କିମ୍ବଦନ୍ତୀ କହେ ଯେ—ଜନ୍ମେଜୟ ରାଜା ବିରୂପା ନଦୀ କୂଳରେ ଯଜ୍ଞ କରିଥିବାରୁ, ସେ ସ୍ଥାନର ନାମ ହୋଇଥିଲା 'ଯଜନ ନଗର' ଏବଂ ସେଠାରେ ପ୍ରତିଷ୍ଠିତ ଏକ ଦୁର୍ଗର ଚାରିଗୋଟି ଦ୍ୱାର ଥିବାରୁ କାଳକ୍ରମେ ଲୋକମୁଖରେ 'ଯଜନ ନଗର' ନାମଟି ବଦଳି ଯାଇ 'ଚୌଦ୍ୱାର କଟକ' ହୋଇଥିବା ଖୁବ୍ ସମ୍ଭବ । ଜନ୍ମେଜୟଙ୍କ ପଣନାତି ଧର୍ମରଥ ୯୭୦ ଖ୍ରୀଷ୍ଟାବ୍ଦରେ ଗାଦିନସୀନ ହୋଇଥିଲେ । ତେଣୁ ସେ ନିଜ ନାମାନୁସାରେ ଯଜନ ନଗରର ନାମକରଣ ପୁଣି 'ଧର୍ମପୁର' କରିଥିବେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଯଯାତିଙ୍କ ପରି, ଅଧିକାଂଶ ରାଜା ନିଜର ନାମାନୁସାରେ ଶ୍ରେଷ୍ଠ ସ୍ଥାନମାନଙ୍କର ନାମକରଣ କରିବା ପ୍ରଥାଟି ଏକାନ୍ତ ରାଜକୀୟ । କିନ୍ତୁ 'ଧର୍ମପୁର' ନାମଟି ଲୋପ ପାଇବାର ମୂଳରେ ସେଠାକାର ଦୁର୍ଗର ପତନ କାରଣଟି ଥାଇପାରେ । ତେଣୁ ଦୁର୍ଗର ଧ୍ୱଂସାବଶେଷ ମଧ୍ୟରେ ଚାରିଗୋଟି ଦ୍ୱାରକୁ ଦେଖି ଦେଖି ଲୋକମୁଖରେ ସେ ସ୍ଥାନଟିର ନାମ ଚୌଦ୍ୱାର ହୋଇ ଯାଇଥିବ, କହିବା ବାହୁଲ୍ୟ ।

ଚୌଦ୍ୱାର ବା ଯଜନ ନଗର ଏକ ଦୁର୍ଗ ଥିଲା ସିନା, ସୋମବଂଶ-ଶାସନ କାଳରେ ଏହା ଓଡ଼ିଶାର ରାଜଧାନୀ ହୋଇ ନଥିଲା । ମାତ୍ର ପରେ ଗଙ୍ଗବଂଶ ରାଜା ଚୋଡ଼ଗଙ୍ଗଙ୍କର ଅଭ୍ୟୁଦୟ ଘଟି, ତାଙ୍କ ହାତକୁ ଓଡ଼ିଶାର ଶାସନ ଚାଲିଯିବା ପରେ, ତାଙ୍କ ବଂଶଜ ରାଜା ତୃତୀୟ ଅନଙ୍ଗଭୀମ ଦେବ ୧୨୧୧ରୁ ୧୨୩୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାକୁ ଶାସନ କରିଥିଲେ ଏବଂ ତାଙ୍କ କର୍ତ୍ତୃକ କଟକକୁ ରାଜଧାନୀ ଉଠି ଆସିବା ପୂର୍ବରୁ, ୧୧୧୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ପ୍ରଥମେ କିଛିକାଳ ପାଇଁ ଯଜନ ନଗରକୁ ଓଡ଼ିଶାର ରାଜଧାନୀ କରିଥିଲେ । ଏପରି ପରିବର୍ତ୍ତନ ମୂଳରେ ଥିଲା ରାଜନୀତିକ ସୁବିଧାବାଦ । ସେତେବେଳକୁ ଗଙ୍ଗ ସାମ୍ରାଜ୍ୟ ଖୁବ୍ ବିସ୍ତୃତ ହୋଇ ପଡ଼ିଥିଲା ଏବଂ ଏହାର ରାଜଧାନୀ ଅଭିନବ 'ଯଯାତି ନଗର' ବା 'ଯାଜପୁର କଟକ' ଏତେ ବଡ଼ ରାଜ୍ୟର ପଶ୍ଚିମ କୋଣରେ ରହିଯାଇଥିବା ହେତୁରୁ ଶାସନରେ ଅସୁବିଧା ଦୂର କରିବା ପାଇଁ ତୃତୀୟ ଅନଙ୍ଗଭୀମଦେବ ଯାଜପୁରରୁ ଚୌଦ୍ୱାରକୁ କିଛିକାଳ ପାଇଁ ନିଜର ରାଜଧାନୀ ଉଠାଇ ଆଣିଥିବା ଅସ୍ୱାଭାବିକ ନୁହେଁ ।

ଚତୁର୍ଦ୍ଦଶ ଶତାବ୍ଦୀ ସୁଦ୍ଧା ଏହି କଟକସ୍ଥିତ ଦୁର୍ଗଟି ଧ୍ୱଂସ ପାଇ ଯାଇଥିବା ମତ ଐତିହାସିକମାନେ ଦିଅନ୍ତି, ଯାହାର ଅବଶେଷରୁ କିଛି କିଛି ଅଦ୍ୟାବଧି ଉପଲବ୍ଧ ହୁଏ ।

ଏହି କଟକରେ କିଛିକାଳ ରାଜଧାନୀ ପ୍ରତିଷ୍ଠା କରିବା ପରେ, ତୃତୀୟ ଅନଙ୍ଗ-ଭୀମଦେବ ଏହାର ଦକ୍ଷିଣରେ ଅବସ୍ଥିତ ମହାନଦୀ ତଟସ୍ଥ ପ୍ରାଚୀନ କଟକ ବା ଅଭିନବ ବାରାଣସୀ କଟକକୁ ପୁନର୍ବାର ନିଜର ରାଜଧାନୀ ପରିବର୍ତ୍ତିତ କରି ୧୨୩୦ ଖ୍ରୀଷ୍ଟାବ୍ଦରୁ ବାକି କାଳତକ କଟକଠାରେ ଅବସ୍ଥାନ କରିଥିବା ପ୍ରସଙ୍ଗ ଇତିହାସରୁ ମିଳେ ।

## ଅମରାବତୀ କଟକ ବା ଛତିଆ କଟକ :

'ଅମରାବତୀ କଟକ' ବା 'ଦ୍ୱିତୀୟ ଅମରାବତୀ କଟକ'କୁ 'ଛତିଆ କଟକ' କୁହାଯାଏ । ଅଦ୍ୟାବଧି କଟକ ଜିଲ୍ଲାର ଛତିଆ ମଠ ନିକଟସ୍ଥ ଏକ ଟାଙ୍ଗରା ପାହାଡ଼ ପାର୍ଶ୍ୱରେ ପୂର୍ବ ଦୁର୍ଗଟିର ନିଦର୍ଶନ ସ୍ୱରୂପ କିଛି ପ୍ରାଚୀରାଂଶ, ଦୁଇଟି କୂପ, କିଛି ବାସଗୃହର ଭଗ୍ନାବଶେଷ ଓ ସଭାମଣ୍ଡପ ନାମରେ ଏକ ଉଚ୍ଚ ବେଦିକା ପରିଦୃଷ୍ଟ ହୋଇଥାଏ ଏବଂ ସେ ସ୍ଥାନଟିକୁ 'ଅମରାବତୀ' ବୋଲି ମଧ୍ୟ ଲୋକମାନେ କହିଥାଆନ୍ତି । କିମ୍ବଦନ୍ତୀ ଅନୁସାରେ ଏହା ପୂର୍ବେ ଚୋଡ଼ଗଙ୍ଗଙ୍କ ଅଧୀନ ଥିଲା ଏବଂ ଅମରାବତୀ ନାମଟି ତାଙ୍କ ଦ୍ୱାରହିଁ ପ୍ରଦତ୍ତ । ଚୋଡ଼ଗଙ୍ଗ ଦକ୍ଷିଣରୁ ଆସିଥିଲେ । ଦକ୍ଷିଣରେ ପ୍ରବାହିତ କୃଷ୍ଣାନଦୀର ମୁହାଣ ନିକଟରେ ଅମରାବତୀ ନାମକ ଏକ ବୌଦ୍ଧକୀର୍ତ୍ତିଭରା ନଗରୀ ମଧ୍ୟ ଥିଲା । ତେଣୁ ସେ ରାଜକୀୟ ପ୍ରଥା ଅନୁଯାୟୀ ଏହି ସ୍ଥାନରେ ଯଦି ଦୁର୍ଗ ପ୍ରତିଷ୍ଠା କରିଥିବେ, ତେବେ ତା'ର ନାମ 'ଦ୍ୱିତୀୟ ଅମରାବତୀ କଟକ' ଦେଇଥିବା ଅସମ୍ଭବ ନୁହେଁ ।

ଭୌଗୋଳିକ ଦୃଷ୍ଟିରୁ ଛତିଆ ଅଞ୍ଚଳଟି ମଧ୍ୟ ଦୁଇଟି ନଦୀର ମଧ୍ୟଭାଗରେ ଅବସ୍ଥିତ ଏକ ଘାଟୀସ୍ଥଳ । ଏତଦବ୍ୟତୀତ ଅମରାବତୀ କଟକଠାରୁ ପ୍ରାୟ ୪ ମାଇଲ ଦୂରରେ ଜଲୌକା ନାମକ ସ୍ଥାନରେ ପ୍ରସିଦ୍ଧ ପଞ୍ଚପାଣ୍ଡବ ମନ୍ଦିରର ଭଗ୍ନାଂଶଭାଗ ଅଦ୍ୟାବଧି ପରିଦୃଷ୍ଟ ହୁଏ, ଯେଉଁଗୁଡ଼ିକର ଗଠନଶୈଳୀ, ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ସଦୃଶ । ତେଣୁ ପୂର୍ବେ ଏହି ଅଞ୍ଚଳର ସଭ୍ୟତା ବେଶ୍ ଉନ୍ନତ ଧରଣରେ ଥିବାର ଅନୁମାନ କରିହୁଏ । ଏହିସବୁ ଦୃଷ୍ଟିରୁ ଏକାଦଶ ଦ୍ୱାଦଶ ଶତାବ୍ଦୀରେ ଏହା ଏକ ରକ୍ଷାଦୁର୍ଗ ରୂପେ ଯଦି ଚୋଡ଼ଗଙ୍ଗ ଦେବଙ୍କ ଦୀର୍ଘ ଶାସନକାଳ ମଧ୍ୟରେ ପ୍ରତିଷ୍ଠିତ ହୋଇଥାଏ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ସାମରିକ ଦୃଷ୍ଟିକୋଣରୁ ଏପରି ରକ୍ଷାଦୁର୍ଗ ଆଦୃତ ମଧ୍ୟ କରାଯାଇଥିବ । କିନ୍ତୁ ଏଇଟି ରାଜଧାନୀର ସମତୁଲ ହେଲାପରି 'କଟକ' ନାମ ଧାରଣପୂର୍ବକ ପ୍ରସିଦ୍ଧ ହେବା ନିଶ୍ଚିତ ଭାବରେ ଚିନ୍ତା-ଜନକ ।

୧୦୭୭ରୁ ୧୧୪୭ ଖ୍ରୀଷ୍ଟାବ୍ଦ, ମୋଟ ୭୦ ବର୍ଷ କାଳ ଚୋଡ଼ଗଙ୍ଗଦେବ ଓଡ଼ିଶାର ଶାସନ କରିଥିଲେ ଏବଂ ପ୍ରାୟ ୪୦ ବର୍ଷ ପରେ ହିଁ ଅଭିନବ ଯଯାତି ନଗର ବା ଯାଜପୁର କଟକକୁ କରିଥିଲେ ନିଜର ସ୍ଥାୟୀ ରାଜଧାନୀ । ଏହି ୪୦ ବର୍ଷ କାଳ ସେ କ'ଣ କେବଳ ବଂଶଧାରା ନଦୀ କୂଳସ୍ଥ 'କଳିଙ୍ଗ ନଗର' ରାଜଧାନୀରେ ହିଁ ବସବାସ କରିଥିଲେ ? ସେ 'ଚୁଡ଼ଙ୍ଗ କଟକ' ନିର୍ମାଣ କରାଇବା ପରି ଯଦି 'ଛତିଆ କଟକ' ପ୍ରତିଷ୍ଠାର ମୂଳ ହୋଇଥିବେ, ତେବେ ଛତିଆ କଟକରେ ସାମୟିକ ଭାବରେ ହେଉ ପଛେ କିଛିକାଳ ଅବଶ୍ୟ ନିଜର ରାଜଧାନୀ ବସାଇ କାଳାତିପାତ କରିଥିବେ, ଯେଉଁଥି ପାଇଁ ଛତିଆ କଟକର ପ୍ରସିଦ୍ଧି ବୃଦ୍ଧି ପାଇ ତାହା ପଞ୍ଚ କଟକରୁ ଗୋଟିଏ ହୋଇଥିବ । ଯାଜପୁରର ଯଥେଷ୍ଟ ପୂର୍ବରୁ ଛତିଆ କଟକର ଅବସ୍ଥିତି ଏବଂ ସେଠାରେ ଉପଲବ୍ଧ କେତେକ ଗଙ୍ଗକୀର୍ତ୍ତି, ଏହି ଅନୁମାନକୁ ପୁଷ୍ଟ କରିବା ସହିତ ଚୋଡ଼ଗଙ୍ଗ ଦେବଙ୍କ ସ୍ଥାପକତ୍ୱକୁ ମଧ୍ୟ ଦୃଢ଼ କରୁଅଛି ।

## ଚୁଡ଼ଙ୍ଗ କଟକ ବା ସାରଙ୍ଗଗଡ଼ :

'ଚୁଡ଼ଙ୍ଗ କଟକ'ର ଅନ୍ୟ ନାମ 'ସାରଙ୍ଗଗଡ଼ କଟକ' । 'ଚୁଡ଼ଙ୍ଗ କଟକ' ନାମରୁ ଏହା ଚୋଡ଼ଗଙ୍ଗ ଦେବଙ୍କ କୀର୍ତ୍ତି ବୋଲି ଅନୁମାନ କରାଯାଇଥାଏ । ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ମାଦଳାପାଞ୍ଜି' ଓ 'ଶାରଳା ମହାଭାରତ'କୁ ଆଖି ଆଗରେ ରଖି ଅନୁମାନ କରିଛନ୍ତି ଯେ—'ଚୁଡ଼ଙ୍ଗ କଟକ' ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଦ୍ୱାଦଶ ଶତାବ୍ଦୀର ଆରମ୍ଭ ଭାଗରେ ନିର୍ମିତ ହେବା ପୂର୍ବରୁ ସେଠାରେ ବାରଙ୍ଗ, ରେତାଙ୍ଗ, ତେଲଙ୍ଗ ଆଦି ଶାବରିକ ନାମର ସ୍ଥାନ ସବୁଥିବା ପରି, 'ସାରଙ୍ଗ' ନାମରେ ଏକ ସ୍ଥାନ ଥିଲା ଏବଂ 'ଚୁଡ଼ଙ୍ଗ କଟକ' ପ୍ରତିଷ୍ଠା ପରେ ତାହା ଚୁଡ଼ଙ୍ଗଗଡ଼ ଓ ସାରଙ୍ଗଗଡ଼—ଏହି ଉଭୟ ନାମରେ ପରିଚିତ ଥାଇ, କାଳକ୍ରମେ କେବଳ ସାରଙ୍ଗଗଡ଼ ହୋଇ ରହି ଯାଇଛି ।

ଅଦ୍ୟାବଧି ସାରଙ୍ଗ ଚଉକଟ୍ଟରସନ ନିକଟବର୍ତ୍ତୀ ଜଙ୍ଗଲ ଅଞ୍ଚଳରେ ଚୁଡ଼ଙ୍ଗ କଟକର ଭଗ୍ନାବଶେଷ ପରିଦୃଷ୍ଟ ହୋଇଥାଏ । ତହିଁରୁ ଜଣାପଡ଼େ ଯେ—ପରିଖା ସହିତ ଦୁର୍ଗଟିରେ ଦୁଇଗୋଟି ମଜବୁତ୍ ପ୍ରାଚୀର ଥିଲା ଏବଂ ସ୍ଥାୟୀ ବସତିର ଚିହ୍ନ ସ୍ୱରୂପ ବିଶାଳ ଶସ୍ୟାଗାର ମଧ୍ୟ ରହିଥିଲା । ସ୍ଥାନଟିର ଭୌଗୋଳିକ ଅବସ୍ଥିତି ବି ଏହାର ତାତ୍‌କାଳୀନ—ସୁଦୃଢ଼ତାକୁ ସୂଚାଇ ଥାଏ । ଉଲ୍ଲେଖଯୋଗ୍ୟ ଏହି ଯେ—ଚନ୍ଦକାରୁ ଖୋର୍ଦ୍ଧା ରାସ୍ତାରେ ଅବସ୍ଥିତ ଭଣ୍ଡାରିଖିଆ ପାହାଡ଼ର ନିକଟବର୍ତ୍ତୀ ଗ୍ରାମ 'ଡାକୁଆ' ସମୀପସ୍ଥ ଅରଣ୍ୟାଞ୍ଚଳ ମଧ୍ୟରେ ଏକ ସତୀ ସ୍ମୃତି ସ୍ତମ୍ଭ କେତୋଟି କୂପ ଅଦ୍ୟାବଧି ପ୍ରାଚୀନ 'କାଶିଆଗଡ଼'ର ଧ୍ୱଂସାବଶେଷ—ସ୍ମୃତିକୁ ବହନକରି ଲୋକମୁଖରେ ପ୍ରଚଳିତ ଯେ—ଚୁଡ଼ଙ୍ଗ ଦେବଙ୍କ ଦ୍ୱାରା ଅଷ୍ଟାଦଶରେ ପ୍ରତିଷ୍ଠିତ ଏହି ଗଡ଼ରେ ତାଙ୍କର ଜଣେ ରକ୍ଷିତା-ସ୍ତ୍ରୀ ସତୀ ହୋଇଥିଲେ । ଅଷ୍ଟାଦଶ ସେହି ସତୀ ସ୍ମୃତିସ୍ତମ୍ଭଟି ଏବେ ବି ଲୋକମାନଙ୍କ ଦ୍ୱାରା 'ଚୁଡ଼ଙ୍ଗ ଦାଣ୍ଡଆଣୀ' ନାମରେ ପୂଜା ପାଉଛି । ତା' ଛଡ଼ା ମାଦଳାପାଞ୍ଜିରେ ଉଲ୍ଲିଖିତ 'ଅଙ୍ଗଦେଶ' ଓ 'କାଶୀକ୍ଷେତ୍ର, ପ୍ରତିଷ୍ଠା-ପ୍ରସଙ୍ଗକୁ ଆଧାର କରି ଐତିହାସିକମାନେ ଏହି ଦୁଇଟିକୁ ମଧ୍ୟ ସାରଙ୍ଗ ବା 'ଚୁଡ଼ଙ୍ଗଗଡ଼' ଏବଂ 'କାଶିଆଗଡ଼' ସହ ଚିହ୍ନିତ କରି ଶେଷଟିକୁ ପ୍ରଥମଟିର 'ପରିପୂରକ' ଦୁର୍ଗ ବୋଲି ଅଭିହିତ କରିଛନ୍ତି ।

ଏହି ଦୁଇଟି ଗଡ଼ ଓ ସେତେବେଳର ଚୋଡ଼ଗଙ୍ଗ ଦେବଙ୍କ ରାଜନୀତିକ ସ୍ଥିତିକୁ ଆଖି ଆଗରେ ରଖି ବିଚାର କଲେ ମନେ ହୁଏ ଯେ—ଗଙ୍ଗବଂଶର ସାମ୍ରାଜ୍ୟ ବିସ୍ତାର ପରିପ୍ରେକ୍ଷୀରେ ଏହି ନୂତନ ପ୍ରତିଷ୍ଠିତ ଦୁର୍ଗ ସାରଙ୍ଗଗଡ଼ ବା 'ଚୁଡ଼ଙ୍ଗ କଟକ' ପୂର୍ବତନ 'କଳିଙ୍ଗ ନଗର' ରାଜଧାନୀ ଥିବା ସମୟରେ ହିଁ ଏକାଦଶ—ଦ୍ୱାଦଶ ଶତାବ୍ଦୀରେ ଏକ ବିକଳ୍ପ ରାଜଧାନୀ ରୂପେ କିଛିକାଳ ପାଇଁ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ପ୍ରସିଦ୍ଧି ଲାଭ କରିଥିଲା ଏବଂ ଯଯାତି ନଗରକୁ ନିଜର ରାଜଧାନୀ ସ୍ଥାନାନ୍ତରିତ କରିବାର ବହୁ ପୂର୍ବରୁ, ବିଶେଷତଃ ଅମରାବତୀ କଟକ ସ୍ଥାପନ ଆଗରୁ ଏଇଟି ସ୍ୱଳ୍ପକାଳ ପାଇଁ ହୋଇପାରେ, ଓଡ଼ିଶାର ରାଜଧାନୀ କିମ୍ବା ଗଙ୍ଗବଂଶ ରାଜାଙ୍କ ନିବାସସ୍ଥଳ ରୂପରେ ବ୍ୟବହୃତ ହେବା ସହିତ କାଶିଆଗଡ଼ ଏହାର ଗୋଟିଏ ରକ୍ଷା ଦୁର୍ଗ ଭାବେ ଗଢ଼ି ଉଠିଥିଲା ।

ଏହି ସମସ୍ତ ପ୍ରସଙ୍ଗକୁ ଆଧାର କରି ସମୟାନୁକ୍ରମିକ ତାଲିକା ପ୍ରସ୍ତୁତ କଲେ— 'ପଞ୍ଚକଟକ' ଅନ୍ତର୍ଗତ ଯାଜପୁର, ଚୌଦ୍ୱାର ଓ କଟକ ଅବଶ୍ୟ ପଞ୍ଚକଟକାନ୍ତର୍ଗତ ହେବାର ବହୁ ଆଗରୁ ସୋମବଂଶ ତଥା ଭୌମକର ବଂଶର ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ, ଗୋଟିଏ ଦୁର୍ଗ ବା କେଉଁଠି ରାଜଧାନୀ ରୂପରେ ମୁଣ୍ଡ ଟେକିଥିଲା, କିନ୍ତୁ ଛତିଆ ଓ ସାରଙ୍ଗଗଡ଼କୁ ନିଜେ ଚୋଡ଼ଗଙ୍ଗ ଦେବ ହିଁ ପ୍ରତିଷ୍ଠା କରିଥିଲେ, ଯା' ଫଳରେ ଏକାଦଶ-ଦ୍ୱାଦଶ ଶତାବ୍ଦୀରୁ 'ପଞ୍ଚକଟକ'ର ଐତିହାସିକ ପ୍ରସିଦ୍ଧି ସାବ୍ୟସ୍ତ ହୋଇଥିଲା । ଏହି କ୍ରମ ଓ ରାଜଧାନୀ-ପ୍ରତିଷ୍ଠାର ସମୟକୁ ଧରି ନିମ୍ନମତେ କଟକ—ପଞ୍ଚକର ପ୍ରସିଦ୍ଧି-କାଳାନୁଯାୟୀ ଅଭ୍ୟୁତ୍ଥାନର ତାଲିକା ପ୍ରକାଶ କରାଯାଇ ପାରେ । ଯଥା:—

୧ । ଚୁଡ଼ଙ୍ଗ କଟକ ବା ସାରଙ୍ଗଗଡ଼ କଟକ;

୨ । ଦ୍ୱିତୀୟ ଅମରାବତୀ କଟକ ବା ଛତିଆ କଟକ;

୩। ଅଭିନବ ଯଯାତି ନଗର ବା ଯାଜପୁର କଟକ;
୪। ଯଜନ ନଗର କଟକ ବା ଚୌଦ୍ୱାର କଟକ, ଏବଂ
୫। ଅଭିନବ ବାରାଣସୀ କଟକ ବା କଟକ।

× × × ×

'ପଞ୍ଚକଟକ'ର ବହୁ ପ୍ରସିଦ୍ଧି ସତ୍ତ୍ୱେ ଏବଂ ତତ୍ ମଧ୍ୟ ନିହିତ 'ଅଭିନବ ଯଯାତି ନଗର' ବହୁକାଳଧରି ଅର୍ଥାତ୍ ୧୦୨୬ ଖ୍ରୀ:ରୁ ପ୍ରାୟ ୧୨୧୧ ଖ୍ରୀ: ବା କିଛି ଅଧିକ କାଳ ପ୍ରଥମେ ସୋମବଂଶୀ ଓ ପରେ ଗଙ୍ଗବଂଶୀ ରାଜାମାନଙ୍କ ରାଜଧାନୀ ହୋଇଥିଲେ ବି କେବଳ କଟକ ହିଁ 'କଟକ' ହୋଇ ରହିଯିବା ଏବଂ ଅନ୍ୟ ଚାରିଗୋଟି କଟକର ନାମ ବଦଳି ଯିବା ସହିତ କେତେକର ଐତିହାସିକ ବିବରଣୀ ସମେତ ସ୍ମୃତି ମଧ୍ୟ ବିଲୁପ୍ତ ହୋଇଯିବା ଏକ ବିସ୍ମୟକର ବିଷୟ କେବଳ ନୁହେଁ, ତାହା ମଧ୍ୟ ଏକ ପ୍ରକାରର ଐତିହାସିକ ତଥା ସାଂସ୍କୃତିକ ଅବକ୍ଷୟ କହିବା ବାହୁଲ୍ୟ।

ଏ' ଭଳି ଅବକ୍ଷୟ ମୂଳରେ ଆଉ ଯେତେ ଯାହା ଥାଉନା କାହିଁକି, ରାଜନୀତିକ କାରଣ ବିଶେଷ ଭାବରେ ଦାୟୀ ହୋଇଥାଏ। ମୂଳତଃ ଏ'ଗୁଡ଼ିକ ଥିଲି ଭୌମକର ବଂଶ, ସୋମବଂଶ ଓ ଗଙ୍ଗବଂଶର କୀର୍ତ୍ତି। ତେଣୁ ପରବର୍ତ୍ତୀ ସୂର୍ଯ୍ୟ ଗଜପତି ରାଜବଂଶ ଇଚ୍ଛାକୃତ ଭାବରେ ଏଗୁଡ଼ିକର ସ୍ମୃତିଲୋପ କରି, ନିଜ ପ୍ରତିଷ୍ଠିତ କୀର୍ତ୍ତିକୁ ଲୋକଚକ୍ଷୁରେ ଗୁରୁତ୍ୱ ଦେବାର ପ୍ରତ୍ୟକ୍ଷ ଓ ପରୋକ୍ଷ ଚେଷ୍ଟା-ଚରିତ୍ର କରିଥିବେ। ଯଦି ମୁସଲମ୍ ଇତିହାସ ଓ ଶାରଳା ମହାଭାରତାଦିରେ 'କଟକ' ପ୍ରସଙ୍ଗ ବାରମ୍ବାର ଆସି ନ ଥାନ୍ତା, ତେବେ ପଞ୍ଚ କଟକର ଏହି ବିଂଶ ଶତାବ୍ଦୀରେ କେବଳ 'ମାଦଳାପାଞ୍ଜି' ଓ ଷ୍ଟାର୍ଲିଂ ସାହେବଙ୍କ ୧୮୨୨ ମସିହାର 'ଓଡ଼ିଶା ଇତିହାସ' ଉପରେ ନିର୍ଭର କରି ଚିହ୍ନିତ କରିବା ନିଶ୍ଚିତ ଭାବରେ ବିବାଦ ତଥା ପ୍ରମାଦପୂର୍ଣ୍ଣ ହୋଇଥାଆନ୍ତା। ସୁଖର କଥା, ଆମର ଐତିହାସିକ-ମାନେ ପ୍ରତ୍ନତାତ୍ତ୍ୱିକ ଆଧାରକୁ ଧରି ମଧ୍ୟ 'ପଞ୍ଚ କଟକ'ର ଇତିହାସକୁ କିଛିଟା ଆଲୋକିତ କରି ପାରିଛନ୍ତି।

ଇତିହାସ ସର୍ବଦା ବିଗତର ଦର୍ପଣ ଭାବେ ସତ୍ୟନିଷ୍ଠ ତଥ୍ୟ ଓ ପ୍ରାମାଣିକ ବସ୍ତୁ ଉପରେ ପ୍ରତିଷ୍ଠିତ ହୋଇଥାଏ। ଯେଉଁଠି ତଥ୍ୟ ଓ ବସ୍ତୁ ଯେତେ ପ୍ରଚୁର, ସେଠି ଇତିହାସ ସେତିକି ଉଜ୍ଜ୍ୱଳ ଓ ନିର୍ଭରଶୀଳ। ଆଉ ମଧ୍ୟ ଇତିହାସ ପରମ୍ପରା, କିମ୍ବଦନ୍ତୀ ଗୁଡ଼ିକରୁ ପରୀକ୍ଷା ନିରୀକ୍ଷା କରି ଆପଣେଇ ଥାଏ। ଏହି ଆଧାର ଉପରେ ପଞ୍ଚକଟକ ପ୍ରସଙ୍ଗକୁ ବିଚାର କଲେ ଏହାର ଐତିହାସିକ ଭାଗ ଅପେକ୍ଷା ବହୁ ସ୍ଥଳରେ କିମ୍ବଦନ୍ତୀ ଭାଗଟି ଅଧିକ ବିସ୍ତୃତ ଭଳି ମନେହୁଏ। ଏ' ଭଳି କ୍ଷେତ୍ରରେ ଉଦ୍ଭାବିତ ଯୁକ୍ତି, ଅନୁମାନ, ବ୍ୟବଚ୍ଛେଦ ପ୍ରଭୃତି ସ୍ଥଳବିଶେଷରେ ବିବଦମାନ ହେବା ସହିତ ଭବିଷ୍ୟତର ନବ ନବ ଆବିଷ୍କାର ହେତୁକ ଯେ ପରିବର୍ତ୍ତିତ ନହେବ, ତାହା କହି ହେବ ନାହିଁ। ଓଡ଼ିଶାରେ କେଶରୀ ବଂଶର ଐତିହାସିକ ବିଭ୍ରାନ୍ତି ପରି ଦୃଷ୍ଟାନ୍ତ ଅପ୍ରଚୁର ନୁହେଁ କିମ୍ବା ନକଲି ପ୍ରତ୍ନତାତ୍ତ୍ୱିକ ଆଧାର ପ୍ରସ୍ତୁତକାରୀ କୁକର୍ମକାଣ୍ଡର ନଜିର ମଧ୍ୟ ଦୁଷ୍ପ୍ରାପ୍ୟ ନୁହେଁ। ତେଣୁ

ମତବାଦ, ଯୁକ୍ତି, ଅନୁମାନ ପ୍ରଭୃତି କଦାପି ଭ୍ରାନ୍ତ ନୁହେଁ, ବରଂ ସେ ସବୁ ଆହୁରି ଅଧିକ ଗବେଷଣା ନିମିତ୍ତ ଆଧାର ମାତ୍ର । ଏହି ଦୃଷ୍ଟିରୁ 'ପଞ୍ଚକଟକ' ବୃତ୍ତାନ୍ତ ଅଧିକ ଗବେଷଣାର ଆବଶ୍ୟକତା ଉପସ୍ଥାପିତ କରେ ।

ରାଜନୈତିକ କାରଣବଶତଃ ପଞ୍ଚକଟକ ବୃତ୍ତାନ୍ତ ବିଶେଷ ସ୍ପଷ୍ଟ ହୋଇ ପାରି ନାହିଁ—ଏଥିରେ ଦ୍ୱିମତର କାରଣ କିଛି ଥାଇ ନପାରେ । ଆଜି ଯଯାତି କଟକ ବିରଜା କ୍ଷେତ୍ର ଯାଜପୁର ସ୍ୱନାମରେ ପ୍ରସିଦ୍ଧ, ଯଜନ ନଗର କଟକ ସାମୀପ୍ୟ ହେତୁ ଚୌଦ୍ୱାର ନାମରେ ପରିଚିତ ଏବଂ ଅମରାବତୀ ଓ ସାରଙ୍ଗଗଡ଼ର ବିଶେଷ ଅସ୍ତିତ୍ୱ କିଛି ନାହିଁ ବୋଲି କହିଲେ ଚଳେ । ନା ଇତିହାସରେ ଏହାର ବିସ୍ତୃତ ବିବରଣୀ ରହିଛି, ନା ଓଡ଼ିଶାର ଜନସାଧାରଣ ଏ' ବାବଦରେ ସୁପରିଚିତ ! ବରଂ ପୁରାଣଗ୍ରନ୍ଥର ଅଧିକାଂଶ ପାଠକେ ଉକ୍ତବର୍ଣ୍ଣିତ ପଞ୍ଚକଟକକୁ ମହାଭାରତକାଳୀନ ଚନ୍ଦ୍ରମାନଙ୍କର କଟକ ରୂପେ ଗ୍ରହଣ କରି ଖ୍ରୀଷ୍ଟ ପରବର୍ତ୍ତୀ ଐତିହାସିକ ଯୁଗକୁ ଖାଣ୍ଟି ପୌରାଣିକ 'ଗାଥା' ଓ 'ସ୍ଥାନ' ରୂପରେ ଏକପ୍ରକାର ପୁଣ୍ୟଭୂମିର ଶ୍ରଦ୍ଧା ଅର୍ପଣ କରି ଥାଆନ୍ତି । ଏ' ଭଳି ଭ୍ରମର ଅପସାରଣ ନିମିତ୍ତ ଏହି ପ୍ରସଙ୍ଗର ଇତିହାସଭିତ୍ତିକ ସମାଲୋଚନା ନିଶ୍ଚିତ ଭାବରେ ଯୁଗୋପଯୋଗୀ ।

'ଅଭିନବ ଯଯାତି ନଗର' ଓଡ଼ିଶାର ରାଜଧାନୀ ରୂପରେ ସୋମବଂଶୀ ରାଜାଙ୍କ ଦ୍ୱାରା ପୁନଃ ପ୍ରତିଷ୍ଠିତ ହୋଇଥିଲେ ବି, ଠିକ୍ ତା' ପୂର୍ବରୁ ସେହି ଅଞ୍ଚଳ ଥିଲା ଭୌମକର ରାଜାମାନଙ୍କର 'ଗୁହଦେବ ପାଟକ ଜୟସ୍କନ୍ଧାବାର' । ସେହିଭଳି 'ଯଜନ ନଗର'ର ଭିତ୍ତି ସ୍ଥାପନ କରିଥିଲେ ସୋମବଂଶୀ-ରାଜା ଜନ୍ମେଜୟ, ଯଦିଚ ତାହା ଗଙ୍ଗବଂଶ ରାଜା ତୃତୀୟ ଅନଙ୍ଗଭୀମ ଦେବଙ୍କ ଅମଳରେ କିଛି କାଳ ନିମିତ୍ତ ଓଡ଼ିଶାର ରାଜଧାନୀ ହେବାର ଗୌରବ ଲାଭ କରିଥିଲା । କିନ୍ତୁ ଗଙ୍ଗବଂଶୀ-ରାଜା ଚୋଡ଼ଗଙ୍ଗ ଦେବ ନିଜର ସାମୟିକ ଆବଶ୍ୟକତା ଓ ସୁରକ୍ଷା-ସୁବିଧା ପାଇଁ 'ଚୂଡ଼ଙ୍ଗ କଟକ' ତଥା 'ଦ୍ୱିତୀୟ ଅମରାବତୀ କଟକ' ତାଙ୍କ ଶାସନ କାଳରେ ପ୍ରତିଷ୍ଠା କରିଥିଲେ ବି ୩୭ ବର୍ଷକାଳ 'କଳିଙ୍ଗ ନଗର'ରୁ ସ୍ୱନିର୍ମିତ ନୂତନ କଟକ ଦୁଇଟି ସହ ସମ୍ପର୍କିତ ହୋଇ, ଜୀବନର ଅନ୍ତିମ ୩୦ ବର୍ଷ ପ୍ରାୟ 'ଯଯାତି ନଗର'କୁ ରାଜଧାନୀ ରୂପେ ଗ୍ରହଣ କରିଥିଲେ ଏବଂ ତାଙ୍କ ପରେ ବଂଶଜ ରାଜା ତୃତୀୟ ଅନଙ୍ଗଭୀମ ଦେବ 'ଯଯାତି ନଗର'କୁ ପରିତ୍ୟାଗ କରି ପ୍ରଥମେ କିଛି କାଳ 'ଯଜନ ନଗର'ରେ ଓ ତା'ପରେ ସ୍ଥାୟୀ ଭାବେ 'ଅଭିନବ ବାରାଣସୀ କଟକ' ବା କଟକରେ ଅବସ୍ଥାନ କରି ତାହାକୁ ଓଡ଼ିଶାର ରାଜଧାନୀ କରିଥିଲେ । ଯଦି ବା 'କଟକ' ଥିଲା ମୂଳତଃ ସୋମବଂଶର କୀର୍ତ୍ତି, ଏହା ଅଷ୍ଟମ ଶତାବ୍ଦୀର 'ରକ୍ଷାଦୁର୍ଗ' ।

ପ୍ରଚଳିତ ପ୍ରଥାନୁସାରେ ରାଜାମାନେ ଯାହା ପରିତ୍ୟାଗ କରନ୍ତି, ସେଥିପ୍ରତି ଆଉ ମାୟା, ମମତା ବା ବିଶେଷ ଦୃଷ୍ଟି ରଖି ନଥାନ୍ତି । ତା'ଛଡ଼ା ଅନ୍ୟର କୀର୍ତ୍ତିକୁ ନଷ୍ଟ କରିବା କିମ୍ବା ତା'ର ସଂସ୍କାର ଘଟାଇ ତହିଁରେ ନିଜର ନାମ ଅଙ୍କି ଦେବା—

ଏହାର ଉଦାହରଣ ଇତିହାସରେ ବିରଳ ନୁହେଁ । ତେଣୁ ଏପରି ପ୍ରାମାଣିକ ଗ୍ରନ୍ଥମାନଙ୍କ କାରଣ, ପ୍ରାଚୀନ କୀର୍ତ୍ତିର ବିଲୁପ୍ତି ପନ୍ଥରେ ଅନେକ ଯୁଗ ଚାଲି ଆସିଛି । ଏହି ଦୃଷ୍ଟିରେ ଦେଖିଲେ, ଯାଜପୁର ଓ ଚୌଦ୍ୱାର କଟକର ଗୁରୁତ୍ୱ ହ୍ରାସ ପାଇବା ସହିତ ସେ ଦୁଇଟିର ରାଜକୀୟ ସୁରକ୍ଷା, ଉନ୍ନତି ଆଦି କ୍ରମଶଃ ଦୂରେଇ ଯାଇ କାଳର କଶାଘାତରେ ସେ ଦୁଇଟିର ପ୍ରତ୍ନତାତ୍ତ୍ୱିକ ଅବଶେଷ ମାତ୍ର ରହିଯାଇଛି । ଅନୁରୂପ ଚୁଡ଼ଙ୍ଗ କଟକ ଓ ଅମରାବତୀ କଟକ ଦୁଇଟି ନବଗଠିତ ହେଲେ ମଧ୍ୟ ତା'ର ପ୍ରତିଷ୍ଠାତା ଗଙ୍ଗରାଜଙ୍କ ସମୟରୁ ହିଁ କ୍ରମଶଃ ଗୁରୁତ୍ୱ ହରାଇ ଅବକ୍ଷୟରୁ ଦୁର୍ଭାଗ୍ୟରେ ନିପୀଡ଼ିତ ହୋଇ ସମୟର ଦାରୁଣ ଧକ୍କାରେ ବିଲୁପ୍ତି ପ୍ରାପ୍ତ ହୋଇଛି । ତେଣୁ ଏହି ଚାରିଗୋଟି କଟକର କ୍ରମପରିଣତିକୁ ଦୃଷ୍ଟିରେ ରଖି, ଏଗୁଡ଼ିକର ବିଲୁପ୍ତିକୁ କଳ୍ପନା କରାଯାଇ ପାରେ ।

ପଞ୍ଚକଟକର 'କଟକ' ହୋଇ କିନ୍ତୁ ସ୍ଥାୟୀ ଭାବେ ରହିପାରିଲା 'ଅଭିନବ ବାରଣସୀ କଟକ', ଯାହାଥିଲା ସୋମବଂଶର ଏକ ଅଷ୍ଟମ ଶତାବ୍ଦୀର କୀର୍ତ୍ତି । କିନ୍ତୁ ଏହି କଟକ ଏବଂ ସନ୍ନିକଟ କାଠଯୋଡ଼ି ନଦୀବନ୍ଧର ସ୍ରଷ୍ଟା ନୃପକେଶରୀ ବା ମର୍କତ କେଶରୀ ବା ସୋମବଂଶର ମହାନ ରାଜା ପ୍ରଥମ ଶିବକର ଦେବ ଇତିହାସରେ ଏପରି ଅସ୍ପଷ୍ଟ କେଉଁଥି ସକାଶେ ? ଯୁକ୍ତି ଓ ଅନୁମାନ ଛଡ଼ା କେଉଁ ପ୍ରତ୍ନତାତ୍ତ୍ୱିକ ଆଧାର ଉପରେ ଦେଖାଇ ହେବ ଯେ କିମ୍ବଦନ୍ତୀର ମର୍କତ କେଶରୀ ଓ ନୃପ କେଶରୀ ଦୁଇଜଣ କେଶରୀ ବଂଶର ରାଜା ନୁହନ୍ତି, ସୋମବଂଶୀ ରାଜା ପ୍ରଥମ ଶିବକର ଦେବଙ୍କର ସେ ଦୁଇଟି ଉପନାମ ମାତ୍ର ? ଏପରି ବିଭ୍ରାନ୍ତିର କାରଣ ସମ୍ବନ୍ଧରେ ତ ଇତିହାସ ଏବେ ମୂଖର, କିନ୍ତୁ କିମ୍ବଦନ୍ତୀରେ ବଞ୍ଚିଥିବା ପୁରୁଷ, ଐତିହାସିକ ପୁରୁଷ ହେବାରେ ଯେଉଁ ତଥ୍ୟଭିତ୍ତିକ ଦାରିଦ୍ର୍ୟ, ତାହା ଯେ ଗଙ୍ଗବଂଶ-ସୃଷ୍ଟ---ଏହା ଧାରଣା କରିବା ପନ୍ଥରେ ସେତେବେଳକାର ଘଟଣା-ପ୍ରବାହର ଧାରାବାହିକତା ବହୁ ପରିମାଣରେ ଦାୟୀ । ହୁଏତ ଗଙ୍ଗବଂଶୀ ରାଜା ଜାଣିଶୁଣି ୧୨୩୦ ଖ୍ରୀ:ରେ ଯେତେବେଳେ ବାରବାଟୀ ଦୁର୍ଗ ନିର୍ମାଣ ପୂର୍ବକ କଟକକୁ ଓଡ଼ିଶାର ରାଜଧାନୀ ରୂପେ ମାନ୍ୟତା ଦିଆଇଲେ, ସେହି ସମୟରୁ ସେ ବଡ଼ାବାସୀ ଦୁର୍ଗ ପ୍ରତି ଆଦୌ ଦୃଷ୍ଟି ଦେଇ ନାହାନ୍ତି ଏବଂ ନିଜ ନାମକୁ ଏକ ସ୍ରଷ୍ଟାଭାବେ ଏତେ ଅଧିକ ପ୍ରତିଭାତ କରିଛନ୍ତି ଯେ—ମର୍କତକେଶରୀ ଓ ନୃପକେଶରୀ ନାମ ବା ଉପନାମ ଦୁଇଟି କେବଳ ଲୋକ ସ୍ମୃତିରେ କିମ୍ବଦନ୍ତୀ ହୋଇ ରହିଯାଇଛି ସିନା, ସେ ନାମ ସମ୍ବନ୍ଧିତ କୀର୍ତ୍ତିର ଐତିହାସିକ ଦଲିଲ୍ ଆଜି ରହି ପାରି ନାହିଁ ।

ସେହି ୧୨୩୦ ଖ୍ରୀ:ରୁ ଇଂରେଜ ଅମଳ ଯାଏଁ 'କଟକ' ଓଡ଼ିଶାର ରାଜଧାନୀ ହୋଇ ରହିଥିଲା । ତା' ମଧ୍ୟରେ ଗଙ୍ଗବଂଶର ଶେଷ ରାଜା ପଞ୍ଚମ ଭାନୁଦେବଙ୍କ ମନ୍ତ୍ରୀତ୍ୱ କରୁଥିବା ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ, ସହସା ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣା କରି ସିଂହାସନାରୂଢ଼ ହୋଇଥିଲେ ୧୪୩୫ ଖ୍ରୀ: ରେ । ତାଙ୍କର ୧୪୬୮ ଖ୍ରୀ: ଅବଧି ରାଜତ୍ୱ ମଧ୍ୟରେ ସେ କେବଳ ବାରବାଟୀ ଦୁର୍ଗର ମରାମତି କରି ନଥିଲେ, ସୁରକ୍ଷା ବଳକୁ ଅଧିକ ଶକ୍ତିଶାଳୀ କରିବା ନିମିତ୍ତ ପରିଖା ବା ଗଡ଼ଖାଇ ସହିତ ପ୍ରାଚୀର ମଧ୍ୟ ନିର୍ମାଣ କରାଇଥିଲେ । ସେଥିପାଇଁ ବାରବାଟୀର ଐତିହାସିକ ମହତ୍ତ୍ୱ ବୃଦ୍ଧି ପାଇ,

ସେଥି ସହିତ କପିଳେନ୍ଦ୍ରଙ୍କ ନାମ ମଧ୍ୟ ଗ୍ରଥିତ ହୋଇଥିଲା ଚିରସ୍ଥିତ ଭାବରେ । ଫଳତଃ ଲୋକସ୍ମୃତିରୁ ଅନଙ୍ଗଭୀମ ଦେବ ମଧ୍ୟ ଅପସୃଷ୍ଟ ହୋଇ ପଡ଼ିଥିବା ସ୍ୱାଭାବିକ । କିନ୍ତୁ ଏ' ଦୁଇ ରାଜାଙ୍କ ମଧ୍ୟରେ ସମୟର ବ୍ୟବଧାନ ରହିଥିଲା ପ୍ରାୟ ଦୁଇଶହ ବର୍ଷରୁ ସାମାନ୍ୟ ଅଧିକ, ସେଥିପାଇଁ ଗଙ୍ଗବଂଶୀ ରାଜା ସୋମବଂଶୀ ରାଜାଙ୍କ ନାମକୁ ବିଲୁପ୍ତ କରିବାରେ କିଛିଟା ସାଫଲ୍ୟ ଅର୍ଜନ କରିପାରି ଥିଲେ ବି, ସୂର୍ଯ୍ୟବଂଶୀ ରାଜା ସମୟର ସ୍ୱଳ୍ପ ବ୍ୟବଧାନ ନିମିତ୍ତ ସେ'ଭଳି କୃତକାର୍ଯ୍ୟ ହୋଇପାରି ନାହାନ୍ତି ଏବଂ 'ଅଭିନବ ବାରାଣସୀ କଟକ' ଆପଣାର ଦୀର୍ଘ ନାମକୁ ହରାଉ ପଛେ, ମୂଳ 'କଟକ' ହୋଇ ବେଶ୍ ପ୍ରତିଷ୍ଠିତ ରୂପରେ ଏ ଯାବତ୍ ନାମାନ୍ତର ଯାତାପଥରୁ ବିଚ୍ୟୁତ ହୋଇ ନାହିଁ ।

କଟକର ଏପରି ଗୁରୁତ୍ୱ ଦୃଷ୍ଟିରୁ ଅତୀତରେ 'କଟକ' କହିଲେ ଓଡ଼ିଶା ଭୂମିକୁ ବୁଝାଉଥିଲା, ଯେପରି ଭୋଇବଂଶର ରାଜୁତି କାଳରେ ଶ୍ରୀକ୍ଷେତ୍ର ପୁରୀ ବା ଜଗନ୍ନାଥ କହିଲେ ବୁଝାଉଥିଲା ସମଗ୍ର ଓଡ଼ିଶାକୁ । ଏପରିକି ଇଂରେଜ ଅମଳରେ ବି ଓଡ଼ିଶାର ନାମ 'କଟକ ଡ଼ିଭିଜନ' ଭାବରେ ପରିଚିତ ଥିଲା ଏବଂ ଇଂରେଜମାନେ ମରହଟ୍ଟା ଅଧ୍ୟୁଷିତ ବାରବାଟୀ ଦୁର୍ଗକୁ ଦଖଲ କରି ଓଡ଼ିଶାକୁ ସମ୍ପୂର୍ଣ୍ଣ ବିଜୟ କରିବାର ଦାବି ବହନ କରିଥିଲେ ୧୮୦୩ ମସିହା ଅକ୍ଟୋବର ମାସରେ ।

ଏହିଭଳି ଉତ୍‌ଥାନ-ପତନ, ଉନ୍ନତି ଓ ଉତ୍ତରଣ ମଧ୍ୟ ଦେଇ ଦଶମ ଶତାବ୍ଦୀରେ ସୃଷ୍ଟ 'ଉଡ୍ରଖଣ୍ଡ' ଆଜି ହୋଇଛି 'ଓଡ଼ିଶା' ଏବଂ ଏହାର ରାଜଧାନୀ 'ଆରାମ କଟକ'ରୁ ଆରମ୍ଭ ହୋଇ, 'ବିନିତାପୁର' ଓ 'ଯଯାତି ନଗର' ବାଟ ଦେଇ, 'ଅଭିନବ ଯଯାତି ନଗର'ରେ ସ୍ଥାୟୀ ହେବାପରେ, 'ପଞ୍ଚକଟକ'ର ଏହି ପହିଲି କଟକର ସୀମା ଡେଇଁ ଓ ଏଠି ସେଠି କିଛି କିଛି ସମୟ ଅଟକି, ଶେଷରେ ଶେଷାବଧି ଦୃଢ଼ପ୍ରତିଷ୍ଠ ହୋଇଥିଲା 'ଅଭିନବ ବାରାଣସୀ କଟକ' ମଧ୍ୟରେ, ଯାହା ଆଜିର ତଥାକଥିତ 'ହଜାର ବର୍ଷ'ର କଟକ ।



# ବାରଣାସୀ କଟକ
# ଓ
# ପୁରୁଷୋତ୍ତମ କଟକ

**ଡଃ. ଯଶୋବନ୍ତ ନାରାୟଣ ଧର**

ଓଡ଼ିଶାର ଇତିହାସରେ କଟକ ଓ ପୁରୀର ସ୍ଥାନ ବିଶେଷ ଉଲ୍ଲେଖଯୋଗ୍ୟ । ଏଇ ଦୁଇ ନଗରୀର ପ୍ରାଚୀନ ନାମ ବାରଣାସୀ କଟକ ଓ ପୁରୁଷୋତ୍ତମ କଟକର ଉଲ୍ଲେଖ ବାରମ୍ବାର ପ୍ରାଚୀନ ଓଡ଼ିଆ ଅଭିଲେଖରେ ଉତ୍କୀର୍ଣ୍ଣ ହୋଇଥିବାର ଦେଖିବାକୁ ମିଳେ । ବାରଣାସୀ କଟକ ବା ଅଧୁନା ପ୍ରସିଦ୍ଧ କଟକ ନଗର ନିଜର ପ୍ରତିଷ୍ଠା ସମୟଠାରୁ (ଅର୍ଥାତ୍ ୧୦ମ ଶତାବ୍ଦୀରୁ) ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରି ଆସିଥିବାବେଳେ ପୁରୁଷୋତ୍ତମ କଟକ ବା ପୁରୀକ୍ଷେତ୍ର ଏହାର ବହୁ ପୂର୍ବରୁ ଭାରତ ତଥା ଓଡ଼ିଶାର ଧାର୍ମିକ ଆଧ୍ୟାତ୍ମିକ ଜଗତରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରି ଆସିଛି । ଆଦିଶଙ୍କରଙ୍କ ଆବିର୍ଭାବ ୭୮୮ ଖ୍ରୀ: ଓ ତିରୋଧାନ ୮୨୦ ଖ୍ରୀ:ରେ ହୋଇଥିଲା । ସେ ଏ ପୁରୁଷୋତ୍ତମ କଟକ ବା ପୁରୀଠାରେ ନିଜର ଏକ ପୀଠ ପ୍ରତିଷ୍ଠା କରି ନିଜର ପ୍ରଧାନ ଶିଷ୍ୟ ପଦ୍ମପାଦାଚାର୍ଯ୍ୟଙ୍କୁ ଏହାର ଦାୟିତ୍ୱ ପ୍ରଦାନ କରିବା ସମୟକୁ ପୁରୀ ଶ୍ରୀଜଗନ୍ନାଥଙ୍କ ପୀଠସ୍ଥଳୀ ରୂପେ ସାରା ଭାରତରେ ପ୍ରସିଦ୍ଧି ଲାଭ କରିସାରିଥିବା ନିଶ୍ଚିତ । ଅଧିକନ୍ତୁ ସର୍ବଧର୍ମ ସମନ୍ୱୟର ପୀଠ ଶ୍ରୀଜଗନ୍ନାଥ ପୁରୀଠାରେ ଶୈବଧର୍ମ ଧ୍ୱଜାଧାରୀ ଆଦିଶଙ୍କରଙ୍କ ପୀଠ ସ୍ଥାପନା ସେ ସମୟର ଯେଉଁ ସାଂସ୍କୃତିକ ଧାର୍ମିକ ଆନ୍ଦୋଳନକୁ ସୂଚିତ କରିଥାଏ ତା'ର ପରିଣତି, "ବାରଣାସୀ କଟକ" ସ୍ଥାନ ନାମକରଣରେ ପ୍ରତିଫଳିତ ।

ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଅନନ୍ତ ବର୍ମ୍ମଣ ଚୋଡ଼ଗଙ୍ଗଦେବଙ୍କ ସମୟରୁ କଟକ ନଗରର ଇତିହାସ ଉଣା ଅଧିକେ ସ୍ପଷ୍ଟ ଭାବରେ ମିଳିଥାଏ । ଚୋଡ଼ଗଙ୍ଗଦେବଙ୍କ ଓଡ଼ିଶା ଅଧିକାର ସମୟ ୧୧୧୨ ଖ୍ରୀଷ୍ଟାବ୍ଦ ବୋଲି ଧାର୍ଯ୍ୟ କରାଯାଇଛି ଏବଂ ଏହା ପୂର୍ବରୁ ଚୋଡ଼ଗଙ୍ଗଦେବ ନିଜକୁ ନିଜର ଅଭିଲେଖମାନଙ୍କରେ ପରମ ମାହେଶ୍ୱର ବୋଲି ଅଭିହିତ କରିଥିବା ବେଳେ କଳିଙ୍ଗ ଅଧିକାର ପରେ ନିଜକୁ ଉଭୟ ପରମ-ମାହେଶ୍ୱର ଓ ପରମ-ବୈଷ୍ଣବ ବୋଲି ଉଲ୍ଲେଖ କରିଛନ୍ତି । ଚୋଡ଼ଗଙ୍ଗଦେବ ୧୧୩୫ ଖ୍ରୀ:ରେ ବାରଣାସୀ କଟକକୁ ନିଜର ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ।

ଏହି ସମୟର କେତେକ ଶିଳାଲେଖ ସମ୍ପ୍ରତି ଶ୍ରୀମନ୍ଦିର ପ୍ରବେଶଦ୍ୱାର ନୃସିଂହ ମନ୍ଦିରରୁ ଚୂନ ଛଡ଼ାହେବା ପରେ ମିଳିଛି । ଅତଏବ ଉଭୟ ପୁରୀ ଓ କଟକର ତଥ୍ୟ ପ୍ରମାଣ ସମର୍ଥିତ ଇତିହାସ ପ୍ରାୟ ଏକ ସମୟରୁ ମିଳିଥାଏ ବୋଲି ସ୍ୱୀକାର କରାଯାଇପାରେ । ପ୍ରାଚୀନ କାଳରୁ ଅଦ୍ୟାବଧି ଏହି ଦୁଇଟି ସ୍ଥାନରୁ ଗୋଟିଏ ରାଜନୈତିକ ଓଡ଼ିଶାର ପ୍ରାଣକେନ୍ଦ୍ର ରୂପେ ପ୍ରତିଷ୍ଠିତ ରହି ଆସିଥିବାବେଳେ ଅନ୍ୟଟି ଆଧ୍ୟାତ୍ମିକ ଓଡ଼ିଶାର ନାଭିକେନ୍ଦ୍ର ରୂପେ ସମ୍ମାନିତ । ପ୍ରାଚୀନ କାଳରେ ରାଜଶକ୍ତି ଧର୍ମନିର୍ଭର ରହି ଆସିଥିବାରୁ ଏ କ୍ଷେତ୍ରରେ ଦୁଇଟି ସ୍ଥାନରେ ପ୍ରତିଷ୍ଠିତ ପ୍ରଶାସନିକ ଓ ଆଧ୍ୟାତ୍ମିକ ଶକ୍ତି ପରସ୍ପର ସହିତ ସମ୍ପୃକ୍ତ ରହି ଆସିଥିଲେ ।

ପ୍ରାୟ ୯୦୦ ବର୍ଷରୁ ଊର୍ଦ୍ଧ୍ୱ କାଳ ଓଡ଼ିଶାର ରାଜଧାନୀ ତଥା ମୁଖ୍ୟ ନଗର ଭାବରେ ସୁନାମ ଅର୍ଜନ କରିଥିବା ଇତିହାସର "ଅଭିନବ ବାରଣାସୀ କଟକ" ବା ଆଜିର କଟକ ନଗରର ଇତିହାସ ସଙ୍କଳନରେ ସବୁଠୁ ବଡ଼ ଦୁର୍ବଳତା ହେଲା ଯେ, କଟକର ପ୍ରାଚୀନତା ସମ୍ପର୍କରେ କୌଣସି ଶିଳାଲେଖ ବା ତାମ୍ରଲେଖ ଏପର୍ଯ୍ୟନ୍ତ କଟକରୁ ଉଦ୍ଧାର କରାଯାଇ ପାରିନାହିଁ । ବାରବାଟୀ ଦୁର୍ଗର ଭଗ୍ନାବଶେଷ ମଧ୍ୟରୁ ବି କୌଣସି ଲିପିଗତ ପ୍ରମାଣ ସଂଗ୍ରହ କରାଯାଇ ପାରିନାହିଁ । ତେବେ କଟକରେ ନିଜର ରାଜଧାନୀ ପ୍ରତିଷ୍ଠା କରିଥିବା ରାଜାମାନଙ୍କର ବହୁ ଶିଳାଲେଖ ପୁରୀରୁ ମିଳିଥାଏ । ଶ୍ରୀମନ୍ଦିରର ଜୟବିଜୟ ଦ୍ୱାର ପାର୍ଶ୍ୱରେ କେତେକ ଶିଳାଲେଖ ବିଷୟରେ ଅନେକ ଜାଣନ୍ତି । ଏହି ଶିଳାଲେଖଗୁଡ଼ିକ ଓଡ଼ିଶାର ସାଂସ୍କୃତିକ ଇତିହାସ ଦୃଷ୍ଟିରୁ ବିଶେଷ ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୁଏ ।

ଅଭିନବ ବାରଣାସୀ କଟକ ଓ ପୁରୁଷୋତ୍ତମ କଟକକୁ ସମ୍ପୃକ୍ତ କରିଥିବା ପ୍ରଥମ ଶିଳାଲେଖ ହେଉଛି ଗଙ୍ଗବଂଶୀ ରାଜା ୨ୟ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ପ୍ରଦତ୍ତ ନଗରୀ ଗ୍ରାମରୁ ପ୍ରାପ୍ତ ତାମ୍ରଲେଖ । ଏହି ତାମ୍ରଲେଖ ୧୯୪୯ ଖ୍ରୀରେ ଆବିଷ୍କୃତ ହୋଇ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଦ୍ୱାରା ପଠିତ ହୋଇଥିଲା । ଏହି ତମ୍ବାପଟାର ସପ୍ତମ ଦାନ ପ୍ରସଙ୍ଗରେ ଲେଖାଯାଇଛି ଯେ, ଅଭିନବ ବାରଣାସୀଠାରେ ଭଗବତ ଶ୍ରୀ ପୁରୁଷୋତ୍ତମଙ୍କ ମନ୍ଦିର ନିକଟରେ ଥିବା କୁଦଣ୍ଡା ବିଷୟର ବଳାସପୁର ଗ୍ରାମ ମକର ଅମାବାସ୍ୟା ରବିବାର ଦିନ ବ୍ରାହ୍ମଣମାନଙ୍କୁ ଦିଆଗଲା । ଏହି ଦାନପତ୍ର ଘୋଷିତ ହେବାର ତାରିଖ ୧୨୩୧ ଖ୍ରୀଷ୍ଟାବ୍ଦ ଜାନୁଆରୀ ୫ ତାରିଖ ବୋଲି ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଧାର୍ଯ୍ୟ କରିଛନ୍ତି । ଏହା ପୂର୍ବରୁ ନଗରୀ ତମ୍ବାପଟାର ୫ମ ଦାନ ପ୍ରସଙ୍ଗଟି ଏହି ପୁରୁଷୋତ୍ତମ ଦେବଙ୍କ ପ୍ରତିଷ୍ଠା ସମୟର । ତାହା ୧୨୩୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ଦିଆଯାଇଛି । ଅତଏବ ପୁରୁଷୋତ୍ତମ କଟକ ବା ପୁରୀ କ୍ଷେତ୍ରରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ ମନ୍ଦିର ଅନୁକରଣରେ ଅନଙ୍ଗଭୀମଦେବ ୧୨୩୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ କଟକରେ ଏକ ଶ୍ରୀପୁରୁଷୋତ୍ତମ ମନ୍ଦିର ପ୍ରତିଷ୍ଠା କରିଥିଲେ ବୋଲି ଜଣାଯାଏ । ପରବର୍ତ୍ତୀ କାଳରେ ଏହି ପରମ୍ପରାର ଅନୁସରଣ କରି ପ୍ରାୟ ସବୁ ଦେଶୀୟ ରାଜ୍ୟର ରାଜଧାନୀରେ ଶ୍ରୀପୁରୁଷୋତ୍ତମ

ଆଦ୍ଧ ଚତୁର୍ଭୁଜ ମୂର୍ତ୍ତି ସ୍ଥାପିତ ହୋଇଥିବାର ଜଣାଯାଏ । ମାତ୍ର ଏହି ପରମ୍ପରାର ଶୁଭାରମ୍ଭ ହୋଇଥିବା ସ୍ମରଣୀୟ କୀର୍ତ୍ତି କଟକଠାରେ ଆଉ ନାହିଁ । ଏହା ୧୩୬୦-୬୧ ଖ୍ରୀଷ୍ଟାବ୍ଦରେ ଫିରୋଜଶାହ ତୋଗଲକଙ୍କ ତଥାକଥିତ ଯାଜନଗର (କଟକ) ଆକ୍ରମଣ ଅଭିଯାନ ସମୟରେ ଧ୍ୱଂସ ପାଇଯାଇଛି । ତେବେ ଏଠାରେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି ଯେ, ବାରଣାସୀ କଟକ ଓ ପୁରୁଷୋତ୍ତମ କଟକ ମଧ୍ୟରେ ସମ୍ପର୍କର ଆଦ୍ୟସୂତ୍ର ଶ୍ରୀଜଗନ୍ନାଥଙ୍କ କୀର୍ତ୍ତିକୁ ହିଁ ବନାଯାଇଥିଲା ।

ଏହାର ପରବର୍ତ୍ତୀ କାଳରେ ସୂର୍ଯ୍ୟବଂଶ ଓ ଭୋଇବଂଶର ରାଜତ୍ୱ କାଳରେ ଏହି ସମ୍ପର୍କ ଦୃଢ଼ରୁ ଦୃଢ଼ତର ହୋଇଥିଲା । ଏହି ସମୟରେ ବହୁ ରାଜାଦେଶ ପୁରୁଷୋତ୍ତମ କଟକ ବା ପୁରୀରୁ ଘୋଷିତ ହୋଇଥିବାର ଦେଖିବାକୁ ମିଳେ । କଟକରୁ ଓଡ଼ିଶାର ରାଜଧାନୀ ସ୍ଥାନାନ୍ତରିତ ହେବା ପର୍ଯ୍ୟନ୍ତ ଏହାଥିଲା ଓଡ଼ିଶାର ରାଜନୈତିକ ରାଜଧାନୀ ମାତ୍ର ପୁରୀ ଆଧ୍ୟାତ୍ମିକ ଓ ଧାର୍ମିକ ରାଜଧାନୀ ରୂପେ ସ୍ୱୀକୃତି ଲାଭ କରିଥିଲା ।

ସୂର୍ଯ୍ୟବଂଶ ରାଜା ପୁରୁଷୋତ୍ତମ ଦେବଙ୍କ ସମୟରୁ ଶ୍ରୀମନ୍ଦିର ଓ ଶ୍ରୀମନ୍ଦିରର ସେବାୟତମାନଙ୍କର ପ୍ରଭାବ ଓଡ଼ିଶାର ପ୍ରଶାସନ ଓ ରାଜନୀତି ଉପରେ ଏତେ ବେଶି ଥିଲା ଯେ ସେ ସମୟର ଘଟଣାବଳୀ ଅନୁଧ୍ୟାନ କଲେ ରାଜଧାନୀ ପୁରୁଷୋତ୍ତମ କଟକ ବା ପୁରୀଠାରେ ଥିଲା ବୋଲି ଭ୍ରମଧାରଣା ଜାତ ହୁଏ । ଏହା ପରେ ପରେ ବାରମ୍ବାର ଓଡ଼ିଶାର ରାଜାଭିଷେକ ଶ୍ରୀଜଗନ୍ନାଥଙ୍କ ଆଜ୍ଞାନୁସାରେ ହୋଇଥିବାର କିମ୍ବଦନ୍ତୀ ପ୍ରଚଳିତ ରହିଛି । ସମ୍ଭବତଃ ଏହି ଦୃଷ୍ଟିରୁ ପୁରୀଠାରେ ମଧ୍ୟ ଏକ ଶ୍ରୀନଅର ବା ରାଜପ୍ରାସାଦ ନିର୍ମିତ ହୋଇଥିଲା । ବର୍ତ୍ତମାନର ଶ୍ରୀନଅର ପୂର୍ବରୁ ନିର୍ମିତ ହୋଇଥିବା ପୁରୁଣା ଶ୍ରୀନଅର ପୁରୀର ବାଲିସାହିଠାରେ ରହିଥିଲା । ଖୋର୍ଦ୍ଧା ରାଜାମାନଙ୍କର ଅଭିଷେକ ସାଧାରଣତଃ ଏହି ପୁରୁଣା ଶ୍ରୀନଅରରେ ହୋଇଥାଏ ।

କଟକ ନଗର ପ୍ରତିଷ୍ଠା ହେବାଠାରୁ ଅର୍ଥାତ୍ ୧୦ମ ଶତାବ୍ଦୀର ଶେଷ ଭାଗରୁ ଷୋଡ଼ଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ (ଓଡ଼ିଶାର ସ୍ୱାଧୀନତା ୧୫୬୮ ଖ୍ରୀ:ରେ ଅପହୃତ ହୋଇଗଲା) ଶ୍ରୀଜଗନ୍ନାଥଙ୍କ ସେବକ ଓଡ଼ିଶାର ରାଜାମାନଙ୍କ ପାଇଁ ଉଭୟ ଅଭିନବ ବାରଣାସୀ କଟକ ଓ ପୁରୁଷୋତ୍ତମ କଟକ ଏକ ସୁଖମୟ ନିବାସ ସ୍ଥଳ ମାତ୍ର । ପରବର୍ତ୍ତୀ କାଳରେ ଖୋର୍ଦ୍ଧା ରାଜବଂଶ ବା ପୁରୀ ରାଜମାନଙ୍କର କଟକ ରହଣିର ଅନୁଭୂତି ଥିଲା, ଦୁଃଖ ନିର୍ଯ୍ୟାତନାଭରା । କଟକର ବାରବାଟୀ ଦୁର୍ଗ ସମେତ ଭିନ୍ନ ସ୍ଥାନରେ ଓଡ଼ିଶାର ରାଜପୁରୁଷ ଓ ରାଜାନୁଗତ କର୍ମଚାରୀମାନେ ବନ୍ଦୀ ଜୀବନଯାପନ କରିଥିଲେ । ଖୋର୍ଦ୍ଧା ରାଜବଂଶର ବା ପୁରୀ ରାଜାମାନଙ୍କ ମଧ୍ୟରୁ ଯେଉଁ କେତେକଙ୍କ ନିର୍ଯ୍ୟାତନାଭରା ସ୍ମୃତି ପୁରୀ ଓ କଟକ ଉଭୟ ସହର ସହିତ ଜଡ଼ିତ ରହିଛି ତାହା ଏଠାରେ ଉଲ୍ଲେଖ କରାଯାଉଛି । ଏମାନଙ୍କ ମଧ୍ୟରୁ ସବୁଠାରୁ ସଂଘର୍ଷମୟ କିନ୍ତୁ କରୁଣ ଅନୁଭୂତି ଥିଲା ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କର ।

ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବ ୧୭୨୭ ଖ୍ରୀଷ୍ଟାବ୍ଦରୁ ୧୭୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଖୋରଧାର ରାଜସିଂହାସନରେ ଆସୀନ ଥିଲେ । ସେ ରାଜସିଂହାସନ ଆରୋହଣ କରିବା ବେଳକୁ କଟକରେ ମୋଗଲ ସୁବାଦାର ଥିଲେ ମୁର୍ଶିଦ କୁଲି ଜାଫର୍ ଖାଁ (ପ୍ରଥମ) । ସେ ଜଣେ ଉଦାରଚେତା ବ୍ୟକ୍ତି ଥିଲେ । ମାତ୍ର ଦୁଇମାସ ପରେ ସୁଜାଉଦ୍ଦିନ ମହମ୍ମଦ ଖାଁ ଓଡ଼ିଶାର ସୁବାଦାର ଭାବେ କଟକଠାରେ ଅଧିଷ୍ଠିତ ହେଲେ । ଏହି ସୁବାଦାରଙ୍କ ରକ୍ଷିତା ପତ୍ନୀର ପୁତ୍ର ମହମ୍ମଦ ତକି ଖାଁ କଟକରେ ନାଏବ ନାଜମ୍ ଭାବରେ ନିଯୁକ୍ତି ପାଇଥିଲେ । ତକି ଖାଁଙ୍କ ନେତୃତ୍ୱରେ ଖୋରଧା ରାଜ୍ୟର ବିଭିନ୍ନ ଗଡ଼ ଉପରେ ବାରମ୍ବାର ଆକ୍ରମଣ ହୋଇଥିଲା । ରଥିପୁରଗଡ଼ ଆକ୍ରମଣ କରି ସେଠାରେ ଥିବା ରାମଚନ୍ଦ୍ରଦେବଙ୍କୁ ତକି ଖାଁ ବନ୍ଦୀ କରି କଟକ ଆଣି ଥିଲେ ଏବଂ କଟକର ବାରବାଟୀ ଦୁର୍ଗ ମଧ୍ୟରେ ବନ୍ଦୀ କରି ରଖିଥିଲେ । ୧୭୩୨ ଖ୍ରୀ: ମେ ମାସ ୨୩ ତାରିଖରୁ ରାମଚନ୍ଦ୍ରଦେବଙ୍କର ବନ୍ଦୀଜୀବନ ଆରମ୍ଭ ହୋଇଥିଲା । ଏ ସମ୍ପର୍କରେ "ଖୁର୍ଦ୍ଧା ଇତିହାସ"ର ପ୍ରଣେତା ଗବେଷକ ସ୍ୱର୍ଗତ କେଦାରନାଥ ମହାପାତ୍ର କେତେକ ତଥ୍ୟ ପ୍ରକାଶ କରିଛନ୍ତି । ମାଦଳାପାଞ୍ଜି ଅନୁସାରେ ରାମଚନ୍ଦ୍ରଦେବ କଟକରେ ପ୍ରାୟ ଛ'ମାସ ବନ୍ଦୀ ଥିଲେ । ମାତ୍ର ମତାନ୍ତରେ ସେ କଟକରେ ୧୩ ମାସ ୧୫ ଦିନ ବନ୍ଦୀ ଥିଲେ । ଏହି ସମୟ ମଧ୍ୟରେ ଗଜପତି ରାମଚନ୍ଦ୍ରଦେବ ବାରବାଟୀ ଦୁର୍ଗରେ ରହୁଥିବା ମୁସଲମାନ ରାଜକନ୍ୟାଙ୍କ ପ୍ରଣୟ ପ୍ରାର୍ଥୀ ହୋଇ ମୁସଲମାନ ଧର୍ମ ଗ୍ରହଣ କରି ହାପିଜ୍ କାଦର ନାମରେ ନାମିତ ହୋଇଥିଲେ ବୋଲି କୁହାଯାଏ । ମାତ୍ର ଏ ସମ୍ପର୍କରେ ପ୍ରାମାଣିକ ତଥ୍ୟର ଅଭାବ ରହିଛି ।

ଖୋର୍ଦ୍ଧାର ରାଜଗୁରୁ ପରମଲକ୍ଷ୍ମୀ ମହାପାତ୍ର ଯେକି ସଂସ୍କୃତ, ଆରବୀ ଓ ଫାରସୀ ଭାଷାରେ ଜଣେ ସୁପଣ୍ଡିତ ଥିଲେ । ସେ ସଂସ୍କୃତ ଭଟ୍ଟୀ କାବ୍ୟର ଆରବୀ ଅନୁବାଦ ତକି ଖାଁକୁ କଟକଠାରେ ଶୁଣାଇ ତା'ର ପ୍ରତିଦାନରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କୁ ମୁକ୍ତ କରି ନେଇଥିଲେ । ମାତ୍ର ମୁସଲମାନ ଧର୍ମ ଗ୍ରହଣ କରିଥିବା ଅପବାଦ ରହିଥିବାରୁ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବ ରକ୍ଷଣଶୀଳ ପଣ୍ଡିତ ଓ ଜନସାଧାରଣଙ୍କ ସମର୍ଥନ ପାଇ ନଥିଲେ ।

ରାମଚନ୍ଦ୍ରଦେବ ବନ୍ଦୀ ଥିଲାବେଳେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ବହୁ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ । ଯବନ ଆକ୍ରମଣ ଭୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ବାଣପୁର ନିଆଯାଇଥିଲା । ସେଠାରୁ ଚିକିଲି ନିଆଯାଇ ସେଠାରେ ମଧ୍ୟ କିଛିଦିନ ରଖାଯାଇଥିଲା । ସେଠାରୁ ଅଣାଯାଇ ୧୭୩୩ ଖ୍ରୀଷ୍ଟାବ୍ଦ ଜୁଲାଇ ୨ ତାରିଖରେ ଗୁଣ୍ଡିଚା-ଯାତ୍ରା ସମ୍ପନ୍ନ କରାଯାଇଥିଲା । ମାତ୍ର ଏହା ପରେ ପୁଣିଥରେ ବିଗ୍ରହମାନଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା ।

ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବ ମୋଗଲମାନଙ୍କ ଦ୍ୱାରା ବନ୍ଦୀ ହେବା ଏବଂ ବନ୍ଦୀ ଜୀବନରୁ ମୁକ୍ତହେବା ଭିତରେ ସାଧାରଣ ହିନ୍ଦୁ ଜନତା ଓ ପଣ୍ଡିତମାନଙ୍କ ସମର୍ଥନ ହରାଇଥିଲେ । ଯବନ-କନ୍ୟା ପ୍ରଣୟ ପ୍ରାର୍ଥୀ ହୋଇ ପଡ଼ିବାରୁ ସହାନୁଭୂତି ମଧ୍ୟ

ସେ ପାଇ ନଥିଲେ । ମାତ୍ର ହତାଶା, ଗ୍ଲାନି ଓ ଯାଯାବର ଜୀବନ ଯାପନର ବ୍ୟତିବ୍ୟସ୍ତତା ମଧ୍ୟରେ ସେ କେତେବେଳେ ଏକାକୀ ଓ ପୁଣି କେତେବେଳେ ମୁଷ୍ଟିମେୟ ଅନୁଗତ ପାଇକଙ୍କୁ ଧରି ନିଜ ରାଜ୍ୟର ସମ୍ମାନରକ୍ଷା ତଥା ଶ୍ରୀଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା ପାଇଁ ଯେଉଁ ପ୍ରାଣପାତ ଉଦ୍ୟମ କରିଥିଲେ, ତାହା ଓଡ଼ିଶାର ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ ହୋଇ ରହିଛି ।

ବିଶିଷ୍ଟ କଥାକାର ଶ୍ରୀ ସୁରେନ୍ଦ୍ର ମହାନ୍ତି ଏହି ନିଃସଙ୍ଗନାୟକ ଗଜପତି ରାମଚନ୍ଦ୍ର ଦେବଙ୍କର ବୈଚିତ୍ର୍ୟପୂର୍ଣ୍ଣ ତଥା କରୁଣ ରସାତ୍ମକ ଜୀବନ କାହାଣୀ ଓ ତତ୍କାଳୀନ ଇତିହାସକୁ ଆଧାର କରି ନୀଳଶୈଳ ଓ ନୀଳାଦ୍ରି ବିଜୟ ନାମକ ଦୁଇଟି ଉପନ୍ୟାସ ରଚନା କରିଛନ୍ତି ।

ଏହା ବ୍ୟତୀତ ୧୯ଶ ଶତାବ୍ଦୀର ମହାନାୟକ ବକ୍ସି ଜଗବନ୍ଧୁଙ୍କ ଜୀବନ ମଧ୍ୟ ଏହିପରି ଦୁଃଖ ଓ ହତାଶାରେ କଟକରେ ଶେଷ ହୋଇଥିଲା । ୧୮୨୫ ମସିହା ମେ ମାସ ୨୭ ତାରିଖରୁ ୧୮୨୯ ଜାନୁଆରି ୨୪ ତାରିଖ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ୩ ବର୍ଷ ୪ ମାସ ସମୟରେ କଟକଠାରେ ଅଟକ ରହିଥିଲେ । ମାତ୍ର ସାଧାରଣତଃ ଯାହା କୁହାଯାଇଥାଏ ଯେ କଟକର ବକ୍ସିବଜାର ଏହି ବକ୍ସିଙ୍କ ଘର ବକ୍ସି ଜଗବନ୍ଧୁଙ୍କ ନାମରେ ନାମିତ ତାହା ସତ୍ୟ ନୁହେଁ । ବକ୍ସି ଜଗବନ୍ଧୁ ଏଠାକୁ ଆସିବାର ୧୦ ବର୍ଷ ପୂର୍ବରୁ ମଧ୍ୟ ଏହି ନାମ ଥିଲା ।

ପାଇକ ବିଦ୍ରୋହ ସମୟରେ ଖୋର୍ଦ୍ଧା ରାଜା ଥିଲେ ଗଜପତି ମୁକୁନ୍ଦଦେବ । ସେ ୧୭୯୮ ଖ୍ରୀ:ରୁ ୧୮୧୭ ଖ୍ରୀ: ଗାଦିନସୀନ ଥିବା ଜଣାଯାଏ । ଇଂରେଜମାନେ ଓଡ଼ିଶା ଅଧିକାର ପରେ ୧୮୦୪ ଖ୍ରୀ:ରେ ମୁକୁନ୍ଦଦେବଙ୍କୁ ବନ୍ଦୀ କରି ଖୋର୍ଦ୍ଧାଗଡ଼କୁ ନଷ୍ଟଭ୍ରଷ୍ଟ କରିଦେଲେ । ୧୫୭୦ ଖ୍ରୀ:ରୁ ୧୮୦୪ ଖ୍ରୀ: ଯାଏ ଏହି ୨୩୪ ବର୍ଷ ଧରି ପରାଧୀନ ମାତ୍ର ବିଦ୍ରୋହୀ ଓଡ଼ିଆ ରାଜତନ୍ତ୍ର ଓ ରାଜଶକ୍ତିର ସମ୍ପୂର୍ଣ୍ଣ ବିଲୋପ ସେହି ସମୟରେ ହିଁ ଘଟିଥିଲା । ଖାରବେଳଙ୍କଠାରୁ ଆରମ୍ଭ କରି ଦୁଇ ହଜାର ବର୍ଷ ଧରି ନାନା ଉତ୍ଥାନ ପତନ ମଧ୍ୟରେ ଯେଉଁ ରାଜଶକ୍ତି ନିଜର ସ୍ଥିତି ବଜାୟ ରଖିଥିଲା ତାହା ଏହି ଜଗନ୍ନାଥ-ଟୂର କଟକର ପତନ ସହିତ ଲୋପ ପାଇଗଲା ।

୧୮୦୪ ଖ୍ରୀ:ରେ ମୁକୁନ୍ଦଦେବଙ୍କୁ ମେଦିନୀପୁରରେ ବନ୍ଦୀ କରି ରଖାଗଲା । ୧୮୦୭ ଖ୍ରୀ:ରେ ତାଙ୍କୁ ମୁକ୍ତ କରି ପୁରୀର ବାଲିସାହି ନଅରରେ ରହିବାକୁ ଆଦେଶ ଦିଆଯାଇଥିଲା । ଏହି ପୁରୁଣା ନଅର ନାମରେ ନାମିତ ଜୀର୍ଣ୍ଣ ପ୍ରାସାଦରେ ଆଜି ପର୍ଯ୍ୟନ୍ତ ନୂତନ ରାଜାଭିଷେକ ହେବାର ବିଧି ରହିଛି ।

୧୮୧୭ ମସିହା ଅପ୍ରେଲ ୧୭ ତାରିଖରେ ପାଇକ ବିଦ୍ରୋହ ଦମନ କରି କ୍ୟାପ୍ଟେନ ଲେ ଫେର୍‌ଭ ଖୋର୍ଦ୍ଧାରୁ ପୁରୀ ଯାଇ ରାଜାଙ୍କୁ ବନ୍ଦୀ କରି କଟକ ଆଣିଲେ । କଟକଠାରେ ହିଁ ଗଜପତି ମୁକୁନ୍ଦଦେବଙ୍କର ମୃତ୍ୟୁ ହୋଇଥିଲା । ଶ୍ରୀଜଗନ୍ନାଥ ଦର୍ଶନରୁ ବଞ୍ଚିତ ଗଜପତି କଟକ ରହଣି କାଳରେ ଏକ ମର୍ମସ୍ପର୍ଶୀ ଜଗନ୍ନାଥ ଜଣାଣ ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା ।

"ଆହେ ମାକାଦ୍ରି ବିହାରୀ !
କଟକେ ଅଟକ ହେବାରୁ
ମୋ ଧନ ସରୁନାହିଁ ଝୁରିଝୁରି
ବାବୁ ଚିନ୍ତାମଣି ତରକ ନଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ,
ରାଜାଧି ପଣ୍ଡିତ କୈବଲ୍ୟ ଲକ୍ଷଣ
ବାରବାଟୀ ଧରାଇଲେ । (୧)
ଚକାଆମୁ ଠାରୁ ବଳାସ'ଇ ଯାଏ
ଝିଡ଼ ଜଙ୍ଗମ ବୁଲିଲି
ଭ୍ରମର ଶ୍ରୀମୁଖ ଦର୍ଶନ ନପାଇ
କଟକେ ଅଟକ ହେଲି । (୨)
ବାବୁ ହରିହର ସୁପାତ୍ର ମୋହର
ବାରେ ମୋତେ ଦୟାକର
ଭଣ୍ଡାରରୁ ଖଣ୍ଡା ବାହାର କରଣ
ପ୍ରଭୁ ! ଓଡ଼ିଶା ଶତ୍ରୁ ନିବାର । (୩)
କେଉଁ କର୍ମହାନ କରୁଛୁ ଜଣାଣ
କପାଁ ନ ଶୁଣ ଗୁହାରି
ଶ୍ରୀଚରଣ ତଳେ ଶରଣ ପଶୁଛି
ଓଡ଼ିଶା ନବକଳେଶରୀ ହେ !" (୪)
(ଖୋରଧା ଇତିହାସ—୨୭୫, ୨୭୬ ପୃଷ୍ଠାରୁ ଉଦ୍ଧୃତ)

ମାତ୍ର ଓଡ଼ିଶାର ସୂର୍ଯ୍ୟ ସେତେବେଳକୁ ଅସ୍ତ ହୋଇ ଯାଇଥିଲା । ବାରବାଟୀ ଦୁର୍ଗ ଭିତରେ ମୁକୁନ୍ଦଦେବଙ୍କ ମୃତ୍ୟୁ ହେଲା ଏବଂ ଏହି କଟକରେ ତାଙ୍କର ପୁତ୍ର ରାମଚନ୍ଦ୍ରଦେବଙ୍କ ଅଭିଷେକ ହୋଇଥିଲା ।

ଏଣିକି ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା ସହିତ କେବଳ ଏହି ଗଜପତିମାନେ ସମ୍ପୃକ୍ତ ହୋଇ ରହିଥିଲେ । ଅଭିନବ ବାରାଣସୀ କଟକ ଓ ପୁରୁଷୋତ୍ତମ କଟକର ଗୁରୁତ୍ୱ ଏହିଭଳି ଭାବେ ଓଡ଼ିଶାର ମଧ୍ୟଯୁଗୀୟ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଗ୍ରହଣ କରିଛି ।

**ପଞ୍ଚ କଟକ :**

କଟକ ନାମଟି ଏକ ସ୍ଥାନବିଶେଷର ନାମ ଭାବରେ ଓଡ଼ିଶାରେ ଜଣାଶୁଣା ହେଲେହେଁ ଆଭିଧାନିକ ଅର୍ଥରେ ଏହା ଛାଉଣୀ, ଦୁର୍ଗ, ନଗର, ପ୍ରଶାସନିକ କେନ୍ଦ୍ର ଓ ରାଜଧାନୀ ଇତ୍ୟାଦି ଅର୍ଥରେ ବ୍ୟବହୃତ ହୋଇଥାଏ । ଏହି ଅର୍ଥରେ ସ୍ଥାନ ନାମର

ପ୍ରାନ୍ତଯୋଜକ ରୂପେ ପୁରୁଣା କଟକ । ଦ୍ୱିତୀୟ କଟକ ଆଦି ନାମରେ ବ୍ୟବହୃତ । ସେହିପରି ପ୍ରାଚୀନ କାଳରେ କମ୍ବୁ-କଟକ, କୃତ୍ତିବାସ କଟକ, ଗୁଡ଼ାରି କଟକ ଆଦି ସ୍ଥାନ ନାମ ପ୍ରଚଳିତ ଥିଲା । ଏହିସବୁ କଟକ ମଧ୍ୟରୁ ପାରମ୍ପରିକ ଭାବରେ ପାଞ୍ଚଗୋଟି କଟକ ବିଶେଷ ଖ୍ୟାତି ଲାଭକରି ଆସିଥିଲା । ଚୋଡ଼ଗଙ୍ଗଦେବ ଓଡ଼ିଶା ଅଧିକାର କରିବା ସମୟରେ ଏହି ପଞ୍ଚକଟକ ଅଧିକାର କରିଥିଲେ ବୋଲି କୁହାଯାଏ । ୧୧୧୨ ଖ୍ରୀଷ୍ଟାବ୍ଦରେ ଶେଷ ସୋମବଂଶୀ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଓଡ଼ିଶା ଅଧିକାର କରିଥିଲେ । ଏହି ପଞ୍ଚକଟକ ସମ୍ପର୍କରେ ବିଶେଷ ଅନୁଧ୍ୟାନ ବା ଗବେଷଣା ହୋଇନାହିଁ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହିଙ୍କ ଦ୍ୱାରା ରଚିତ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ଇତିହାସ ଓ କିମ୍ବଦନ୍ତୀ ପୁସ୍ତକରେ ହୋଇଥିବା ଆଲୋଚନା ବୋଧହୁଏ, ଏ ସମ୍ପର୍କୀୟ ପ୍ରଥମ ଓ ଶେଷ ପ୍ରଚେଷ୍ଟା ।

ଡଃ ପାଣିଗ୍ରାହି ଗଞ୍ଜାମରୁ ପ୍ରାପ୍ତ ମାଦଳାପାଞ୍ଜିର ପୋଥି ଯାହାକି ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ସମ୍ପାଦିତ ହୋଇଥିଲା, ସେଥିରୁ ଉଦ୍ଧୃତ ଦେଇଛନ୍ତି, ତାହାହେଲା—

'ଚୁଡ଼ଗଙ୍ଗଦେବ ଭୋଗ କଲେ ୭୪ ବର୍ଷ । ଏ ରାଜା ପ୍ରଥମେ କଟକ କଲେ । ଦ୍ୱିତୀୟେ ଅମରାବତୀ କଲେ । ତୃତୀୟେ ଗୃହଦ୍ୱାର କଲେ । ଚତୁର୍ଥେ ବାରଣସୀ କଟକ କଲେ । ପଞ୍ଚମେ ଅଙ୍ଗଦେଶ କଲେ । ଷଷ୍ଠ କାଶୀ କ୍ଷେତ୍ର କଲେ । ଏ ଗଙ୍ଗାଠାରୁ ଗୌତମୀ ପର୍ଯ୍ୟନ୍ତ ଏକଛତ୍ର କଲେ । (ଇ: ଓ କି: ପୃ-୪୭) ମାଦଳା ପାଞ୍ଜିର ଏହି ଉଲ୍ଲେଖ ମଧ୍ୟରେ 'ପଞ୍ଚକଟକ' ଓ 'କାଶୀକ୍ଷେତ୍ର'ର ନାମୋଲ୍ଲେଖ ରହିଛି ବୋଲି କୁହାଯାଇଥାଏ । ଏହି ପଞ୍ଚକଟକ ହେଲା ।

୧-ଅଭିନବ ଯଯାତି ନଗର (ଯାଜପୁର, କଟକ)

୨-ଅମରାବତୀ କଟକ (ଛତିଆ କଟକ)

୩-ସଜନ ନଗର (ଚଉଦ୍ୱାର, କଟକ)

୪-ଅଭିନବ ବାରଣସୀ କଟକ (କଟକ) ଓ ୫-ଚୁଡ଼ଙ୍ଗ କଟକ (ଶାରଙ୍ଗଗଡ଼), ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହିଙ୍କ ମତରେ 'କାଶୀକ୍ଷେତ୍ର' ନାମକ ସ୍ଥାନଟି କାଶିଆଗଡ଼ ନାମରେ ଏବେ ପରିଚିତ । ସେ ଲେଖିଛନ୍ତି, 'ଚନ୍ଦକାଠାରୁ ଖୋର୍ଦ୍ଧା ରାସ୍ତାରେ ଅବସ୍ଥିତ ଭଣ୍ଡାରିଖିଆ ପାହାଡ଼ର ନିକଟବର୍ତ୍ତୀ ଡାକୁଆଗ୍ରାମ ପାଖର ନିବିଡ଼ ଅରଣ୍ୟରେ କାଶିଆଗଡ଼ ନାମକ ଏକ ପ୍ରକାଣ୍ଡ ଦୁର୍ଗର ଭଗ୍ନାବଶେଷ ଅଦ୍ୟାପି ବିଦ୍ୟମାନ ରହିଛି । (ଇତିହାସ ଓ କିମ୍ବଦନ୍ତୀ) (ପୃ-୪୭) ମୂଳ କାଶୀ ଓ ବାରଣସୀ କ୍ଷେତ୍ରର ସହାବସ୍ଥାନର ଅନୁକରଣରେ ଅଭିନବ ବାରଣାସୀ କଟକ ସହିତ ଏହି କାଶୀକ୍ଷେତ୍ର ବା କାଶିଆଗଡ଼ର ପରିକଳ୍ପନା କରାଯାଇଥିବା ସମ୍ଭବ ।

ପଞ୍ଚକଟକ ସମ୍ପର୍କରେ ଆଲୋଚନା କରିବାକୁ ଯାଇ କେତେକ ଐତିହାସିକ ଏହି ଦୁର୍ଗଗୁଡ଼ିକୁ ଚୋଡ଼ଗଙ୍ଗ ଅଧିକାର କରିଥିଲେ ବୋଲି ମତ ଦେଇଥିବାବେଳେ କେହି କେହି

ତାଙ୍କଦ୍ୱାରା ଏହିସବୁ 'କଟକ' (ଦୁର୍ଗ) ପ୍ରତିଷ୍ଠିତ ହୋଇଥିଲା ବୋଲି କହନ୍ତି । ମାତ୍ର ଯେତେଦୂର ପ୍ରମାଣ ମିଳେ ଗଙ୍ଗବଂଶର ପୂର୍ବବର୍ତ୍ତୀ ଭୌମ ଓ ସୋମବଂଶର ରାଜତ୍ୱ କାଳରେ (ଏକାଦଶ ଶତାବ୍ଦୀ ସୁଦ୍ଧା) ଏହିସବୁ ଦୁର୍ଗ ପ୍ରତିଷ୍ଠିତ ହୋଇଥିଲା ଏବଂ ଅନନ୍ତ ବର୍ମନ ଚୋଡ଼ଗଙ୍ଗଦେବ ଏସବୁକୁ ଅଧିକାର କରି ନିଜ ରାଜତ୍ୱ ପ୍ରତିଷ୍ଠା କରିଥିଲେ । ତେବେ ଜନ୍ମେଜୟ, ଯଯାତିକେଶରୀ, ନୃପତିକେଶରୀ ତଥା ଶାରଙ୍ଗକେଶରୀ ଆଦି ପ୍ରତିଷ୍ଠାତାଙ୍କ ନାମ ଅନେକାଂଶରେ କିମ୍ବଦନ୍ତୀ ଘେରରେ ରହସ୍ୟାବୃତ୍ତ ହୋଇ ରହିଛି । ଏଥିମଧ୍ୟରୁ ଜନ୍ମେଜୟ ଓ ଯଯାତି ଦୁଇଟି ବାସ୍ତବ ସୋମବଂଶୀ ରାଜାଙ୍କ ନାମ । ଏଥିରୁ ମନେ ହୁଏ ଯେ ବିଭିନ୍ନ ସୋମବଂଶୀ ରାଜା ଦ୍ୱାରା ପ୍ରତିଷ୍ଠିତ ଏହିସବୁ ଦୁର୍ଗଗୁଡ଼ିକ ଗଙ୍ଗବଂଶୀ ଶାସନ କାଳରେ ଅପେକ୍ଷାକୃତ ଅଧିକ ପ୍ରସିଦ୍ଧି ଲାଭ କରିଥିଲା । ସେହିସବୁ ସ୍ଥାନ ସମ୍ପର୍କରେ ଏବେ ଆଲୋଚନା କରାଯାଉଛି ।

୧—ଅଭିନବ ଯଯାତି ନଗର : ଏହି 'କଟକ' ବା ରାଜଧାନୀ ସୋମବଂଶୀ ରାଜା ଯଯାତିକେଶରୀ ବା ୨ୟ ଯଯାତି ଚଣ୍ଡୀହର ସ୍ଥାପନ କରିଥିଲେ ବୋଲି ଜଣାଯାଏ । କୋଶଳ ଓ ଉତ୍କଳର ମିଶ୍ରଣକରି ବୃହତ୍ତର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ କରିଥିବା ଏହି ରାଜବଂଶ ବିନୀତପୁର ବା ବିନ୍‌କାକୁ ଯଯାତିନଗର ନାମ ଦେଇଥିଲେ । ପରବର୍ତ୍ତୀ କାଳରେ ବୈତରଣୀ ନଦୀତୀରରେ ଯାଜପୁରଠାରେ ନିଜର ରାଜଧାନୀ ପ୍ରତିଷ୍ଠାକରି ତାହାକୁ ଅଭିନବ ଯଯାତିନଗର ନାମ ଦେଇଥିବା ସମ୍ଭବ । ଏହିଠାରେ ଯଯାତିକେଶରୀ ଦଶାଶ୍ୱମେଧ ଯଜ୍ଞ କରିଥିଲେ ଏବଂ କାନ୍ୟକୁବ୍‌ଜରୁ ଦଶସହସ୍ର ବ୍ରାହ୍ମଣଙ୍କୁ ଆମନ୍ତ୍ରଣକରି ବୈଦିକ ଧର୍ମର ପୁନରୁତ୍ଥାନ ପାଇଁ ଚେଷ୍ଟା କରିଥିବା ଜଣାଯାଏ । ଏହି ସମୟଠାରୁହିଁ ଉତ୍କଳରେ "ଶାସନ" ନାମରେ ପରିଚିତ ବ୍ରାହ୍ମଣ ଜନବସତି ପ୍ରତିଷ୍ଠାର ଆରମ୍ଭ ହୋଇଥିଲା । ଏହି ସ୍ଥାନ ଯାଜପୁର, ବିରଜା କଟକ, ବିରଜାକ୍ଷେତ୍ର, ନାଭିଗୟା ଆଦି ନାମରେ ସୁପ୍ରସିଦ୍ଧ । କୌଣସି ଉଲ୍ଲେଖଯୋଗ୍ୟ ଦୁର୍ଗର ସନ୍ଧାନ ଏଠାରେ ମିଳେନାହିଁ । ବହୁକାଳ ଧରି ଏହି ଯାଜପୁର ଓଡ଼ିଶାର ସାମାଜିକ ରାଜନୈତିକ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛି ।

ଅଦ୍ୱିତୀୟ ଅମରାବତୀ କଟକ (ଛତିଆ କଟକ) : ଏହି ସ୍ଥାନରେ ଏକ ଦୁର୍ଗର ଭଗ୍ନାବଶେଷ ମିଳିଥାଏ । ଏହା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ବୋଲି କୌଣସି ପ୍ରମାଣ ମିଳେନାହିଁ । ଦ୍ୱିତୀୟ ଅମରାବତୀ କଟକର ଆଧୁନିକ ନାମ ଛତିଆ । ଛତ୍ରାକାର ଏକ ବରଗଛ ତଥା ଛତିଆ ମଠ ନାମାନୁସାରେ ଏହି ନାମ ପ୍ରସିଦ୍ଧ ହୋଇଛି ।

ଏଠାକାର ଦୁର୍ଗର ନାମକରଣ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ହୋଇଥିବା ସମ୍ପର୍କରେ ଏକ ତଥ୍ୟ ଉପସ୍ଥାପନ କରାଯାଇପାରେ । ଅନନ୍ତ ବର୍ମଣ ଚୋଡ଼ଗଙ୍ଗ ଓଡ଼ିଶା ଦଖଲ କରିବା ସମୟରେ କୃଷ୍ଣାନଦୀ ମୁହାଣ ନିକଟରେ ବୌଦ୍ଧକୀର୍ତ୍ତି ବିମଣ୍ଡିତ ଏକ "ଅମରାବତୀ ନଗର" ବିଦ୍ୟମାନ ଥିଲା । ଅତଏବ ତାହାର ଅନୁକରଣରେ ତଥା ତା'ଠାରୁ ଭିନ୍ନତ୍ୱ

ପ୍ରତିପାଦିତ କରି ଏହି ନୂତନ ଦୁର୍ଗର ନାମକରଣ କରାଯାଇଥିବା ସମ୍ଭବ । ନଦୀଦ୍ୱାରା ବିଖଣ୍ଡିତ ଉପତ୍ୟକା ଅଞ୍ଚଳରେ ସାମରିକ ଦୃଷ୍ଟିରୁ ଏହା ଏକ ସୁବିଧା ଜନକ ସ୍ଥିତିରେ ଥିଲା ।

୩—ଯଜନ ନଗର (ଚଉଦ୍ୱାର କଟକ) : ଚଉଦ୍ୱାରର ପ୍ରାଚୀନ ନାମ ଯଜନ ନଗର ଥିଲା ବୋଲି ଅନେକ ବିଶ୍ୱାସ କରନ୍ତି ନାହିଁ । ମାତ୍ର ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହିଙ୍କ ମତରେ ଏହାହିଁ ଥିଲା ପଞ୍ଚକଟକ ମଧ୍ୟରୁ ଅନ୍ୟତମ 'ଯଜନ ନଗର' । ମୁସଲମାନ ଐତିହାସିକମାନଙ୍କ ବିବରଣୀରେ ଓଡ଼ିଶାକୁ ସାଧାରଣତଃ ଯାଜନଗର ବୋଲି ଲେଖା ଯାଇଛି, ଏହାକୁ ଅନେକ 'ଯାଜପୁର' ସହିତ ଚିହ୍ନଟ କରିଥାନ୍ତି । ମାତ୍ର ଡକ୍ଟର ପାଣିଗ୍ରାହିଙ୍କ ମତରେ ଯାଜନଗର ବାସ୍ତବରେ ଯଜନ ନଗର ଏବଂ ଏହା ଆଧୁନିକ ଚଉଦ୍ୱାରର ପ୍ରାଚୀନ ନାମ । ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗରେ ସାରଳା ଦାସ ରଚନା କରିଯାଇଥିବା ମହାଭାରତରେ ଏ ସମ୍ପର୍କୀୟ ବିସ୍ତୃତ ବିବରଣୀ ଦ୍ୱାରା ଏହା ପ୍ରମାଣିତ ହୋଇଥାଏ । ମହାଭାରତ ଜନ୍ମେଜୟଙ୍କ ସହିତ ସୋମବଂଶୀ ରାଜା ଜନ୍ମେଜୟଙ୍କୁ ସାରଳା ଦାସ ଚିହ୍ନିତ କରିଛନ୍ତି । ଉଲ୍ଲେଖଯୋଗ୍ୟ ଯେ ଏହାର ଅପରନାମ ଧର୍ମପୁର ଥିଲା ବୋଲି ସାରଳା ଦାସ ଲେଖି ଯାଇଛନ୍ତି । ଇତିହାସର ଜନ୍ମେଜୟଙ୍କ ଦ୍ୱାରା ପ୍ରତିଷ୍ଠିତ ସୋମବଂଶର ଜଣେ ରାଜାଙ୍କ ନାମ ଧର୍ମରଥ ଥିଲା ଏବଂ ସେହି ନାମାନୁସାରେ ଏହି ସ୍ଥାନକୁ ଧର୍ମପୁର କୁହାଯାଉଥିବା ଅସମ୍ଭବ ନୁହେଁ । ପରବର୍ତ୍ତୀ କାଳରେ ଦୁର୍ଗର ଚାରିଗୋଟି ଦ୍ୱାରକୁ ଲକ୍ଷ୍ୟକରି ଏହି ସ୍ଥାନର ନାମ ଚଉଦ୍ୱାର ରୂପେ ଲୋକପ୍ରିୟତା ଅର୍ଜନ କରିଥାଇ ପାରେ ।

୪—ଚୂଡ଼ଙ୍ଗ କଟକ (ସାରଙ୍ଗଗଡ଼) : କଟକନଗରର ଅନତିଦୂରରେ ବାରଙ୍ଗ ରେଳଷ୍ଟେସନ ନିକଟସ୍ଥ ଜଙ୍ଗଲ ମଧ୍ୟରେ ସାରଙ୍ଗଗଡ଼ ନାମକ ଏକ ଦୁର୍ଗର ଭଗ୍ନାବଶେଷ ରହିଛି । ସାରଙ୍ଗକେଶରୀ ନାମକ ଜଣେ ସୋମବଂଶୀ ରାଜା ଏହି ଦୁର୍ଗ ନିର୍ମାଣ କରିଥିଲେ ବୋଲି ଯାହା କୁହାଯାଏ ତାହା କପୋଳକଳ୍ପିତ ବୋଲି ମନେହୁଏ । କାରଣ ଏହି ନାମର କୌଣସି ରାଜା ଥିଲେ ବୋଲି ପ୍ରମାଣ ମିଳେନାହିଁ ।

ଏହି ଦୁର୍ଗ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଏକ ଗୁରୁତ୍ୱପୂର୍ଣ୍ଣ ଦୁର୍ଗ ଭାବରେ ବ୍ୟବହୃତ ହୋଇଥିଲା ବୋଲି ମନେ ହୁଏ । ଏହାର ଗୋଟିଏ ପଟେ "କାଶୀ" (ଅର୍ଥାତ୍ କାଶିଆ ଗଡ଼) ଓ ଅନ୍ୟ ପଟେ "ବାରଣସୀ" (ଅର୍ଥାତ୍, ଅଭିନବ ବାରଣାସୀ କଟକ) ଅବସ୍ଥିତ ଥିଲା । ଏହା ପ୍ରଥମେ ଚୋଡ଼ଗଙ୍ଗଦେବଙ୍କ ଦ୍ୱାରା ନାମିତ ହୋଇଥିଲା ଏବଂ କାଳକ୍ରମେ ଏହା ଚୁଡ଼ଙ୍ଗଗଡ଼ ନାମରେ ପରିଚିତ ହୋଇଥିଲା । ନିକଟସ୍ଥ 'ବାରଙ୍ଗ' ନାମାନୁକରଣରେ ଏହା ଶାରଙ୍ଗଗଡ଼ ନାମରେ ନାମିତ ହୋଇଥିବା ସମ୍ଭବ ।

## ଅଭିନବ ବାରଣାସୀ (କଟକ) :

ଚୋଡ଼ଗଙ୍ଗଙ୍କ ଦ୍ୱାରା ବା ତାଙ୍କର ସମୟରୁ କଟକ ନଗରର ନାମ ଅଭିନବ ବାରଣାସୀ କଟକ ବୋଲି ଖ୍ୟାତିପ୍ରାପ୍ତ ହୋଇଥିଲା । ପଦ୍ମଶ୍ରୀ ଡଃ ସତ୍ୟନାରାୟଣ ରାଜ-

ଗୁରୁଙ୍କ ମତରେ ଚୋଡ଼ଗଙ୍ଗଦେବ ପୂର୍ବରୁ ରାଜତ୍ୱ କରୁଥିବା ଅଞ୍ଚଳମାନଙ୍କରେ 'ବାରଣାସୀ କଟକ' ପ୍ରତିଷ୍ଠା କରିଥିଲେ । ଓଡ଼ିଶାରେ ନିଜର ରାଜତ୍ୱ ପ୍ରତିଷ୍ଠା କରିବା ସମୟରେ ଚୋଡ଼ଗଙ୍ଗଦେବ ଥିଲେ ଗୋକର୍ଣ୍ଣେଶ୍ୱରଙ୍କ ଆଶୀର୍ବାଦପ୍ରାପ୍ତ ଓ ଶୈବଧର୍ମ ଅନୁରକ୍ତ । ସୁତରାଂ ବୌଦ୍ଧଧର୍ମର ପ୍ରଭାବ ଥିବା ବହୁ ଅଞ୍ଚଳରେ, ଶତାଧିକ ଶିବମନ୍ଦିର ନିର୍ମାଣ କରି ସ୍ଥାନଟିକୁ କାଶୀ ବାରଣାସୀରେ ପରିଣତ କରିବାର ଯେଉଁ ଆନ୍ଦୋଳନ ଓଡ଼ିଶା ତଥା ଦାକ୍ଷିଣାତ୍ୟରେ ଆରମ୍ଭ ହୋଇଥିଲା ସେ ଥିଲେ ସମ୍ଭବତଃ ସେହି ଆନ୍ଦୋଳନର ଜଣେ କର୍ଣ୍ଣଧାର ।

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଅନନ୍ତବର୍ମଣ ଚୋଡ଼ଗଙ୍ଗଦେବଙ୍କ ପିତାଙ୍କ ନାମ ଥିଲା ଦେବେନ୍ଦ୍ର ବର୍ମଣ ରାଜରାଜ । ସେ ଦକ୍ଷିଣ ଭାରତରେ ୧୦୭୧ ଖ୍ରୀଷ୍ଟାବ୍ଦରୁ ୧୦୭୬ ଖ୍ରୀ. ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ୧୦୭୬ ଖ୍ରୀ. ରୁ ଆରମ୍ଭ ହୋଇଥିଲା ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ । ଦୁର୍ବଳ ସୋମବଂଶର ଶେଷ ରାଜାଙ୍କୁ ପରାସ୍ତ କରି ଦ୍ୱାଦଶ ଶତାବ୍ଦୀର ପ୍ରଥମ ଦଶନ୍ଧିବେଳକୁ ଚୋଡ଼ଗଙ୍ଗ ନିଜର ରାଜ୍ୟ ଓଡ଼ିଶାରେ ହିଁ ପ୍ରତିଷ୍ଠା କରିଥିଲେ । ସେ ୧୧୪୭ ଖ୍ରୀ. ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଓଡ଼ିଶା ଅଧିକାର କରିବା ପରେ ସେ ବୈଷ୍ଣବଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ ବୋଲି ଜଣାଯାଏ । ଐତିହାସିକମାନେ ଚୋଡ଼ଗଙ୍ଗଙ୍କୁ ପୁରୀ ମନ୍ଦିରର ଆଦି ନିର୍ମାତା ବୋଲି କହିଥାନ୍ତି ମାତ୍ର ତାଙ୍କ ପୂର୍ବରୁ ଏଠାରେ ଶ୍ରୀଜଗନ୍ନାଥ ଆରାଧନା ପ୍ରଚଳିତ ଥିଲା ।

ଗଙ୍ଗବଂଶର ତୃତୀୟ ଅନଙ୍ଗଭୀମଦେବ ବାରଣାସୀ ଦୁର୍ଗ (ବାଲିଗଡ଼) ପରିତ୍ୟାଗ କରି ବାରବାଟୀ ଦୁର୍ଗ ନିର୍ମାଣ କରିବା ପରେ କେବଳ କଟକ ନାମରେ ଏହି ସ୍ଥାନଟି ପ୍ରସିଦ୍ଧି ଲାଭ କରିଥିଲା ।

ପ୍ରସଙ୍ଗ କ୍ରମେ ଏହା ମଧ୍ୟ ଉଲ୍ଲେଖ କରାଯାଇପାରେ ଯେ 'ପଞ୍ଚକଟକ' ବର୍ଣ୍ଣିତ ସମସ୍ତ ଦୁର୍ଗ ଆଧୁନିକ କଟକ ଜିଲ୍ଲାର ପରସ୍ପର ସଂଲଗ୍ନ ଓ ସୀମାବଦ୍ଧ ସ୍ଥାନ ମଧ୍ୟରେ ହିଁ ପ୍ରତିଷ୍ଠିତ ହୋଇଥିଲା ।

## କଟକ ନଗର : ଏକ ଅସମାହିତ ପ୍ରଶ୍ନ ? :

ଏକ ହଜାର ବର୍ଷର ପୁରୁଣା କଟକ ସହର ସମ୍ପର୍କରେ କୌଣସି ଆଲୋଚନା କରାଗଲା ବେଳେ ବହୁ ଅସମାହିତ ପ୍ରଶ୍ନ ଉଠିଥାଏ । ଏହି ବିଷୟଗୁଡ଼ିକ ଓଡ଼ିଶାର ଇତିହାସ ଦୃଷ୍ଟିରୁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କଟକ ନଗରର ଧାରାବାହିକ ଐତିହାସିକ ବିବରଣୀ ପ୍ରସ୍ତୁତ କରାଯାଉଥିବା ବେଳେ ଏହିସବୁ ପ୍ରଶ୍ନର ସମାଧାନ ଓ ଉତ୍ତର ଅନ୍ୱେଷଣ କରିବା ଅତ୍ୟନ୍ତ ଆବଶ୍ୟକ । ସ୍ଥାନ ନାମର ମୂଳ ଅର୍ଥ ଅନୁସନ୍ଧାନରୁ କିମ୍ବା ତାହାର ଇତିହାସ ବା ପ୍ରତ୍ନତାତ୍ତ୍ୱିକ ଧ୍ୱଂସାବଶେଷରୁ ଅନେକ ଅସମାହିତ ପ୍ରଶ୍ନର ସୂତ୍ର ମିଳିଥାଏ । ଭାଷା ଆଲୋଚନାରୁ ଇତିହାସର ଅନୁଶୀଳନ ବାହ୍ୟତଃ ଅପ୍ରାସଙ୍ଗିକ ମନେ ହେଉଥିଲେ ହେଁ ବାସ୍ତବରେ ଏହା ଆଜିକାଲି ବ୍ୟବହୃତ ହେଉଥିବା ଆନ୍ତଃ ବିଦ୍ୟା ଗବେଷଣା ବିଧି (Inter-disciplinary study)ର ଅନ୍ତର୍ଗତ ।

ନାମାନୁଶୀଳନ ବା ଓନୋମାଷ୍ଟିକ୍ସ ବିଦ୍ୟାର ବ୍ୟବହାର ଆଜକାଲି ପାଶ୍ଚାତ୍ୟ ଦେଶମାନଙ୍କରେ ଐତିହାସିକ ଭୌଗୋଳିକ ଓ ଭାଷାତାତ୍ତ୍ୱିକ ପ୍ରତ୍ନତତ୍ତ୍ୱର ଆବିଷ୍କାର ଉଦ୍ଦେଶ୍ୟରେ କରାଯାଉଛି । ଜଣେ ବିଦ୍ୱାନ Dr V. S. Pathak କହିଛନ୍ତି—

'This branch of study in the west now forms a Part of Linguistics Subscrving the interest of Historical, geographical and Linguistic Paleontology.'

ସ୍ଥାନ ନାମର ଅଧ୍ୟୟନ ସମ୍ପର୍କରେ କୁହାଯାଏ;

"Toponomy, the study of Place names. Like wise helps historians in tracing Old History of regions, towns and Countries, and assists Linguistics in retriering the Lost Languages.

ଅନେକ ସମୟରେ କେତକ ସ୍ଥାନ ନାମ କୌଣସି ଲୁକ୍କାୟିତ ଘଟଣା ବା ଲୁପ୍ତ ଭାଷାର ସାକ୍ଷୀ ଭାବରେ ପ୍ରଚଳିତ ଥା'ନ୍ତି, ସେହି ସ୍ଥାନନାମର ଇତିହାସ ସଂଗ୍ରହ କରି ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ଅଞ୍ଚଳର ଇତିହାସ ସମ୍ପର୍କରେ ବହୁ ଅସମାହିତ ପ୍ରଶ୍ନର ସମାଧାନ କରାଯାଇପାରନ୍ତା ।

ପ୍ରାଚୀନ କଟକର ବହୁ କୀର୍ତ୍ତି ଓ ଅନୁଷ୍ଠାନ କାଳକ୍ରମେ ଲୋପ ପାଇ ଯାଇଛି । ସେହିପରି ବହୁ ସ୍ଥାନନାମ ମଧ୍ୟ ସମୟାନୁସାରେ ପରିବର୍ତ୍ତିତ ହୋଇ ଯାଇଛି । ଏପରିକି ୧୮୮୧୪ ଖ୍ରୀ: ରେ ପ୍ରଚଳିତ ଥିବା ଅନେକ ସ୍ଥାନ ନାମ ଏବେ ମିଳେ ନାହିଁ । ଏହିସବୁ ଲୁକ୍କାୟିତ ବା ବିଲୁପ୍ତ କୀର୍ତ୍ତି, ଘଟଣା, ଅନୁଷ୍ଠାନ ଓ ନାମର ଅନୁଧ୍ୟାନ କରାଗଲେ କଟକ ସହରର ପୂର୍ଣ୍ଣାଙ୍ଗ ଇତିହାସ ରଚନା କରିହେବ । ଏ ମଧ୍ୟରୁ ସବୁଠାରୁ ପ୍ରାଚୀନତମ ପ୍ରଶ୍ନ ହେଲା କଟକ ନଗରର ସ୍ଥାପୟିତାଙ୍କ ସମ୍ପର୍କରେ । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଗଙ୍ଗବଂଶୀୟ ତୃତୀୟ ଅନଙ୍ଗଭୀମଙ୍କ ଦ୍ୱାରା ପ୍ରତିଷ୍ଠିତ ଦୁର୍ଗ ଓ ଶ୍ରୀ ଜଗନ୍ନାଥ ମନ୍ଦିର ସମ୍ପର୍କୀୟ ।

ଏହି ଉଭୟ ପ୍ରଶ୍ନର ଉତ୍ତର ଅନ୍ୱେଷଣ ସମ୍ପର୍କୀୟ ଆଲୋଚନା ଏକା ସାଙ୍ଗରେ କରାଯାଇପାରେ ।

କଟକନଗର ଓ ବାରବାଟୀ ଦୁର୍ଗର ପ୍ରତିଷ୍ଠା ସମ୍ପର୍କରେ କଟକ ଜିଲ୍ଲା ଫୁଲନଖରା ନିକଟସ୍ଥ ନଗରୀ ଗ୍ରାମରୁ ପ୍ରାପ୍ତ ୫ଟି ଫଳକ ବିଶିଷ୍ଟ ତମ୍ବାପଟା ବିଶେଷ ଆଲୋକପାତ କରିଥାଏ । ଏହି ତମ୍ବାପଟାର ପାଠୋଦ୍ଧାର କରିଥିଲେ ପ୍ରତ୍ନତତ୍ତ୍ୱବିଦ୍ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ । ୧୯୪୯ ମସିହାରେ ଏହାର ଆବିଷ୍କାର ଓ ପାଠୋଦ୍ଧାର ହେବା ପରଠାରୁ କେତେକ ପ୍ରଶ୍ନର ସମାଧାନ ହେବା ସହିତ କେତେକ ନୂତନ ପ୍ରଶ୍ନ ଉତ୍ଥାପିତ ହୋଇଛି ।

ସ୍ୱର୍ଗତ ପରମାନନ୍ଦ ଆଗ୍ନେୟ ତାଙ୍କର 'କଟକର ଇତିହାସ' ପ୍ରବନ୍ଧରେ ଲେଖିଛନ୍ତି ଯେ ଏହି ତମ୍ବାପଟାରେ ଉଲ୍ଲିଖିତ ୭ଟି ଦାନ ମଧ୍ୟରୁ ୬ଟି ଦାନ ବାରଣାସୀ କଟକରୁ ଏବଂ ଗୋଟିଏ ଦାନ ପୁରୁଷୋତ୍ତମ କ୍ଷେତ୍ର (ପୁରୀ)ରୁ ତୃତୀୟ ଅନଙ୍ଗଭୀମଦେବଙ୍କ ଦ୍ୱାରା ପ୍ରଦତ୍ତ । ଏହା ୧୨୩୦ ଖ୍ରୀଷ୍ଟାବ୍ଦର ଦାନପତ୍ର ।

ପ୍ରଥମ ଦାନ ପତ୍ରରେ ୧୨୩୦ ଖ୍ରୀ: ଫେବୃଆରୀ ୨୩ ତାରିଖରେ ଅଭିନବ ବାରଣାସୀ କଟକର ଚନ୍ଦ୍ରେଶ୍ୱର ଓ ବଟେଶ୍ୱର ଦୁଇ ମହାଦେବ ମନ୍ଦିର ମଧ୍ୟସ୍ଥ ମହାନଦୀ ତଟସ୍ଥ ସାଇଲୋ ବଡପୁର ପୁରଣ ଗ୍ରାମର ବ୍ରାହ୍ମଣମାନଙ୍କୁ ଦାନ ଦିଆଯାଇଛି ।

ଅନ୍ୟ ତିନୋଟି ଫଳକରେ ଯଥାକ୍ରମେ ୧୨୩୦ ଖ୍ରୀ.ର ଡିସେମ୍ବର ୨୬, ନଭେମ୍ବର ୨୧, ଡିସେମ୍ବର ୨୬ ତାରିଖରେ ବିଭିନ୍ନ ଦାନର ଉଲ୍ଲେଖ ରହିଛି (ଖ୍ରୀଷ୍ଟାବ୍ଦ ଓ ତାରିଖ ସ୍ୱର୍ଗତ ପରମାନନ୍ଦ ଆଗ୍ନେୟଙ୍କ ଗଣନା) ।

ମାତ୍ର ୫ମ ଦାନରେ "ଶ୍ରୀ ପୁରୁଷୋତ୍ତମ ଦେବସ୍ୟ ପ୍ରତିଷ୍ଠା ସମୟେ" (କଟକରୁ) ତଥା ୭ମ ଦାନରେ "ତଥା ଅଭିନବ ବାରଣାସ୍ୟା ଭଗବତଃ ଶ୍ରୀ ପୁରୁଷୋତ୍ତମ ସନ୍ନିଧୌ" ବାକ୍ୟାଂଶ ଲେଖା ରହିଛି । ଏ ବିଷୟରେ ସୂଚନା ଦେଇ ସ୍ୱର୍ଗତ ଆଗ୍ନେୟ ଲେଖିଛନ୍ତି—

"ଏ ପୁରୁଷୋତ୍ତମ ଦେବ ଓ ୬ଷ୍ଠ ଦାନରେ ଥିବା ପୁରୁଷୋତ୍ତମ କ୍ଷେତ୍ରର ଜଗନ୍ନାଥ ପୁରୁଷୋତ୍ତମ ଦେବଙ୍କ ଠାରୁ ପୃଥକ । ଏଥିରେ ଆଦୌ ସନ୍ଦେହ ନାହିଁ । ଏଥିରୁ ମନେହୁଏ ଯେ ଅନଙ୍ଗ ଭୀମଦେବ ମହାନଦୀ କୂଳରେ ଅଭିନବ ବାରଣାସୀ କଟକ ବସାଇ ସେଠାରେ ଏକ ଜଗନ୍ନାଥ ମନ୍ଦିର ଗଢ଼ି ତାହା ପ୍ରତିଷ୍ଠା କରିଥିଲେ । ଅନଙ୍ଗ ଭୀମଦେବଙ୍କ ଏହି ତମ୍ବା ପଟାରେ ଲିଖିତ ଶ୍ଲୋକରେ ଅଛି ଯେ ଚୋଡ଼ଗଙ୍ଗ ପୁରୀର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଉପରୋକ୍ତ ନଗରୀ ତମ୍ବା ପଟାର ପାଠୋଦ୍ଧାର ପରେ ଯେଉଁସବୁ ପ୍ରଶ୍ନ ଉଠେ ତାହା ହେଲା—

୧-ଅନଙ୍ଗଭୀମ ଦେବ ବାସ୍ତବରେ ଅଭିନବ ବାରଣସୀ କଟକର ସ୍ଥାପୟିତା କି ?

୨-ଅନଙ୍ଗଭୀମ ଦେବ ପୁରୀ ମନ୍ଦିରର ନିର୍ମାତା କି ?

୩-କଟକରେ ଅନଙ୍ଗଭୀମ ଦେବଙ୍କ ପ୍ରତିଷ୍ଠିତ ପୁରୁଷୋତ୍ତମ ମନ୍ଦିର କାହିଁ ବା କେଉଁଠି ଥିଲା ?

ଏ ସମସ୍ତ ପ୍ରଶ୍ନକୁ ଏକାଠି କଲେ ଯେଉଁ ପ୍ରଶ୍ନଟି ଆମେ ପାଇଥାଉ ତାହା ହେଲା ଚତୁର୍ଥ ପ୍ରଶ୍ନ । ଯଥା—

୪-କଟକନଗର ପ୍ରତିଷ୍ଠା ଓ ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ସମ୍ପର୍କୀୟ କିମ୍ବଦନ୍ତୀ ଓ ଐତିହାସିକ ତଥ୍ୟ ମଧ୍ୟରୁ ସତ୍ୟ କିଏ ?

ଏ କ୍ଷେତ୍ରରେ ବିସ୍ତୃତ ଆଲୋଚନା କଲେ ଜଣାଯାଏ ଯେ, ଉଭୟ ତାମ୍ରଲେଖ ଓ କିମ୍ବଦନ୍ତୀରେ ଘଟଣା ଓ ପାତ୍ର ଇତସ୍ତତଃ ହୋଇଯାଇଛି ଏବଂ ଏହି ଦୃଷ୍ଟିରୁ ଭ୍ରମାତ୍ମକ

ଭାବରେ ପୂର୍ବ ରାଜାଙ୍କର କୀର୍ତ୍ତି ପରବର୍ତ୍ତୀ ରାଜାଙ୍କ କୀର୍ତ୍ତି ଭାବରେ ଜନଶ୍ରୁତିରେ ପ୍ରଚଳିତ ରହିଛି ।

କଟକନଗର ଅର୍ଥାତ ଅଭିନବ ବାରାଣସୀ କଟକର ସ୍ଥାପୟିତା କିମ୍ବଦନ୍ତୀ ଅନୁଯାୟୀ ନୃପକେଶରୀ ନାମକ ଜଣେ ରାଜା । ସେ ୯୮୯ ଖ୍ରୀଷ୍ଟାବ୍ଦରେ ଏଠାରେ ଦୁର୍ଗ ବା 'କଟକ'ର ପ୍ରତିଷ୍ଠା କରିଥିଲେ । ମରକତ କେଶରୀ ନାମକ ପରବର୍ତ୍ତୀ ରାଜା କଟକ ନଗରକୁ ସୁରକ୍ଷିତ ରଖିବା ପାଇଁ କାଠଯୋଡ଼ି ନଦୀରେ ପଥରବନ୍ଧ ନିର୍ମାଣ କରାଇଥିଲେ ବୋଲି ଜନଶ୍ରୁତି ପ୍ରଚଳିତ । ମାଦଳା ପାଞ୍ଜି ମଧ୍ୟ ଏହାକୁ ସମର୍ଥନ ଯୋଗାଇଥାଏ । 'ପାଞ୍ଜି'ରେ ଲେଖାଅଛି ଯେ, ତାଙ୍କ ପୁଅ ଘଟକେଶ୍ୱରଙ୍କ ଶଳା ନବଘନ ସିଂହ ଏହି ପଥର ବନ୍ଧ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥିଲେ । (ପାଞ୍ଜିର ଏହି ଅଂଶରେ ଯାବନିକ "କିଲ୍" ଶବ୍ଦର ବ୍ୟବହାର ଥିବାରୁ ଜନଶ୍ରୁତିରୁ ଉଦ୍ଧାର କରି ପରବର୍ତ୍ତୀ କାଳରେ ମାଦଳା ପାଞ୍ଜିକାର ଏହା ଲେଖିଥିବା ସମ୍ଭବ ।)

କଟକ ନଗରର ପ୍ରାଚୀନ ନାମ "ଅଭିନବ ବାରଣାସୀ କଟକ" ନାମକରଣ ସମ୍ପର୍କରେ କୁହାଯାଇପାରେ ଯେ ମୂଳ ବାରଣାସୀ ନଗରୀରେ ପ୍ରତିଷ୍ଠିତ "ବିଶ୍ୱନାଥ"ଙ୍କ ମନ୍ଦିର ତଥା ଓଡ଼ିଶାର କଟକରେ ପ୍ରତିଷ୍ଠିତ "ବିଶ୍ୱେଶ୍ୱର" ମନ୍ଦିରର ନାମସମ୍ପର୍କ କେବଳ ସଂଯୋଗବଶତଃ ହୋଇନାହିଁ । ଏହି ସ୍ଥାନର ଅଭିନବ ବାରଣାସୀ କଟକ ନାମ-କରଣ ସହିତ ଏହା ମଧ୍ୟ ସଂପୃକ୍ତ । ସପ୍ତମ ଶତାବ୍ଦୀରେ କର୍ଣ୍ଣ ସୁବର୍ଣ୍ଣର ରାଜା ଶଶାଙ୍କଙ୍କ ନେତୃତ୍ୱରେ ସାରା ପୂର୍ବ ଭାରତରେ ଯେଉଁ ଶୈବଧର୍ମ ପ୍ରଚାରର ଲହରୀ ଖେଳିଯାଇଥିଲା, ଓଡ଼ିଶା ସେଥିରୁ ବାଦ୍ ଯାଇ ନଥିଲା । ଏକାମ୍ରକାନନ ଠାରେ ଏହି ସମୟରେ ପ୍ରାଚୀନ ତ୍ରିଭୁବନେଶ୍ୱର ମନ୍ଦିରର ପ୍ରତିଷ୍ଠା ହୋଇଥିବା ଜଣାଯାଏ । (ଏହି ତ୍ରିଭୁବନେଶ୍ୱର ଶିବଲିଙ୍ଗ ଓ ପୀଠ ନାମରୁ ପରବର୍ତ୍ତୀ କାଳରେ ଭୁବନେଶ୍ୱର ନଗର ନାମରେ ଉତ୍ପତ୍ତି ।) ସେହି ସମୟରେ ବହୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ବହୁଳ ସଂଖ୍ୟାରେ ଶୈବ ମନ୍ଦିର ନିର୍ମାଣ କରି ତାହାକୁ "କାଶୀ-ବାରଣସୀ" (ଅର୍ଥାତ୍ ଶୈବକ୍ଷେତ୍ର)"ରେ ପରିଣତ କରିବାର ଉଦ୍ୟମ ହୋଇଥିଲା । ବୌଦ୍ଧପୀଠ ଥିବା ବହୁ ସ୍ଥାନରେ ଏହି 'ଅଭିନବ କାଶୀବାରଣସୀ" ପ୍ରତିଷ୍ଠାର ଉଦ୍ୟମ ସମ୍ପର୍କରେ କିମ୍ବଦନ୍ତୀ ରହିଛି ।

ଅତଏବ, ମହାନଦୀ କାଠଯୋଡ଼ି ତ୍ରିକୋଣଭୂମିର ଶୀର୍ଷରେ (ପୁରୁଷୋତ୍ତମ କ୍ଷେତ୍ର ଏବଂ ଭୁବନେଶ୍ୱରକୁ ଯିବାପାଇଁ) । ଏହି ସ୍ଥାନରେ ନଦୀ ଅତିକ୍ରମ କରିବା ଥିଲା ସବୁଠାରୁ ସୁବିଧାଜନକ । ଏଣୁ ତୀର୍ଥଯାତ୍ରୀମାନଙ୍କ ଗମନାଗମନ ପଥରେ ସେମାନଙ୍କୁ ପ୍ରଭାବିତ କରିବାର ଚେଷ୍ଟା ନିଶ୍ଚିତ ଭାବରେ ହୋଇଥିବ । ଏହି ଦୃଷ୍ଟିରୁ ୭।୮ମ ଶତାବ୍ଦୀରେ ଏଠାରେ ଶିବ ମନ୍ଦିର ନିର୍ମାଣ ହୋଇଥିବା ସମ୍ଭବ । ସେହି ସମୟରେ କିମ୍ବା ତା'ର ସାମାନ୍ୟ ପରବର୍ତ୍ତୀ କାଳରେ "ଅଭିନବ ବାରଣସୀ କଟକ" ନାମକରଣ କରାଯାଇଥିବ ବୋଲି ମନେହୁଏ ।

ଏହି ଅଭିନବ ବାରଣସୀ କଟକର ପ୍ରତିଷ୍ଠା ଅନଙ୍ଗ ଭୀମଦେବ କରିଥିଲେ ବୋଲି ନଗରୀ ତାମ୍ରପଟାରେ ଉଲ୍ଲେଖ ରହିଛି । ମାତ୍ର ବାସ୍ତବତଃ ଅଭିନବ ବାରଣସୀ କଟକ ଅନଙ୍ଗ ଭୀମଦେବଙ୍କ ବହୁ ପୂର୍ବରୁ ଥିଲା । ବାରବାଟୀ ଗ୍ରାମଠାରେ ଗଙ୍ଗବଂଶୀୟ ତୃତୀୟ ଅନଙ୍ଗ ଭୀମଦେବ ଏକ ଦୁର୍ଗ ବା କଟକ ନିର୍ମାଣ କରିଥିଲେ ଏବଂ ସମ୍ଭବତଃ ପୂର୍ବ ଗୌରବ ସ୍ମରଣାନୁସାରେ ନଗରୀ ଲିପି ଲେଖକ ଏହାକୁ ମଧ୍ୟ "ଅଭିନବ ବାରଣସୀ କଟକ" ନାମରେ ନାମିତ କରିଥିଲେ । ଏହି ଦୁର୍ଗ ଓ ଏହାର ସନ୍ନିହିତ ଅଞ୍ଚଳ ପରବର୍ତ୍ତୀ କାଳରେ ବାରବାଟୀ କଟକ ବା କେବଳ କଟକ ନାମରେ ନାମିତ ହୋଇଥିଲା । ଏହି ସମସ୍ତ ଆଲୋଚନାରୁ ମନେହୁଏ ଯେ ନୃପ କେଶରୀଙ୍କ ଦ୍ୱାରା ଅଭିନବ ବାରଣସୀ କଟକ ୯୮୯ ଖ୍ରୀ:ରେ ସ୍ଥାପିତ ହୋଇଥିଲା ବୋଲି ପ୍ରଚଳିତ ବିଶ୍ୱାସ ଅମୂଳକ ନୁହେଁ ।

ବର୍ତ୍ତମାନ, ନଗରୀ ତାମ୍ରପଟାର ୫ମ ଓ ୭ମ ଦାନରେ ଉଲ୍ଲିଖିତ ଅଭିନବ ବାରଣସୀ କଟକରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ ମନ୍ଦିର ବିଷୟ ବିଚାର କରାଯାଉ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ତୃତୀୟ ଅନଙ୍ଗ ଭୀମଦେବ ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ ବୋଲି ଓଡ଼ିଶାରେ ଜନଶ୍ରୁତି ପ୍ରଚଳିତ । ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ମାଦଳାପାଞ୍ଜିରେ ମଧ୍ୟ ଏହି କଥାର ଉଲ୍ଲେଖ ରହିଛି । (୧୦) ମାତ୍ର ଏହା ସତ୍ୟ ନୁହେଁ । ବାସ୍ତବ ପକ୍ଷେ ୧୨୩୦ ଖ୍ରୀଷ୍ଟାବ୍ଦରେ ତୃତୀୟ ଅନଙ୍ଗଭୀମଦେବ ଅଭିନବ ବାରଣାସୀ କଟକଠାରେ ଏକ ପୁରୁଷୋତ୍ତମ ମନ୍ଦିର ପ୍ରତିଷ୍ଠା କରିଥିଲେ । ମାତ୍ର କାଳକ୍ରମେ ଲୋକେ ଏକଥା ଭୁଲିଯାଇ ସେ ପୁରୀ ମନ୍ଦିରର ନିର୍ମାତା ବୋଲି ବିଶ୍ୱାସ କରି ଆସୁଥିଲେ । ଜନଶ୍ରୁତିର ଏହି ଭ୍ରମାତ୍ମକ ଆରୋପଣ ମାଦଳା ପାଞ୍ଜି ଗ୍ରହଣ କରି ଉଲ୍ଲେଖ କରିଛନ୍ତି ।

ମାଦଳା ପାଞ୍ଜି ଯେ କେବଳ ଏହି ଭୁଲ କରିଛନ୍ତି ତାହା ନୁହେଁ; ପରବର୍ତ୍ତୀ କାଳରେ ଦିଲ୍ଲୀର ମୁସଲମାନ ଆକ୍ରମଣକାରୀମାନଙ୍କ ଦରବାରରେ ଥିବା ବିବରଣୀ ଲେଖକମାନେ ମଧ୍ୟ ଏହି ଭ୍ରମର ସୃଷ୍ଟି କରିଛନ୍ତି ।

କଟକ ନଗରରେ ଏହି ପ୍ରାଚୀନ ଶ୍ରୀ ଜଗନ୍ନାଥ ମନ୍ଦିର ଆଜି ଧ୍ୱଂସ ପାଇଯାଇଛି । ମାତ୍ର ଏହା ଧ୍ୱଂସ ପାଇବାର କାହାଣୀ ସମ୍ପର୍କରେ ବିଶେଷ କିଛି ଜଣାଯାଏ ନାହିଁ । ଓଡ଼ିଶା ମୁସଲମାନ ଶାସନାଧୀନ ହେବାର ପୂର୍ବରୁ ଏହି ମନ୍ଦିର ଧ୍ୱଂସ ହୋଇ ଯାଇଥିଲା । ଫିରୋଜ ଶାହା ତୋଗଲକ ୧୩୬୦ ଖ୍ରୀ:ରେ ଓଡ଼ିଶା ଆକ୍ରମଣ କରିଥିଲେ । ଏହି ଆକ୍ରମଣ ସମୟରେ ସେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଧ୍ୱଂସ କରିଥିଲେ ବୋଲି ତାଙ୍କ ଦରବାରର ବିବରଣୀ ଲେଖକ ଲେଖିଯାଇଛନ୍ତି । ମାତ୍ର ସେ ପୁରୀ ଯାଇଥିବାର କୌଣସି ପ୍ରମାଣ ମିଳୁନାହିଁ । ବୋଧହୁଏ କଟକଠାରେ ଥିବା ତୃତୀୟ ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ ଶ୍ରୀଜଗନ୍ନାଥ ମନ୍ଦିରକୁ ସେ ଭାଙ୍ଗିଥିଲେ ମାତ୍ର ଭ୍ରମବଶତଃ କିମ୍ବା ଅତିରଞ୍ଜନର ଆଶ୍ରୟରେ ସେ ପୁରୀର ଶ୍ରୀମନ୍ଦିର ଧ୍ୱଂସ କରିଥିଲେ ବୋଲି ଲେଖାଯାଇଛି ।

ଅତଏବ କଟକର ଏହି ମନ୍ଦିର ନିର୍ମାଣରେ ୧୩୦ ବର୍ଷ ପରେ ଏହା ଭଙ୍ଗା-ଯାଇଥିଲା । ଏହି ମନ୍ଦିରର ଅବସ୍ଥିତି କେଉଁଠି ଥିଲା ସେ ସମ୍ପର୍କରେ କୌଣସି ପ୍ରତ୍ନତାତ୍ତ୍ୱିକ ଅବଶେଷ ଅଦ୍ୟାବଧି ମିଳିନାହିଁ । କଟକର ବାରବାଟୀ ଦୁର୍ଗର ଅନତିଦୂରରେ "ଦେଉଳସାହି" ବୋଲି ଏକ ଅଞ୍ଚଳ ରହିଛି । ଏଠାରେ ଏବେ ସେପରି ଉଲ୍ଲେଖଯୋଗ୍ୟ ଦେଉଳ ବା ମନ୍ଦିର ଦେଖାଯାଏ ନାହିଁ । ପ୍ରାଚୀନ ଜଗନ୍ନାଥ ମନ୍ଦିର ଏଠାରେ ପ୍ରତିଷ୍ଠିତ ଥିଲା ବୋଲି ବିଶ୍ୱାସ କରିବାର ଯଥେଷ୍ଟ କାରଣ ରହିଛି । ସେ ମନ୍ଦିର ଭାଙ୍ଗି ଯାଇଥିଲେହେଁ ତାହାର ସ୍ମୃତି ଚିହ୍ନ ସ୍ୱରୂପ ଏହି ସ୍ଥାନ (ସାହି) ନାମଟି ରହିଛି ।

ଅତଏବ କଟକର ବହୁ ସ୍ଥାନ (ସାହି) ନାମରୁ ଅତୀତର ବିସ୍ମୃତ କୀର୍ତ୍ତି ତଥା ଘଟଣାର ଉଦ୍ଧାର କରାଯାଇ ପାରେ ଏବଂ ଏହାର ଆଧାରରେ ପ୍ରମାଣିତ ବିବରଣୀ ବା ଲିପିର ଲେଖକମାନେ ଯେଉଁ ଭୁଲ କରନ୍ତି ତାହା ସୁଧାରି ଦିଆଯିବାର ସମ୍ଭାବନା ରହିଛି । କଟକର ଇତିହାସ ରଚନା କରାଗଲାବେଳେ ଅସଂଗତି ଓ ଶୂନ୍ୟତାକୁ ସଂଗତି ଓ ପୂର୍ତ୍ତି କରିବା ପାଇଁ ଏହା ସହାୟକ ହେବ ।

## ଜନଶ୍ରୁତି ଓ ଇତିହାସ :

ସାରା ପୃଥିବୀର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ରାଜଧାନୀ ବା ନଗର ଆଦିର ଗୁରୁତ୍ୱ ଓ ପ୍ରସିଦ୍ଧି ତାହାର ଭୌଗୋଳିକ ସ୍ଥିତି ଉପରେ ବିଶେଷ ନିର୍ଭରଶୀଳ । ଅତୀତରେ ସାମରିକ କାରଣରୁ ଦୁର୍ଗ ପ୍ରତିଷ୍ଠିତ ହେଉଥିଲା, ଏହିସବୁ ଦୁର୍ଗ ବା ଗଡ଼କୁ କେନ୍ଦ୍ର କରି ନଗର ଗଢ଼ି ଉଠୁଥିଲା ମାତ୍ର ଏଥିମଧ୍ୟରୁ ଅଧିକାଂଶ ସମୟ କ୍ରମେ ପରିତ୍ୟକ୍ତ ଓ ବିଶ୍ମୃତ ହୋଇଯାଉଥିଲା । କେବଳ ଯେଉଁସବୁ ଦୁର୍ଗ ବା ରାଜଧାନୀ ତିଷ୍ଠି ରହୁଥିଲା ସେଉଁଗୁଡ଼ିକ ଗମନାଗମନ ଦୃଷ୍ଟିରୁ ସାମରିକ ତଥା ସାମାଜିକ ଓ ବାଣିଜ୍ୟିକ ଗୁରୁତ୍ୱର ଅଧିକାରୀ ହେଉଥିଲା ।

କଟକ ନଗରର ପ୍ରତିଷ୍ଠା ପ୍ରାଥମିକ ଭାବରେ ଏକ ସାମରିକ ସ୍କନ୍ଧାବାର ବା ସୈନ୍ୟଶିବିର ଭାବରେ ହୋଇଥିଲେହେଁ ଗମନାଗମନର ସୁବିଧା ହେତୁ ଏହା ଧାରାବାହିକ ଭାବେ ଅଧିକରୁ ଅଧିକ ଗୁରୁତ୍ୱ ଲାଭ କରି ବର୍ତ୍ତମାନ ଓଡ଼ିଶାର ଶ୍ରେଷ୍ଠ ନଗର ରୂପେ ପ୍ରତିଷ୍ଠା ଲାଭ କରିଅଛି ।

ଅଧିକାଂଶ ପ୍ରାଚୀନ ରାଜ୍ୟ ବା ନଗର ଇତିହାସ କିମ୍ବଦନ୍ତୀର ରହସ୍ୟମୟ ଜଗତରେ ଲୁକ୍କାୟିତ ହୋଇ ରହିଥାଏ । କଟକର ଇତିହାସ ମଧ୍ୟ ସେହିପରି ତଥ୍ୟ ପ୍ରମାଣ ଉପରେ ପର୍ଯ୍ୟବସିତ ନହୋଇ ମୁଖ୍ୟତଃ କିମ୍ବଦନ୍ତୀ ଆଶ୍ରିତ ହୋଇ ରହିଛି । ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟର୍ଲିଂ ସାହେବ ଓଡ଼ିଶାର ଇତିହାସ ଲେଖିଲାବେଳେ ମୁଖ୍ୟତଃ ମାଦଳାପାଞ୍ଜିକୁ ତାଙ୍କର ଆଧାର ଗ୍ରନ୍ଥ ଭାବରେ ବ୍ୟବହାର କରିଥିଲେ । ସେହି ଗ୍ରନ୍ଥ ଆଧାରରେ ସେ କଟକ ନଗର ସମ୍ପର୍କରେ ଯାହା ଲେଖିଥିଲେ, ତାହା ନିମ୍ନରେ ଉଦ୍ଧାର କରାଯାଉଛି ।

"Raja Nrupa Keshari × × is said to have first planted a city on the present site of modern Cuttack, about AD. 989. The reign of Markat Keshari was distinguissed for the Construction of a stone revetment on embankment faced with that material (probably the anicient one of which the remains one yet to be seen) to protect the new Capital from inanndation on AD. 1006

ଅର୍ଥାତ୍ କୁହାଯାଏ ଯେ, ନୃପ କେଶରୀ ବର୍ତ୍ତମାନର କଟକ ନଗରୀ ଥିବା ସ୍ଥାନରେ ପ୍ରଥମେ ଏକ ନଗରୀ ଖ୍ରୀଷ୍ଟାବ୍ଦ ୯୮୯ରେ ପ୍ରତିଷ୍ଠା କରିଥିଲେ । ମର୍କତ କେଶରୀଙ୍କ ରାଜତ୍ୱ କାଳର ଉଲ୍ଲେଖଯୋଗ୍ୟ ଘଟଣା ହେଲା, ଏହି ନଗରକୁ ବନ୍ୟା ହାତରୁ ରକ୍ଷା କରିବା ପାଇଁ ୧୦୦୬ ଖ୍ରୀଷ୍ଟାବ୍ଦରେ କାଠଯୋଡ଼ି ନଦୀର ପଥରବନ୍ଧ ନିର୍ମାଣ । ଷ୍ଟର୍ଲିଂଙ୍କ ଦ୍ୱାରା ଉଲ୍ଲିଖିତ ରାଜାମାନଙ୍କୁ ସୋମବଂଶୀ ରାଜା ବୋଲି ବିଶ୍ୱାସ କରାଯାଉଥିଲେହେଁ ତାହାର ଐତିହାସିକ ଭିତ୍ତି ପ୍ରମାଣିତ କରିହୁଏ ନାହିଁ । ନୃପ କେଶରୀ ଓ ମର୍କତ କେଶରୀ ଏହି ଦୁଇ ରାଜାଙ୍କ ନାମ ସମ୍ପର୍କରେ ଏ ପର୍ଯ୍ୟନ୍ତ କୌଣସି ସ୍ଥିର ନିଶ୍ଚିତ ପ୍ରମାଣ ମିଳେନାହିଁ । କେବଳ ଦୁଇଟି ଅବଶିଷ୍ଟାଂଶରୁ ଏହି କିମ୍ବଦନ୍ତୀର ଐତିହାସିକତା ପ୍ରମାଣିତ ହୁଏ; ତାହା ହେଲା ପ୍ରଥମେ ପ୍ରତିଷ୍ଠିତ ଅଭିନବ ବାରଣାସୀ କଟକ ଦୁର୍ଗ ନାମର ଅବଶେଷ "ବିଡ଼ାନାସୀ" ଏବଂ କାଠଯୋଡ଼ି ନଦୀ ତୀରସ୍ଥ ଅତି ପ୍ରାଚୀନ ପଥରବନ୍ଧର ଅବଶେଷ ।

ଅତି ପ୍ରାଚୀନ କାଳରୁ ଭାରତର ବିଭିନ୍ନ ଅଞ୍ଚଳର ଲୋକମାନେ ଓଡ଼ିଶାକୁ ଆସିଛନ୍ତି । କେତେକ ଧାର୍ମିକ ଉଦ୍ଦେଶ୍ୟରେ ଓଡ଼ିଶା ଆସିଥିବାବେଳେ ଅନ୍ୟମାନେ ସାମରିକ ଅଭିଯାନରେ ଏ ଅଞ୍ଚଳକୁ ଆସିଥିବା ଜଣାଯାଏ । ସମ୍ରାଟ ଅଶୋକ ଖ୍ରୀଷ୍ଟପୂର୍ବ କାଳରେ କଳିଙ୍ଗ ଆକ୍ରମଣ କରିଥିଲେ ଏବଂ ତାଙ୍କର ଶିଳାଲେଖରୁ ହିଁ ଓଡ଼ିଶା ଇତିହାସର ଅଯୁମାରମ୍ଭ ବୋଲି ସାଧାରଣତଃ ସ୍ୱୀକୃତ । ଏ ସମସ୍ତ ବ୍ୟକ୍ତିମାନଙ୍କର ଯାତ୍ରାପଥରେ କାଠଯୋଡ଼ି ମହାନଦୀର ତ୍ରିକୋଣଭୂମିର ଏହି ଶୀର୍ଷ ସ୍ଥାନ ଏକ ଉଲ୍ଲେଖଯୋଗ୍ୟ "ଘାଟ" ରୂପେ ବ୍ୟବହୃତ ହେଉଥିବା ନିଶ୍ଚିତ । କାରଣ ଅରଣ୍ୟ ପର୍ବତ ସଙ୍କୁଳ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳ ତଥା ଉପକୂଳବର୍ତ୍ତୀ ନଦୀନାଳ ବିଭକ୍ତ ଗମନାଗମନ ଅନୁପଯୁକ୍ତ ଅଞ୍ଚଳ ମଧ୍ୟବର୍ତ୍ତୀ ଏହି ସ୍ଥାନହିଁ ଥିଲା ବାସ୍ତବରେ ଯାତାୟାତ ଦିଗରୁ ଏକ ସୁବିଧାଜନକ ସ୍ଥାନ । ପୁନଶ୍ଚ, ମହାନଦୀ ଏକ ଜଳପଥ ଭାବରେ ବ୍ୟବହୃତ ହେଉଥିବାରୁ କଟକ ନିରବଚ୍ଛିନ୍ନ ଭାବରେ ପ୍ରାୟ ଏକ ହଜାର ବର୍ଷଧରି ଓଡ଼ିଶାର ସାମାଜିକ ରାଜନୈତିକ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି ।

କଟକ ନଗର ସମ୍ପର୍କରେ ଯେଉଁ କେତେକ ଉଲ୍ଲେଖଯୋଗ୍ୟ ବିବରଣୀ ଦେଖିବାକୁ ମିଳିଥାଏ ସେଗୁଡ଼ିକ ମଧ୍ୟରୁ କେତୋଟି ହେଲା—

୧—ମାଦଳାପାଞ୍ଜିର କାହାଣୀ ।

୨—ତାରିଖ-ଇ-ଫିରୋଜସାହି ନାମକ ଗ୍ରନ୍ଥର ବିବରଣୀ (୧୩୬୦ ଖ୍ରୀ:ରେ ଫିରୋଜସାହାଙ୍କ ଜାଜନଗର ବା ଓଡ଼ିଶା ଆକ୍ରମଣ ସମ୍ପର୍କରେ)

୩—ଆଇନ୍-ଇ-ଆକବରୀର ବିବରଣୀ (୧୫୫୬ ଖ୍ରୀ:ରୁ ୧୫୯୫ ଖ୍ରୀ: ପର୍ଯ୍ୟନ୍ତ)

୪—ଉଇଲିୟମ୍ ବ୍ରୁଟନ୍‌ଙ୍କ ଭ୍ରମଣ ବୃତ୍ତାନ୍ତ (୧୬୩୩ଖ୍ରୀ.)

୫—ଥମାସ୍ ମୋଟ୍‌ଙ୍କ ଭ୍ରମଣ ବୃତ୍ତାନ୍ତ (୧୭୬୬ ଖ୍ରୀ·)

୬—ଆଣ୍ଡ୍ରୁ ଷ୍ଟାର୍ଲିଂଙ୍କ ଓଡ଼ିଶା ଇତିହାସ (୧୮୨୨ ଖ୍ରୀ:)

୭—ଉଇଲିୟମ୍ ହଣ୍ଟରଙ୍କ ରଚିତ ଇତିହାସ (୧୮୭୨ ଖ୍ରୀ:)

୮—ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ଇଣ୍ଡିଆନ ଆଣ୍ଟିକ୍ୱେରି (୧୮୭୬ଖ୍ରୀ:) ଓ ବଙ୍ଗୀୟ ଏସିଆଟିକ୍ ସୋସାଇଟି ପତ୍ରିକା (୧୮୭୭ ଖ୍ରୀ:)ରେ ପ୍ରକାଶିତ ପ୍ରବନ୍ଧ ।

୯—ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ରଚିତ ଇତିହାସ ।

୧୦—ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ "ବାରବାଟୀ" ସମ୍ପର୍କୀୟ ଇତିହାସ ।

ଏହାପରେ ଅନ୍ୟାନ୍ୟ ଆଧୁନିକ ଐତିହାସିକମାନଙ୍କ ଦ୍ୱାରା ରଚିତ ପ୍ରାମାଣିକ ଇତିହାସ ଗ୍ରନ୍ଥ ସବୁ ରହିଛି ମାତ୍ର ଉପରଲିଖିତ ପୂର୍ବବର୍ତ୍ତୀ ଐତିହାସିକମାନଙ୍କ ରଚିତ ଇତିହାସର କାହାଣୀ ଉପରେ ଏହି ଲେଖାରେ ଆଲୋକପାତ କରାଯାଉଛି ।

ଦିଲ୍ଲୀରେ ତୋଗଲକ ବଂଶରେ ଫିରୋଜଶାହ ନାମକ ଜଣେ ରାଜା ୧୩୫୩ ଖ୍ରୀଷ୍ଟାବ୍ଦରୁ ୧୩୮୮ ଖ୍ରୀ: ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ସେ ୧୩୬୦ ଖ୍ରୀ:ରେ ଓଡ଼ିଶା ବା ଯାଜନଗର ଆକ୍ରମଣ କରିଥିଲେ । ସେତେବେଳେ ଓଡ଼ିଶାରେ ରାଜତ୍ୱ କରୁଥିଲେ ଗଙ୍ଗ ବଂଶର ତୃତୀୟ ଭାନୁଦେବ । ତାଙ୍କର ରାଜତ୍ୱକାଳ ୧୩୫୨ ଖ୍ରୀ:ରୁ ୧୩୭୮ ଖ୍ରୀ: ପର୍ଯ୍ୟନ୍ତ ବୋଲି ଇତିହାସରୁ ଜଣାଯାଏ । ଏହି ରାଜାଙ୍କ ନାମ ତାରିଖ୍ ଇ ଫିରୋଜ-ସାହୀରେ "ସିର୍‌ଭାନ୍ ଦେଓ" ବୋଲି ଲିଖିତ ହୋଇଛି ।

"ତାରିଖ୍-ଇ-ଫିରୋଜସାହୀ" ନାମକ ଦୁଇଟି ପାରସୀ ଭାଷାରେ ଲିଖିତ ଗ୍ରନ୍ଥ ମିଳେ । ଗୋଟିଏ ଗ୍ରନ୍ଥ ସାମସ୍-ଇ-ସିରାଜ୍ ଲେଖିଥିବା ବେଳେ ଅନ୍ୟ ଗ୍ରନ୍ଥଟିର ଲେଖ "ବାରଉନ ।"

ସାମସ୍-ଇ-ସିରାଜ୍ ରଚିତ ତାରିଖ୍ ଇ ଫିରୋଜସାହୀ ଗ୍ରନ୍ଥରେ କଟକକୁ "ବନାରସୀ" ବୋଲି ଉଲ୍ଲେଖ କରାଯାଇଛି । ଉଲ୍ଲେଖଯୋଗ୍ୟ ଯେ, ଉତ୍ତରପ୍ରଦେଶର ବନାରସ ଓ କଟକ ଉଭୟକୁ ମୁସଲମାନ ଲେଖକମାନେ ବନାରସୀ ଭାବରେ ଲେଖି ଯାଇଛନ୍ତି । ସେ ଲେଖିଛନ୍ତି, "ଫିରୋଜଶାହା ଅତି ପ୍ରଫୁଲ୍ଲ ଚିତ୍ତରେ ବନାରସୀ ମୁକାମରେ ପହଞ୍ଚିବାର ଇଚ୍ଛା ପ୍ରକାଶ କଲେ । ବନାରସୀର ସ୍ୱାଧୀନ ରାଜା ଆଦିଶ୍ୱର କୌଣସି କାରଣ ବଶତଃ ବନାରସୀରେ ନରହି ଅନ୍ୟ ସ୍ଥାନରେ ରହିଥିଲେ । ଫିରୋଜଶାହ ଆସି ବନାରସୀରେ ଉପସ୍ଥିତ ହୋଇଲେ । ବନାରସୀ କିଲ୍ଲାର ଆୟତନ ୩୦ କ୍ରୋଶ ଅଟେ ।

ପ୍ରତି କୋଣରେ ଲୋକମାନେ ବାସ କରନ୍ତି । ଲୋକମାନେ କହନ୍ତି ଯେ, ଏଠାକାର ରାଜାମାନେ ବ୍ରାହ୍ମଣ ଅଟନ୍ତି ଏବଂ ଯେଉଁ ରାଜା ସିଂହାସନ ଆରୋହଣ କରନ୍ତି ସେ ଆନନ୍ଦୋତ୍ସବର ଚିହ୍ନ ସ୍ୱରୂପ ସେହି କଲ୍ଲାରେ ଗୋଟିଏ ପକ୍କା ଘର ନିର୍ମାଣ କରନ୍ତି । ଏହି କାରଣରୁ ଏହି କଲ୍ଲାଟି ଅନେକ ବଡ଼ ଦେଖାଯାଏ । (ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ଅନୁବାଦ)

ଫିରୋଜଶାହଙ୍କର ଏହି ଓଡ଼ିଶା ଆକ୍ରମଣ ଏବଂ ବାରଣାସୀ-କଟକ ଅଧିକାର ୧୩୬୦-୬୧ ଖ୍ରୀ: ସଂଘଟିତ ହୋଇଥିଲା । ମାତ୍ର ସେ ସମୟରେ ଓଡ଼ିଶା ଦିଲ୍ଲୀ ଅଧୀନତା ସ୍ୱୀକାର କରିଥିବା ଜଣାଯାଏ ନାହିଁ । ଗଙ୍ଗବଂଶୀୟ ତୃତୀୟ ଭାନୁଦେବ ଏହା ପରେ ୧୩୭୮ ଖ୍ରୀ: ପର୍ଯ୍ୟନ୍ତ ଶାସନ କରିଥିଲେ ।

ତାରିଖ୍ ଇ-ଫିରୋଜସାହି ଗ୍ରନ୍ଥରୁ ଜଣାଯାଏ ଯେ, ସେତେବେଳେ ଓଡ଼ିଶାର ଜଙ୍ଗଲରେ ବହୁ ସଂଖ୍ୟକ ହାତୀ ରହୁଥିଲେ ଏବଂ ଦିଲ୍ଲୀର ସମ୍ରାଟଙ୍କର ଓଡ଼ିଶା ଆକ୍ରମଣ ପଶ୍ଚାତ୍‌ରେ ଓଡ଼ିଶାରୁ ହାତୀ ଧରିବା ଉଦ୍ଦେଶ୍ୟ ମଧ୍ୟ ଥିଲା । ଏହି ଗ୍ରନ୍ଥରେ ଅନ୍ୟ ଏକ ସ୍ଥାନରେ ଲେଖିଛନ୍ତି, ଫିରୋଜସାହଙ୍କର ଉଦ୍ଦେଶ୍ୟ ବନ୍ଧୁଭାବାପନ୍ନ ଥିଲା । ସେ ଶୁଣିଥିଲେ ଯେ, ଯାଜନଗର ଜଙ୍ଗଲରେ ଗାଁର ମେଣ୍ଢାପଲ ପରି ହାତୀ ଅଛନ୍ତି । ତେଣୁ ହାତୀ ଶିକାର ପାଇଁ ସେ ସେଠାକୁ ଯାଇଥିଲେ ।"

ଯେଉଁ ଜଙ୍ଗଲ ବିଷୟ କୁହାଯାଇଛି ତାହାର ନିକଟରେ ସାରଙ୍ଗଗଡ଼, ବାରଣାସୀ କଟକ ଓ ଯାଜନଗର (ଚଉଦ୍ୱାର) ଦୁର୍ଗର ବର୍ଣ୍ଣନା ଥିବାରୁ ଏହା 'ଚଉକା' ଜଙ୍ଗଲ ବୋଲି ମନେ ହୋଇଥାଏ । ଏହି ବର୍ଣ୍ଣନାରୁ ଆହୁରି ମଧ୍ୟ ଜଣାଯାଏ ଯେ ବାରଣସୀ-କଟକରେ ଥିବା ଏକ ପୁରୁଷୋତ୍ତମ ମନ୍ଦିରକୁ ସେ ଭାଙ୍ଗି ଦେଇଥିଲେ ଏବଂ ମୂର୍ତ୍ତିକୁ ଦିଲ୍ଲୀ ନେଇ ଯାଇଥିଲେ । ଫିରୋଜଶାହ ପୁରୀ ଯାଇଥିବାର କୌଣସି ପ୍ରମାଣ ମିଳୁ ନଥିବାରୁ ଏହି ମନ୍ଦିର କଟକ ଠାରେ ପ୍ରତିଷ୍ଠିତ କୌଣସି ଜଗନ୍ନାଥ ମନ୍ଦିର ଥିଲା । ଏହାର ମୂର୍ତ୍ତି ପ୍ରସ୍ତର ନିର୍ମିତ ବୋଲି ଜଣାଯାଏ ।

ଉଲ୍ଲେଖଯୋଗ୍ୟ ଯେ ୧୨୩୦ ଖ୍ରୀ:ରେ ପ୍ରଦତ୍ତ ନଗରୀ ତମ୍ବାପଟ୍ଟାରୁ ଜଣାଯାଏ ଯେ ଗଙ୍ଗନୃପତି ଅନଙ୍ଗଭୀମ ଦେବ ବାରଣାସୀ କଟକଠାରେ ଏକ ପୁରୁଷୋତ୍ତମ ମନ୍ଦିର ତୋଳାଇ ଥିଲେ । ଏହି ମନ୍ଦିରକୁ ଫିରୋଜସାହ ତାଙ୍କର ଆକ୍ରମଣ କାଳରେ ଭାଙ୍ଗି ଥିବା ଅନୁମାନ କରି ହୁଏ ।

ତାରିଖ୍-ଇ-ଫିରୋଜ ସାହି ବ୍ୟତୀତ ଆଇନ୍-ଇ-ଆକବରୀ ଗ୍ରନ୍ଥରୁ ମଧ୍ୟ କଟକର ଦୁର୍ଗ ସମ୍ପର୍କରେ ଅନେକ ବିଷୟ ଜାଣିବାକୁ ମିଳେ । ଏହି ଆଇନ୍-ଇ-ଆକବରୀ ଆବୁଲ ଫଜଲଙ୍କ ଦ୍ୱାରା ଲିଖିତ । ଏଥିରେ ଆକବରଙ୍କ ରାଜତ୍ୱର ୪୦ ବର୍ଷ ଅର୍ଥାତ୍ ୧୫୫୬, ଖ୍ରୀ:ରୁ ୧୫୯୫ ପର୍ଯ୍ୟନ୍ତର ବିବରଣୀ ଲିପିବଦ୍ଧ ।

ଓଡ଼ିଶାର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଏହି ସମୟରେ ମୁକୁନ୍ଦ ଦେବଙ୍କ ଦ୍ୱାରା ସୁପ୍ରସିଦ୍ଧ "ନବତଳ ପ୍ରସାଦ" ବାରବାଟୀ ଦୁର୍ଗରେ ନିର୍ମିତ

ହୋଇଥିଲା ଏବଂ ଏହାର ଅଳ୍ପ କେତେ ବର୍ଷ ପରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇ ଯାଇଥିଲା । ଉଲ୍ଲେଖଯୋଗ୍ୟ ୧୭୬୧ ଖ୍ରୀ:ରେ ଓଡ଼ିଶା ଆସିଥିବା ମୋଟ ସାହେବଙ୍କ ଲେଖାରେ 'ବାରବାଟୀ ଦୁର୍ଗ' ନାମ ମିଳିଥାଏ । ପୂର୍ବରୁ ଏହି ଦୁର୍ଗ ସମ୍ପର୍କୀୟ ବର୍ଣ୍ଣନା ବିଭିନ୍ନ ବୃତ୍ତାନ୍ତରୁ ମିଳୁଥିଲେ ହେଁ ଏହି ନାମର ପରିଚୟ ମୋଟ୍ ସାହେବଙ୍କର ଲେଖାରୁ ହିଁ ମିଳିଥାଏ । ଅବଶ୍ୟ, ମାଦଳା ପାଞ୍ଜିରେ 'ବାରବାଟୀ' ଗ୍ରାମ ନାମରେ ଉଲ୍ଲେଖ ମିଳେ ।

ବାରବାଟୀ ଦୁର୍ଗର ନବତଳ ପ୍ରାସାଦ ସମ୍ପର୍କରେ ମାଦଳା ପାଞ୍ଜିରେ କୌଣସି ଉଲ୍ଲେଖ ନଥିବା ବାସ୍ତବରେ ଆଶ୍ଚର୍ଯ୍ୟର ବିଷୟ । ତେବେ କଟକରେ ଥିବା ରାଜପ୍ରାସାଦ ସମ୍ପର୍କରେ ମାଦଳା ପାଞ୍ଜିରେ ଲେଖାଅଛି । ଗୋବିନ୍ଦ ବିଦ୍ୟାଧରଙ୍କ ରାଜତ୍ୱ କାଳ ସମ୍ପର୍କରେ ଲେଖା ଯାଇଥିବା ଅଂଶରେ କଟକରେ ଦୁଇଟି ରାଜପ୍ରସାଦ ଥିବା ଜଣାଯାଏ । ଏଥିମଧ୍ୟରୁ ଗୋଟିକୁ 'ଶ୍ରୀନବର' ଓ ଅନ୍ୟ ପ୍ରାସାଦକୁ 'ମାଣିଖଣ୍ଡି ଶ୍ରୀନବର' ବୋଲି କୁହାଯାଉଥିଲା । ମାତ୍ର ଏହି ବର୍ଣ୍ଣନାର ସମୟ ୧୫୬୦ ଖ୍ରୀ: ପୂର୍ବର ହୋଇଥିବାରୁ ଏହା ନବତଳ ପ୍ରାସାଦକୁ ବୁଝାଉଥିବା ସମ୍ଭବ ନୁହେଁ ।

ଓଡ଼ିଶାରେ ୧୬୬୦ ଖ୍ରୀ:ରୁ ୧୬୬୫ ଖ୍ରୀ: ପର୍ଯ୍ୟନ୍ତ ଦେଓ୍ୱାନ ଥିବା 'ହାସାନ' ନାମକ ବ୍ୟକ୍ତି 'ମାଗ୍‌କାତ-ଇ-ହାସାନ' ନାମକ ବିବରଣୀ ଲେଖିଛନ୍ତି । ତାଙ୍କର ବିବରଣୀରେ ସେ ଜଣେ ରାଜାଙ୍କୁ କଟକର 'ମାନଖଣ୍ଡି ଦୁର୍ଗ'ରେ ଅଟକ କରି ରଖିଥିବା ଜଣାଯାଏ । ଇତିମଧ୍ୟରେ ବାଣିଜ୍ୟ ଉଦ୍ଦେଶ୍ୟରେ କଟକ ଆସିଥିବା ଉଇଲିୟମ ବ୍ରୁଟନ ନାମକ ବ୍ୟକ୍ତି ମଧ୍ୟ 'ମାଲକାଣ୍ଡିର ରାଜକୀୟ ଦରବାର' ବିଷୟ ଲେଖିଛନ୍ତି । ଏହି 'ମାଣିଖଣ୍ଡି' 'ମାନଖଣ୍ଡି' ବା 'ମାଲକାଣ୍ଡି' ସମସ୍ତ ନାମ ସମ୍ଭବତଃ ଗୋଟିଏ ପ୍ରାସାଦର ନାମ ଏବଂ ପୂର୍ବରୁ ନିର୍ମିତ ପ୍ରସାଦର ନାମାନୁସାରେ ପରବର୍ତ୍ତୀ କାଳରେ ନିର୍ମିତ ରାଜ-ପ୍ରାସାଦ ମଧ୍ୟ ନାମିତ ହୋଇଥିବା ସମ୍ଭବ ।

ଏହି ପ୍ରାସାଦର ଧ୍ୱଂସାବଶେଷ ବା ସଠିକ ରୂପରେଖ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଅଦ୍ୟାବଧି ମିଳିନାହିଁ । ଯେଉଁ ମାଟିଢିପଟି ବାରବାଟୀ ଦୁର୍ଗ ମଧ୍ୟରେ ଦେଖାଯାଏ ତାହା ଏହି ଅଟ୍ଟାଳିକାର ଧ୍ୱଂସାବଶେଷକୁ ଗର୍ଭରେ ଧାରଣ କରିଥିବା ମନେହୁଏ । ପ୍ରତ୍ନତାତ୍ତ୍ୱିକ ସଂସ୍ଥାଦ୍ୱାରା ଏହାର ଖୋଦନ କାର୍ଯ୍ୟ କରାଗଲା ପରେ ଏହି ପ୍ରାସାଦର ନକ୍ସା ସମ୍ପର୍କରେ ଏକ ସ୍ପଷ୍ଟଚିତ୍ର ହୁଏତ ମିଳିପାରିବ ।

ଐତିହାସିକ ଘନଶ୍ୟାମ ଦାସ 'ମାଲକାଣ୍ଡି' ନାମକୁ ମହାନଗରର ବିକୃତ ଉଚ୍ଚାରଣ ବୋଲି ମନେକରିଛନ୍ତି । ଆଉ କେତେକ ଏହା ବାରବାଟୀ ଦୁର୍ଗଠାରୁ ଭିନ୍ନ ଅନ୍ୟଏକ ଦୁର୍ଗର ନାମ ବୋଲି ମଧ୍ୟ ବିଶ୍ୱାସ କରିଥାନ୍ତି । ଓଡ଼ିଶାରେ ନଦୀଖଣ୍ଡସ୍ଥ ବହୁସ୍ଥାନ 'ଖଣ୍ଡି' ପ୍ରାନ୍ତଃଯୋଜକ ଯୁକ୍ତହୋଇ ନାମିତ ହୋଇଥିବାରୁ ଏହା ବାରବାଟୀ ଦୁର୍ଗ ମଧ୍ୟସ୍ଥ ଏକ ସ୍ଥାନ ନାମ ଏବଂ ଏହିଠାରେ ହିଁ ରାଜପ୍ରସାଦ ନିର୍ମିତ ହୋଇଥିଲା ।

ପରବର୍ତ୍ତୀ କାଳରେ ନବତଳ ପ୍ରାସାଦ ମଧ୍ୟ ଏହିଠାରେ ନିର୍ମିତ ହୋଇଥିବା ଏବଂ ତାହା ମଧ୍ୟ 'ମାଣିଖଣ୍ଡି ଶ୍ରୀନବର' ଭାବରେ ନାମିତ ହୋଇଥିବା ଅସମ୍ଭବ ନୁହେଁ ।

କେବଳ ଆଇନ୍-ଇ-ଆକବରୀ ଗ୍ରନ୍ଥରେ ଏହି ନବତଳ ପ୍ରାସାଦର ନାମୋଲ୍ଲେଖ ରହିଛି ଏବଂ ଏହା ସହିତ ବିଭିନ୍ନ ମହଲ କେଉଁ କେଉଁ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା ତାହାର ଉଲ୍ଲେଖ ରହିଛି । ପରମାନନ୍ଦ ଆଚାର୍ଯ୍ୟଙ୍କ ପରି କେତେକ ଐତିହାସିକ ଏହା 'କାଳ୍ପନିକ' ତଥା ଜନଶ୍ରୁତିରୁ ଉଦ୍ଧାର କରି ଆବୁଲ୍-ଫଜଲ୍ ଏହା ଉଲ୍ଲେଖ କରିଥିବା ସମ୍ଭବ ବୋଲି ଲେଖିଯାଇଛନ୍ତି ।

ମାତ୍ର ଯେତେଦୂର ମନେହୁଏ ବାରବାଟୀର ମାଟିଗୁମ୍ଫ ତଳେ ଏକ ସୁଉଚ୍ଚ ପ୍ରାସାଦର ଭଗ୍ନସ୍ତୂପ ପଡ଼ିଥିବା ଅଂଶ ଲୁକ୍କାୟିତ ରହିଛି । ଏହି ପ୍ରାସାଦ ବାହାର ଦୁନିଆରେ 'ନବତଳ ପ୍ରାସାଦ' ନାମରେ ପରିଚିତ ଥିଲେହେଁ ଓଡ଼ିଶାରେ ଏହା ମାଣିଖଣ୍ଡି ଶ୍ରୀନବର ବା ଶ୍ରୀନବର ନାମରେ ଲୋକପ୍ରିୟ ଥିଲା । ହୁଏତ ଏହା ବହୁତଳ ବିଶିଷ୍ଟ ହୋଇଥିବ । ମାତ୍ର ବାହ୍ୟତଃ ଏକ ନବତଳ ପ୍ରାସାଦର ଭ୍ରମ ସୃଷ୍ଟି କରୁଥିବାରୁ ତାହା ଶୁଣି ଆବୁଲ୍-ଫଜଲ ଏହାକୁ 'ନବତଳ ପ୍ରାସାଦ' ନାମ ଦେଇଛନ୍ତି ।

ଓଡ଼ିଶାରେ ମୁସଲମାନ ଶାସନ ପ୍ରତିଷ୍ଠିତ ହେବାପରେ ଅଧିକାଂଶ ବିବରଣୀ ଲିପିବଦ୍ଧ ଭାବରେ ରହିଥିବାରୁ ସେ ସମ୍ପର୍କରେ ଜନଶ୍ରୁତିର ଭୂମିକା କ୍ରମଶଃ ଗୌଣ ହୋଇ ଆସିଛି । ଏହାପରଠାରୁ କଟକର ସାମରିକ ଗୁରୁତ୍ୱ ହ୍ରାସ ପାଇ ସାମାଜିକ ଗୁରୁତ୍ୱର ବୃଦ୍ଧି ଘଟିଛି ।

କଟକର ବିଭିନ୍ନ ସାହିବସ୍ତି ତଥା ମଠ-ମନ୍ଦିର-ମସ୍‌ଜିଦ ପ୍ରତିଷ୍ଠାର କାହାଣୀରୁ ଏହି ସମୟର ଶାସକ ଓ ଶାସକର ବ୍ୟକ୍ତି ତଥା ସାମାଜିକ ବ୍ୟବସ୍ଥା ସମ୍ପର୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମିଳିଥାଏ । ଏହିସବୁ ତଥ୍ୟ ମଧ୍ୟରୁ ଅନେକ କୌତୂହଳ ଉଦ୍ଦୀପନା କରିଥାଏ ।

ପୂର୍ବରୁ କୁହାଯାଇଛି ଯେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଅର୍ଥାତ୍ ୧୫୬୮ ଖ୍ରୀ:ରେ ଓଡ଼ିଶା ମୁସଲମାନ ଅଧିକୃତ ହୋଇ ନିଜର ସ୍ୱାଧୀନତା ହରାଇଥିଲା । ମାତ୍ର ମୁସଲମାନ ଆକ୍ରମଣକାରୀମାନେ ଓଡ଼ିଶା ଆକ୍ରମଣ କରିଥିଲେ । କଟକ ନଗରରେ ଗଙ୍ଗବଂଶ ଶାସନକାଳରେ ଘଟିଥିବା ଏହିପରି ଏକ କୌତୁକ ପ୍ରଦ ଘଟଣାର ଆଲୋଚନା କରାଯାଉଛି ।

ଗଙ୍ଗବଂଶର ଚତୁର୍ଥ ଭାନୁଦେବଙ୍କ ରାଜତ୍ୱକାଳରେ ୧୪୨୧-୨୨ ଖ୍ରୀ:ରେ ମାଳବର ସୁଲତାନ ହୋସାଙ୍ଗସାହ କେତେକ ଘୋଡ଼ା ସହିତ ଓଡ଼ିଶାର ରାଜଧାନୀ ଅଭିନବ ବାରଣାସୀ କଟକଠାରେ ଉପସ୍ଥିତ ହୋଇଥିଲେ । ତୁରସ୍କ ଦେଶରୁ ଘୋଡ଼ା ଆଣି ଓଡ଼ିଶା ତଥା ଭାରତର ରାଜଦରବାରରେ ବିକ୍ରୟ କରୁଥିବା ମୁସଲମାନ ଘୋଡ଼ା ବେପାରୀ

ବେଶରେ ସେ ଆସିଥିବାରୁ ସମ୍ଭବତଃ ତାଙ୍କୁ କେହି ସନ୍ଦେହ କରି ନ ଥିଲେ । କଟକର ଉପକଣ୍ଠରେ ରହି ସେ ରାଜାଙ୍କୁ ଘୋଡ଼ା ତଥା ଅନ୍ୟାନ୍ୟ ବିଦେଶୀ ପଦାର୍ଥ ପସନ୍ଦ କରିବାକୁ ଆମନ୍ତ୍ରଣ କରିଥିଲେ । ଭାନୁଦେବ ସେଠାରେ ପହଞ୍ଚିବା ମାତ୍ରେ ହୋସାଙ୍ଗସାହି ତାଙ୍କୁ ନିଜ ଶିବିରରେ ବନ୍ଦୀ କରି ରଖିଥିଲେ । ପରେ ନାନାଦି ଉପଢ଼ୌକନ ତଥା ହାତୀ ଉପହାର ସ୍ୱରୂପ ପାଇବାପରେ କଟକରୁ ନିଜ ରାଜ୍ୟକୁ ଫେରିଯାଇଥିଲେ । ଫେରିବା ବେଳେ କେହି ଆକ୍ରମଣ କରିବା ଭୟ ଥିବାରୁ ଓଡ଼ିଶାର ସୀମାଯାଏ ସେ ଭାନୁଦେବଙ୍କୁ ବନ୍ଦୀ କରି ନେଇଯାଇଥିଲେ ବୋଲି ଜଣାଯାଏ । ସେଠାରୁ ତାଙ୍କୁ ମୁକ୍ତ କରି ଦେଇଥିଲେ ।

ତତ୍କାଳୀନ ଓଡ଼ିଶାର ରାଜଧାନୀ ଅଭିନବ ବାରଣାସୀ କଟକରୁ ଏଠାକାର ରାଜାଙ୍କୁ ନିର୍ବିଘ୍ନରେ ବନ୍ଦୀ କରି ନେଇଯିବା ଘଟଣାରୁ ସେତେବେଳର ରାଜଶକ୍ତିର ଦୁର୍ବଳତା ଧରା ପଡ଼ି ଯାଇଥାଏ । ଏହି ସମୟରେ ଗଙ୍ଗରାଜା ମତ୍ତଭାନୁ ଦେବଙ୍କୁ ଗାଦିଚ୍ୟୁତ କରି କପିଳେନ୍ଦ୍ର ଦେବ ସୂର୍ଯ୍ୟବଂଶର ପ୍ରତିଷ୍ଠା କରିଥିଲେ । ସେ ଥିଲେ ପୂର୍ବ ରାଜାଙ୍କର ସେନାପତି । ଏହିଠାରୁ କ୍ରମାନ୍ୱୟରେ ଦୁର୍ବଳ ରାଜାମାନଙ୍କୁ ପଦଚ୍ୟୁତ କରି ତାଙ୍କର ବଳଶାଳୀ ସେନାପତିମାନେ ଓଡ଼ିଶାର ଶାସନ ଗାଦି ଦଖଲ କରିବା ଏକ ପ୍ରଥା ଭାବରେ ପ୍ରଚଳିତ ହୋଇଥିଲା । ସୂର୍ଯ୍ୟବଂଶର ଭୃତ୍ୟ ରାଜା ପ୍ରତାପରୁଦ୍ର ଦେବଙ୍କର ପୁତ୍ରମାନଙ୍କୁ ହତ୍ୟା କରି ଗୋବିନ୍ଦ ଭୋଇ ବିଦ୍ୟାଧର ରାଜଗାଦି ଅଧିକାର କରିଥିଲେ । ମାଦଳାପାଞ୍ଜିରେ ଲେଖାଅଛି ।

“ପ୍ରତାପରୁଦ୍ର ଦେବ ମହାରାଜାଙ୍କର ବତିଶ ପୁଅ ଥିଲେ । ତାହାଙ୍କୁ ଗୋବିନ୍ଦ ଦେବ ମହାରାଜାଏ ମରାଇ ପକାଇଲେ । କଟକ ସିଂହଦ୍ୱାରେ ମଧୁ ଶ୍ରୀଚନ୍ଦନ ମହାପାତ୍ର ଥାଇ ମରାଇ ପକାଇଲେ ।

ଏହି ରାଜବଂଶର ଭୃତ୍ୟ ପୁରୁଷ ଅର୍ଥାତ ଗୋବିନ୍ଦ ବିଦ୍ୟାଧରଙ୍କ ନାତିକୁ ହତ୍ୟାକରି ଦକ୍ଷିଣ ଓଡ଼ିଶାର ଚାଳୁକ୍ୟ ବଂଶୀୟ ସାମନ୍ତ ମୁକୁନ୍ଦଦେବ ନିଜ ରାଜା ହୋଇଥିଲେ । ସେ ତେଲିଙ୍ଗା ମୁକୁନ୍ଦଦେବ ନାମରେ ପରିଚିତ ଥିଲେ ଏବଂ ସେନାପତି କାର୍ଯ୍ୟ କରୁଥିଲେ । ୧୫୬୮ ଖ୍ରୀ.ରେ ଏହି ବଂଶର ପତନ ଘଟିଥିଲା ଏବଂ ଓଡ଼ିଶା ମୁସଲମାନ ଶାସନାଧୀନ ହୋଇଥିଲା । ଅତଏବ ୧୪୩୫ ଖ୍ରୀ.ରୁ ୧୫୬୮ ଖ୍ରୀ. ମଧ୍ୟରେ ଓଡ଼ିଶାର ତିନିଜଣ ସେନାପତି ରାଜସିଂହାସନ ଅଧିକାର କରିଥିବାର ଦେଖାଯାଏ ।

ଏହି ସମୟର ବିଭିନ୍ନ ଘଟଣା ଦୁର୍ଘଟଣାର ବିବରଣୀ ଲିପିବଦ୍ଧ ରୂପରେ ମିଳୁଥିବାରୁ ଏ ସମ୍ପର୍କରେ ବିଶେଷ ବାଦ ବିସମ୍ବାଦ ଦେଖାଯାଏ ନାହିଁ ।

ନାନକ ଚୈତନ୍ୟ ଆଦି ବହୁ ମହାପୁରୁଷ ଏ ସମୟରେ ଓଡ଼ିଶା ଆସିଥିଲେ । ସେମାନଙ୍କର ଆଗମନ ସମ୍ପର୍କରେ ବିଭିନ୍ନ ସ୍ଥାନରେ ନାନା କଥା ଉଲ୍ଲେଖ ରହିଛି । ଶ୍ରୀ ଚୈତନ୍ୟଙ୍କ ଆଗମନ ତଥା ଧର୍ମପ୍ରଚାରର ଇତିବୃତ୍ତ ଓଡ଼ିଶାରେ ବହୁ ଭାବେ

ଆଲୋଚିତ ହୋଇଥିଲେହେଁ ନାନକଙ୍କ ଆଗମନ ସମ୍ପର୍କରେ ବିଶେଷ କିଛି ଚର୍ଚ୍ଚା ହୋଇନାହିଁ ।

ନାନକ ୧୪୬୯ ଖ୍ରୀ:ରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୫୩୮ ଖ୍ରୀ: ପର୍ଯ୍ୟନ୍ତ ଜୀବିତ ରହି ଶିଖ୍ ଧର୍ମମତର ପ୍ରଚାର କରି ଯାଇଥିଲେ । ଓଡ଼ିଶାରେ ପ୍ରତାପରୁଦ୍ରଦେବଙ୍କ ଶାସନ କାଳରେ ୧୫୦୭ ଖ୍ରୀ:ରେ ନାନକ ଓ ତାଙ୍କର ପିତା କାଲୁ‌ବେଦୀ ଓଡ଼ିଶାକୁ ଆସିଥିଲେ ବୋଲି ଜଣାଯାଏ । ସେ ପୁରୀ ଦର୍ଶନ କରିଯିବା ବାଟରେ ଉତ୍କଳର ସଙ୍ଗତ ତଥା ନିକଟସ୍ଥ ନାନକଉଡ଼ି ସ୍ଥାନରେ ଅବସ୍ଥାନ କରିଥିଲେ । ଏହା ବ୍ୟତୀତ ସେ କଟକ ନିକଟସ୍ଥ ଏକ ସ୍ଥାନରେ ମଧ୍ୟ ରହିଥିଲେ ବୋଲି ଜଣାଯାଏ । ସେହି ସ୍ଥାନଟି ଏବେ କାଳଆବୋଦା ନାମରେ ପରିଚିତ । ବାସ୍ତବରେ ନାନକଙ୍କ ପିତା କାଲୁବେଦୀଙ୍କ ନାମାନୁ-ସାରେ ଏହି ସ୍ଥାନଟି ନାମିତ ହୋଇଥିଲା । ଯାହା କାଳକ୍ରମେ ପରିବର୍ତ୍ତିତ ହୋଇଯାଇଛି । ଏହି "କାଳଆବୋଦା" ନାମରୁ ନାନକଙ୍କ ସମ୍ପର୍କରେ କିଛି ଜଣାଯାଉ ନଥିଲେ ହେଁ ବାସ୍ତବରେ ତାହା ତାଙ୍କ ପିତାଙ୍କ ନାମର ରୂପାନ୍ତର । ଏହିପରି ବହୁ ସ୍ଥାନ ନାମରେ କଟକକୁ ଆସିଥିବା ତଥା ବସବାସ କରିଥିବା ବ୍ୟକ୍ତିବିଶେଷଙ୍କ ନାମାଙ୍କନ ଓ ସ୍ୱାକ୍ଷର ରହିଛି । ସେସବୁର ଅଧ୍ୟୟନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

## ବକ୍ସି ଜଗବନ୍ଧୁ ଓ ବକ୍ସିବଜାର :

ବକ୍ସି ଶବ୍ଦଟି ଏକ ଯାବନିକ (ଫାରଶୀ) ଶବ୍ଦ । ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ଏହାର ଅର୍ଥ "ବେତନ ଭୋଗୀ ରାଜ କର୍ମଚାରୀ" ଏବଂ ମଧ୍ୟଯୁଗୀୟ ଓଡ଼ିଶାରେ ବକ୍ସି ଉପାଧିଧାରୀ ବ୍ୟକ୍ତିମାନେ ରାଜାଙ୍କ ପରେ ଅନ୍ୟତମ ସମ୍ମାନାସ୍ପଦ ରାଜପୁରୁଷ ଭାବେ ସ୍ୱୀକୃତ ବୋଲି ଲେଖା ଅଛି । ଉର୍ଦ୍ଦୁ ଓ ହିନ୍ଦୁସ୍ଥାନୀ ଭାଷାର ଅଭିଧାନରେ 'ବଖସୀ' (ବା ବକ୍ସି) ଶବ୍ଦର ଅର୍ଥ ବେତନ ପ୍ରଦାନକାରୀ ବ୍ୟକ୍ତି, ସେନାପତି ଇତ୍ୟାଦି ଭାବରେ 'ଉଲ୍ଲିଖିତ, ଇସ୍‌ଲାମ ସଂସ୍କୃତି ପ୍ରଭାବିତ ବହୁ ବିଶେଷ୍ୟ ପରି ଓଡ଼ିଶାରେ ଏହି ଉପାଧିଟି ଐତିହାସିକ ଓ ସମ୍ମାନାସ୍ପଦ ହୋଇଥିବାରୁ ଏହା ବ୍ୟକ୍ତିନାମ ଓ ସ୍ଥାନ ନାମରେ ଅନେକଙ୍କ ବ୍ୟବହୃତ ହୋଇଥିବାର ଦେଖାଯାଏ । ଡାକନାମ (ନିକ୍‌ନେମ୍)ରେ ବକ୍ସି ତଥା ସ୍ଥାନ ନାମରେ ବକ୍ସି ପୋଖରୀ ଓ ବକ୍ସି ବଜାର ଆଦି ପ୍ରସିଦ୍ଧ ।

କଟକ ସହରର ବକ୍ସି ବଜାର ଏକ ପ୍ରସିଦ୍ଧ ସ୍ଥାନ । ଏହି ବଜାରର ନାମକରଣ ସମ୍ପର୍କରେ ମତ ଯେ ଓଡ଼ିଶାରେ ସଙ୍ଗଠିତ ପାଇକ ବିଦ୍ରୋହର ଦମନ ପରେ ଏହାର ମହାନାୟକ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟଙ୍କୁ ନଜରବନ୍ଦୀ କରି ବ୍ରିଟିଶ୍ ସରକାର ଏହି ଅଞ୍ଚଳର ଏକ ଭଡ଼ାଘରେ ରଖିଥିବାରୁ ତାଙ୍କର ରାଜକୀୟ ଉପାଧି ଅନୁସାରେ ଏହି ଅଞ୍ଚଳଟି ପରବର୍ତ୍ତୀ କାଳରେ 'ବକ୍ସି ବଜାର" ନାମରେ ନାମିତ ହୋଇଛି ମାତ୍ର ଏହା ସତ୍ୟ କି ? ସେ ସମ୍ପର୍କରେ ଐତିହାସିକ ତଥ୍ୟ ଅନୁସନ୍ଧାନରୁ ଜଣାଯାଏ ଯେ ବାସ୍ତବରେ ବକ୍ସି ଜଗବନ୍ଧୁଙ୍କୁ ବନ୍ଦୀ କରିବା ପୂର୍ବରୁ ଏପରିକି ପାଇକ ବିଦ୍ରୋହ ସଙ୍ଗଠିତ ହେବା ପୂର୍ବରୁ ଏହି ଅଞ୍ଚଳର ନାମ ବକ୍ସି ବଜାର (Buxshee

Bazar) ଥିଲା । ଅତଏବ ବକ୍ସି ଜଗବନ୍ଧୁଙ୍କୁ ଏଠାରେ ବନ୍ଦୀ କରାଯାଇଥିବାରୁ ଏ ଅଞ୍ଚଳର ନାମକରଣ ତାଙ୍କର ଉପାଧି ଅନୁଯାୟୀ ହୋଇଥିବା ସତ୍ୟ ନୁହେଁ ।

ପାଇକ ବିଦ୍ରୋହର ଦମନ ତଥା ବକ୍ସି ଜଗବନ୍ଧୁଙ୍କୁ ବନ୍ଦୀ କରାଯିବା ସମ୍ବନ୍ଧ ବକ୍ସିବଜାର ନାମକରଣକୁ ସମ୍ପୃକ୍ତ କରୁଥିବା ଐତିହାସିକମାନଙ୍କ ରଚନା ମଧ୍ୟରୁ ଗବେଷକ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ପ୍ରଦତ୍ତ ବିବରଣୀ ନିମ୍ନରେ ଉଲ୍ଲେଖ କରାଯାଉଛି । "ଖୁର୍ଦ୍ଧା ଇତିହାସ" ଗ୍ରନ୍ଥର ୨୭୫ ପୃଷ୍ଠାରେ ସେ ଲେଖିଛନ୍ତି, "୧୮୧୯ ଏପ୍ରିଲ ମାସରେ କମିସନର କେର୍ ବକ୍ସିଙ୍କ ସହିତ ସମାଧାନ ପ୍ରସ୍ତାବ ଘୋଷଣା କଲେ । ତଥାପି ବୀର ଜଗବନ୍ଧୁ ଆତ୍ମ ସମର୍ପଣ କରିଥିଲେ ।

× × × ×

ଶେଷରେ ୧୮୨୫ ମସିହାରେ ଖୁର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ ମିଷ୍ଟର ଉଇଲ୍-କିନ୍‌ସନଙ୍କ ଚେଷ୍ଟାରେ ନୟାଗଡ଼ର ବେବର୍ତ୍ତା ବରଜୁ ପାଇକରାୟଙ୍କ ମଧ୍ୟସ୍ଥତାରେ ବକ୍ସିଙ୍କ ସହିତ ସମାଧାନ ହୋଇଥିଲା । ବକ୍ସି ଆତ୍ମସମର୍ପଣ କଲେ, ସରକାର ତାଙ୍କୁ କୌଣସି ପ୍ରକାର ଶାସ୍ତି ବିଧାନ କରାଯିବ ନାହିଁ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ।

ଓଡ଼ିଶାର ଗଡ଼ଜାତଗୁଡ଼ିକର ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଫିସର ସିରସ୍ତାଦାର ଓ୍ୱାଜ୍ ମହମ୍ମଦ ବକ୍ସିଙ୍କୁ ନୟାଗଡ଼ ସୀମାସ୍ଥ ଏକ ଗ୍ରାମରୁ ତମ୍ବୁରେ ଆଣି ୧୮୨୫ ମେ ମାସ ୨୭ ତାରିଖରେ କଟକରେ ପହଞ୍ଚାଇ ଦେଲେ ବକ୍ସି ମାସିକ ୧୫୦ ଟଙ୍କା ପେନ୍‌ସନ ପାଇ କଟକରେ ଅବସ୍ଥାନ କଲେ । କମିଶନରଙ୍କ ବିନାନୁମତିରେ ନିଜର ବାସସ୍ଥାନରୁ ଅନ୍ୟତ୍ର ଯିବାପାଇଁ ନିଷିଦ୍ଧ ହୋଇଥିଲା । କଟକରେ ତାଙ୍କର ବାସସ୍ଥାନ ଏପର୍ଯ୍ୟନ୍ତ ବକ୍ସି ବଜାର ଏବଂ ତାଙ୍କର ଗାଧୁଆପୋଖରୀ ବକ୍ସିପୋଖରୀ ନାମରେ ଖ୍ୟାତ । ଏହି ବିପ୍ଳବୀ ବୀର ନିଜର ଶେଷ ଜୀବନ ଏପରି ଦୁଃଖ କଷ୍ଟରେ କଟାଇ ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଶନିବାର ଦିନ ପ୍ରାଣତ୍ୟାଗ କଲେ ।"

ମାତ୍ର ଏହି ଘଟଣା ଘଟିବାର (ଅର୍ଥାତ୍ ବକ୍ସି ଜଗବନ୍ଧୁ କଟକରେ ରହିବାର) ୧୧ ବର୍ଷ ପୂର୍ବରୁ ୧୮୧୪ ମସିହାର ଏକ ଚିଠିରେ ବକ୍ସିବଜାର ନାମରେ ଉଲ୍ଲେଖ ମିଳିଥାଏ । ସେହି ଚିଠିଟି କଟକରେ ଚୌକିଦାରୀ ବ୍ୟବସ୍ଥା ପ୍ରବର୍ତ୍ତନ ସମ୍ପର୍କୀୟ ଏବଂ ତାହା ଗବେଷକ ସୁଶୀଲଚନ୍ଦ୍ର ଦେଙ୍କ ଦ୍ୱାରା ଲିଖିତ **Cuttack Town in 1814** ସନ୍ଦର୍ଭର ପରିଶିଷ୍ଟରେ ଓଡ଼ିଶାର **The Historical Research Journal, Vol-8 No. 1**ରେ ପ୍ରକାଶିତ ହୋଇଥିଲା । ସେହି ଚିଠିର ଆବଶ୍ୟକ ଅଂଶ ନିମ୍ନରେ ଉଦ୍ଧୃତ କରାଯାଉଛି ।

ପ୍ରାପ୍ରେଷୁ,
ଜର୍ଜ ଉଡ୍‌ସ୍ୱର୍ତ୍ତ୍ୱେଲ ଏସ୍‌କୋୟାର୍
ଚିଫ୍ ସେକ୍ରେଟାରୀ ଅଫ୍ ଗଭର୍ଣ୍ଣମେଣ୍ଟ
ଫୋର୍ଟ ଉଇଲିଅମ୍

ମହାଶୟ,

ଆପଙ୍କେ ଜୁନ୍ ୨୪ ତାରିଖର ସର୍କୁଲର୍ ଅନୁଯାୟୀ ଯେଉଁସବୁ ସୂଚନା ଚାହିଁଥିଲେ, ତାହା କାଉନ୍‌ସିଲ୍‌ର ଉପସଭାପତିଙ୍କ ଅବଗତି ଓ ବିଚାର ନିମନ୍ତେ ଆପଣଙ୍କ ନିକଟକୁ ପଠାଇଛି ।

(୨) କଟକ ସହରକୁ ବାଲୁବଜାର, ତେଲିଙ୍ଗା ବଜାର, କାଫିଲା ବଜାର, ଗଙ୍ଗା ମନ୍ଦିର, ଜଲ୍ଲାଉପୁର ବା କଦମ ରସୁଲ୍ ଏବଂ ବକ୍‌ସି ବଜାର ଏହିପରି ଛଅଟି ମହଲ୍ଲାରେ ବିଭକ୍ତ କରାଯାଇଛି ।

(ମୂଳ ଇଂରାଜୀ ଲେଖା:—The town of Cuttack is devided in to Six Mohallas named Baloo Bazar, Telinga Bazar, Kafeelah Bazar, Gaunga Mandri, Jallaupoor or Kuddumrassool, and Buxshee Bazar )

× × × ×

(୧୫) ଷଷ୍ଠ ମହଲ୍ଲା ବା ବକ୍‌ସି ବଜାର ନିମ୍ନଲିଖିତ ସାହି ଓ ବଜାରକୁ ନେଇ ଗଠିତ । ଯଥା:—ବକ୍‌ସି ବଜାର, ମୂଳସାହି, ପାଟନା ମାର୍କନାଳ ବା ମହ୍‌କାମା ପାଟଣା, ପାଟଣା ମର୍ଜୁମର, ମଙ୍ଗଳାବାଗ, କେଶରପୁର କୁସ୍ତୋ, ପାକମୋଲ, ଜାଗିର୍ ସଉରା ସାହି ଗଣ୍ଡକୁଣ୍ଡ୍, ଜବ୍ରା, ମରଦ୍‌ଖାନ ପାଟଣା ।

× × × ×

ଜଲ୍ଲା—କଟକ ଏମ୍ ଆଇନ୍‌ସଲି ୨୨ ନଭେମ୍ବର, ଆକଙ୍ଗ ୧୮୧୮ ମାଜିଷ୍ଟ୍ରେଟ

ଅତଏବ ଏହି ଚିଠିରୁ ଜଣାଯାଏ ଯେ ବକ୍‌ସି ଜଗବନ୍ଧୁଙ୍କ ଆଗମନ ପୂର୍ବରୁ ସମ୍ଭବତଃ ଅନ୍ୟ କେଉଁ ବକ୍‌ସି ଉପାଧିଧାରୀ ବ୍ୟକ୍ତିଙ୍କ ଉପାଧି ଅନୁସାରେ ଏହା ବକ୍‌ସି ବଜାର ନାମରେ ନାମିତ ହୋଇଥିଲା । ମାତ୍ର "ବକ୍‌ସି ପୋଖରୀ"ର ନାମକରଣ, ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟଙ୍କ ନାମାନୁସାରେ ନାମିତ ହୋଇଥିବ ।

## ଚୌଧୁରୀ ବଜାର :

କଥାରେ ଅଛି, "କଟକ ସହର ବାଉନ ବଜାର ତେପନ ଗଳି ।" ମାତ୍ର ଆଜିକାଲି ଗଣିଲେ ବୋଧହୁଏ କଟକରେ ଶହେ ବଜାର ଆଉ ଶହ ଶହ ଗଳି ଉପଗଳି ମିଳିବ । ତେବେ ଏ କଥାଟିର ସତ୍ୟତା କେତେଦୂର ? ୧୮୧୪ ଖ୍ରୀ:ରେ ଇଂରେଜ ପ୍ରଶାସକଙ୍କ ଦ୍ୱାରା କଲିକତାର ଫୋର୍ଟ ଉଇଲିୟମ ଠାରେ ଅବସ୍ଥାପିତ ଚିଫ୍ ସେକ୍ରେଟାରୀ ଜର୍ଜ ଉଡ୍‌ସୱର୍ତ୍ତ୍ୱେଲ Fsquire ଙ୍କ ନିକଟକୁ ପ୍ରେରିତ ଏକ ପତ୍ରରୁ ଜଣାପଡ଼େ ଯେ, "କଟକ

ମ୍ହରର ବାଉନ ବଜାର ଚେପନ ଗଳି" ଜଥାଟା ମିଛ ନୁହେଁ ଏବଂ ବାସ୍ତବରେ କଟକ ସହରରେ ସେତେବେଳେ ୫୨ଟି ସାହିବସ୍ତି ଥିଲା । ଏହି ଚିଠିରେ କଟକ ସହରରେ ଥିବା ୫୩ଟି ସାହିବସ୍ତିର ନାମୋଲ୍ଲେଖ ରହିଛି (ମୂଳ ଚିଠିଟି The Orissa Historical Research Journal, Vol—8, No-II ରେ ସୁଶୀଲଚନ୍ଦ୍ର ଦେଙ୍କ ଦ୍ୱାରା ପ୍ରକାଶିତ ଚିଠିର ଓଡ଼ିଆ ଅନୁବାଦ ଓ ଟିପ୍ପଣୀ ମୋ' ଦ୍ୱାରା ଲିଖିତ ଏକ ପ୍ରବନ୍ଧରେ ନାଲ୍ଲୁଧାରା ୫ମ ବର୍ଷ (୧୯୯୦) ୨ୟ ସଂଖ୍ୟାରେ ପ୍ରକାଶିତ) ।

ଏହି ଚିଠିରେ ଉଲ୍ଲିଖିତ କଟକ ସହରର ୭ଟି ମହଲ୍ଲା ମଧ୍ୟରୁ ଗଙ୍ଗାମଞ୍ଜିଲ (ଗଙ୍ଗାମନ୍ଦିର) ମହଲ୍ଲାରେ ଚୌଧୁରୀ ବଜାର ଅନ୍ତର୍ଭୁକ୍ତ ହୋଇଛି । ଅନ୍ୟ ଯେଉଁସବୁ ଅଞ୍ଚଳ ଏହି ମହଲ୍ଲାର ଅନ୍ତର୍ଗତ, ସେଗୁଡ଼ିକ ହେଲା, ଗଙ୍ଗାମଞ୍ଜିଲ, ବାଙ୍କାବଜାର ସୁତିଠା ସାହି (ସୁତାହାଟ ? ) ଉଗର ବଜାର (ଦରଘା ବଜାର ? ) ଖଟିନ୍ ସେହିପୁ (ଖଟବନ ସାହି), ତହର୍ ଖାଁ ବଜାର (ତାତର ଖାଁ ବଜାର ?) ସପନାଝିଲ (ପୂର୍ବରୁ ଏକ ପ୍ରବନ୍ଧରେ ଆଲୋଚିତ) ଏବଂ କରମା ବଜାର (କାସିମ୍ ବଜାର ?) ସେହି ଚିଠିରେ ଲେଖାଯାଇଛି ଯେ, ଏହି ମହଲ୍ଲାରେ ଚୌଧୁରୀ ବଜାର ହିଁ ମୁଖ୍ୟ ସ୍ଥାନ । ଏଣୁ ସେଠାରେ ୭ ଜଣ ଚୌକିଦାର ମୁତୟନ କରାଯାଇଛି । ଅତଏବ ସ୍ୱୀକାର କରିବାକୁ ହୁଏ ଯେ, ସେତେବେଳକୁ ଚୌଧୁରୀ ବଜାର ତା'ର ବର୍ତ୍ତମାନର ଗୁରୁତ୍ୱଲାଭ ଦିଗରେ ଅଗ୍ରସର ହେଲଣି ।

ଆଜିର ସ୍ଥିତିକୁ ଅନୁଧ୍ୟାନ କଲେ ଲୋକବସତି ଓ ବାଣିଜ୍ୟ ପେଣ୍ଠସ୍ଥଳୀ ଭାବରେ ଚୌଧୁରୀ ବଜାରର ଗୁରୁତ୍ୱ ଅସ୍ୱୀକାର କରିହୁଏ ନାହିଁ । ୧୮୧୪ ମସିହାର ସେହି ଚିଠିରେ ମଧ୍ୟ ଏହା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ବୋଲି ବିବେଚିତ ହୋଇଥିବାରୁ ଏହାର ବହୁ ପୂର୍ବରୁ ଏହି ସ୍ଥାନଟି ଲୋକବସତି ଭାବରେ ପ୍ରତିଷ୍ଠାଲାଭ କରିଥିବ ବୋଲି ମନେହୁଏ । ଚୌଧୁରୀ ବଜାରର ନାମକରଣ ଦିଗରୁ କରି ଇତିହାସ ଅନୁସନ୍ଧାନ କଲେ ଜଣାଯାଏ ଯେ, ମରହଟ୍ଟା ଶାସନକାଳରୁ ଏହାର ଏପରି ନାମକରଣ ହୋଇଛି ।

ମରହଟ୍ଟା ଶାସନ ୧୭୫୧ ମସିହାରୁ ୧୮୦୩ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରତିଷ୍ଠିତ ଥିଲା । ସେ ସମୟରେ ଚୌଧୁରୀ ପଦବୀଧାରୀ ବ୍ୟକ୍ତିମାନେ ଖଜଣା ଅସୁଲି ଓ ଶାନ୍ତିଶୃଙ୍ଖଳା ରକ୍ଷା ପାଇଁ ବିଭିନ୍ନ ସ୍ଥାନରେ ନିଯୁକ୍ତି ପାଉଥିଲେ । ଚୌଧୁରୀ ଶବ୍ଦଟିର ବ୍ୟୁତ୍ପତ୍ତି ସନ୍ଧାନ କଲେ ଜଣାପଡ଼େ ଯେ, ଚାରି ପ୍ରକାରର 'ଧୁର' ଅର୍ଥାତ୍ ଭାର ବା ଦାୟିତ୍ୱରେ ରହିଥିବା ବ୍ୟକ୍ତିମାନଙ୍କୁ ଚୌଧୁରୀ କୁହାଯାଉଥିଲା । ସେହି ଚାରୋଟି ଦାୟିତ୍ୱ ହେଲା, (୧) ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରିବା, (୨) ରାଜକୋଷରେ ଭରଣା କରିବା, (୩) ପ୍ରଜାମାନଙ୍କ ବିଷୟ ବୁଝିବା ଓ (୪) ରାଜ୍ୟ ଓ ପ୍ରଜାମାନଙ୍କୁ ଏକତାବଦ୍ଧ କରି ରଖିବା । ଅବଶ୍ୟ କାଳକ୍ରମେ ଏହି ଉପାଧି କେବଳ ଏକ ଅଧିନାମ ବା ସଂଜ୍ଞା ଭାବେ ବ୍ୟବହୃତ ହେଉଛି ।

ମରହଟ୍ଟା ଶାସନକାଳ ମଧ୍ୟରେ ମଞ୍ଜିନାଥ ଚୌଧୁରୀ ନାମକ ଜଣେ ମରହଟ୍ଟା କର୍ମଚାରୀ କଟକଠାରେ ଅବସ୍ଥାପିତ ହୋଇଥିଲେ । ତାଙ୍କର ଧର୍ମ ଥିଲା ଜୈନଧର୍ମ ଓ ସେ ନାଗପୁରରୁ ଆସିଥିଲେ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ 'ଓଡ଼ିଶାରେ ଜୈନଧର୍ମ' ପ୍ରବନ୍ଧରେ ଡକ୍ଟର ରାଧାଚରଣ ପଣ୍ଡାଙ୍କ ଉକ୍ତି ଉଦ୍ଧାରକରି ଏ ସମ୍ପର୍କରେ କେତେକ ତଥ୍ୟ ପ୍ରକାଶ କରିଛନ୍ତି । ତାଙ୍କ ମତରେ ମଞ୍ଜିନାଥ ଚୌଧୁରୀଙ୍କ ବଂଶଧରମାନେ କହନ୍ତି ଯେ ଏବେକାର ଚୌଧୁରୀ ବଜାର ନାମକରଣ ବାସ୍ତବରେ ତାଙ୍କର ନାମାନୁସାରେ ହୋଇଛି ।

ଏହି ମଞ୍ଜିନାଥ ବା ମଞ୍ଜୁନାଥ ଚୌଧୁରୀଙ୍କ ସମୟରେ ଏବଂ ତାଙ୍କର ଦ୍ୱାରା ଚୌଧୁରୀବଜାର-ଜାଉଁଳିଆପଟି ଠାରେ ଥିବା ପୀତାମ୍ବର ଜୈନ ମନ୍ଦିରଟି ନିର୍ମିତ ହୋଇଥିଲା ବୋଲି ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଲେଖିଯାଇଛନ୍ତି । ଏହି ମନ୍ଦିରରେ ଋଷଭ ଦେବଙ୍କ ଠାରୁ ଆରମ୍ଭକରି ମହାବୀରଙ୍କ ପର୍ଯ୍ୟନ୍ତ ୨୪ ତୀର୍ଥଙ୍କରଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି । ଏହି ମନ୍ଦିରର ପରିଚାଳନା କଟକର ଶ୍ରୀ ଶାନ୍ତି କୁମାର ଅଗ୍ରୱାଲ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ଏକ ପରିଷଦ ଦ୍ୱାରା ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ ଖଣ୍ଡଗିରିରେ ଜୈନ ମନ୍ଦିରର ରକ୍ଷଣାବେକ୍ଷଣ ଭାର ମଧ୍ୟ ଏହି ପରିଷଦ ଗ୍ରହଣ କରିଛନ୍ତି । 'ଓଡ଼ିଶାରେ ଜୈନଧର୍ମ' ପୁସ୍ତକ ଅନୁଯାୟୀ ଉଭୟ କଟକ ଓ ଖଣ୍ଡଗିରିର ଜୈନ ମନ୍ଦିର ମଞ୍ଜୁନାଥ ଚୌଧୁରୀଙ୍କ ଦ୍ୱାରା ହୋଇଥିଲା । ମଞ୍ଜୁନାଥ ଚୌଧୁରୀ ପରିବାରର ଏକମାତ୍ର ବଂଶଧର ଶ୍ରୀ ମଞ୍ଜୁଲାଲ ପରୱାର ବର୍ତ୍ତମାନ କଟକର ଚୌଧୁରୀ ବଜାରସ୍ଥ ଶ୍ରୀ ଦିଗମ୍ବର ଜୈନ ମନ୍ଦିର ପରିଚାଳନା ଓ ରକ୍ଷଣା ବେକ୍ଷଣ ଦାୟିତ୍ୱରେ ନିୟୁକ୍ତ ଅଛନ୍ତି ।

ଚୌଧୁରୀ ବଜାରର ଅନ୍ୟ ଏକ ଐତିହାସିକ ଧାର୍ମିକ ଅନୁଷ୍ଠାନ ହେଉଛି ଶ୍ରୀ ଗୋପାଳଜୀଉ ମଠ । ନିମ୍ବାର୍କ ସମ୍ପ୍ରଦାୟର ବାଳକ ଦାସ ନାମକ ଜଣେ ସାଧୁ ଏହି ମଠ ପ୍ରତିଷ୍ଠା କରି ଏଠାରେ ଶ୍ରୀ ଗୋପାଳଙ୍କର ପିତ୍ତଳ ପ୍ରତିମା ସ୍ଥାପନ କରିଥିଲେ ବୋଲି କୁହାଯାଏ । ଏହି ସାଧୁଙ୍କ ସମ୍ପର୍କରେ ମୃଗଚର୍ମରେ ବସି କାଠଯୋଡ଼ିର ବନ୍ୟାଜଳ ପାର ହେବା ପରି ଆଲୌକିକ କାହାଣୀ ମଧ୍ୟ ଶୁଣାଯାଏ । ବର୍ତ୍ତମାନ ପୁରୀଜିଲ୍ଲା ସତ୍ୟବାଦୀ-ଠାରେ ପ୍ରତିଷ୍ଠିତ ସାକ୍ଷୀଗୋପାଳ କଟକ ଠାରେ ପ୍ରଥମେ ପୂଜା ପାଉଥିବାବେଳେ ଏହା ହିଁ ତାଙ୍କର ଆସ୍ଥାନସ୍ଥଳ ଥିଲା ବୋଲି ଭ୍ରମଧାରଣା ଅନେକେ ଏପର୍ଯ୍ୟନ୍ତ ପୋଷଣ କରି ଆସୁଛନ୍ତି । ମାତ୍ର ତାଙ୍କର କୌଣସି ଭିତ୍ତିଅଛି ବୋଲି ମନେହୁଏ ନାହିଁ । ତେବେ ସେ ସମୟରେ ସାକ୍ଷୀଗୋପାଳଙ୍କ ଆରାଧନା କରୁଥିବା ସାଧୁସନ୍ଥ ଓ ଭକ୍ତମାନେ ସେହି ମୂର୍ତ୍ତି ସ୍ଥାନାନ୍ତରିତ ହେବାପରେ ଏହି ଶ୍ରୀ ଗୋପାଳଜୀ ମଠକୁ ପ୍ରୋତ୍ସାହନ ଦେଇ-ଥାଇପାରନ୍ତି । ଏପରି ଏକ ସମ୍ପର୍କ ରହିଥିବା ଅସମ୍ଭବ ନୁହେଁ । ଚୌଧୁରୀ ବଜାର ଅଞ୍ଚଳରେ କେତେଗୁଡ଼ିଏ କୋଠାବାଡ଼ି ଓ ପ୍ରବେଶଦ୍ୱାର ତୋରଣ (ମ୍ୟୁନିସିପାଲିଟିର ତୋରଣ ଦ୍ୱାର ସନ୍ନିକଟ ପୁରୀଘାଟ ଫାଣ୍ଡି ଯେଉଁଠି ଅଛି) ଅପେକ୍ଷାକୃତ ଅର୍ବାଚୀନ କାଳରେ ନିର୍ମିତ ବୋଲି ଜଣାପଡ଼ୁଥିଲେ ବି ହିଁ ଶ୍ରୀ ଗୋପାଳଜୀ ମଠର ସ୍ଥିତି ଓ ସ୍ମୃତି

ସମ୍ପର୍କରେ ତାହା ଯଥେଷ୍ଟ ସୂଚନା ଦେଇଥାଏ । ଏହି ମଠରେ ଶ୍ରୀ ରାଧାଙ୍କ ମୂର୍ତ୍ତି ସ୍ଥାପନ ସନ୍ଦର୍ଭରେ (ସତ୍ୟବାଦୀଠାରେ ପୂଜକ ବ୍ରାହ୍ମଣ କନ୍ୟା) ଲକ୍ଷ୍ମୀ ସହିତ ଶ୍ରୀ ସାକ୍ଷୀଗୋପାଳ ପ୍ରୀତି ରଚନା କରିଥିବା କିମ୍ବଦନ୍ତୀ ଅନୁରୂପ ଏକ କିମ୍ବଦନ୍ତୀ ପ୍ରଚଳିତ । ତାମିଲ ଭାଷା ଭାଷୀ ଏକ ପରିବାରର କନ୍ୟା ସହିତ ଶ୍ରୀ ଗୋପାଳଜୀ ମନ୍ଦିରରେ ପ୍ରତିଷ୍ଠିତ ଶ୍ରୀ ଗୋପାଳ ବିଗ୍ରହ ମନୁଷ୍ୟ ସ୍ୱରୂପ ଧାରଣ କରି ପ୍ରୀତିରଚନା କରିଥିଲେ ବୋଲି ଜନଶ୍ରୁତି ରହି- ଆସିଛି । ପରେ ଏଠାରେ ଶ୍ରୀ ରାଧାଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା । ଚୌଧୁରୀ ବଜାରରେ ଥିବା ଅନ୍ୟଏକ ପ୍ରାଚୀନ ଧର୍ମାନୁଷ୍ଠାନ ଭାବରେ ଆଣ୍ଡୁଆଗୋପାଳ ମଠକୁ ମଧ୍ୟ ଗ୍ରହଣ କରାଯାଇପାରେ । ଏହା ମଧ୍ୟ ନିମ୍ବାର୍କ ସମ୍ପ୍ରଦାୟର । ସେ ଦୃଷ୍ଟିରୁ ଗୋପାଳଜୀଉ ମଠର ଏକ ଶାଖା ଭାବରେ ଏହାକୁ କୁହାଯାଇ ପାରେ । ଏଠାକାର ମୂର୍ତ୍ତି ଶ୍ରୀ ଗୋପାଳଜୀ ମଠରୁ ଅଣାଯାଇଥିଲା ଏବଂ ପ୍ରଥମେ ଏକ ଗୃହରେ ସେହି ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା । ପରବର୍ତ୍ତୀ କାଳରେ ବୃନ୍ଦାବନରୁ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଅଣାଯାଇ ଏଠାରେ ପ୍ରତିଷ୍ଠା କରାଯାଇଛି ।

କଟକ ନଗରର ଦୁର୍ଗାପୂଜାରେ ଏକ ଆକର୍ଷଣ ଭାବରେ ପୁରପଲ୍ଲୀର ସହସ୍ର ଜନତାକୁ ମନୋରଞ୍ଜନ କରୁଥିବା 'ଗୃନ୍ଦମେଢ଼' ମଧ୍ୟ ଏହି ଚୌଧୁରୀ ବଜାର ଶ୍ରୀ ଋଷଭଦେବଙ୍କ ଜୈନ ମନ୍ଦିର ନିକଟ ଅଞ୍ଚଳରେ ଅବସ୍ଥିତ ।

ସବୁ ଦୃଷ୍ଟିରୁ ବିଚାର କଲେ କେବଳ ଏକ ବାଣିଜ୍ୟ ବ୍ୟାପାର ସ୍ଥଳୀ ଭାବରେ ନୁହେଁ ବରଂ ଏକ ସାଂସ୍କୃତିକ-ସାମାଜିକ ସମନ୍ୱୟସ୍ଥଳୀ ଭାବରେ କଟକରେ ଚୌଧୁରୀ- ବଜାର ଗୁରୁତ୍ୱଲାଭ କରିଆସିଛି ।

**ବାଉନ ବଜାର ତେପନ ଗଳି :**

କଟକ ସମ୍ପର୍କରେ ଗୋଟାଏ କଥା ଅନେକ ଦିନରୁ ଚଳି ଆସୁଛି ଯେ "କଟକ ସହର—ବାଉନ ବଜାର ତେପନ ଗଳି" । ଏହି ପ୍ରବାଦର ଉତ୍ପତ୍ତି ବା ଏହାର ସତ୍ୟତା ସମ୍ପର୍କରେ କେହି କେବେ ବିଶେଷ ଗୁରୁତ୍ୱ ଦେଇ ସଂଖ୍ୟାଗତ ଦୃଷ୍ଟିକୋଣରୁ ଯାଞ୍ଚ କରିବାକୁ ବୋଧହୁଏ ଉଚିତ ମନେ କରି ନାହାନ୍ତି । ବାସ୍ତବରେ କଟକ ସହରରେ ବାଉନଟି ବଜାର ବା ତେପନଟି ଗଳି ଅଛି କି ? କଥାକୁ ଲିଆ ପରି ଏହି ପ୍ରବାଦଟି ଶୁଭୁଥିଲେ ଆଜିର କଟକ ନଗରରେ ଶତାଧିକ ବଜାର ଓ ଗଳି ଥିବା କଥା ସତ୍ୟ । ହୁଏତ ପୂର୍ବାଲୋଚିତ ନିର୍ଦ୍ଦିଷ୍ଟ ସଂଖ୍ୟା ସହିତ ଏହାର ବିଶେଷ ସମ୍ପର୍କ ନଥାଇ ପାରେ, ମାତ୍ର ଇଂରେଜ ଶାସନର ପ୍ରଥମାବସ୍ଥାରେ ଏକ ସରକାରୀ ଚିଠିରୁ କଟକରେ ବାସ୍ତବରେ ତେପନଟି ସାହି ବସ୍ତି ବା ବଜାର ଥିବାର ଜଣାଯାଇଥାଏ ।

୧୮୦୩ ଖ୍ରୀ:ରେ ଇଂରେଜମାନେ ଓଡ଼ିଶା ରାଜ୍ୟ ତଥା ବାରବାଟୀ ଦୁର୍ଗ ଦଖଲ କରିଥିଲେ । ତା'ର ପରେ ପରେ ପ୍ରାୟ ୧୫।୨୦ ବର୍ଷ ଧରି ବିଭିନ୍ନ ଅରାଜକତା ଭିତରେ ସେମାନଙ୍କର ଶାସନ ବିଧି ଓ ପଦ୍ଧତି ଅନୁସାରେ ଓଡ଼ିଶାର ପ୍ରଶାସନ କଳକୁ ସଜାଡ଼ିବାକୁ

ଗୁହିଁଥିଲେ । ଏହି ସମୟରେ କଟକର କାର୍ଯ୍ୟବାହୀ ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଏମ୍. ଆଇନ୍‌ସଲି ସରକାରଙ୍କ ଚିଫ୍ ସେକ୍ରେଟାରି ଥିବା ଜର୍ଜ ଉଡ଼ସ୍‌ଓ୍ୱେଲ ଏସ୍‌କୋୟାରଙ୍କ ନିକଟକୁ ଲେଖିଥିବା ପତ୍ରରେ କଟକରେ ଚୌକିଦାରୀ ପ୍ରଥା ପ୍ରବର୍ତ୍ତନ ବିଷୟରେ ଉଲ୍ଲେଖ ସହିତ କଟକର ବିଭିନ୍ନ ସାହିବସ୍ତିର ପ୍ରାଞ୍ଜଳ ସୂଚନା ପ୍ରଦାନ କରିଥିଲେ । ସେଥିରେ ସେ ସର୍ବମୋଟ ୫୩ଟି ସାହି ବସ୍ତି ନାମର ଉଲ୍ଲେଖ କରିଥିବାରୁ ମନେହୁଏ ବାଉନ ବଜାର ତେପନ ଗଳି କଥାଟି ସତ୍ୟ ।

୧୮୧୪ ଖ୍ରୀ:ରେ ଲିଖିତ ଏହି ଚିଠିରେ କଟକକୁ ୬ଟି ମହଲ୍ଲାରେ ବିଭକ୍ତ କରାଯାଇଥିଲା । ସେହି ଚିଠିର ମର୍ମାନୁବାଦ ସହିତ ସେ କାଳର ସ୍ଥାନ ନାମ ସମ୍ପର୍କରେ ଟିପ୍ପଣୀ ନିମ୍ନରେ ପ୍ରଦତ୍ତ ହେଲା ।

ଜର୍ଜ ଉଡ଼ସ୍‌ଓ୍ୱେଲ ଏସକୋୟାର<br>ଚିଫ୍ ସେକ୍ରେଟାରୀ ଅଫ୍ ଗଭର୍ଣ୍ଣମେଣ୍ଟ<br>ଫୋର୍ଟ ଉଇଲିୟମ ।

ମହାଶୟ,

ଆପଣଙ୍କ ଜୁନ୍ ୨୪ ତାରିଖର ସର୍କୁଲର ଅନୁଯାୟୀ ଯେଉଁ ସବୁ ସୂଚନା ଗୁହିଁଥିଲେ ତାହା କାଉନ୍‌ସିଲ୍‌ର ଉପସଭାପତିଙ୍କ ଅବଗତି ଓ ବିଚାର ନିମନ୍ତେ ଆପଣଙ୍କ ନିକଟକୁ ପଠାଉଛୁ ।

୨ । କଟକ ସହରକୁ ବାଲୁବଜାର, ତେଲିଙ୍ଗା ବଜାର, କାଫିଲା ବଜାର, ଗଙ୍ଗା ମଣ୍ଡିଲ, ଜଲ୍ଲାଉପୁର ବା କଦମ୍‌ରସୁଲ୍ ଏବଂ ବକ୍‌ସି ବଜାର ଏହିପରି '୬'ଟି ମହଲ୍ଲାରେ ବିଭକ୍ତ କରାଯାଇଛି ।

୩ । ପ୍ରଥମ ମହଲ୍ଲା ଅର୍ଥାତ୍ ବାଲୁବଜାର ଅଧିକାଂଶ ସମ୍ଭ୍ରାନ୍ତ ଓ ଧନୀକବର୍ଗ ବାସ କରୁଥିବା ନିମ୍ନଲିଖିତ ଅଞ୍ଚଳକୁ ନେଇ ଗଠିତ । ଯଥା—

୧—ବାଲୁବଜାର
୨—ଗୁଦ୍ଧମାଚୌକ
୩—ସାହିବଜାଦା ବଜାର
୪— ଜମାବାଦ (ବୋଧହୁଏ ଆଜମାବାଦ)
୫—ଉତ୍‌ଗଶପଡ଼ା (ବୋଧହୁଏ ଉଗରପଡ଼ା)
୬—ହୋସିନବାଦ୍ (ହାସନାବାଦ୍ ବଜାର)
୭—ଉଗରପଡ଼ା (ଏଣୁ ୫ ନମ୍ବର ନାମଟି ଭିନ୍ନନାମ ହୋଇଥାଇ ପାରେ )

ବିଶିଷ୍ଟ ମହାଜନମାନେ ବାଲୁବଜାର ଓ ଗୁଦ୍ଧମାଚୌକରେ ବସବାସ କରନ୍ତି । ସାହିବଜାଦା ବଜାର ଓ ଜାଦୁଆବାଗ୍ ବା ଜମାବାଦ ଅଞ୍ଚଳରେ ମଧ୍ୟ ବହୁ ସ୍ୱଚ୍ଛଳ ବ୍ୟକ୍ତି ଅଛନ୍ତି । ଉଗରପଡ଼ା ଓ ହୋସିନାବାଦ୍ ଅଞ୍ଚଳରେ ଦରିଦ୍ର ଶ୍ରେଣୀର ଲୋକେ

ହୋଇଥିଲେ ହେଁ ଏହାକୁ ଅନ୍ୟ ୪ଟି ଧମା ଅଞ୍ଚଳ ସହିତ ସଂଯୁକ୍ତ କରି ରଖାଯିବ । ଫଳରେ ଧନାଢ୍ୟ ବ୍ୟକ୍ତିଙ୍କ ସମ୍ପତ୍ତି ରକ୍ଷା କରିବା ସହିତ ଚୌକିଦାରମାନେ ଏ ଦୁଇଟି ଅଞ୍ଚଳକୁ ମଧ୍ୟ ସୁରକ୍ଷା ଯୋଗାଇ ଦେଇ ପାରିବେ । ଚୌକିଦାରୀ ଟିକସ ଦେଇଥିବା ବ୍ୟକ୍ତିମାନଙ୍କ ସଂଖ୍ୟା ଏହି ଦୁଇଟି ବଜାରରେ ଅତି ନଗଣ୍ୟ ହେଉଥିବାରୁ ଏହାକୁ ସ୍ୱତନ୍ତ୍ର ମହଲ୍ଲା କରିବା କିମ୍ବା ଦୂରସ୍ଥ ମହଲ୍ଲା ସହିତ ସଂଯୁକ୍ତ କରିବାରେ ଅଧିକ ଖର୍ଚ୍ଚ ହେବ ।

୪ । ଏଠାରେ ଥିବା ୧୧୯୮ଟି ଘରକୁ ଜଗିବା ପାଇଁ ୧୨ ଜଣ ଚୌକିଦାର ନିଯୁକ୍ତ କରାଯାଉଛି । ପ୍ରତ୍ୟେକଙ୍କୁ ଏଥିପାଇଁ ମାସିକ ୩ ଟଙ୍କା ବେତନ ଦିଆଯାଉଛି ।

୫ । ଦ୍ୱିତୀୟ ମହଲ୍ଲା ଅର୍ଥାତ୍ ତେଲେଙ୍ଗା ବଜାରର ଅଧିକାଂଶ ବ୍ୟାପକ ଓ ଘନ ଜଙ୍ଗଲାକୀର୍ଣ୍ଣ ଅଞ୍ଚଳ । ଏଥିପାଇଁ ଏହି ଅଞ୍ଚଳ ଅଧିକ ଚୌକିଦାର ଆବଶ୍ୟକ କରେ । ତେଲିଙ୍ଗା ବଜାର ମହଲ୍ଲା ଅନ୍ତର୍ଗତ ବସ୍ତିଗୁଡ଼ିକ ହେଲା—

୮—ତେଲଙ୍ଗା ବଜାର
୯—କସିନ୍‌ପୁର (କୃଷ୍ଣପୁର)
୧୦—ବୁଗୁଡ୍‌ପୁର (ଭଗବତପୁର)
୧୧—ବେଙ୍ଗଲ ସାହି (ବଙ୍ଗାଳୀ ସାହି)
୧୨—ବୋଖିରାବାଦ, (ଆଧୁନିକ ନାମ ବାଖରାବାଦ)
୧୩—ବାହୋରନଲ୍ (ବାହାରନାଳ, ଆଧୁନିକ ମ୍ୟୁନିସିପାଲିଟି ଅନ୍ତର୍ଗତ ଏକ ରାଜସ୍ୱଗ୍ରାମ)
୧୪—ମାଣିକ୍‌ଘୋଷ ବଜାର

ଯେଉଁ ଜମିଦାରଙ୍କ ଜଙ୍ଗଲ ଅଞ୍ଚଳ ଏହି ମହଲ୍ଲା ମଧ୍ୟରେ ରହିଛି ସେ ଅବଶ୍ୟ ଏହି ଜଙ୍ଗଲକୁ ସଫା କରିଦେବେ ବୋଲି କହିଛନ୍ତି ଏବଂ ତାହା ସମ୍ପନ୍ନ ହେଲେ ଏହି ନଗ୍ନଟିଆ ଅଞ୍ଚଳର ଡର ଭାଙ୍ଗିଯିବ । ଏଥି ମଧ୍ୟରେ ଏହାର ଅନେକାଂଶ କଟା ଯାଇ ସାରିଲାଣି ମାତ୍ର ଏଠାରେ ପହରା ଦବା କେତେ କଷ୍ଟକର ତା' ଆପଣ ବୁଝିପାରୁଥିବେ । ଗୁଡ଼ିଏ ଜଣ ଶ୍ରମିକଙ୍କ ପରିଶ୍ରମରେ ମଧ୍ୟ ୧୫ ଦିନ ଭିତରେ ଏହି ଜଙ୍ଗଲ ସମ୍ପୂର୍ଣ୍ଣ କଟାଯାଇ ପାରିବ ନାହିଁ ।

୬ । ଏହି ଅଞ୍ଚଳର ଲୋକେ ଗରିବ ହୋଇଥିବାରୁ ଟିକସ ଦେବା ଅବସ୍ଥାରେ ନାହାନ୍ତି ମାତ୍ର ମୁଁ ଦାୟିତ୍ୱ ନେବା ଦିନଠାରୁ ଏ ଅଞ୍ଚଳରେ ବାରମ୍ବାର ଚୋରି ଡକାୟତି ହେଉଥିବାରୁ ଏଠାରେ ଯଥେଷ୍ଟ ସଂଖ୍ୟକ ଚୌକିଦାର ମୁତୟନ ଆବଶ୍ୟକ ।

୭ । ଏହି ମହଲ୍ଲାର ମୁଖ୍ୟ ବଜାର ବକ୍‌ସି ବଜାର—(ଏହା ଭୁଲରେ ଲେଖାଯାଇଛି କାରଣ ପରେ ବକ୍‌ସିବଜାର ଏକ ସ୍ୱତନ୍ତ୍ର ମହଲ୍ଲା ଭାବରେ ଉଲ୍ଲିଖିତ)

୮ । ତୃତୀୟ ମହଲ୍ଲା ବା କାଫିଲ ବଜାର ଅନ୍ତର୍ଗତ ସ୍ଥାନ ଗୁଡ଼ିକ ହେଲା—

୧୫—କାଫିଲ୍ ବଜାର (କାଫ୍‌ଲ୍ ବଜାର)

୧୬—ମହମ୍ମଦ ଜାନ ବଜାର (ମହମଦିଆ ବଜାର)

୧୭—ଜଗନ୍ନାଥ ବଲ୍ଲଭ

୧୮—ଶେଖ୍‌ବଜାର

୧୯ – ଅଲଗ୍ଧ ବଜାର (ଅଲିଶା ବଜାର)

୨୦—ମାନସିଂପାଟଣା

୨୧—ମଙ୍ଗଳା ସାହି (ମଙ୍ଗଳାବାଗ ନୁହେଁ ଅନ୍ୟ ଏକ ସାହି)

୨୨—ବୁଟିନ୍ ସାହି

୨୩—କଟଗେ ସାହି (କାଠଗଡ଼ା ସାହିର ଇଂରାଜୀ ତର୍ଜମା ?)

୨୪—କୁଚ ଅଲଗ୍ଧ ବଜାର (ସ୍ଥାନଟି ଜାଣି ହେଉନାହିଁ, ସମ୍ଭବତଃ ୧୯ ନମ୍ବର ଅଲିଶା ବଜାରର ଏକ ଅଂଶ ।)

ସଙ୍କୀର୍ଣ୍ଣ ବୁଲଣିଆ ଗଳିପୂର୍ଣ୍ଣ ଏହି ଅଞ୍ଚଳରେ ସେପରି ବିଶେଷ ଧନୀ ଲୋକ ନଥିବାରୁ କିମ୍ବା ଏଠାରେ ଚୋରଚପାଟି ବିଶେଷ ହେଉ ନଥିବାରୁ ଅଧିକ ସଂଖ୍ୟକ ଚୌକିଦାରଙ୍କ ଆବଶ୍ୟକତା ନାହିଁ ।

୯ । ଏହି ମହଲ୍ଲାରେ ୧୦୪୦ଟି ଘର ଅଛି । ଏଠାକାର ମହମ୍ମଦ୍‌ଜାନ ବଜାରରେ ସର୍ବାଧିକ ଧନୀ ଲୋକ ରହନ୍ତି ।

୧୦ । ଚତୁର୍ଥ ମହଲ୍ଲା ବା ଗଙ୍ଗାମଂଡଲ୍ ନିମ୍ନଲିଖିତ ସାହି ଓ ବଜାରକୁ ନେଇ ଗଠିତ ।

୨୫—ଗଙ୍ଗାମଂଡଲ୍ (ଗଙ୍ଗା ମନ୍ଦିର)

୨୬—ଚୌଧୁରୀ ବଜାର

୨୭—ବାଙ୍କା ବଜାର

୨୮—ସୂତଠା ସାହି (ବୋଧହୁଏ ସୂତାହାଟ)

୨୯—ଡଗର୍ ବଜାର (ଦରଘା ବଜାର)

୩୦—ଖଟିନ୍ ସେହପୁ (ଖଟ୍‌ବିନ୍ ସାହି)

୩୧—ତସଭ୍‌ଖାନ ବଜାର (ତାତର ଖାଁ ବଜାର ବା ପ୍ୟାର ଖାଁ ବଜାର ?)

୩୨—ସପନ୍ ଝିଲ୍ (କଟକ ସହର ଭିତରେ ଏହି ଝିଲ୍ ବା ହ୍ରଦର ସ୍ଥିତି କେଉଁଠି ?)

୩୩—କସମା ବଜାର (କାସିମ୍ ବଜାର)

୧୧ । ଏହି ମହଲ୍ଲାର ଚୌଧୁରୀ ବଜାର ହିଁ ମୁଖ୍ୟ ସ୍ଥାନ । ଏଠାରେ ଛଅଜଣ ଚୌକିଦାର ନିଯୁକ୍ତ ଅଛନ୍ତି ।

୧୨ । ବାଙ୍କା ବଜାର, ସୁଥୁଠା ସାହି, ଖଟ୍‌ବିନ୍ ସାହି, ତାତରଖାଁ ବଜାରର ଅଧିବାସୀ ଅତ୍ୟନ୍ତ ଦରିଦ୍ର ମାତ୍ର ବଜାରଗୁଡ଼ିକ ଲଗାଲଗି ହୋଇଥିବାରୁ ସ୍ଥାନଟି ସୁରକ୍ଷିତ ।

୧୩ । ପଞ୍ଚମ ମହଲ୍ଲା ବା କଦମ୍‌ରସୁଲ୍ ଅନ୍ତର୍ଗତ ସ୍ଥାନଗୁଡ଼ିକ ହେଲା—

୩୪—ଜଲାଉପୁର ବା କଦମ୍‌ରସୁଲ

୩୫—ହରିପୁର

୩୬—ପିଟୋଉପୁର (ପିଠାପୁର)

୩୭—ବଡ଼ା ସାହି (ସ୍ଥାନ ନାମଟିକୁ ଚିହ୍ନଟ କରାଯାଇ ପାରୁନାହିଁ । ବାଉଁସ ପାଟଣା କି ? )

୩୮—କମା ସାହି (କମ ସାହି)

୩୯—ମହୁରିଆ ବଜାର (ମେରିଆ ବଜାର)

୪୦—ବଜାର ଓରଜମ ଖାନ (ଆଜମ ଖାଁ ବଜାର)

୪୧—ସର୍ଓ୍ୱାଡ ସାହି (ସାଆନ୍ତ ସାହି ?)

ଏହି ମହଲ୍ଲା ଅନ୍ତର୍ଗତ କୌଣସି ବଜାରରେ ସେପରି ଧନୀ ଲୋକ ନାହାନ୍ତି । ଏ ଅଞ୍ଚଳରେ ୬୨୨ଟି ଘର ଅଛି ଓ ୫ ଜଣ ଚୌକିଦାର ନିଯୁକ୍ତ ହୋଇଛନ୍ତି ।

୧୪ । ... ... ...

୧୫ । ଷଷ୍ଠ ମହଲ୍ଲା ବା ବକ୍‌ସି ବଜାର ନିମ୍ନଲିଖିତ ସାହି ଓ ବଜାରକୁ ନେଇ ଗଠିତ । ଯଥା—

୪୨—ବକ୍‌ସି ବଜାର

୪୩—ମୁଳ ସାହି

୪୪—ପାଟନା ମାର୍କାନାଳ ବା ମିର୍‌ଜାମା ପାଟଣା (କଟକ ମ୍ୟୁନିସିପାଲିଟି ଅନ୍ତର୍ଗତ ମିର୍‌କମଳ ପାଟଣାକୁ ବୁଝାଉଛି ।)

୪୫—ପାଟଣା ମଜ୍ଁମିର (ଏହି ସ୍ଥାନଟିକୁ ଜାଣି ହେଉନାହିଁ)

୪୬—ମଙ୍ଗଲାବାଗ୍

୪୭—ମିର୍ଜା ପାଟଣା

୪୮—କେଶରପୁର କୁସ୍କୋ

୪୯—ପାକମୋଲ (ଜାଣି ହେଉନାହିଁ)

୫୦—ଜାଗିର୍ ସଉଦ ସାହି (ଆଧୁନିକ ଶଗଡ଼ିଆ ସାହି)

୫୧—ରଣ୍ଡକୁଣ୍ଡ (ରାଣୀହାଟ)

୫୨—ଜବ୍ରା (ଯୋବ୍ରା)

୫୩—ମରଦ୍‌ଖାନ ପାଟଣା (ମୁରାଦ୍‌ଖାଁ ପାଟଣା)

ଏହି ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ଅନେକ ଧନୀ ବ୍ୟକ୍ତି ତଥା ବହୁ ଗରିବ ଲୋକ ରହିଛନ୍ତି ।

୧୬ । ...

୧୭ । ଏହି ଅଞ୍ଚଳରେ ୧୧୯୦ଟି ଘର ରହିଛି । ଏଠାରେ ପହରା ଦେବା କାର୍ଯ୍ୟରେ ୧୨ ଜଣ ଚୌକିଦାର ନିଯୁକ୍ତ ଅଛନ୍ତି ।

୧୮ । ଏହି ସବୁ ତଥ୍ୟରୁ ଜଣାଯାଏ ଯେ କଟକ ନଗରରେ ଛଅ ହଜାର ତିନିଶହ ଏକାନବେଟି ଘର ରହିଛି । ଏହାର ସୁରକ୍ଷା ପାଇଁ ନିଯୁକ୍ତ ୫୫ ଜଣ ଚୌକିଦାରଙ୍କ ବେତନ ବାବଦରେ ମାସିକ ୧୫୫ ଟଙ୍କା ( ? ) ଖର୍ଚ୍ଚ ହୁଏ । (ବାସ୍ତବରେ ୧୬୫ ଟଙ୍କା ହେବ)

୧୯ । ଅନ୍ୟ କୌଣସି ସହରରେ ଛଅ ଶହରୁ ଊର୍ଦ୍ଧ୍ୱ ଘରକୁ ଜଗିବା ପାଇଁ ଏତେ କମ୍ ସଂଖ୍ୟକ ଚୌକିଦାର ଯଥେଷ୍ଟ ହୁଅନ୍ତା ନାହିଁ । ମାତ୍ର ଏଠାକାର ସାହି ବସ୍ତିର ଟିକସ ଦେବା କ୍ଷମତା ତଥା ବହୁଳାଂଶରେ ନିର୍ଜନ ସ୍ଥାନ ଓ ଝାଟିମାଟିର ଘର-ଗୁଡ଼ିକ ଥିବା ଦୃଷ୍ଟିରୁ ଏହି ସଂଖ୍ୟା ସ୍ଥିର କରାଯାଇଛି ।

୨୦ ।

୨୧ ।

୨୨ ।

୨୩ ।

୨୪ ।

୨୫ । ପରିଶେଷରେ ମୁଁ ଆପଣଙ୍କର ଧ୍ୟାନ ତୃତୀୟ ମହଲ୍ଲା ଅର୍ଥାତ୍ ତେଲିଙ୍ଗା ବଜାର ପ୍ରତି ଆକର୍ଷଣ କରିବାକୁ ଚାହେଁ । ଏହି ମହଲ୍ଲାରେ ଜମିଦାର କାହ୍ନୁ ଆଚାର୍ଯ୍ୟଙ୍କ କେତେକ ଜମିବାଡ଼ି ରହିଛି । ଚତୁର୍ଥ ମହଲ୍ଲାର ସପନାଝିଲ୍ ଅଞ୍ଚଳ ମଧ୍ୟ ଏହି ଜମିଦାରଙ୍କର । ତେଲିଙ୍ଗା ବଜାର ଅଞ୍ଚଳ ପରି ଏହା ମଧ୍ୟ ଜଙ୍ଗଲାକୀର୍ଣ୍ଣ । ଏହି ଜଙ୍ଗଲକୁ ସେ ସଫା କରି ଦେବାକୁ ପ୍ରସ୍ତୁତ ଅଛନ୍ତି ମାତ୍ର ଏଥିପାଇଁ ୫୦ ଟଙ୍କା ଆବଶ୍ୟକ ହେବ । ତାହା ମଞ୍ଜୁର କରିବାକୁ ସରକାରଙ୍କୁ ମୁଁ ପ୍ରାର୍ଥନା କରୁଛି ।

ଆପଣଙ୍କର
ସଦାସେବା ବିଶ୍ୱସ୍ତ ଭୃତ୍ୟ
ଏମ୍. ଆଇନସ୍ଲି
ଆକ୍ଟିଙ୍ଗ୍ ମାଜିଷ୍ଟ୍ରେଟ୍, କଟକ

ତା ୨୨ । ୧୧ । ୧୮୧୪

(ବନ୍ଧନୀ ମଧ୍ୟରେ ଦିଆଯାଇଥିବା ମନ୍ତବ୍ୟ ତଥା ସମ୍ଭାବ୍ୟ ଆଧୁନିକ ସ୍ଥାନ ନାମ ଏବଂ ୫୩ଟି ସଂଖ୍ୟାନୁକ୍ରମ ଏହି ପ୍ରବନ୍ଧର ଲେଖକଙ୍କ ଦ୍ୱାରା ଦିଆଯାଇଛି ।)

ଆଜି ଅସଂଖ୍ୟ ବଜାର, ଗଳି ଉପଗଳିରେ ସମୃଦ୍ଧ କଟକ ନଗର ସମ୍ପର୍କରେ ଏହି ପୁରାତନ ପ୍ରବାଦଟିର ଭିତ୍ତି ବା ସତ୍ୟତା ଅନୁସନ୍ଧାନ କରିବାକୁ ଯାଇ ୧୮୧୪

ଖ୍ରୀଷ୍ଟାବ୍ଦର ନଭେମ୍ବର ୨୨ ତାରିଖର ଏକ ଚିଠିଟି ଉପସ୍ଥାପିତ କରାଗଲା । ହୁଏତ ଏଥିରେ ଉଲ୍ଲିଖିତ ୫୩ଟି ସ୍ଥାନ ନାମକୁ ଭିତ୍ତିକରି କଟକକୁ ବାଉନ ବଜାର ତେପନ ଗଳିର ସହର ବୋଲି କୁହାଯାଉଥିବ । ଅନ୍ୟ ପକ୍ଷରେ ଏ ଚିଠିର ସ୍ଥାନ ନାମ ସଂଖ୍ୟା ଏବଂ ପ୍ରବାଦର ସମ୍ପର୍କ କାକତାଳୀୟ ହୋଇଥାଇ ପାରେ । ତେବେ ଏ ସମ୍ପର୍କରେ ଆଗ୍ରହୀ ପାଠକ ବା ଗବେଷକ ବନ୍ଧୁମାନେ ଅଧିକ ଅନୁସନ୍ଧାନ କରିପାରନ୍ତି ।

କଟକ ନଗର ସମ୍ପର୍କରେ ବହୁ ପ୍ରାଚୀନ କାହାଣୀ ତଥା ରହସ୍ୟର ଯଥାଯଥ ଅଧ୍ୟୟନ ଏ ପର୍ଯ୍ୟନ୍ତ ହୋଇନାହିଁ । ସହସ୍ର ବର୍ଷ ପୂର୍ତ୍ତି ଉପଲକ୍ଷେ ସେ ସମ୍ପର୍କରେ ଅଧିକ ଆଲୋକପାତ କରାଗଲେ ଓଡ଼ିଶାର ସାଂସ୍କୃତିକ ଇତିହାସରେ ଥିବା ଅଭାବ ଦୂର ହୋଇ ପାରନ୍ତା ।

[ ପ୍ରବନ୍ଧରେ ଅନୂଦିତ ଚିଠିଟି ଗବେଷକ ସୁଶୀଲଚନ୍ଦ୍ର ଦେଙ୍କ ରଚିତ Cuttack 1814 ପ୍ରବନ୍ଧ (The. Orissa Historical Research Journal, Vol. – 8, No-II ରେ ପ୍ରକାଶିତ)ର ପରିଶିଷ୍ଟରୁ ଗୃହୀତ ।



# ରାଜଧାନୀ କଟକ

**ଡକ୍ଟର ଭଗବାନ ପଣ୍ଡା**

ଭାରତୀୟ ଧର୍ମଶାସ୍ତ୍ରରେ ରାଷ୍ଟ୍ରର ସ୍ୱରୂପ ଓ ଗଠନ ବିଭିନ୍ନ ବିଭାଗ, ଶାସନ ପରିଚାଳନା, ସେନାବାହିନୀ ଗଠନ, ଦୁର୍ଗ ନିର୍ମାଣ, ରାଜଧାନୀ ପ୍ରତିଷ୍ଠାଦି ସମ୍ବନ୍ଧରେ ବିସ୍ତୃତଭାବେ ପର୍ଯ୍ୟାଲୋଚନା କରାଯାଇଛି । ରାଜଧର୍ମ ପ୍ରକରଣରେ ରାଜ୍ୟର ସପ୍ତାଙ୍ଗ (ସ୍ୱାମୀ, ଅମାତ୍ୟ, ଜନପଦ, ଦୁର୍ଗ, କୋଶ, ଦଣ୍ଡ ଓ ମିତ୍ର) ଏବଂ ବ୍ୟବହାର (ନ୍ୟାୟପଦ୍ଧତି) ସହିତ ସେ ସମ୍ବନ୍ଧୀୟ ଶିକ୍ଷା ଓ ପ୍ରୟୋଗ ବ୍ୟବସ୍ଥା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ପ୍ରାଚୀନ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ ପ୍ରତ୍ୟେକ ସ୍ୱତନ୍ତ୍ର ଓ ସାର୍ବଭୌମ ରାଜ୍ୟରେ ଏକପ୍ରକାର ବ୍ୟବସ୍ଥା ପ୍ରଚଳିତ ଥିବାରୁ ଭିନ୍ନତା ସତ୍ତ୍ୱେ ସଂସ୍କୃତି ଓ ଐତିହ୍ୟ ଦୃଷ୍ଟିରୁ ଭାରତ ଏକ ମହାନ୍ ସାର୍ବଭୌମ ରାଷ୍ଟ୍ରରୂପେ ଖ୍ୟାତିଲାଭ କରି ଆସିଛି । ଭାରତର ପୂର୍ବଉପକୂଳରେ ଅବସ୍ଥିତ ଓଡ଼ିଶା ମଧ୍ୟ ଏକ ସାର୍ବଭୌମ ରାଷ୍ଟ୍ର ଥିଲା । କଳିଙ୍ଗ, କୋଶଳ ଓ ଉତ୍କଳକୁ ନେଇ ଗଠିତ ଏହାର ସୀମା ଏକଦା ଆଧୁନିକ କେରଳଠାରୁ ମଥୁରା, ପରବର୍ତ୍ତୀ ସମୟରେ କାବେରୀରୁ ଗଙ୍ଗା ଏବଂ ସର୍ବଶେଷରେ ଆଗଙ୍ଗା ଗୋଦାବରୀ ବିସ୍ତୃତ ଥିଲା ।

ପ୍ରାଚୀନ ଉତ୍କଳର ବିଭିନ୍ନ ଅଞ୍ଚଳରେ ବିବିଧ ରାଜବଂଶ ରାଜତ୍ୱ କରୁଥିଲେ ଏବଂ ପ୍ରତ୍ୟେକ ରାଜବଂଶର ସ୍ୱତନ୍ତ୍ର ରାଜଧାନୀ ଥିଲା । ମହାମେଘବାହନ ସମ୍ରାଟ ଖାରବେଳଙ୍କ ସମୟରେ ତୋଷାଳୀ ଓଡ଼ିଶାର ରାଜଧାନୀ ଥିଲା । କେତେକ ଐତିହାସିକ ତୋଷାଳୀର ଅବସ୍ଥିତି ବିଷୟରେ ଭିନ୍ନମତ ପୋଷଣ କରନ୍ତି । କେତେକ ଗବେଷକ ତୋଷାଳୀକୁ ଶିଶୁପାଳଗଡ଼ ସହିତ ଚିହ୍ନିତ କରୁଥିବାବେଳେ ଅନ୍ୟ କେତେକ ଏହା ପ୍ରାଚୀନଦୀ ତୀରବର୍ତ୍ତୀ କୌଣସି ସ୍ଥାନରେ ଥିଲା ବୋଲି ମତ ଦେଉଛନ୍ତି ।

ଓଡ଼ିଶାର ଅଭିଲେଖଗୁଡ଼ିକ ଅନୁଶୀଳନ କଲେ ମାଠର, ବିଗ୍ରହ, ନଳ, ମୁଦଗଲ ବଂଶୀୟ ରାଜାମାନଙ୍କର (୩୫୦-୬୨୦ ଖ୍ରୀ:ଅ:) ରାଜଧାନୀ, ସ୍କନ୍ଧାବାର (ସେନାନିବାସ) ବ୍ୟତୀତ ବିଜୟବର୍ଦ୍ଧମାନପୁର, ବିଜୟପୁର, ବିଜୟସିଂହପୁର, ବିଜୟ-

ପିଷ୍ଟପୁର, ବିଜୟଦେବପୁର, ବିଜୟସୁନଗର, ବିରଜାନଗର ପ୍ରଭୃତିରେ ପ୍ରତିଷ୍ଠିତ ଥିବାର ସୂଚନା ମିଳେ । ଶୈଳୋଦ୍‌ଭବମାନଙ୍କ (୬୫୦-୭୫୦ ଖ୍ରୀ: ଅ:) ରାଜତ୍ୱକାଳରେ ବିଜୟକଙ୍ଗୋଦ, କୋଙ୍ଗଦବାସକ, ବିଜୟସୌମ୍ୟପୁର ପ୍ରଭୃତି ଶାସନ ପରିଚାଳନାର କେନ୍ଦ୍ର ଥିଲା । ଶୈଳୋଦ୍‌ଭବମାନଙ୍କ ପରେ କଳିଙ୍ଗନଗର ଓ ଶ୍ୱେତକଗଙ୍ଗ ବଂଶୀୟମାନେ (୩୯୩-୧୧୧୦ ଖ୍ରୀ: ଅ:) ଜୟସ୍କନ୍ଧାବାର, ବିଜୟ କଳିଙ୍ଗନଗର, ବିଜୟଶ୍ୱେତକ, ବିଜୟ କୋଙ୍ଗଦ ପ୍ରଭୃତି ସ୍ଥାନରୁ ରାଜ୍ୟ ପରିଚାଳନା କରୁଥିଲେ । ଭୌମକର ରାଜାମାନଙ୍କ ରାଜତ୍ୱକାଳରେ (୭୫୦-୯୫୦ ଖ୍ରୀ: ଅ:) ବିରଜାନଗର ବା ଯାଜନଗର (ଯାଜପୁର) ଥିଲା ଓଡ଼ିଶାର ରାଜଧାନୀ । ସୋମବଂଶୀୟ ରାଜାମାନଙ୍କ ସମୟରେ (୯୫୦-୧୧୫୦ ଖ୍ରୀ: ଅ:) ଶ୍ରୀପୁର ଥିଲା ରାଜତ୍ୱର ପ୍ରାରମ୍ଭିକ ରାଜଧାନୀ । ପରେ ଏହା ସମୟକ୍ରମେ ବିନୀତପୁର, ଯଯାତିନଗର ବା ଯାଜପୁର ଓ ଚୌଦ୍ୱାରକୁ ସ୍ଥାନାନ୍ତରିତ ହୋଇଥିଲା । ସେତେବେଳେ ଆରାମବିଜୟକଟକ, ସୁବର୍ଣ୍ଣପୁର (ସୋନପୁର) ବିଜୟକଟକ ପ୍ରଭୃତି ସ୍ଥାନରୁ ରାଜ୍ୟଶାସନ ପରିଚାଳନା କରାଯାଉଥିଲା । କିନ୍ତୁ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱକାଳରେ ଆଧୁନିକ କଟକ ଓଡ଼ିଶାର ରାଜଧାନୀ ରୂପେ ପ୍ରତିଷ୍ଠା କରାଗଲା ।

ଅଭିଧାନରେ 'କଟକ' ଶବ୍ଦଟିର ବିଭିନ୍ନ ପ୍ରକାର ଅର୍ଥ କରାଯାଇଛି । ଅମର-କୋଷ ଅନୁସାରେ କଟକର ଅର୍ଥ ନିତମ୍ବ, ବଳୟ ଓ ଚକ୍ର । ମେଦିନୀକୋଷରେ ହସ୍ତୀଦନ୍ତମଣ୍ଡଳ, ସାମୁଦ୍ରିକଲବଣ ଓ ରାଜଧାନୀକୁ କଟକ ବୋଲି କୁହାଯାଇଛି । ଶବ୍ଦରତ୍ନାବଳୀରେ କଟକର ଅର୍ଥ ନଗର ବା ନଗରୀ । ଅଭିଧାନ ଚିନ୍ତାମଣିରେ କଟକକୁ ସେନାନିବାସ, ବିଶ୍ୱକୋଷରେ ସାନୁ ଏବଂ ଓଡ଼ିଆ ଅଭିଧାନରେ ରାଜଧାନୀ, ସେନା-ନିବାସ ଓ ଶିବିର ଅର୍ଥ କରାଯାଇଛି । ଓଡ଼ିଶାରେ ଏହି ଶବ୍ଦଟି ଦୁର୍ଗ ଓ ରାଜଧାନୀ ଅର୍ଥରେ ବିଶେଷଭାବେ ବ୍ୟବହୃତ ହୋଇଥାଏ । ସେହି ଦୃଷ୍ଟିରୁ ଓଡ଼ିଶାରେ ସହସ୍ରାଧିକ ଦୁର୍ଗ ସହିତ ରାଜଧାନୀ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିବାର ଜଣାଯାଏ ।

ଇତିହାସପ୍ରସିଦ୍ଧ ମନ୍ଦିରମାଳିନୀ ନଗରୀ ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା ହେବା ପୂର୍ବରୁ ଦୀର୍ଘକାଳ ଧରି ଆଧୁନିକ କଟକନଗର ଓଡ଼ିଶାର ରାଜଧାନୀ ରୂପେ ଖ୍ୟାତି ଲାଭ କରିଥିଲା । ପୁଣ୍ୟତୋୟା ମହାନଦୀ ଓ ତା'ର ଶାଖାନଦୀ (କାଠଯୋଡ଼ି)ର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ କଟକ ନଗର ପ୍ରାୟ ହଜାରେ ବର୍ଷକାଳ ପ୍ରାଚୀନ ଉତ୍କଳର ରାଜଧାନୀ ଥିଲା । ଭୌଗୋଳିକ ଓ ଐତିହାସିକ ଦୃଷ୍ଟିକୋଣରୁ ବିଚାରକଲେ ରାଜଧାନୀ କଟକ ପରି ପ୍ରତିଷ୍ଠିତ ନଗର ଭାରତରେ ବିରଳ । କଟକର ଅବସ୍ଥିତିକୁ ନେଇ ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମଦେବଙ୍କ (୧୨୧୧-୧୨୩୮ ଖ୍ରୀ:ଅ:) ସମୟରେ ଏହା ଅଭିନବ ବାରାଣସୀ କଟକ ନାମରେ ନାମିତ ହୋଇଥିବା ନଗରୀ ତାମ୍ରପତ୍ରରୁ ପ୍ରମାଣିତ ହୁଏ ।

ଓଡ଼ିଶାର ପଞ୍ଚକଟକ ମଧ୍ୟରୁ ଅଭିନବ ବାରାଣସୀ କଟକ ସାମରିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଥିଲା । ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ ସ୍ଥଳପଥ ଓ ଜଳପଥରେ ଯୋଗାଯୋଗ ରକ୍ଷା ସହିତ ଦେଶର ସମୁଦ୍ରରେ ନୌବାହିନୀର ପରିଚାଳନା ଏବଂ ବହିର୍ବାଣିଜ୍ୟ କ୍ଷେତ୍ରରେ କଟକ ମୁଖ୍ୟକେନ୍ଦ୍ର ରୂପେ ବିବେଚିତ ହେଉଥିଲା । ପ୍ରାଚୀନ ଭାରତର ଇତିହାସରେ ଉଲ୍ଲେଖନୀୟ ସ୍ଥାନ ଲାଭ କରିବା ସଙ୍ଗେ ସଙ୍ଗେ କଟକ ନଗର ଓଡ଼ିଶା ଓ ଓଡ଼ିଆ ଜାତିର ଇତିହାସ ଓ ସଂସ୍କୃତି କ୍ଷେତ୍ରରେ ଅଦ୍ୟାବଧି ପ୍ରମୁଖ ସ୍ଥାନଲାଭ କରିଆସିଛି ।

ରାଜଧାନୀ ରୂପେ କଟକର ପ୍ରତିଷ୍ଠାକାଳକୁ ନେଇ ଇତିହାସକାରମାନଙ୍କ ମଧ୍ୟରେ ନାନାପ୍ରକାର ମତଭେଦ ସୃଷ୍ଟି ହୋଇଥିବାର ଦେଖାଯାଏ । ମାଦଳାପାଞ୍ଜିର ଉଲ୍ଲେଖ ଅନୁସାରେ ରାଜା ନୃପକେଶରୀ ୯୮୯ ଖ୍ରୀଷ୍ଟାବ୍ଦରେ ଆଧୁନିକ କଟକନଗର ପ୍ରତିଷ୍ଠା କରିଥିବାର ଜଣାଯାଏ । ବନ୍ୟାବିପତ୍ତିରୁ ରାଜଧାନୀ କଟକ ନଗରକୁ ସୁରକ୍ଷିତ ରଖିବା ପାଇଁ ମର୍କତକେଶରୀ ୧୦୦୬ ଖ୍ରୀଷ୍ଟାବ୍ଦରେ ପଥର ବନ୍ଧ ନିର୍ମାଣ କରାଇଥିଲେ । ମାଦଳା-ପାଞ୍ଜିର ଏହି ଉଲ୍ଲେଖ ସହିତ ଆବିଷ୍କୃତ ତାମ୍ରପତ୍ରଗୁଡ଼ିକର ଉଲ୍ଲେଖ ମିଶୁନଥିବାରୁ କଟକର ପ୍ରତିଷ୍ଠା ସମ୍ବନ୍ଧୀୟ ବିବାଦ ସୃଷ୍ଟି ହୋଇଛି । କାରଣ, କେଶରୀ ବଂଶୀୟ ରାଜା ଜନ୍ମେଜୟ ମହାଭବଗୁପ୍ତ ଓ ତାଙ୍କ ପୁତ୍ର ଯଯାତି ୨ୟ ମହାଶିବଗୁପ୍ତ (୯୨୨-୯୫୫ ଖ୍ରୀ:ଅ) ଯେଉଁ ରାଜଧାନୀ କଟକ ପ୍ରତିଷ୍ଠା କରିଥିଲେ, ତାହା ଯଥାକ୍ରମେ ଅଭିନବ ଯଯାତି ନଗର ଓ ଯଯାତି ନଗର ନାମରେ ଅଭିହିତ । ସେଥିରୁ ପ୍ରଥମଟି ଚୌଦ୍ୱାର କଟକ ଓ ଦ୍ୱିତୀୟଟି ସୋନପୁରର ମହାନଦୀ କୂଳରେ ପ୍ରତିଷ୍ଠିତ ନଗର ରୂପେ ପରିଚିତ । ମାଦଳା ପାଞ୍ଜି ଓ ନବ୍ୟୋଦୟରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ରଚିତ ମୁସ୍‌ଲିମ୍, ଇତିହାସ ଦ୍ୱାରା ଏହା ସମର୍ଥିତ ହୋଇଥିବାର ଜଣାଯାଏ ।

ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ (୧୦୭୮-୧୧୫୦ ଖ୍ରୀ:ଅ:)ସମୟରେ କଳିଙ୍ଗ, କୋଶଳ ଓ ଉତ୍କଳର ଏକତ୍ରୀକରଣ ସମ୍ପାଦିତ ହୋଇଥିଲା । ତାଙ୍କ ରାଜତ୍ୱକାଳରେ ସେ ନବଗଠିତ ଓଡ଼ିଶା ରାଷ୍ଟ୍ରର ରାଜଧାନୀ ୧୧୩୫ ଖ୍ରୀଷ୍ଟାବ୍ଦରେ କଳିଙ୍ଗ ନଗରରୁ (ଆନ୍ଧ୍ର ପ୍ରଦେଶର ମୁଖଲିଙ୍ଗ) କଟକକୁ ଉଠାଇ ଆଣିଥିଲେ । ତତ୍ପୂର୍ବରୁ ନଆଳି କଟକ ଥିଲା ତାଙ୍କ ରାଜଧାନୀ । ଚୋଡ଼ଗଙ୍ଗ ଦେବଙ୍କ ନୂଆ ରାଜଧାନୀ କଟକ କାଠଯୋଡ଼ି ନଦୀର ଦକ୍ଷିଣରେ ପ୍ରତିଷ୍ଠିତ ଥିଲା । ଇତିହାସକାରମାନେ ଏହାକୁ ସାରଙ୍ଗଗଡ଼ ବା ଚୂଡ଼ଙ୍ଗଗଡ଼ ସହିତ ଚିହ୍ନିତ କରିଛନ୍ତି । ପରବର୍ତ୍ତୀ ସମୟରେ ଓଡ଼ିଶାର ରାଜଧାନୀ ଅଭିନବ ଯଯାତି ନଗର ବା ଚୌଦ୍ୱାର କଟକରେ ପ୍ରତିଷ୍ଠା କରାଯାଇଥିଲା । ଗଙ୍ଗରାଜା ଅନଙ୍ଗ ଭୀମଦେବ ଶକାବ୍ଦ ୧୧୫୧ ବା ୧୨୨୯ ଖ୍ରୀଷ୍ଟାବ୍ଦରେ ନିଜ ରାଜଧାନୀକୁ ଯଯାତିନଗରରୁ ଅଭିନବ ବାରାଣସୀ କଟକ ବା ଆଧୁନିକ କଟକ ନଗରକୁ ଉଠାଇ ଆଣିଥିଲେ । ଏହି ଘଟଣା ମାଦଳା ପାଞ୍ଜିରେ ମଧ୍ୟ ବର୍ଣ୍ଣିତ ହୋଇଛି ।

ଐତିହାସିକମାନେ ଆଧୁନିକ କଟକ ଓଡ଼ିଶାର ରାଜଧାନୀ ହେବାର ବର୍ଣ୍ଣନା ଥିବା ମାଦଳା ପାଞ୍ଜିର ଉଲ୍ଲେଖକୁ ସ୍ୱୀକାର କରୁଥିଲେ ମଧ୍ୟ ସେହି ମାଦଳା ପାଞ୍ଜିରେ ବର୍ଣ୍ଣିତ ନୃପକେଶରୀଙ୍କ ଦ୍ୱାରା କଟକନଗର ପ୍ରତିଷ୍ଠା ଓ ମର୍କତକେଶରୀଙ୍କ ଦ୍ୱାରା ନିର୍ମିତ ପଥରବନ୍ଧ ଘଟଣାକୁ ସ୍ୱୀକାର କରୁନାହାଁନ୍ତି ।

ଗଙ୍ଗସମ୍ରାଟ ଅନଙ୍ଗଭୀମ ଦେବ ଓଡ଼ିଶାର ରାଜଧାନୀ କଟକରେ (ଆଧୁନିକ କଟକ ନଗରେ) ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଏକ ବିରାଟ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ । ଖ୍ରୀଷ୍ଟୀୟ ୧୨୨୯ରେ ପ୍ରତିଷ୍ଠିତ ସେହି ମନ୍ଦିର ଧ୍ୱଂସପ୍ରାପ୍ତ ହୋଇଥିଲେ ମଧ୍ୟ ତା'ର ଭଗ୍ନାବଶେଷ ସମ୍ପ୍ରତି ବାରବାଟୀର ଭୂଖୋଦନରୁ ମିଳୁଥିବାର ଦେଖାଯାଏ । ତେଣୁ ମନ୍ଦିର ପ୍ରତିଷ୍ଠା ପୂର୍ବରୁ ରାଜଧାନୀ ନିର୍ମିତ ହୋଇଥିବାର ଜଣାଯାଏ । କେତେକ ଆଲୋଚକ କଟକର ବାରବାଟୀ ଦୁର୍ଗରେ ଜଗନ୍ନାଥ ମନ୍ଦିର ନଥିଲା କି ସେଠାରେ ନିର୍ମିତ ନବତଳ ପ୍ରାସାଦ ନଥିଲା ବୋଲି ଯେଉଁ ମତ ପୋଷଣ କରନ୍ତି, ତାହା ଆଦୌ ଠିକ୍ ନୁହେଁ । କାରଣ ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେବାପାଇଁ ଯେଉଁ ପରୀକ୍ଷା ନିରୀକ୍ଷା ଓ ଗବେଷଣା ଆବଶ୍ୟକ ତାହା ଏପର୍ଯ୍ୟନ୍ତ ଆରମ୍ଭ ହୋଇନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗବେଷକମାନେ ସବୁ ସମୟରେ ପରମ୍ପରା ଓ କିମ୍ବଦନ୍ତୀକୁ ଅନୈତିହାସିକ ବୋଲି କହି ଉଡ଼ାଇଦେବା ଉଚିତ ନୁହେଁ, କାରଣ ଏକଦା ଖ୍ରୀଷ୍ଟପୂର୍ବ ୧୫୫୦ କାଳୀନ ପୌରାଣିକ ଦ୍ୱାରକାନଗରୀକୁ କପୋଳକଳ୍ପିତ ଓ ଅସତ୍ୟ ବୋଲି ଭାବୁଥିବା ଇତିହାସକାରମାନଙ୍କ ସିଦ୍ଧାନ୍ତ ଭ୍ରମାତ୍ମକ ପ୍ରମାଣିତ ହୋଇଛି । ଦ୍ୱାରକାର ଉଦ୍‌ଘାଟନ ଦ୍ୱାରା ଭାରତୀୟ ପୁରାଣ ବର୍ଣ୍ଣନାକୁ ଅସତ୍ୟ ବୋଲି କହି ପୂର୍ବପରି ଉଡ଼ାଇ ଦେବା ଆଜି ଆଉ ସମ୍ଭବ ନୁହେଁ ।

ସେହିପରି ଆହୁରି ଅନେକ ମୌଳିକ ଓ ପାରମ୍ପରିକ ତଥ୍ୟର ଉଦାହରଣ ରହିଛି—ଯାହାକୁ ଇତିହାସକାରମାନେ ସତ୍ୟ ବୋଲି ଜାଣିଥିଲେ ମଧ୍ୟ 'ପରପ୍ରତ୍ୟୟନେୟ ବୁଦ୍ଧି' ଦ୍ୱାରା ଅସତ୍ୟ ରୂପେ ପ୍ରମାଣ କରିବା ପାଇଁ ଚେଷ୍ଟା କରି ଚାଲିଛନ୍ତି । ତେଣୁ ଅନଙ୍ଗଭୀମଦେବ କଟକରେ ରାଜଧାନୀ ପ୍ରତିଷ୍ଠା କରିବା ପୂର୍ବରୁ ସେଠାରେ ରାଜଧାନୀ ନଥିଲା ବୋଲି କହିବା ଯୁକ୍ତିସଙ୍ଗତ ମନେହୁଏ ନାହିଁ । ପରବର୍ତ୍ତୀ ସମୟରେ ସେ ସମ୍ବନ୍ଧୀୟ ଐତିହାସିକ ତଥ୍ୟ ଯେ ନମିଳିବ, ତାହା କେହି ଦୃଢ଼ଭାବରେ କହିବା ସମ୍ଭବ ନୁହେଁ ।

ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ ପରେ ଗଜପତିମାନଙ୍କ ରାଜତ୍ୱକାଳରେ (୧୪୩୫-୧୫୬୮ ଖ୍ରୀ:ଅ:) ଓଡ଼ିଶାର ରାଜଧାନୀ ଅଭିନବ ବାରଣସୀ କଟକରେ ଥିଲା । ଗଜପତି ପୁରୁଷୋତ୍ତମ ଦେବ କାଞ୍ଚୀ ବିଜୟ ପରେ ଆଣିଥିବା ଶ୍ରୀକୃଷ୍ଣ ସାକ୍ଷୀଗୋପାଳ ମୂର୍ତ୍ତି ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଆଗମନ ପର୍ଯ୍ୟନ୍ତ (୧୫୧୦ ଖ୍ରୀ:ଅ:) ଏହି କଟକରେ

ପୂଜିତ ହେଉଥିଲେ । ଗଜପତି ସାମ୍ରାଜ୍ୟର ପତନ ପରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଆଫଗାନ୍ ଶାସନାଧୀନ ହେଲା । ସମ୍ରାଟ ଆକବରଙ୍କ ସାମ୍ରାଜ୍ୟଭୁକ୍ତ ହେବାପରେ (୧୫୯୦ ଖ୍ରୀ: ଅ:) ଓଡ଼ିଶାକୁ ପାଞ୍ଚୋଟି ସରକାରରେ (ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଓ ରାଜମହେନ୍ଦ୍ର) ବିଭକ୍ତ କରାଯାଇ (୧୫୯୨ ଖ୍ରୀ:ଅ:) ଏହି କଟକରୁ ଶାସନ ପରିଚାଳନା କରାଯାଉଥିଲା । ୧୮୦୩ରେ ଓଡ଼ିଶା ଇଂରେଜ ଶାସନାଧୀନ ହେଲା ପରେ ବି କଟକ ଓଡ଼ିଶାର ରାଜଧାନୀ ହୋଇ ରହିଲା ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଓଡ଼ିଶାର ରାଜଧାନୀ କଟକର ଇତିହାସ ଆଠଶହ ବା ହଜାରେ ବର୍ଷରୁ ଅଧିକ ପ୍ରାଚୀନ ବୋଲି ମନେହୁଏ । ଏ ବିଷୟରେ ଅଧିକ ଗବେଷଣା ଓ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷାର ଆବଶ୍ୟକତା ରହିଛି । ବିଗତ ସହସ୍ରାଧିକ ବର୍ଷ ଧରି ଭାରତର ଅନ୍ୟତମ ପ୍ରାଚୀନ ନଗରୀ ତଥା ଓଡ଼ିଶାର ରାଜଧାନୀ ରୂପେ 'କଟକ' ଯେ ଓଡ଼ିଆ ଜାତିର ଐତିହାସିକ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର ରୂପେ ପ୍ରତିଷ୍ଠା, ସମ୍ମାନ ଓ ଖ୍ୟାତି ଲାଭ କରି ଆସିଛି । ସେଥିରେ ସନ୍ଦେହର ଅବକାଶ ନାହିଁ ।



# ଇତିହାସ ପୃଷ୍ଠାରୁ କଟକ ନଗର

**ଡଃ ହେମନ୍ତ କୁମାର ଦାସ**

ଗଙ୍ଗ ବଂଶର ରାଜତ୍ୱ ପୂର୍ବରୁ କଟକ ସହର ସମ୍ପର୍କରେ କୌଣସି ଉଲ୍ଲେଖ ଅନ୍ତତଃ ଇତିହାସରୁ ମିଳେ ନାହିଁ । ଅଶୋକଙ୍କ କଳିଙ୍ଗ ଯୁଦ୍ଧ କଥା ଇତିହାସର ଏକ ମୂଲ୍ୟବାନ୍ ଉପାଦାନ । ମୌର୍ଯ୍ୟ ବାହିନୀ ନିଶ୍ଚୟ କଟକ ପାଖରେ ମହାନଦୀ ପାର ହୋଇ ଧଉଳି ଆଡ଼େ ଯାଇଥିବେ । ମାତ୍ର ଧଉଳି ଶିଳାଲେଖରେ ସେ ବିଷୟରେ କୌଣସି ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ସେମିତି ମହାମେଘ ବାହନ ଖାରବେଳଙ୍କ କଥା। ସେ ମଧ୍ୟ ଏଇ ବାଟେ ମଗଧ ଅଭିଯାନରେ ବାହାରି ଜିନ ସିଂହାସନ ନେଇ ସଗର୍ବରେ ପୁଣି ଏଇବାଟେ ରାଜଧାନୀକୁ ବାହୁଡ଼ି ଥିବେ । ମାତ୍ର ତାଙ୍କର ଉଦୟଗିରି ଶିଳାଲେଖରେ ମଧ୍ୟ କଟକ ନଗରୀର କୌଣସି ଉଲ୍ଲେଖ ନାହିଁ । ଅବଶ୍ୟ ସେଠାରେ ତାହାର ଉଲ୍ଲେଖ ନ ରହିବାରେ ସେଭଳି କୌଣସି ଅସ୍ୱାଭାବିକତା ନାହିଁ ।

ଐତିହାସିକ ଷ୍ଟର୍ଲିଂ ସାହେବ ୧୮୨୨ ମସିହାରେ କଟକ ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ଲେଖିଛନ୍ତି—ଯେ ଏହା ପଞ୍ଚକଟକରେ ଏକତମ ଥିଲା । ତାଙ୍କ ମତରେ (୧) ଯାଜପୁର (୨) ଚୌଦୁଆର (୩) ଅମରାବତୀ (୪) ଛତନା ଏବଂ (୫) ବାରାନସି—ଏହି ପାଞ୍ଚୋଟି ହେଉଛି ପଞ୍ଚକଟକ । ମାଦଳାପାଞ୍ଜିର ବିବରଣୀ ଅନୁସାରେ ଏଇ 'ପଞ୍ଚକଟକ' ହେଉଛି (୧) ଯାଜପୁର କଟକ (୨) ଛତ୍ରିଆ ବା ଅମରାବତୀ କଟକ (୩) ଚୌଦ୍ୱାର କଟକ (୪) ବାରାନସି କଟକ (୫) ସାରଙ୍ଗଗଡ଼ କଟକ । ଏଥିରୁ ଷ୍ଟର୍ଲିଂ ସାରଙ୍ଗଗଡ଼ଟିକୁ ପୁରା ବାଦ୍ ଦେଇଛନ୍ତି ଏବଂ ଅମରାବତୀ ଓ ଛତନାକୁ ଦୁଇଟି ଅଲଗା କଟକ ଭାବରେ ଚିହ୍ନିତ କରିଛନ୍ତି । ତାଙ୍କ ମତରେ ଏଇ ପଞ୍ଚକଟକ ଥିଲା ଗଙ୍ଗ ବଂଶର ବିଖ୍ୟାତ ରାଜା ଗାଙ୍ଗେଶ୍ୱର ଦେବଙ୍କ ସାମ୍ରାଜ୍ୟର ପାଞ୍ଚୋଟି ପ୍ରଧାନ ନଗର । ଗାଙ୍ଗେଶ୍ୱର ବାରାନସି ବା ବାରାଣସି କଟକରେ ଥାଇ ଓଡ଼ିଶା ଶାସନ କରୁଥିଲେ । ଫରିସ୍ତାଙ୍କ ବଙ୍ଗ ଇତିହାସ ତଥା ଆଇନୀ-ଆକବରୀରେ ମଧ୍ୟ ଏହି ନାମର ଉଲ୍ଲେଖ ଦେଖିବାକୁ ମିଳିଥାଏ । ଐତିହାସିକମାନେ ଏହି ବାରାଣସି କଟକକୁ 'ଆଧୁନିକ କଟକ' ଭାବରେ ଚିହ୍ନିତ କରିଛନ୍ତି ।

କେଉଁ ମହାପ୍ରୁରୁଷ, କେବେ ପ୍ରକୃତରେ କଟକ ନଗରର ଭିତ୍ତି ସ୍ଥାପନ କଲେ ।
ଇତିହାସରୁ ତାହାର କୌଣସି ସୂଚନା ମିଳେ ନାହିଁ । କେବଳ ମାଦଳାପାଞ୍ଜିର
ବିବରଣୀ ଅନୁସାରେ ଏହା କେଶରୀବଂଶର କୀର୍ତ୍ତି ବୋଲି ଧରି ନିଆ ଯାଇଥାଏ । ଷ୍ଟର୍ଲିଂ
ଏ ସମ୍ପର୍କରେ କହନ୍ତି ଯେ, ନୃପକେଶରୀ ହିଁ ପ୍ରଥମେ ଏହି ସ୍ଥାନରେ ଏକ ନଗର ବସାଇ
ଥିଲେ । ନୃପକେଶରୀ ଜଣେ ସ୍ୱାଭିମାନୀ ରାଜା ଓ ଯୋଦ୍ଧା ଥିଲେ । ପଡ଼ୋଶୀ ପ୍ରଦେଶ
ସହିତ ତାଙ୍କର ପ୍ରାୟ ଯୁଦ୍ଧ ବିଗ୍ରହ ଲାଗି ରହିଥିଲା । ସେହି ୯୮୯ ଖ୍ରୀ:ଅରେ ଏହି ନଗରର
ପରିକଳ୍ପନା କରିଥିଲେ । ରାଜା ମର୍କତକେଶରୀ ନୂତନ ନଗରକୁ ବନ୍ୟାର ହାତରୁ
ବଞ୍ଚାଇବା ନିମନ୍ତେ ୧୦୦୬ ମସିହାରେ ଏହାର ଇତିହାସପ୍ରସିଦ୍ଧ ପଥର ବନ୍ଧ ନିର୍ମାଣ
କରାଇଥିଲେ ।

ଇତିହାସରୁ ଆହୁରି ସୂଚନା ମିଳୁଛି ଯେ, ଗଙ୍ଗ ବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗ
କେଶରୀ ବଂଶର ଶେଷ ରାଜାଙ୍କୁ ପରାସ୍ତ କରି ଦ୍ୱାଦଶ ଶତକର ପ୍ରଥମାର୍ଦ୍ଧରେ ଗଙ୍ଗ ବଂଶର
ଶୁଭାରମ୍ଭ କରନ୍ତି । କେଶରୀ ବଂଶର ଇତିହାସ ମଧ୍ୟ ଅନ୍ଧକାରାଚ୍ଛନ୍ନ । ଯଯାତି କେଶରୀ
ଏହି ବଂଶର ପ୍ରଥମ ରାଜା ବୋଲି ଜଣାଯାଏ । ମାତ୍ର ସେ କିଏ, କେଉଁଠୁ ଆସିଥିଲେ,
ଠିକ୍ କେବେ ଆସିଲେ—ଏ ବିଷୟରେ କୌଣସି ଐତିହାସିକ ତଥ୍ୟ ଏବେ ମଧ୍ୟ
ଉପଲବ୍ଧ ହୋଇ ନାହିଁ । ସେ ଯବନମାନଙ୍କ କବଳରୁ ସେକାଳର ଓଡ଼ିଶାକୁ ଉଦ୍ଧାର
କରି ଯାଜପୁର ଠାରେ ଗୋଟିଏ ନଅର, ତଥା ଚୌଦ୍ୱାର ଠାରେ ଗୋଟିଏ ଦୁର୍ଗ ନିର୍ମାଣ
କରିଥିଲେ ବୋଲି ଷ୍ଟାର୍ଲିଂ ବିଶ୍ୱାସ କରନ୍ତି ।

ଏଥିରୁ ଚୌଦ୍ୱାର ତଥା ଯାଜପୁର କଟକ କେଶରୀ ରାଜତ୍ୱରେ ଗୁରୁତ୍ୱ
ପାଇଥିଲା ବୋଲି ଜଣାଯାଏ । ଏହାଛଡ଼ା ଗୋଟିଏ ତାମ୍ର ଅଭିଲେଖରୁ ଜଣାଯାଏ ଯେ,
ସୋମବଂଶୀ ମହାଶିବ ଗୁପ୍ତ ଜନ୍ମେଜୟ ଦକ୍ଷିଣ କୋଶଳରୁ ଆସି ବିଜୟୀ କଟକମାନ
ସ୍ଥାପନ କରିଥିଲେ । ମହାଶିବ ଗୁପ୍ତ ଯଯାତି ହେଉଛନ୍ତି ତାଙ୍କର ପୁଅ । ଚୌଦ୍ୱାର
ଅଞ୍ଚଳର କିମ୍ବଦନ୍ତୀରୁ ଜଣାଯାଏ ଯେ, ପୁରାଣର ରାଜା ଜନ୍ମେଜୟ ଏହିଠାରେ ତାଙ୍କର
ପ୍ରସିଦ୍ଧ ସର୍ପଯଜ୍ଞ କରାଇଥିଲେ । ଗୋଟିଏ କଥା ଏଥିରୁ ସ୍ପଷ୍ଟ ହେଉଛି । କେଶରୀ ରାଜା-
ମାନେ ଯାଜପୁର ଓ ଚୌଦ୍ୱାର ଅଞ୍ଚଳରେ ବସବାସ କରୁଥିଲେ ବୋଲି ଜଣାଯାଉଛି ।
ସୋମବଂଶୀମାନଙ୍କର ତମ୍ବାପଟ୍ଟା ସନଦରୁ ଜଣାଯାଏ ଯେ, ମହାନଦୀ କୂଳରେ ଯଯାତିନଗର
ନାମରେ ଗୋଟିଏ ସ୍ଥାନଥିଲା । ମାଦଳାପାଞ୍ଜିରେ ମଧ୍ୟ ଅଭିନବ ଯଯାତି ନଗରର
ଉଲ୍ଲେଖ ମିଳୁଛି । ଯଦି ଯଯାତି ନଗରକୁ ବିନକା ବା ସୋନପୁର ବୋଲି ଧରି ନିଆଯାଏ,
ତେବେ ଅଭିନବ ଯଯାତି ନଗର ବିରୂପା କୂଳର ଚୌଦ୍ୱାର ଠାରେ ଅଥବା ଯାଜପୁର
ଠାରେ ହୋଇଥିବ ବୋଲି କୁହାଯାଇ ପାରେ ।

ଉତ୍କଳ ଅଧିକାର କାଳରେ ଚୋଡ଼ଗଙ୍ଗ ଦେବ, ପ୍ରଥମେ ଯାଜପୁର ଠାରେ
ଗୋଟିଏ ନଅର ତୋଳାଇ ଥିଲେ ବୋଲି ମାଦଳାପାଞ୍ଜିରୁ ଉଲ୍ଲେଖ ମିଳୁଛି । ଷ୍ଟର୍ଲିଂ
ଆହୁରି କହନ୍ତି ଯେ; ଚୁଡ଼ଙ୍ଗ ଦେବ ଅଥବା ସାରଙ୍ଗ ଦେବ ସାରଙ୍ଗଗଡ଼ ଏବଂ ଚୌଦ୍ୱାର
କଟକ ଠାରେ ଗଡ଼ ତିଆରି କରିଥିଲେ ବୋଲି କିମ୍ବଦନ୍ତୀରୁ ମିଳୁଛି ।

ମାଦଳାପାଞ୍ଜି ଅବଶ୍ୟ କେଶରୀ ରାଜତ୍ୱରେ କଟକ ନଗର ସ୍ଥାପିତ ହୋଇଥିବାର ତଥା ପଥର ବନ୍ଧ ଇତ୍ୟାଦି ନିର୍ମାଣ କରାଯାଇ ଥିବାର ସୂଚନା ଦେଉଛି । ମାତ୍ର ଏହା ଅନ୍ୟ କୌଣସି ସୂତ୍ରରୁ ସମର୍ଥିତ ହେଉ ନାହିଁ । ତେଣୁ ସୋମବଂଶୀ କେଶରୀ ରାଜାମାନଙ୍କର ତମ୍ବାପଟ୍ଟାରେ ଯେଉଁ ବିଜୟ କଟକର ଉଲ୍ଲେଖ ରହିଛି, ତାହା ଆଧୁନିକ କଟକ ବୋଲି ଜଣାପଡ଼ୁ ନାହିଁ ।

ମାଦଳାପାଞ୍ଜିରେ କଟକ ସମ୍ପର୍କରେ ଆହୁରି ଉଲ୍ଲେଖ ଅଛି ଯେ, ଅନଙ୍ଗଭୀମ ଦେବ ନଗର ଚୌଦ୍ୱାର କଟକରେ ରହୁଥିଲେ । ଥରେ ସେ ମହାନଦୀ ପାରି ହୋଇ ଏହାର ଦକ୍ଷିଣ କୂଳରେ ବାରବାଟୀ ଗ୍ରାମର ବିଶ୍ୱେଶ୍ୱର ଶିବ ମନ୍ଦିର ନିକଟରେ କୋଦଣ୍ଡା ଦଣ୍ଡପାଟ ପ୍ରଗନାରେ ଶାମଳ ପକ୍ଷୀକୁ ବକ ମାଡ଼ି ବସିଥିବାର ଦେଖିଲେ । ରାଜା ଆଶ୍ଚର୍ଯ୍ୟ ହୋଇ ସେଇଠାରେ କଟକ ନଗର ବସାଇଲେ ଏବଂ ସେଠାରେ ଗୋଟିଏ ନଅର ନିର୍ମାଣ କରି ଏହାକୁ ବାରାଣସୀ କଟକ ନାମ ଦେଇ ଚୌଦ୍ୱାର କଟକ ତ୍ୟାଗ କଲେ ।

ଚୌଦ୍ୱାରର ଧ୍ୱଂସାବଶେଷ ଦେଖି ଐତିହାସିକ କଟେ୍ଟା ଲେଖିଛନ୍ତି "ଚୌଦ୍ୱାରର ରାସ୍ତାଘାଟ ବେଶ୍ ଭଲଥିଲା ଏବଂ ଏହି ପୁରୁଣା ସହରଟି ବେଶ୍ ବଡ଼ ଥିଲା ବୋଲି ଜଣାଯାଏ । ବହୁ ପୁରୁଣା ଘରର ମୂଳଦୂଆ ଦେଖାଯାଉଥିଲା । ଭଙ୍ଗାକାନ୍ଥ ଗଡ଼ଖାଇ ସବୁ ପଥରରେ ହୋଇଥିଲା । ଏଠାରେ ବହୁତ ଜଳାଶୟ, ମନ୍ଦିର ଥିବାର ମଧ୍ୟ ଜଣା ପଡ଼ୁଥିଲା । କଟକ ଠାରେ ଗଡ଼ ତିଆରି କରିବା ପାଇଁ ଏଠାରୁ ପଥର ନିଆଯାଇ ଥିବାର ମଧ୍ୟ ଜଣାଯାଉ ଥିଲା ।

ଏ ସବୁ ପାରମ୍ପରିକ ବିଶ୍ୱାସକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଅନଙ୍ଗଭୀମଦେବ ତାଙ୍କର ରାଜଧାନୀକୁ ଚୌଦ୍ୱାର କଟକ ଠାରୁ ଉଠାଇ ଆଣି ମହାନଦୀ କୂଳର ବାରବାଟୀ ଠାରେ ଏକ ନୂତନ ନଗର ବସାଇଥିଲେ ବୋଲି ମଧ୍ୟ ବିଶ୍ୱାସ କରାଯାଇପାରେ । ମହାନଦୀ ଆଉ କାଠଯୋଡ଼ି ଅବବାହିକାରେ ନୃପକେଶରୀ ରାଜଧାନୀ ବସାଇଥିଲେ ତଥା ମର୍କତକେଶରୀ ପଥରବନ୍ଧ ତିଆରି କରାଇଥିଲେ । ଏହା ଅନଙ୍ଗଭୀମଦେବଙ୍କର ପୂର୍ବରୁ ହୋଇଥିଲା, ସମସାମୟିକ ଉପାଦାନରୁ ଏହାର କୌଣସି ପ୍ରମାଣ ମିଳୁନାହିଁ । ଅଟେଷ୍ଟ ୧୯୪୯ ମସିହାରେ ମିଳିଥିବା ଅନଙ୍ଗ ଭୀମଦେବଙ୍କର ତମ୍ବାପଟ୍ଟାରୁ ଜଣାଯାଏ ଯେ ୧୨୨୯ ମସିହାରେ ଏହା ଅଭିନବ ବାରାଣସୀ କଟକରୁ ଜାରି ହୋଇଥିଲା । ଅନଙ୍ଗଭୀମ ଅଭିନବ ବାରାଣସୀ କଟକ ବସାଇଥିଲେ, ଏହି କଥାଟି ବେଶ୍ ଗୁରୁତ୍ୱପୂର୍ଣ୍ଣ । କାରଣ ଏଥିରୁ ଜଣାପଡ଼ୁଛି ଯେ ଲୋକ ପରମ୍ପରାରେ କଟକ ସମ୍ପର୍କରେ ଯେଉଁ ବିବରଣୀ ମିଳୁଛି, ତାହା ସତ୍ୟ ନୁହେଁ । ତେଣୁ ଏଥିରୁ ଏହି ସିଦ୍ଧାନ୍ତ ଗ୍ରହଣ କରାଯାଇ ପାରେ ଯେ, ବାରାଣସୀ କଟକ ଅଥବା ଆଧୁନିକ କଟକ ନଗର ଭୃତ୍ତୟ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ୧୨୧୧ ମସିହା ପରେ ଏବଂ ୧୨୨୯ ମସିହା ପୂର୍ବରୁ ବସା ଯାଇଥିଲା ।

ଅଭିଲେଖ ଅନୁସାରେ ଅନଙ୍ଗଭୀମ ୧୨୧୧ ମସିହାରେ ସିଂହାସନ ଆରୋହଣ କରିଥିଲେ । ସୋମବଂଶୀମାନଙ୍କର ତାମ୍ରପଟ୍ଟମାନଙ୍କରୁ ଯଯାତିନଗର ସେମାନଙ୍କର ରାଜଧାନୀ ଥିଲା ବୋଲି ଜଣାପଡ଼ୁଛି । ମାଦଳାପାଞ୍ଜିର ଅନଙ୍ଗ ଭୀମଦେବଙ୍କର ବିବରଣୀରେ ଅଭିନବ ଯଯାତିନଗରର ଉଲ୍ଲେଖ ମିଳୁଛି । ଯେହେତୁ ଚୌଦ୍ୱାର ଏବଂ ଯାଜପୁର, ସୋମବଂଶୀମାନଙ୍କର ରାଜଧାନୀ ଥିଲା । ସେଥିରୁ ଗୋଟିଏ ଏହି ଅଭିନବ ଯଯାତିନଗର ହୋଇପାରେ ବୋଲି କୁହାଯାଇପାରେ । ଅନଙ୍ଗଭୀମ ଯେତେବେଳେ ବାରବାଟୀ ଠାରେ ତାଙ୍କର ନୂତନ ରାଜଧାନୀ ନିର୍ମାଣ କଲେ, ସେତେବେଳେ ସେ ଏହାକୁ ଅଭିନବ ବାରାଣସୀ କଟକ କରିଥିବେ ବୋଲି ଧରିନେବାକୁ ହେଉଛି ।

ମୁସଲମାନ ଐତିହାସିକମାନେ ତ୍ରୟୋଦଶ ଶତକ ବେଳକୁ ପ୍ରଦେଶର ରାଜଧାନୀ ଯଯାତିନଗର ବା ଯାଜନଗର ଥିଲା ବୋଲି ଉଲ୍ଲେଖ କରିଛନ୍ତି । ଐତିହାସିକ ମିନ୍‌ହାଜ୍ ତାଙ୍କର ତବାକତ୍-ଇ-ନାସିରୀରେ ଉଲ୍ଲେଖ କରିଛନ୍ତି ଯେ, ୧୨୦୫ ମସିହାରେ ବକ୍ତିଆର୍ ଖିଲଜୀ ଯାଜନଗରକୁ ନିଜର ପ୍ରତିନିଧି ପଠାଇଥିଲେ ଏବଂ ୧୨୧୧ ମସିହାରେ, ଯେତେବେଳେ ଅନଙ୍ଗଭୀମ ସିଂହାସନ ଆରୋହଣ କଲେ ସେତେବେଳେ ଗିୟାସୁଦ୍ଦିନ୍ ଆୟ୍ୱାସ୍ ଯାଜନଗରରୁ କର ସଂଗ୍ରହ କରୁଥିଲେ । ତ୍ରୟୋଦଶ ଶତକର ପ୍ରଥମ ଭାଗରେ ଗଙ୍ଗରାଜାମାନଙ୍କର ଯେଉଁ ପରାକ୍ରମ ତହିଁରେ ଇସ୍‌ଲାମୀ ଐତିହାସିକମାନଙ୍କର ଏ ଦାବିକୁ ମିଥ୍ୟା ବୋଲି ପ୍ରମାଣ କରାଯାଇ ପାରେ ।

୧୨୧୧ ମସିହା ଠାରୁ ୧୪୨୧ ମସିହା ପର୍ଯ୍ୟନ୍ତ ପ୍ରାୟ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ-କାଳ ମୁସଲମାନ ସେନାବାହିନୀ ବାରମ୍ବାର ଯାଜନଗର ଆକ୍ରମଣ କରୁଥିଲେ ବୋଲି ଇସ୍‌ଲାମୀ ଐତିହାସିକମାନେ ବର୍ଣ୍ଣନା କରିଛନ୍ତି । ଗଙ୍ଗରାଜବଂଶର ସମସାମୟିକ ଅଭିଲେଖ ଗୁଡ଼ିକରୁ ଏହାର ସୂଚନା ମିଳୁଥିଲେହେଁ, ମାଦଳାପାଞ୍ଜି ଏ ବିଷୟରେ ସମ୍ପୂର୍ଣ୍ଣ ନୀରବ ।

୧୨୪୩ ରୁ ୧୨୪୭ ମସିହା ମଧ୍ୟରେ ଯାଜନଗରର ରାଜା ଏବଂ ଲକ୍ଷ୍ମଣାବତୀର ସୁଲତାନ୍‌ଙ୍କ ଭିତରେ ଯେଉଁ ସଂଘର୍ଷ ହୋଇଥିଲା ତହିଁରେ ସୁଲତାନ୍ ପରାଜିତ ହୋଇଥିଲେ ବୋଲି 'ତବାକତ୍-ଇ-ନାସିରୀ' ସ୍ୱୀକାର କରୁଛି । ପୁଣି ୧୩୨୩ ମସିହାରେ ଓ୍ୱାରଙ୍ଗଲ୍‌ଠାରୁ ଉଲୁଗ୍ ଖାଁ ଯାଜନଗର ଲୁଣ୍ଠନ କରିବାକୁ ଆସିଥିଲେ ବୋଲି (୧) ବର୍ଣ୍ଣି (୨) ୟାହ୍ୟା (୩) ନିଜାମୁଦ୍ଦିନ୍ (୪) ବଦୌନି (୫) ଫରିସ୍ତାପ୍ରମୁଖ ବର୍ଣ୍ଣନା କରିଛନ୍ତି । ୧୩୬୧ ମସିହାରେ ଦିଲ୍ଲୀର ବାଦ୍‌ଶାହ ଫିରୋଜଶାହ ତୋଗଲକ ହସ୍ତୀ ଶିକାର ଉଦ୍ଦେଶ୍ୟରେ ଯାଜନଗର ଆସିଥିଲେ ବୋଲି ମଧ୍ୟ ଜଣାଯାଏ । ଏହା ପୂର୍ବୋକ୍ତ ଐତିହାସିକମାନଙ୍କ ଦ୍ୱାରା ବର୍ଣ୍ଣିତ ହୋଇଛି ।

ଏମାନଙ୍କର ବିସ୍ତୃତ ବିବରଣୀରୁ ତତ୍‌କାଳୀନ ଓଡ଼ିଶାର ସମୃଦ୍ଧି ଓ ପ୍ରାଚୁର୍ଯ୍ୟର ବହୁ ସୂଚନା ମିଳିଥାଏ । ୧୩୬୧ ମସିହାରେ ସୁଲତାନ ଫିରୋଜଶାହ

ବାରଣସୀ କଟକ (ଆଧୁନିକ କଟକ) ଠାରେ ବନ୍ଧୁବନ୍ଧନ ରହିଥିଲେ ଏବଂ ସୁଖ ମଧ୍ୟ ପ୍ରଦର୍ଶନ କରିଥିଲେ । ମାତ୍ର ମାଦଳାପାଞ୍ଜିରେ ଏ ବିଷୟରେ କୌଣସି ଉଲ୍ଲେଖ ନାହିଁ । ମାଲୱାର ସୁଲତାନ୍ ହୁସାଙ୍ଗ୍ ୧୪୨୧-୨୨ ଖ୍ରୀଷ୍ଟାବ୍ଦରେ ରାଜନଗର ଆକ୍ରମଣ କରିଥିବାର ବିବରଣୀ ପାର୍ସୀ ଐତିହାସିକମାନଙ୍କ ବିବରଣୀରୁ ମିଳୁଥିଲେହେଁ, ମାଦଳାପାଞ୍ଜି ଏ ବିଷୟରେ ନୀରବ । ଓଡ଼ିଶାର ହାତୀ ସେ ସମୟରେ ବଙ୍ଗ, ଜୌନପୁର, ବିହାର, ମଧ୍ୟଭାରତ ତଥା ଦାକ୍ଷିଣାତ୍ୟର ମୁସଲମାନ ଶାସକମାନଙ୍କୁ ବାରମ୍ବାର ଆକୃଷ୍ଟ କରିଛି । ଏହାର ବିବରଣୀ ପାର୍ସୀ ଐତିହାସିକମାନେ ତ ଦେଇଛନ୍ତି । ତେବେ ଏହା ଓଡ଼ିଶାର ରାଜନୀତି ଉପରେ ସେଭଳି କୌଣସି ସ୍ଥାୟୀ ପ୍ରଭାବ ପକାଇ ନଥିବାରୁ ମାଦଳାପାଞ୍ଜିରେ ସେ ବିଷୟରେ କୌଣସି ଉଲ୍ଲେଖ ନାହିଁ । ମାଲୱାର ହୁସାଂଶାହ, ଯେତେବେଳେ କଟକ ଆସିଥିଲେ, ସେତେବେଳେ ଚତୁର୍ଥ ନରସିଂହ ଦେବ (୧୪୨୧) ଓଡ଼ିଶାର ଗଜପତି ଥିଲେ । ୧୪୩୫ ରୁ ୧୫୪୧ ମସିହା ପର୍ଯ୍ୟନ୍ତ ଓଡ଼ିଶାର ସୂର୍ଯ୍ୟବଂଶୀୟ କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଏବଂ ପ୍ରତାପରୁଦ୍ର ଦେବ ପ୍ରମୁଖ ଶାସନ କରିଥିଲେ ଏବଂ କଟକ ହିଁ ଥିଲା ସେମାନଙ୍କର ରାଜଧାନୀ । ଏଇଠାରେ ଗଜପତି ପୁରୁଷୋତ୍ତମ କାଞ୍ଚିଠାରୁ ଆଣିଥିବା ସାକ୍ଷୀଗୋପାଳ ବିଗ୍ରହ ପ୍ରତିଷ୍ଠା କରିଥିଲେ ।

ଗୋବିନ୍ଦ ବିଦ୍ୟାଧର (୧୫୫୯) ଙ୍କ ରାଜତ୍ୱ ସମ୍ପର୍କରେ ଷ୍ଟର୍ଲିଂ ଲେଖିଛନ୍ତି ଯେ, ଏହାଙ୍କ ସମୟରେ ତେଲେଙ୍ଗା ମୁକୁନ୍ଦଦେବ, ତଥା ଦନାଇ ବିଦ୍ୟାଧର ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ମୁକୁନ୍ଦଦେବ କଟକ ଶାସନ କରୁଥିଲେ ତଥା ବିଦ୍ୟାଧର ଥିଲେ ପ୍ରଧାନମନ୍ତ୍ରୀ । ରଘୁଭଞ୍ଜ ଛୋଟରାୟ ତଥା ବାଲୁଙ୍କ ଶ୍ରୀଚନ୍ଦନ ମୁକୁନ୍ଦଦେବଙ୍କ ଅନୁପସ୍ଥିତିର ସୁଯୋଗ ନେଇ, ତାଙ୍କ ବିରୋଧରେ ଏକ ଚକ୍ରାନ୍ତ କରିଥିଲେ ଏବଂ ତାଙ୍କୁ କଟକରୁ ତଡ଼ିଦେଇ କଟକ ଅଧିକାର କରି ଯାଇଥିଲେ । ରାଜା ପୁନର୍ବାର ରାଜ୍ୟକୁ ଫେରି ଆସି ବିଦ୍ରୋହୀମାନଙ୍କ ସହିତ ଯୁଦ୍ଧ କରିଥିଲେ । ଦଶାଶ୍ୱମେଧ ଘାଟଠାରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଏହି ସମୟରେ ନରସିଂହ ଜେନା ନାମକ ଜଣେ ସାହସୀ ସେନାପତି ଉତ୍କଳର ସିଂହାସନ ଅଧିକାର କରିଥିଲେ । ସେ ମୁକୁନ୍ଦଦେବଙ୍କ ସାହାଯ୍ୟରେ କ୍ଷମତା ଲାଳସୀ ଦନାଇ ବିଦ୍ୟାଧରଙ୍କୁ କଟକଠାରେ ବନ୍ଦୀ କରିଥିଲେ । ଇତିମଧ୍ୟରେ ରଘୁଭଞ୍ଜ ଛୋଟରାୟ ପୁନର୍ବାର ଏକ ବିଶାଳବାହିନୀ ନେଇ ସିଂହାସନ ଅଧିକାର କରିବା ନିମନ୍ତେ ଆସି ପହଞ୍ଚି ଯାଇଥିଲେ । ମୁକୁନ୍ଦଦେବ ତାଙ୍କୁ ପରାସ୍ତ କରିଥିଲେ ।

ଏଥର ମୁକୁନ୍ଦଦେବ ସିଂହାସନରେ ବସିଲେ । ସେ ଜଣେ ପରାକ୍ରମୀ ବ୍ୟକ୍ତି ଥିଲେ । ୧୫୬୮ ମସିହାରେ ବଙ୍ଗୀୟ ସୁଲତାନ୍ ସୁଲେମାନ୍ କରନାମଙ୍କ ସେନାପତି କଳାପାହାଡ଼ ଓଡ଼ିଶା ଆକ୍ରମଣ କଲେ ଏବଂ ଓଡ଼ିଶାର ତତ୍କାଳୀନ ରାଜଧାନୀ ବାରଣସୀ କଟକ ଅଧିକାର କରିନେଲେ ।

ଆକବରଙ୍କ ରାଜସ୍ୱ ମନ୍ତ୍ରୀ ରାଜା ତୋଡ଼ରମଲ୍ଲ ଓଡ଼ିଶା ଆସି ଜମିଜମା ବନ୍ଦୋବସ୍ତ କରାଇ ଥିବାର ଆଇନ୍-ଇ-ଆକବରୀରେ ଉଲ୍ଲେଖ ଅଛି । ଓଡ଼ିଶା ବଙ୍ଗଳା ସୁବାର ଅଧୀନରେ ଥିଲା ଏବଂ ଶାସନଗତ କାରଣରୁ ଏହାକୁ ପାଞ୍ଚୋଟି ସରକାରରେ ବିଭକ୍ତ କରାଯାଇ ଥିଲା । (୧) ଜାଲେଶ୍ୱର (୨) ଭଦ୍ରକ (୩) କଟକ (୪) କଳିଙ୍ଗ ଦଣ୍ଡପାଟ (୫) ରାଜମହେନ୍ଦ୍ରି । କଟକ ସରକାରରେ ଖୋଦ କଟକ ସହରର ଉପକଣ୍ଠରେ ଗୋଟିଏ ବିଶାଳ ଦୁର୍ଗ ଏବଂ ପ୍ରାସାଦ ଥିଲା ବୋଲି ଆଇନ୍-ଇ-ଆକବରୀରୁ ଉଲ୍ଲେଖ ମିଳିଥାଏ । ଆବୁଲଫାଜଲ୍, କଟକଠାରେ ତତ୍କାଳୀନ ଗଭର୍ଣ୍ଣର ରହୁଥିଲେ ଏବଂ ସେଠାରେ ଚମତ୍କାର କୋଠାବାଡ଼ି ସବୁ ଥିଲା ବୋଲି ଲେଖିଛନ୍ତି । ଅନୁମାନ କରାଯାଇଥାଏ ଯେ ୧୫୯୪-୯୫ ବେଳକୁ କଟକ ହିଁ ଥିଲା ମୋଗଲ ଶାସନର ରାଜଧାନୀ । ୧୫୯୨ରେ ରାଜା ମାନସିଂ ଓଡ଼ିଶା ଅଧିକାର କଲେ । ସେହି ଦିନଠାରୁ ବଙ୍ଗଳାର ମୋଗଲ ସୁବାଦାର କିମ୍ବା ଓଡ଼ିଶାର ନାଏବ୍ ନାଜିମ୍‌ମାନେ କଟକ ଠାରେ ହିଁ ରହୁଥିଲେ ଏବଂ ୧୭୫୧ ପର୍ଯ୍ୟନ୍ତ କଟକ ଥିଲା ମୋଗଲ ଓଡ଼ିଶାର ରାଜଧାନୀ ।

୧୬୩୩ରେ ଦଳେ ଇଂରେଜ ବ୍ୟବହାରୀ କାର୍ଟରାଇଟ୍‌ଙ୍କ ନେତୃତ୍ୱରେ ହରିହର ପୁର ବାଟେ କଟକଠାରେ ପହଞ୍ଚିଥିଲେ । ତାଙ୍କର ବିବରଣୀରେ ଉଲ୍ଲେଖ ଅଛି— ମୋଗଲ ପ୍ରତିନିଧି ଆଗାମହମ୍ମଦ ଜମାନ୍ 'ମାଲ୍‌କାଣ୍ଡି'ର ରାଜକୀୟ ପ୍ରାସାଦରେ ରହୁଥିଲେ । ଇଂରେଜମାନେ ପୂର୍ବପଟରୁ ଆସି ଶାସକଙ୍କ ସହିତ ସାକ୍ଷାତ କରିବାକୁ ଯାଇଥିଲେ । ସେମାନେ ମେ ୯ ତାରିଖ ପର୍ଯ୍ୟନ୍ତ କଟକରେ ରହିଥିଲେ ।

୧୭୪୧-୪୨ରେ ବଙ୍ଗଳାର ନାଜିମ୍ ଆଲିବର୍ଦ୍ଦି ଖାଁ ଓଡ଼ିଶା ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହିଁବାରୁ କଟକ ପୁନର୍ବାର ଏକ ସଂଘର୍ଷର କ୍ଷେତ୍ର ହୋଇ ପଡ଼ିଲା । ଓଡ଼ିଶା ଅଧିକାର କରିସାରିବା ପରେ ପ୍ରଦେଶ ଶାସନର ଦାୟିତ୍ୱ ନିଜର ଭ୍ରାତୃଷ୍ପୁତ୍ର ସଏଦ୍ ଅହମ୍ମଦ ଖାଁଙ୍କ ହସ୍ତରେ ନ୍ୟସ୍ତ କରି ଆଲିବର୍ଦ୍ଦୀ ବଙ୍ଗଳା ଫେରି ଯାଇଥିଲେ ।

ମାତ୍ର ସେ ଜନବିଦ୍ରୋହର ସମ୍ମୁଖୀନ ହୋଇ କ୍ଷମତାଚ୍ୟୁତ ହେଲେ । ତା'ପରେ ସିଂହାସନ ନ୍ୟସ୍ତ ହେଲା ମିର୍ଜାବାକିର ଖାଁଙ୍କ ଠାରେ, ଯେ କି ମୁର୍ଶିଦ୍‌କୁଲି ଖାଁଙ୍କ ଜାମାତା ଥିଲେ । ଆଲିବର୍ଦ୍ଦିଏ ବିଦ୍ରୋହର ସମ୍ବାଦ ପାଇ କଟକ ଯାତ୍ରା କଲେ । ସେଠାରେ ସେ ବିଦ୍ରୋହ ଦମନ କରି ପୁନର୍ବାର ସୌଲତ୍‌ଜଙ୍ଗଙ୍କୁ ସିଂହାସନରେ ବସାଇଥିଲେ ।

ଆଲିବର୍ଦ୍ଦି ମୟୂରଭଞ୍ଜବାଟେ ବଙ୍ଗଳା ଫେରୁଥିବାବେଳେ ମରହଟ୍ଟା ସୈନ୍ୟ-ବାହିନୀ ସହିତ ତାଙ୍କର ସଂଘର୍ଷ ହେଲା ଓ ମରହଟ୍ଟାମାନେ ପରାସ୍ତ ହେଲେ । ଦଶବର୍ଷ ଧରି ଏହି ସଂଘର୍ଷ ଲାଗି ରହିବା ପରେ ୧୭୫୧ ମସିହାରେ ଆଲିବର୍ଦ୍ଦି ନାଗପୁରର ଭୋନ୍‌ସଲଙ୍କ ସହିତ ଏକ ସନ୍ଧିକଲେ । ଏହା ଫଳରେ ଓଡ଼ିଶା ସୁବା ବସ୍ତୁତଃ ମରହଟ୍ଟା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ଏବଂ କଟକ ହେଲା ଏହାର ରାଜଧାନୀ ।

ଏଥର ଓଡ଼ିଶା ମୋଗଲମାନଙ୍କ ଅଧିକାରରୁ ମୁକ୍ତ ହୋଇ ମରହଟ୍ଟାମାନଙ୍କ ଅଧୀନରେ ରହିଲା ସତ୍ୟ । ତେବେ ୧୭୬୨/୬୩ ମସିହାରେ ଭୋନ୍‌ସଲ ପୁନର୍ବାର

ଓଡ଼ିଶା ଆକ୍ରମଣ କଲେ । ସନ୍ଧିର ସର୍ତ୍ତ ଠିକ୍ ଭାବରେ ପାଳିତ ହେଉ ନଥିବାରୁ ଏହି ଆକ୍ରମଣ ହେଲା । ଭୋନ୍‌ସଲଙ୍କୁ ସହଯୋଗ କଲେ ମିର୍ ହବିବ୍ ଉଲ୍ଲା । ଶେଷ ଦ୍ୱାରଠାରେ ଏ ଦୁଇଜଣ ଓଡ଼ିଶାକୁ ନିଜ ନିଜ ଭିତରେ ବାଣ୍ଟିନେଲେ । ସେତେବେଳେ ଓଡ଼ିଶାର ରାଜସ୍ୱ ମାତ୍ର ଦଶଲକ୍ଷ ମୁଦ୍ରା ଥିଲା । ଓଡ଼ିଶାର ଉତ୍ତରାଞ୍ଚଳରୁ ମିଳୁଥିଲା ଛଅଲକ୍ଷ, ଯାହା ଆଫ୍‌ଗାନମାନଙ୍କ ଅଧୀନକୁ ଚାଲିଗଲା । ମରହଟ୍ଟାମାନେ ଚାରିଲକ୍ଷ ରାଜସ୍ୱ ଆଦାୟ ହେଉଥିବା ଦକ୍ଷିଣାଞ୍ଚଳ ପାଇଲେ । ସେଇ ବର୍ଷ ମିର୍ ହବିବ୍ ଉଲ୍ଲାଙ୍କୁ ଷଡ଼ଯନ୍ତ୍ର କରି ହତ୍ୟା କରାଇ ରାଜା ଜାନୋଜୀ ସମଗ୍ର ଓଡ଼ିଶାର ମାଲିକ ହୋଇ ବସିଲେ ।

ଆବୁଲଫାଜଲ୍ ହେଉଛନ୍ତି ପ୍ରଥମ ମୁସଲମାନ ଲେଖକ, ଯେ କି କଟକ ନଗର ତଥା ଦୁର୍ଗ ବିଷୟରେ ୧୫୯୪ ଖ୍ରୀ: ଅ:ରେ ଏକ ବିସ୍ତୃତ ବିବରଣୀ ଦେଇଛନ୍ତି । ଏହା ପରର ବିବରଣୀ ହେଉଛି ୟୁରୋପୀୟ ପରିବ୍ରାଜକ ଟି. ମୋଟେଙ୍କର, ଯେ କି ୧୭୬୬ ମସିହାରେ କଟକ ପରିଦର୍ଶନ କରିଥିଲେ ।

ସେଇ ବର୍ଷ ଅକ୍ଟୋବର ୧୯ ତାରିଖରେ ମୋଟେ ଭବାନୀ ପଣ୍ଡିତଙ୍କୁ ସାକ୍ଷାତ୍ କରି ଲେଖିଥିଲେ—ମୁଁ ପୁଣି ମରହଟ୍ଟା ଶିବିରକୁ ଯାଇ ଭବାନୀ ପଣ୍ଡିତଙ୍କ ସହ ସାକ୍ଷାତ୍ କଲି । ଜାନୋଜୀ ନିଜ ସ୍ୱାର୍ଥ ପାଇଁ ଇଂରେଜମାନଙ୍କୁ ଓଡ଼ିଶା ଛାଡ଼ିଦେବା ଉଚିତବୋଲି ମୁଁ ତାଙ୍କୁ କହିଲି । ପଣ୍ଡିତ ଏଥର ଟଙ୍କା ପଇସାକଥା ଉଠାଇଲେ । × × ମୋତେ ସେ ଅଞ୍ଚଳର ପ୍ରଥାନୁସାରେ ରେଶମର ଗୋଟିଏ ପୋଷାକ ଦେଇଥିଲେ × × ମୋ ସହିତ ପଗଡ଼ି ମଧ୍ୟ ବଦଳ କରିଥିଲେ ।

ବର୍ତ୍ତମାନ ଯେଉଁଠି କଟକର ରେଳଷ୍ଟେସନ ହୋଇଛି, ତା'ର ପୂର୍ବକୁ ମରହଟ୍ଟା ଶିବିର ଥିଲା । ୧୬୮୧ ରେ ଭୋନ୍‌ସଲ ଇଷ୍ଟଇଣ୍ଡିଆ କମ୍ପାନୀ ସହିତ କଟକଠାରେ ଏକ ସନ୍ଧିକଲେ । ସେଇବର୍ଷ ଚିମ୍‌ନା ସାଉଙ୍କ ନେତୃତ୍ୱରେ ଏକ ବିଶାଳ ସେନା ଚୌଥ୍ ଆଦାୟ କରିବାକୁ କଟକରେ ପହଞ୍ଚିଲେ । ମେଦିନୀପୁରର କଲେକ୍ଟର କର୍ଣ୍ଣେଲ ପିଅର୍ସ ଦଳେ ସୈନ୍ୟନେଇ କଟକ ଆସିଲେ ଏବଂ ଚୌଥ୍ ବାବ୍‌ଦରେ ଟ ୧୨, ୦୦,୦୦୦ ଦେଲେ । ଏହା ଛଡ଼ା ଇଂରେଜମାନଙ୍କର ଅନ୍ୟ ଉପାୟ ନଥିଲା ବୋଲି ହଣ୍ଟର ସ୍ୱୀକାର କରିଛନ୍ତି ।

କଟକ ରହଣି ସମୟରେ ଚିମ୍‌ନା ସାହୁଙ୍କର ଢେଙ୍କାନାଳ ରାଜାଙ୍କ ସହିତ ଯୁଦ୍ଧ ହୋଇଥିଲା ଏବଂ କବି ବ୍ରଜନାଥ ବଡ଼ଜେନା ଏହି ଯୁଦ୍ଧର ବିବରଣୀ ନିଜର 'ସମରତରଙ୍ଗ' କାବ୍ୟରେ ବର୍ଣ୍ଣନା କରିଛନ୍ତି । ବଡ଼ଜେନା ଚିମ୍‌ନା ସାହୁଙ୍କ ଆଗରେ ଏହି କାବ୍ୟ ପାଠକରିଥିଲେ ବୋଲି କୁହାଯାଏ ।

୧୭୯୦ ମସିହାରେ ମି: ଲେକ ନାଗ୍‌ପୁର ଯିବା ବାଟରେ କଟକ ପରିଦର୍ଶନ କରିଥିଲେ । ସେ ମାର୍ଚ୍ଚ ତିନ ତାରିଖରେ କଟକରେ ପହଞ୍ଚି ଏପ୍ରିଲ ସାତ ତାରିଖ ପର୍ଯ୍ୟନ୍ତ ସେଠାରେ ରହିଥିଲେ । ଲେକଙ୍କ ବିବରଣୀରୁ ଜଣାଯାଏ ଯେ, ସେତେବେଳେ କାଠଯୋଡ଼ି ମହାନଦୀଠାରୁ ଧବଳେଶ୍ୱରର ଅଦୂରବର୍ତ୍ତୀ ଏକ ସ୍ଥାନରୁ ବାହାରିଥିଲା ।

ଏ ପର୍ଯ୍ୟନ୍ତ ୧୭୯୦ରୁ ୧୮୦୨ ପର୍ଯ୍ୟନ୍ତ କଟକର ଅନ୍ୟ କୌଣସି ଐତିହାସିକ ବିବରଣୀ ସଂଗୃହୀତ ହୋଇ ପାରିନାହିଁ । ୧୮୦୩ରେ ଲର୍ଡ ୱେଲେସଲି ସବୁଦିନ ପାଇଁ ଓଡ଼ିଶାରୁ ମରହଟ୍ଟାମାନଙ୍କୁ ବିତାଡ଼ିତ କରିବା ନିମନ୍ତେ ବଦ୍ଧପରିକର ହେଲେ । ସେହିବର୍ଷ ଜୁଲାଇ ମାସରେ ଗଞ୍ଜାମଠାରେ ଓଡ଼ିଶା ଅଧିକାରର ଯୋଜନା ଚୂଡ଼ାନ୍ତ କରାଗଲା ଏବଂ ସେପ୍ଟେମ୍ବରେ ୮ ତାରିଖରେ ଗଞ୍ଜାମଠାରୁ ବ୍ରିଟିଶ୍ ସେନା ଅଭିଯାନ ଆରମ୍ଭ କଲେ । ଅକ୍ଟୋବର ଆଠ ତାରିଖରେ ସେମାନେ କଟକରେ ପହଞ୍ଚିବା ପର୍ଯ୍ୟନ୍ତ ବାଟରେ କୌଣସି ବାଧାର ସମ୍ମୁଖୀନ ହୋଇନଥିଲେ ।

ହାଣ୍ଟର ଲେଖିଛନ୍ତି—ଆମେ କଟକରେ ପହଞ୍ଚିଲୁ । ବିନା ବାଧାରେ ସହର ଭିତରକୁ ପ୍ରବେଶ କଲୁଁ । ଦରଜା ସବୁ ଖୋଲା ପଡ଼ିଥିଲା । ଘରେ କେହି ନଥିଲେ । ଛଦିନ ଭିତରେ ଆମେ ପ୍ରସ୍ତୁତ ହୋଇ ଦୁର୍ଗ ଆଡ଼କୁ ଗଲୁ । ଏହି ଦୁର୍ଗ ମହାନଦୀର ଦୁଇଟି ଧାର ଭିତରେ, ଓଡ଼ିଶାର ସୁଦୃଢ଼ ଦୁର୍ଗମାନଙ୍କ ମଧ୍ୟରୁ ଅନ୍ୟତମ ଥିଲା । ପଥରର ବିରାଟ ପାଚେରି, ଗଭୀର ପରିଖା ଏହାକୁ ପ୍ରାୟ ଦୁର୍ଗମ କରି ରଖିଥିଲା । ତେବେ ଆଖ ପାଖରେ ଯେଉଁ ଗଛଲତା ପୂର୍ଣ୍ଣ ଜମି ସବୁ ଥିଲା, ତହିଁରେ ଆମ ସୈନ୍ୟମାନେ ବେଶ୍ ଭଲଭାବରେ ଲୁଚି ରହି ପାରିଥିଲେ । ଅକ୍ଟୋବର ୧୪ରେ ତାରିଖ ଦିନ ଦଶଟା ବେଳେ ଜଣେ ଇଂରେଜୀ ଅଫିସର ଗୋଟିଏ ଗ୍ରେଟ ଦରଜାକୁ ଉଡ଼ାଇ ଦେବାରେ ସକ୍ଷମ ହୋଇ ଥିଲେ । ତାଙ୍କ ବେକରେ ଅବଶ୍ୟ ଆଘାତ ଲାଗିଥିଲା । ତେବେ ସେଇବାଟେ ଇଂରେଜ ସୈନ୍ୟ ଦୁର୍ଗ ଭିତରକୁ ପଶିଗଲେ । ଅତି ଅଳ୍ପ ସମୟ ପାଇଁ ଯୁଦ୍ଧ ହେଲା । ସେନା-ବାହିନୀର ମୁଖ୍ୟ କର୍ଣ୍ଣେଲ ଗୋଡ଼ରେ ଆଘାତ ପାଇ ପଡ଼ିଗଲେ । ଦୁଇ ତିନିଜଣ ସୈନ୍ୟ ମଧ୍ୟ ମୃତ୍ୟୁ ବରଣ କଲେ । ମରହଟ୍ଟ ମାନେ ଅନ୍ୟ ଦରଜା ଦେଇ ପଳାୟନ କଲେ । ଗଲାବେଳେ ସେମାନେ ପ୍ରାୟ ତିରିଶ ଖଣ୍ଡ ମୃତଦେହ ବଳଦଗାଡ଼ିରେ ଲଦି ସାଙ୍ଗରେ ନେଇଗଲେ ।

କଟକ ଅଧିକାର କଲାପରେ ଇଂରେଜମାନେ ସେଠାରେ ନିଜର ରାଜଧାନୀ ସ୍ଥାପନ କଲେ । ୧୯୩୬ ମସିହା ପର୍ଯ୍ୟନ୍ତ ଏହା ବଙ୍ଗବିହାର ଓଡ଼ିଶା ସଂଯୁକ୍ତ ପ୍ରଦେଶରେ ଆଞ୍ଚଳିକ ମହକୁମା ହୋଇ ରହିଲା ଏବଂ ୧୯୩୬ ମସିହା ଏପ୍ରିଲ ପହିଲାରେ ଅବଶେଷରେ ଓଡ଼ିଶା ଏକ ସ୍ୱତନ୍ତ୍ରପ୍ରଦେଶରେ ପରିଣତ ହେଲା । କଟକ ହିଁ ହେଲା ଏହାର ରାଜଧାନୀ ।

କିମ୍ବଦନ୍ତୀ ଓ ଲୋକବିଶ୍ୱାସରେ ନୃପକେଶରୀ ହିଁ ହେଉଛନ୍ତି କଟକର ପ୍ରତିଷ୍ଠାତା, ସର୍ବୋତ୍ତ ଇତିହାସରୁ ଏହାର କୌଣସି ପ୍ରମାଣ ମିଳୁନାହିଁ । ତେବେ ଏଗୁଡ଼ିକ ତ ହୁଅନ୍ତି ଇତିହାସର ଆଧାର । ଏହାକୁ ଅସ୍ୱୀକାର କରିବା ପୂର୍ବରୁ ଆମେ ଇତିହାସର ଏକ ବହୁ ଚର୍ଚ୍ଚିତ ସଂଜ୍ଞା ସମ୍ପର୍କରେ ଆମର ପାଠକମାନଙ୍କୁ କେବଳ ସ୍ମରଣ କରାଇ ଦେବୁ । ତା' ହେଉଛି—'History is a bundle of his mutually agreed upon' ଯେବେ ଏହା ହିଁ ହୁଏ ଇତିହାସର ଯଥାର୍ଥ ସଂଜ୍ଞା, ତେବେ ଆମେ କଟକର ପ୍ରାଚୀନତା ନେଇ ବାଦ ବିବାଦ କରିବା କାହିଁକି ?

# କଟକ ନଗର—ହଜାର ବର୍ଷ ପରେ

**ଡଃ ଶ୍ରୀରାମଚନ୍ଦ୍ର ଦାଶ**

କେତେଜଣ ଇତିହାସବିତ୍‌ଙ୍କ ମତରେ କଟକ ସହର ସ୍ଥାପିତ ହୋଇଥିଲା, ୯୮୯ ଖ୍ରୀଷ୍ଟାବ୍ଦରେ । ସେଥିପାଇଁ ଗତବର୍ଷଠାରୁ ହଜାର ବର୍ଷ ପୂର୍ତ୍ତି ଉତ୍ସବ ପାଳିତ ହେଉଛି । ଏହି ହଜାର ବର୍ଷ ମଧ୍ୟରେ ହିନ୍ଦୁ, ମୁସଲମାନ, ମୋଗଲ, ମରହଟ୍ଟା ଓ ଇଂରେଜ ଶାସକବୃନ୍ଦ ଏହି ନଗରକୁ ରାଜଧାନୀ କରି ନିଜ ଶାସନର କୀର୍ତ୍ତି ତଥା କୃତିତ୍ୱର ଅବଶେଷ ରଖିଯାଇଛନ୍ତି । ସମସ୍ତେ ଏହି ନଗରକୁ ସମୃଦ୍ଧିଶାଳୀ କରିଯାଇଛନ୍ତି । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । କଟକ ହିଁ ଏହି ପ୍ରଦେଶର ରାଜଧାନୀ ଥିଲା । ରାଜଧାନୀକୁ ଅନ୍ୟତ୍ର ଉଠାଇ ନେବାକୁ ଚେଷ୍ଟା ହୋଇଛି ଓ ଶେଷରେ କଟକ ହିଁ ଶାସନର କଟକ ରୂପେ ଉଭା ହୋଇଛି । ପରିଶେଷରେ ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିବା ବେଳେ କେଶରୀ ବା ସୋମବଂଶର ରାଜଧାନୀ ଥାଇ ଜଳାଭାବରୁ ପରିତ୍ୟକ୍ତ ହୋଇଥିବା ଭୁବନେଶ୍ୱରକୁ ରାଜଧାନୀ ଉଠାଇ ନେଇଛନ୍ତି । ଏବେ କଟକକୁ କୁହାଯାଉଛି, ଓଡ଼ିଶାର ସାଂସ୍କୃତିକ ଓ ବାଣିଜ୍ୟିକ ରାଜଧାନୀ । ତଥାପି କଟକର ନାମକୁ ସାର୍ଥକ କରିବା ଲାଗି ଏଠାରେ ଏପର୍ଯ୍ୟନ୍ତ ପୁଲିସ ବିଭାଗର ମୁଖ୍ୟାଳୟ ରହିଛି । ପୂର୍ବବର୍ତ୍ତୀ ଶାସକ ତଥା ସ୍ୱାଧୀନତା ପରେ ଓଡ଼ିଶାର ଶାସକବୃନ୍ଦ କଟକ ନଗରକୁ ଗଢ଼ି ଯାଇଛନ୍ତି । ଏହା ଫଳରେ ଏବେ ମଧ୍ୟ ଭାରତ ବର୍ଷରେ କଟକ କହିଲେ ଲୋକେ ଓଡ଼ିଶାକୁ ହିଁ ବୁଝନ୍ତି ।

ଏହି ନଗରର ଶ୍ରେଷ୍ଠ କୀର୍ତ୍ତି ହେଉଛି ରେଭେନ୍‌ସା କଲେଜ । ଭାରତର ଶିକ୍ଷାବିତ୍ ମହଲରେ ଏହି କଲେଜର ସୁଖ୍ୟାତି ଏତେ ବେଶୀ ଯେ ସେମାନେ ଏହାକୁ କଲିକତାର ପ୍ରେସିଡେନ୍‌ସୀ କଲେଜ, ବମ୍ବେର ଏଲଫିନ୍‌ଷ୍ଟୋନ କଲେଜ ଓ ମାନ୍ଦ୍ରାଜର ଲୟୋଲା କଲେଜ ସହିତ ତୁଳନା କରନ୍ତି ନାହିଁ । ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଅଧ୍ୟକ୍ଷତାରେ ଗଠିତ ବିଶ୍ୱବିଦ୍ୟାଳୟ ଆୟୋଗ ୧୯୪୮ରେ ଏହାକୁ ବସ୍ତୁତଃ ଉତ୍କଳ ବିଶ୍ୱବିଦ୍ୟାଳୟ ବୋଲି ବର୍ଣ୍ଣନା କରିଛନ୍ତି । ୧୯୮୯ ଠାରୁ ଏହି ଅନୁଷ୍ଠାନ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ପ୍ରତ୍ୟକ୍ଷ କର୍ତ୍ତୃତ୍ୱାଧୀନ ହୋଇ ଗୋଟିଏ ସ୍ୱୟଂଶାସିତ କଲେଜରେ ପରିଣତ ହୋଇଛି । ଏକଦା ଏହି କଲେଜର ପ୍ରାକ୍ତନ ଛାତ୍ର ଏବଂ ପରବର୍ତ୍ତୀ ଅଧ୍ୟାପକ ଓ ଅଧ୍ୟକ୍ଷ ଥିବା ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହାକୁ ନିଜ କର୍ମପ୍ରବାହର କେନ୍ଦ୍ର କରି ସମଗ୍ର ବିଶ୍ୱରେ

ଅଦ୍ଭୁତ ବିଜ୍ଞାନ କ୍ଷେତ୍ରରେ ଯଶ ଲାଭ କରିଥିଲେ । କଳା, ବିଜ୍ଞାନ ଓ ବାଣିଜ୍ୟ ଶିକ୍ଷାର ସ୍ନାତକ, ସ୍ନାତକୋତ୍ତର ଓ ଗବେଷଣା ସ୍ତର ପର୍ଯ୍ୟନ୍ତ ସୁଯୋଗ ଯୋଗାଇ ଦେଇ ଏହି କଲେଜ ସମଗ୍ର ଦେଶରେ ଗୋଟିଏ ବିଶିଷ୍ଟ ଅନୁଷ୍ଠାନ ରୂପେ ପରିଗଣିତ ହେଉଛି ।

କଟକ ନଗର ପରି ରେଭେନ୍ସା କଲେଜର ଐତିହ୍ୟ ମଧ୍ୟ ଗୌରବମଣ୍ଡିତ । ଓଡ଼ିଶାବାସୀଙ୍କ ପାଇଁ ଉଚ୍ଚଶିକ୍ଷାର ସୁବିଧା ଯୋଗାଇ ଦେବା ଲାଗି ୧୮୫୨ ରେ କଟକ ହାଇସ୍କୁଲ ସ୍ଥାପିତ ହୋଇଥିଲା । ୧୮୬୮ରେ ନଅଙ୍କ ଦୁର୍ଭିକ୍ଷର ଅବ୍ୟବହିତ ପରେ ଏହିଠାରେ ସେ କାଳର ଏଫ୍. ଏ. (ପରବର୍ତ୍ତୀ ଆଇ. ଏ.) ଶ୍ରେଣୀ ଖୋଲା ଯାଇଥିଲା ଏବଂ ଦୁର୍ଭିକ୍ଷର ପରବର୍ତ୍ତୀ କାଳରେ ଓଡ଼ିଶାରେ କମିଶନର ଥିବା ଟି.ଇ. ରେଭେନସା ୧୮୭୨ରେ ଓଡ଼ିଶାରୁ ବିଦାୟ ନେବାବେଳେ ରାଜନ୍ୟମଣ୍ଡଳୀ ତାଙ୍କ ବିଦାୟ ଉତ୍ସବ ପାଇଁ ଯେଉଁ ପାଣ୍ଠି ସଂଗ୍ରହ କରିଥିଲେ ତାହାକୁ ରେଭେନ୍ସା ସାହେବ ଗ୍ରହଣ ନକରି କଟକରେ ଏଫ୍. ଏ. ଶ୍ରେଣୀ ଥିବା କଲେଜରେ ସ୍ନାତକ ଶ୍ରେଣୀ ଖୋଲିବା ଲାଗି ଦାନ କରିଦେବା ଫଳରେ ସ୍ନାତକ ଶ୍ରେଣୀ ଖୋଲିଲା । ଏହାର ନାମ ରହିଲା ରେଭେନ୍ସା କଲେଜ । କଟକ ହାଇସ୍କୁଲର ନାମ ତଦନୁସାରେ ହେଲା ରେଭେନ୍ସା କଲେଜିଏଟ ସ୍କୁଲ ଏବଂ ପରବର୍ତ୍ତୀ ସ୍ତରରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉଦ୍ୟମରେ ଶୈଳବାଳା ଦାସ ଓ ରେବା ରାୟଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ବାଳିକା ବିଦ୍ୟାଳୟର ନାମ ରହିଲା ରେଭେନ୍ସା ବାଳିକା ବିଦ୍ୟାଳୟ । କଟକ ହାଇସ୍କୁଲ ପରି ବାଳିକା ବିଦ୍ୟାଳୟରେ ମଧ୍ୟ ଆଇ. ଏ. ଶ୍ରେଣୀ ୧୯୧୩ରେ ଖୋଲି ଥିଲା । ଭାରତ ସ୍ୱାଧୀନ ହେବା ପରେ ଏହି ଆଇ. ଏ. ଶ୍ରେଣୀକୁ ରେଭେନ୍ସା ବାଳିକା ବିଦ୍ୟାଳୟରୁ ଅଲଗା କରି ଶୈଳବାଳା ମହିଳା କଲେଜ ପ୍ରତିଷ୍ଠିତ ହୋଇଛି । ଏହି ଅନୁଷ୍ଠାନଗୁଡ଼ିକ ମୂଳରେ ଗୋଟିଏ ଅନୁଷ୍ଠାନ ଥିଲେ ହେଁ କାଳକ୍ରମେ ସ୍ଥାନାଭାବ ଯୋଗୁ ସେଗୁଡ଼ିକୁ ବିଭିନ୍ନ ଅଞ୍ଚଳକୁ ନିଆଯାଇଛି । ରେଭେନ୍ସା କଲେଜ କାଠଯୋଡ଼ି କୂଳରୁ ଯାଇ ଗୁହିଳଆଗଞ୍ଜର ବିସ୍ତୀର୍ଣ୍ଣ ଚନ୍ଦଗୃନ୍ଦ ପଡ଼ିଆରେ ନିର୍ମିତ ହୋଇ ସେଠାରେ ୧୯୨୧ରୁ କାର୍ଯ୍ୟକରୁଛି । ଏହି କଲେଜର ଭିତ୍ତି ପ୍ରସ୍ତର ସ୍ଥାପନ ବେଳେ ସେକାଳର ବିହାର-ଓଡ଼ିଶା ପ୍ରଦେଶର ଲେଫ୍ଟେନାଣ୍ଟ ସାର୍ ଏଡ଼ୱାର୍ଡ ଗେଟ ୧୯୧୪ରେ ଆଶା ପ୍ରକାଶ କରିଥିଲେ ଯେ ସେହି କଲେଜଟି ଦିନେ ଭବିଷ୍ୟତ ବିଶ୍ୱବିଦ୍ୟାଳୟର ମୂଳଦୁଆ ହେବ । ଐତିହାସିକ ବିବର୍ତ୍ତନ ଅନୁସାରେ ୧୯୪୩ ମସିହା ନଭେମ୍ବର ୨୭ ତାରିଖ ଦିନ ଏହି ଅଟ୍ଟାଳିକାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇଥିଲା । କଲେଜର ତଦାନୀନ୍ତନ ଅଧ୍ୟକ୍ଷ ପ୍ରାଣକୃଷ୍ଣ ପରିଜା ଓ ଇଂରାଜୀ ବିଭାଗର ଅନ୍ୟତମ ପ୍ରାଧ୍ୟାପକ ଭି. ଭି. ଜନ ଯଥାକ୍ରମେ ପ୍ରଥମ କୁଳପତି ଓ ପ୍ରଥମ କୁଳସଚିବ ରୂପେ ଦାୟିତ୍ୱ ବହନ କରିଥିଲେ । ଲେଫ୍ଟେନାଣ୍ଟ ସାର୍ ଏଡ଼ୱାର୍ଡ ଗେଟ୍‌ଙ୍କ ଭବିଷ୍ୟତ ବାଣୀ ଚରିତାର୍ଥ ହୋଇଥିଲା ।

ରେଭେନ୍ସା କଲେଜ ଗୋଟିଏ ବିରାଟ ଶିକ୍ଷାନୁଷ୍ଠାନରେ ପରିଣତ ହୋଇଛି । ଏଠାରେ ସବୁବିଧ ଶିକ୍ଷାପ୍ରଦାନ ଲାଗି ବ୍ୟବସ୍ଥା ହୋଇଛି । ଏହାର ଛାତ୍ର ସଂଖ୍ୟା

ତିନିହଜାରରୁ ଅଧିକ । ଏହା ପ୍ରାତଃକାଳୀନ ଓ ଦିବାଧାପୀ ଏହାର ଦୁଇଟି କଲେଜର ସମଷ୍ଟି । ଏଠାରେ ତିନିଶହରୁ ଅଧିକ ଅଧ୍ୟାପକ ଓ ଅଧ୍ୟାପିକା ଶିକ୍ଷାଦାନ କରୁଛନ୍ତି । ଏଠାରେ ନଅଗୋଟି ଛାତ୍ରାବାସ ଓ ଛାତ୍ରୀନିବାସ ରହିଛି ଏବଂ ଏହାର ଉନ୍ନତମାନର ଶିକ୍ଷା ଓ ଗବେଷଣା ଲାଗି ରେଭେନ୍ସା କଲେଜ ୧୯୮୯ରୁ ଗୋଟିଏ ସ୍ୱୟଂଶାସିତ ଅନୁଷ୍ଠାନରେ ରୂପାନ୍ତରିତ ହୋଇ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ଲାଭକରିଛି । ଦିନ ଥିଲା, ଓଡ଼ିଶାର ଯେକୌଣସି ବିଶିଷ୍ଟ ବ୍ୟକ୍ତି ନିଜକୁ ରେଭେନ୍ସାର ସନ୍ତାନ ରୂପେ ଗର୍ବ କରୁଥିଲା । ଓଡ଼ିଶାର ଗତ ୧୨୫ ବର୍ଷର ଇତିହାସ ରେଭେନ୍ସା କଲେଜର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦେଶର ବିଭିନ୍ନ ପ୍ରାନ୍ତରୁ ଆଗନ୍ତୁକ ବା ପରିବ୍ରାଜକ କଟକ ଆସିଲେ ପ୍ରଥମେ ରେଭେନ୍ସା କଲେଜକୁ ଦେଖିବାକୁ ଆସନ୍ତି ।

ରେଭେନ୍ସା କଲେଜର ପ୍ରଭାବ ଯୋଗୁ କଟକ ଗୋଟିଏ ବିଦ୍ୟାନଗରୀରେ ପରିଣତ ହୋଇଛି । ଏଠାରେ ରହିଛି ବିଶ୍ୱବିଦ୍ୟାଳୟ ପରିଚାଳିତ ସ୍ନାତକୋତ୍ତର ମଧୁସୂଦନ ଆଇନ୍ ମହାବିଦ୍ୟାଳୟ, ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟ, ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ, ଖ୍ରୀଷ୍ଟ କଲେଜ; ଷ୍ଟିୱାର୍ଟ ବିଜ୍ଞାନ କଲେଜ, ନାରାୟଣ ବିର ରାଜକିଶୋର କଲେଜ, କଟକ କଲେଜ, ସିଟି କଲେଜ, ଇନ୍ଦିରା ଗାନ୍ଧି କଲେଜ, ମଦନପୁର କଲେଜ ଓ କଟକ ମହିଳା କଲେଜ । ଆଧୁନିକ କଟକ ଶିକ୍ଷାପିପାସୁ ଛାତ୍ରଛାତ୍ରୀମାନଙ୍କ ପାଇଁ ବିବିଧ ସୁଯୋଗ ଯୋଗାଇ ଦେଇଛି ।

କଟକର ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ହେଲା, କଟକ ରେଳଷ୍ଟେସନ ଓ କଟକ ମାଲଗୋଦାମ । ଓଡ଼ିଶାରେ ରେଳଯାତାୟାତ ଲାଗି ବିଶେଷ ସୁବିଧା ନାହିଁ । ଇଷ୍ଟଇଣ୍ଡିଆ କମ୍ପାନୀ ଭାରତକୁ ଶାସନ କରୁଥିବା ବେଳେ କଲିକତା ଓ ମାନ୍ଦ୍ରାଜରେ ବାଣିଜ୍ୟର ମୁଖ୍ୟକେନ୍ଦ୍ର ସ୍ଥାପନ କରିଥିବା ଯୋଗୁ ଏହି ଉଭୟ କେନ୍ଦ୍ରକୁ ସଂଯୁକ୍ତ କରିବା ଲାଗି ରେଳପଥର ଆବଶ୍ୟକତା ଅନୁଭୂତ ହୋଇଥିଲା । ଭୂଗୋଳର ଅବଦାନ ଯୋଗୁ ବଙ୍ଗଳା ଓ ମାନ୍ଦ୍ରାଜ ପ୍ରେସିଡ଼େନ୍ସୀ ଦ୍ୱୟର ମଝିରେ ଥିଲା ଓଡ଼ିଶା । ତେଣୁ ଇଂରେଜ ସରକାର ବାଧ୍ୟହୋଇ ଉପକୂଳବର୍ତ୍ତୀ ଓଡ଼ିଶାରେ ରେଳପଥ ନିର୍ମାଣ କଲେ । ତେଣୁ ୧୮୭୯ରୁ ଗଞ୍ଜାମ, ପୁରୀ, କଟକ ଓ ବାଲେଶ୍ୱରର ଉପକୂଳରେ ବେଙ୍ଗଲ ନାଗପୁର ରେଳପଥ ଯାଇଛି ।

କଟକ ନଗରର ପୂର୍ବାଞ୍ଚଳରେ ପ୍ରବେଶ କରିବା ମାତ୍ରକେ କଟକ ରେଳଷ୍ଟେସନ ପଡ଼େ । ରେଳରାସ୍ତା ସହିତ ସମାନ୍ତରାଳ ଭାବରେ ପାଞ୍ଚନମ୍ବର ଜାତୀୟ ରାଜପଥ ରହିଛି ଓ ଏହି ରାଜପଥ ମଧ୍ୟ କଲିକତା ଓ ମାନ୍ଦ୍ରାଜକୁ ସଂଯୁକ୍ତ କରିଛି । କଟକକୁ ଗୋଟିଏ ଜଙ୍କ୍ସନ ବା ସଂଯୋଗ କୁହାଯାଏ, କାରଣ ଏଠାରୁ ନିର୍ଗୁଣ୍ଡି ବାଟ ଦେଇ ତାଳଚେର ପର୍ଯ୍ୟନ୍ତ ଓ ପାରାଦୀପ ପର୍ଯ୍ୟନ୍ତ ରେଳପଥ ସଂଯୋଗ ରହିଛି । କଟକ ରେଳଷ୍ଟେସନ ଅତି ବଡ଼ ନୁହେଁ । ଭୁବନେଶ୍ୱର ଷ୍ଟେସନର ବେଶୀ ଯତ୍ନ ନିଆଯିବା ଫଳରେ କଟକ ରେଳଷ୍ଟେସନ ଅବହେଳିତ ହୋଇଛି ।

କଟକ ଷ୍ଟେସନର ବାଣିଜ୍ୟିକ ଗୁରୁତ୍ୱ ଅତ୍ୟଧିକ । ଧାନ, ଘୁନ୍ନଳ, ପାନ ଓ ମାଛ, ଶୁଖୁଆ ଏହାର ପ୍ରଧାନ ରପ୍ତାନି । ତାଳଚେର ଓ ପାରାଦୀପର ଶିଳ୍ପାଞ୍ଚଳ ଦୁଇଟି କଟକକୁ କଞ୍ଚା ଆମଦାନି ଓ ରପ୍ତାନି ପାଇଁ କେନ୍ଦ୍ରସ୍ଥଳ ରୂପେ ବ୍ୟବହାର କରନ୍ତି । ଏହାର ଅନତିଦୂରରେ ହେଉଛି, ଛତ୍ରବଜାର । ଏହାର କେତେକାଂଶ ମହତାବ ରୋଡ଼ ନାମରେ ନଗରପାଳିକା ଦ୍ୱାରା ନିର୍ମିତ ହୋଇଛି । ଛତ୍ରବଜାର ହେଉଛି, ଦୈନନ୍ଦିନ ବ୍ୟବହାର୍ଯ୍ୟ ପନିପରିବା ଓ ଋତୁଗତ ଫଳ ଆଦିର ପ୍ରଧାନ ବାଣିଜ୍ୟ କେନ୍ଦ୍ର । ରେଳଷ୍ଟେସନର ପଣ୍ୟାଗାର ବା ମାଲଗୋଦାମ ଓ ଛତ୍ରବଜାରର ପନିପରିବା ଯୋଗୁ ପାର୍ଶ୍ୱବର୍ତ୍ତୀ ରେଳପଥ ଓ ରାଜପଥ କଟକକୁ ଦକ୍ଷିଣରେ ଆନ୍ଧ୍ରପ୍ରଦେଶ ଓ ତାମିଲନାଡ଼ୁ ଏବଂ ଉତ୍ତରରେ ଏକ ପକ୍ଷରେ କଲିକତା ଓ ଅପର ପକ୍ଷରେ ଭାରତର ଉତ୍ତରାଞ୍ଚଳ ଓ ପଶ୍ଚିମାଞ୍ଚଳ ସହିତ ସଂଯୁକ୍ତ କରିଛି ବୋଲି କଟକ ସହରରେ ତାହାର ଅନୁଙ୍କପ୍ରିୟ ଧାଗା ଟ୍ରକ୍‌ଗୁଡ଼ିକ ସର୍ବଦା ଦେଖିବାକୁ ମିଳନ୍ତି । କଟକର ଉତ୍ତର, ଦକ୍ଷିଣ ଓ ପୂର୍ବ ଦିଗରେ ସ୍ଥଳପଥ ରହିଛି ସିନା, ପଶ୍ଚିମ ଦିଗରେ ଏହାର ବିସ୍ତାର ଲାଗି କୌଣସି ସୁବିଧା ନାହିଁ ।

କଟକର ପୂର୍ବଦିଗସ୍ଥ ପ୍ରବେଶ ଦ୍ୱାରରୁ ଓଡ଼ିଶାର ସାମରିକ ପୁଲିସ ଗୁଡ଼ୁଣୀ ଯୋଗୁ ଓ. ଏମ୍. ପି. ସ୍କୋୟାର ବା ଚଉଡଗ କୁହାଯାଏ । ଏହାର ଐତିହାସିକ ଗୁରୁତ୍ୱ ଦେଖିବାକୁ ମିଳେ । ଧାଡ଼ିଏ ଗୋଲ୍‌କାର ମସ୍‌ଜିଦ ପରି ଦେଖାଯାଉଥିବା ଅଟ୍ଟାଳିକା-ଗୁଡ଼ିକରୁ ସେଠାରେ କୁଆଡ଼େ ମରହଟ୍ଟା ଯୁଗରେ ସୈନ୍ୟଗୁଡ଼ୁଣୀ ଥିଲା । ଇଂରେଜମାନେ ୧୮୦୩ରେ ଇଂରେଜମାନଙ୍କ ଠାରୁ ଶାସନ ଦାୟିତ୍ୱ ନେବାବେଳେ ସେମାନେ ମଧ୍ୟ ଏହାକୁ ସୈନ୍ୟଗୁଡ଼ୁଣୀ ରୂପେ ବ୍ୟବହାର କରିଥିଲେ । ଏବେ ତାହା ହିଁ ହୋଇଛି ସାମରିକ ପୁଲିସର ମୁଖ୍ୟାଳୟ । ଯେକୌଣସି ଆଗନ୍ତୁକ କଟକରେ ପ୍ରବେଶ କରିବା ମାତ୍ରକେ ପୂର୍ବରେ ଏହି ସାମରିକ ଗୁଡ଼ୁଣି ଓ ପଶ୍ଚିମରେ ରେଭେନ୍‌ସା କଲେଜକୁ ଦେଖିବ । ରେଳଷ୍ଟେସନ ଓ ଗୁଡ଼ୁଣିର ମଧ୍ୟବର୍ତ୍ତୀ ଅଞ୍ଚଳରେ ତାହାର କବି ସମ୍ରାଟଙ୍କର ମହାବିଦ୍ୟାଳୟ ଅବସ୍ଥିତ । ଏହା ଗୋଟିଏ ସରକାରୀ କଲେଜ ।

କଟକ ନଗରର ତିନି ପାଖରେ ମହାନଦୀ ଓ କାଠଯୋଡ଼ୀ ନଦୀ ପ୍ରବାହିତ ହୋଇଥିବାରୁ ସହରକୁ ବନ୍ୟାଦାଉରୁ ରକ୍ଷା କରିବା ଲାଗି କାଠଯୋଡ଼ୀର ପଥରବନ୍ଧ ଓ ମହାନଦୀର ଯୋବ୍ରା ଆନିକଟ ରହିଛି । ଏହି ଆନିକଟରୁ ତାଳଦଣ୍ଡା କେନାଲ ବହି ଯାଉଛି । ପଥରବନ୍ଧ କେଶରୀ ବା ସୋମବଂଶ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । ତାହା ଏପର୍ଯ୍ୟନ୍ତ ସୁଦୃଢ଼ ଥିଲା ଏବଂ ବାର୍ଷିକ ବନ୍ୟାଦାଉରୁ ସହରକୁ ରକ୍ଷା କରି ଆସିଥିଲା ।

ଗତ ଦଶବର୍ଷ ତଳେ ଉଭୟ ନଦୀବନ୍ଧକୁ ସଂଯୁକ୍ତ କରିବା ଲାଗି ମୁଣ୍ଡଳିକା ପରି ଗୋଟିଏ ରିଂବନ୍ଧ ନିର୍ମିତ ହୋଇଛି ଏବଂ ପଥରବନ୍ଧକୁ କେତେକାଂଶରେ ଦୁର୍ବଳ

କରାଯାଉଛି । ଏହି ରାସ୍ତାରେ ବସ୍, ଟ୍ରକ୍, ସ୍କୁଟର ଓ ବଳଦଗାଡ଼ି ଭଳି ଯାନବାହନ ଅବଶ୍ୟ ଲୋକେ କରୁଥାନ୍ତି । କିନ୍ତୁ ବନ୍ୟା ଦାଉରୁ ମିଳୁଥିବା ସୁରକ୍ଷା କସୁନ୍ଦ୍ର ପଶ୍ଚିମାଞ୍ଚଳରେ ବ୍ୟାହତ ହୋଇଛି । ହୀରାକୁଦ ବନ୍ଧ ନ ହୋଇଥିବା ବେଳେ ମହାନଦୀ ଓ କାଠଯୋଡ଼ୀରେ ପ୍ରବଳ ବନ୍ୟା ଆସୁଥିଲା । ଏହି ପଥର ବନ୍ଧ ଦୁଇଟି ସହରକୁ ସେହି ବନ୍ୟା ଦାଉରୁ ରକ୍ଷା କରୁଥିଲା । ଏବେ ଆଉ ଆଗଭଳି ବନ୍ୟା ଆସୁନାହିଁ । କୌଣସି ବର୍ଷ ହୀରାକୁଦ ବନ୍ଧରୁ ବେଶୀ ପାଣି ଛାଡ଼ିଦିଆ ଗଲେ ଏହି ରିଂଗ ବନ୍ଧ ନଗରକୁ ରକ୍ଷା କରି ପାରିବ କି ନାହିଁ, ଦେଖାଯିବ ।

ଜୋବ୍ରା ଆନିକଟର ପଶ୍ଚିମ ଭାଗରେ କଟକର ଯାନ୍ତ୍ରିକ ବିଦ୍ୟାଳୟ ଅବସ୍ଥିତ । ସେଠାରେ ଗୋଟିଏ ବିରାଟ ସ୍ତମ୍ଭ ରହିଛି । ବହୁକାଳ ପର୍ଯ୍ୟନ୍ତ ଏହା ଗୋଟିଏ ପର୍ଯ୍ୟଟକ-ମାନଙ୍କ ଦର୍ଶନୀୟ କେନ୍ଦ୍ର ଥିଲା । ଏହାକୁ ଲୋକେ "କଟକ ଠେଙ୍ଗା" ବୋଲି କହୁଥିଲେ । ଆଗେ ମହାନଦୀ ସୁନାବ୍ୟା ଥିଲା ଏବଂ ଫଲସ୍ ପଏଣ୍ଟ ବନ୍ଦରଠାରୁ ବଣିକମାନଙ୍କ ଜାହାଜ କଟକ ବାଟେ ପଶ୍ଚିମାଞ୍ଚଳରେ ଥିବା ସମ୍ବଲପୁର ଓ ପାର୍ଶ୍ୱବର୍ତ୍ତୀ ଗଡ଼ଜାତ ଗୁଡ଼ିକ ସହିତ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରୁଥିଲା । ସେତେବେଳେ ବୋଧହୁଏ ଏହି "କଟକ ଠେଙ୍ଗା" ଗୋଟିଏ ବତୀଘର ଥିଲା ଓ ପଶ୍ଚିମାଞ୍ଚଳଗାମୀ ପୋତମାନଙ୍କୁ ଏହା କଟକର ଅବସ୍ଥିତି ସୂଚନା ଦେଉଥିଲା । ବର୍ତ୍ତମାନ ଯାନ୍ତ୍ରିକ ବିଦ୍ୟାଳୟର ପ୍ରଯୁକ୍ତି କର୍ମଶାଳାର ଏହା ହେଉଛି, ଗୋଟିଏ ସ୍ମୃତିସ୍ତମ୍ଭ ମାତ୍ର ।

ମହାନଦୀ ସହିତ ସମାନ୍ତରାଳ ଭାବରେ କଟକ ରେଳଷ୍ଟେସନ ଠାରୁ ପୂର୍ବରୁ ପଶ୍ଚିମ ପର୍ଯ୍ୟନ୍ତ ଗୋଟିଏ ପ୍ରଶସ୍ତ ରାସ୍ତା ରହିଛି । ଏହାର ପଶ୍ଚିମ ପ୍ରାନ୍ତରେ ରହିଛି ଇତିହାସ-ପ୍ରସିଦ୍ଧ ନବତଳପ୍ରାସାଦ ବିଶିଷ୍ଟ ବାରବାଟୀ ଦୁର୍ଗର ଧ୍ୱଂସାବଶେଷ । ଗୋଉଳିଆଗଞ୍ଜ, ରାଣୀହାଟ, ମଙ୍ଗଳାବାଗ ଓ କାଣ୍ଟୋନମେଣ୍ଟ ରୋଡ଼ ଏହି ରାସ୍ତା ଉପରେ ଅବସ୍ଥିତ । ବାରବାଟୀ ଦୁର୍ଗ ହିଁ ଏହାକୁ ଅନଙ୍ଗଭୀମଦେବ ନିର୍ମାଣ କରିଥିଲେ । ଏହା କଟକ ନଗରର ଖ୍ୟାତି ଓ ଗୌରବର ସୂଚକ । ପ୍ରଥମେ ମୋଗଲ, ପରେ ମରହଟ୍ଟା ଓ ଶେଷରେ ଇଂରେଜମାନେ ଏହି ଦୁର୍ଗର ମାଲିକ ହୋଇଥିଲେ । ଇଂରେଜମାନେ ଦୁର୍ଗକୁ ଦଖଲ କରିବା ପରେ ନିଜ ସାମରିକ କର୍ମଚାରୀମାନଙ୍କୁ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ରଖାଇ ଥିଲେ ବୋଲି ରାସ୍ତାର ଦୁର୍ଗ ନିକଟସ୍ଥ ଅଞ୍ଚଳକୁ କାଣ୍ଟୋନମେଣ୍ଟ ରୋଡ଼ କୁହାଯାଏ । ଓଡ଼ିଶା ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଉଚ୍ଚ ପଦାଧିକାରୀ ଅଧିକାରୀମାନେ ଏହି ରାସ୍ତାର ଉଭୟ ପଟରେ ବାସ କରୁଥିଲେ । ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବା ପରେ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶ ବର୍ଗ ଓ ପୁଲିସ ମୁଖ୍ୟାଳୟର ଉଚ୍ଚ ପୁଲିସ କର୍ମକର୍ତ୍ତା କାଣ୍ଟୋନମେଣ୍ଟ ରୋଡ଼ରେ ବାସ କରୁଛନ୍ତି । ଗୋଟିଏ ଦୁଇଟି ଘରକୁ ଛାଡ଼ିଦେଲେ ଏଠାରେ ବେସରକାରୀ ବ୍ୟକ୍ତିମାନଙ୍କ ପାଇଁ ସ୍ଥାନ ନାହିଁ । ଏହି ରାସ୍ତା କଡ଼ରେ ଉତ୍ତରରେ କଟକ ଆକାଶବାଣୀ କେନ୍ଦ୍ର ଓ ଦକ୍ଷିଣରେ ଓଡ଼ିଶାର ସାଧାରଣ ସେବା ଆୟୋଗର ଦପ୍ତର ଅବସ୍ଥିତ ।

କଟକ ନଗରରେ ଏହି ଇତିହାସପ୍ରସିଦ୍ଧ ବାରବାଟୀ ଦୁର୍ଗର ଉତ୍ଥାନ-ପତନର ଜୀବନ୍ତ ସାକ୍ଷୀ ରୂପେ ମହାନଦୀ କୂଳରେ ଗଡ଼ଗଡ଼େଶ୍ୱର ମହାଦେବ ଓ ଦୁର୍ଗ ଭିତରେ ଗଡ଼ଚଣ୍ଡୀ ବିଦ୍ୟମାନ । ବାରବାଟୀ ଦୁର୍ଗ ଭିତରକୁ ଯିବାଲାଗି ତିନୋଟି ଫାଟକ ରହିଛି । ଆଗେ କୁଆଡ଼େ ଆବୁଲ ଫାଜଲଙ୍କ "ଆଇନ୍-ଇ-ଆକବରୀ" ବର୍ଣ୍ଣନାନୁସାରେ ସେଠାରେ ଗୋଟିଏ ନବତଳ ପ୍ରାସାଦ ଥିଲା । ଇଂରେଜ ଐତିହାସିକମାନେ ଲେଖିଛନ୍ତି ଯେ ନଅ ମହଲା କୋଠା ନୁହେଁ, ପ୍ରାସାଦରେ ନଅଗୋଟି ସାହି ଥିଲା । ଇଂରେଜମାନେ ବାରବାଟୀ ଦୁର୍ଗକୁ ଦଖଲ କରିବା ପରେ ଏହାକୁ ଭଙ୍ଗାଭଙ୍ଗି କରି ପ୍ରାସାଦର ପଥରଗୁଡ଼ିକୁ ନେଇ ମହାନଦୀ ବନ୍ଧ ଓ କାଣ୍ଟନମେଣ୍ଟ ରାସ୍ତା ତିଆରି କରିବା ଲାଗି ବ୍ୟବହାର କରିଛନ୍ତି । ସେମାନେ ସବୁ ଭାଙ୍ଗି ଦେଇଥାନ୍ତେ କିନ୍ତୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବଙ୍କାର ଗ୍ରେଟଲିଙ୍କୁ ନିବେଦନ କରି ଦୁର୍ଗଭଙ୍ଗା କାର୍ଯ୍ୟକୁ ବନ୍ଦ କରାଇଥିଲେ । ତଥାପି ବହୁ ଅଂଶ ଭାଙ୍ଗି ଯାଇଛି ଏବଂ ସେଠାରେ ଏବେ ରାଜ୍ୟସରକାର ତାଙ୍କ କର୍ମଚାରୀମାନଙ୍କ ପାଇଁ ବାସଗୃହ ନିର୍ମାଣ କରିଛନ୍ତି । ସେଠାରେ ଗୋଟିଏ ବଡ଼ କୁଦ ରହିଛି । ଦୁର୍ଗର ଭଙ୍ଗା ଅଂଶ ଜମା କରିବା ଫଳରେ ଏହା ପାହାଡ଼ ପରି କଠିନ ହୋଇଛି ବୋଲି ଧାରଣା ଥିଲା । ନଗରର ସହସ୍ର ବାର୍ଷିକ ଉତ୍ସବ ଉପଲକ୍ଷେ କୁଦ ଖୋଳା ହେବାରୁ କୁଦ ଭିତରୁ ଗୁମ୍ବଜ, ପ୍ରାସାଦ, ମନ୍ଦିର ଓ ପ୍ରାଚୀରର ଭଗ୍ନାବଶେଷ ସଂଗୃହୀତ ହୋଇ ଗୋଟିଏ ଯାଦୁଘର ନିର୍ମାଣ ହେଲାଣି । ଦୁର୍ଗ ଭିତରେ ଗୋଟିଏ ଅଟ୍ଟାଳିକା ନିର୍ମିତ ହୋଇଛି । ସେଥିରେ ପ୍ରଥମେ ରାଜ୍ୟପାଳ, ପରେ ମୁଖ୍ୟମନ୍ତ୍ରୀ ଓ ବର୍ତ୍ତମାନ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀଶ ରହୁଛନ୍ତି । ତାହାର ଅପରପାର୍ଶ୍ୱରେ ଜହରଲାଲ ନେହେରୁଙ୍କ ନାମରେ ଗୋଟିଏ ଆଭ୍ୟନ୍ତରୀଣ ଷ୍ଟେଡ଼ିୟମ ନିର୍ମିତ ହୋଇଛି । ପୂର୍ବ ବାରବାଟୀ ଦୁର୍ଗର ଭଗ୍ନାବଶେଷ ରୂପେ ଗଡ଼ଖାଇ ରହିଛି । ପଶ୍ଚିମ ପାଖ ଗଡ଼ଖାଇ ପୋତି ହୋଇଯାଇଛି କିମ୍ବା ତାକୁ କେହି ପୋତି ସେଠାରେ ଗୋଟିଏ ରାସ୍ତା ତିଆରି କରିଛି । ଏବେ ସେ ଗଡ଼ଖାଇକୁ ପରିଷ୍କାର କରି ସେଠାରେ ମାଛଚାଷ କରାଯାଉଛି । ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ କର୍ତ୍ତୃପକ୍ଷ ଅଭିଯୋଗ କରୁଛନ୍ତି ଯେ କୁଦକୁ ଖୋଳିଲେ ଆହୁରି ଅନେକ ମୂଲ୍ୟବାନ ଐତିହାସିକ ଉପାଦାନ ମିଳିବାର ସଙ୍କେତ ଦେଖାଯାଉଛି କିନ୍ତୁ ବେଶୀ ଭିତରକୁ ଖୋଳିଲେ ସେଥିରେ ଥିବା ବାସଭବନ-ଗୁଡ଼ିକ ଭୁଷୁଡ଼ି ପଡ଼ିବାର ଆଶଙ୍କା ଯୋଗୁ ଖନନକାର୍ଯ୍ୟ ବେଶୀଦୂର ଆଗେଇ ନ ଦେବାକୁ ସେମାନେ ସ୍ଥିର କରିଛନ୍ତି ।

ବାରବାଟୀ ଦୁର୍ଗର ଦ୍ୱାରଦେଶର ଉତ୍ତର ଦିଗରେ ବାଲିଯାତ୍ରା ପଡ଼ିଆ ରହିଛି । ଏଠାରେ ବାଲିଯାତ୍ରା ହୁଏ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ । କିମ୍ବଦନ୍ତୀ କହେ ଯେ ଚୈତନ୍ୟ ଦେବ ପରିବ୍ରାଜକ ରୂପେ ମହାନଦୀ ପାର ହୋଇ ସେଠାରେ ଅଭିନବ ବାରାଣସୀ କଟକର ପବିତ୍ର ବାଲିରେ ଗଡ଼ିଯାଇ ଥିଲେ ବୋଲି ମହାଦେବଙ୍କୁ ଗଡ଼ଗଡ଼େଶ୍ୱର ଓ ପଡ଼ିଆକୁ ବାଲିଯାତ୍ରା ପଡ଼ିଆ କୁହାଯାଏ ।

ବାରବାଟୀ ନାମ ଓଡ଼ିଶାର ଐତିହ୍ୟ, ଇତିହାସ, ସଂସ୍କୃତି ଓ ଗୌରବ ସହିତ ଏପରି ଓତପ୍ରୋତ ଭାବେ ଜଡ଼ିତ ଯେ ଜାତୀୟ ଅଭିମାନ ଉଦ୍ରେକ କରିବା ଲାଗି ଏହି

ନାମକୁ ବ୍ୟବହାର କରାଯାଏ । ଭାରତ ସ୍ୱାଧୀନ ହେବା ପରେ ଡକ୍ଟର ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ଥିବାବେଳେ ତତ୍କାଳୀନ ସ୍ଥାନୀୟ ବିଧାୟକ ଭୈରବ ଚନ୍ଦ୍ର ମହାନ୍ତିଙ୍କୁ ମାଧ୍ୟମ କରି କ୍ରୀଡ଼ାକ୍ଷେତ୍ରରେ ଉନ୍ନତି ଲାଗି ସେ ଓଡ଼ିଶା ଅଲମ୍ପିକ ସଂଘ ଗଠନ କରାଇ ଏଥିପାଇଁ ଅର୍ଥ ସଂଗ୍ରହ କରିବା ଲାଗି ବାରବାଟୀ ରାଫଲ୍ ଆରମ୍ଭ କରିଥିଲେ । ଏହି ଅର୍ଥରେ ଭୈରବ ଚନ୍ଦ୍ର ମହାନ୍ତି ଓ ଅନ୍ୟାନ୍ୟ କଂଗ୍ରେସ କର୍ମୀମାନେ ଲାଗି ପଡ଼ି ବାରବାଟୀ ଷ୍ଟେଡ଼ିୟମ ନିର୍ମାଣ କରିଥିଲେ । ଆଧୁନିକ ଓଡ଼ିଶାର ଏହା ଗୋଟିଏ କୀର୍ତ୍ତିସ୍ତମ୍ଭ । ଭାରତର କ୍ରୀଡ଼ାଙ୍ଗନ ବା ଷ୍ଟେଡ଼ିୟମମାନଙ୍କ ମଧ୍ୟରେ ଗୋଟିଏ ସର୍ବୋତ୍କୃଷ୍ଟ ଷ୍ଟେଡ଼ିୟମ । ଏଠାରେ ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୁଏ । ଆଗନ୍ତୁକ କ୍ରୀଡ଼ାବିତ୍‌ମାନେ ଏକସ୍ୱରରେ ଏହାକୁ ଫୁଟବଲ୍, ହକି ଓ କ୍ରିକେଟ ଖେଳ ପାଇଁ ଗୋଟିଏ ଅତି ସୁବିଧାଜନକ ଷ୍ଟେଡ଼ିୟମ ରୂପେ ବର୍ଣ୍ଣନା କରିଛନ୍ତି । ଷ୍ଟେଡ଼ିୟମଟି କେବଳ କ୍ରୀଡ଼ାଙ୍ଗନ ହୋଇ ରହିନାହିଁ । ଏହାର ବିଶାଳତା ଯୋଗୁ ଏଠାରେ ବଡ଼ ବଡ଼ ସଭାସମିତି ଓ ଜନସମାଗମ ଅନୁଷ୍ଠିତ ହେଉଛି । ସାମୟିକ କ୍ରୀଡ଼ାବୃତ୍ତ ବାହାରେ ସଂଲଗ୍ନ କୋଠରୀଗୁଡ଼ିକୁ ବିବାହ ଓ ଭୋଜି ଇତ୍ୟାଦି ଲାଗି ସାମାଜିକ କେନ୍ଦ୍ର ରୂପେ ବ୍ୟବହାର କରାଯାଏ ।

ବାରବାଟୀ ଦୁର୍ଗ, ଷ୍ଟେଡ଼ିୟମ ଓ ସମୀପବର୍ତ୍ତୀ ରାସ୍ତା ପାର ହୋଇ ଆସିବା ମାତ୍ରକେ କଟକର ଅଧିଷ୍ଠାତ୍ରୀ ଦେବୀ ଶ୍ରୀ ଶ୍ରୀ କଟକ ଚଣ୍ଡୀଙ୍କ ମନ୍ଦିର ପଡ଼େ । ମା ଚଣ୍ଡୀଙ୍କ ମନ୍ଦିର ବିଷୟରେ ବହୁ ଅଦ୍ଭୁତ କିମ୍ବଦନ୍ତୀ ପ୍ରଚଳିତ ଅଛି । ଏଥିରୁ ଏତିକି ଜଣାପଡ଼େ ଯେ ମନ୍ଦିର ଥିବା ଅଞ୍ଚଳଟିରେ ଗୋଟିଏ କୁଦ ଥିଲା । ସ୍ୱପ୍ନାଦିଷ୍ଟ ହୋଇ କେତେକ ବ୍ୟକ୍ତି ଏହି କୁଦକୁ ଖୋଳିବା ଫଳରେ ମା ଚଣ୍ଡୀଙ୍କ ମୂର୍ତ୍ତି ମିଳିଲା ଏବଂ ନିକଟରେ ବାସ କରୁଥିବା କନିକା ରାଜା ତାଙ୍କ ପାଇଁ ଗୋଟିଏ ମନ୍ଦିର ତିଆରି କରାଇଥିଲେ । ଏହି ମନ୍ଦିରଟିର ବେଢ଼ା ଆଦି କେତେଜଣ ସ୍ଥାନୀୟ ଧନୀବ୍ୟକ୍ତି ସମ୍ପ୍ରତିରେ ପରିବର୍ଦ୍ଧିତ କରିଛନ୍ତି । ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ କେତେକ ମା କଟକ ଚଣ୍ଡୀ ଓ ବାରବାଟୀର ଗଡ଼ଚଣ୍ଡୀ ଉଭୟଙ୍କୁ ମିଶାଇ ବର୍ଣ୍ଣନା କରନ୍ତି । ମା'ଙ୍କ ମୂର୍ତ୍ତି ମଥୁରାରୁ ଅଣା ହୋଇଛନ୍ତି ବୋଲି ଜନଶ୍ରୁତି ଶୁଣାଯାଏ ।

ଅନ୍ୟାନ୍ୟ ଦେବଦେବୀଙ୍କ ମଧ୍ୟରେ କାଳୀଗଳିର ଶ୍ରୀ ଶ୍ରୀ କାଳୀ ଓ ବକ୍ସିବଜାରର ଅମରେଶ୍ୱର ମନ୍ଦିର ଦୁଇଟି ପ୍ରାଚୀନ ଦେବଦେବୀ ମନ୍ଦିର, ଏହାଛଡ଼ା ମରହଟ୍ଟା ଶାସକ ଭାସ୍କର ପଣ୍ଡିତ ଗୁହ୍ମାଚଉକରେ ଦେବୀ ପୂଜା ଆରମ୍ଭ କରିଥିଲେ । ଅନ୍ୟ ଗୋଟିଏ ପାଷାଣ ଦେବୀ ମୂର୍ତ୍ତି ମାଛୁଆବଜାର ଛକରେ ମରହଟ୍ଟା ଯୁଗରୁ ପୂଜା ପାଉଛନ୍ତି । କଟକର ଆଧ୍ୟାତ୍ମିକ ସ୍ଥାନମାନଙ୍କ ମଧ୍ୟରୁ ଏହି ମନ୍ଦିରଗୁଡ଼ିକ ପ୍ରଧାନ । ଶୈବ ଓ ଶାକ୍ତ ପୀଠମାନଙ୍କ ମଧ୍ୟରେ ଏହି ଦେବଦେବୀ ମନ୍ଦିରଗୁଡ଼ିକ ଉଲ୍ଲେଖଯୋଗ୍ୟ । ନଗରର ବିଭିନ୍ନାଞ୍ଚଳର ଅଧିବାସୀମାନଙ୍କ ଆରାଧନା ମନ୍ଦିର ବିଭିନ୍ନ ଯୁଗରେ ନିର୍ମିତ ହୋଇଛି ।

କଟକ ଚଣ୍ଡୀ ମନ୍ଦିରର ସମ୍ମୁଖରେ ଓ ପାର୍ଶ୍ୱଦେଶରେ ଖିରସ୍ତାନମାନଙ୍କ ନିବାସ, କର୍ମକେନ୍ଦ୍ର, ଶିକ୍ଷାୟତନ ଓ ଉପାସନା ଗୃହ ଅବସ୍ଥିତ । ଏହା ମଧ୍ୟ ମିଶନ ରୋଡ଼

ନାମରେ ବଦଳ । ଅବଶ୍ୟ ଏହି ଅଞ୍ଚଳରେ ଓଡ଼ିଶାର ବୃହତ୍ତମ ମହିଳା ମହାବିଦ୍ୟାଳୟ ସରକାରୀ ଶୈଳବାଳା ମହିଳା କଲେଜ ଅବସ୍ଥିତ । ଏହି କଲେଜର ଅଟ୍ଟାଳିକା ଉତ୍କଳ ଗୌରବ ମଧୁସୂଦନଙ୍କ ବାସଗୃହ ଥିଲା । ସେ ନିଜେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ବୋଲି ଏହି ଅଞ୍ଚଳରେ ବାସଗୃହ ରଖିବାରେ ତାଙ୍କର କୌଣସି ଅସୁବିଧା ନ ଥିଲା । ତାଙ୍କ ମୃତ୍ୟୁପରେ ତାଙ୍କ ପାଳିତା କନ୍ୟା ଶୈଳବାଳା ଦାସ ଏହି ଅଟ୍ଟାଳିକାଟିକୁ ଓଡ଼ିଶା ସରକାରଙ୍କୁ ବିକ୍ରୟ କରିଦେଇ ଥିଲେ ହେଁ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କ ନାମରେ କଲେଜର ନାମକରଣ କରିଛନ୍ତି ।

ଏହି ମିଶନ ରୋଡ଼ରେ ଅଛି ଷ୍ଟିୱାର୍ଟ ବିଜ୍ଞାନ କଲେଜ ଓ ଖ୍ରୀଷ୍ଟ କଲେଜ । ସ୍କଟଲଣ୍ଡର ଧର୍ମଯାଜକ ଟୋଷ୍ଟୀ ଷ୍ଟିୱାର୍ଟ କଲେଜକୁ ପ୍ରତିଷ୍ଠା କରନ୍ତି । ସାଧାରଣ ଅନୁଦାନରେ ସ୍ଥାପିତ ହୋଇ ଥିବା ଉତ୍କଳ ଖ୍ରୀଷ୍ଟିୟାନ କଲେଜକୁ ଏବେ ଖୀରସ୍ଥାନ ଶିକ୍ଷା ସମାଜ ନାମକ ଗୋଟିଏ ଅନୁଷ୍ଠାନ ପରିଚାଳନା କରି ଏହାକୁ ଗୋଟିଏ ଧର୍ମୀୟ ସାଂପ୍ରଦାୟିକ ଅନୁଷ୍ଠାନ ରୂପେ ଦାବି କରୁଛନ୍ତି । ଏହି ରାସ୍ତାରେ ଅଛି ଓଡ଼ିଶା ମିଶନ ପ୍ରେସ । ଏହାହିଁ ଓଡ଼ିଶାର ସର୍ବପ୍ରଥମ ମୁଦ୍ରଣାଳୟ । ଏହାକୁ ମିଶନାରୀମାନେ ପ୍ରତିଷ୍ଠା କରିଥିଲେ । ଏହି ରାସ୍ତା ମଧ୍ୟରେ ମିଶନ ହାଇସ୍କୁଲ ପ୍ରତିଷ୍ଠା ହୋଇଥିଲା । ଏବେ ଏହାର ନାମ ହେଉଛି ଖ୍ରୀଷ୍ଟକଲେଜିଏଟ ସ୍କୁଲ । ଅନତି ଦୂରରେ ରହିଛି, ଦୁଇଟି ଗୀର୍ଜା । ତନ୍ମଧ୍ୟରୁ ବାପଟିଷ୍ଟ ମିଶନ ଗୀର୍ଜା ସର୍ବ ପୁରାତନ । ସ୍କଟିଶ ମିଶନ ତରଫରୁ ଷ୍ଟିୱାର୍ଟ ସ୍କୁଲ ଓ ଷ୍ଟିୱାର୍ଟ କଲେଜ ସ୍ଥାପିତ ହୋଇଛି । କଟକ ଚଣ୍ଡୀ ମନ୍ଦିର ନିକଟରେ ରହିଛି କନ୍‌ଭେଣ୍ଟ ସ୍କୁଲ । ତେଣୁ ଖିରସ୍ଥାନ ଧର୍ମଯାଜକମାନେ କାଣ୍ଟନମେଣ୍ଟ ରାସ୍ତାର ସମାନ୍ତରାଳ ରାସ୍ତା ମିଶନ ରୋଡ଼ରେ ଧର୍ମପ୍ରଚାର, ଶିକ୍ଷାପ୍ରଚାର ଓ ସଂସ୍କୃତି ବିସ୍ତାର ଭଳି ମହାନ କର୍ତ୍ତବ୍ୟ ସମ୍ପାଦନ କରିବା ଲାଗି କଟକ ନଗରର ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ନିଜ କାର୍ଯ୍ୟାଳୟ ସ୍ଥାପନ କରିଛନ୍ତି ।

କଟକର ପୁରାତନ ବସ୍ତିଗୁଡ଼ିକ କାଠଯୋଡ଼ୀ ନଦୀକୂଳରେ ଅବସ୍ଥିତ । ପଶ୍ଚିମରେ ଲାଲବାଗ କୋଠିଠାରୁ ପଶ୍ଚିମରେ ବକ୍‌ସିବଜାର ଅଞ୍ଚଳ ମଧ୍ୟରେ ଥିବା ସାହେବଜାଦା ବଜାର, ନିମ୍‌ଚଉଡ଼ି, ବାଲୁବଜାର, ତଳ ଓ ଉପର ତେଲଙ୍ଗା ବଜାର, ନୂଆ ସଡ଼କ, ଚଉଧୁରୀ ବଜାର, ଫିରିଙ୍ଗି ବଜାର, ବଙ୍ଗାଳୀ ସାହି, ଦରଘା ବଜାର, ସୂତାହାଟ, ଡନକୋଣିଆ ବଗିଚା ଓ ବକ୍‌ସି ବଜାର ଆଦିରେ ସାଧାରଣ ଜନବସତି ରହିଛି ।

ଦରଘା ବଜାରରେ ଥିବା କଦମରସୁଲ ମୁସଲମାନ ବାସିନ୍ଦାମାନଙ୍କ ପାଇଁ ଗୋଟିଏ ପବିତ୍ର ସ୍ଥାନ । ଏଠାରେ ଆରବ ଦେଶର ନଜର୍ଫ ଠାରୁ ଆସିଥିବା ପ୍ରଫେଟ ମହମ୍ମଦଙ୍କ ଦେହାବଶେଷ ସୁରକ୍ଷିତ ହୋଇଛି । ଏଠାରେ ହିନ୍ଦୁ ବା ମୁସଲମାନ ଯେକୌଣସି ଭକ୍ତ କୌଣସି ମାନସିକ କଲେ ତାହା ପୂର୍ଣ୍ଣ ହୁଏ ବୋଲି ଉଭୟ ଧର୍ମର ଲୋକେ ଏହି ପବିତ୍ର କ୍ଷେତ୍ରକୁ ଆସନ୍ତି । ଏହାକୁ ୧୭୧୫ରେ ମୋଗଲ ସମ୍ରାଟଙ୍କ ପ୍ରତିନିଧି

ସୁଜାଉଦ୍ଦିନ ଖାଁ ପ୍ରତିଷ୍ଠା କରିଥିଲେ । ଏହି କଦମରସୁଲ ହତା ମଧ୍ୟରେ ବହୁ ମୁସଲମାନ ନବାବ ଓ ମରହଟ୍ଟା ସେନାମାନଙ୍କର କବର ରହିଛି । ତନ୍ମଧ୍ୟରୁ ମରହଟ୍ଟା ସେନାପତି ଫତେ ଖାଁଙ୍କ କବର ବିଖ୍ୟାତ । ଏତଦବ୍ୟତୀତ, ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କ ନିର୍ଦ୍ଦେଶରେ ବଡ଼ଲାଟ ଇକ୍ରାମ୍ ଖାଁଙ୍କ ଦ୍ୱାରା ନିର୍ମିତ ବାଲୁବଜାର ଜୁମା ମସ୍‌ଜିଦ ମୁସଲମାନମାନଙ୍କର ଗୋଟିଏ ବିଶିଷ୍ଟ ଉପାସନା ମନ୍ଦିର । ଆଉରଙ୍ଗଜେବଙ୍କ କନ୍ୟା ସାହାଜାଦା ବେଗମ୍‌ଙ୍କ ସ୍ମୃତିରେ ଏହି ମସ୍‌ଜିଦକୁ ନିର୍ମାଣ କରାଯାଇଛି ।

ଲାଲ୍‌ବାଗ କୋଠି ମୁସଲମାନ ରାଜତ୍ୱ ସହିତ ଜଡ଼ିତ । ଏହି କୋଠିର ନାମାନୁସାରେ ଉକ୍ତ ଅଞ୍ଚଳର ନାମକରଣ କରାଯାଇଛି । ଏଠାରେ ମୁସଲମାନ, ମୋଗଲ ଓ ମରହଟ୍ଟା ଶାସକମାନେ ବାସକରୁଥିଲେ ବୋଲି କୁହାଯାଏ । ଐତିହାସିକ ବିବର୍ତ୍ତନ ଅନୁସାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ବେଳେ ରାଜ୍ୟପାଳମାନେ ମଧ୍ୟ ଭୁବନେଶ୍ୱର ରାଜଧାନୀ ହେବା ପର୍ଯ୍ୟନ୍ତ ଏଠାରେ ବାସ କରୁଥିଲେ । ଏବେ ଏଠାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ଶିଶୁଭବନ ପ୍ରତିଷ୍ଠିତ ହୋଇଛି । ଏହାକୁ ପଠାଣ ରାଜତ୍ୱ ବେଳେ ନବାବ ବକର ଖାଁଙ୍କ ନିର୍ଦ୍ଦେଶରେ ନିର୍ମାଣ କରାଯାଇଥିଲା ବୋଲି ଏହି ବକର ଖାଁଙ୍କ ନାମାନୁସାରେ ବାଖରାବାଦ ଅଞ୍ଚଳର ନାମକରଣ ହୋଇଛି ବୋଲି ଇତିହାସବିଦ୍‌ମାନେ ମତ ଦିଅନ୍ତି । ଏହି ହତା ମଧ୍ୟରେ ସନ୍ଥ ସାହା ମନସୁରଙ୍କ କବର ରହିଛି ।

ନଗରର ପୂର୍ବ ଦିଗରେ ରେଳପଥ ନିକଟରେ ଶିଖମାନଙ୍କ ଗୁରୁଦ୍ୱାର କାଳୀଆବୋଦା ଅଞ୍ଚଳରେ ଅବସ୍ଥିତ । ଗୁରୁ ନାନକ ଜଗନ୍ନାଥ ଦର୍ଶନକୁ ଯିବା ବେଳେ ଏହିଠାରେ ଅବସ୍ଥାନ କରିଥିଲେ ବୋଲି କୁହାଯାଏ । ଏହି ପବିତ୍ର ଗୁରୁଦ୍ୱାରକୁ ଗୁରୁ ନାନକ ଦାନ୍ତ ସାହେବ କୁହାଯାଏ । ଏହି ଗୁରୁଦ୍ୱାର ଠାରେ ସ୍ଥାନୀୟ ଶିଖମାନେ ନିଜ ନିଜର ପର୍ବପର୍ବାଣି ପାଳନ କରନ୍ତି ।

ଓଡ଼ିଶା ପ୍ରାଚୀନ କାଳରେ ଜୈନ ଧର୍ମାବଲମ୍ବୀ ନରପତିଙ୍କ ଦ୍ୱାରା ଶାସିତ ହେଉଥିଲା । ସେହି ସ୍ମୃତି ବହନ କରିଛି ଚଉଧୁରୀ ବଜାରରେ ଥିବା ଦିଗମ୍ବର ଜୈନ ମନ୍ଦିର । କଟକର ନୟାସଡ଼କ ଓ ଚଉଧୁରୀ ବଜାରରେ ବ୍ୟବସାୟ ଚଳାଇଥିବା ମାରୱାଡ଼ୀମାନଙ୍କ ମଧ୍ୟରୁ ଅନେକ ଜୈନ ଅଛନ୍ତି । ଏହା ହିଁ ସେମାନଙ୍କ ଉପାସନା ସ୍ଥଳ ।

ଊନବିଂଶ ଶତାବ୍ଦୀରେ ବଙ୍ଗଦେଶରେ ବ୍ରାହ୍ମ ଧର୍ମର ପ୍ରଚାର ହୋଇଥିଲା । ଏହା ହେଉଛି ହିନ୍ଦୁ ଧର୍ମର ଏକ ସଂସ୍କାର । ମହର୍ଷି ଦେବେନ୍ଦ୍ରନାଥ ଠାକୁର ବ୍ରହ୍ମାନନ୍ଦ, କେଶବ ଚନ୍ଦ୍ର ସେନ୍ ଆଦି ବିଶିଷ୍ଟ ବ୍ରାହ୍ମ ଉଦ୍‌ଗାତାମାନେ ଓଡ଼ିଶା ସହିତ ନାନା ଭାବରେ ସମ୍ପୃକ୍ତ ଥିଲେ । ସେମାନେ ଓଡ଼ିଆ ବଜାରରେ ବ୍ରାହ୍ମ ଉପାସନା ମନ୍ଦିର ସ୍ଥାପନ କରିଛନ୍ତି । ଦୁଇଜଣ ବିଶିଷ୍ଟ ବ୍ରାହ୍ମନେତା ପ୍ୟାରୀମୋହନ ଆଚାର୍ଯ୍ୟ ଓ ଭକ୍ତକବି ମଧୁସୂଦନ ରାଓ ଏହି ଅଞ୍ଚଳର ଦୁଇ ଦିଗରେ ଯଥାକ୍ରମେ ପ୍ୟାରୀମୋହନ ଏକାଡେମୀ ଓ ଏବେ ଭକ୍ତମଧୁ ବିଦ୍ୟାପୀଠ ନାମରେ ନାମିତ ଟାଉନ ହାଇସ୍କୁଲ ଓ ପରବର୍ତ୍ତୀ

ଟାଉନ୍ ଭିକ୍ଟୋରିଆ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଖ୍ରୀଷ୍ଟ ଧର୍ମଯାଜକ ଓ ବ୍ରାହ୍ମ ଉପାସକମାନଙ୍କ ଆଦର୍ଶରେ ମୁସଲମାନମାନେ ପରବର୍ତ୍ତୀ କାଳରେ ବର୍ତ୍ତମାନ ମସ୍‌ଜିଦ ସେମିନାରୀ କୁହାଯାଉଥିବା ମୁସ୍‌ଲିମ ସେମିନାରୀ ନାମକ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଛନ୍ତି ।

କଟକ ନଗରର ଅନ୍ୟ ଗୋଟିଏ ଦର୍ଶନୀୟ ସ୍ଥାନ ହେଉଛି ଓଡ଼ିଶା ଉଚ୍ଚ ନ୍ୟାୟାଳୟର ଅଟ୍ଟାଳିକା । ଏହା ସମଗ୍ର ରାଜ୍ୟ ପାଇଁ ଉଦ୍ଦିଷ୍ଟ । ଏହା ନିକଟରେ ନିଖିଳ ଓଡ଼ିଶା ସ୍ତରର ରାଜସ୍ୱ ମଣ୍ଡଳ ଏବଂ କେନ୍ଦ୍ରୀୟ ତଥା ରାଜ୍ୟ ପ୍ରଶାସନିକ ଅଧିକରଣ ରହିଛି । ଏହାଛଡ଼ା କେନ୍ଦ୍ରାଞ୍ଚଳର ରାଜସ୍ୱ ଆୟୁକ୍ତ ଏବଂ କଟକର ଜିଲ୍ଲା ନ୍ୟାୟାଧୀଶ ଓ କଲେକ୍ଟରଙ୍କ କାର୍ଯ୍ୟାଳୟ ଅବସ୍ଥିତ । କଟକ ନଗର ମଧ୍ୟ ଓଡ଼ିଶା ପୁଲିସ ବିଭାଗର କେନ୍ଦ୍ରସ୍ଥଳ ।

ଏହି ନଗରରୁ ରାଜଧାନୀ ଭୁବନେଶ୍ୱରକୁ ଉଠି ଯାଇଥିଲେ ମଧ୍ୟ ଏହା ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ରାଜଧାନୀ ରୂପେ ପରିଚିତ । ସହର ମଧ୍ୟରେ କୌଣସି ଶିଳ୍ପାନୁଷ୍ଠାନ ନାହିଁ । କାଠଯୋଡ଼ି କୂଳରେ ମଧୁପାଟଣା ଓ ମହାନଦୀ କୂଳରେ ଜଗତ-ପୁରରେ ଦୁଇଟି ଶିଳ୍ପାଞ୍ଚଳ ଅବସ୍ଥିତ । ନିଖିଳ ରାଜ୍ୟ ଉତ୍କଳ ସାହିତ୍ୟ ସମାଜ କଟକ ନଗରରେ ଅବସ୍ଥିତ । ଆଗେ କଟକରେ ପ୍ରତ୍ୟହ ଦୁଇଟି ରଙ୍ଗମଞ୍ଚରେ ଦୁଇଟି ନାଟକ ଅଭିନୀତ ହେଉଥିଲା । ପ୍ରୋତ୍ସାହନ ଅଭାବରୁ ସେଗୁଡ଼ିକ ବନ୍ଦ ହୋଇଯାଇଛି । ସେମାନଙ୍କ ସ୍ଥାନ ଅଧିକାର କରିଛନ୍ତି ଅନେକ ଚଳଚ୍ଚିତ୍ର ପ୍ରେକ୍ଷାଳୟ । ତଥାପି କଳା-ବିକାଶ କେନ୍ଦ୍ର ଆନୁକୂଲ୍ୟରେ ବେଳେବେଳେ କେନ୍ଦ୍ରର ନିଜସ୍ୱ ଓ ସୌଖୀନ କଳାକାରମାନଙ୍କ ଦ୍ୱାରା ନାଟକ ଅଭିନୀତ ହୁଏ ।

କଟକରେ ପ୍ରତ୍ୟହ ନାନାବିଧ ସାଂସ୍କୃତିକ ସଭାସମିତି ଅନୁଷ୍ଠିତ ହୁଏ । ସେଥିପାଇଁ ରହିଛି ଶ୍ରୀରାମଚନ୍ଦ୍ର ଭବନ, ଟାଉନ ହଲ, ଶହୀଦ ଭବନ, କଳାବିକାଶ କେନ୍ଦ୍ର, ବାରବାଟୀ ଷ୍ଟେଡ଼ିୟମ କ୍ଲବ ହାଉସ, ଜବାହରଲାଲ ନେହେରୁ ଆଭ୍ୟନ୍ତରୀଣ ଷ୍ଟେଡ଼ିୟମ ଏବଂ ବିଭିନ୍ନ ସ୍କୁଲ ଓ କଲେଜର ସଭାଗୃହ ।

କଟକର ଐତିହ୍ୟ ଓଡ଼ିଶାର ଐତିହ୍ୟ ସହିତ ଘନିଷ୍ଠ ଭାବରେ ଜଡ଼ିତ । ଏଠାରେ ସବୁ ଧର୍ମର ଧର୍ମପୀଠ ଓ ଉପାସନା ମନ୍ଦିର ରହିଛି । ଏହା ସର୍ବଧର୍ମ ସମନ୍ୱୟର ପ୍ରତୀକ । ଏଠାରେ ସାଂପ୍ରଦାୟିକ ସଦ୍‌ଭାବ ଅତୁଟ ରହିଛି । ଜାତି, ଧର୍ମ ଭାଷା ଓ ବ୍ୟବସାୟ ଭେଦ ଥିଲେ ହେଁ ସମସ୍ତେ "କଟକୀ" ବୋଲି ଗର୍ବ ଅନୁଭବ କରନ୍ତି । ହଜାର ବର୍ଷ ପରେ ବି ଏହି ନଗର ନିଜ ଖ୍ୟାତି ବଜାୟ ରଖିଛି ।



# କଟକ ଭାବନା :
# ସ୍ମୃତି ସତ୍ତା ସମ୍ଭାବନା

**ଅରୁଣ ପଣ୍ଡା**
**ପରେଶ ପ୍ରଧାନ**

ସହସ୍ର ବର୍ଷର ସହର ବୋଧହୁଏ ପୃଥିବୀରେ କ୍ୱଚିତ୍ କଟକ ଭଳି ଥିବ । ଗ୍ରାମ୍ୟଜୀବନର ପରିବେଶ ସହିତ ଅତ୍ୟାଧୁନିକ ସହରୀ ଜୀବନର ବିକଟତା ଉଭୟ ଏହି ସହରରେ ଏକା ସାଙ୍ଗରେ ଅନୁଭବ କରିହୁଏ । ଏହି ସହରର ଚଳପ୍ରଚଳ, ହାବଭାବ, ଗୀତନାଟ, କଥାବାର୍ତ୍ତା, ଢଙ୍ଗଢାଙ୍ଗ, ଜାନିଯାତ୍ରା ସବୁ ଯେପରି ଅଲଗା କିସମର-ସବୁଥିରେ ଏକ ସ୍ୱାତନ୍ତ୍ର୍ୟର ଝଲକ ।

କାର୍ତ୍ତିକ ପୂର୍ଣ୍ଣିମୀ ଠାରୁ ଆରମ୍ଭ କରି ୫ ଦିନବ୍ୟାପୀ ଗଡ଼ଗଡ଼ିଆ ମନ୍ଦିର ନିକଟ ମହାନଦୀ ପାର୍ଶ୍ୱ ପଡ଼ିଆରେ ଯେଉଁ ବାଲିଯାତ୍ରା ଅନୁଷ୍ଠିତ ହୋଇଥାଏ, ତାହା ତାହାର ନିଜସ୍ୱ ଢଙ୍ଗରେ ଅଦ୍ୱିତୀୟ । ଦକ୍ଷିଣ ପୂର୍ବ ଏସିଆକୁ କଳିଙ୍ଗର ସାଧବ ପୁଅର ବାଣିଜ୍ୟିକ ବୋଇତ ଯାତ୍ରାର ସ୍ମାରକୀ ସ୍ୱରୂପ ଏହି ବାଲିଯାତ୍ରା କେତେକଙ୍କ ମତରେ ସପ୍ତମ ଶତାବ୍ଦୀରୁ ଅନୁଷ୍ଠିତ ହୋଇଆସୁଛି । ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶର ରାଜା ଶୈଳେନ୍ଦ୍ର ବାଲି, ସୁମାତ୍ରା, ବୋର୍ଣ୍ଣିଓ ଆଦି ଦକ୍ଷିଣପୂର୍ବ ଏସିଆର ଦ୍ୱୀପପୁଞ୍ଜମାନଙ୍କୁ ଯାଇ ସେଠାରେ ସଭ୍ୟତାର ବିକାଶ କରିବା ସହିତ କଳିଙ୍ଗ ସହ ସେସବୁ ଦେଶମାନଙ୍କର ବାଣିଜ୍ୟିକ ସମ୍ପର୍କର ଅଭିବୃଦ୍ଧି କରିଥିଲେ ବୋଲି ଅନସ୍ୱୀକୃତ ଇତିହାସରୁ ଜଣାଯାଏ । ଏ ସମ୍ପର୍କରେ ଅଧିକ ଗବେଷଣା ହେଲେ ଏହାର ବାସ୍ତବ ଚିତ୍ର ଲୋକଲୋଚନକୁ ଆସିପାରନ୍ତା । ବାଲିଯାତ୍ରାକୁ ଇତିହାସର ଏକ ମାଇଲ୍ ଖୁଣ୍ଟ ବୋଲି ଗ୍ରହଣ କରାଗଲେ କଟକ ସହରର ବୟସ ୧୩ ଶହ ବର୍ଷ ହେବ, ହଜାରେ ନୁହେଁ ।

## କଟକର ଛଟକ :

ପରିହାସ ଛଳରେ କଟକର ଖାସ ବାସିନ୍ଦାଙ୍କର କଥାବାର୍ତ୍ତାର ଏକ ଉଦାହରଣ ଦେଇ ଜଣେ ବନ୍ଧୁ କହିଲେ, "ଲେ ପଇସାକୁ ଲ'ଠା ଲଡ଼ିଆ, ଲେବୁତ ଲେ ଲହିଲେ ଲାହିଁ (ନପଇସାକୁ ନ'ଠା ନଡ଼ିଆ, ନେବୁତ ନେ ନୋହିଲେ ନାହିଁ ।)" ଏହା କଟକ

ବାସିନ୍ଦାଙ୍କ କେବଳ 'ବୋଲି' ନୁହେଁ ସବୁ କଥା ବଚନ ଢଙ୍ଗର । ତାଙ୍କର ପାଇକଗୁମରା ଅଣ୍ଟାଭିଡ଼ା ଲୁଗାପିନ୍ଧା ସାଙ୍ଗକୁ, କଟକୀ ଚାଲି ଓ ଚାହାଣି ବେଶ ବାରି ହୋଇଚଲେ ପଡ଼ି ।

ସଂଖ୍ୟାଧିକ 'ଖାସ ବାସିନ୍ଦା' ମାନଙ୍କର ନୁଆଁଣିଆ ଚାଳ ଘରେ ସହସ୍ର ବର୍ଷର ସଭ୍ୟତାର କେତେକ ନିଚ୍ଛକ ଅଭିବ୍ୟକ୍ତ କଳା ଓ ସ୍ଥାପତ୍ୟ ମଧ୍ୟରେ ଏବେ ବି ଦେଖିବାକୁ ମିଳେ । କଟକର ପ୍ରସିଦ୍ଧ ତାରକସୀ କାମର ଏବର ସ୍ଥିତିର ଗୌରବ ଉତ୍କଳଗୌରବ ମଧୁସୂଦନ ଦାସଙ୍କୁ ଦିଆଯାଇପାରେ; କିନ୍ତୁ ସେ ଥିଲେ ଏହି କଳାର ତ୍ରାଣକର୍ତ୍ତା । ଆଜି ତାରକସୀ ବିଶ୍ୱପ୍ରସିଦ୍ଧି ଲାଭ କରିଛି ।

ସେହିଭଳି କାଠଗଡ଼ା ଓ କୁମ୍ଭାର ସାହିର ଗୁଳନ୍ଧରମୟ ବସ୍ତି ଭିତରେ ବୁଲି ଆସିଲେ ଏପରି ଜଣାପଡ଼େ ସତେ ଯେପରି ମୃଣ୍ମୟ ଶିଳ୍ପ ସବୁ ମୂର୍ତ୍ତିକାରର ତୁଳୀ ସ୍ପର୍ଶରେ କଥା କହିବାକୁ ଉଦ୍ୟତ ହେଉଛନ୍ତି । କି ଜୀବନ୍ତ ଅଭିବ୍ୟକ୍ତି ମାଟିରୁ ସୃଷ୍ଟି ହୋଇଛି ? ଦୁର୍ଗାପୂଜା, କାର୍ତ୍ତିକ ପୂଜା, କାଳୀପୂଜା ଏବଂ ଏବର ଜୋର୍‌ସୋରରେ ପାଳିତ ହେଉଥିବା ଗଣେଶ, ସରସ୍ୱତୀ ଓ ବିଶ୍ୱକର୍ମା ପୂଜାବେଳେ କଟକର ଏହି ମୃଣ୍ମୟ ଶିଳ୍ପୀମାନଙ୍କର କଳାଚାତୁର୍ଯ୍ୟର ସମ୍ମୋହନ ସଫଳତା ଦେଖିବାକୁ ମିଳିଥାଏ ।

## ଭାରତର ସବୁଠୁ ବଡ଼ ଗ୍ରାମ :

କଟକ ଭାରତର ସବୁଠାରୁ ବଡ଼ ଗ୍ରାମ । ଏହା ମୋ ମତ ନୁହେଁ, ଏକ ଅଖିଳ ଭାରତୀୟ ଚିକିତ୍ସାବିତ୍ ସମ୍ମିଳନୀରେ ବମ୍ବେରୁ ଆସିଥିବା ଜଣେ ବିଶିଷ୍ଟ ବିଶେଷଜ୍ଞ ଚିକିତ୍ସାବିତଙ୍କ ମତ । କଟକ ସହରରେ ସେ ତାଙ୍କ ଶ୍ରୀମତୀଙ୍କ ସହିତ କଟକୀ ରିକ୍‌ସାରେ ଗଳିକନ୍ଦି ବଜାରହାଟ ବୁଲି ଆସିଲା ପରେ ଏହା ଥିଲା ତାଙ୍କର ମତ । କାରଣ ଦେଶରେ ବମ୍ବେ ପରି ଅନ୍ୟ ସହରମାନଙ୍କରେ 'ସ୍ଲମ୍' (ଝୁଙ୍ଗୀ ଝୋପଡ଼ି) କେବଳମା ଦେଖିବାକୁ ମିଳେ, କିନ୍ତୁ ଗାଁପରି ରାଜ୍ୟର ସବୁଠାରୁ ଗୋଟିଏ ବଡ଼ ସହରର ସର୍ବସାଧାରଣ ରହୁଥିବା ଦେଖି ଆଶ୍ଚର୍ଯ୍ୟ ପ୍ରକଟ କରି ସେ ବୋଧହୁଏ ଏହା କହିଥିଲେ ।

## ମଣିଷ ଜନ୍ମ : ପଶୁଙ୍କ ଜୀବନ !

କଟକ ସହରର କେତେକ ବାହାରୁ ଆସିଥିବା ତେଲଙ୍ଗା, ଶରଣାର୍ଥୀ ବଙ୍ଗାଳୀଙ୍କ ବସ୍ତିକୁ ସ୍ଲମ୍ ସଙ୍ଗେ ତୁଳନା କରାଯାଇପାରେ । ଜନ୍ ଗୁନ୍ଥର ୧୯୬୪ ସଂସ୍କରଣରେ ତାଙ୍କର 'ଇନସାଇଡ଼ ଇଣ୍ଡିଆ' ପୁସ୍ତକରେ କଲିକତାର ଝୋଟ ଶ୍ରମିକଙ୍କ ବସ୍ତିର ବର୍ଣ୍ଣନା କରି ୮×୬ ଫୁଟର ଗୋଟିଏ ଗୋଟିଏ ଘରେ ୮।୧୦ ଜଣଙ୍କ ଗୋଟିଏ ଗୋଟିଏ ପରିବାର ରହୁଥିବା କଥା ଏବଂ ତିନି ଚାରି ଟଙ୍କାରେ ଗୋଟିଏ ସପ୍ତାହ ଗୋଟିଏ ପରିବାର ଚଳୁଥିବା କଥା ତଥା ଆଲୋକ, ଜଳ ଓ ସ୍ୱଚ୍ଛତାର ଅଭାବରେ ସେମାନଙ୍କ ଦୟନୀୟ ଅବସ୍ଥା କଥା

ଚଳିଥିଲେ । ଏବେ କଟକ ସହରର ପଣ୍ଡାପୋଲ ଅଞ୍ଚଳର ତେଲେଙ୍ଗାବସ୍ତି ଆଡ଼େ ବୁଲି ଆସିଲେ ଜନ୍ ଗୁନ୍ଥରଙ୍କ ଉକ୍ତିର ପ୍ରତିଫଳନ ସେଠାରେ ଦେଖିବାକୁ ମିଳେ । ଏପରି ମନେହୁଏ ସତେ ଯେପରି ମଣିଷ ପଶୁଭଳିର ସ୍ତରକୁ ଓହ୍ଲାଇ ଆସିଛି ।

## କଟକ ନଗର ପାଳକଟଗର :

କଟକରେ ମଶାଙ୍କର ବର୍ଷ ସାରା ଦୌରାତ୍ମ୍ୟ ଓ ନାଳନର୍ଦ୍ଦମାର ପୂତିଗନ୍ଧମୟ ପ୍ରଦୂଷଣ, ରାସ୍ତାଘାଟର ଦୁରବସ୍ଥା ଏବଂ ଯାନବାହନର ଅସ୍ୱାଭାବିକ ଜଟିଳତା କିନ୍ତୁ ଅବ୍ୟବସ୍ଥାକୁ ଦେଖିଲେ ଏହି ପ୍ରାଚୀନତମ ସହରରେ ଏକ ପୌରଶାସନ ଅଛି ବୋଲି ମନେହୁଏ ନାହିଁ । କିନ୍ତୁ କଟକର ମ୍ୟୁନିସିପାଲିଟି ଦେଶର ଏକ ପ୍ରାଚୀନତମ ସଂସ୍ଥା, ଯାହାର ଆୟୁ ୧୫୦ ବର୍ଷରୁ ଅଧିକ ଓ ନେତାଜୀ ସୁଭାଷଚନ୍ଦ୍ରଙ୍କ ପିତା ଜାନକୀନାଥ ବୋଷଙ୍କ ଠାରୁ ଆରମ୍ଭ କରି ରାଜ୍ୟର ବହୁ ପ୍ରତିଷ୍ଠିତ ସମାଜସେବୀ ଓ ରାଜନୀତିଜ୍ଞ ଏହାର ଅଧ୍ୟକ୍ଷ ପଦ ମଣ୍ଡନ କରି ଆସିଛନ୍ତି । ପ୍ରତିବର୍ଷ ଜାକଜମକରେ ଅଗଷ୍ଟ ୩୧ରେ ପୌର ଦିବସ ଏଠାରେ ଅଜସ୍ର ଟଙ୍କା ବ୍ୟୟରେ ମହାସମାରୋହରେ ପାଳିତ ହୋଇ ଥାଏ ।

ପୌରସଭାର ଗାଡ଼ି ଓ ଅଫିସର ସାହାଙ୍କୁ ଦେଖିଲେ ମନେହୁଏ ଏହା ଏକ ମହାନ୍ ସଂସ୍ଥା କିନ୍ତୁ ଏହାର କାର୍ଯ୍ୟ ଦେଖିଲେ ଏହା କେତେ ମହାନ ଜଣାପଡ଼େ ।

## ସହସ୍ର ବର୍ଷର ସ୍ମୃତି ସ୍ମରଣ :

କଟକକୁ ପୂତିଗନ୍ଧମୟ ସହର କହିଲେ ସହସ୍ରବର୍ଷର ଏହି ଐତିହାସିକ ଭୂମିଟି ପ୍ରତି ବାଚନିକ ଅବମାନନା ହୋଇପାରେ । କିନ୍ତୁ ଏହା ହେଉଛି ବାସ୍ତବ ସତ୍ୟ । ଦେଶର ଅନ୍ୟ ସହରରୁ ଆସୁଥିବା ଜଣେ ବ୍ୟକ୍ତି କଟକରେ ପହଞ୍ଚିଗଲେ ରାତିଟି ତାଙ୍କପାଇଁ ଅସହନୀୟ ହୋଇ ପଡ଼େ । କାରଣ ମଶାଙ୍କ ପ୍ରାଦୁର୍ଭାବରେ ସାଧାରଣତଃ ଘରେ ବସିବା ମଧ୍ୟ ସମ୍ଭବ ହୋଇପାରେ ନାହିଁ । ପଙ୍ଖା ଜୋରରେ ବୁଲାଇଲେ ମଧ୍ୟ ମଶାଙ୍କୁ ତାହା ପ୍ରତିରୋଧ କରି ପାରେ ନାହିଁ । ଏପରିକି ଦିନବେଳା ମଧ୍ୟ ମଶାଙ୍କ ଦୌରାତ୍ମ୍ୟର ସୀମା ନାହିଁ । ବେଳେ ବେଳେ ପୌର କର୍ତ୍ତୃପକ୍ଷ ଫିଟାମେସିନ ଆଦି ସାହାଯ୍ୟରେ ମଶା ଉନ୍ମୂଳନ ପାଇଁ ଉଦ୍ୟମ କରି ମଧ୍ୟ ପରାହତ ହୁଅନ୍ତି । କଟକୀ ମଶା ଯେପରି କି ସର୍ବଶକ୍ତିମାନ୍ ।

ସହରରେ ସୁଏରେଜ ବ୍ୟବସ୍ଥା ପାଇଁ ବିଶ୍ୱବ୍ୟାଙ୍କ ସହାୟତାରେ କାର୍ଯ୍ୟ ଆରମ୍ଭ ହେବ ବୋଲି ବର୍ଷ ବର୍ଷ ଧରି କୁହାଯାଇଛି । ମଇଳା ଓ ମଳ ନିଷ୍କାସିତ ହେଉଥିବା ନାଳମାନଙ୍କର ଅବସ୍ଥା ଆହୁରି ଶୋଚନୀୟ । ବର୍ଷାଦିନ ନାଳରାସ୍ତା ଏବଂ ତଳୁଆ ସ୍ଥାନମାନଙ୍କରେ ଥିବା ଘର ଭିତରେ ଏକାକାର ହୋଇଯାଏ ଓ ରାସ୍ତାରେ ଲୋକେ ଆଣ୍ଠୁଏ ମଇଳା ପାଣି ଭିତରେ ଯାତାୟାତ କରନ୍ତି । ଯେହେତୁ କଟକ ସହରି ନଦୀ ପତନ ଠାରୁ ତଳସ୍ତରରେ ଅବସ୍ଥିତ, ସେଥିପାଇଁ ଜଳ ନିଷ୍କାସନର ଅତ୍ୟାଧୁନିକ ବ୍ୟବସ୍ଥା ଲୋଡ଼ା । ଏହାକୁ କରିବ କିଏ ? ସେ ଦିଗରେ ସାମାନ୍ୟତମ କାର୍ଯ୍ୟ ଆରମ୍ଭ ହୋଇଥିବା କଥା କାହିଁ ତ ଜଣାନାହିଁ !

ସେହିଭଳି ମୁଣ୍ଡରେ ମଇଳା ଟୋକେଇ ଧରି ମେହେନ୍ତରାଣୀମାନେ କଟକ ରାସ୍ତାରେ ଚାଲୁଥିବା ଦୃଶ୍ୟ ଦେଖି ବାଙ୍ଗାଲୋରରୁ କଟକ ଆସିଥିବା ମୋର ଜଣେ ବନ୍ଧୁ ଆଶ୍ଚର୍ଯ୍ୟ ପ୍ରକଟ କରିଥିଲେ । ବିଂଶ ଶତାବ୍ଦୀର ଶେଷ ଭାଗରେ ଏପରି ହୁଏ, ତାହା ସେ କେବେ କଳ୍ପନା ବି କରି ନଥିଲେ । ଯାହା ହେଉ ଏହା କେତେକାଂଶରେ ହ୍ରାସ ପାଇଛି କିନ୍ତୁ ସମ୍ପୂର୍ଣ୍ଣ ଭାବରେ ବନ୍ଦ ହୋଇନାହିଁ । କଟକ ସହରରେ ପ୍ରତିଦିନ ରାଜରାସ୍ତାରେ 'ମଳ ବୋଝେଇ' ମ୍ୟୁନିସିପାଲିଟି ଟ୍ରାକ୍ଟରର ଯାତାୟାତ ଏବଂ ସେ ସମୟରେ ସେ ରାସ୍ତାଦେଇ ଯାଉଥିବା କିମ୍ବା ରାସ୍ତାକଡ଼ରେ ଘର କିମ୍ବା ଦୋକାନ କରିଥିବା ଲୋକଙ୍କର କି ଅବସ୍ଥା ହେଉଥିବ ତାହା ଅନୁଭବୀ ହିଁ ଜାଣି ପାରିବ ।

ଭକ୍ତମଧୁ ତାଙ୍କର 'ବର୍ଣ୍ଣବୋଧ'ରେ ଆମକୁ ଶିଖାଇଛନ୍ତି, 'କଟକ ନଗର ଧବଳ ଟଗର, ଜଳ ବରଷଇ ରଗଡ଼ ଚଷଇ' । ଏହି କଥାଟିର ଅର୍ଥ ମୁଁ ଅନେକ ଦିନ ପର୍ଯ୍ୟନ୍ତ ବୁଝିପାରି ନଥିଲି । ଏହାକୁ ବସ୍ତୁନିଷ୍ଠ ଭାବେ ବିଚାର କଲେ ବୋଧହୁଏ କଟକ କ୍ୟାଣ୍ଟନମେଣ୍ଟ ଅଞ୍ଚଳରେ ଅନେକ ଗୋରା ସାହେବ ରହୁଥିବାରୁ ଏବଂ କଟକ ସେ ସମୟର ବ୍ରିଟିଶ ସାମ୍ରାଜ୍ୟର ଏକ କେନ୍ଦ୍ର ହୋଇଥିବାରୁ ଏହାକୁ 'ଧବଳ ଟଗର' ବୋଲି ଭକ୍ତକବି ବର୍ଣ୍ଣନା କରିଥାଇପାରନ୍ତି କିନ୍ତୁ 'ଜଳ ବରଷଇ ରଗଡ଼ ଚଷଇ'ର ପ୍ରକୃତ ଅର୍ଥ ମୁଁ ଏବେ ଠିକ୍ ଭାବେ ବୁଝି ପାରୁଛି, ଯେହେତୁ ଏ ସହରରେ ମୁଁ ଅନେକ ବର୍ଷ ରହିଲିଣି । କଟକ ସହରର ରାସ୍ତାଘାଟର ଅବସ୍ଥା ମଧୁ ରାଓଙ୍କ ସମୟରେ ଏତେ ଖରାପ ଥିଲା ଯେ ବର୍ଷା ହେଉଥିଲା ବେଳେ ସେ ସବୁ କର୍ଦ୍ଦମାକ୍ତ ହୋଇ ଚାଷ ପାଇଁ ଉପଯୋଗୀ ହେଲାପରି ଜଣାପଡୁଥିଲା । ଏହା ଦେଖି ଭକ୍ତକବି ପରିହାସ ଛଳରେ 'ରଗଡ଼ ଚଷଇ' ବୋଲି ଲେଖିଥାଇ ପାରନ୍ତି କିନ୍ତୁ ଏବେ ମଧ୍ୟ ଏହା କେତେକାଂଶରେ ସତ୍ୟ ।

## ସାଇକେଲ ଓ ରିକ୍ସାର ସହର :

ଥରେ ପ୍ରଖ୍ୟାତ ସାଧୁ ଚିନ୍ମୟାନନ୍ଦ କଟକରେ ତାଙ୍କର ଭାଷଣ ପ୍ରସଙ୍ଗରେ ସଭାରେ କହିଥିଲେ—ଏଠାରେ ତୁମକୁ ସାଇକେଲ ଉପରେ ଏବଂ ରିକ୍ସା ତଳେ ଡ୍ରାଇଭ କରିବାକୁ ପଡ଼ିବ । ହଜାର ହଜାର ସଂଖ୍ୟାରେ ରିକ୍ସା ଓ ସାଇକେଲ ସହର କଟକ । ସହଜ ପରିବହନ ବ୍ୟବସ୍ଥା କିନ୍ତୁ ସହରରେ ଟ୍ରାଫିକ୍ ସମ୍ପୂର୍ଣ୍ଣ ଭାବେ ଅବ୍ୟବସ୍ଥିତ । କଟକରେ କେତେ ରିକ୍ସା କେହି ସଠିକ ଭାବରେ କହି ପାରିବେ ନାହିଁ । କିନ୍ତୁ ଏହା ବିନା ଗତ୍ୟନ୍ତର ନାହିଁ ।

## କଟକ : ଉତ୍କଳୀୟ ନବ ଜାଗରଣ କେନ୍ଦ୍ର :

ବ୍ରିଟିଶ୍ ଶାସନାଧୀନ ହେବା ପରେ ଓଡ଼ିଶାର ୩ଟି ଉପକୂଳବର୍ତ୍ତୀ ସମୃଦ୍ଧ ଜିଲ୍ଲା କଟକ, ପୁରୀ ଓ ବାଲେଶ୍ୱରକୁ ନେଇ କଟକ ପ୍ରଦେଶ ଗଠିତ ହେଲା । ବ୍ରିଟିଶ୍ କରଗତ ହେଲାପରେ ସେ ଅଞ୍ଚଳର ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ

ବାଢ଼ାଇ ପଡ଼ୁଥିଲା । ଲୋକଙ୍କ ଭିତରେ ଇଂରେଜ ଶିକ୍ଷାର ପ୍ରସାର ପାଇଁ କୌଣସି ଉଦ୍ୟମ ନକରି ବଙ୍ଗଳା ଓ ବିହାରର ସମସ୍ତ ଆଇନ କାନୁନ୍ ଓଡ଼ିଶା ଭୂଭାଗରେ ପ୍ରବର୍ତ୍ତନ କରାଗଲା । ଏହା ଫଳରେ ମରହଟ୍ଟା ଶାସନ ଅପେକ୍ଷା ବ୍ରିଟିଶ ଶାସନରେ ଲୋକଙ୍କୁ ଅଧିକ ରାଜସ୍ୱ ଦେବାକୁ ପଡ଼ିଲା; ଅଥଚ କୌଣସି ଉନ୍ନୟନ କାର୍ଯ୍ୟ ହେଲା ନାହିଁ । ଇଂରେଜ ସରକାରଙ୍କ ଅସ୍ଥାୟୀ ବନ୍ଦୋବସ୍ତ ନୀତି ଫଳରେ ଉପକୂଳବର୍ତ୍ତୀ ଅଞ୍ଚଳର ଜମିଦାର ଓ ପ୍ରଜାମାନେ କ୍ଷତିଗ୍ରସ୍ତ ହେଲେ । ସ୍ଥାୟୀ ବନ୍ଦୋବସ୍ତ ନ କରି ଅସ୍ଥାୟୀ ବନ୍ଦୋବସ୍ତ କରାଯିବା ଫଳରେ ଜମା ବଢ଼ିଗଲା ଓ ଲୋକଙ୍କ ଉପରେ ରାଜସ୍ୱ ବୃଦ୍ଧି ପାଇଲା । ଜମିଦାରଙ୍କ ଜମା ବୃଦ୍ଧି ପାଇବାରେ ଲାଗିଲା ଏବଂ ବାକିପଡ଼ା ଜମା ଆଦାୟ ହେଉ ନ ଥିଲେ ଜମିଦାରୀ ନିଲାମ କରି ଦିଆଯାଉଥିଲା । ମାତ୍ର ୫ ହଜାର ଟଙ୍କା ଭିତରେ ଥିବା ଜମିଦାରୀଗୁଡ଼ିକ କଟକ କଚେରୀରେ ନିଲାମ ଡକାଯାଉଥିଲା । ମାତ୍ର ତା ଅପେକ୍ଷା ଅଧିକ ଜମା ହେଲେ ତାହା କଲିକତାରେ ନିଲାମ କରାଯାଉଥିଲା । ଅଧିକ ଟଙ୍କା ଦେଇ ନିଲାମ ଧରିବା ଲୋକ କଟକରେ ମିଳିବେ ନାହିଁ ବୋଲି ଯୁକ୍ତି ଦର୍ଶାଇ ଏହା କରାଯାଉଥିଲା । ଗମନାଗମନର ଅସୁବିଧା କାରଣରୁ କଟକରୁ କଲିକତା ତିନିଶହ ମାଇଲବାଟ ଅତିକ୍ରମ କରି ସେଠାରେ ପହଞ୍ଚିଲାବେଳକୁ ଜମିଦାରୀ ନିଲାମ ହୋଇ ଯାଉଥିଲା । ଏହା ଫଳରେ ଦ୍ୱିତୀୟ ବନ୍ଦୋବସ୍ତ ବେଳେ ଓଡ଼ିଆ ଜମିଦାରଙ୍କ ସଂଖ୍ୟା ଯଥେଷ୍ଟ ପରିମାଣରେ ହ୍ରାସ ପାଇଲା । ଏଇ ହେଉଛି କଟକରେ ବଙ୍ଗାଳୀ ଜମିଦାରଙ୍କ ପ୍ରାଧାନ୍ୟର ଏକ ମୁଖ୍ୟ କାରଣ ।

କଟକ ଥିଲା ଉତ୍କଳୀୟ ନବଜାଗରଣର ମୁଖ୍ୟକେନ୍ଦ୍ର । ନଅଙ୍କ ଦୁର୍ଭିକ୍ଷ ପରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ଯେଉଁ ସାଂସ୍କୃତିକ ଓ ରାଜନୈତିକ ଜାଗରଣର ସୂତ୍ରପାତ ହେଲା ତାହାର ପରିଚାଳନା ପାଇଁ କଟକରେ କେତେ ଗୁଡ଼ିଏ ସଙ୍ଗଠନ ଗଠିତ ହେଲା । ୧୮୭୦ରୁ ୧୮୮୦ ମସିହା ମଧ୍ୟରେ ଗଠିତ ଅନୁଷ୍ଠାନ-ଗୁଡ଼ିକ ମଧ୍ୟରେ ଉତ୍କଳ ଉଲ୍ଲାସିନୀ ସଭା, କଟକ ସୋସାଇଟି, ଉତ୍କଳ ଭାଷା ଉନ୍ନତି ବିଧାୟିନୀ ସଭା, କଟକ ଡ଼ିବେଟିଙ୍ଗ କ୍ଲବ ଉଲ୍ଲେଖଯୋଗ୍ୟ । କଟକ ସୋସାଇଟି ବଙ୍ଗୀୟ ବୁଦ୍ଧିଜୀବୀମାନଙ୍କୁ ନେଇ ଗଠିତ ହୋଇଥିବା ବେଳେ ଉତ୍କଳ ଉଲ୍ଲାସିନୀ ସଭା ଓଡ଼ିଆଭାଷୀ ଅଞ୍ଚଳର ସାମାଜିକ ଓ ରାଜନୈତିକ ପ୍ରଗତି ପାଇଁ ଯେଉଁସବୁ ପ୍ରସ୍ତାବ ଗ୍ରହଣ କରୁଥିଲେ ସୋସାଇଟି ତାର ବିରୋଧ କରୁଥିଲା ।

ଏହି ଦୁଇ ସଂସ୍ଥା ମଧ୍ୟରେ ବୈମନସ୍ୟକୁ ହଟାଇବା ପାଇଁ କର୍ମବୀର ଗୌରୀଶଙ୍କର ୧୮୭୦ ମସିହାରେ ଏହି ଦୁଇ ଅନୁଷ୍ଠାନକୁ ଏକାଠି କରିବାକୁ ଉଦ୍ୟମ କରିଥିଲେ । ୧୮୮୨ରେ ଲର୍ଡ଼ ରିପନଙ୍କ ସ୍ୱାୟତ୍ତ ଶାସନ ଆଇନ୍ ପରେ ସ୍ୱାୟତ୍ତ ଶାସନ ସମ୍ପର୍କରେ ଆଲୋଚନା ପାଇଁ ସବୁ ଶ୍ରେଣୀର ଲୋକଙ୍କ ସଭା ଡକାଯାଇ ଏକ ଅନୁଷ୍ଠାନ 'ଉତ୍କଳ ସଭା' ନାମରେ ଗଠିତ ହେଲା । କଟକ ମ୍ୟୁନିସିପାଲିଟି ଗଠନ, ଜିଲାବୋର୍ଡ଼, ଲୋକାଲ ବୋର୍ଡ଼ ଆଦି ସମ୍ପର୍କରେ ଆଲୋଚନା କରି ଏହାର ପ୍ରତିକାର ପାଇଁ ସରକାରଙ୍କୁ ଆବେଦନ କରିବା ଏହି ସଂସ୍ଥାର ମୁଖ୍ୟ ଲକ୍ଷ୍ୟଥିଲା ।

କଟକରୁ ଗୃନ୍ଦବାଲି ଓ କଟକରୁ ବଣ୍ଡଘର ଯାଏ ଷ୍ଟିମର ଚଳାଇବା ପାଇଁ ଏହି ସଭା ପକ୍ଷରୁ ପ୍ରଥମେ ପ୍ରସ୍ତାବ ଦିଆ ଯାଇଥିଲା ।

ଉତ୍କଳ ସଭାର ତତ୍କାଳୀନ ନେତା ଉତ୍କଳଗୌରବ ମଧୁସୂଦନ ଦାସ, ଗୌରୀଶଙ୍କର, ଗୋଲକଚନ୍ଦ୍ର ବୋଷ, ହରବଲ୍ଲଭ ଘୋଷ ଓ ରେଭରେଣ୍ଡ ସେମସାହୁ, ମୁନ୍‌ସୀ ମହମ୍ମଦ ଓ ରମେଶଚନ୍ଦ୍ର ମଣ୍ଡଳ ପ୍ରମୁଖ ୧୮୮୬ରେ ଭାରତୀୟ ଜାତୀୟ କଂଗ୍ରେସ ଗଠିତ ହେବା ପରେ ସେଥିରେ ପ୍ରତିନିଧି ଭାବେ ନିୟମିତ ଯୋଗ ଦେଉଥିଲେ । ଉତ୍କଳସଭା ଏକ ପ୍ରକାର ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ମୁଖ୍ୟ ଏଜେଣ୍ଟ ଥିଲା ବୋଲି କୁହାଯାଇପାରେ । ପ୍ରଥମ ଅବସ୍ଥାରେ ମଧୁସୂଦନ ଓଡ଼ିଆଭାଷୀଙ୍କୁ କଂଗ୍ରେସ ସହ ସାମିଲ କରିବାରେ ନେତୃତ୍ୱ ଦେଇଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ଓ ଓଡ଼ିଆ ଭାଷା ଓ ସାହିତ୍ୟର ସମ୍ମାନ ପ୍ରତିଷ୍ଠା ଲକ୍ଷ୍ୟରେ ମଧୁବାବୁ ୧୯୦୩ ମସିହା ଅକ୍ଟୋବର ମାସରେ କଟକର କନିକା କୋଠି ଠାରେ ଉତ୍କଳ ସଭାର ଏକ ସ୍ୱତନ୍ତ୍ର ବୈଠକ ଡାକି ଡିସେମ୍ବର ୩୦-୩୧ରେ ଏକ ବଡ଼ ଧରଣର ସମ୍ମିଳନୀ 'ଉତ୍କଳସମ୍ମିଳନୀ' ନାମରେ ଡକାହେଲା । ଉତ୍କଳ ସମ୍ମିଳନୀର ଦ୍ୱିତୀୟ, ଷଷ୍ଠ, ସପ୍ତମ, ତ୍ରୟୋଦଶ, ଚତୁର୍ଦ୍ଦଶ ଏବଂ ଏକ ବିଶେଷ ଅଧିବେଶନ ୧୯୨୦ ମସିହା ମଧ୍ୟରେ କଟକ ଠାରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ, କନିକା ରାଜା, ଉତ୍କଳମଣି ଗୋପବନ୍ଧୁ, ଗୋପାଳଚନ୍ଦ୍ର ପ୍ରହରାଜ, ବାଗ୍ମୀ ବିଶ୍ୱନାଥ କର, ମୟୂରଭଞ୍ଜ-ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ, ଆଠଗଡ଼ ରାଜା ବିଶ୍ୱନାଥ ବେବର୍ତ୍ତା ପଟ୍ଟନାୟକ, ମଧୁପୁର ରାଜା, ବ୍ରଜସୁନ୍ଦର ଦାସ, ଜଗଦ୍‌ବଲ୍ଲଭ ଦାସ, ଜଗବନ୍ଧୁ ସିଂହ ପ୍ରମୁଖ ଓଡ଼ିଶାର ତତ୍କାଳୀନ ବରପୁତ୍ରମାନଙ୍କ ଓଡ଼ିଆ ଆନ୍ଦୋଳନର ମୁଖ୍ୟସ୍ଥଳୀ ଥିଲା କଟକ ।

ରାଜ୍ୟରେ ଶିକ୍ଷା ପ୍ରସାର କ୍ଷେତ୍ରରେ ମଧ୍ୟ କଟକର ଅବଦାନକୁ ଏଡ଼ାଇ ଦିଆଯାଇପାରିବ ନାହିଁ । ୧୮୬୬ର ନଅଙ୍କ ଦୁର୍ଭିକ୍ଷ ପରେ କଟକରେ ଏକ କଲେଜ ସ୍ଥାପନ ପାଇଁ ତତ୍କାଳୀନ ଓଡ଼ିଶା ଡ଼ିଭିଜନର କମିଶନର ଟି. ଇ. ରେଭେନ୍‌ସା ଉଦ୍ୟମ କଲେ । ସେତେବେଳେ ଇଂରେଜ ଶିକ୍ଷିତ ବ୍ୟକ୍ତି ନଥିବାରୁ ସରକାରୀ ଦପ୍ତରରେ ଅମଲା ଶ୍ରେଣୀଠାରୁ ଅନ୍ୟ ସବୁ ଶ୍ରେଷ୍ଠ ବଡ଼ ସ୍ତରରେ ଓଡ଼ିଶା ବାହାର ଆଗନ୍ତୁକମାନଙ୍କର ହିଁ ପ୍ରାଧାନ୍ୟ ଲାଗି ରହିଥିଲା । ଏ ପରିସ୍ଥିତିରେ କଟକରେ ଗୋଟିଏ କଲେଜ ସ୍ଥାପନ କରି ଉଚ୍ଚଶିକ୍ଷା ତଥା ଇଂରେଜୀ ଶିକ୍ଷାର ପ୍ରସାର ଦିଗରେ ରେଭେନ୍‌ସାଙ୍କ ଉଦ୍ୟମ ଯେ ଯୁଗାନ୍ତକାରୀ ପଦକ୍ଷେପ ଥିଲା ତାହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ରାମଶଙ୍କର ରାୟ ଓ ଅଭିରାମ ଭଞ୍ଜଙ୍କ ଠାରୁ ଆରମ୍ଭ କରି ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ ଊନବିଂଶ ଶତାବ୍ଦୀ ଓ ଆଦ୍ୟ ବିଂଶ ଶତାବ୍ଦୀରେ, ଓଡ଼ିଶାର ନବଜାଗରଣ ପାଇଁ ନାନା କ୍ଷେତ୍ରରେ ଯେଉଁମାନେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ, ସେମାନେ ସମସ୍ତେ ଏହି ରେଭେନ୍‌ସା କଲେଜର ଛାତ୍ର । ଏହି କଲେଜ ପାଇଁ ସେତେବେଳେ ମୟୂରଭଞ୍ଜ ମହାରାଜା ୨୦ ହଜାର ଟଙ୍କା ଦାନ ଦେଇଥିଲେ ଓ ଲୋକଙ୍କ ଠାରୁ ୨୫ ହଜାର ଟଙ୍କା ଆଦାୟ ହୋଇଥିଲା । ୧୮୬୭ରେ ଏହି କଲେଜରେ

ମାତ୍ର ୬ ଜଣ ଛାତ୍ର ଓ ୨ ଜଣ ଶିକ୍ଷକ ଥିଲେ । ୧୮୬୭ରେ ୩୯ ଜଣ ୧୮୯୧ରେ ୧୦୦ ଜଣ ଛାତ୍ର ଥିଲେ । ୧୮୯୬ରେ କଲେଜରେ ବିଜ୍ଞାନ ଶ୍ରେଣୀ ଆରମ୍ଭ ହୋଇଥିଲା ।

ଏହି କଲେଜର କନିକା ଲାଇବ୍ରେରୀ ଓଡ଼ିଶାର ସର୍ବବୃହତ୍ତମ ଓ ଦେଶର ଏକ ଅଗ୍ରଗଣ୍ୟ ପାଠାଗାର । ୧୩ ଲକ୍ଷ ଟଙ୍କା ଏହି ପାଠାଗାର ପାଇଁ ଅଟକଳ କରାଯାଇ ୧୯୧୯ରେ ସେତେବେଳର ବିହାର ଓଡ଼ିଶାର ଲେଫଟନାଣ୍ଟ ଗଭର୍ଣ୍ଣର ଓଡୱାର୍ଡ ଗେଟଙ୍କ ଦ୍ୱାରା ଏହାର ଶିଳାନ୍ୟାସ କରାଯାଇଥିଲା । ଏହି ସମୟରେ କଟକରେ ପ୍ରଥମ ମେଡ଼ିକାଲ ସ୍କୁଲ ଓ କଟକ ନର୍ମାଲ ଟ୍ରେନିଂ ସ୍କୁଲ ସ୍ଥାପିତ ହେଲା । ୧୯୬୯ରେ ରେଭେନ୍‌ସାରେ ଆଇନ ଶ୍ରେଣୀ ଆରମ୍ଭ ହୋଇ ପରେ ଏହା ଅଲଗା ହୋଇ ମଧୁସୂଦନ ଆଇନ କଲେଜ ରୂପେ ପରିଚିତ ହେଲା । ସେହିଭଳି ମଧୁସୂଦନ ରାଓଙ୍କ ଚେଷ୍ଟାରେ ଭକ୍ତାଶିଆ ହାଇସ୍କୁଲ (ଭକ୍ତମଧୁ ବିଦ୍ୟାପୀଠ), ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଚେଷ୍ଟାରେ ପ୍ୟାରୀମୋହନ ଏକାଡ଼େମୀ ପରି ବିଦ୍ୟାଳୟଗୁଡ଼ିକ ସ୍ଥାପିତ ହେଲା । ପ୍ରକାଶ ଥାଉକି 'ଲାଲ-ବାଲ-ପାଲ'ର ପ୍ରସିଦ୍ଧ ବିପିନ ବିହାରୀ ପାଲ ଏହି ହାଇସ୍କୁଲର ଏକଦା ଅଧକ୍ଷ ଥିଲେ । ରେଭେନ୍‌ସା କଲେଜିଏଟ ସ୍କୁଲରେ ଭାରତମାତାର ଜଣେ ମହାନ୍ ସୁପୁତ୍ର ନେତାଜୀ ସୁଭାଷଚନ୍ଦ୍ର ବୋଷ ଅଧ୍ୟୟନ କରିଥିଲେ ଏବଂ ତାଙ୍କର ବାଲ୍ୟକାଳ କଟକରେ ହିଁ ଅତିବାହିତ ହୋଇଥିଲା ।

## ସାମ୍ବାଦିକତା ଓ ପ୍ରକାଶନର ଆଦିପୀଠ :

ପ୍ରଥମେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କ ଦ୍ୱାରା କଟକରେ ଏକ ଛାପାଖାନା ସ୍ଥାପିତ ହୋଇଥିଲା ଏବଂ ସେଥିରୁ ସେମାନେ ବାଇବେଲ ଆଦି ଗ୍ରନ୍ଥ ଓଡ଼ିଆ ଭାଷାରେ ଛାପୁଥିଲେ । ମିଶନାରୀଙ୍କ ପରେ ବ୍ରାହ୍ମସମାଜ ପ୍ରକାଶନରୁ କେତେଖଣ୍ଡି ପୁସ୍ତକ ମୁଦ୍ରିତ ହୋଇଥିଲା । ୧୮୭୦ ମସିହା ବେଳକୁ ଓଡ଼ିଶା ଶିକ୍ଷା ବିଭାଗରେ ରାଧାନାଥ ରାୟ, ନନ୍ଦକିଶୋର ବଳ ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରମୁଖ ଉଚ୍ଚସ୍ଥାନ ଅଧିକାର କରି ଓଡ଼ିଆ ସାହିତ୍ୟ ଓ ପତ୍ରପତ୍ରିକାର ପ୍ରକାଶନ ଓ ପ୍ରସାର ଦିଗରେ ଉଦ୍ୟମ କରିଥିଲେ । ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ସାପ୍ତାହିକ 'ଉତ୍କଳ ଦୀପିକା' ନଅଙ୍କ ଦୁର୍ଭିକ୍ଷର କରୁଣ ଚିତ୍ର ଉପସ୍ଥାପନ କରି ଚହଳ ସୃଷ୍ଟି କରିଥିଲା । ଆଚାର୍ଯ୍ୟ ପ୍ୟାରୀମୋହନଙ୍କ ସମ୍ପାଦନାରେ ୧୮୭୩ ସାଲରେ ପ୍ରକାଶିତ 'ଉତ୍କଳପୁତ୍ର' ନାମକ ଏକ ସାପ୍ତାହିକ ପତ୍ରିକାରେ ସରକାରୀ କର୍ମଚାରୀଙ୍କ ଦୁର୍ନୀତିର ତୀବ୍ର ସମାଲୋଚନା କରାଯାଉଥିଲା । ଭକ୍ତକବି ମଧୁସୂଦନ ରାଓଙ୍କ ପୃଷ୍ଠପୋଷକତାରେ 'ନବସମ୍ବାଦ'ରେ ସମ୍ବାଦ, ରାଜନୀତି, ସାହିତ୍ୟ ଓ ସମାଜସଂସ୍କାର ବିଷୟରେ ଲେଖାମାନ ପ୍ରକାଶ ପାଉଥିଲା । ତାହାର ପରବର୍ତ୍ତୀ ଅବସ୍ଥାରେ ବହୁ ସାପ୍ତାହିକ, ମାସିକ ଓ ସାମୟିକ ପତ୍ରପତ୍ରିକା, ପାଠ୍ୟପୁସ୍ତକ, ପୁସ୍ତକ ପ୍ରକାଶନ କ୍ଷେତ୍ରରେ କଟକ ସାରା ରାଜ୍ୟରେ ଏକନମ୍ବର ସ୍ଥାନ ଅଧିକାର କରିଥିଲା । ସମାଜ, ମାତୃଭୂମି, ପ୍ରଜାତନ୍ତ୍ର, ଗଣତନ୍ତ୍ର, କଳିଙ୍ଗ, ଜନଶକ୍ତି, ଇଷ୍ଟର୍ଣ୍ଣଟାଇମସ, ନଉ ଓଡ଼ିଶା, ନଉଜଓ୍ୱାର୍ଲଡ଼ ଆଦି ଦୈନିକ ସମ୍ବାଦପତ୍ରମାନ କଟକରୁ ପ୍ରକାଶ ପାଇଆସୁଛି । କିଛିକାଳ ସମୟପାଇଁ ଦୈନିକ ଆଶା କଟକ ବାଖରାବାଦରୁ ପ୍ରକାଶିତ ହେଉଥିଲା । ଏମାନଙ୍କ ମଧ୍ୟରୁ ଇତିମଧ୍ୟରେ କେତେକ

ସମ୍ବାଦପତ୍ର ବନ୍ଦ ହୋଇଯାଇଛି । ଏମାନଙ୍କ ମଧ୍ୟରେ ଦୈନିକ ସମାଜ ଉତ୍କଳମଣି ଗୋପବନ୍ଧୁଙ୍କ ସମ୍ପାଦନାରେ ଏବଂ ପରବର୍ତ୍ତୀ କାଳରେ ବହୁ ମନୀଷୀଙ୍କ ସମ୍ପାଦନାରେ ସ୍ୱାଧୀନତା ଆନ୍ଦୋଳନ ବେଳେ ଲୋକଙ୍କ ଭିତରେ ଦେଶଭକ୍ତିର ଭାବନା ଜାଗ୍ରତ କରିବା ସହିତ ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।

ସତ୍ୟବାଦୀ ଯୁଗର ପଞ୍ଚସଖା ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁଙ୍କ କର୍ମଭୂମି ବହୁ ଭାବରେ କଟକ ହିଁ ରହିଆସିଛି । ଏହା ବ୍ୟତୀତ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ, ସ୍ୱର୍ଗତ ବିଶ୍ୱନାଥ ଦାଶ, ମା' ରମାଦେବୀ, ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବ, ସ୍ୱର୍ଗତ ନିତ୍ୟାନନ୍ଦ କାନୁନଗୋ ପ୍ରମୁଖ ଓଡ଼ିଶାର କୃତୀ ସନ୍ତାନଗଣଙ୍କ କଟକ ହିଁ ବହୁବର୍ଷ ଧରି କର୍ମକେନ୍ଦ୍ର ଥିଲା । ବିଶ୍ୱପ୍ରସିଦ୍ଧ ସନ୍ତରଣକାରୀ ଶ୍ରୀ ମିହିର ସେନ ଏହି ମାଟିର ସନ୍ତାନ । ସେହିଭଳି ପ୍ରଖ୍ୟାତ ବିଜ୍ଞାନବିତ୍ ଓ ଶିକ୍ଷାବିତ୍ ସ୍ୱର୍ଗତ ପ୍ରାଣକୃଷ୍ଣ ପରିଜାଙ୍କ କର୍ମକ୍ଷେତ୍ର ଥିଲା କଟକ ।

ସ୍ୱାଧୀନତା ପର ପର୍ଯ୍ୟନ୍ତ ଭୁବନେଶ୍ୱର ପୂର୍ବରୁ କଟକ ଓଡ଼ିଶାର ରାଜଧାନୀ ଥିଲା । ରେଭେନ୍‌ସା କଲେଜର ଏକ ଭବନରେ ଓଡ଼ିଶାର ବିଧାନସଭା କ୍ୟାଣ୍ଟନମେଣ୍ଟ ରୋଡ଼ ନିକଟ ପୁରୁଣା ମେନେଜେରୀଏଟ କୋଠାରେ ରାଜ୍ୟ ସଚିବାଳୟ ଥିଲା । କଟକରେ ରାଜ୍ୟ ହାଇକୋର୍ଟ ଅବସ୍ଥିତ ।

ଭାରତର ଦୁଇଟି ବୃହତ ସମାଜସେବା ସଙ୍ଗଠନ ଲାଲା ଲଜପତ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ଲୋକସେବକ ମଣ୍ଡଳ ଏବଂ ଗୋପାଳକୃଷ୍ଣ ଗୋଖଲେଙ୍କ ପ୍ରତିଷ୍ଠିତ ଭାରତ ସେବକ ସଂଘର କେନ୍ଦ୍ରୀୟ ଅଧ୍ୟକ୍ଷଦ୍ୱୟ ଏହି କଟକର । ସେମାନେ ହେଲେ ଡକ୍ଟର ଶ୍ରୀ ରାଧାନାଥ ରଥ ଓ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ।

## ପ୍ରାଚୀନତାର ପଦଚିହ୍ନ :

ମଥୁରା, ବାରାଣସୀ ଭଳି ଏ ଏକ ପ୍ରାଚୀନ ସହର । ନବକୋଟି କର୍ଣ୍ଣାଟୋତ୍କଳ-ବର୍ଗେଶ୍ୱରଙ୍କ ରାଜଧାନୀ କଟକ । ଏକଦା ଏହା ଥିଲା ସୁଶୋଭିତ ହର୍ମ୍ୟମାଳାରେ ପରିପୂର୍ଣ୍ଣ ବିଭବ ବିପଣୀ ଓ ବଣିଜର ବେଳାଭୂମି, ସ୍ୱର୍ଣ୍ଣପ୍ରସୂ କଳିଙ୍ଗର ଚନ୍ଦ୍ରାଘର, ଅଭିମାନୀ ଉତ୍କଳୀୟର ପ୍ରାଣକେନ୍ଦ୍ର ।

ପ୍ରଥମ ଶତାବ୍ଦୀ ପୂର୍ବରୁ କଟକ ଥିଲା ଓଡ଼ିଶାର ବ୍ୟବସାୟସ୍ଥଳୀ ଓ ବନ୍ଦର ବୋଲି କହିଛନ୍ତି ଐତିହାସିକ ଟଲେମୀ । ଆମର ପୂର୍ବପୁରୁଷମାନେ ମଧ୍ୟ ଖ୍ରୀ: ପୂ: ୮୦୦ରୁ ୧୪୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମୁଦ୍ର ବାଣିଜ୍ୟରେ ଗୌରବ ଅର୍ଜନ କରିଥିଲେ । ଓଡ଼ିଶା

ଉପକୂଳରେ ସୃଷ୍ଟି ହୋଇଥିଲା ମୋସାଡ଼ିଆ, କୌନଗର (କୋଣାର୍କ) କଳିଙ୍ଗପତ୍ତନ, ଚିଲିକା, ପୁରୀ, କଟକ, ହରଶପୁର, ସୁବର୍ଣ୍ଣରେଖା, ବାଲେଶ୍ୱର, ହିଜଲି, ତାମ୍ରଲିପ୍ତ ଆଦି ପ୍ରଧାନ ବନ୍ଦର ।

କଟକର ଉନ୍ନତି ଅଥବା ଅବନତି ପାଇଁ ଏ ମାଟିରେ ଉଭା ହୋଇଥିଲେ ବିଭିନ୍ନ ବଂଶର ରାଜା—ବିଭିନ୍ନ ଧର୍ମର ଶାସକ । ଇତିହାସରୁ ଜଣାପଡ଼େ ଓଡ଼ିଶାରେ ୧୦୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କେଶରୀ ବଂଶର ରାଜାମାନେ ରାଜୁତି କରିଥିଲେ । ମର୍କତ କେଶରୀଙ୍କ ଅମଳରେ ଏ ନଗରୀକୁ ସୁଦୃଢ଼ କରିବା ପାଇଁ ଗଢ଼ା ହୋଇଥିଲା କାଠଯୋଡ଼ି ପଥରବନ୍ଧ । କାଳର କରାଳ ଲହରୀ ମଧ୍ୟରେ ବହୁ ସବଦମାନ ମଧ ଏବେ ବିସ୍ମୃତ । ଏ ନଗରୀର ମାନଚିତ୍ର ମଧ୍ୟ ବଦଳିବାର ବଦଳିଛି—ମହାନଦୀ ଓ କାଠଯୋଡ଼ିର ଶଯ୍ୟା ପରିବର୍ତ୍ତନରେ । ୧୦୪୨ରୁ ୧୪୩୫ ପର୍ଯ୍ୟନ୍ତ ଗଙ୍ଗ ବଂଶର ରାଜା ଓଡ଼ିଶାର ଶାସକ ଥିଲେ । ସେତେବେଳେ ଓଡ଼ିଶା ଥିଲା ସମୃଦ୍ଧିର ଶୀର୍ଷରେ—ବିଦେଶୀମାନଙ୍କ ପାଇଁ 'ଧନରତ୍ନରେ ଭରା ସୁବର୍ଣ୍ଣ ଓଡ଼ିଶା' ।

## ଦୁର୍ଗ ମାହାତ୍ମ୍ୟ : କିମ୍ବଦନ୍ତୀ :

ଓଡ଼ିଶାର ରାଜା ଦ୍ୱିତୀୟ ଅନଙ୍ଗଭୀମଦେବ ଏକଦା ଚୌଦ୍ୱାର ଗଡ଼ରୁ ମହାନଦୀ ପଠା ଆଡ଼କୁ ଶିକାର କରିଥିଲେ । ହଠାତ୍ ଘଟିଲା ଏକ ଅଭୂତପୂର୍ବ ଘଟଣା । ଗୋଟିଏ ସ୍ଥାନରେ ବକପକ୍ଷୀଟିଏ ଏକ ଛଞ୍ଚାଣ ଉପରେ ଆକ୍ରମଣ କରୁଥିଲା । ଏ ଥିଲା ଏକ ବୀରତ୍ୱର ପ୍ରତୀକ ଘଟଣା, ଛଞ୍ଚାଣର "ମାନଭଙ୍ଗ"ର ଦୃଷ୍ଟାନ୍ତ, ରାଜା ଏହାକୁ ଏକ ବୀରଭୂମି ଭାବରେ ଗ୍ରହଣ କଲେ । ପରେ ପରେ ସେହି ସ୍ଥାନରେ ଗଢ଼ି ଉଠିଲା 'ବାରାଣସୀ ଦୁର୍ଗ' । ଏହାର ନିର୍ମାଣ ଥିଲା ଅଭିନବ ଶୈଳୀରେ । ତେଣୁ ନାମ ମଧ୍ୟ ହେଲା 'ଅଭିନବ କଟକ' । ପରେ ଏହାର ନାମ କାଳକ୍ରମେ ହୋଇଛି 'ମାନଖଣ୍ଡି', 'ମାଲ୍‌କାଣ୍ଡି' 'ମଣିଖଣ୍ଡି' ଇତ୍ୟାଦି ।

୧୩୦୦ ଖ୍ରୀଷ୍ଟାବ୍ଦ ବେଳକୁ ସୃଷ୍ଟି ହେଲା ଭାରତର ଉତ୍ତରଦିଗରୁ ବଙ୍ଗଳା ପର୍ଯ୍ୟନ୍ତ ମାଡ଼ିଆସିଥିବା ମୁସଲମାନ ରାଜୁତିର ଆତଙ୍କ । ତେଣୁ ରାଜା ଅନଙ୍ଗଭୀମଦେବ ଚାରୋଟି ଦୁର୍ଗନଗରୀ ବା କଟକକୁ ସୁଦୃଢ଼ କରିଥିଲେ । ସେଗୁଡ଼ିକ ହେଉଛି ଛତିଆ, ଅମରାବତୀ କଟକ, ଯାଜପୁରକଟକ, ଚୌଦ୍ୱାରକଟକ ଓ ବାରାଣସୀ କଟକ 'ବିଡ଼ାନାସୀ' ।

## ଇତିହାସ ଓ ଇତିବୃତ୍ତ :

୧୪୩୫ରୁ ୧୫୩୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୂର୍ଯ୍ୟବଂଶୀ ରାଜାମାନେ ଓଡ଼ିଶାକୁ ଶାସନ କଲେ । କିନ୍ତୁ ୧୬୩୩ ମସିହା ବେଳକୁ ଓଡ଼ିଶା ମୁସଲମାନ ଶାସକଙ୍କ ଦ୍ୱାରା ଶାସିତ ହେଉଥିଲା । ସତରଶହ ମସିହା ବେଳକୁ ଓଡ଼ିଶାରେ ମୁସଲମାନ ଓ ମୋଗଲ ରାଜତ୍ୱ

ଆରମ୍ଭ ହୋଇଥିଲା । ୧୮୦୩ରେ ଓଡ଼ିଶା ଇଂରେଜମାନଙ୍କ ଅଧୀନରେ ରହିବା ପରେ ଏହାର ଅଧଃପତନ ହେଲା । ୧୭୭୩ରୁ ୧୭୭୮ ମସିହା ଥିଲା ଓଡ଼ିଶା ପାଇଁ ଦୁର୍ଦ୍ଦିନର ସମୟ । ନଅଙ୍କ ଦୁର୍ଭିକ୍ଷରେ ଏକଦା ସ୍ୱର୍ଣ୍ଣପ୍ରସୂ ବିଭବର ଗନ୍ତାଘର କଟକ ପାଲଟିଗଲା ଏକ ମରୁ କାନ୍ତାର ।

ବିଭିନ୍ନ ସମୟରେ ବିଭିନ୍ନ ଐତିହାସିକ ଏ ନଗରର ରୂପ ବର୍ଣ୍ଣନା କରିଯାଇଛନ୍ତି । ସେମାନଙ୍କ ମଧ୍ୟରୁ ୧୩୬୦ ଖ୍ରୀଷ୍ଟାବ୍ଦରେ ମୁସଲମାନ ଶାସକ ଫିରୋଜଶାହଙ୍କ ସହ ଆସିଥିଲେ ଜଣେ ଐତିହାସିକ ଶାମସ ଇଆଫିଫ । ସେ ତାଙ୍କର ଫିରୋଜ ଶାହି ପୁସ୍ତିକାରେ ଏ ବିଷୟରେ ବିବରଣୀ ପ୍ରଦାନ କରିଥିଲେ । ସେହିପରି ୧୬୩୩ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀର କେତେକ କର୍ମଚାରୀ ବାଣିଜ୍ୟ ପାଇଁ ଅନୁମତି ନେବାକୁ ଓଡ଼ିଶା ଆସିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ ଐତିହାସିକ ଉଇଲିୟମ ବ୍ରୁଟନ । ସେ ମଧ୍ୟ କଟକ ନଗରୀର ବର୍ଣ୍ଣନା କରିଥିଲେ ଏକ ପୁସ୍ତିକାରେ । ପରେ ଏହା ଇଂଲଣ୍ଡରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା ।

ମିଥ୍ୟା ନୁହେଁ, ଇତିହାସ କହେ, କଟକରେ ଥିଲା ରାଜାଙ୍କର ମସୃଣ ସୁଶୋଭିତ ନବତଳପ୍ରାସାଦ । କଟକ ନଗର ନିର୍ମାଣର ଯୋଜନା ନୃପକେଶରୀଙ୍କ ଦ୍ୱାରା ୯୮୯ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ଏବେ ବାରବାଟୀ ଦୁର୍ଗ ନିକଟରେ ଥିବା ମୃତ୍ତିକାସ୍ତୂପ ଏହି ପ୍ରାସାଦର ଜୀର୍ଣ୍ଣରୂପ । ଐତିହାସିକ ବ୍ରୁଟନ ଲେଖିଛନ୍ତି ଏ ନବତଳ ପ୍ରାସାଦ ଥିଲା ସୁଶୋଭିତ । ମୁକୁନ୍ଦ ଦେବଙ୍କ ସମୟରେ ଏଥିରେ ପ୍ରଥମ ମହଲରେ ହାତୀଘୋଡ଼ା, ୨ୟ ମହଲରେ ସମର ସରଞ୍ଜାମ, ୩ୟ ମହଲରେ ଦୁର୍ଗରକ୍ଷକ, ୪ର୍ଥରେ ସରଞ୍ଜାମ କାରଖାନା, ୫ମରେ ପାକଶାଳା, ୬ଷ୍ଠରେ ଅଭ୍ୟର୍ଥନା ଗୃହ, ୭ମରେ ରାଜାଙ୍କ ପାରିବାରିକ ଓ ଗୋପନୀୟ କାର୍ଯ୍ୟମାନ ସାଧିତ ହୁଏ, ୮ମରେ ରାଜ ଅନ୍ତଃପୁର ଏବଂ ୯ମରେ ଶାସକଙ୍କ ଶୟନକକ୍ଷ ଥିଲା । ଫାଟକଗୁଡ଼ିକ ବିଶାଳ ପାଉଁଶିଆ ରଙ୍ଗର ମାର୍ବଲ ଗମ୍ବୁଜ ଉପରେ ଦଣ୍ଡାୟମାନ ଥିଲା । ଏହାର କାରୁକାର୍ଯ୍ୟ ଥିଲା ଅପୂର୍ବ ଓ ମନୋରମ । ଉତ୍କଳୀୟ କଳାକୌଶଳର ନିଦର୍ଶନ ବହନ କରୁଥିଲା ଏହି ତୋରଣଗୁଡ଼ିକ । ପ୍ରାସାଦ ଥିଲା ବାସ୍ତବିକ ପଣ୍ଡିତ କୃପାସିନ୍ଧୁଙ୍କ ଭାଷାରେ 'ଶୁଭ୍ର ଶୈଳ ସମ ବିଶାଳ ସଉଧ' (ବାରବାଟୀ) ।

ପ୍ରାଚୁର୍ଯ୍ୟର ପରିସୀମା ଭିତରେ ହସି ଉଠୁଥିଲା ଏକଦା କଟକ ନଗରୀ । ନାରିକେଳ, ଗୁଆ, କମଳାଲେମ୍ବୁ, ପାନ, ଡାଳିମ୍ବ ଆଦି ଫଳରେ ଭରପୂର । ଶସ୍ୟ-ଶ୍ୟାମଳା, ବଣିଜ ବିଭବରେ ପୂର୍ଣ୍ଣ । କିନ୍ତୁ ଇଂରେଜ ସରକାରଙ୍କ ଶାସନରେ ଏ ସମ୍ପଦ କ୍ରମେ ଅନ୍ତର୍ହିତ ହେଲା । ଇଷ୍ଟଇଣ୍ଡିଆ କମ୍ପାନୀ ଉତ୍କଳୀୟ ବାଣିଜ୍ୟ ଉପରେ ବାଧା ଦେଲେ । ବନ୍ଦର ବନ୍ଦ ହେଲା । ତାପରେ ଆରମ୍ଭ ହୋଇଥିଲା ଶୋଷଣ । ନଅଙ୍କ

ଦୁର୍ଭିକ୍ଷର ପ୍ରକୋପ ଓଡ଼ିଆଙ୍କ ଅଣ୍ଟା ଭାଙ୍ଗିଦେଲା । ଏହା ପରିଣତ ହେଲା 'କଟକ ନଗରର ବଡ଼ମହରଗ' ଉକ୍ତିରେ ।

## ସ୍ମୃତିର ସ୍ୱାକ୍ଷର :

କଟକ ନଗରର ମାନଚିତ୍ର ବହୁବାର ବଦଳିଛି କାଠଯୋଡ଼ି ଓ ମହାନଦୀର ପ୍ରକୋପରେ । ବିଦେଶୀ ଶାସକଙ୍କ ହସ୍ତକ୍ଷେପ ଓ ନଦୀର ଶଯ୍ୟା ରୂପରେଖ ପରିବର୍ତ୍ତନ ପାଇଁ ଦାୟୀ । ପ୍ରାଚୀନତା ଯାଇଛି । ଆଧୁନିକତାର ଆଡ଼ମ୍ବର ମଧ୍ୟରେ ରହିଛି କେତେକ କୀର୍ତ୍ତି, ସ୍ମୃତି । ନବତଳ ପ୍ରାସାଦ ଏବେ ବିଲୀନ, କିନ୍ତୁ ରହିଛି ଏହାର ପ୍ରବେଶ ଦ୍ୱାର ତଥାକଥିତ ବର୍ତ୍ତମାନର 'ବାରବାଟୀ ଦୁର୍ଗ' ।

ବନ୍ୟାପ୍ରକୋପରୁ ନଗରୀକୁ ରକ୍ଷା କରିବା ପାଇଁ ମର୍କତକେଶରୀଙ୍କ ନିର୍ମିତ ପଥରବନ୍ଧର କିୟଦଂଶ ଏବେ ମଧ୍ୟ ବିଦ୍ୟମାନ । ବାଇମୁଣ୍ଡିର କାହାଣୀ ଏବେ ବି ଏ ଇତିହାସ ସହ ଜଡ଼ିତ । ପରେ ଇଂରେଜମାନେ ଏ ପଥରବନ୍ଧକୁ ଅଧିକ ଉଚ୍ଚ କରିଥିଲେ । ପରେ ରାଜ୍ୟ ସରକାର ମର୍କତକେଶରୀ ନିର୍ମିତ ପଥର ବନ୍ଧର ଗୁରିପାଖେ ଏକ ବଳୟ ରାସ୍ତା ବା ରିଙ୍ଗରୋଡ଼ ନିର୍ମାଣ କରିଛନ୍ତି । ମୋଗଲ ରାଜତ୍ୱର ସ୍ମାରକୀ ଭାବରେ କଟକରେ ରହିଛି ଲାଲବାଗ ପ୍ରାସାଦ ଓ ଜୁମା ମସ୍‌ଜିଦ୍ । ମୋଗଲ ଶାସକମାନଙ୍କ ପାଇଁ ନିର୍ମିତ ହୋଇଥିଲା ଲାଲବାଗ ପ୍ରାସାଦ । ପରେ ଇଂରେଜମାନେ ତାକୁ ଭାଙ୍ଗିଦେଇଥିଲେ । ୧୯୪୮ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଗଭର୍ଣ୍ଣରମାନେ ଏଥିରେ ବାସ କରୁଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ସେନାପତି ହାର୍‌କୋର୍ଟ ଏହି ଲାଲବାଗରେ ପହଞ୍ଚିବା ଇତିହାସରୁ ଜଣାପଡ଼ିଛି । ଅଧୁନା ଏହା ଶିଶୁଭବନ ନାମରେ ପୂର୍ବର ସ୍ମୃତିକୁ ବହନ କରିଛି । ବାଲୁବଜାରସ୍ଥିତ ଜୁମା ମସ୍‌ଜିଦ୍ ମୋଗଲରାଜା ଏକରାମ ଖାଁଙ୍କ ପତ୍ନୀଙ୍କ ନାମାନୁସାରେ ନିର୍ମିତ ହୋଇଥିଲା । ଏହା ବ୍ୟତୀତ ବାଦଶାହ ଶାହଆଲମ ୧୭୦୫ ଖ୍ରୀଷ୍ଟାବ୍ଦରେ କଦମରସୁଲ ନିର୍ମାଣ କରିଥିଲେ ।

ଓଡ଼ିଶାରେ ମରହଟ୍ଟାମାନଙ୍କ ସ୍ମାରକୀ ସ୍ୱରୂପ ଏଠାରେ ରହିଛି ବକ୍‌ସିବଜାରର ଅମରେଶ୍ୱର ମନ୍ଦିର ଓ ମସ୍ତରାମ ମଠ । ଚୌଧୁରୀ ବଜାରର ଦିଗମ୍ବର ଜୈନ ମନ୍ଦିର ମଧ୍ୟ ଏଠାରେ ଜୈନଧର୍ମର ପ୍ରଭାବ ଉଲ୍ଲେଖ କରେ ।

'ଅଟକ ରୁ କଟକ' ଅର୍ଥାତ୍ ଗୁଜରାଟରୁ କଟକ ଏହିପରି କଥା ଅଛି । ଆରବ-ସାଗରରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ଭାରତ ସୀମା ନିର୍ଦ୍ଧାରଣ କରୁଥିବା ସଙ୍କ୍ଷା ଭିତରେ କଟକର ସ୍ଥାନ, କଟକର ଐତିହ୍ୟ, ସଭ୍ୟତା, ସ୍ଥାପତ୍ୟ, କଳା, ଭାସ୍କର୍ଯ୍ୟର ସୁରକ୍ଷାର ଦାୟିତ୍ୱ କାହା ହାତରେ ? ଏହି ପ୍ରଶ୍ନର ଉତ୍ତର କେବଳ ଯୁବ ସମାଜ ହିଁ ଦେଇପାରିବେ, ଯେଉଁମାନେ ଏହି ସହରରେ ଜନ୍ମ ନିଅନ୍ତି କମ୍ବା ପାଣି ପବନରେ ବଡ଼ି ହୁଅନ୍ତି । ସେମାନେ

କ'ଣ ଜାଣନ୍ତି ଯେ ପଞ୍ଚଦଶ ଶତାବ୍ଦୀରେ ଦେଶରେ ଭକ୍ତିଭାବନାର ପ୍ରାବଲ୍ୟ ସୃଷ୍ଟି କରିଥିବା ଚୈତନ୍ୟ ମହାପ୍ରଭୁ ଏବଂ ଶିଖ ସଂପ୍ରଦାୟର ପ୍ରତିଷ୍ଠାତା ଶ୍ରୀ ନାନକ ଦେବ ଏହି ସହରକୁ ଆସି କିଛି କିଛି ଦିନ ରହିଥିଲେ ?

ହେମାନେ ବାରବାଟୀ କହିଲେ ବୁଝନ୍ତି ଷ୍ଟାଡ଼ିୟମ, ଗୌରୀଶଙ୍କର କହିଲେ ପାର୍କ ଏବଂ ବାଲିଯାତ୍ରା କହିଲେ ବୁଝନ୍ତି ଠୁଙ୍କାପୁର ।

ଏବେ ବଡ଼ ଧୁମଧାମରେ ସହରର ସହସ୍ର ବାର୍ଷିକୀ ହୋଇ ଯାଇଛି ଆକର୍ଷଣୀୟ ସ୍ମାରକୀ ପ୍ରକାଶିତ ହୋଇ । ଯେତେଯାହା ହେଲେ ବି ତାହା କ'ଣ କଟକର ମେଡ଼ଭସାଣୀଠୁଁ ଅଧିକ ଆମୋଦଦାୟକ ହେବ କି ? ଏହା ଜଣେ କଟକୀ ପ୍ରଶ୍ନ କରିପାରନ୍ତି । ଐତିହାସିକ ଦୁର୍ଗ ସହର କଟକର ଅଧିବାସୀଙ୍କ କାନରେ ବାରମ୍ବାର କହିବାକୁ ପଡ଼ିବ ତୁମେ ହଜାର ବର୍ଷର ସହରର ନାଗରିକ, ତୁମେ ସଭ୍ୟତାର, ସଂସ୍କୃତିର, ଐତିହ୍ୟର ଓ କଳାର ଜରଦ୍‌ଗବ । ନିଜେ ନିଜକୁ ଚିହ୍ନ ।



# କଟକ ଓ ଓଡ଼ିଆ ସାହିତ୍ୟ

ପଠାଣି ପଟ୍ଟନାୟକ

## କଟକ—ଏକ ପ୍ରଶ୍ନବାଚୀ :

ଇତିହାସ ଓ ସାଂସ୍କୃତିକ ପରମ୍ପରାରେ 'କଟକ' କହିଲେ ବର୍ତ୍ତମାନର ନଗର କଟକକୁ ବୁଝାଉ ନଥିଲା । ସଂସ୍କୃତରେ 'କଟକ' ଶବ୍ଦର ଅର୍ଥ ହେଲା—ଯେଉଁଠାରେ ରାଜାମାନେ ସାମୟିକ କମ୍ପା ସନ୍ନିବେଶ ପାଇଁ ଅବସ୍ଥାନ କରନ୍ତି, ବା ଯାହା ସେନାନିବାସ ହୋଇଥାଏ । ପ୍ରାଚୀନ ଓଡ଼ିଶାରେ ସାତଗୋଟି କଟକର ପରିଚୟ ମିଳେ । (କ) ଯାଜପୁର କଟକ—ଯାହାକୁ ମହାରାଜା ଯଯାତି (କେଶରୀ ବଂଶ) ପ୍ରତିଷ୍ଠା କରିଥିଲେ । (ଖ) ପୁରୀ କଟକ —ନିଜ ସାମ୍ରାଜ୍ୟର କେନ୍ଦ୍ରସ୍ଥଳ ଭାବରେ ବିଗ୍ରହ କରି ଯଯାତି ଏହାର ବିକାଶ କରିଥିଲେ । ମାଦଳାପାଞ୍ଜିରେ 'ଶ୍ରୀ ପୁରୁଷୋତ୍ତମ କଟକ ଶ୍ରୀନଗରେ' ବୋଲି ବର୍ଣ୍ଣନା ରହିଛି । (ଗ) ଭୁବନେଶ୍ୱର କଟକ—ମହାରାଜା ଯଯାତି ରାଜତ୍ୱର ଶେଷ ଭାଗରେ ଏହି ନଗରରେ ଅବସ୍ଥାନ କରୁଥିଲେ ବୋଲି ଜଣାଯାଏ । (ଘ) ବିଡ଼ାନାସୀ କଟକ—ଯେଉଁଠାରେ ମହାନଦୀରୁ କାଠଯୋଡ଼ି ବାହାରି ଏକ ତଡ଼ା ସୃଷ୍ଟି କରିଥିଲା । ବର୍ତ୍ତମାନ ତାହା ବିଡ଼ାନାସୀ ଗ୍ରାମ ହିସାବରେ ପରିଚିତ । କୃପାସିନ୍ଧୁ ମିଶ୍ରଙ୍କ ମତରେ ନୃପକେଶରୀ ଭୁବନେଶ୍ୱର ଏବଂ ଯାଜପୁର ପରିବର୍ତ୍ତରେ ମହାନଦୀ ଓ କାଠଯୋଡ଼ି ମଧ୍ୟବର୍ତ୍ତୀ ସ୍ଥାନରେ ବାରାଣସୀ କଟକ ବର୍ତ୍ତମାନ (ବିଡ଼ାନାସୀ) ନାମକ ନଗର ବସାଇ ସେଠାରେ ଦୁର୍ଗ ନିର୍ମାଣ କରି ରାଜଧାନୀ କଲେ । ପୁନଶ୍ଚ ଶ୍ରୀଯୁକ୍ତ ମିଶ୍ରଙ୍କ ମତରେ ମରକତ କେଶରୀ "ପିତାଙ୍କ ପ୍ରତିଷ୍ଠିତ ବାରାଣସୀ କଟକର ରକ୍ଷା ନିମନ୍ତେ କାଠଯୋଡ଼ି ଓ ମହାନଦୀ କୂଳରେ ପଥରବନ୍ଧ କରାଇଥିଲେ ।" (୧) ପ୍ରକୃତପକ୍ଷେ ଇତିହାସରେ କେଶରୀ ବଂଶ ବୋଲି କିଛି ନଥିଲା । ମାଦଳାପାଞ୍ଜିରେ ବର୍ଣ୍ଣିତ କେଶରୀ ବଂଶର ରାଜାମାନଙ୍କ ମଧ୍ୟରୁ ଅଧିକାଂଶ ନାମ କପୋଳକଳ୍ପିତ ବୋଲି ବର୍ତ୍ତମାନ ପ୍ରମାଣିତ । ଓଡ଼ିଶାରେ ସୋମବଂଶୀ ବା ସୋମକୁଳୀ ରାଜାମାନଙ୍କୁ ମାଦଳାପାଞ୍ଜି କେଶରୀବଂଶ ଭାବରେ ଆଖ୍ୟାତ କରିଛନ୍ତି । ସୋମବଂଶର ପ୍ରତିଷ୍ଠାତା ମହାଶିବଗୁପ୍ତ ଜନମେଜୟ ଦକ୍ଷିଣ କୋଶଳରୁ ଆସି ବିଜୟ କଟକ ପ୍ରତିଷ୍ଠା

---

(୧) ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର—୧୯୭୯ ପୃ-୪୭ ।

କରିଥିଲେ । ଆବିଷ୍କୃତ ଶିଳାଲିପି ମାନଙ୍କରୁ ଏହି ବଂଶର ରାଜାମାନେ ବାରାଣସୀ କଟକ ପ୍ରତିଷ୍ଠା କରିବା ଏବଂ ତାର ସୁରକ୍ଷାପାଇଁ ପଥରବନ୍ଧ ନିର୍ମାଣ କରିଥିବାର କୌଣସି ସ୍ଥିର ପ୍ରମାଣ ମିଳୁନାହିଁ । (୨) (ଙ) ସାରଙ୍ଗଗଡ଼ କଟକ—ମାଦଳାପାଞ୍ଜି ଅନୁସାରେ ଏହି କଟକ ଧହର ସାରଙ୍ଗ କେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । (ଚ) ଚଉଦୁଆର କଟକ—ବର୍ତ୍ତମାନଯା ଯେଉଁଠାରେ ମହାନଦୀରୁ ପ୍ରବାହିତ ହେଉଛି, ସେହିଠାରେ ଚଉଦୁଆର କଟକ ଅବସ୍ଥିତ । (ଛ) ଛତିଆ କଟକ—ଗଙ୍ଗବଂଶର ରାଜତ୍ୱକାଳରେ ମୁଖ୍ୟତଃ ପାଞ୍ଚଗୋଟି କଟକର ନାମ ଉଲ୍ଲିଖିତ କରାଯାଇଛି । ସେଥିରେ ଏହି ଉପରୋକ୍ତ ସାତଗୋଟି କଟକ ମଧ୍ୟରୁ ପୁରୀ ଓ ଭୁବନେଶ୍ୱର କଟକର ନାମୋଲ୍ଲେଖ ନାହିଁ ।

## କଟକ—ଜାତୀୟ ରାଜପଥର ପୀଠସ୍ଥଳ :

କଟକ ନଗରର ପ୍ରାଚୀନତା ସମ୍ପର୍କରେ ଶିଳାଲିପି ଯେତେ ନୀରବ ହେଲେ ମଧ୍ୟ ଲୋକ ସ୍ମୃତି, ପରମ୍ପରା ଏବଂ କିମ୍ବଦନ୍ତୀକୁ ସମ୍ପୂର୍ଣ୍ଣ ଅବହେଳା କରାଯାଇ ପାରିବ ନାହିଁ । ମହାନଦୀର ତ୍ରିକୋଣଭୂମିର ଶୀର୍ଷ ଦେଶରେ କଟକର ଅବସ୍ଥିତି ଏହାର ଐତିହାସିକ ଗୁରୁତ୍ୱ ସୂଚାଇ ଦିଏ । ସେ କାଳରେ ଦୁଇଟି ଦୁର୍ଗମ ଏବଂ ସୁନାବ୍ୟା ନଦୀର ମଧ୍ୟବର୍ତ୍ତୀ ପ୍ରଦେଶରେ କଟକ ନଗରର ଅବସ୍ଥିତି ଏହାକୁ ଏକ ସେନାନିବାସ ଅଥବା ରାଜକୀୟ ଶିବିର ସ୍ଥାପନ ପାଇଁ ଉପଯୁକ୍ତ ସ୍ଥାନ ବୋଲି ବିବେଚିତ ହୋଇଥିବ । ସେହି ପୌରାଣିକ ଏବଂ ଐତିହାସିକ ଯୁଗରେ ଉତ୍ତର ଭାରତ ଏବଂ ଦକ୍ଷିଣ ଭାରତ ମଧ୍ୟରେ ଯେଉଁ ଲୋକ ଚଳାଚଳ ହେଉଥିଲା, ମହାନଦୀ ଏବଂ କାଠଯୋଡ଼ିକୁ ପାରିହେବା ପାଇଁ କଟକହିଁ ଥିଲା ସବୁଠାରୁ ସୁବିଧାଜନକ ସ୍ଥଳ । ଧର୍ମପ୍ରାଣ ଭାରତବାସୀ ତୀର୍ଥାଟନ ଅଥବା ବ୍ୟବସାୟ ଉଦ୍ଦେଶ୍ୟରେ ବହିର୍ଗତ ହେଲାବେଳେ ଉଭୟ ଦିଗରୁ ଏହି କଟକ ବାଟେହିଁ ଯାତ୍ରା କରିଥିବେ । ଅଶୋକ, ଖାରବେଳ, ଗଙ୍ଗରାଜା ଏବଂ ସୂର୍ଯ୍ୟବଂଶୀ ରାଜାମାନେ ଯେଉଁ ସାମରିକ ଅଭିଯାନ ଯୁଗଯୁଗ ଧରି ଚଳାଇଥିଲେ, ସେମାନେ କଟକ ବାଟେହିଁ ଯାତ୍ରା କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ତେଣୁ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ ଯଥାର୍ଥରେ କହିଛନ୍ତି—"ଏହି ଭୌଗୋଳିକ ଅବସ୍ଥିତି ଯୋଗୁ ଯୁଗଯୁଗ ଧରି ଓଡ଼ିଶାରେ ଥିବା ରାଜପଥ କଟକ ଭିତରେ ପଡ଼ିବା ଛଡ଼ା ଅନ୍ୟ ସମ୍ଭବପର ନଥିଲା ।"(୩)

---

(୨) The establishment of Cuttack and the construction of revetment of rivers at Cuttack are mentioned in the Madalapanji during the Kesari Period, but such traditions are not corroborated by any other contemporary source (A short Historical account of Cuttack—P. Acharia—Orissa Review-Dec-1949 P. 3)

(୩) କଟକର ଇତିହାସ—ପରମାନନ୍ଦ ଆଚାର୍ଯ୍ୟ—ଝଙ୍କାର-୭ମ ବର୍ଷ-୭ମ ସଂଖ୍ୟା ପୃ. ୬୪୭ ।

ତେଣୁ ବହ୍ନାନାସୀ କଟକ ବା ବାରବାଟୀ କଟକର ନାମକରଣର ବହୁପୂର୍ବରୁ କଟକ ନାମ କେବଳ ପ୍ରଚଳିତ ନଥିଲା, ବର୍ତ୍ତମାନ କଟକରେ ସେନାନିବାସ ରହି ତାର କଟକ ବା ଦୁର୍ଗ ନାମକୁ ସାର୍ଥକ କରୁଥିଲା ।

## ରାଜଧାନୀ କଟକ କେବେ ?

ମାଦଳାପାଞ୍ଜିରେ ଲେଖାଅଛି—"ଏ ରାଜା (ଶ୍ରୀ ଅପରଚ୍ଛାଏ ବା ଦ୍ୱିତୀୟ ଅନଙ୍ଗ ଭୀମଦେବ) ନଗର ଚଉଦୁଆର କଟକେ ବିଜେ କରିଥାନ୍ତି । ଏପରି ଏକ ଦିନକରେ ରାଜା ବିଜେ କରି ଆସି ମହାନଦୀ ପାରହୋଇ ଏ ନଦୀରୁ ଦକ୍ଷିଣଶରେ ଦେଖିଲେ କୋଦଣ୍ଡ ଦଣ୍ଡପାଟର ବାରବାଟୀ ଗ୍ରାମରେ ବିଶେଶ୍ୱର ଦେବଙ୍କ ସନ୍ନିଧେ ଶାମଳ ପକ୍ଷୀକି ବଗ ମାଡ଼ି ବସିଛି । ଏହା ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ପାଇ ଶୁଭ ଯୋଗ ଦିନରେ ବାରବାଟୀ ଗ୍ରାମରେ ଶୁଭ ଦେଇ ନଅର ତୋଳାଇଲେ । ଏ କଟକର ନାମ ବାରବାଟୀ କଟକ ନାମ ଦେଇ ନଗର କଟକ ଚଉଦ୍ୱାର ଛାଡ଼ି ଆସିଲେ ଏବଂ ଏ କଟକରେ ରହିଲେ ।" (୪) ଏହି ବିଷୟରେ କଟକ ଜିଲ୍ଲାର ନଗରୀ ଗ୍ରାମରୁ ପ୍ରାପ୍ତ ଅନଙ୍ଗଭୀମ ଦେବଙ୍କ ପ୍ରଦତ୍ତ ତମ୍ବାପଟାରୁ ପ୍ରମାଣ ମିଳୁଅଛି । ଅନଙ୍ଗଭୀମ ଦେବ ଖ୍ରୀ ୧୨୧୧ ଠାରୁ ଖ୍ରୀ ୧୨୩୮ ପର୍ଯ୍ୟନ୍ତ ରାଜଧାନୀ କଟକରେ ରାଜତ୍ୱ କରିଥିଲେ । "ଏଣୁ ଆଧୁନିକ କଟକ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ପ୍ରଥମ ପାଦରେ ସ୍ଥାପିତ ହୋଇଥିବାର ଲିଖିତ ପ୍ରମାଣ ଥିବାରୁ କଟକ ନଗରର ସ୍ଥାପନକାଳ ତ୍ରୟୋଦଶ ଶତାବ୍ଦୀର ପ୍ରଥମ ପାଦ ବା ଖ୍ରୀ ୧୨୧୧-୧୨୨୧ ଧରିବା ସମୀଚୀନ ।" (୫) କିନ୍ତୁ ଐତିହାସିକ ଉତ୍କଳର ମନ୍ମଥନାଥ ଦାସ କହନ୍ତି ଯେ ଅନନ୍ତବର୍ମନ ଚୋଡ଼ଗଙ୍ଗ ଦେବ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶରେ ଥିବା ମୁଖଲିଙ୍ଗମ ଅର୍ଥାତ ପ୍ରାଚୀନ କଳିଙ୍ଗ ନଗରରେ ୧୦୭୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ସେ ଥିଲେ ଅତ୍ୟନ୍ତ ଉଚ୍ଚାଭିଳାଷୀ ଏବଂ ସାହସୀ ରଣମାତ୍ତଙ୍କ । ପୂର୍ବ ଗଙ୍ଗ ବଂଶର ରାଜଧାନୀ ଥିଲା ଏହି କଳିଙ୍ଗନଗରୀ । ଏହି ନଗରୀ ବର୍ତ୍ତମାନ ଆନ୍ଧ୍ର ଦେଶର ବଂଶଧାରା ନଦୀକୂଳରେ ଶିକାକୋଲ ଜିଲ୍ଲାରେ ଆଧୁନିକ ମୁଖଲିଙ୍ଗମ ଗ୍ରାମକୁ ବୁଝାଏ । ମହାପ୍ରତାପୀ ଚୋଡ଼ଗଙ୍ଗ ଦେବ ଉତ୍କଳ ଅଭିଯାନରେ ବାହାରି ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପନ କରିଥିଲେ । ରାଜ୍ୟର କେନ୍ଦ୍ରସ୍ଥଳରେ ରାଜଧାନୀ ପ୍ରତିଷ୍ଠା କରିବା ଅଭିଳାଷରେ ୧୧୩୫ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ଦେବ କଳିଙ୍ଗ ନଗରୀରୁ କଟକକୁ ରାଜଧାନୀ ଉଠାଇ ଆଣିଥିଲେ । ତାଙ୍କର ଦୀର୍ଘ ବାସ୍ତରୀ ବର୍ଷ ଶାସନକାଳ ମଧ୍ୟରେ କଟକ ରାଜଧାନୀରେ ସେ ବାରବର୍ଷ

---

(୪) ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ—୧୮୨୯ ପୃ-୨୨୭ ।

(୫) କଟକର ଇତିହାସ—ପରମାନନ୍ଦ ଆଚାର୍ଯ୍ୟ—ଝଙ୍କାର, ୭ମ ବର୍ଷ—୨ମ ସଂଖ୍ୟା—ପୃ-୭୫୫

ରାଜତ୍ୱ କରି ଏହାର ବହୁବିଧ ଉନ୍ନତିର କାରଣ ହୋଇଥିଲେ । ସମଗ୍ର ହିନ୍ଦୁଜଗତର ଗର୍ବ ଓ ଗୌରବ ଶ୍ରୀଜଗନ୍ନାଥ ମନ୍ଦିର ତାଙ୍କର ମହାନ କୀର୍ତ୍ତି ଭାବରେ ଦଣ୍ଡାୟମାନ । (୬)

ଗଙ୍ଗବଂଶର ରାଜତ୍ୱକାଳକୁ ଓଡ଼ିଶାର ସାଂସ୍କୃତିକ ଇତିହାସରେ ସୁବର୍ଣ୍ଣଯୁଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଭାରତର ଚତୁର୍ଦ୍ଦିଗରେ ମୁସଲମାନ ରାଜବଂଶ ଆଧିପତ୍ୟ ବିସ୍ତାର କରୁଥିବା ବେଳେ ଗଙ୍ଗରାଜାମାନେ ଏକ ବିଶାଳ ସାମ୍ରାଜ୍ୟର ଅଧିକାରୀ ହୋଇ କେବଳ ସୁଦୃଢ଼ ଶାସନ ବ୍ୟବସ୍ଥା ପ୍ରଚଳନ କରିନଥିଲେ, ସେମାନଙ୍କ ଉଦ୍ୟମରେ ଓଡ଼ିଶାର ଶିଳ୍ପ, ବାଣିଜ୍ୟ, ସାହିତ୍ୟ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ଅଭୂତପୂର୍ବ ସମୃଦ୍ଧି ଓ ବିକାଶ ସମ୍ଭବ ହୋଇଥିଲା । ଶ୍ରୀଜଗନ୍ନାଥ ମନ୍ଦିର, ଶ୍ରୀ ଲିଙ୍ଗରାଜ ମନ୍ଦିର ଏବଂ କୋଣାର୍କର ସୂର୍ଯ୍ୟମନ୍ଦିର ଏହି ବଂଶର ରାଜତ୍ୱକାଳରେ ନିର୍ମିତ ହୋଇ ସମଗ୍ର ହିନ୍ଦୁ ଭାରତବର୍ଷର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ପବିତ୍ର ଓଡ଼ିଶା ଭୂମିକୁ ଭାରତର ସର୍ବାଞ୍ଚଳରୁ ପଣ୍ଡିତ, ଆୟୁର୍ବେଦ ଏବଂ ସାଧକମାନେ ତୀର୍ଥଯାତ୍ରା କରି ନିଜକୁ ଧନ୍ୟ ମନେ କରୁଥିଲେ । ରାଜଧାନୀ କଟକ ଗଙ୍ଗ ସମ୍ରାଟମାନଙ୍କର ଆବାସସ୍ଥଳ ହୋଇଥିବାରୁ ତାହାକୁ କେନ୍ଦ୍ରକରି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ବିକାଶ ହେବା ସ୍ୱାଭାବିକ । ଐତିହାସିକ ଡକ୍ଟର ମନ୍ମଥନାଥ ଦାସ ଯଥାର୍ଥରେ କହିଛନ୍ତି—"It was during the Ganga age that the Oriya literature took its concrete and enriched shape. Oriya script, grammer, idoms, Phraseologies, Poetic diction and Prose styles began to take their clear character as many inscriptions and manuscripts came to be composed. Withina well defined territory with a definite language and literature, with economic and political stability and with indigenous distinctive traits in spheres of culture, art and religion, modern Orissa was steadily taking shape during the prospersus Ganga era of three conturies. (୭)

ଗଙ୍ଗରାଜବଂଶର ଅବସାନ ପରେ ସୂର୍ଯ୍ୟବଂଶୀ ଗଜପତି ରାଜାମାନେ ପାର୍ଦ୍ଧ ଏକ ଶତାବ୍ଦୀକାଳ ଓଡ଼ିଶାରେ ସାମ୍ରାଜ୍ୟ ପ୍ରତିଷ୍ଠା କରି ରାଜତ୍ୱ କରିଥିଲେ । ସେତେବେଳେ କଟକନଗରୀ ମଧ୍ୟ ସେମାନଙ୍କର ରାଜଧାନୀ ଥିଲା । (୮) ପୁନଶ୍ଚ ଆଫଗାନ, ମୋଗଲ,

(୬) History and Culture of Orissa--Ed. M. N. Das—1977—P-97

(୭) History and Culture of Orissa. Ed. M. N. Das, 1977—P-39

(୮) "The Saraswati Vilasam, Raghudevepur copper plate and Kondividu copper plate further reveal that during the Suryovamsi rule Varnasi Kataka was a prosperous Capital city of Kalinga." (The fort of Barabati--Dr. H. C Das)

ମରହଟ୍ଟା, ଇଂରେଜମାନଙ୍କ ଶାସନକାଳରେ, ଏପରିକି ସ୍ୱାଧୀନ ଭାରତରେ ବହୁକାଳ ପର୍ଯ୍ୟନ୍ତ କଟକ ଥିଲା ଓଡ଼ିଶାର ରାଜଧାନୀ । ଶାସନର କେନ୍ଦ୍ରସ୍ଥଳ ଥିବାରୁ ଏଠାରେ ଦେଶର ଶିଳ୍ପୀ, ସ୍ଥପତି, କବି, ଦାର୍ଶନିକ, ଆଚାର୍ଯ୍ୟ ଏବଂ ଆଧ୍ୟାତ୍ମିକ କ୍ଷେତ୍ରର ସାଧକମାନେ ଏକାଠି ହେବା ସ୍ୱାଭାବିକ । ଅତଏବ ପ୍ରାୟ ଏକ ହଜାର ବର୍ଷ ଧରି ଓଡ଼ିଶାର ସାଂସ୍କୃତିକ ଅଭ୍ୟୁଦୟ କ୍ଷେତ୍ରରେ କଟକର ଗୌରବମୟ ଭୂମିକା ଅନସ୍ୱୀକାର୍ଯ୍ୟ ।

ଯୁଗ ଯୁଗ ଧରି ରାଜା, ରାଣୀ ରାଜ ପରିବାର, ମନ୍ତ୍ରୀ, ସେନାପତି ଏବଂ ଅମାତ୍ୟଗଣ କଳା ଓ ସାହିତ୍ୟର ପୃଷ୍ଠପୋଷକତା କରି ଆସିଛନ୍ତି । ସେମାନଙ୍କ ଉଦ୍ୟମରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବହୁ ମନ୍ଦିର, ଓ ମଣ୍ଡପ ନିର୍ମିତ ହୋଇଅଛି । ପଣ୍ଡିତ, କବି ଓ ଶାସ୍ତ୍ରକାରମାନଙ୍କୁ ସେମାନେ ଉତ୍ସାହିତ କରି ଆସିଛନ୍ତି । ତେଣୁ ତନ୍ତ୍ର, ପୁରାଣ, ଦର୍ଶନ ଧର୍ମଶାସ୍ତ୍ର, କାବ୍ୟ, ଅଳଙ୍କାର, ଜ୍ୟୋତିଷ, ଆୟୁର୍ବେଦ ପ୍ରଭୃତି ବିଭିନ୍ନ ବିଭାଗରେ ସଂସ୍କୃତରେ ରାଶି ରାଶି ଗ୍ରନ୍ଥ ଲିଖିତ ହୋଇଥିଲା । ଏହି କାଳରେ ସଂସ୍କୃତ ସାହିତ୍ୟକୁ ଓଡ଼ିଶାର କବି ଓ ସାଧକମାନଙ୍କର ଦାନ ଅପରସୀମ ବୋଲି ଗବେଷକଗଣ ସ୍ଥିର କରିଅଛନ୍ତି । ସୁଦୃଢ଼ ଶାସନ ବ୍ୟବସ୍ଥା ସହିତ ରାଜକୀୟ ପୃଷ୍ଠପୋଷକତା ହେତୁ ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାଗରେ ଓଡ଼ିଶାର ଲେଖକମାନେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଉଦାହରଣ ସ୍ୱରୂପ ସଂସ୍କୃତ ସାହିତ୍ୟର ଏହି ବହୁମୁଖୀ ଅବଦାନ ମଧ୍ୟରେ କେବଳ ଧର୍ମଶାସ୍ତ୍ର ବିଷୟରେ କିଞ୍ଚିତ ଆଲୋକପାତ କଲେ ବିଷୟଟି ଉପଲବ୍ଧ ହୋଇପାରିବ । ଏହି ସମ୍ପର୍କରେ ବିସ୍ତୃତ ଆଲୋଚନା କରି ଗବେଷକ ନୀଳମଣି ମିଶ୍ର ଲେଖିଛନ୍ତି—"The contribution of Oriya scholras to the field of Dharmashastra in India is commendable. The Oriya compositions have special significance with relation to Orissa dealing with the different religious rites· Beginning with 10th and 11th centuries up to 18th century the Pundits of Orissa have written a number of texts on canons, customs, fairs, festivals, pilgrim centres, worship and sradha ceremonies· These in course of time have been adored as the law book of the rulers and guide book of common mass. Among them Satananda Samgraha of Satananda Acharya, Agnistoma Paddhati of Sambhukara Mishra· Abdhuta Sagara of Yogisvara Patra, Achara Pradipa of Narasimha Vajapeyi, Smrutisara Samgraha of Visvanath Mishra, Kaladipa and Sraddhadipa of Divyasimha Mohapatra, Sradha Nirnnaya, Utqata Tarangini of Raghunath Das, Kalasara and Acharasara of Gadadhan Rajunru are the unique contributions of Oriya scholars to the Indian Dharma Sastras·" (୯)

(୯) History and Culture of Orissa—Ed· M· N· Das, 1977 P-655

କଥିତ ଭାବରେ ରାଜଧାନୀ କଟକ ଥିଲା ଶତ ଶତ ବର୍ଷକାଳ ଓଡ଼ିଶାର ସାଂସ୍କୃତିକ ଜୀବନର କେନ୍ଦ୍ରସ୍ଥଳୀ । ଦିଗ୍‌ବିଜୟୀ ଗଙ୍ଗ ଓ ସୂର୍ଯ୍ୟବଂଶୀ ସମ୍ରାଟଗଣଙ୍କ ପ୍ରତାପରେ ବହିଃଶତ୍ରୁ ଥରହର ହେଉଥିଲେ ଏବଂ ସାମ୍ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ଥିଲା । ରାଜାମାନେ ନିଜେ କାବ୍ୟ, ନାଟକ ପ୍ରଭୃତି ରଚନା କରିବା ସଙ୍ଗେ ସଙ୍ଗେ ରାଜାଙ୍କୁ ଘେରି ରହିଥିବା ପାରିଷଦଗଣ ଏବଂ ପଣ୍ଡିତମାନେ ମଧ୍ୟ କାବ୍ୟ ସାଧନାରେ ମନୋ-ନିବେଶ କରିଥିଲେ ।

ଗଙ୍ଗ ରାଜତ୍ୱକାଳରେ ବିଶ୍ୱନାଥ କବିରାଜଙ୍କ ପ୍ରଣୀତ ଅଳଙ୍କାର ଗ୍ରନ୍ଥ "ସାହିତ୍ୟ ଦର୍ପଣ" ଜଗତ ବିଖ୍ୟାତ ହୋଇଅଛି । ସ୍ୱୟଂ ବିଶ୍ୱନାଥ ଏବଂ ତାଙ୍କର ପିତା ଚନ୍ଦ୍ରଶେଖର ସଂସ୍କୃତରେ ନାଟକ ଲେଖିଥିବା ଜଣାଯାଇଛି । ସୂର୍ଯ୍ୟବଂଶର ପ୍ରତିଷ୍ଠାତା ମହାରାଜା କପିଳେନ୍ଦ୍ର ସଂସ୍କୃତରେ ପରଶୁରାମ ବିଜୟ ନାଟକ ପ୍ରଣୟନ କରିଥିଲେ । ଅତ୍ୟନ୍ତ ଆନନ୍ଦର ବିଷୟ ଯେ ସେ ଏହି ଗ୍ରନ୍ଥରେ ଓଡ଼ିଆ ଭାଷାରେ ଏକ ଗୀତ ସଂଯୋଜନା କରିଥିଲେ । ସଂସ୍କୃତ ସାହିତ୍ୟର ବହୁଳ ଚର୍ଚ୍ଚା ଯୁଗରେ ମହାରାଜା କପିଳେନ୍ଦ୍ର ନିଜ ରଚିତ ସଂସ୍କୃତ ନାଟକରେ ଓଡ଼ିଆ ଗୀତଟିଏ ସଂଯୋଜନା କରି ଓଡ଼ିଆ ସାହିତ୍ୟର ସୂର୍ଯ୍ୟୋଦୟର କାରଣ ହୋଇଥିଲେ । ପରଶୁରାମ 'ବିଜୟ' ନାଟକରେ ରାଣୀ ଚନ୍ଦ୍ରବଦନା ଏହି ଗୀତଟି ବୋଲିଛନ୍ତି—

"କେବଣ ମୁନିକୁମର ପରଶୁ ଦକ୍ଷିଣକର
ବାମେଣ ଶୋଭେ ଧନୁଶର ନା
କୋପେଣ ବୋଲଇ ବୀର ତା' ଭୁ ସେ ଭେ
ବଧିଲୁ ତାତ
ଆଜ ତୋତେ ଛେଦିବଇଁ ମାଥ ନା ।
ଶୁଣ ରାଜନ ହୋ କଏ ତୋର ରାଜ୍ୟ ବ୍ରହ୍ମା ବଧେନା
ଏ ତୋର ଚନ୍ଦ୍ରବଦନ ମେଘ କି ତାଂକଲା ଜହ୍ନ
ତାହା ଦେଖି ବିକଳ ମୋ ମନ ନା ।
ଆବର ଦେଖଇ ଅସ୍ପଷ୍ଟ ରାଜ୍ୟେ ତୋ ରୁଧିର ବୃଷ୍ଟି
ଘୁରି ବେଢ଼ି ରୋଦନ୍ତି ଶୃଗାଳ ନା ।
ଶୁଣ ରାଜନ ହୋ କଏ ତୋର ରାଜ୍ୟେ ବ୍ରହ୍ମା ବଧେନା ।"

ମାତୃଭାଷାର ଗୌରବବର୍ଦ୍ଧକ କପିଳେନ୍ଦ୍ର ରାଜଧାନୀ କଟକର ପଣ୍ଡିତ ସଭାରେ ନିଜ ରଚିତ ସଂସ୍କୃତ ନାଟକର ଅଭିନୟ କରାଇଥିବେ । ଓଡ଼ିଆ ଭାଷାରେ ପ୍ରଥମ ସଙ୍ଗୀତ ଏହି ନାଟକ ଅଭିନୟ କାଳରେ ଅଭିଜାତଗୋଷ୍ଠୀ ଶ୍ରବଣ କରି ନିଶ୍ଚୟ ପୁଲକିତ ହୋଇ ଉଠିଥିବେ । ପ୍ରାକୃତ ଭାଷାପ୍ରେମୀ ଦର୍ଶକମାନଙ୍କ ପ୍ରାଣରେ ଏହା ଯେଉଁ ପ୍ରେରଣା ଏବଂ ଆଲୋଡ଼ନ ସୃଷ୍ଟି କରିଥିବ । ତାହାର ଉଦାତ୍ତ ଫଳପ୍ରସୂ ଉଦ୍‌ଘୋଷଣା

ଉହେଉଛନ୍ତି ଓଡ଼ିଆ ଜାତିର କାବ୍ୟ-କୋଣାର୍କ କପିଳେନ୍ଦ୍ରଙ୍କ ରାଜତ୍ୱକାଳର "ସାରଳା ଦାସଙ୍କ ମହାଭାରତ"। ଏହି ସମୟରୁ ଓଡ଼ିଆଜାତିର ସଂସ୍କୃତ ଅନୁରାଗୀ ସୁଧୀବୃନ୍ଦ ଓଡ଼ିଆ ଭାଷାରେ ଲିଖିତ ସାହିତ୍ୟରୁ ରସ ଆସ୍ୱାଦନ କରି ସମ୍ମାନିତ ଭାବନା ପୋଷଣ କରିଥିବେ। ତେଣୁ ଏ ସୁକ୍ତି ଅତ୍ୟନ୍ତ ସମୀଚୀନ ଯେ "ମହାରାଜା କପିଳେନ୍ଦ୍ର ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରି ଓଡ଼ିଆ ଜାତି ପ୍ରାଣରେ ପ୍ରବଳ ଉନ୍ମାଦନା ଏବଂ ସ୍ୱାଭିମାନ ସୃଷ୍ଟି କରିଥିଲେ। ଓଡ଼ିଆ ସମାଜ ଗର୍ବ ଓ ଗୌରବରେ ନିଜକୁ ପ୍ରକାଶ କରିବାପାଇଁ ବ୍ୟାକୁଳ ହୋଇ ପଡ଼ିଥିଲା। ସମ୍ରାଟ କପିଳେନ୍ଦ୍ର ତାଙ୍କର ଅସଂଖ୍ୟ ଶିଳାଲେଖରେ ସଂସ୍କୃତ ଭାଷା ସହିତ ପ୍ରାଦେଶିକ ଭାଷାର ମଧ୍ୟ ପରିପ୍ରଚାର କରିଥିଲେ। ତେଣୁ ସାରଳା ଦାସଙ୍କ ମହାଭାରତ ଏହି କାଳରେ ଜାତୀୟ ସ୍ୱାଭିମାନର ଉପଯୁକ୍ତ ରୂପାୟନ ବୋଲି ସ୍ୱୀକାର କରିବାକୁ ହେବ।" (୧୦) ଏଣିକି ଓଡ଼ିଆ ସାହିତ୍ୟ—ସୁରଧୁନୀଙ୍କର ପ୍ରବାହ ହେଲା ଅପ୍ରତିହତ। ସେହି ସାରସ୍ୱତ—ନଦୀକୂଳରେ ଇତିହାସର ଚନ୍ଦ୍ରତଳେ କେତେ ଯୁଗ ସୃଷ୍ଟି ହୋଇ ଆଜି ପର୍ଯ୍ୟନ୍ତ ଗଢ଼ିଆସିଛି। ସେହି ରସାଳ ସ୍ରୋତସ୍ୱିନୀ କୂଳରେ ରାଜା, ପ୍ରଜା, ସାଧୁ, ସାଧକ, ନଗରବାସୀ, ଅଭିଜାତଗୋଷ୍ଠୀ, ସାଧାରଣ ଜନତା ଓଡ଼ିଆ ଭାଷାରେ ଲେଖନୀ ଚାଳନା କରି ନିଜକୁ ଧନ୍ୟ କରିଅଛନ୍ତି ଓ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି।

## ଅଭିଲେଖ ଓ ତାମ୍ରପତ୍ରରେ ଓଡ଼ିଆ ରାଜ୍ୟର ବିକାଶ :

"ଚମ୍ପୁନୀ ଚକଡ଼ା" ଗ୍ରନ୍ଥରୁ ଜଣାଯାଏ ଯେ ଅଭିନବ ବାରାଣସୀ କଟକ ବା ବର୍ତ୍ତମାନର କଟକ ଓଡ଼ିଶାର ରାଜଧାନୀ ଥିବା ସମୟରେ ଗଜପତି ପୁରୁଷୋତ୍ତମଦେବ ପ୍ରଥମେ ଷୋଳଟି ଶାସନ ପ୍ରତିଷ୍ଠାର କଳ୍ପନା କରିଥିଲେ। ନିଜ ନାମାନୁସାରେ ପ୍ରଥମ ବ୍ରାହ୍ମଣ ଶାସନଟିର ନାମ ରଖିଥିଲେ ପ୍ରସନ୍ନପୁରୁଷୋତ୍ତମପୁର। ଏହି ଶାସନର ମୁଖ୍ୟ ଦେବତା ଥିଲେ ଶ୍ରୀଗୋପାଳ। ତାଙ୍କର ପାଟରାଣୀ ପାଟପୁର ଓ ରାଣୀ ଶ୍ରୀୟାଦେଈ ସିଂହମାପୁର ଶାସନ ବସାଇଥିଲେ। ତାଙ୍କର ଅନ୍ୟ ରାଣୀମାନେ ଯଥା ପଦ୍ମାଦେଇ, ବେଦନା ଦେଈ, ମୋହନା ଦେଈ, ଇଳା ଦେଈ, ହୀର ଦେଈ, ସତ୍ୟଭାମା ଦେଈ, କୃଷ୍ଣା ଦେଈ ଯଥାକ୍ରମେ ନିଜ ନାମାନୁସାରେ ପଦ୍ମାପୁର, ବେଦନାପୁର, ମୋହନାପୁର, ଏଳମାପୁର, ହୀରପୁର, ସତ୍ୟଭାମାପୁର, କୃଷ୍ଣାପୁର ଶାସନମାନ ବସାଇଥିଲେ। ମହାରାଜାଙ୍କ ପାତ୍ର ଶ୍ରୀ ଗୋପୀନାଥ ପ୍ରହରାଜ, ଶ୍ରୀ ବିଶ୍ୱନାଥ ପ୍ରହରାଜ ଓ ମାର୍କଣ୍ଡ ଆଚାର୍ଯ୍ୟ ନିଜ ନିଜ ନାମାନୁସାରେ ଯଥାକ୍ରମେ ଗୋପୀନାଥପୁର, ବିଶ୍ୱନାଥପୁର ଓ ମାର୍କଣ୍ଡପୁର ଶାସନ ସ୍ଥାପନ କରିଥିଲେ। ଏହି ଶାସନ ମାନଙ୍କୁ ସୂର୍ଯ୍ୟବଂଶୀ ରାଜମାନେ ଓଡ଼ିଆ ଭାଷାରେ ଅନେକ ତାମ୍ରଲେଖ ପ୍ରଦାନ କରିଥିଲେ। ରାଜଧାନୀ କଟକରେ ହିନ୍ଦୁ ରାଜତ୍ୱର ଅବସାନ ପରେ ଏହି ଶାସନଗୁଡ଼ିକର ପ୍ରାଧାନ୍ୟ ହ୍ରାସ ହୋଇଗଲା ଏବଂ ଖୋର୍ଦ୍ଧାର ଭୋଇବଂଶର

---

(୧୦) ଓଡ଼ିଆ ସାହିତ୍ୟର ଇତିହାସ—ପଠାଣି ପଟ୍ଟନାୟକ, ୧୯୮୪—ପୃ-୨୦୧

ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ ପୁରୀ ନିକଟରେ ପରବର୍ତ୍ତୀ କାଳରେ ସେଠାରେ ଶାସନ ପ୍ରତିଷ୍ଠା କରିଥିବା ଜଣାଯାଏ । (୧୧)

ଗଙ୍ଗବଂଶ ଏବଂ ସୂର୍ଯ୍ୟବଂଶ ସମୟରୁ ରାଜଧାନୀ କଟକରୁ ହିଁ ବିଭିନ୍ନ ମନ୍ଦିର ଗାତ୍ରରେ ଶିଳାଲିପି ଉତ୍କୀର୍ଣ୍ଣ ହେବା ପାଇଁ ଆଦେଶ ପ୍ରଦାନ କରାଯାଇଥିବ । ଓଡ଼ିଆ ସାହିତ୍ୟର ଓ ଭାଷାର ବିକାଶ କ୍ରମରେ ଏହି ଲେଖ ଗୁଡ଼ିକର ଅବଦାନ ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ଏକ ଆଲୋଚନା ପ୍ରବନ୍ଧରେ ଐତିହାସିକ କେଦାରନାଥ ମହାପାତ୍ର ଲେଖିଥିଲେ ଏହିପରି—"ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ରାଜତ୍ୱକାଳରେ ଓଡ଼ିଆ ଭାଷାରେ ଲିଖିତ ବହୁ ଅଭିଲେଖ ଏଯାଏ ଭିତରେ ଆବିଷ୍କୃତ ଓ ପ୍ରକାଶିତ ହେଲାଣି । ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର, ପୁରୀର ଶ୍ରୀ ଜଗନ୍ନାଥ, ପାତାଳେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିର, ଶ୍ରୀ କୂର୍ମକ୍ଷେତ୍ରର ଶ୍ରୀ କୂର୍ମନାଥ ମନ୍ଦିର, ସିଂହାଚଳର ଲକ୍ଷ୍ମୀନାରାୟଣ ମନ୍ଦିର, ମୁଖଲିଙ୍ଗର ମଧୁକେଶ୍ୱର ମନ୍ଦିର, ସୋନପୁରର ସ୍ୱପ୍ନେଶ୍ୱର ମନ୍ଦିର, ସମ୍ବଲପୁରର ନରସିଂହନାଥ ମନ୍ଦିର ପ୍ରଭୃତିରେ ବହୁ ଉପାଦେୟ ଅଭିଲେଖ ପରିଦୃଷ୍ଟ ହୁଏ । ରାଜବଂଶର ପୃଷ୍ଠପୋଷକତା ଲାଭ କରି ଓଡ଼ିଆରାଜ୍ୟ କ୍ଷୀପ୍ରଗତିରେ ବିକାଶଲାଭ କରିଥିଲା । ଏ ସମ୍ପର୍କରେ ବିସ୍ତର ଆଲୋଚନା କରିବା ପାଇଁ ଏଠାରେ ସ୍ଥାନର ଅଭାବ; ତେଣୁ ଦୁଇ-ତିନୋଟି ମାତ୍ର ଉଦାହରଣ ଦିଆଯାଉଛି । ଗଙ୍ଗ ସମ୍ରାଟ ପ୍ରଥମ ଭାନୁଦେବଙ୍କ ଦ୍ୱାରା ସୋନପୁର ସ୍ୱପ୍ନେଶ୍ୱର ମନ୍ଦିରସ୍ଥ ଏକ ପ୍ରସ୍ତର ଦେହରେ ତାଙ୍କ ସାତଅଙ୍କ ୧୨୬୮ ଖ୍ରୀଷ୍ଟାବ୍ଦରେ ଏକ ଅଭିଲେଖ ଉତ୍କୀର୍ଣ୍ଣ ହୋଇଥିଲା । ଏହାର ଶେଷ ଅଂଶ ହେଉଛି—"ଏହା ଯେ ହରଇ, ତାହାର କପାଳେ ଶିବଘାଳ, ବ୍ରହ୍ମଘାଳ, ବିଷ୍ଣୁଘାଳ ତିନଘାଳ ପଡ଼ଇ । ତାହାର କପାଳଇ ନିବଂଶ ହୋଉ ।" ଏଥିରେ ବ୍ୟବହୃତ ହରଇ, ପଡ଼ଇ, ହୋଇ ପ୍ରଭୃତି କ୍ରିୟାପଦ ଭାଷାତତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ମୂଲ୍ୟବାନ । ଭୁବନେଶ୍ୱରରୁ ଆବିଷ୍କୃତ ଦ୍ୱିତୀୟ ନରସିଂହ ଦେବଙ୍କ ଦ୍ୱିଭାଷୀ ଶିଳାଲେଖ (ଓଡ଼ିଆ ଓ ତାମିଲ)ର ସମୟ ହେଉଛି ୧୨୯୫ ମସିହା ଅକ୍ଟୋବର ମାସ ଦୁଇ ତାରିଖ । ଏଥିରୁ କେତେକ ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା—'ଢପରାଜ ମାହାମୁନ ଦୁର୍ଗାଭଟ ଆଗ୍ନେୟକି ବନ୍ଧାଇଲା । × × ଉତ୍ତରସ୍ୱର ନାୟକଙ୍କର ଚହୁଂ ଘେତଲା (ଦେଖିଲା) । ଢପରାଜ ମନ୍ମ ସିବ ପ୍ରାପ୍ତ ଚପଚକ୍ରବର୍ତ୍ତୀ ଥାନପତି ହୋଇଲା । + + + ଉପରେ ଉଦ୍ଧୃତ ବାକ୍ୟଗୁଡ଼ିକ ପାଠକଲେ ତ୍ରୟୋଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଗଦ୍ୟ ସମ୍ୟକ ବିକଶିତ ହୋଇଥିବାର ଜଣାଯାଏ । + + + ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେଶ୍ୱର ଦେବଙ୍କ ରାଜତ୍ୱକାଳରୁ ଓଡ଼ିଆ ରାଜଭାଷାର ସ୍ଥାନ ଅଧିକାର କଲା । ପୁରୀ ଓ ଲିଙ୍ଗରାଜ ମନ୍ଦିରରେ ସମସ୍ତ ରାଜକୀୟ ଘୋଷଣା ଓଡ଼ିଆ ଗଦ୍ୟରେ ଲିପିବଦ୍ଧ ହୋଇଥିଲା । ଏପରିକି କପିଳେନ୍ଦ୍ର ଦେବ ସୁଦୂର ଅନ୍ଧ୍ର ପ୍ରଦେଶରେ ଗୋଦାବରୀ ନଦୀକୂଳରେ ନିଜ ପିତା ଜାଗେଶ୍ୱର ଓ ମାତା ବେଲମା ଓ ନିଜ ନାମରେ ଜାଗେଶ୍ୱରପୁର, ବେଲମାପୁର ଓ

---

୧୧-ଖୁରୁଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର-୧୯୬୯-ପୃ ୭-୧୮

କପିଳେଶ୍ୱରଙ୍କର ନାମକ ସେହିଁ ତିନୋଟି ଶାସନ ପ୍ରତିଷ୍ଠା କରିଥିଲେ ସେଥିରେ ସଂସ୍କୃତ ଓ ତେଲଙ୍ଗୀ ଭାଷା ସହିତ ରାଜଭାଷା ଓଡ଼ିଆକୁ ଯଥୋଚିତ ସ୍ଥାନ ପ୍ରଦାନ କରିଥିଲେ । ଏହା କପିଳେଶ୍ୱର ଦେବଙ୍କ ବେଲଗାଲନ ତାମ୍ରଶାସନ ନାମରେ ପ୍ରସିଦ୍ଧ ।" (୧୨)

ରାଜକୀୟ ପ୍ରେରଣା ଯୋଗୁ ଓଡ଼ିଆ ସାହିତ୍ୟର ସେହି ପ୍ରାଚୀନ ଯୁଗରେ ରୁଦ୍ର-ସୁଧାନିଧି, ଶୂନ୍ୟରାମାଳା, ମାଦଳାପାଞ୍ଜି, ସୋମନାଥ ବ୍ରତ କଥା, ତତ୍ତ୍ୱର ବିନୋଦ, ଶିବଦାସକୃତ ବତିଶସିଂହାସନ, ପ୍ରସ୍ତାବ ଚିନ୍ତାମଣି ପ୍ରଭୃତି ଉଚ୍ଚକୋଟିର ଗଦ୍ୟଲେଖା ପାଠକର ବିସ୍ମୟ ସୃଷ୍ଟି କରିଥାଏ । ଏତଦ୍‌ବ୍ୟତୀତ ବହୁ ସଂସ୍କୃତ ଗ୍ରନ୍ଥର ଓଡ଼ିଆ ଟୀକା ମଧ୍ୟ ଏ ଯୁଗରେ ପରିଦୃଷ୍ଟ ହୋଇଥାଏ । ସମକାଳୀନ ଭାରତୀୟ ସାହିତ୍ୟର ଗଦ୍ୟ ବିଭାଗରେ ଏପରି ଉନ୍ନତି ଦୃଷ୍ଟିଗୋଚର ହୁଏ ନାହିଁ ।

ଓଡ଼ିଆ ଭାଷାରେ ମହାଭାରତ, ରାମାୟଣ, ଭାଗବତ ଏବଂ ଅନେକ ପୁରାଣ ଲିଖିତ ହୋଇ ପ୍ରଚରିତ ହେବା ଫଳରେ ସୂର୍ଯ୍ୟବଂଶ କାଳକୁ ଓଡ଼ିଆ ସାହିତ୍ୟର ସୁବର୍ଣ୍ଣଯୁଗବୋଲି ନାମିତ କରାଯାଇପାରେ । ସଂସ୍କୃତ ସାହିତ୍ୟର ପ୍ରବଳ ପ୍ରଭାବ ସତ୍ତ୍ୱେ ରାଜକୀୟ ଆଶୀର୍ବାଦ ଯୋଗୁ ଓଡ଼ିଆ ସାହିତ୍ୟରେ ଏପରି ଯୁଗାନ୍ତକାରୀ ସୃଷ୍ଟି ସମ୍ଭବ ହୋଇ ପାରିଥିଲା ।

## ଅଫଗାନ ମୋଗଲ ଓ ମରହଟ୍ଟା କାଳ :

୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସ୍ୱାଧୀନ ହିନ୍ଦୁ ରାଜତ୍ୱ ଅସ୍ତମିତ ହୋଇ ଆଫଗାନ ଶାସନ ପ୍ରତିଷ୍ଠା କରାଗଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କଲା ପର୍ଯ୍ୟନ୍ତ ଏହି ଦୀର୍ଘସମୟ ଓଡ଼ିଶାରେ ସର୍ବଦା ଯୁଦ୍ଧ ଓ ଅଶାନ୍ତି ରାଜପଣ କରୁଥିଲା । ମୁସଲମାନ ଶାସକ ଅଥବା ମରହଟ୍ଟା ଶାସକଗଣ ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକତା କରିଥିବାର କୌଣସି ପ୍ରମାଣ ମିଳେ ନାହିଁ । ତଥାପି ଏହି କାଳରେ ସଂସ୍କୃତ ପଣ୍ଡିତମାନେ ଏବଂ ଓଡ଼ିଆ କବିମାନେ ବହୁ କାବ୍ୟକବିତା ଲେଖିଯାଇଅଛନ୍ତି । ସୂର୍ଯ୍ୟବଂଶ ରାଜତ୍ୱ-କାଳର ଓଡ଼ିଆ ସାହିତ୍ୟ ଥିଲା ମୁଖ୍ୟତଃ ବୈଷ୍ଣବଧର୍ମ-ଭାବନା ପ୍ରଭାବିତ । କିନ୍ତୁ ଆଫଗାନ ମୋଗଲ ଶାସକମାନେ ଥିଲେ ଅତ୍ୟନ୍ତ ବିଳାସୀ ଏବଂ ବସ୍ତୁବାଦୀ । ତେଣୁ ଏକାଳର କାବ୍ୟ ସାହିତ୍ୟ ଆଧ୍ୟାତ୍ମିକ ଭାବନାରେ ରସାଣିତ ହେଲେହେଁ ତାହାଥିଲା ପ୍ରଧାନତଃ ଭୋଗାବଳୀ ସାହିତ୍ୟ । ଏହି କାଳର ପ୍ରମୁଖ କାବ୍ୟକାରମାନଙ୍କ ମଧ୍ୟରେ ଧନଞ୍ଜୟଭଞ୍ଜ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଘନଭଞ୍ଜ, ଲୋକନାଥ ବିଦ୍ୟାଧର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତି ସ୍ମରଣୀୟ । ରାଜକୀୟ ଚଳଣିର ପ୍ରଭାବ ଏ ଯୁଗର ସାହିତ୍ୟକୁ ପ୍ରଭାବିତ କରିବା ସ୍ୱାଭାବିକ । ରାଜଧାନୀର ସାମନ୍ତବାଦୀ ଚଳଣିର ଐଶ୍ୱର୍ଯ୍ୟ ଓଡ଼ିଆ କାବ୍ୟ ସାହିତ୍ୟରେ ବହୁଭାବରେ ପ୍ରତିଫଳିତ ହେଲା । ଦେଶ ପରାଧୀନ ଥିବାରୁ ସାହିତ୍ୟରେ କୌଣସି ସମାଜ ସଂସ୍କାର ଅଥବା ସ୍ୱାଭିମାନର ପରିଚୟ ମିଳେ ନାହିଁ ।

---

୧୨-ଗଙ୍ଗଯୁଗରୁ ଓଡ଼ିଆ ସାହିତ୍ୟର ବିକାଶଧାରା ପ୍ରବନ୍ଧ—କେଦାରନାଥ ମହାପାତ୍ର

ସାର୍ବଭୌମ ରାଜଶକ୍ତିଠାରୁ ନିରାପଦ ଦୂରତ୍ୱ ରକ୍ଷାକରି କାବ୍ୟକାରମାନେ ଯେଉଁ ବିଶାଳ ସାହିତ୍ୟସୌଧ ନିର୍ମାଣ କରିଗଲେ, ତହିଁରେ ରହିଲା ପୌରାଣିକ ପରଲୋକର ଅଲୌକିକ କାହାଣୀ ଏବଂ ଇହଲୋକର ଭୌତିକ ଐଶ୍ୱର୍ଯ୍ୟର ଅନୁଭୂତି ।

## କଟକ ବାରବାଟୀ ଦୁର୍ଗ ଓ ଓଡ଼ିଆ ଗଣଧର୍ମୀ କାବ୍ୟ 'ହାରାବତୀ' :

ଓଡ଼ିଆ କାବ୍ୟଯୁଗର ଅସୁମାରି କାବ୍ୟ ସମ୍ଭାରରେ ବଡ଼ସାଗଡ଼ ବେବର୍ତ୍ତା ଭଗୀରଥି ପଟ୍ଟନାୟକଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକଙ୍କ ରଚିତ "ହାରାବତୀ" ଏକ ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନ ଦାବି କରିଥାଏ । ଆଧୁନିକଯୁଗରେ ବହୁ ଉଚ୍ଚକୋଟିର ସାହିତ୍ୟ ଜେଲ ମଧ୍ୟରେ ଲେଖକଙ୍କର କାରାବାସ କାଳରେ ରଚିତ ହୋଇଥିବା ଆମେ ଜାଣୁ । 'ହାରାବତୀ'ର ଲେଖକ ଓଡ଼ିଆ ଶାସକଙ୍କର ନିଗ୍ରହ ଯୋଗୁ ବାରବାଟୀ ଦୁର୍ଗରେ ବନ୍ଦୀଥିଲା-ବେଳେ ଏହି ଅମୂଲ୍ୟ କାବ୍ୟକୁ ସୃଷ୍ଟି କରିଥିଲେ । କାବ୍ୟଯୁଗର ରାଣିରାଣି କାବ୍ୟର ନାୟକ ନାୟିକା କେବଳ ଅଭିଜାତ ପରିବାରରୁ ଗ୍ରହଣ କରାଯାଇଥିଲେ । ଏକମାତ୍ର କାବ୍ୟ "ହାରାବତୀ" ଓଡ଼ିଆ ରୀତିଯୁଗ ସାହିତ୍ୟରେ ଏକ ବ୍ୟତିକ୍ରମ । କାରଣ ଏହାର ନାୟିକା ହେଉଛନ୍ତି ସାଧାରଣ ଗୁଡ଼ିଆ ଘରର ଝିଅ ଏବଂ ନାୟକ ମଧ୍ୟ ପଲ୍ଲୀଗ୍ରାମର ସାଧାରଣ କୃଷକ ପୁଅଟିଏ । ସେମାନଙ୍କର ପ୍ରଣୟର ଉନ୍ମେଷ ପାଇଁ ବାସକ ସଜ୍ଜା ବା ବିଳାସପୂର୍ଣ୍ଣ ଉପବନ ଅଥବା କ୍ରୀଡ଼ାସରୋବରର ଆୟୋଜନ କରାଯାଇନାହିଁ । ଏହି କାବ୍ୟରେ ପ୍ରଣୟୀ ପ୍ରଣୟିନୀ ଏକାଠି ହୋଇଛନ୍ତି ଗାଁ ମୁଣ୍ଡ ପୋଖରୀ କୂଳରେ କଇଁଫୁଲ ତୋଳିବାବେଳେ । ସମକାଳୀନ ଅନ୍ୟ ପ୍ରାନ୍ତର ସାହିତ୍ୟରେ ମଧ୍ୟ ଏପରି ଅଭିଜାତହୀନ ଲୌକିକରସର କାବ୍ୟ ଦୁର୍ଲଭ ବୋଲି ଜଣାଯାଇଛି ।

## ଇଂରେଜ ରାଜତ୍ୱରେ କଟକର ସାଂସ୍କୃତିକ ପରିବେଶ :

ଇଂରେଜ ଶାସକମାନେ କଟକକୁ ରାଜଧାନୀ ଭାବରେ ସ୍ୱୀକୃତି ଦେଇଥିଲେହେଁ ଦୀର୍ଘ ଷାଠିଏ ବର୍ଷକାଳ ଓଡ଼ିଶାର ଉନ୍ନତିରେ ବିଶେଷ ଧ୍ୟାନ ଦେଇନଥିଲେ । କାରଣ ଇଂରେଜ ଶାସନକୁ ଓଡ଼ିଶାର ଜନସାଧାରଣ ସ୍ୱାଗତ ଜଣାଇ ପାରିନଥିଲେ । ଏହି ଦୀର୍ଘକାଳ ମଧ୍ୟରେ ଇଂରେଜମାନେ ବହୁ ବିଦ୍ରୋହ ଏବଂ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ଓଡ଼ିଶାର ଜନସାଧାରଣ ପାଶ୍ଚାତ୍ୟ ଶିକ୍ଷା ବ୍ୟବସ୍ଥାକୁ ସ୍ୱାଗତ ନ କରିବା ଫଳରେ ୧୮୫୦ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାର କଚେରିମାନଙ୍କରେ ଦଶଟଙ୍କାରୁ ଅଧିକ ବେତନ ପାଉଥିବା ଜଣେ ହେଲେ ଓଡ଼ିଆ ନଥିଲେ । ଭାରତର ରାଜଧାନୀ କଲିକତାରେ ପାଶ୍ଚାତ୍ୟ ଶିକ୍ଷାରେ ଆଲୋକିତ ବଙ୍ଗୀୟ ନବ୍ୟଶିକ୍ଷିତଗଣ ଇଂରେଜ ଶାସକମାନଙ୍କର ସହଯୋଗୀ ହିସାବରେ ଓଡ଼ିଶା ଭୂଖଣ୍ଡକୁ ଶାସନ କରିବା ଯୋଗୁଁ ଓଡ଼ିଶାରେ ଶିକ୍ଷିତ ମଧ୍ୟବିତ୍ତ-ଗୋଷ୍ଠୀର ଅଭ୍ୟୁଦୟ ପାଇଁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ଓଡ଼ିଶାରେ ବହୁ ବିଳମ୍ବରେ ପ୍ରେସ୍, ପତ୍ରିକା ଓ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠା ହେଲା ଏବଂ ଏହି କାରଣରୁ ଓଡ଼ିଆ ଭାଷା ବହୁଭାବରେ ଅବହେଳିତ ହେଉଥିଲା । ତେବେ ୧୮୬୬ ଖ୍ରୀଷ୍ଟାବ୍ଦରେ ଗୌରୀଶଙ୍କରଙ୍କ ସମ୍ପାଦନାରେ ପ୍ରକାଶିତ ହେଲା

"ଉତ୍କଳ ଦୀପିକା" ରାଜଧାନୀ କଟକରୁ । ପୁନଶ୍ଚ ତାଙ୍କର ସମ୍ପାଦକଭାବରେ "ଉତ୍କଳ ଭାଷୋଦ୍ଦୀପନ ସମାଜ" ଗଠନ କରାଗଲା । ପରେ ପରେ କଟକ ଡ଼ିବେଟିଙ୍ଗ କ୍ଲବ (୧୮୬୮) ଉତ୍କଳ ଉନ୍ନତିବିଧାୟିନୀ ସଭା (୧୮୬୯), ଉତ୍କଳ ଭାଷୋଦ୍ଦୀପନୀ ସଭା (୧୮୭୩), ଉତ୍କଳ ସଭା (୧୮୭୭) ଉତ୍କଳ ସାହିତ୍ୟ ସମ୍ମିଳନୀ (୧୮୮୬), କଟକ ଆଲୋଚନା ସଭା (୧୮୯୩), ଅବକାଶରଞ୍ଜନ କ୍ଲବ (୧୮୯୮) ପ୍ରଭୃତି ଅନୁଷ୍ଠାନଗୁଡ଼ିକ ଜନ୍ମ ଗ୍ରହଣ କରି ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚନା ଓ ବିକାଶରେ ଯଥେଷ୍ଟ ସହଯୋଗ କରିଥିଲେ । କଟକର ଏହି ସାଂସ୍କୃତିକ ଅନୁଷ୍ଠାନରେ ଯେଉଁମାନେ ଅଂଶଗ୍ରହଣ କରୁଥିଲେ, ସେମାନେ ହେଲେ ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, ଜଗମୋହନ ରାୟ, କପିଳେଶ୍ୱର ବିଦ୍ୟାଭୂଷଣ, ଚତୁର୍ଭୁଜ ପଟ୍ଟନାୟକ, ନିମାଇବଲ୍ଲଭ ପଟ୍ଟନାୟକ, ରାଧାନାଥ ରାୟ, ମଧୁସୂଦନ ରାଓ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ଶ୍ୟାମସୁନ୍ଦର ନନ୍ଦ, ମୃତ୍ୟୁଞ୍ଜୟ ରଥ, ଗୋପାଳବଲ୍ଲଭ ଦାସ, ମୋହିନୀମୋହନ ସେନାପତି ପ୍ରଭୃତି ମନୀଷୀଗଣ । ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତି ପ୍ରତିଷ୍ଠା ମୂଳରେ ଏମାନଙ୍କର ନାମ ସର୍ବାଗ୍ରେ ସ୍ମରଣୀୟ । ବିଶେଷ କରି କଟକରୁ ପ୍ରକାଶିତ ୧୮୯୭ରେ ବିଶ୍ୱନାଥ କରଙ୍କ "ଉତ୍କଳ ସାହିତ୍ୟ" ଓ ବିଂଶ ଶତକର ପ୍ରଥମ ଦଶକରେ ଆତ୍ମପ୍ରକାଶ କରିଥିବା ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ପତ୍ରିକା ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟିରେ ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରିଥିଲେ । ବିଂଶ ଶତାବ୍ଦୀର ଉତ୍ତର ଭାଗରେ ପ୍ରକାଶିତ 'ସହକାର', ଜହ୍ନମାମୁଁ, ଯୁଗବାଣୀ, ଆଧୁନିକ, ବାରୁଣୀ, ନବଭାରତ, ଆରତି ଏବଂ ସ୍ୱାଧୀନତା ପରବର୍ତ୍ତୀକାଳରେ ସାହିତ୍ୟ ପତ୍ରିକା ଝଙ୍କାର, ମନପବନ, ଜୀବନ ରଙ୍ଗ, ସତ୍ୟବାଦୀ. ଡଗର, ମୀନାବଜାରପ୍ରଭୃତି ବହୁ ପତ୍ରିକାର ନାମ ସ୍ମରଣ କରାଯାଇପାରେ । ଆଧୁନିକ ସାହିତ୍ୟର ଇତିହାସରେ ରାଧାନାଥ ଯୁଗ, ସତ୍ୟବାଦୀ, ସବୁଜ ଓ ଆଧୁନିକ ଗୋଷ୍ଠୀର ସାହିତ୍ୟ ଅବଦାନ ଏବଂ ସ୍ୱାଧୀନତା ପରବର୍ତ୍ତୀ ଅତ୍ୟାଧୁନିକ ସାହିତ୍ୟର ଭୂୟୋବିକାଶ ଏବଂ ପ୍ରାଣ ପ୍ରତିଷ୍ଠା ଏହି ପତ୍ରିକାମାନଙ୍କ ନେତୃତ୍ୱ ବଳରେହିଁ ସମ୍ଭବ ହୋଇଥିଲା । ଏ ଯୁଗର ଓଡ଼ିଆ ସାହିତ୍ୟରେ ଭାବ ବିପ୍ଳବଜନିତ ଯେତେଗୁଡ଼ିଏ ପରୀକ୍ଷା ଏବଂ ଐଶ୍ୱର୍ଯ୍ୟର ପ୍ରତିଷ୍ଠା ସମ୍ଭବ ହୋଇଛି, ସେ ସବୁ କେବଳ କଟକରୁ ପ୍ରକାଶିତ ଏହି ସ୍ୱନାମଧନ୍ୟ ସାହିତ୍ୟ ପତ୍ରିକା ଜରିଆରେ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିପାଇଁ ଅବଶ୍ୟ କଟକରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ରର ସାହିତ୍ୟ ବିଭାଗ କେତେକ ପରିମାଣରେ ସାହାଯ୍ୟ କରିଛନ୍ତି ବୋଲି ସ୍ୱୀକାର କରିବାକୁ ହେବ ।

## କଟକ ଓ ପ୍ରକାଶନ ସଂସ୍ଥା :

ବହୁକାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ତାଳପତ୍ର ପୋଥି ଗର୍ଭରେ ଲିପିବଦ୍ଧ ହୋଇ ଚାଲି ଆସିଥିଲା । ଊନବିଂଶ ଶତାବ୍ଦୀରେ ମୁଦ୍ରାଯନ୍ତ୍ର ଓ ସାମୟିକ ପତ୍ରର ଅଭ୍ୟୁଦୟ ପରେ ପୁସ୍ତକ ପ୍ରକାଶନ ପାଇଁ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କରାଯାଇଥିଲା । ଉତ୍କଳ ସାହିତ୍ୟ ପ୍ରେସ, ମୁକୁର ପ୍ରେସ, ଅରୁଣୋଦୟ ପ୍ରେସ ଏବଂ ସାରସ୍ୱତ ପ୍ରେସ ପ୍ରଭୃତି

ଏକଦା ବହୁ ପୁସ୍ତକର ପ୍ରକାଶକ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ତେବେ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ପରେ କଟକ ହେଲା ଓଡ଼ିଆ ପୁସ୍ତକ ପ୍ରକାଶନ ସଂସ୍ଥାର କେନ୍ଦ୍ରସ୍ଥଳୀ ଏବଂ ଓଡ଼ିଶାର ପ୍ରମୁଖ ପ୍ରକାଶନ ସଂସ୍ଥା କଟକରୁ ହିଁ ନିଜର ବ୍ୟବସାୟ ପରିଚାଳନା କରି ଆସୁଅଛନ୍ତି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରକାଶ ଦିଗରେ ଏବେସୁଦ୍ଧା କଟକ ନଗରୀ ନିଜର ଐତିହାସିକ ଭୂମିକା ନିର୍ବାହ କରିବାରେ ଲାଗିପଡ଼ିଅଛି ।

## କଟକ ଓ ଉତ୍କଳ ସାହିତ୍ୟ ସମାଜ :

ଊନବିଂଶ ଶତାବ୍ଦୀର ଶେଷଭାଗରୁ ଆଜି ପର୍ଯ୍ୟନ୍ତ ଆଞ୍ଚଳିକ ଭିତ୍ତିରେ ବାଲେଶ୍ୱର, ବାରିପଦା, ଖଡ଼ିଆଳ, ପାରଳାଖେମୁଣ୍ଡି, ବାମଣ୍ଡା, ଶିକଟୀ, ବ୍ରହ୍ମପୁର ପ୍ରଭୃତି ବହୁ ସ୍ଥାନରେ ସାହିତ୍ୟ ଅନୁଷ୍ଠାନ ଗଠିତ ହୋଇ ସାହିତ୍ୟ ଆଲୋଚନା ଏବଂ ସାଂସ୍କୃତିକ ଜାଗରଣ ପାଇଁ ଉଦ୍ୟମ ହୋଇଥିଲେହେଁ ତାହା ସାମଗ୍ରିକ ଭାବରେ ସମଗ୍ର ପ୍ରାକୃତିକ ଉତ୍କଳରେ ପ୍ରଭାବ ବିସ୍ତାର କରିପାରି ନାହିଁ । ବର୍ତ୍ତମାନ ମଧ୍ୟ ଭୁବନେଶ୍ୱର, ରାଉରକେଲା, କେନ୍ଦୁଝର ପ୍ରଭୃତି ବହୁ ସ୍ଥାନରେ ଅନେକ ନୂତନ ସାହିତ୍ୟ ଅନୁଷ୍ଠାନ କାର୍ଯ୍ୟ କରୁଥିବାର ଜଣାଯାଇଛି । କିନ୍ତୁ ୧୯୦୩ ସାଲରୁ ପ୍ରତିଷ୍ଠିତ ଉତ୍କଳ ସାହିତ୍ୟ ସମାଜ କେବଳ କଟକର ନୁହେଁ, ଓଡ଼ିଶାର ସର୍ବପ୍ରାଚୀନ ଏବଂ ସର୍ବମାନ୍ୟ ସାହିତ୍ୟ ଅନୁଷ୍ଠାନ, ଯାହାର ପବିତ୍ର ଛତ୍ରତଳେ ଯୁଗଯୁଗ ଧରି ଓଡ଼ିଶାର ସର୍ବାଞ୍ଚଳର ସାରସ୍ୱତ ସାଧକମାନେ ଏକାଠି ହୋଇ ସାଂସ୍କୃତିକ ଓ ସାହିତ୍ୟିକ ଆନ୍ଦୋଳନରେ ଅଂଶଗ୍ରହଣ କରି ନିଜକୁ ସୌଭାଗ୍ୟବାନ ମନେ କରିଛନ୍ତି । ବର୍ତ୍ତମାନ ଓଡ଼ିଶାର ସାଂସ୍କୃତିକ ଆନ୍ଦୋଳନରେ କଳାବିକାଶ କେନ୍ଦ୍ର, ନ୍ୟାସନାଲ ମିଉଜିକ୍ ଆସୋସିଏସନ, ଆକାଶବାଣୀ, ଦୂରଦର୍ଶନ କେନ୍ଦ୍ର, ବାସନ୍ତୀପେଣ୍ଡାଲ, ଆର୍ଟ ଥିଏଟର, ଅନ୍ନପୂର୍ଣ୍ଣା ଥିଏଟର, ଓଡ଼ିଶା ଥିଏଟର, ଜନତା ରଙ୍ଗମଞ୍ଚ, କଳାଶ୍ରୀ ଥିଏଟର ପ୍ରଭୃତି ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛନ୍ତି । ତେଣୁ ଐତିହାସିକ କଟକ ନଗରୀ ହେଉଛି ଓଡ଼ିଆ ଜାତୀୟ ଜୀବନର ମୂଳ ଉତ୍ସ, ଯାହାକୁ ଉପେକ୍ଷା କରି ଓଡ଼ିଆ ସଂସ୍କୃତି ସାହିତ୍ୟର ଇତିହାସ କଳ୍ପନାତୀତ ।



# ଓଡ଼ିଆ ସାହିତ୍ୟରେ କଟକ ନଗରୀର ସ୍ଥାନ

ସବିତା ରାଣୀ ମଲ୍ଲିକ

ସାହିତ୍ୟିକ ସାହିତ୍ୟ ସଂସାର ଗଢ଼େ । ତାର ମଧ୍ୟରେ ସେ ପାତ୍ର-ପାତ୍ରୀ ସ୍ଥାନର ସଂସ୍ଥାପନ କରିଥାଏ । ସାହିତ୍ୟରେ ଘଟଣା ସ୍ଥାନ-ନିର୍ଭରଶୀଳ, କାରଣ ଘଟଣା ସହିତ କାଳ ଓ ସ୍ଥାନର ସମ୍ପର୍କ ଅଭେଦ୍ୟ । ଏହି ହେତୁ ଚରିତ୍ର ସହିତ ସ୍ଥାନର ସମ୍ପର୍କକୁ ମନୋରମ, ଜୀବନ୍ତ ବାସ୍ତବ କରିବାକୁ ଯାଇ ସାହିତ୍ୟିକ ତା'ର ରୁଚିକର ଓ ପରିଚିତ ସ୍ଥାନର ରୂପାୟନ କରିଥିବାର ଲକ୍ଷ୍ୟ କରାଯାଇଥାଏ । ଏହାକୁ ସାହିତ୍ୟିକର ଦେଶପ୍ରୀତିର ଅନ୍ୟତମ ଲକ୍ଷଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସଂସ୍କୃତ ସାହିତ୍ୟକୁ ଅବଲୋକନ କଲେ କାଶୀ, ପାଟଳୀପୁତ୍ର, ଅଯୋଧ୍ୟା, ବାରଣାସୀ ଇତ୍ୟାଦି ପ୍ରାଚୀନ ନଗରୀମାନଙ୍କର ବର୍ଣ୍ଣନା ପାଇଲା ବେଳେ ଓଡ଼ିଆ ସାହିତ୍ୟରେ ଅନୁରୂପ ଭାବରେ ଯାଜନଗ୍ର, ଶ୍ରୀକ୍ଷେତ୍ର, ଚଉଦ୍ୱାର, ବାରଣାସୀ କଟକର ବର୍ଣ୍ଣନା ସହିତ ଉକ୍ତ ନଗରବାସୀଙ୍କ ସମ୍ପର୍କରେ ସୂଚନା ପାଉ । ଓଡ଼ିଶାର ପ୍ରାଚୀନ ନଗରୀମାନଙ୍କ ମଧ୍ୟରୁ କଟକର ସ୍ଥାନ ଅନ୍ୟତମ । ଉକ୍ତ ନଗରୀର ପ୍ରତିଷ୍ଠା କେବେ ହୋଇଥିଲା ତାହା ଏବେ ମଧ୍ୟ ଏକ ଅମୀମାଂସିତ ପ୍ରଶ୍ନ ଜାଲ ମଧ୍ୟରେ ଆବଦ୍ଧ । ତେବେ ଏହାର ବୟସ ୧୦୦୦ ବର୍ଷରୁ କମ ନୁହେଁ ବୋଲି ଐତିହାସିକମାନେ ମତଦାନ କରନ୍ତି । ଉକ୍ତ ନଗରୀ ସମ୍ପର୍କରେ ସମ୍ୟକ୍ ସୂଚନା ମିଳେ ହୁଏନସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ । ଆନୁମାନିକ ଖ୍ରୀ: ଅ: ୬୩୮ରେ ହୁଏନସାଂ ଉକ୍ତ ଦେଶ ଭ୍ରମଣ କରି କେତୋଟି ନଗରୀ ଦେଖିଲେ । ଉକ୍ତ ନଗରୀମାନଙ୍କ ମଧ୍ୟରୁ କଳିଙ୍ଗ ନାମଧେୟ ଏକ ନଗରୀ ଥିଲା । ଐତିହାସିକମାନେ ଦାବି କରନ୍ତି ଯେ ଉକ୍ତ କଳିଙ୍ଗ ନଗରୀ ତତ୍କାଳୀନ କଳିଙ୍ଗର ରାଜଧାନୀ ଥିଲା ଓ ବର୍ତ୍ତମାନର କଟକ ନଗରୀ । ଏହା ପରେ ପ୍ରଥମ କରି ଓଡ଼ିଆ ସାହିତ୍ୟରେ ଉକ୍ତ ନଗରୀ ସମ୍ପର୍କରେ ସୂଚନା ପାଉ ସାରଳା ସାହିତ୍ୟରୁ । ଉକ୍ତ ଐତିହାସିକ କଟକ ନଗରୀ ବର୍ଣ୍ଣନା କେବଳ ଓଡ଼ିଆ ସାହିତ୍ୟ ନୁହେଁ ପରନ୍ତୁ ବଙ୍ଗଳା ଓ ସଂସ୍କୃତ ସାହିତ୍ୟରେ ପରିଲକ୍ଷିତ ହୋଇଥାଏ ।

କଟକ ଶବ୍ଦର ଆଭିଧାନିକ ଅର୍ଥ ହେଉଛି—ପର୍ବତର ନିତମ୍ବଦେଶ, ବଳୟ, ରାଜଧାନୀ, ପାଦଭୂଷଣ, ସେନାଛାଉଣି । 'କଟକ' ନଗରୀ କ୍ଷେତ୍ରରେ ରାଜଧାନୀ, ସେନାଛାଉଣି ଅର୍ଥଟି ଅଧିକ ଯୁକ୍ତିଯୁକ୍ତ । ଅତୀତରେ ଏହି ନଗରୀ ଓଡ଼ିଶାର ରାଜଧାନୀ ଓ ସେନା-ଛାଉଣି ଥିଲା । ଅଧୁନାତନ କଟକର ପ୍ରାଚୀନ ନାମ 'ବାରାଣସୀ କଟକ' ଥିଲା ବୋଲି ପ୍ରାଚୀନ ସାହିତ୍ୟ ଗ୍ରନ୍ଥମାନେ ପ୍ରମାଣ ଦିଅନ୍ତି ।

ଓଡ଼ିଆ ସାହିତ୍ୟର ଆଦିଯୁଗ ଯଦି ସାରଳା ସାହିତ୍ୟକୁ ଧରାଯାଏ ତେବେ ତତ୍କାଳୀନ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜଧାନୀ ଥିଲା କଟକ ଥିଲା ବୋଲି ସାରଳା ସାହିତ୍ୟ କହେ । ଏହି ନଗରୀର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ ସାରଳା ମହାଭାରତର ଆଦିପର୍ବରେ ନିମ୍ନୋକ୍ତ ପ୍ରକାର ବର୍ଣ୍ଣନା କରାଯାଇଛି—

"ଜମ୍ବୁଦ୍ୱୀପ ଭରତଖଣ୍ଡେ ଓଡ଼ୁରାଷ୍ଟ୍ର ମଣ୍ଡଳରେ
ଉତ୍ପଳେଶ୍ୱର ଲିଙ୍ଗ ଚିତ୍ରୋତ୍ପଳା ଦକ୍ଷିଣ କୂଳରେ ।
× × ×
କଳିକାଳ ଧ୍ୱଂସିଣ ଭୋଗେଣ କୋଟିପୂଜା,
ପ୍ରଳମ୍ବିତେ ଖଟଇଂ ଶ୍ରୀକପିଳେଶ୍ୱର ମହାରାଜା ।"

ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ବିରଚିତ "ସାରଳା ସାହିତ୍ୟରେ ଐତିହାସିକ ଚିତ୍ର" ପୁସ୍ତକରେ ମତ ଦେଇଛନ୍ତି ଯେ ଉପରୋକ୍ତ ଉତ୍ପଳେଶ୍ୱର ଲିଙ୍ଗ ଅବସ୍ଥିତ ହେଉଛି—କଟକର ସର୍ବପ୍ରାଚୀନ ଶୈବପୀଠ ଉଡ଼ଗଡ଼ିଆ ମନ୍ଦିରର ଲିଙ୍ଗ; ଯାହାର ଚିତ୍ରୋତ୍ପଳା ନଦୀ ବା ସାମ୍ପ୍ରତିକ ମହାନଦୀର ଦକ୍ଷିଣ ପାର୍ଶ୍ୱରେ । ଉକ୍ତ ମନ୍ଦିରର ଅନତି ଦୂରରେଗଜପତି କପିଳେନ୍ଦ୍ରଦେବ ବାରବାଟୀ ଦୁର୍ଗରେ ଅବସ୍ଥାନ କରୁଥିଲେ ବୋଲି ପ୍ରତାପରୁଦ୍ର ଦେବଙ୍କ ରଚିତ ସଂସ୍କୃତ କାବ୍ୟ 'ସରସ୍ୱତୀ ବିଳାସ'ରେ ବର୍ଣ୍ଣିତ ହୋଇଛି—

ଅତୀତରେ ଗଙ୍ଗବଂଶ ସୂର୍ଯ୍ୟବଂଶ, ଭୋଇବଂଶ, କେଶରୀବଂଶର ନୃପତିଗଣ ଓଡ଼ିଶାରେ ରାଜତ୍ୱ କରୁଥିଲେ । ଏମାନଙ୍କର ରାଜଧାନୀ ଏଇ କଟକ ନଗରୀ ଥିଲା । ମାଦଳାପାଞ୍ଜିରେ କଟକ ନଗରୀ ସ୍ଥାପନ, ସେତୁବନ୍ଧ ନିର୍ମାଣ, ଲାଲବାଗ କରେଣ୍ଟି ପ୍ରତିଷ୍ଠା ଇତ୍ୟାଦି ସମ୍ପର୍କରେ ବହୁ ବର୍ଣ୍ଣନା ପରିଲକ୍ଷିତ ହୁଏ । ଏକଦା ଅନଙ୍ଗଭୀମଦେବ ମହାନଦୀ ପାର ହୋଇ ଉକ୍ତ ମାଟିରେ ପାଦଦେଇ ଦେଖିଛନ୍ତି ଶାମଳ ପକ୍ଷୀକୁ ବଗ ମାଡ଼ିବସିଛି । ଏ ଦୃଶ୍ୟ ଦେଖି ଭାବିଥିଲେ ଯେ ଏହା ହିଁ ହେଉଛି ବୀରଭୂମି, ତେଣୁ ଏଠାରେ ତାଙ୍କର ରାଜଧାନୀ ସ୍ଥାପନ କରିବାକୁ ମନସ୍ଥ କରିଥିଲେ । ଏହା ମାଦଳାପାଞ୍ଜିର ରାଜଭୋଗ ପ୍ରଥମ ଭାଗରେ ବର୍ଣ୍ଣିତ ହୋଇଛି । "ଏ ଦୁଇ ଅନଙ୍ଗ ଭୀମଦେବ ହୋଇଲେ । ଏ ରାଜା ନଗର ଚଉଦୁଆରେ କଟକେ ବିଜେ କରିଥାନ୍ତି । ଏମନ୍ତରେ ଏକ ଦିନରେ ରଜାଏ ବିଜେ କରି ଆସି ମହାନଦୀ ପାର ହୋଇ ଏ ନଦୀର ଦକ୍ଷିଣତୀରେ ଦେଖିଲେ

କୋଦଣ୍ଡା ଦଣ୍ଡପାଟର ବାରବାଟୀ ଗ୍ରାମରେ ବିଶେଶ୍ୱର ଦେବଙ୍କର ସନ୍ନିଧେ ଶାମଳ ପକ୍ଷୀକ ବଗ ମାଡ଼ିବସିଛି । ଏହା ଦେଖି ରଜାଏ ବଡ଼ ଆଶ୍ଚର୍ଯ୍ୟ ପାଇ ଶୁଭଯୋଗ ଦିନରେ ଏ ବାରବାଟୀ ଗ୍ରାମରେ ଶୁଭଦେଇ ନଅର ତୋଳାଇ କଟକ କରି ଏ କଟକ ନାମ ବାରାଣସୀ କଟକ ବୋଲି ନାମ ଦେଇ ନଗର ଚଉଦ୍ୱାର କଟକ ଛାଡ଼ିଆସି କଟକ କରି ରହିଲେ ।"

ମର୍କତକେଶରୀଙ୍କ ଦ୍ୱାରା କଟକଚଣ୍ଡୀ ମନ୍ଦିର ପ୍ରତିଷ୍ଠା ହୋଇଥିଲା ବୋଲି ମାଦଳାପାଞ୍ଜିକାର ଉଲ୍ଲେଖ କରିଛନ୍ତି ନିମ୍ନୋକ୍ତ ପ୍ରକାରେ—ଏଉତ୍ତାରୁ ମର୍କତକେଶରୀ ରାଜା ରାଜ୍ୟ କଲେ । ଏ ରାଜ୍ୟ ମହାନଦୀ ଭିତରେ ବାରବାଟି କଲା କଲେ । ଏ ରାଜ୍ୟ ବାରବାଟି ଦ୍ୱାରେ କଟକଚଣ୍ଡୀ କଲେ । ଆଗେ ବଜାର ବସାଇଲେ ।' [୨ୟ ପାଞ୍ଜି] ଏତଦ୍‌ବ୍ୟତୀତ ମର୍କତକେଶରୀଙ୍କ ଶଳା ଘଟକେଶରୀଙ୍କ ଦ୍ୱାରା ଲାଲବାଗ କଟେରୀ ଓ ମହାନଦୀ ପଥର ବନ୍ଧ ନିର୍ମିତ ହୋଇଥିବାର ମାଦଳାପାଞ୍ଜିରେ ବର୍ଣ୍ଣିତ ହୋଇଛି ନିମ୍ନୋକ୍ତ ଭାବେ—[୨ୟ ପାଞ୍ଜି] 'ମର୍କତ କେଶରୀଙ୍କ ପରେ ଘଟ କେଶରୀ ରାଜା ରାଜ୍ୟ କଲେ । ଏ କଟକରେ [ଲାଲବାଗ] କଟେରୀ କଲେ । ଏ ରାଜାଙ୍କ ଶଳା ନବଘନ ସିଂହ ରାଏ ରାଜାଙ୍କୁ କହିଲେ 'ବଡ଼ କୀର୍ତ୍ତି କଲ । ତହିଁକି ରାଜା କହିଲେ ତୁମ୍ଭେ କିଛି କୀର୍ତ୍ତି କର । ତହିଁକି ସେ କହିଲେ, ତୁମ୍ଭ ଖାନବରରୁ କିଛି ଟଙ୍କା ନେଇ ପର୍ବତ ଉପରେ ଦେଉଳ ତୋଳାଇଲେ । ତହୁଁ କିଛିଦିନ ଗଲା ଉତ୍ତାରୁ ରାଜା କହିଲେ ତୁମ୍ଭ କୀର୍ତ୍ତି ଦେଖାଅ । ସେଠାରୁ ରାଜାଙ୍କୁ ସେ କୀର୍ତ୍ତି ଦେଖାଇଲେ । ରାଜା ଦେଖିଲେ ପର୍ବତ ଉପରେ ଦେଉଳ ତୋଳା ହୋଇଛି । ତହିଁକି ରାଜା 'ଗାଣ୍ଡି ଆଭଣ୍ଡ, ବୋଲି ପଦ ଦେଲେ । ସେହିଦିନୁ 'ଗାଣ୍ଡି ଆଭଣ୍ଡ' ବୋଲି ପର୍ବତ ବୋଲାଇଲା । ସେଠାରୁ ନବଘନ ସିଂହେ ବଡ଼ ସଙ୍କୋଚ ପାଇଲେ । କଟକ ଦୁଇବାହି, ମହାନଦୀ ତଡ଼ା ପଥର ବନ୍ଧାଇଲେ । ସେ ଧୋଇ ନ ଯିବ ବୋଲି ତାହା ରାଜା ଦେଖି ହୃଷ୍ଟ ହେଲେ ।'

କପିଳେନ୍ଦ୍ର ଦେବଙ୍କ ଅନ୍ତେ ପୁରୁଷୋତ୍ତମ ଦେବ ଦାକ୍ଷିଣାତ୍ୟ ଜୟ କରି ରତ୍ନସିଂହାସନ ସହ କାଞ୍ଚନେମା ପଦ୍ମାବତୀଙ୍କୁ ଏଇ କଟକ ନଗରୀକୁ ନେଇ ଆସିବାର ସୂଚନା ପ୍ରଦାନ କରେ ଚଇନ୍ ଚକଡ଼ା ପୋଥକ ଓ ପୁରୁଷୋତ୍ତମ ଦାସଙ୍କ କାଞ୍ଚିକାବେରୀ କାବ୍ୟ । ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ଉତ୍କଳର ରାଜଧାନୀ ଏଇ କଟକ ନଗରୀ ଥିବାର ଚଇନ୍ ଚକଡ଼ା, ଚୈତନ୍ୟଭାଗବତ ଓ ଚୈତନ୍ୟ ଚରିତାମୃତରୁ ସୂଚନା ମିଳେ । ଚଇନ୍ ଚକଡ଼ାରେ ପ୍ରତାପରୁଦ୍ରଦେବଙ୍କ ରାଜଧାନୀ ଏଇ କଟକ ନଗରୀ ଥିବାର ସୂଚନା ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଛି—"ପ୍ରତାପରୁଦ୍ର ଦେବ ମହାରାଜାଙ୍କ ୧୫ ଅଙ୍କ କନ୍ୟା ୧୦ ଦିନ ଶୁକ୍ଳ ସପ୍ତମୀ ବୁଧବାର ନବଦୁର୍ଗା ମହୋତ୍ସବ ରାତ୍ରରେ । କଟକ ବାରବାଟି ନଗରରେ ରାଜ୍ୟ ଥିଲା ସମୟରେ ଏକ ଦିନ ରାତ୍ରିରେ ଛଦ୍ମବେଶରେ ଅନ୍ଧାରି-ବାଜେ କରିଥିବା ବେଳେ ଉଗରପଡ଼ା ନିବାସୀ ଏକ ବ୍ରାହ୍ମଣଙ୍କୁ କାନ୍ଦି କାନ୍ଦି ଯାଉଥିବାର ଦେଖି ତାକୁ ତହିଁର କାରଣ ପଚାରିବାରୁ ସେ କହିଲା କି ମୋ ଦୁଃଖ କେହି ନ ଶୁଣିବାରୁ

କାନ୍ଦୁଅଛି ।” ଏଇ ସେଇ କଟକ ନଗରୀ ଯାହାର ବକ୍ଷରେ ଆଜି ମଧ୍ୟ ଚୈତନ୍ୟ ଦେବଙ୍କ ପଦଧୂଳି ମିଶି ରହିଛି । ଖ୍ରୀ. ୧୫୦୯ରେ ଚୈତନ୍ୟଦେବ ଓଡ଼ିଶା ଆଗମନ କରିଥିବାର ସୂଚନା କହ୍ନାଇ ଖୁଣ୍ଟିଆଙ୍କ ମହାଭାବ ପ୍ରକାଶ, ମାଧବ ପଟ୍ଟନାୟକଙ୍କ ଚୈତନ୍ୟ ବିଳାସ, ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତ ଏବଂ ବଙ୍ଗଳା ଭାଷାରେ ରଚିତ ଶ୍ରୀଚୈତନ୍ୟ ଚରିତାମୃତ, ଚୈତନ୍ୟ ମଙ୍ଗଳ କାବ୍ୟରୁ ମିଳିଥାଏ । ଚୈତନ୍ୟ ଦେବ ଓଡ଼ିଶା ଆଗମନ କରି କଟକର ଯେଉଁ ସ୍ଥାନରେ ପାଦ ଥାପି ଥାପି ଭାବବିହ୍ୱଳ ହୋଇ ଗଡ଼ି ଯାଇଥିଲେ, ସେହି ପବିତ୍ରତାର ସ୍ମାରକୀ ରୂପେ ଆଜି ମଧ୍ୟ ଗଡ଼ଗଡ଼ିଆ ମନ୍ଦିର ବିଦ୍ୟମାନ । ଏହିଠାରେ ପ୍ରତାପରୁଦ୍ର ଦେବ ଉତ୍କଳୀୟଙ୍କ ତରଫରୁ ଚୈତନ୍ୟଙ୍କୁ ସ୍ୱାଗତ ଜଣାଇଲେ । ଏ ସମ୍ପର୍କରେ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ନିମ୍ନୋକ୍ତ ପ୍ରକାରରେ ବର୍ଣ୍ଣନା କରାଯାଇଛି—

“ଏମନ୍ତ ଚୈତନ୍ୟ ଈଶ୍ୱର । ଅଇଲେ କଟକ ନଗର ॥
ମହାନଦୀରେ କରି ସ୍ନାନ । ସାକ୍ଷୀଗୋପାଳ ଦରଶନ ॥
ନିଜ ମୂରତି ଦେଖି ହରି । ଆନନ୍ଦେ ନୃତ୍ୟ ଗୀତ କରି ॥
ଯାହାର ମନ୍ତ୍ର ଉଚ୍ଚାରଣ । ସର୍ବ ଦେବତା ପାଇ ପ୍ରାଣ ॥
ସେ ପ୍ରଭୁ ଗୌରଙ୍ଗ ସୁନ୍ଦର । ଆପଣା ପ୍ରେମ ରସେ ଭୋର ॥

ଏହାର ଅନୁରୂପ ବର୍ଣ୍ଣନା ବଙ୍ଗଳାର ‘ଶ୍ରୀଚୈତନ୍ୟ ଚରିତାମୃତ’ ଗ୍ରନ୍ଥରୁ ମିଳିଥାଏ ; ତାହା ଏହିପରି—

“ଚଲିତେ ଚଲିତେ ଆଇଲା ଯାଜପୁର ଗ୍ରାମେ
ବରାହଠାକୁର ଦେଖି କରିଲ ପ୍ରଣାମେ ।”
× × ×
“କଟକ ଆଇଲା ସାକ୍ଷୀଗୋପାଳ ଦେଖିତେ
ଗୋପାଲ ସୌନ୍ଦର୍ଯ୍ୟ ଦେଖି ହେଲା ଆନନ୍ଦିତେ”

[ମଧ୍ୟଖଣ୍ଡ, ୫ମ ପରିଚ୍ଛେଦ]

ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ଏହି କଟକ ନଗରୀରେ ସାକ୍ଷୀଗୋପାଳ ଅବସ୍ଥାନ କରୁଥିଲେ । ସାକ୍ଷୀଗୋପାଳ ଦର୍ଶନ କରି ଚୈତନ୍ୟ ଦେବ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ଚୈତନ୍ୟଦେବ ଦାକ୍ଷିଣାତ୍ୟ ଭ୍ରମଣ ସାରି ପୁନଃ ଏଇ କଟକରେ ଅବସ୍ଥାନ କରି ଗୌଡ଼ ଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଶ୍ରୀଚୈତନ୍ୟ ଚରିତାମୃତରେ ଏହା ବର୍ଣ୍ଣିତ ହୋଇଛି ।

ଅନୁରୂପ ବର୍ଣ୍ଣନା ଚୈତନ୍ୟ ଭାଗବତରେ ମିଳିଥାଏ । ତାହା ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଛି—

"ଭୁବନେଶ୍ୱର ପ୍ରାନ୍ତେ ଆସି । କଟକ ନଗର ପ୍ରବେଶି ॥
ବିପ୍ର ଯେ ସ୍ୱପ୍ନେଶ୍ୱର ନାମ । ପ୍ରଭୁଙ୍କୁ କରି ନିମନ୍ତ୍ରଣ ॥
ଉଦ୍ୟାନେ ପ୍ରଭୁ ବାସ କରି । ସକଳ ଭକ୍ତଗଣ ଧରି ॥
ବକୁଳ ବୃକ୍ଷ ତଳେ ହରି । ବିଶ୍ରାମ କଲେ ମୁଦ ଭରି ॥
ପ୍ରତାପରୁଦ୍ର ଗଜପତି । ଆନନ୍ଦେ ଆସି ଶୀଘ୍ର ଗତି ॥"

ଚୈତନ୍ୟ ଦେବ ବିଶ୍ରାମ ନେଇଥିବା ଉଦ୍ୟାନ ଥିଲା ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ରାମାନନ୍ଦ ରାୟଙ୍କ ଉଦ୍ୟାନ । ଐତିହାସିକଙ୍କ ମତରେ କଟକ ଚଣ୍ଡୀରୋଡ଼ ମହମ୍ମଦିଆ ବଜାରର ପୂର୍ବ ପଟକୁ ଯେଉଁ ମନ୍ଦିର ଓ ବାମ୍ଫି ପରିଲକ୍ଷିତ ହୁଏ ତାହାହିଁ ହେଉଛି ତତ୍କାଳୀନ ଗଜପତି ରାଜାଙ୍କ ମନ୍ତ୍ରୀ ରାମାନନ୍ଦ ରାୟଙ୍କ ବାହସ୍ଥାନ ଓ ତନ୍ନିକଟବର୍ତ୍ତୀ ଉଦ୍ୟାନ । ବର୍ତ୍ତମାନ ମଧ୍ୟ ସେଠାରେ ଏକ ମନ୍ଦିର ରହିଛି ଯେଉଁଠି ଚୈତନ୍ୟ ମୂର୍ତ୍ତି ପୂଜାର ପ୍ରଚଳନ ଅଛି ।

ଚୈତନ୍ୟଙ୍କ ଓଡ଼ିଶା ଆଗମନର ସ୍ମାରକୀ ରୂପେ ଆଜି ମଧ୍ୟ ଗଡ଼ଗଡ଼ିଆ ମନ୍ଦିରରେ ଯେଉଁ ପ୍ରସ୍ତର ଫଳକ ଦୃଷ୍ଟିଗୋଚର ହୁଏ ତାହା ଚୈତନ୍ୟଙ୍କ ପାଦପଦ୍ମର ପ୍ରସ୍ତର ଫଳକ । ପୁନଃ ଐତିହାସିକଙ୍କ ମତରେ ତାହା ହେଉଛି ଚୈତନ୍ୟଙ୍କ ପରମ-ଭକ୍ତ ପ୍ରତାପରୁଦ୍ରଙ୍କ ସମାଧିପୀଠ । ଚୈତନ୍ୟଙ୍କୁ ବିଦାୟ ଜଣାଇଥିଲେ ଉତ୍କଳବାସୀଙ୍କ ତରଫରୁ ପ୍ରତାପରୁଦ୍ର ଦେବ ଏହି ଗଡ଼ଗଡ଼ିଆ ମନ୍ଦିର ନିକଟରେ । ଅତ୍ୟନ୍ତ ଦୁଃଖର ସହ ଚୈତନ୍ୟ ଦେବଙ୍କୁ ବିଦାୟ ଜଣାଇଥିଲେ । ଚୈତନ୍ୟ ଦେବଙ୍କୁ ମନେ ରଖିବା ପାଇଁ ଶେଷଜୀବନ ପର୍ଯ୍ୟନ୍ତ ସେ ଏହିଠାରେ ସ୍ନାନ କରୁଥିଲେ ଓ ତାଙ୍କ ମୃତ୍ୟୁପରେ ଏହିଠାରେ ସମାଧି ଦେବାକୁ ତାଙ୍କର ପାରିଷଦବର୍ଗଙ୍କୁ କହିଥିଲେ । ତାହା ଚୈତନ୍ୟ ଚରିତାମୃତରେ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଛି—

"ଏକ ନବ୍ୟ ନୌକା ଆନି ରାଖ ନଦୀତୀରେ ।
ତାହିଁ ସ୍ନାନ କରି ପ୍ରଭୁ ଯାବେନ ନଦୀପାରେ ।
ତାହିଁ ସ୍ତମ୍ଭ ରୋପଣ କର ମହାତୀର୍ଥ କରି ।
ନିତ୍ୟ ସ୍ନାନ କରିବ ତାହିଁ ତାହିଁ ଯେନ ମରି ।"

ତେଲେଙ୍ଗା ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ କଟକରେ ତାଙ୍କ ରାଜଧାନୀ ଅବସ୍ଥିତ ଥିବାର ସୂଚନା ମାଦଳାପାଞ୍ଜି, ଚଇନ ଟୀକଡ଼ା ଓ ଅଚ୍ୟୁତାନନ୍ଦଙ୍କ ଗରୁଡ଼ ଗୀତାରୁ ମିଳିଥାଏ । ମାଦଳାପାଞ୍ଜି ଓ ଗରୁଡ଼ ଗୀତାରେ ଉଲ୍ଲେଖ ଅଛି ଯେ, ମୁକୁନ୍ଦ ଦେବଙ୍କ ଯୋଜନାନୁସାରେ ବାରବାଟି ଦୁର୍ଗ ନୂତନ ଭାବେ ନିର୍ମିତ ହୋଇଥିଲା । ଗରୁଡ଼ ଗୀତାରେ ଲେଖାଯାଇଛି—

"ତେଲେଙ୍ଗା ମୁକୁନ୍ଦ ବୋଲି ଏକ ରାଜା
ଗଉଡ଼ ଦେଶରେ ହେବ ।
ବାରବାଟି କଲି ସେହି ଟୋକାଇବ,
ଖାରଡ ସେ ରଖିଯିବ ।"

ମାଦଳାପାଞ୍ଜିରେ ଉଲ୍ଲେଖ କରାଯାଇଛି ଯେ ତାଙ୍କ ରାଜତ୍ୱର ୧୦ମ ଅଙ୍କ ଅର୍ଥାତ୍ ଖ୍ରୀ: ୧୫୬୭ରେ ଗଙ୍ଗା କଟକାଇ କରିଥିଲେ । ଏହା ରାଜତ୍ୱର ୧୧ ଅଙ୍କରେ କଟକର ବାରବାଟି ଦୁର୍ଗ ମୁସଲମାନ ଶାସକଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ଚଇନ ଚକଡ଼ା ପୋଥିରେ ମୁସଲମାନ ଶାସକଙ୍କ ଦ୍ୱାରା ଓଡ଼ିଶା ଆକ୍ରମଣରେ ଚିତ୍ର ଏହିପରି ଲିପିବଦ୍ଧ ହୋଇଛି—'ତେଲେଙ୍ଗା ମୁକୁନ୍ଦ ଦେବଙ୍କ ୧୧ଅଙ୍କ ବସ୍ତୁ ମାସରେ ଓଡ଼ିଶା ରାଜ୍ୟ ଭୁଡ଼ୁକାଣ ହେଲା । ପରମେଶ୍ୱରଙ୍କୁ ଜଗମୋହନ ଯାତ୍ରା କରି ରଜା ଗଉଡ଼ ଉପରକୁ ଗଙ୍ଗା କଟକାଇ କରିଥିଲେ । ଏଥିରେ ଶୀଖି ମହାପାତ୍ର ଓ ମନାଇ ମହାପାତ୍ର ଓଡ଼ିଶା ଉକଳି ଗୌଡ଼ ବାଦଶାହଙ୍କ ସଙ୍ଗରେ ସୁବା କଳାପାହାଡ଼କୁ ଘେନି ବଣବାଟେ କଟକ ମାଇଲେ । ରଜାଙ୍କ କୁଟୁମ୍ବଙ୍କୁ ବନ୍ଦୀକଲେ । [ପୃ-୪] ଖ୍ରୀ: ୫୬୮ରେ ଗୋହିରା ଟିକିରି-ଠାରେ ମୁକୁନ୍ଦଦେବଙ୍କୁ ହତ୍ୟା କରାଯାଇଛି । ଏହାପରେ ଓଡ଼ିଶାର ଭୌଗୋଳିକ ଅବସ୍ଥିତି ସୀମା ସଙ୍କୁଚିତ ହୋଇଯାଇଛି ।

ତତ୍କାଳୀନ ପରାଧୀନ ଉତ୍କଳର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ ବହୁ ତଥ୍ୟ ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ' କାବ୍ୟରୁ ମିଳିଥାଏ ଓ ଓଡ଼ିଶାର ଯେଉଁ ସଙ୍କୁଚିତ ରୂପଟି ଥିଲା ଦୀନକୃଷ୍ଣଙ୍କ ଲେଖନୀମୁଖରେ ସେ ଶେଷଦେବ ରୂପରେ ଉଦ୍ଭାସିତ ହୋଇଛି । ଓଡ଼ିଶା ରୂପୀ ଶେଷଦେବଙ୍କ କଟିମେଖଳା ରୂପେ ଶୋଭିତ ହୋଇଛି କଟକ ନଗରୀ । କଟକ ନଗରୀର ଅବସ୍ଥିତି ଓ ଶୋଭା ଦୀନକୃଷ୍ଣ ରସକଲ୍ଲୋଳରେ ଏହିପରି ବର୍ଣ୍ଣନା କରିଛନ୍ତି—

"କଟକ ସ୍ଥଳ ଦିବ୍ୟ ମଧ୍ୟ
କଟୀ ମେଖଳା ବୋଲି କହି ।"

ଖ୍ରୀ: ୧୭୫୧ରେ ଓଡ଼ିଶାରେ ମରହଟ୍ଟା ଶାସନ ଆରମ୍ଭ ହୋଇଥିଲା । ଖ୍ରୀ: ୧୮୦୩ରେ ଇଂରେଜମାନେ ସମଗ୍ର ଓଡ଼ିଶା ମରହଟ୍ଟାମାନଙ୍କ ଠାରୁ ଦଖଲ କରି ନେଇଥିଲେ । ଖ୍ରୀ:୧୭୬୫ରେ ଗଞ୍ଜାମ ଜିଲ୍ଲା ଇଂରେଜମାନେ ଅଧିକାର କରିନେଇ ଥିଲେ ହେଁ ଓଡ଼ିଶାର ମୁଖ୍ୟ ଶାସନ କେନ୍ଦ୍ର କଟକକୁ ଅଧିକାର କରିଥିଲେ ଖ୍ରୀ:୧୮୦୩ ଅକ୍ଟୋବର ୮ ତାରିଖରେ । ତତ୍କାଳୀନ ମରହଟ୍ଟା ଶାସକ ବାଲଜି ବାରବାଟି ଦୁର୍ଗରେ ଅବସ୍ଥାନ କରୁଥିଲେ । ଏହି ଦୁର୍ଗ ଅଧିକାର କରିବା ନିମନ୍ତେ କର୍ଣ୍ଣେଲ ହାର୍କୋର୍ଟ ଇଂରେଜ ସୈନ୍ୟଙ୍କୁ ଆଦେଶ ଦେଇଥିଲେ । ଅପର ପକ୍ଷରେ ବାଲଜି ଦେଶୀୟ ସୈନ୍ୟମାନଙ୍କୁ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇଥିଲେ । ଏହି ନଗରୀ ଅଧିକାରକୁ ନେଇ ଖ୍ରୀ:୧୯୦୧ରେ ଭିକାରୀଚରଣ ପଟ୍ଟନାୟକ 'କଟକ ବିଜୟ' ନାମକ ନାଟକ ରଚନା

କରିଥିଲେ । ବାଲଜି କର୍ନଫ୍ଲ୍ୟୁରଙ୍କ ଯୁଦ୍ଧ ଆଦେଶକୁ ନାଟ୍ୟକାର ଭିକାରୀଚରଣ ନାଗରୀର ମୁଖରେ ଲୁହାଇଛନ୍ତି ଏହିପରି—

"ବାଲ୍‌ଜିଙ୍କ ଅନୁମତି,
ଏ ଗାଆଁରେ ଯେତେକ ପାଇକ
କାଲି ଦିନ ଛଅ ଘଡ଼ି ବେଳେ
ଘେନି ନିଜ ହାତ ହତିଆର
ମିଳିବ ସକଳେ ଯାଇ କଲ୍ଲା ପଡ଼ିଆରେ ।
ଯେ ଏଥି କରିବ ହେଳା,
ସନ୍ଧ୍ୟା ନ ହେଉଣୁ କାଲି
ବାଲବଛା ସହ ତାର ଛେଦ ହେବ ଗଳା ।"

[ କ ବ ପୃ. ୪୩ ]

ଯୁଦ୍ଧ କଥାଶୁଣି ଦେଶୀୟ ପାଇକଙ୍କ ମଧ୍ୟରେ କୋକୁଆ ଭୟ ଦେଖାଦେଇଛି । ଭୀତତ୍ରସ୍ତ ହୋଇ କହିଛନ୍ତି—

୪ର୍ଥ ପାଇକ—"ଶତରେ ଫିରିଙ୍ଗି ବଛା ଧଳା ଧଳା ଚମ
ଦେଖିବାକୁ ସଣ୍ଡା ସଣ୍ଡା ଗୋଟା ଗୋଟା ଯମ,
ଗୋଡ଼ଠାରୁ ମୁଣ୍ଡ ଯାଏ ପୁଣି ହତିଆର
ପୁରା ହୋଇଛନ୍ତି ସଂଖ୍ୟା ନାହିଁରେ ତାହାର,
ଖାଇବାକୁ ରୁଟି ଡିମ ଆଉରେ ମାଉଁସ,
ପଖାଳିଆ ଆମେ ଯାଇ କରିବା ବା କିସ ?
ଦେଖିଲେ ତ ଆଗେ ଥରହର କମ୍ପିଯିବ
ମରିବାକୁ ତାଙ୍କ ସଙ୍ଗେ କିଏ ବା ଲଢ଼ିବ ।"

[ କ. ବ. ପୃ. ୪୮ ]

ଦେଶୀୟ ପାଇକମାନଙ୍କ ମଧ୍ୟରୁ ଅନେକେ ପଳାୟନ କରିଛନ୍ତି । ଯେଉଁ କେତେଜଣ ପାଇକ ଇଂରେଜ ସୈନ୍ୟଙ୍କ ବିରୁଦ୍ଧରେ ଲଢ଼ିଛନ୍ତି ଅବଶେଷରେ ହାରିଛନ୍ତି । ଯୁଦ୍ଧରେ ପରାଜିତ ହୋଇଛନ୍ତି ବାଲଜି ଏବଂ ତାଙ୍କର ରାଣୀ ଅଗ୍ନିରେ ଝାସ ଦେଇଛନ୍ତି । ଖ୍ରୀ: ୧୮୦୪ରେ ସମଗ୍ର ଓଡ଼ିଶା ଇଂରେଜ ଶାସନ ଭୁକ୍ତ ହୋଇଛି । ଏହାପରେ ଓଡ଼ିଶାର ହେଡ୍‌କ୍ୱାର୍ଟର୍ସ କଟକଠାରେ କରିଛନ୍ତି ଇଂରେଜ ଶାସକ । ଏହାପରେ ଏଠାରେ ଇଂରେଜମାନଙ୍କ ହାବ କଚେରୀ ସ୍ଥାପିତ ହୋଇଛି ।

ଖ୍ରୀ: ୧୮୬୬ରେ ଓଡ଼ିଶାରେ ଭୟଙ୍କର ନଅଙ୍କ ଦୁର୍ଭିକ୍ଷ ଦେଖାଦେଇଛି, ଯେଉଁଥିରେ ଓଡ଼ିଶାର ବହୁ ଜନ ଜୀବନ କ୍ଷୟ ହୋଇଛି । ଏହାପରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ଲୋପ କରିଦେବା ନିମନ୍ତେ ତତ୍କାଳୀନ ବଙ୍ଗୀୟ ସରକାରୀ କର୍ମଚାରୀମାନେ

ଚଳାନ୍ତି ଚଳାଇଛନ୍ତି । ତତ୍କାଳୀନ ଓଡ଼ିଶାର ଅର୍ଥନୀତି ତଥା ଭାଷା ଓ ସଂସ୍କୃତି ଉପରେ ଯେଉଁ ବିପତ୍ତି ପଡ଼ିଥିଲା ତହିଁରୁ ଉଦ୍ଧାର ପାଇବା ପାଇଁ ଓଡ଼ିଆଭାଷୀଙ୍କ ମଧ୍ୟରେ ନବ-ଜାଗରଣ ଦେଖା ଦେଇଥିଲା । ଏ ଦିଗରେ ଖ୍ରୀ:୧୮୬୬ରେ କମିଶନର ରେଭେନ୍ସାଙ୍କ ଉଦ୍ୟମରେ କଟକରୁ 'ଉତ୍କଳ ଦୀପିକା' ସାପ୍ତାହିକ ପତ୍ରିକା ଏହି ଅଭିଯାନର ନେତୃତ୍ୱ ନେଇଥିଲା ।

ବ୍ରିଟିଶ ସରକାର ନ'ଅଙ୍କ ଦୁର୍ଭିକ୍ଷ ପରେ ପରେ ଓଡ଼ିଆମାନଙ୍କର ଦାବିର ଯଥାର୍ଥତା ଅନୁଭବ କରି ଅର୍ଥନୈତିକ ବିକାଶ ନିମନ୍ତେ ରେଳରାସ୍ତା, ଜଳସେଚନର ପ୍ରସାର ନିମନ୍ତେ ଶିକ୍ଷାର ପ୍ରସାର ଦିଗରେ ଉଦ୍ୟମ କରିଥିଲେ ।

ଇଂରାଜୀ ଶିକ୍ଷାପ୍ରାପ୍ତ ହୋଇ ଦେଶସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ଥିଲା ତତ୍କାଳୀନ ମହାଜନ ଜମିଦାରମାନଙ୍କର ଅନ୍ୟତମ ଲକ୍ଷ୍ୟ । ଏହା ଫଳରେ କଟକରେ ପ୍ରତିଷ୍ଠିତ ହୋଇଥିବା ଇଂରାଜୀ ସ୍କୁଲ ଓ କଲେଜରେ କେବଳ ଧନାଢ୍ୟ ବ୍ୟକ୍ତିଙ୍କ ପୁତ୍ରମାନେ ପଢ଼ିବାକୁ ଆଗେଇ ଆସିଲେ ।

ଇଂରାଜୀ ଶିକ୍ଷାପ୍ରାପ୍ତ ହୋଇ ହୁଏତ କିଏ ଅମଲା ଭାବରେ କଚେରୀରେ ଯୋଗ ଦେଇଛି, କିଏ ବା ଇଂରାଜୀ ଶିକ୍ଷା ପ୍ରାପ୍ତ ବୋଲି ଆଡ଼ମ୍ବର ଦେଖାଇବାକୁ ଯାଇ ଇଂରେଜ-ମାନଙ୍କ ଭଳି ଚଳୁଛି । ଏହି ଇଂରାଜୀ ଶିକ୍ଷାର ପ୍ରଭାବ ପ୍ରତ୍ୟକ୍ଷତଃ କଟକ ବାସିନ୍ଦାଙ୍କ ଉପରେ ଅଧିକ ପଡ଼ିଥିବାର ତତ୍କାଳୀନ ସାହିତ୍ୟ ସୂଚାଇ ଦିଏ । ଫକୀରମୋହନ ସେନାପତିଙ୍କ 'ମାମୁଁ', 'ଛ' ମାଣ ଆଠଗୁଣ୍ଠ', 'ପ୍ରାୟଶ୍ଚିତ୍ତ' ଉପନ୍ୟାସ ଓ ଗଳ୍ପସ୍ୱଳ୍ପର କେତେକ ଗଳ୍ପରୁ ତତ୍କାଳୀନ କଟକବାସୀଙ୍କ ମନୋବୃତ୍ତି ସହ କଟକର ବିଭିନ୍ନ ସ୍ଥାନର ଅବସ୍ଥିତି ସମ୍ପର୍କରେ ବହୁ ବିବରଣୀ ମିଳିଥାଏ । କଟକର ଜଣାଶୁଣା ବହୁ ସ୍ଥାନର ବର୍ଣ୍ଣନା ତାଙ୍କ ସାହିତ୍ୟରୁ ମିଳେ, ଯଥା—ତୁଳସୀପୁର, ସାହେବଜାଦାବଜାର, ଦରଘା ବଜାର, ବକ୍ସି ବଜାର, ବାଖରାବାଦ, ଚେକ୍‌ବଜାର, କାଠଯୋଡ଼ି ପଥରବନ୍ଧ, ମାଣିକଘୋଷ ବଜାର ଓ କଟକ ଜେନେରାଲ ହସ୍‌ପିଟାଲ (ସଂପ୍ରତି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଭାବେ ପରିଚିତ) ଓଡ଼ିଆ ସାହିତ୍ୟର ପ୍ରଥମ ଉଚ୍ଚଶିକ୍ଷିତ ଚରିତ୍ର ଗୋବିନ୍ଦଚନ୍ଦ୍ର ଯିଏ 'ପ୍ରଥମେ କଟକ ମିଶନ ସ୍କୁଲରେ ପଢ଼ୁଥିଲେ ସେଠାରେ ମେଟ୍ରିକ୍ୟୁଲେଶନ ପାଶ କରି ଆସି ବର୍ତ୍ତମାନ କଲେଜରେ ପଢ଼ୁଛନ୍ତି ।' (ପ୍ରାୟଶ୍ଚିତ୍ତ ପୃ-୧୧) ଜାତିର ଗୌରବକୁ ବୃଦ୍ଧି କରିବାକୁ ହେଲେ ପ୍ରଥମେ ମାତୃଭାଷାକୁ ଉନ୍ନତ କରିବାକୁ ହେବ ବୋଲି ଗୋବିନ୍ଦଚନ୍ଦ୍ରଙ୍କ ଭଳି ଶିକ୍ଷିତ ଯୁବକମାନେ ଉପଲବ୍ଧି କରିଥିଲେ । ତେଣୁ 'କଟକ କଲେଜର ପିଲାମାନେ ମିଳି ଗୋଟିଏ ସଭା ସ୍ଥାପନ କରିଛନ୍ତି—ନାମ ଆଲୋଚନା ସଭା । ପ୍ରତିମାସ ପ୍ରଥମ ସପ୍ତାହ ଶନିବାର ସନ୍ଧ୍ୟା ସମୟରେ ସଭାର ଅଧିବେଶନ ହୁଏ । (ପ୍ରାୟଶ୍ଚିତ୍ତ ପୃ-୧୮) ପୁଣି ଏହି ଗୋବିନ୍ଦଚନ୍ଦ୍ର ହିଁ ପ୍ରଥମ ରୋଗୀ ଯିଏକି କଟକ ଜେନେରାଲ ହସପିଟାଲରେ ଚିକିତ୍ସିତ ହେବାକୁ ଆସିଛନ୍ତି

ପ୍ରସୂର୍ଣ୍ଣ ଓ ଉପନ୍ୟାସରେ । ଓଡ଼ିଆ ସାହିତ୍ୟର ପ୍ରଥମ ମହାକାବ୍ୟ ଗୃହକଥା ଚନ୍ଦ୍ର ମାମୁଁ ଉପନ୍ୟାସର ମୂଳସିଖାନାର ମୋହରର ଦାଶରଥି ଦାସ ତାଙ୍କ ପରେ ପ୍ରଥ ନଟବର ନାଜର ହୋଇଛି । ଓଡ଼ିଆ ଉପନ୍ୟାସର ପ୍ରଥମ ଦୋଷୀ ଭାବରେ ସାରଥା, ଭଗିଆ ଛ'ମାଣ ଆଠଗୁଣ୍ଠ ଉପନ୍ୟାସରେ ଆସିଛନ୍ତି ।

ଲୋକ ପ୍ରବଚନ ଅଛି—କଟକସହରର ୫୨ ବଜାର ୫୩ ଗଳି । ଏହି ପ୍ରବଚନକୁ ଫକୀରମୋହନ ମାମୁଁ ଉପନ୍ୟାସରେ ଚମ୍ପା ମୁଖରେ କୁହାଇଛନ୍ତି । ଏହାପରେ—'ହଁ, ହଁ, ସାନ୍ତାଣି, ମୁଁ ତ ସେଇ କଥା ଆଗରୁ ମନରେ କରିଥିଲି, ସାଙ୍ଗରେ ନଗଲେ ସେ ନୂଆ ମଣିଷ, ବାଟବଣା ହୋଇଯିବେ । ନ ଆଁ ଲଟା କଟକ ବାଟଗୁଡ଼ାକରେ ନୂଆ ମଣିଷକୁ ଭୁଆଁ ବୁଲାଏ ।''

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ଓଡ଼ିଆମାନେ ପାଶ୍ଚାତ୍ୟ ଶିକ୍ଷା ଓ ସାହିତ୍ୟର ସଂସ୍ପର୍ଶରେ ଆସିବା ଫଳରେ ସେମାନଙ୍କ ମଧ୍ୟରେ ଜାଗରଣ ଦେଖାଦେଇଛି । ଏହି ଜାଗରଣରେ ବାର୍ତ୍ତା ସମଗ୍ର ଓଡ଼ିଆଜାତି ପାଖରେ ପହଞ୍ଚାଇ ଦେବା ନିମନ୍ତେ ସାହିତ୍ୟିକ-ମାନଙ୍କ ପ୍ରଚେଷ୍ଟାକୁ ଅସ୍ୱୀକାର କରାଯାଇ ନ ପାରେ । ସେମାନଙ୍କ ମଧ୍ୟରୁ ରାଧାନାଥ ରାୟ ଅନ୍ୟତମ । ସେ ଏହି ପଙ୍ଗୁ ନିଷ୍ପ୍ରଭ ଓଡ଼ିଆ ଜାତିକୁ ଆହ୍ୱାନ ଦେଇ କଟକ ନଗରର ବାରବାଟି କଥା ସ୍ମରଣ କରି ଦେଉବାର କାବ୍ୟରେ ଲେଖିଛନ୍ତି—

'ଉତ୍କଳର ପୂର୍ବକୀର୍ତ୍ତି ସ୍ମୃତି-ପୂତ
ବାରବାଟି ଆଜ ସାଜେ ସର୍ଜ୍ଜୀଭୂତ,
ଐତିହାସିକ ଏ ଦୁର୍ଗ ବାରବାଟି
ବୀରରକ୍ତ ପିଣ୍ଡେ ଗଢ଼ା ଯାର ମାଟି ।'

ଯେଉଁ ବାରବାଟି ଏକଦା ଉତ୍କଳ ଗଜପତିମାନଙ୍କର ସେନାଗ୍ରଭର୍ଣ୍ଣା ଥିଲା, ସେଇଠି ଉତ୍କଳର ତଥାକଥିତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ଉପାଧି ଦେବା ନିମନ୍ତେ ଇଂରେଜ ସରକାର ଖ୍ରୀ· ୧୮୯୭ରେ ଉପାଧି ବିତରଣର ଆୟୋଜନ କରିଥିଲେ । ତାହାକୁ ଦେଖି ରାଧାନାଥ ରାୟ କ୍ଷୋଭ ପ୍ରକାଶ କରି ଉକ୍ତ କାବ୍ୟ ରଚନା କରିଛନ୍ତି ।

ଖ୍ରୀ· ୧୯୦୦ରେ ଉତ୍କଳ ସମ୍ମିଳନୀ ଗଠିତ ହେବା ଫଳରେ ଓଡ଼ିଶାର ସାମୂହିକ ଉନ୍ନତିକଳ୍ପେ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଏକାନ୍ତ ଅପରିହାର୍ଯ୍ୟ ବୋଲି ତତ୍କାଳୀନ ଓଡ଼ିଶାର ବୁଦ୍ଧିଜୀବୀମାନେ ସ୍ୱର ଉତ୍ତୋଳନ କରିଥିଲେ । ଉତ୍କଳ ସମ୍ମିଳନୀ ମଞ୍ଚରୁ ଯେଉଁ ଉଗ୍ର ଜାତୀୟ ଭାବର ଅଭ୍ୟୁଦୟ ଘଟିଥିଲା ତାହାର ଗଠନାତ୍ମକ ପରିପ୍ରକାଶ ଘଟିଥିଲା ସତ୍ୟବାଦୀ ସାହିତ୍ୟିକ ଗୋଷ୍ଠୀଙ୍କ ମଧ୍ୟରେ । ପୁନର୍ଜାଗରଣ ନିମନ୍ତେ ଇତିହାସକୁ ଏକ ଅମୋଘ ଅସ୍ତ୍ର ଭାବରେ ସାହିତ୍ୟିକମାନେ ବ୍ୟବହାର କରିଛନ୍ତି । ଏ ହେତୁ ସତ୍ୟବାଦୀ

ସାହିତ୍ୟିକଗୋଷ୍ଠୀ ଉତ୍କଳର ପ୍ରତିଟି ଶିଳାଖଣ୍ଡ, ଦେବମନ୍ଦିର, ପର୍ବତଗୁମ୍ଫା ଉପତ୍ୟକାରେ ଖୋଜିଛନ୍ତି ସୁଦୂର ଅଶାତର ଗୌରବକୁ ।

ବାରବାଟି ଦୁର୍ଗ ଯାହା ଉତ୍କଳ ନରପତିମାନଙ୍କର ଅମୂଲ୍ୟ ସମ୍ପଦ ଓ ପରମ ଶାନ୍ତିପୀଠ ଥିଲା, ସେହି ଦୁର୍ଗ ପ୍ରାକ୍‌ସ୍ୱାଧୀନତା କାଳର ସାହିତ୍ୟିକଙ୍କ ହୃଦୟରେ ଆଣିଛି ନୂତନ ସ୍ପନ୍ଦନ । ତେଣୁ ଅନେକ ସାହିତ୍ୟିକ ସେହି ସମୟରେ 'ବାରବାଟି'କୁ ତାଙ୍କ ସାହିତ୍ୟରେ ରୂପାୟିତ କରି ସ୍ୱଦେଶପ୍ରୀତିର ନିଦର୍ଶନ ଦେଖାଇ ଯାଇଛନ୍ତି । ସତ୍ୟବାଦୀ ଗୋଷ୍ଠୀର ଅନ୍ୟତମ ରଥୀ ଗୋପବନ୍ଧୁ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଏହି ଦୁର୍ଗ ଅବଲୋକନ କରି ଅଶାତର ଗୌରବକୁ ରୋମନ୍ଥନ କରି ଲେଖିଛନ୍ତି 'କଟକ ଶିଳାଫଳକୁ' କବିତା । ଏତଦ୍ ବ୍ୟତୀତ ପଣ୍ଡିତ ନୀଳକଣ୍ଠ ତାଙ୍କର 'କୋଣାର୍କେ' କାବ୍ୟରେ ସୁପ୍ତ ଶିଷ୍ୟଗଣଙ୍କୁ କଳ୍ପନାରେ ଜାଗ୍ରତ ହେବାର ଉଦ୍‌ବୋଧନ ଦେଇ ବାରବାଟିକୁ ସ୍ମରଣ କରି ଲେଖିଛନ୍ତି—

'ସଙ୍କୋଚ ସରମେ ସରିବ
କପାଁ ବାଟ ସପନେ
ଫେରି ଦେଖ ସେହି ବାଗଇ
ବାରବାଟି କେମନେ । (କୋଣାର୍କେ)

କବି ଗୋଦାବରୀଶ ମହାପାତ୍ର ତତ୍କାଳୀନ ଉତ୍କଳର ଦୁର୍ଗତି ବିଷୟ ହେଉଥିବା ସହ ନୂତନ ଶତାବ୍ଦୀରେ ଉତ୍କଳର ହୃତ ଓ ଗତ ଗୌରବକୁ ଫେରାଇ ଆଣିବା ନିମନ୍ତେ ଆଶା ପୋଷଣ କରି ତାଙ୍କର 'ଉଠ କଙ୍କାଳ' କବିତାରେ ଲେଖିଛନ୍ତି—

"ଦୁର୍ବାର ଗଡ଼ 'ଦେବରକୋଟ୍ଟା'
କହେ ଆଜ ସେହି କଥା,
ବାରବାଟି ଖାଲି ଦେଇଥିଲା ତା'ର
ରଣେ ଉନ୍ନତ ମଥା ।" (ଉଠକଙ୍କାଳ)

ମାତ୍ର କୃପାସିନ୍ଧୁ ମିଶ୍ର ଖ୍ରୀ: ୧୯୧୭ରେ ଏହି ଦୁର୍ଗକୁ ଆଧାର କରି ପ୍ରବନ୍ଧ ରଚନା କରିଛନ୍ତି । ଉକ୍ତ ପ୍ରବନ୍ଧ ପାଠ କରି ଫକୀରମୋହନ ମନ୍ତବ୍ୟ ଦେଇଥିଲେ "ବାରବାଟି ପ୍ରବନ୍ଧ ଆପାତତଃ ଉତ୍କଳ ଭାଷା ଭଣ୍ଡାରରେ ଗୋଟିଏ ମାଣିକ୍ୟ ।" ଏତଦ୍ ବ୍ୟତୀତ ମାୟାଧର ମାନସିଂ 'ବାରବାଟୀ' ଶୀର୍ଷକ ଏକ କବିତା ରଚନା କରିଛନ୍ତି । ମାତ୍ର ଏହା ଏତେ ପ୍ରାଣୋଦ୍ଦୀପକ ମନେ ହୁଏନାହିଁ । ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ତିନି ଦଶନ୍ଧିପରେ ନାଟ୍ୟକାର ଚନ୍ଦ୍ରଶେଖର ନନ୍ଦ ୧୯୭୭ରେ 'ଐତିହାସିକ ଏ ଦୁର୍ଗ ବାରବାଟି' ନାମକ ନାଟକ ରଚନା କରି ଏ ଦୁର୍ଗର ବିସ୍ମୃତ ଇତିହାସର ବହୁ ବିକ୍ଷିପ୍ତ ଘଟଣାବଳୀକୁ ସ୍ଥାନ ଦେଇଛନ୍ତି ।

ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ପୃଷ୍ଠପୁରରେ ବର୍ଷାବରଣ' ପ୍ରବନ୍ଧରୁ ତାଙ୍କର କଟକ ନଗରର ମମତ୍ୱବୋଧ ଅତ୍ୟନ୍ତ ସ୍ପଷ୍ଟ । ଉକ୍ତ ପ୍ରବନ୍ଧରେ ତାଙ୍କର ସ୍ୱଦେଶପ୍ରୀତି ଛତ୍ରେ ଛତ୍ରେ ଉଙ୍କୁଚି ଉଠିଛି । କଟକ ନଗରର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି "ଏହି ବଂଶବନରୁ ବାୟୁ ହିଲ୍ଲୋଳରେ ଦୋହଲାଇ ଓ ସମସ୍ତ ଅଞ୍ଚଳକୁ ଶ୍ୟାମଳ କରି, ଝର୍ଙ୍କ ଲ ଅନୁରାଗଳ ପଥରେ କପିଳାସ ସ୍ପର୍ଶ କରି, ଉପକୂଳରେ ପହଞ୍ଚିବା ଆଗରୁ ସୌଧାବଳୀ ଦେଖି ଜାଣିବୁ ଯେ ଏହି ସେହି କଟକ ଉତ୍କଳର ଉତ୍ତମାଙ୍ଗ । ଘନ ! ଏହି ଥିଲା ଦିନେ ଗର୍ବିତ ଗଜପତିଙ୍କର ରାଜଧାନୀ । ଆଉ ଏହିଠାରୁ ହିଁ ତାର ଅଜେୟବାହିନୀ ଝଟିକା ବେଗରେ ଦୂରରୁ ଦୂରାନ୍ତର ଗତି କରି ଚାଲିଥିଲା । ସ୍ମୃତିପୂତ ବଡ଼ାବାସୀ ଆଜ ମୃତ୍ତିକାରେ ଅବଲୁପ୍ତ; ମାତ୍ର ଲୁଣ୍ଠିତ ବାରବାଟିର ସ୍ଖଳିତ ପ୍ରସ୍ତରରେ ତାର ସ୍ମୃତି ଓ କୀର୍ତ୍ତି ଆଜଯାଏ ଲାଗି ରହିଛି ଓ ମର୍କତକେଶରୀର ମହାକୀର୍ତ୍ତି ଆଜଯାଏ ତଟବାପ୍ରକାର ମେଖଳା ପରି ବିଶୁଛି । ଏହିଠାରେ ହିଁ ବହୁ କବି, ଜ୍ଞାନୀ, ଗୁଣୀ ଓ କର୍ମୀ ଅଳ୍ପ ଦିନ ତଳେ ଉତ୍କଳର ମହାନଶାରେ ଉଜାଗର ରହି ଜ୍ଞାନଦୀପ ଜାଳିଥିଲେ । ଏହି ଦୀପ ଅଖଣ୍ଡ ରହୁ । ଏହାହିଁ କାମନା କରି ତୁ କଟକକୁ ଶ୍ୟାମଳ କରି ଚାଲି ଆସିବୁ । (ପୃଷ୍ଠପୁରରେ ବର୍ଷାବରଣ)

ସ୍ୱାଧୀନତା ଉତ୍ତରୁ ଓଡ଼ିଶାର ରାଜଧାନୀ କଟକରୁ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହୋଇଥିଲେହେଁ ଏଠାରେ ରହିଛି ଓଡ଼ିଶାର ପ୍ରାଚୀନ କୀର୍ତ୍ତିମାନ ଯଥା—ମୋଗଲ ରାଜତ୍ୱ କାଳରେ ନିର୍ମିତ କଦମରସୁଲ, ଇଂରେଜ ଶାସନ କାଳରେ ନିର୍ମିତ ରେଭେନ୍ସା କଲେଜ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, ହାଇକୋର୍ଟ ଇତ୍ୟାଦି । ୧୯୪୮ରେ ଏଠାରେ ଆକାଶବାଣୀ କେନ୍ଦ୍ରର ପ୍ରତିଷ୍ଠା ଫଳରେ ଓଡ଼ିଆ ସାହିତ୍ୟରେ ବହୁଳ ପ୍ରଚାର ଓ ପ୍ରସାର ଘଟିଛି ।

ସ୍ୱାଧୀନତା ଉତ୍ତରୁ ଭାରତୀୟଙ୍କ ମନରୁ ପ୍ରାକ୍-ସ୍ୱାଧୀନତାକାଳୀନ ଉନ୍ମାଦନା ସ୍ୱପ୍ନ ଦୂରେଇ ଯାଇଛି, ବାସ୍ତବତାର ସେ ଜ୍ୱାଳାକୁ ଅଙ୍ଗେ ନିଭେଇଛନ୍ତି । ଗାଆଁ ମାଟି ଭାରତୀୟ ଜନତାକୁ ଆକର୍ଷିତ କରିପାରିଲା ନାହିଁ, ଫଳରେ ଗ୍ରାମ୍ୟ ଜନତା ଉଦରର ପରିପୋଷଣ ଓ ଶିକ୍ଷା ନିମନ୍ତେ ସହରାଭିମୁଖୀ ହେଲା, ସେଥିପାଇଁ ସାହିତ୍ୟରେ ଗ୍ରାମ ଅପେକ୍ଷା ସହର ପରିବେଶ ଅଧିକ ରୂପ ନେଲା ।

ଓଡ଼ିଶାର ମୁଖ୍ୟ ସହର କେତୋଟି ମଧ୍ୟରୁ କଟକର ସ୍ଥାନ ଅନ୍ୟତମ । କଟକକୁ ଦାନାପାଣିର ଏକ ଅକ୍ଷୟ ଭଣ୍ଡାର ଭାବି କି ଶିକ୍ଷିତ କି ଅଶିକ୍ଷିତ ଗ୍ରାମୀଣ ଜନତା ଧାଇଁଆସିଥାନ୍ତି ଉଦରପରିପୋଷଣ ନିମିତ୍ତ । ପୁନଃ ଶିକ୍ଷା ଲାଭକରି ସରକାରୀ ଦପ୍ତରରେ ଚାକିରି କରିବାକୁ ଆସିଥାଏ ଚଷାପୁଅ ଗାଁ ମାଟିଗୁଡ଼ । ଗାଁର ମୋହ, ମାଆର ସ୍ନେହ, ଜ୍ଞାତିପରିଜନଙ୍କ ମମତାକୁ ପ୍ରତ୍ୟାଖ୍ୟାନ କରି ଆଗେଇ ଆସୁଛି ସହରୀ ମଣିଷଙ୍କ ହାତରେ ହାତ ମିଳାଇ ବାଟ ଚାଲିବାକୁ । ସେ ଉଡ଼ନ୍ତା ପକ୍ଷୀଟି ପରି ସହରର କେଉଁ ଏକ ପକ୍ଷୀସହ ବନ୍ଧୁତା ସ୍ଥାପନ କରି ବସାବାନ୍ଧୁଛି । ଏପରି ଏକ ସ୍ପଷ୍ଟ ଚିତ୍ର ପାଉ ପ୍ରଥମ କରି

କାଳୀଚରଣ ପଟ୍ଟନାୟକଙ୍କ 'ଗାର୍ଲସ୍କୁଲ୍' ନାଟକରୁ । ଉକ୍ତ ନାଟକର ରଚନାକାଳ ୧୯୪୬ ମସିହା, ଏଥିରେ ପାଠୁଆ ପୁଅ ସାଗରଙ୍କ ଅଭିଳାଷକୁ ତିରସ୍କାର କରିଛନ୍ତି ପିତା ଜାହ୍ନୁ । ଏହାକୁ ନାଟ୍ୟକାର ରୂପ ଦେଇଛନ୍ତି ନିମ୍ନୋକ୍ତ ପ୍ରକାର—"ମୋର ଜମା ମନ ନ ଥିଲା ହେ, କଟକ ପଠେଇ, ଯାକୁ ବି. ଏ. ପଢ଼ାଇ ଏଇମିତି ଯୋଗ୍ୟର କରିବାକୁ । ସବୁ, ସବୁ ତାଙ୍କ ମାଆ ସାହାଣୀଙ୍କ ଗୁଣ । ପୁଅ ଆମର ପାଠ ପଢ଼ିବ, ଡୋପଟି ହବ । ସେ କାଳ ଗଲାଣି, ହେଇଟି ଏବେ ପାଆନ୍ତୁ । (ଗା. ସ୍କୁ. ପୃ-୪୨) ଅନୁରୂପ ସ୍ୱର ଶୁଣିବାକୁ ମିଳିଥିଲା ୧୯୬୧ ମସିହାରେ ଗୋପାଳଚନ୍ଦ୍ର ମିଶ୍ରଙ୍କ 'ଘାସ ଯୁଥିକା' କବିତାରୁ । ଏଥିରେ କଟକରେ ରହି ପଢ଼ୁଥିବା ପୁଅ ବିପକ୍ଷରେ ଅଭିଭାବକର କ୍ଷୋଭ ପ୍ରକାଶ କରି କହିଛନ୍ତି—

"ଗାଆଁ ଗଣ୍ଡାଠାରୁ ଏଡ଼େ ମିଠା  
କି ସେ କଟକ ମାଟି,  
ରହିବାକୁ ଯହିଁ ଇଚ୍ଛା ହୁଏ  
ସବୁ ବନ୍ଧନ କାଟି ।  
ସପନ ମାୟାରେ ସପନ ଛାୟାରେ  
ସପନ ମାଟି,  
ଘର ପୁଅ ତହିଁ ରହିଯାଏ  
ଗୃହଦଉଡ଼ି କାଟି ।"

କଟକ ନଗରୀ ସଭ୍ୟତା ସହ ତାଳ ଦେଇ ଆଗେଇ ଚାଲିଛି, ତା' ସହ ଓଡ଼ିଆ ସାହିତ୍ୟର ବିକାଶ ସାଧିତ ହେଉଛି । ସମୃଦ୍ଧି ଓ ସମସ୍ୟା ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ ସଦୃଶ । ସେହେତୁ କଟକ ନଗରୀର ସମୃଦ୍ଧି ଦିନକୁ ଦିନ ବୃଦ୍ଧି ପାଇବା ପରି ସମସ୍ୟା ମଧ୍ୟ ବୃଦ୍ଧି ପାଉଥିବାର ଲକ୍ଷ୍ୟ କରାଯାଇଥାଏ, ଓଡ଼ିଆ ସାହିତ୍ୟରୁ । କଟକ ଅଧିବାସୀଙ୍କ ବ୍ୟକ୍ତିଗତ ସମସ୍ୟା ସହ ବର୍ଷା ଦିନେ ଜଳ ନିଷ୍କାସନ, ଇଲେକ୍ଟ୍ରିକ୍ ଲାଇନ୍ କଟିବା, ଭଡ଼ାଘର, ହଠାତ୍ ଦରଦାମ ବୃଦ୍ଧି, ରାସ୍ତା ଉପରେ ମାସ ମାସ ଧରି ମ୍ୟୁନିସିପାଲିଟି ନାଳରୁ କଢ଼ା ହୋଇଥିବା ଅପରିଷ୍କାର, ଲୋକଗହଳି, ଅବାଞ୍ଛିତ ଅତିଥିଙ୍କର ଆଗମନ ଇତ୍ୟାଦି ସାମୂହିକ ସମସ୍ୟାରେ ପରିଣତ ହୋଇଛି । କଥାକାର ଗୋପୀନାଥ ମହାନ୍ତି 'ଘର' ଗଳ୍ପରେ ଭଡ଼ାଘର ସମସ୍ୟାକୁ ଉପସ୍ଥାପିତ କରିଛନ୍ତି । ନାଟ୍ୟକାର ଗୋପାଳ ଛୋଟରାୟ ୧୯୫୭ ମସିହାରେ 'ପୁରପୁରି ପାରିବାରିକ' ଶୀର୍ଷକ ବେତାର ନାଟକରେ କଟକର ତତ୍କାଳୀନ ସମସ୍ୟାବଳୀକୁ ଶ୍ରୋତାଙ୍କ ନିକଟରେ ଉପସ୍ଥାପିତ କରି ବେଶ୍ ଲୋକପ୍ରିୟ ହୋଇ ପାରିଥିଲେ ।

ଏହି କଟକ ନଗରୀର ଆକର୍ଷଣରୁ କବି ସଚ୍ଚିଦାନନ୍ଦ ରାଉତରାୟ ମଧ୍ୟ ବର୍ତ୍ତି ଯାଇନାହାନ୍ତି । ସେ ୧୯୨୪ରେ 'ହଂସପୁରି' କବିତାରେ କଟକନଗରୀକୁ ରୂପାୟିତ କରିଛନ୍ତି ନିମ୍ନୋକ୍ତ ପ୍ରକାରରେ—

"ହଂସଦଂସୀ ଦୁହେଁ କଟକ
ମୁହାଇଲେ,
ସେଠି ଦେଖିଲେ, ଲୋକମାନେ
ହାଣ୍ଡୁଆ ହାଣ୍ଡୁଆ ଆଖିରେ
ଚାହାଁନ୍ତି ।
ଲଣ ଲବେ ପଇସାରେ
ଲଅଟା ଲଡ଼ୁଆ କିଣି
ବାବା ଗଡଗଡ଼ଆଶ୍ୱରଙ୍କ ମୁଣ୍ଡରେ
ଭାଙ୍ଗୁଛନ୍ତି ।"

ଉକ୍ତ ପଂକ୍ତିରେ କବି କଟକୀ ଭାଷାକୁ ନିଛକ ଭାବେ ପ୍ରୟୋଗ କରି ହାସ୍ୟରସର ଉଦ୍ରେକ କରିବା ସହ କଟକ ନଗରୀପ୍ରିୟତାର ସୂଚନା ଦେଇଛନ୍ତି ।

ଏହାବ୍ୟତୀତ କାହ୍ନୁଚରଣଙ୍କ 'ଝଞ୍ଜା', 'ପରକୀୟା', ବସନ୍ତକୁମାରୀ ପଟ୍ଟନାୟକଙ୍କ 'ଅମଡ଼ାବାଟ' ଉପନ୍ୟାସର ଘଟଣା ଏହି କଟକ ନଗରୀରେ ଘଟିଛି । ଏତଦ୍‌ବ୍ୟତୀତ ଅନେକ ଗଳ୍ପରେ ମଧ୍ୟ କଟକ ନଗରୀର ଚିତ୍ର ସୁସ୍ପଷ୍ଟ ।

କେବଳ କଟକନଗରୀର ସମସ୍ୟା ଓ ସମୃଦ୍ଧିକୁ ସାହିତ୍ୟିକ ସାହିତ୍ୟରେ ରୂପାୟନ କରି ମୌନ ହୋଇଯାଇନାହାନ୍ତି । ପରନ୍ତୁ ବର୍ଷକର ବିଭିନ୍ନ ସମୟରେ ପର୍ବପର୍ବାଣି ଉତ୍ସବରେ ମୁଖରିତ ହୋଇ ଉଠୁଥିବା କଟକନଗରୀର ଭିନ୍ନ ଭିନ୍ନ ରୂପକୁ ରୂପାୟିତ କରୁଛନ୍ତି ଆମର ସାହିତ୍ୟରେ ଏପରି ଏକ ଚିତ୍ର ମିଳେ ରାଜକିଶୋର ରାୟଙ୍କ 'ପଙ୍କଚନ୍ଦନ' ଗଳ୍ପ ସଂକଳନର 'ଗୁଗମାଂସ ଓ ମାଗୁର ମତ୍ସ୍ୟ' ଗଳ୍ପରୁ । ଉକ୍ତ ଗଳ୍ପରେ ଗାଳ୍ପିକ କଟକର ପ୍ରତିଷ୍ଠିତ ଉତ୍ସବ ଦଶହରାର ଚିତ୍ର ଦେଇ ଲେଖିଛନ୍ତି—"ମାଆ ଆସୁଛନ୍ତି ସତ; ହାତ ହତ୍ୟାରେ ତାଙ୍କର ସ୍ୱର୍ଣ୍ଣ ଚେଲାଞ୍ଚଳର ଲହରୀ ଖେଳଯାଉଛି । ଆଉ ତାଙ୍କ ଆସିବା ପୂର୍ବରୁ କଟକ ସହର ଯେଉଁଠି ତାଙ୍କର ମୃଣ୍ମୟ ବିଗ୍ରହକୁ ଶିଳ୍ପୀ କେତେ ଆୟାସରେ ସୁନ୍ଦର କରି ଫୁଟାଇଥାଏ, ସେଇ ସହରରେ ଏ ବର୍ଷ ବହୁ ପଙ୍କ, କାଦୁଅ, ପାଣି ଜମି ରହିଛି । ମାଆ ବୋଧହୁଏ ଭାବିଲେ, ଏଥର ହଜାର ହଜାର ମୂର୍ତ୍ତି ଆବାହନ ଭିତରେ ସେ ଆସିବେ । ପାଣି, କାଦୁଅ, ପଙ୍କର ସିମିଣ୍ଟ 'ଅଭାବ ନପଡ଼େ, ତାର ବ୍ୟବସ୍ଥା କରିଦେଲେ । ଜନନୀ ତ ସବୁ ଜାଣିପାରନ୍ତି । ସନ୍ତାନମାନଙ୍କର ଦୁଃଖ ବୁଝିଲେ । କଟକ ସହରକୁ ସିନ୍ଧୁରେ ପରିଣତ କଲେ ।"

ଆମର ପୂର୍ବରୁ ସେତିକି ସମସ୍ୟା ଥିଲା ତତ୍‌ସହ ଅନ୍ୟ ଏକ ସମସ୍ୟା ଯୋଡ଼ି ହେଲା । ତାହା ହେଉଛି ଶିକ୍ଷାରେ ଗବେଷଣା; ଯାହାର କୌଣସି ପ୍ରାୟୋଗିକ ଆବଶ୍ୟକତା ଉପଲବ୍ଧି କରାଯାଇ ପାରେନା । ଏପରି ଏକ ସମସ୍ୟା ଓ ଏହି ସମସ୍ୟା-ବିଜଡ଼ିତ ଚରିତ୍ରମାନଙ୍କ ସହ ସଂପୃକ୍ତ ସ୍ଥାନକୁ ନେଇ କଥାକାର ଶାନ୍ତନୁ ଆଚାର୍ଯ୍ୟ

'ଶତାବ୍ଦୀର ନଚିକେତା' ଉପନ୍ୟାସ ରଚନା କରିଛନ୍ତି । ଉକ୍ତ ଉପନ୍ୟାସରେ ରେଭେନ୍ସା କଲେଜର ଠିକଣାଟି ବର୍ଣ୍ଣନା କରିଛନ୍ତି ଯାହା ଅନ୍ୟ ସାହିତ୍ୟିକଙ୍କ ଠାରେ, ପରିଲକ୍ଷିତ ହୁଏନାହିଁ । ଉକ୍ତ ବର୍ଣ୍ଣନା ମାଧ୍ୟମରେ ପାଠକ ମନରେ ରେଭେନସା କଲେଜ, କଲେଜ ଛକ ଇତ୍ୟାଦିର ସ୍ପଷ୍ଟ ଚିତ୍ର ଆଙ୍କି ହୋଇଯାଏ ।

ସ୍ୱାପ୍ରତିକ ସାମାଜିକ ସ୍ଥିତି ଉପରୁ ଅନାସ୍ଥାଭାବ ପ୍ରକାଶ କରି ଏକାନ୍ତ ବ୍ୟକ୍ତିଗତ ପରିଧି ମଧ୍ୟରେ ଅବସ୍ଥାନ କରିବାର ଅଭିଳାଷ ଏବଂ ତଜ୍ଜନିତ ନିଃସଙ୍ଗତା ଓ ବ୍ୟର୍ଥତା ସ୍ୱାପ୍ରତିକ ଓଡ଼ିଆ କବିତାର ମୁଖ୍ୟ ଆବେଗ । ଆଧୁନିକ ଓଡ଼ିଆ କବି ନୂତନ ମୂଲ୍ୟ-ବୋଧର ସନ୍ଧାନରେ ଘଟଣା, ବ୍ୟକ୍ତି ଏବଂ ବିଗଳିତ ପୃଥିବୀର ଷଡ୍ରିପୁ ଭାବଧାରା ମନ୍ଥନରେ ଲିପ୍ତ ରହିଥିଲେ ମଧ୍ୟ ବେଦନାର ନିଦାନ ନିମନ୍ତେ କୌଣସି ସୁଚିନ୍ତିତ ମାର୍ଗ ନପାଇ ଇତସ୍ତତଃ ଖୋଜୁଛି ସାନ୍ତ୍ୱନାର ମାଧ୍ୟମ । ଏପରି ଏକ ଦ୍ୱନ୍ଦ୍ୱ ମଧ୍ୟରେ କବି ଗୁରୁପ୍ରସାଦ ମହାନ୍ତି କଣ୍ଟକନଗରୀ ମଧ୍ୟରେ ରହି ମଧ୍ୟ ନିଃସଙ୍ଗ ମନେ କରି ଖୋଜିଛନ୍ତି ଆଶ୍ରା । ସେ ତାଙ୍କର 'କାଳପୁରୁଷ' କବିତା ସଙ୍କଳନର ସମୁଦ୍ରସ୍ନାନ କବିତାରେ ନିଜର ନିଃସଙ୍ଗତାକୁ ରୂପ ଦେବାକୁ ଯାଇ ଲେଖିଛନ୍ତି—

"ଭେକ ଶୋଷ ଯାଇନାହିଁ
ନଗ୍ନଟିଆ କଟକ ଗଳିରେ
ଆଜି ତେଣୁ ଗତହୀନ
ଗ୍ଲେଟ ଏକ ବର୍ତ୍ତମାନ ଧରି ।"

ପୁଣି ସେ ଖୋଜିଛନ୍ତି ନିଜସ୍ୱ ସ୍ଥିତିକୁ କଟକର ବିଭିନ୍ନ ସ୍ଥାନରେ ଏହିପରି—

ମୁଁ ତୁମକୁ ଖୋଜିଥିଲି
କେତେ ରେଳ ପୋଲ ଡେଇଁ
କେତେ ଯୁଗ ଯୁଗାନ୍ତର
ସିଂହଳ ମଳୟ ଦ୍ୱୀପରେ
କେତେ ଗଳି କୋଠା
ଡେଇଁ ବିବର୍ଣ୍ଣ ପଥର
ସ୍ତୂପ ବାରବାଟୀ ପାଚିରି ଭିତରେ
ଗଡ଼ିଖାଇ ତଳେ କେତେ
ସୁଡ଼ଙ୍ଗ ଓ ଅରମା ଭିତରେ
ତୁମକୁ ଖୋଜିଲି ପୁଣି
ଚଉଦ୍ୱାର ବାଙ୍କ ନିକଟରେ

× × ×

ମୁଁ ଆଜ କେବଳ ଶୁଣେ ଛୁଡ଼ାହୋଇ
ରାଣୀହାଟ ପଥର ପୋଲ୍‌ରେ
ଅସଂଖ୍ୟ ଗ୍ରୁପ୍ସର ଏତେ ଯାତ୍ରୀସ୍ରୋତ
ଆଷାଢ଼ର ପ୍ରାଣର ପ୍ରୟାସ ।
ମୋ ଦେଶର ନିରନ୍ନ ଜନତା । (ସମୁଦ୍ରସ୍ନାନ)

ସାମ୍ପ୍ରତିକ କବିମାନଙ୍କ ମଧ୍ୟରୁ କବି ଶ୍ରୀ ଦୁର୍ଗାଚରଣ ମଲ୍ଲିକ ତାଙ୍କର 'ଧାନ-ଗାଈଁଠା ଝିଅ' କବିତା ସଂକଳନର 'ଭୁବନେଶ୍ୱର' କବିତାରେ ଓଡ଼ିଆ ଜାତିର ଗୌରବ-ଗାଥାକୁ ବ୍ୟଙ୍ଗାତ୍ମକ ପରିବେଶ ମଧ୍ୟରେ ବର୍ଣ୍ଣନା କରିବାକୁ ଯାଇ କଟକ ନଗରୀକୁ ସ୍ଥାନ ଦେଇ ଲେଖିଛନ୍ତି ଏହିପରି—

"କଟକ ଚଣ୍ଡୀ ଗର୍ଭରୁ
ଜନ୍ମି ଥିବା ଭୁବନେଶ୍ୱରର
ଭାରତ-ଭକ୍ଷୀ ପୁତ୍ରକୁ କିଏ ତୁମେ
ମନ୍ତ୍ରମୁଗ୍ଧ କରିଛ
ଐଶ୍ୱର୍ଯ୍ୟର କାପାଳିକ ।
ନିର୍ବାସିତ କରିଛ,
ତାର ପୁନ ପୌରୋହିତ୍ୟଙ୍କୁ
ଷ୍ଟେସନରେ ମାଳସାହି ବସ୍ତିରେ
ଫୁଟପାଥରେ
ପଞ୍ଚବଟୀରେ,
କିଏ ? କିଏ ତମେ ?
ଦେଖିଛ ଭୁବନେଶ୍ୱରର
ଅଗ୍ନି ଅଶ୍ରୁ ନିଷିଦ୍ଧ ସ୍ୱରରେ ।" (ଭୁବନେଶ୍ୱର)

ଏତଦ୍‌ବ୍ୟତୀତ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ କଟକ ନଗରୀର ବର୍ଣ୍ଣନା କରାଯାଇଛି ଯାହାର ନାମ ଉଲ୍ଲେଖ ନଥିଲେ ମଧ୍ୟ ତାର ବର୍ଣ୍ଣନାରୁ ଏହା ଯେ କଟକ ନଗରୀ, ନିଶ୍ଚିତ ପାଠକ ଅନୁମାନ କରିନିଏ ।

କେବଳ ବିଦଗ୍ଧ ସାହିତ୍ୟରେ ନୁହେଁ, ପରନ୍ତୁ ଲୋକସାହିତ୍ୟରେ କଟକ ନଗରୀକୁ ନେଇ ଅନେକ ପ୍ରବଚନ, ଢଗଢମାଳି ଆଦି ଲୋକମୁଖରେ ପ୍ରଚଳିତ । ଏହି ନଗରୀକୁ ନେଇ ଥିବା ଏକ ଲୋକଗୀତର ଉଦାହରଣ ଡଃ କୁଞ୍ଜବିହାରୀ ଦାଶଙ୍କ ଲୋକଗୀତ ଓ ଲୋକକାହାଣୀ ପୁସ୍ତକରୁ ନିଆଯାଇପାରେ । ୧୮୭୮ରେ ପୁରୀର ଠାକୁରରାଜା ଦିବ୍ୟସିଂହ ଦେବ ନରହତ୍ୟା ଅଭିଯୋଗରେ ଇଂରେଜ ସରକାରଙ୍କ ଦ୍ୱାରା ଦଣ୍ଡିତ ହୋଇ କଳାପାଣି ଯାଇଥିଲେ । କଳାପାଣି ଯିବା ସମୟରେ ରାଜା କଟକରେ ଅବସ୍ଥାନ କରିଥିଲେ ବୋଲି ଆଜି ମଧ୍ୟ ଲୋକଙ୍କ କରୁଣତମ ଅଶ୍ରୁବିନ୍ଦୁରେ ସଂରକ୍ଷିତ ହୋଇ ରହିଛି । ତାହା କଳାପାଣି ଶୀର୍ଷକ ଗାଥାକବିତାରେ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣିତ ହୋଇଛି ।

"ଘରେ ମନ ରହୁନାହିଁ,
ପୁଅକୁ ଫିରଙ୍ଗି ନେଲା ଧରାଇରେ ?
କଟକେ ରହିଲା ନେଇ ମୋ ଧନରେ !
ଉଇଁ ଆସୁଥିଲା ଖରା,
ଶନିବାର ଦିନ ଧରାଇ ନେଲରେ
ହାଜତ ଘରେ ରଖିଲା ମୋ ଧନରେ !
ମକଦ୍ଦମା କେତେ କଲି,
କଉଣସି ଆଡ଼େ କିଛି ନୋହିଲାରେ
ଟଙ୍କା କେବଳ ସାରିଲି ମୋ ଧନରେ !
ଜାଗେ ଜାଗେ ତୋ ପହରା,
ମହାରାଣୀଙ୍କର ହୁକୁମ ହେଲାରେ
କଳାପାଣି ଘେନଗଲା, ମୋ ଧନରେ !
ରାସ୍ତରେ ସେ ଘେନଗଲା,
କଟକ ସହରେ ବୁଲାଇ ଦେଲାରେ
ଜୋବ୍ରା ଘାଟରେ ଗଲା ମୋ ଧନରେ !"

(ଲୋ· ଗୀ· ଲୋ· କା· ପୃ ୩୨୮)

ପ୍ରବନ୍ଧର ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଓଡ଼ିଆ ସାହିତ୍ୟରେ କଟକ ନଗରୀର ସ୍ଥାନକୁ ବିସ୍ତୃତ ଭାବେ ଆଲୋଚନା କରିବା ଅସମ୍ଭବ ବ୍ୟାପାର । ଉକ୍ତ ପ୍ରବନ୍ଧର କ୍ଷୁଦ୍ର କଳେବର ମଧ୍ୟରେ କେବଳ ସମ୍ୟକ୍ ସୂଚନା ମାତ୍ର ଦେବାକୁ ପ୍ରୟାସ କରିଛି ।

କଟକ ନଗରୀର ପରିବେଶ ଅତୀତରେ ଓଡ଼ିଆ ସାହିତ୍ୟିକଙ୍କୁ ସ୍ପର୍ଶ କରୁଥିଲା । ଆଜି ମଧ୍ୟ କରୁଛି ଏବଂ ଅନାଗତରେ ମଧ୍ୟ ସ୍ପର୍ଶ କରିବ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ଏହି ନଗରୀର ସମୃଦ୍ଧି କାମନା କରେ ପ୍ରତ୍ୟେକ ଓଡ଼ିଆ । ଏହି ନଗରୀ ପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବ ମଧ୍ୟ କରେ ।



# କଟକର ନୌବାଣିଜ୍ୟ

ଡଃ ହରିହର କାନୁନ୍‌ଗୋ

ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର କଟକନଗରୀ ମହାନଦୀର ତ୍ରିକୋଣଭୂମିରେ ଅବସ୍ଥିତ । ଏହାର ଉତ୍ତରରେ ମହାନଦୀ ଓ ଦକ୍ଷିଣରେ କାଠଯୋଡ଼ି । ଆହୁରି ମଧ୍ୟ ବିରୂପା, ବ୍ରାହ୍ମଣୀ, ବୈତରଣୀ ଓ ଦକ୍ଷିଣରେ କୁଆଖାଇ ନଦୀ ପ୍ରଭୃତି ଏହି ନଗରୀର ପ୍ରାକୃତିକ ସୁରକ୍ଷା ନିମନ୍ତେ ବେଢ଼ି ରହିଛନ୍ତି । ନଦୀକୂଳବର୍ତ୍ତୀ ସମତଳ ଅଞ୍ଚଳଗୁଡ଼ିକ ଉର୍ବର ଓ ଘନ ଜନବସତିରେ ପୂର୍ଣ୍ଣ । ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଶାରେ ତାମ୍ରଲିପି, ଚେଲିତାଲୋ, ପାଲୁର ଓ ଦନ୍ତପୁର ପ୍ରଭୃତି ବନ୍ଦରଗୁଡ଼ିକ ଉପରୋକ୍ତ ନଦୀଗୁଡ଼ିକ ଦ୍ୱାରା ସଂଯୁକ୍ତ ହୋଇଥିବାରୁ କଟକ ନଗରୀ ନୌବାଣିଜ୍ୟର କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଓଡ଼ିଶାର ପଞ୍ଚକଟକ ଦୁର୍ଗସ୍ଥଳୀ ରୂପେ ପରିଗଣିତ ହୋଇ ନଦୀକୂଳରେ ଅବସ୍ଥିତ ହୋଇଥିବାରୁ ଏହି ସ୍ଥାନଗୁଡ଼ିକ ନୌବାଣିଜ୍ୟ ପାଇଁ ବିଶେଷ ସହାୟକ ହୋଇପାରିଥିଲା ।

ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଏହି ରାଜ୍ୟରେ ବହୁ ପର୍ବତ, ମାଳଭୂମି, ନଦନଦୀ ଓ ସୁଦୀର୍ଘ ସମୁଦ୍ର ରହିଥିବାରୁ ଉତ୍କଳର ଅଧିବାସୀମାନେ ନୌବାଣିଜ୍ୟରେ ପାରଙ୍ଗମ ଥିଲେ । ଓଡ଼ିଶାର ବିଭିନ୍ନ ପର୍ବପର୍ବାଣିରେ ନୌବାଣିଜ୍ୟର ସୂଚନା ଏ ଜାତିକୁ ମହାନ୍ ସଂସ୍କୃତିସମ୍ପନ୍ନ ଜାତି ରୂପେ ପରିଗଣିତ କରିପାରିଛି । ଉତ୍କଳୀୟମାନେ ସମୁଦ୍ରରେ ବାଣିଜ୍ୟ କାରବାର କରୁଥିବାରୁ ସେମାନେ ସାମୁଦ୍ରିକ ଜାତି ଭାବରେ ପରିଗଣିତ ହୋଇ ଆସୁଥିଲେ । ଓଡ଼ିଆ ଜାତିର ସମୃଦ୍ଧି ସମୁଦ୍ରକୁ ଆଶ୍ରୟ କରି ହିଁ ସମ୍ଭବପର ହୋଇଛି । ତମ୍ବାପଟାର ଉଲ୍ଲେଖ ଅନୁସାରେ ଓଡ଼ିଶାର ରାଜା ମହାରାଜାମାନେ ବିଭିନ୍ନ ବ୍ୟକ୍ତିଙ୍କୁ ନଦୀତଟ ଓ ଘାଟର ସ୍ୱତ୍ୱମାନ ପ୍ରଦାନ କରୁଥିଲେ ।

ପ୍ରାଚୀନ କାଳରେ ଏହି ନୌଯାତ୍ରା ଥିଲା ଅତ୍ୟନ୍ତ ବିପଦ ସଙ୍କୁଳ । ଗଙ୍ଗା ମାତାଙ୍କୁ ସ୍ମରଣ କରି ଓଡ଼ିଆ ପୁଅ ସୀମାହୀନ ଦରିଆରେ ଜାହାଜ ମେଲି ଦେଉଥିଲା । ଘୋର ସାଗର ବକ୍ଷରେ ଚନ୍ଦ୍ର, ସୂର୍ଯ୍ୟ ନକ୍ଷତ୍ର ଦ୍ୱାରା ଦିଗ ନିର୍ଣ୍ଣୟ କରି ସେ ବାଣିଜ୍ୟ ତରୀ ଛାଡ଼ି ଦେଉଥିଲେ । ଧର୍ମ ପ୍ରଚାର ଓ ବାଣିଜ୍ୟ ବ୍ୟବସାୟ କରିବା ଥିଲା ସମୁଦ୍ର ଯାତ୍ରାର

ଉଦ୍ଦେଶ୍ୟ । ଏହି ନୌବାଣିଜ୍ୟ ଫଳରେ ଉତ୍କଳର ସାଂସ୍କୃତିକ ବିକାଶ ସହିତ ଅର୍ଥନୈତିକ ଉନ୍ନତି ସମ୍ଭବପର ହୋଇଥିଲା ।

ପ୍ରାଚୀନ ଉତ୍କଳଦେଶ ବା ଆଧୁନିକ ଓଡ଼ିଶା ପ୍ରାଚୀନ ଉତ୍କଳ, କଳିଙ୍ଗ, କଙ୍ଗୋଦ ଓ କୋଶଳକୁ ନେଇ ଗଠିତ । ହୁଏନ୍‌ସାଂ ସମୟର ପ୍ରାଚୀନ ଓଡ଼ିଶାର ଭୌଗୋଳିକ ସୀମାକୁ ଅନୁଧ୍ୟାନ କଲେ ଜଣାଯାଏ ସୁବର୍ଣ୍ଣରେଖା ବା ତାମ୍ରଲିପ୍ତି ବନ୍ଦର ଠାରୁ ମହାନଦୀ (କଟକ) ପର୍ଯ୍ୟନ୍ତ ଅଞ୍ଚଳ ଥିଲା ଉତ୍କଳ । କଳାର ଉତ୍କର୍ଷତା ଥିବାରୁ ଏହାର ନାମ ମଧ୍ୟ ଉତ୍କଳ ବୋଲି କୁହାଯାଉଛି । ମହାନଦୀ ଠାରୁ ଚିଲିକା ପର୍ଯ୍ୟନ୍ତ ଓଡ଼ିଶାର ଦକ୍ଷିଣ ପଶ୍ଚିମ ଭାଗ ହେଉଛି କଙ୍ଗୋଦ, ଚିଲିକା ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଅଞ୍ଚଳ ଥିଲା କଳିଙ୍ଗ ଏବଂ ଗଞ୍ଜାମ ଓ ଆନ୍ଧ୍ରର ପଶ୍ଚିମ ଭାଗ ଅଞ୍ଚଳ ଥିଲା କୋଶଳ । ପ୍ରାଚୀନ ଓଡ଼ିଶାର ଅନ୍ୟ ନାମ କଳିଙ୍ଗ । ଏହି କଳିଙ୍ଗ ତିନି ଭାଗରେ ବିଭକ୍ତ । ଉତ୍ତର କଳିଙ୍ଗ ବା ପ୍ରାଚୀ କଳିଙ୍ଗ, ମଧ୍ୟ କଳିଙ୍ଗ ଓ ଦକ୍ଷିଣ କଳିଙ୍ଗ । ଉତ୍ତର କଳିଙ୍ଗ ଥିଲା ସୁବର୍ଣ୍ଣରେଖା (ତାମ୍ରଲିପ୍ତି ବନ୍ଦର) ଠାରୁ ମହାନଦୀ (କଟକ) ପର୍ଯ୍ୟନ୍ତ । ଏହାକୁ ମଧ୍ୟ ଉତ୍କଳ ବୋଲି କୁହାଯାଏ । ମଧ୍ୟ କଳିଙ୍ଗ—ମହାନଦୀ ଠାରୁ ଚିଲିକା ବା ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଅଞ୍ଚଳ ଥିଲା । କଙ୍ଗୋଦ ଓ କୋଶଳ ମଧ୍ୟ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା । ଦକ୍ଷିଣ କଳିଙ୍ଗର ସୀମା ଗଞ୍ଜାମର ପାଲୁର୍ ବନ୍ଦର ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ରହିଥିଲା ।

ମେଗାସ୍ଥିନିସ୍‌ଙ୍କ ବର୍ଣ୍ଣନାନୁସାରେ ମଗଧର ଦକ୍ଷିଣରେ ଥିଲା ପ୍ରାଚୀ କଳିଙ୍ଗ । ସେତେବେଳେ ଏହି କଳିଙ୍ଗର ରାଜଧାନୀ ଥିଲା 'ପାର୍ଥଲି' କିନ୍ତୁ ଟଲେମୀଙ୍କ ମତାନୁସାରେ ମଗଧର ନନ୍ଦରାଜାଙ୍କ ସମୟରେ 'ତୋଷାଳି' ଥିଲା କଳିଙ୍ଗର ରାଜଧାନୀ । ପ୍ଲିନିଙ୍କ ବର୍ଣ୍ଣିତ 'ପାର୍ଥଲିସ୍' ବା ପାର୍ଥଲି' ସମ୍ଭବତଃ ଗଞ୍ଜାମର ପାଲର ବା ପରଲି କିମ୍ବା ଚିଲିକା କୂଳରେ ଥିବା ପିଥୁଣ୍ଡା ନଗରୀ (ପଥରା ଗ୍ରାମ) ହୋଇପାରେ । ମେଗାସ୍ଥିନିସ୍‌ଙ୍କ ଉଲ୍ଲେଖ ଅନୁସାରେ କଳିଙ୍ଗ ଉପକୂଳର ଦୈର୍ଘ୍ୟ ଥିଲା ସାତଶହ ମାଇଲ୍ । ଏହି ଦୈର୍ଘ୍ୟ ପ୍ରାଚୀ ବା ଉତ୍ତର କଳିଙ୍ଗ, ମଧ୍ୟ କଳିଙ୍ଗ ଓ ଦକ୍ଷିଣ କଳିଙ୍ଗର ଶେଷୋକ୍ତ ସୀମା ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ।

ପାର୍ଜିଟରଙ୍କ ବର୍ଣ୍ଣନାନୁସାରେ ଆର୍ଯ୍ୟମାନେ ପ୍ରଥମେ ସମୁଦ୍ର ପଥରେ ଆସି ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମରେ ବସତି ସ୍ଥାପନ କରିଥିଲେ । ଏମାନେ ପ୍ରଥମେ କଳିଙ୍ଗକୁ ଆସିଥିଲେ ତାପରେ କଳିଙ୍ଗରୁ ଜଳ ପଥରେ ପୁଣ୍ଡ୍ର, ସୁହ୍ମ, ବଙ୍ଗ ଓ ଅଙ୍ଗ ଦେଶକୁ ଯାଇଥିଲେ । ହୁଗୁଳି ନଦୀକୂଳ ନିକଟସ୍ଥ ଅଞ୍ଚଳ ଥିଲା ସୁହ୍ମ (ରାଢ଼) । ଏହି ସୁହ୍ମର ନିକଟବର୍ତ୍ତୀ ଅଞ୍ଚଳ ଥିଲା ଓଡ୍ର ବା ଉତ୍କଳ । ଉତ୍କଳର ଦକ୍ଷିଣ ସୀମା କପିସା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କପିସା ନଦୀର ଅପର କୂଳରୁ ବିସ୍ତୃତ ଥିଲା କଳିଙ୍ଗ ।

କଳିଙ୍ଗର ଅଧିବାସୀମାନେ ବିରାଟକାୟ ନୌକାରେ ବାଣିଜ୍ୟ କାରବାର କରୁଥିଲେ । ଚୀନ, ଶ୍ୟାମ, ବ୍ରହ୍ମଦେଶ, ସୁବର୍ଣ୍ଣଦ୍ୱୀପ (ଜାଭା, ସୁମାତ୍ରା, ବାଲି ଓ

ବୋର୍ଣ୍ଣିଓ) ଓ ସିଂହଳ ଥିଲା ନୌବାଣିଜ୍ୟର ପ୍ରଧାନ କେନ୍ଦ୍ର । ଏହି ଦ୍ୱୀପଖଣ୍ଡରେ କଳିଙ୍ଗର ସାଧବମାନେ ସ୍ଥାପନ କରିଥିଲେ 'ଦରିଆପାରି ସାମ୍ରାଜ୍ୟ' । ସେଠାରେ ଉପନିବେଶ ସ୍ଥାପିତ ହେବା ସଙ୍ଗେ କଳିଙ୍ଗର ଧର୍ମ, ସଂସ୍କୃତି, ସଭ୍ୟତା, ଶିଳ୍ପର ପ୍ରଚାର ଓ ପ୍ରସାର ଘଟିଥିଲା । ଏହି ଦରିଆପାରି ସାମ୍ରାଜ୍ୟର ଅନ୍ୟନାମ ଥିଲା 'ବୃହତ୍ତର କଳିଙ୍ଗ' । ଏବେ ସୁଦ୍ଧା ସେହି ଅଞ୍ଚଳରେ 'କ୍ଲିଂ' ଜାତି କଳିଙ୍ଗର ଅଧିବାସୀ ଭାବରେ ପରିଚିତ ହୋଇ ଆସୁଛନ୍ତି । ମୂଳ ଅଧିବାସୀମାନେ କଳିଙ୍ଗ ଜାତିରେ ରୂପାନ୍ତରିତ ହୋଇ ବସବାସ କରୁଛନ୍ତି ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶୀ ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବ ଉତ୍କଳ, କଙ୍ଗୋଦ, କଳିଙ୍ଗକୁ ଏକଶାସନାଧୀନ କରିଥିଲେ । ଗଙ୍ଗ ବଂଶର ରାଜଧାନୀ କଳିଙ୍ଗନଗର (ମୁଖଲିଙ୍ଗ)ରୁ ଯେତେବେଳେ କଟକକୁ ଉଠି ଆସିଲା, ସେତେବେଳେ କଳିଙ୍ଗ ନାମ ପରିବର୍ତ୍ତେ (ଓଡ୍ର) ଉତ୍କଳ ନାମ ପ୍ରଚଳିତ ହେଲା । ସମ୍ଭବତଃ କଳିଙ୍ଗ ନଗରୀ ନିକଟବର୍ତ୍ତୀ ବଂଶଧାରା ନଦୀ ନୌବାଣିଜ୍ୟ ପାଇଁ ଅନୁକୂଳ ନ ହେବାରୁ କଟକକୁ ରାଜଧାନୀ ପରିବର୍ତ୍ତନ ହୋଇଥିଲା । ଅତଏବ ଚୋଡ଼ଗଙ୍ଗ ଦେବଙ୍କ ସମୟରୁ କଳିଙ୍ଗର ରାଜଧାନୀ ଥିଲା କଟକ ନଗରୀ । ଏହା ଥିଲା ସେତେବେଳେ ନୌବାଣିଜ୍ୟର ମୁଖ୍ୟକେନ୍ଦ୍ର । ନୌବାଣିଜ୍ୟର ଉତ୍କର୍ଷତା ଲାଭ କରିଥିଲା କଟକ ।

କଳିଙ୍ଗ ବା ଉତ୍କଳର ବଣିକମାନେ ଆରବସାଗର ପାରି ହୋଇ ଆଫ୍ରିକା ମହାଦେଶର ପୂର୍ବ ଉପକୂଳ ରାଜ୍ୟମାନଙ୍କରେ ବାଣିଜ୍ୟ ବ୍ୟବସାୟ କରୁଥିଲେ । ବାଣିଜ୍ୟ ବ୍ୟବସାୟକୁ ଶତ୍ରୁ ମୁଖରୁ ରକ୍ଷା କରିବା ନିମନ୍ତେ କଳିଙ୍ଗରେ ବିରାଟ ନୌସେନା ଥିଲେ । ଉତ୍କଳୀୟ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ ବୋଇତ ଓ ଜାହାଜ ଶିଳ୍ପ ସ୍ଥାପତ୍ୟରେ ବେଶ୍ ପାରଦର୍ଶିତା ଲାଭ କରିଥିଲା । ଭୁବନେଶ୍ୱର ବିନ୍ଦୁସାଗର ନିକଟବର୍ତ୍ତୀ ବୋଇତାଳ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିରର ଶିଳାଖଣ୍ଡରେ ବୋଇତ ଉପରେ ହସ୍ତୀଯିବାର ଚିତ୍ର, କୋଣାର୍କ ମନ୍ଦିରର ଜଗମୋହନ ଉପରେ ନୃତ୍ୟରତା ଭୈରବମୂର୍ତ୍ତି, ପୁରୀ ଶ୍ରୀମନ୍ଦିର ଭୋଗମଣ୍ଡପ ଉପରେ ବୋଇତର ଚିତ୍ର ଖୁବ୍ ଆକର୍ଷଣୀୟ ।

ଏତଦ୍‌ବ୍ୟତୀତ ସୂକ୍ଷ୍ମବସ୍ତ୍ର ତିଆରି ନିମନ୍ତେ କଳିଙ୍ଗ ପ୍ରସିଦ୍ଧି ଲାଭ କରିଥିଲା । ତାମିଲ୍ ରାଜ୍ୟରେ ଏହି କଳିଙ୍ଗ ବସ୍ତ୍ରର ଏତେ ଶ୍ରଦ୍ଧା ଥିଲା ଯେ ସେମାନେ ବସ୍ତ୍ରକୁ କଳିଙ୍ଗ ବୋଲି କହୁଥିଲେ । କିମ୍ବଦନ୍ତୀ ଅଛି ଯେ କଳିଙ୍ଗ ରାଜା ଥରେ ଅଯୋଧ୍ୟାର ରାଜାଙ୍କୁ ଖଣ୍ଡିଏ ସୂକ୍ଷ୍ମବସ୍ତ୍ର ଉପହାର ଦେଇଥିଲେ । ଜଣେ ଭିକ୍ଷୁଣୀ ତାହାକୁ ପିନ୍ଧିବାରୁ ଲୋକେ ତାକୁ ଉଲଗ୍ନ ହୋଇଛି ବୋଲି କହିଲେ । ରାତିରେ ଘାସ ପଡ଼ିଆ ଉପରେ କଳିଙ୍ଗ ବସ୍ତ୍ରର ସୂକ୍ଷ୍ମତା ଜାଣିବା ପାଇଁ ପରୀକ୍ଷା କରାଗଲା । ଦେଖାଗଲା ଯେ କାକରରେ ରାତିସାରା ତନ୍ତୁ ସକାଳୁ ଘାସ ସହିତ ବସ୍ତ୍ରଟି ଏପରି ମିଶିଯାଇଥିଲା ଯେ ବାରି ହେଉନଥିଲା । ଏହି ସୂକ୍ଷ୍ମବସ୍ତ୍ରକୁ ସାଇତା ହୋଇ ବାଉଁଶ ନଳି ଭିତରେ ରଖାଯାଉଥିଲା । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' କାବ୍ୟର ଦଶମ ଅଧ୍ୟାୟ ସତର ଶ୍ଳୋକରେ ଉଲ୍ଲେଖ ଅଛି—

"ବଂଶ ନଳରେ ଥିବାର ଯେ
ବାନ୍ଧି ପିନ୍ଧିଲେ ଦୂର୍ବାଦଳ ମାଳଟେକ ।"

ଅତଏବ ଉତ୍କଳରେ ନିର୍ମିତ ସୂକ୍ଷ୍ମ ରେଶମପାଟ, ମାଳ ଝୀନଶାଢ଼ୀ, ବାଉଁଶ ହସ୍ତତନ୍ତ ଶିଳ୍ପ ମୂର୍ତ୍ତି, ପଥର ବାସନ, ପଥରରେ ନିର୍ମିତ ଅନ୍ୟାନ୍ୟ ସାମାନ ପ୍ରଭୃତି ବିଦେଶକୁ ପଠାଯାଉଥିଲା ଏବଂ ସେ ସବୁର ବିନିମୟରେ ଚନ୍ଦ୍ରକାନ୍ତ ଓ ସୂର୍ଯ୍ୟକାନ୍ତ ମଣି, ମୁକ୍ତା, ହୀରା, ଶାଳଗ୍ରାମ ଶିଳା, ହାତୀଦାନ୍ତ, ବାଘନଖ, ଗୋରୋଚନା, ଦକ୍ଷିଣାବର୍ତ୍ତୀ ଶଙ୍ଖ, ଚଉଁରୀ, ରୁଦ୍ରାକ୍ଷ, କସ୍ତୁରୀ, ଗୁଆ, ଗୋଲମରିଚ ଓ କାର୍ପାସବସ୍ତ୍ର ପ୍ରଭୃତି ମୂଲ୍ୟବାନ ପଦାର୍ଥ ନିଜ ଦେଶକୁ ଆଣୁଥିଲେ ।

ପୁଣି ସମ୍ବଲପୁର ହୀରା ମଧ୍ୟ ନୌବାଣିଜ୍ୟର ଶ୍ରେଷ୍ଠବସ୍ତୁ ଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ସମ୍ବଲପୁର ହୀରା ବହୁ ମୂଲ୍ୟରେ ରୋମ ନଗରୀରେ ବିକ୍ରୀ କରା ଯାଉଥିଲା । ଏପରିକି ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମ୍ବଲପୁର ହୀରାଖଣିରୁ ପ୍ରଚୁର ପରିମାଣରେ ହୀରା ମିଳୁଥିଲା । ସୁବର୍ଣ୍ଣରେଖା, ବ୍ରାହ୍ମଣୀ, ମହାନଦୀ ଓ ଇବ ନଦୀରେ ବାଲିକୁ ଧୋଇ ଝରାମାନେ ପ୍ରଚୁର ସୁନା ପାଉଥିଲେ ।

ସମ୍ବଲପୁରର ହୀରା ନୌକାଯୋଗେ ମହାନଦୀ ବାଟେ ପୂର୍ବୋପକୂଳର ବନ୍ଦରମାନଙ୍କୁ ରପ୍ତାନି ହେଉଥିଲା ଏବଂ ସ୍ଥଳ ପଥରେ ପଶ୍ଚିମୋପକୂଳର ବନ୍ଦରମାନଙ୍କୁ ଯାଉଥିଲା । ସେଠାରୁ ଯାଉଥିଲା ରୋମନଗରୀକୁ ବିକ୍ରୀ ପାଇଁ । ରୋମର ଅନ୍ୟ ନାମ ଥିଲା ଶ୍ରୀକ୍ଷେତ୍ର । ସମ୍ବଲପୁରର ପଣ୍ୟଦ୍ରବ୍ୟ ମହାନଦୀ ବାଟେ ଯାଉଥିଲା ପୂର୍ବୋପକୂଳକୁ । ନରାଜର ଠିକ୍ ତଳକୁ ମହାନଦୀ ବିଭକ୍ତ ହୋଇଥିଲା ତିନି ଭାଗରେ ।

ମହାନଦୀର ଶାଖାନଦୀ ଗନ୍ଧବତୀ (ଗଙ୍ଗୁଆ) ପରବର୍ତ୍ତୀ କାଳରେ ପ୍ରାଚୀ ଓ ପୁଷ୍ପଭଦ୍ରା (କୁଶଭଦ୍ରା)ରେ ପରିଣତ ହେଲା । ଦଧିଶ୍ରବା (ଦୟା) ଓ ଭାର୍ଗବୀ ମହାନଦୀର ଥିଲା ପ୍ରଶାଖା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥକାଠ ଗଡ଼ଜାତ ଅଞ୍ଚଳରୁ କାଠ ଭେଳା ଯୋଗେ ମହାନଦୀ କାଠଯୋଡ଼ି କୁଆଖାଇ ଦେଇ ଦୟାନଦୀ ଓ ଅଠରନଳା ବାଟେ ପୁରୀକୁ ଯାଉଥିଲା ।

ବର୍ତ୍ତମାନ ଏହି ନଦୀଗୁଡ଼ିକର ଗତିପଥ ବଦଳିଛି ପୋତିହୋଇ ପଡ଼ିବା ଯୋଗୁଁ । କିନ୍ତୁ ପ୍ରାଚୀନ ଯୁଗରେ ମହାନଦୀ ବାଟେ ଯାଉଥିବା ପଣ୍ୟଦ୍ରବ୍ୟ ଏହି ଶାଖା ନଦୀମାନଙ୍କ ଜରିଆରେ ସମୁଦ୍ର ପର୍ଯ୍ୟନ୍ତ ଯାତାୟାତ କରୁଥିଲା । ଏହି ଶାଖାମାନ କୋଣାର୍କ ବା ଚିଲିକା ନିକଟରେ ସମୁଦ୍ରରେ ପଡ଼ୁଥିବାରୁ ଏହା ଥିଲା ପ୍ରାଚୀନ ବନ୍ଦର । ପ୍ରାଚୀନଦୀ ଚୋଖାଳୀବାଟେ କୋଣାର୍କରେ ମିଶିଥିବାରୁ ଏହାକୁ ଚେଲିତାଲୋ ବନ୍ଦର ବୋଲି କହନ୍ତି ।

ସେତେବେଳେ ଏହା ଥିଲା ନୌବାଣିଜ୍ୟର ପ୍ରଧାନ କେନ୍ଦ୍ର । ବହୁ ଗବେଷକ ଐତିହାସିକ ଆଧୁନିକ ଚିତର୍ତ୍ତାଲକୁ ଚେଲିତାଲୋ ବନ୍ଦର ବୋଲି ଚିହ୍ନିତ କରିଛନ୍ତି ।

ଏହା ମହାନଦୀର ମୁହାଣରେ ଅବସ୍ଥିତ ଏବଂ ନାବିକମାନଙ୍କର ଦିଗ ନିର୍ଣ୍ଣୟ ପାଇଁ ତିର୍ତ୍ତୋଲ ନିକଟସ୍ଥ 'ଦାଇଁଲେ' ଗ୍ରାମରେ ଏକ ଆଲୋକସ୍ତମ୍ଭ (ବତୀଘର) ଥିବାର ସୂଚନା ମିଳେ । ତାହାର ପ୍ରତୀକ ସ୍ୱରୂପ ସେହି ସ୍ଥାନରେ 'ଦିଗନାଦେରଣୀ' ଠାକୁରାଣୀ ଅଦ୍ୟାବଧି ରହିଛନ୍ତି । ଏହି ଠାକୁରାଣୀ ମୂର୍ତ୍ତି ହେଉଛନ୍ତି ବୌଦ୍ଧ ତାନ୍ତ୍ରିକ ଦେବୀ ।

ମହାନଦୀ ନିକଟସ୍ଥ ଶାରଳାଙ୍କ ମୂର୍ତ୍ତି ବୌଦ୍ଧ ଧର୍ମର ତାନ୍ତ୍ରିକ ଦେବୀ ବୋଲି ମଧ୍ୟ କହନ୍ତି । ସେହିପରି ଚିତ୍ରୋତ୍ପଳା କୂଳସ୍ଥ ହରଚଣ୍ଡୀ ମୂର୍ତ୍ତି ମଧ୍ୟ ବୌଦ୍ଧ ଯୁଗର ବୋଲି ଜଣାଯାଏ । ଚଷାକୂଳ (ବର୍ତ୍ତମାନ ନାମ ଚଷାକୁଣ୍ଡ)ର ମଙ୍ଗଳା ତଥା ନାରାୟଣପୁରର 'ବ୍ରହ୍ମାଣୀ'ଙ୍କୁ ବୌଦ୍ଧ ତାନ୍ତ୍ରିକ ଦେବୀ ଭାବରେ ବର୍ଣ୍ଣନା କରାଯାଇଛି । ଚିତ୍ରୋତ୍ପଳାର ଅବବାହିକାରେ ବହୁ ପ୍ରାଚୀନ ବୌଦ୍ଧମୂର୍ତ୍ତି ଏବେ ସୁଦ୍ଧା ପରିଲକ୍ଷିତ ହୁଏ । ଖ୍ରୀ: ଅ: ୬୩୦ରୁ ୬୪୩ ମଧ୍ୟରେ ଚୀନ ପରିବ୍ରାଜକ ହୁଏନ୍‌ସାଂ ଭାରତ ଭ୍ରମଣରେ ଆସି 'ଚେଲିତାଲୋ' ବନ୍ଦରରେ ଅବତରଣ କରିଥିଲେ ବୋଲି ଉଲ୍ଲେଖ ଅଛି । ଖ୍ରୀ:ଅ: ୬୫୦ରେ ଓଡ଼ିଶାରେ ଲଳାଟେନ୍ଦୁ କେଶରୀଙ୍କ ରାଜତ୍ୱ ସମୟରେ ସେ ଏହି ବନ୍ଦରର ଏକ ଉଚ୍ଚ ସ୍ଥାନରେ ଠିଆ ହୋଇ ନଗରର ଦୃଶ୍ୟ ଅବଲୋକନ କଲାବେଳେ ପାଞ୍ଚୋଟି ବୌଦ୍ଧମନ୍ଦିର ଦେଖିଥିଲେ । ସେଗୁଡ଼ିକ ମଧ୍ୟରେ ରତ୍ନଗିରି ଓ ଲଳିତଗିରି ଅନ୍ୟତମ ।

ଚିତ୍ରୋତ୍ପଳା ନଦୀ ତୀରରେ ବନ୍ଦର ଥିବାର କେତେକ ଲକ୍ଷଣ ପରିଦୃଷ୍ଟ ହୁଏ । ପ୍ରଥମ ଚିହ୍ନ ହେଉଛି ପାହାଡ଼ ଶୀର୍ଷରେ ସେତେବେଳେ ଏକ ଉଚ୍ଚସ୍ତମ୍ଭ ଗଠନ କରି ତା' ଉପରେ ପ୍ରଦୀପ ରଖାଯାଉଥିଲା । ଓଡ଼ିଶାର ଉପକୂଳରେ ବହୁ ବତୀଘର ରହିଛି ।

ପଞ୍ଚଦଶ ଶତାବ୍ଦୀରେ ଭାରତର ପୂର୍ବ ଉପକୂଳରେ ଗଢ଼ି ଉଠିଥିବା ପାରାଦ୍ୱୀପ ବନ୍ଦରର ବତୀଘର, ଜୁମ୍ବର ହୁକାଟୋଲା (ବତୀଘର) ଏ· ଷେହେରର ଉଲ୍ଲେଖମାନ୍ୟ । ପାରାଦ୍ୱୀପ ସମ୍ପର୍କରେ ପ୍ୟାରିସ୍‌ର ଏକ ଗ୍ରନ୍ଥାଳୟରେ ଥିବା ଜଣେ ଆରବୀୟ ନାବିକଙ୍କ ବୃତ୍ତାନ୍ତରୁ ଜଣାପଡ଼େ ଯେ 'ପ୍ରଦୀପ' ଶବ୍ଦରୁ 'ପାରାଦ୍ୱୀପ'ର ସୃଷ୍ଟି । ପ୍ରାଚୀନ ବନ୍ଦରର ଦ୍ୱିତୀୟ ଚିହ୍ନ ହେଉଛି କଣ୍ଡରା ବା କେଉଟ ବସ୍ତି । ସେତେବେଳେ ଏମାନେ ଥିଲେ ନାବିକ—ପ୍ରାଚୀନ ନାଗବଂଶୀୟ ।

ଏହି ନାଗ ସମ୍ପ୍ରଦାୟର ଲୋକେ ନୌକା ଓ ଜାହାଜ ଚଳାଇବାରେ ବେଶ୍ ଧୂରନ୍ଧର ଥିଲେ । ତୃତୀୟ ଚିହ୍ନ ହେଉଛି ଏକ ଶିବମନ୍ଦିର କିମ୍ବା ବୌଦ୍ଧସ୍ତୂପ । ସେତେବେଳର ଓଡ୍ର ବା ଉତ୍କଳୀୟ ନାବିକମାନେ ବିପଦପୂର୍ଣ୍ଣ ସୁଦୀର୍ଘ ସମୁଦ୍ରଯାତ୍ରା କରିବା ପୂର୍ବରୁ ଶିବମନ୍ଦିର କିମ୍ବା ବୌଦ୍ଧ ସ୍ତୂପରେ ଆରାଧନା କରୁଥିଲେ । ଆଜି ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ବହୁ ସଂଖ୍ୟକ ଶିବମନ୍ଦିର ଓ ବୌଦ୍ଧସ୍ତୂପ ରହିଛି । ଚିତ୍ରୋତ୍ପଳା ନଦୀକୂଳରେ ବହୁ ଶିବମନ୍ଦିର ଓ ବୌଦ୍ଧସ୍ତୂପ ପରିଲକ୍ଷିତ ହୁଏ ।

କଟକ ମହାନଦୀ ତୀରରେ ଥିବା ପ୍ରସିଦ୍ଧ ଗଡ଼ଗଡ଼ିଆ ଶିବମନ୍ଦିର, ପ୍ରାଚୀ ନଦୀ କୂଳରେ ଥିବା ଦ୍ୱାଦଶଶମ୍ଭୁ ଓ ବନ୍ଦରେଶ୍ୱର ମହାଦେବ ମନ୍ଦିର, ବଂଶଧାରା ନଦୀ କୂଳରେ

ଥିବା କଳିଙ୍ଗ ନଗରର ମଧୁକେଶ୍ୱର, ଭୀମେଶ୍ୱର ଓ ସୋମେଶ୍ୱର ମନ୍ଦିର ପ୍ରଭୃତି ବହୁ ଶିବମନ୍ଦିର ଓ ବୌଦ୍ଧସ୍ତୂପ ଦେଖିବାକୁ ମିଳେ । ସମୁଦ୍ର ନିକଟସ୍ଥ କୋଣାର୍କ ଉପକଣ୍ଠରେ ଥିବା ଚନ୍ଦ୍ରଭାଗା ନଦୀରେ ସାଗରଗାମୀ ପୋତମାନ ଉତ୍କଳର ଗୁରୁଆଡ଼କୁ ଯାତାୟାତ କରୁଥିଲ । ଷୋଡ଼ଶ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ଚନ୍ଦ୍ରଭାଗା ନଦୀ ନୌବାଣିଜ୍ୟର ଦ୍ୱାରଭଳି ଥିଲ । କୋଣାର୍କ ମନ୍ଦିରର ବିଶାଳକାୟ ପଥର ଖଣ୍ଡମାନ ମାଳଗିରି ପାହାଡ଼ରୁ ସମୁଦ୍ର ଓ ଚନ୍ଦ୍ରଭାଗା ନଦୀ ବକ୍ଷରେ ଅଣାଯାଇଥିବାରୁ ଏହି ନଦୀକୁ 'ପଥରବୁହା ନଦୀ' ବୋଲି କହନ୍ତି ।

ପ୍ରାଚୀ ନଦୀ କୂଳସ୍ଥ ଚଉରାଶି ଗ୍ରାମରେ ଏକ ବୋଇତ ବନ୍ଧା ଲୁହାଖମ୍ବ, କାକଟପୁରର ବହୁତ ଗ୍ରାମରେ ଜାହାଜପଡ଼ିଆ, ଜାହାଜଘାଟ, ବୋଇତଭଣ୍ଡ, ବୋଇତ କୁଦ, ପାତ୍ରବକୁଦ, ଗୋପାଳକୁଦ, ଅମଣିଆକୁଦ (ପାଟଣା), କୁଦପାଟଣା, ତୁଳସୀପୁର ଆଦି ସ୍ଥାନରେ ନୌବାଣିଜ୍ୟର ସୂଚନା ମିଳୁଛି । ଚନ୍ଦ୍ରଭାଗା ନଦୀ କୂଳରେ ନାରଣପୁର ନିକଟବର୍ତ୍ତୀ କୁଦାନଗରୀ (କୁଦପାଟଣା)ରେ ବୋଇତକୁଦ, ବୋଇତପାଟ ଓ ଶୁଙ୍କପରୀକ୍ଷିତ ଗାଦି ରହିଛି । ଏବେ ସୁଦ୍ଧା ନାରଣପୁରର ବୋଇତପାଟରେ ବୋଇତର ନଙ୍ଗର ମାଟିତଳେ ପୋତି ହୋଇ ପଡ଼ିରହିଛି । କଟକର ପାଟା ନିକଟରେ ଚନ୍ଦ୍ରଭାଗାର ଗୋଟିଏ ନଦୀ ଧାର ଥିଲ । ତାହା ବର୍ତ୍ତମାନ ଆଉ ନାହିଁ । କିନ୍ତୁ ସାଲେପୁର ଦେଇ ମହାନଦୀର ଶାଖା ନଦୀ ଭାବରେ ଚନ୍ଦ୍ରଭାଗା କୁଦାନଗରୀ, କଳାକୁଦାବାରେଣୀ ଇତ୍ୟାଦି ଗ୍ରାମ ଦେଇ ଚଉମୁହାଁଣି ଠାରେ ସମୁଦ୍ରରେ ମିଶିଛି ।

ଏହି ଚନ୍ଦ୍ରଭାଗା ନଦୀ କଟକ, ପୁରୀ ଜିଲ୍ଲା ମଝିରେ ଥିବା ଦେବୀ ଓ କୁଶଭଦ୍ରା ନଦୀର ମଧ୍ୟସ୍ଥଳରେ ଅବସ୍ଥିତ । ଏହାର ଉତ୍ତରରେ ଅଛି କଟକ ସଦର, ଗୋବିନ୍ଦପୁର, ଜଗତସିଂହପୁର, ଓ ବାଲିକୁଦା ଏବଂ ଦକ୍ଷିଣ ପାର୍ଶ୍ୱରେ ଅଛି ନିମାପଡ଼ା, ଗୋପ ଓ କାକଟପୁର । ପ୍ରାଚୀ ନଦୀର ଆଠଟି ଶାଖା ନଦୀ ମଧ୍ୟରୁ ଚନ୍ଦ୍ରଭାଗା ନଦୀ ଗୋଟିଏ । ଚନ୍ଦ୍ରଭାଗାରେ ଥିବା ପଦ୍ମତୋଳା ଗଡ଼ (ଯେଉଁଠି କୋଣାର୍କ ମନ୍ଦିର ନିର୍ମିତ) ପୋତା ହେବାରୁ ଏହି ନଦୀର ଉପରଭାଗ କ୍ରମେ ପୋତିହୋଇ ପଡ଼ିଲ ଏବଂ ନିମ୍ନ ଭାଗଟି ଚନ୍ଦ୍ରଭାଗା ତୀର୍ଥ ହୋଇ ରହିଛି । କପିଳସଂହିତାଙ୍କ ବର୍ଣ୍ଣନାନୁସାରେ ଉତ୍ପଳେଶ୍ୱର ମହାଦେବଙ୍କ ଠାରୁ ଚନ୍ଦ୍ରେଶ୍ୱରୀ ଠାକୁରାଣୀଙ୍କ ମଧ୍ୟବର୍ତ୍ତୀ ନଦୀର ନାମ ଚନ୍ଦ୍ରଭାଗା ।

ଚନ୍ଦ୍ରଭାଗା ନଦୀର ମୁହାଣ କୋଣାର୍କ ହୋଇଥିବାରୁ ଉତ୍କଳର ସାଧବମାନେ ଏହି ସ୍ଥାନରେ ନୌବାଣିଜ୍ୟ କରୁଥିଲେ । କୋଣାର୍କର ପ୍ରାଚୀନ ନାମ ଥିଲ— "କୋନାନ୍‌ନୋଗୋର/କୋଣାଗର/କୈନଗୋନା" । ଏହାକୁ କେତେକ ଗବେଷକ ଚେଲିତାଲୋ ବନ୍ଦର ବୋଲି କହିଥାନ୍ତି ।

ଟଲେମୀଙ୍କ ବର୍ଣ୍ଣନାନୁସାରେ ପାଲୁରର ଦକ୍ଷିଣକୁ ଥିବା କଳିଙ୍ଗନଗର/ କଳିଙ୍ଗପାଟନାକୁ ଚେଲିକାଟେଲା ବୋଲି କୁହାଯାଏ । ଏହି ଅଞ୍ଚଳର ପ୍ରାଚୀନ ନାମ ଥିଲ

"କରକବଡ଼ମ୍" । ଟଲେମୀର ଚଲିଜା ଖାରବର୍ତ୍ତୀ ଚରିତ୍ରପୁର (ଛତ୍ରପୁର)/ଛତ୍ରଗଡ଼କୁ ଚେଲିତାଲୋ ବୋଲି କେତେକ ଗବେଷକ ମତ ଦେଇଛନ୍ତି । କିନ୍ତୁ କୋଣାର୍କ ନିକଟରେ ଚେଲିତାଲୋ ବନ୍ଦର ଥିବା ଅଧିକ ସମ୍ଭବପର ।

କାରଣ ପ୍ରାଚୀ ଓ ଚନ୍ଦ୍ରଭାଗା ସେତେବେଳେ ଅତି ଗଭୀର ଥିଲା ଏବଂ ବଙ୍ଗୋପସାଗର ସହିତ ସିଧାସଳଖ ସଂଯୋଗ ହୋଇଥିବାରୁ ନୌବାଣିଜ୍ୟ ନିମନ୍ତେ ଏହି ସ୍ଥାନଟି ଉତ୍କୃଷ୍ଟ ଥିଲା । କାଳକ୍ରମେ ଚନ୍ଦ୍ରଭାଗା ଓ ପ୍ରାଚୀ ପୋତି ହୋଇ ପଡ଼ିବା ଫଳରେ ମହାନଦୀର ଶାଖାନଦୀ କାଠଯୋଡ଼ି ଏବଂ କାଠଯୋଡ଼ିର ଶାଖାନଦୀ କୁଆଖାଇ, କୁଶଭଦ୍ରା ଓ ଦେବୀ ନଦୀର ପ୍ରାଧାନ୍ୟ ବଢ଼ିବାକୁ ଲାଗିଲା । ଏହି ନଦୀଗୁଡ଼ିକ ପରବର୍ତ୍ତୀ ସମୟରେ ବାଣିଜ୍ୟ ପାଇଁ ଅନୁକୂଳ ହେଲା ।

ପ୍ରାଚୀନଦୀ ସମୁଦ୍ର ସହିତ ମିଶିବାପରେ ମହାନଦୀର ଡାକଆମ୍ବାଠାରୁ ଆରମ୍ଭ କରି ଶୁଷ୍କ ବାରଙ୍ଗ ନଦୀ ଓ ଖୋଲ (ଶୋଲ) ନଦୀ ଦେଇ ପ୍ରାଚୀ ନଦୀର, ଜଳ ମହାନଦୀ ଠାରୁ ଅବାଧରେ ସମୁଦ୍ରଯାଏ ପ୍ରବାହିତ ହେଉଥିଲା । ସେତେବେଳେ ବାରଙ୍ଗ, ଶୋଲ (ଖୋଲ) ଓ ପ୍ରାଚୀ ନଦୀ ବୋଇତ ବାଣିଜ୍ୟ ପାଇଁ ଉତ୍କୃଷ୍ଟ ଥିଲା ।

ଖୋର୍ଦ୍ଧା ଓ କଟକ ଜିଲ୍ଲା ଅନ୍ତର୍ଗତ ସାରଙ୍ଗଗଡ଼ ଓ ନଦୀଜ ମଝିରେ ଥିବା ପର୍ବତ ଓ ତା' ପାର୍ଶ୍ୱବର୍ତ୍ତୀ ଭୂଖଣ୍ଡର ଜଳମିଶି ବାରଙ୍ଗପୋଲ ଦେଇ ନିମ୍ନଗାମୀ ହେଉଥିଲା । ବାରଙ୍ଗ ନିକଟରେ ଏହାର ଆକାର କ୍ଷୁଦ୍ର ଦେଖାଗଲେ ମଧ୍ୟ ପୁରୀ ଜିଲ୍ଲାର ଶାଖାନଦୀମାନଙ୍କରୁ ଜଳ ଆହରଣ କରି କ୍ରମେ ବଡ଼ ହୋଇ ସମୁଦ୍ରରେ ମିଶିଛି । କୁଶଭଦ୍ରା ନଦୀର ଜଳ ମିଶିବା ଫଳରେ ଏହାର ନାମ ପରିବର୍ତ୍ତିତ ହୋଇ ହେଲା ପ୍ରାଚୀ । ପ୍ରାଚୀ ନଦୀର ଏକ ଅଂଶ ଥିଲା ଚନ୍ଦ୍ରଭାଗା ।

ଏହି ଚନ୍ଦ୍ରଭାଗା ନଦୀଟି ପବିତ୍ର ତୀର୍ଥକ୍ଷେତ୍ରରେ ପରିଗଣିତ ହେବା ଫଳରେ ମାଘଶୁକ୍ଳ ସପ୍ତମୀ ଦିନ ହଜାର ହଜାର ଭକ୍ତ ରୁଣ୍ଡହୋଇ ବୁଡ଼ ପକାଇ ସୂର୍ଯ୍ୟୋଦୟ ଦର୍ଶନ କରନ୍ତି । ସେହିଭଳି କଟକର ଚନ୍ଦ୍ରଭାଗା ନଦୀ କୂଳରେ କୁଦାନଗରୀ ଠାରେ ମାଘ ସପ୍ତମୀ ଦିନ ଅସଂଖ୍ୟ ଭକ୍ତ ନଦୀରେ ବୁଡ଼ ପକାଇ ସୂର୍ଯ୍ୟୋଦୟ ଦର୍ଶନ କରନ୍ତି । ପ୍ରାଚୀନଦୀ ତୀରରେ ଥିବା ଦ୍ୱାଦଶଶମ୍ଭୁ ମନ୍ଦିର (କପିଳେଶ୍ୱର, ଗୋକର୍ଣ୍ଣେଶ୍ୱର, ବିଲ୍ୱେଶ୍ୱର, ଶୋଭନେଶ୍ୱର, ରାମେଶ୍ୱର, ଅଙ୍ଗେଶ୍ୱର, ଅମରେଶ୍ୱର, ଗ୍ରାମେଶ୍ୱର, ସୋମେଶ୍ୱର, ସିଦ୍ଧେଶ୍ୱର, ନୃତ୍ୟେଶ୍ୱର ଓ ମୁକ୍ତେଶ୍ୱର) ଦ୍ୱାଦଶ ତୀର୍ଥ ରୂପେ ଗଢ଼ି ଉଠିଛି ।

ଏତଦ୍‌ବ୍ୟତୀତ ପୁଣ୍ୟକ୍ଷେତ୍ର ବିରଜା ବା ଯାଜପୁର ନିକଟରେ ଥିଲା ଏକ କ୍ଷୁଦ୍ର ବନ୍ଦର । ସାଳନ୍ଦୀ ଓ ବୈତରଣୀର ଏକତ୍ର ମୁହାଣ ଥିଲା ଧାମରା ବନ୍ଦର ନିକଟରେ । ଏହି ବୈତରଣୀ ମୁହାଣ ଧାମରାର ପ୍ରାଚୀନ ନାମ ଥିଲା ଧାମ ବା ଧାମା । କିନ୍ତୁ ସାଳନ୍ଦୀ, ବ୍ରାହ୍ମଣୀ ଓ ବୈତରଣୀର ପ୍ରାଚୀନ ନଗର ଓ ପୋତାଶ୍ରୟ କାଳକ୍ରମେ ଧ୍ୱଂସ ପାଇଯାଇଛି ।

ନାଗଙ୍ଗ, ଖୋଲ (ଶୋଲ) ଓ ଢ଼ାଗୀ ନଦୀ କୂଳରେ ଥିବା ବୋଇତ ଆଶ୍ରୟ ସ୍ଥାନଗୁଡ଼ିକ କାଳକ୍ରମେ ପୋତି ହୋଇ ଶୁଷ୍କ ଜମିରେ ପରିଣତ ହୋଇଗଲଣି । ଖୋଲ (ଶୋଲ) ନଦୀର ପୂର୍ବଭାଗରେ ଥିବା କଟକ ସଦର ଏବଂ ଗୋବିନ୍ଦପୁର ଥାନାର ମଧ୍ୟବର୍ତ୍ତୀ ଝରିଲୋ ଗ୍ରାମର ପଶ୍ଚିମରେ ଥିବା ପ୍ରକାଣ୍ଡ ବରଗଛକୁ 'ବୋଇତବନ୍ଧା ବରଗଛ' ବୋଲି ଏବେସୁଦ୍ଧା କହୁଛନ୍ତି ।

କଟକ ଜଗତସିଂହପୁରର ଦେବୀ ନଦୀରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସମୁଦ୍ରଠାରୁ ହାତମାଇଲ ବଡ଼ ବଡ଼ ଜାହାଜମାନ ଆସୁଥିଲା । ମହାନଦୀର ମୁହାଣଠାରୁ ନଦୀ ଗର୍ଭରେ କିଛି ଦୂର ପର୍ଯ୍ୟନ୍ତ ୩୦୦।୪୦୦ ଟନ ବୋଝେଇ ଜାହାଜ-ଗୁଡ଼ିକ ଯାତାୟାତ କରି ପାରୁଥିଲା । ବାଲେଶ୍ବରର ଧାମ୍‌ରା ବନ୍ଦର ଲବଣ ରପ୍ତାନି ନିମନ୍ତେ ଏବଂ କଟକର ଦେବୀ ନଦୀର ମୁହାଣ ନିକଟସ୍ଥ ମାଛଗାଁ ଧାନ ରପ୍ତାନିର ପ୍ରଧାନ କେନ୍ଦ୍ର ଥିଲା । କଟକ ଜଗତସିଂହପୁର ପାଟ୍ଟଆର ହରିଶପୁର ଠାରେ ଇଂରେଜମାନେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ମହାନଦୀ କୂଳରେ ବୈଦ୍ୟେଶ୍ବର, କଣ୍ଟିଲୋ ଏବଂ ପଦ୍ମାବତୀ ପ୍ରଭୃତି କେତୋଟି ସ୍ଥାନ ବାଣିଜ୍ୟକାରବାର ମୁଖ୍ୟସ୍ଥାନ ଥିଲା । ନାବିକମାନେ ଏହି ଅଞ୍ଚଳରୁ ଲୁଣ, ମସଲା, ନଡ଼ିଆ ଓ ପିତ୍ତଳର ଜିନିଷମାନ ମହାନଦୀରେ ନେଇ ସମ୍ବଲପୁର ଅଞ୍ଚଳରୁ କପା, ଗହମ, ଲୁହା ହଳଦୀ, ଟସର ଓ ଧାନ ଚାଉଳ ଆଦି ଆଣୁଥିଲେ ।

ସେତେବେଳକାର ବୋଇତମାନଙ୍କର ରୂପ ଓ ଆକାର ଥିଲା ବିଭିନ୍ନ ପ୍ରକାରର । ବିସ୍ତୃତକାୟ ପୋତକୁ 'ଦୀର୍ଘା' ଓ ଉନ୍ନତକାୟ ପୋତକୁ 'ଉନ୍ନତା' କୁହାଯାଉଥିଲା । 'ସାମାନ୍ୟ ମନ୍ଥର' ନାମକ ବୋଇତର ଦୈର୍ଘ୍ୟ ୧୨୦ ହାତ, ପ୍ରସ୍ଥ ୬୦ ହାତ ଓ ଉଚ୍ଚତା ଥିଲା ୬୦ ହାତ । ଜାହାଜର ଉପରିଭାଗରେ ରହୁଥିଲା ଏକ କୁଟୀର ବା ମନ୍ଦିର । କୁଟୀରର ଅବସ୍ଥିତି ଅନୁସାରେ ଜାହାଜର ନାମ ହେଉଥିଲା 'ଅଗ୍ର ମନ୍ଦିର', ମଧ୍ୟମନ୍ଦିର ବା ସର୍ବମନ୍ଦିର । ବିଭିନ୍ନ ଜାହାଜରେ ଖଞ୍ଜା ହେଉଥିଲା ଏକ ବା ଏକାଧିକ ମାସ୍ତୁଲ । ବୋଇତମାନଙ୍କର ମଙ୍ଗ ଗୁଡ଼ିକ ସିଂହ, ବ୍ୟାଘ୍ର, ହସ୍ତୀ, ସର୍ପ, ହଂସ, ମୟୂର, ବେଙ୍ଗ ବା ମନୁଷ୍ୟର ମୁଣ୍ଡ ଆକୃତି ଭଳି ଥିଲା । ଏହି ନୌକା ଗଠନ ପ୍ରଣାଳୀ ସମ୍ପର୍କରେ କବି ଯାନକୃଷ୍ଣଙ୍କ 'ପ୍ରସ୍ତାବସିନ୍ଧୁ'ରେ ଏବଂ ପୁରୁଷୋତ୍ତମ ଦେବଙ୍କ 'ଶବ୍ଦକୋଷ'ରେ ବିଭିନ୍ନ ବୋଇତ ବିଷୟ ଉଲ୍ଲେଖ ଅଛି । ଦ୍ରୁତଗାମୀ ପୋତଗୁଡ଼ିକ ଅଧିକାଂଶ ସମୁଦ୍ର ଜଳ ଭିତରେ ବୁଡ଼ିକରି ଯାଉଥିଲା ।

କଳିଙ୍ଗର ପୋତଗୁଡ଼ିକ ଦିନରେ ପ୍ରାୟ ଦୁଇଶହ ମାଇଲ ସମୁଦ୍ର ପଥରେ ଗତି କରି ପାରୁଥିଲା । ସମ୍ରାଟ ଅଶୋକଙ୍କ ଆଦେଶାନୁସାରେ ରାଜକୁମାରୀ ସଂଘମିତ୍ରା ସାତଦିନରେ ତାମ୍ରଲିପ୍ତିରୁ ବାହାରି ସିଂହଳରେ ପହଞ୍ଚିଥିଲେ । ତାମ୍ରଲିପ୍ତିର ପ୍ରାଚୀନ ନାମ ଥିଲା ତାମିଲିତସ୍ । ନଦୀର ଗତି ପରିବର୍ତ୍ତନ ଯୋଗୁଁ ତାମ୍ରଲିପ୍ତି ଏବେ ସମୁଦ୍ରଠାରୁ ବହୁ ଦୂରକୁ ଚାଲିଯାଇଛି । ଏଠାରୁ କଳିଙ୍ଗର ସୁନ୍ଦର ସୂକ୍ଷ୍ମବସ୍ତ୍ର ରପ୍ତାନି ହେଉଥିଲା । ଏହି ତାମ୍ରଲିପ୍ତିରେ ଚବିଶ ଗୋଟି ବୌଦ୍ଧ ସଂଘାରାମ ଥିଲା ।

ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳ ସାମ୍ରାଜ୍ୟର ସ୍ୱାଧୀନତା ଲୋପ ପାଇବା ପରେ ରାଜଶକ୍ତିର ଦୁର୍ବଳତା ଯୋଗୁଁ ଜଳପଥରେ ଦସ୍ୟୁମାନଙ୍କର ଅବାଧ ଲୁଣ୍ଠନ ଓ ବିଦେଶୀ ବାଣିଜ୍ୟର ଆବିର୍ଭାବ ଓ ପ୍ରଭାବ ଫଳରେ ଉତ୍କଳର ନୌବାଣିଜ୍ୟ କ୍ରମେ କ୍ରମେ ହ୍ରାସ ପାଇଲା । ଏହି ସମୟରେ ଫରାସୀ, ଇଂରେଜ, ଦିନାମାର, ପର୍ତ୍ତୁଗୀଜ, ଡଚ, ଓଲନ୍ଦାଜ ପ୍ରଭୃତି ବଣିକମାନେ ବାଲେଶ୍ୱରର ସୁବର୍ଣ୍ଣରେଖା ମୁହାଣସ୍ଥ ପିପିଲି ବନ୍ଦରରେ ଗୋଷ୍ଠାଶ୍ରୟ ନିର୍ମାଣ କଲେ । ପିପିଲି ସମୁଦ୍ରଠାରୁ ଜଳପଥରେ ବାର ଓ ସ୍ଥଳ ପଥରେ ୧୦ କି: ମି ଦୂର ଥିଲା । ପର୍ତ୍ତୁଗୀଜମାନେ ମାନ୍ଦ୍ରାଜରୁ ବିତାଡ଼ିତ ହୋଇ ୧୫୧୪ରେ ଏଠାରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ଏମାନେ ଜଳପଥରେ ନାନା ଅତ୍ୟାଚାର କରିବାରୁ ମୋଗଲ ସମ୍ରାଟ କ୍ରୁଦ୍ଧ ହୋଇ ସେମାନଙ୍କୁ ପିପିଲିରୁ ତଡ଼ି ଦେଲେ । ବାଲେଶ୍ୱରର ରଙ୍ଗଣୀ ବନ୍ଦର (କଣ୍ଟାଇ ସବ୍‌ଡିଭିଜନ ଅନ୍ତର୍ଗତ ହିଜଲି ପ୍ରଗଣାରେ) ସେହି ସମୟରେ ନୌବାଣିଜ୍ୟର କେନ୍ଦ୍ର ଥିଲା । ଆକବରଙ୍କ ପ୍ରଧାନମନ୍ତ୍ରୀ ତୋଡ଼ର ମଲ୍ଲ ତାଙ୍କର ରାଜସ୍ୱ ବନ୍ଦୋବସ୍ତରେ ହିଜଲି ଓ ତାମ୍ରଲିପ୍ତି ବନ୍ଦରକୁ ଜଳେଶ୍ୱର ସରକାରର ଅନ୍ତର୍ଭୁକ୍ତ କରିଥିଲେ । ଏହା ବ୍ୟତୀତ ବାଲେଶ୍ୱରର ଚନ୍ଦ୍ରିମା (ଚୁନିଆଁ), ଲକ୍ଷ୍ମଣନପୁର, କୁସମନ, ଧାମରା ଓ ସରଥା ଏବଂ ଚୂଡ଼ାମଣି ପ୍ରଭୃତି କ୍ଷୁଦ୍ର ବନ୍ଦର-ଗୁଡ଼ିକ ସେତେବେଳେ ଖ୍ୟାତିଲାଭ କରିଥିଲା । ବୁଡ଼ାବଳଙ୍ଗ ମୁହାଣ ନିକଟରେ ମୋଗଲ ମାନଙ୍କର ପ୍ରସିଦ୍ଧ ବନ୍ଦର ଥିଲା ।

ଏହିସବୁ ବନ୍ଦରରେ ବାଣିଜ୍ୟ କାରବାର କରିବା ନିମନ୍ତେ ବର୍ଷର ଚାରିମାସ ଅର୍ଥାତ୍ ଆଷାଢ଼ ପ୍ରଥମଠାରୁ କାର୍ତ୍ତିକପୂର୍ଣ୍ଣିମା ପର୍ଯ୍ୟନ୍ତ ସାମୁଦ୍ରିକ ଯାତ୍ରା ବନ୍ଦ ଥିଲା । କାରଣ ବଡ଼ ବଡ଼ ଜାହାଜ ପୂର୍ଣ୍ଣଗର୍ଭା ନଦୀସ୍ରୋତ ଦ୍ୱାରା ଦେଶ ଭିତରେ ପ୍ରବେଶ କରିବା ସୁବିଧାଜନକ । ଏହି ସମୟରେ ମୌସୁମୀବାୟୁ ଦକ୍ଷିଣ ପଶ୍ଚିମ ଦିଗରୁ ପ୍ରବାହିତ ହୁଏ ।

କାର୍ତ୍ତିକ ଅମାବାସ୍ୟା ଦିନ ଓଡ଼ିଶାର ଘରେ ଘରେ ପିତୃଶ୍ରାଦ୍ଧ ପାଳନ କରନ୍ତି । ଏଥିରେ ପିତୃପୁରୁଷଙ୍କୁ ଆବାହନ କରାଯାଏ । ଏହିଦିନ ରାତିରେ ପ୍ରତ୍ୟେକ ଗୃହିଣୀ ନିଜ ନିଜ ଗୃହର ଅଗଣାରେ ଖଡ଼ି ପଥରର ଚୂନ ବା ମୁରୁଜ ଦ୍ୱାରା ଗୋଟିଏ ଗୋଟିଏ ବୋଇତ ବା ଜାହାଜର ଚିତ୍ର ଆଙ୍କନ୍ତି । ଘରର ସମସ୍ତ ଆସବାବ ନେଇ ଏହି ଚିତ୍ରାଙ୍କିତ ଜାହାଜ ଉପରେ ରଖି ପ୍ରାତଃକାଳରେ ବନ୍ଦାପନା କରନ୍ତି । ସେମାନଙ୍କର ବିଶ୍ୱାସ ପ୍ରତିଦିନ ଏହି ପ୍ରଥା ଅନୁସରଣ କଲେ ଗୃହରେ ଧନ ବଢ଼େ । ଉତ୍କଳର ଦକ୍ଷିଣ ଯାତ୍ରୀ ନାବିକମାନେ ଦକ୍ଷିଣ ପଶ୍ଚିମବାୟୁ ସାହାଯ୍ୟରେ ଜାହାଜ ଫେରାଇ କାର୍ତ୍ତିକ ମାସ ବେଳକୁ ନିଜ ଘରକୁ ବାହୁଡ଼ି ଆସୁଥିଲେ । ସେହି କାର୍ତ୍ତିକ ଅମାବାସ୍ୟା ରାତିରେ ଏକାଠି ହୋଇ ଜାହାଜ ବନ୍ଦାପନା କରି ଦ୍ରବ୍ୟ ସବୁ ଘରକୁ ଆଣିବାର ବ୍ୟବସ୍ଥା କରୁଥିଲେ ।

କାର୍ତ୍ତିକ ଅମାବାସ୍ୟା ଦିନ ଦୀପଦାନ ଶ୍ରାଦ୍ଧ ସରିବାପରେ ଉତ୍କଳର ବ୍ରାହ୍ମଣୀ-ମାନେ ଅଗଣାରେ ବା ଚୌରା ମୂଳରେ ଚକଡ଼ାଏ ଝୋଟି ପଞ୍ଚମୁରୁଜରେ ବୋଇତ ଚିତ୍ର

କରି ପ୍ରତ୍ୟୁଷରୁ ବନ୍ଦାପନା କରିବା ପରେ ଦୀପଦାନ ଦିନ ସକାଳେ ପିଲାମାନଙ୍କୁ ତୈଳ ମାଲିସ କରି ସ୍ନାନ ଓ ନୂତନ ବସ୍ତ୍ର ପରିଧାନ କରନ୍ତି । ଏହି ପ୍ରଥାକୁ ଲୁଆ ଟେକଣ କହନ୍ତି । ଏହି ଦିନଟି ଶିଶୁମାନଙ୍କର ଖୁସିବାସିର ଦିନ ହୋଇଥିବାରୁ ସାଧବମାନେ ଅତି ଆନନ୍ଦରେ ପିଲାମାନଙ୍କୁ କୋଳକରି ଏହି ଦିନଠାରୁ ପୁଣି ବିପ୍ରାନ ଦ୍ରବ୍ୟ ସଂଗ୍ରହ ପାଇଁ ଲାଗିପଡ଼ନ୍ତି । ଏଥିରୁ ଜଣାପଡ଼େ ଯେ ବ୍ରାହ୍ମଣମାନେ ଆଶ୍ୱିନ ମାସ ପ୍ରାରମ୍ଭରେ ନିଜ ଗୃହକୁ ଆସି ପିତୃତର୍ପଣ ଓ ଶ୍ରାଦ୍ଧ ସମ୍ପାଦନ କରି କାର୍ତ୍ତିକ ଅମାବାସ୍ୟା ଦିନ ଦୀପଦାନ କରୁଥିଲେ । ଅମାବାସ୍ୟା ଦିନର ଏହି ଦୀପଦାନ ବିଦେଶାଗତ ଉତ୍କଳୀୟ ବଣିକମାନଙ୍କୁ ନିଜର ପରିଚିତ ସ୍ଥାନରେ ଅବତରଣ କରିବାପାଇଁ ସଙ୍କେତ ଭଳି କାର୍ଯ୍ୟ କରୁଥିବା ସମ୍ଭବପର ।

ଓଡ଼ିଆରେ ଗୋଟିଏ କଥା ଅଛି, "ଚଇତ, ଶୀତ ଯାଏ, ଯାଏ ବୋଇତ" । ଅର୍ଥାତ୍ ଚୈତ୍ରମାସ ବେଳକୁ ଶୀତ ଛାଡ଼ିଯାଇଥାଏ । କାର୍ତ୍ତିକ ମାସଠାରୁ ଚୈତ୍ର ମାସଯାଏ ଉତ୍ତର ପୂର୍ବ ଦିଗରୁ ପବନ ବହେ । ତେଣୁ ଉତ୍କଳୀୟ ବଣିକମାନେ କାର୍ତ୍ତିକ ଓ ଚୈତ୍ର ମଧ୍ୟରେ ଉତ୍ତର ପୂର୍ବସ୍ଥ ଦେଶମାନଙ୍କରୁ ଏବଂ ଆଷାଢ଼ ଠାରୁ କାର୍ତ୍ତିକ ମଧ୍ୟରେ ଅନୁକୂଳ ବାୟୁରେ ନିଜ ଦେଶକୁ ଫେରି ଆସୁଥିଲେ । ଅତଏବ ଆଷାଢ଼ ଠାରୁ କାର୍ତ୍ତିକ ଏବଂ କାର୍ତ୍ତିକ ଠାରୁ ଚୈତ୍ର ପର୍ଯ୍ୟନ୍ତ ବର୍ଷର ଏହି ଦୁଇଟି ସମୟ ନୌବାଣିଜ୍ୟ ପାଇଁ ପ୍ରକୃଷ୍ଟ ସମୟ ଥିଲା । ତେଣୁ ସାରା କାର୍ତ୍ତିକ ମାସରେ ଧର୍ମ କର୍ମ କରି ହୃଦୟକୁ ପବିତ୍ର ରଖିବା ସଙ୍ଗେ ସଙ୍ଗେ ପୂର୍ଣ୍ଣିମା ଦିନ ଶୁଦ୍ଧପବିତ୍ର ମନରେ ନଦୀ ଓ ପୁଷ୍କରିଣୀରେ ନୌକା ଭସାଉଥିଲେ । ଏହି କାର୍ତ୍ତିକ ପୂର୍ଣ୍ଣିମା ଦିନଠାରୁ ଦୀର୍ଘ ପାଞ୍ଚଦିନ ଧରି କଟକର ଗଡଗଡ଼ିଆ ଘାଟଠାରେ ବାଲିଯାତ୍ରା ଅନୁଷ୍ଠିତ ହୁଏ । ଏହା ସହିତ ନୌବାଣିଜ୍ୟର ସମ୍ପର୍କ ରହିଛି । ନୌବାଣିଜ୍ୟର କେନ୍ଦ୍ରସ୍ଥଳୀ ଭାବରେ ସେତେବେଳେ ମହାନଦୀର ଗଡ଼ଗଡ଼ିଆ ଘାଟ ପ୍ରସିଦ୍ଧି ଲାଭ କରିଥିଲା ।

ସେହି ସ୍ଥାନରୁ ଉତ୍କଳୀୟ ବଣିକମାନେ ଯାତ୍ରାରମ୍ଭ କରୁଥିଲେ ଏବଂ କାର୍ତ୍ତିକ ଅମାବାସ୍ୟା ଠାରୁ ପୂର୍ଣ୍ଣିମା ମଧ୍ୟରେ ସେହି ସ୍ଥାନକୁ ପୁଣି ଫେରି ଆସୁଥିଲେ । ଏହିଠାରେ ବାଣିଜ୍ୟ କାରବାର ଚାଲୁଥିଲା । ବିଶେଷ କରି କାର୍ତ୍ତିକ ଶେଷ ପାଞ୍ଚଦିନ ବାଣିଜ୍ୟ ବ୍ୟବସାୟ ଜୋର୍‌ସୋରରେ ହେଉଥିଲା । ହୁଏତ ସେହି ସ୍ମୃତିକୁ ମନେରଖିବା ପାଇଁ ବାଲିଯାତ୍ରାର ପରମ୍ପରା ପ୍ରଚଳିତ ହୋଇ ଆସୁଛି ।

ଏତଦ୍‌ବ୍ୟତୀତ ବାଲିଦ୍ୱୀପକୁ ଯାତ୍ରା କରୁଥିବାରୁ ଏହାକୁ ବାଲିଯାତ୍ରା ମଧ୍ୟ କହନ୍ତି । ପୁଣି ମହାନଦୀ ବାଲି ଉପରେ ଯାତ୍ରା ହେଉଥିବାରୁ ଏହା ବାଲିଯାତ୍ରା ନାମରେ ଖ୍ୟାତ । ଶୁଣାଯାଏ ଯେ ଶ୍ରୀଚୈତନ୍ୟ କଟକର ବାରବାଟୀ ଦୁର୍ଗରେ ସାକ୍ଷୀଗୋପାଳଙ୍କୁ ଦର୍ଶନ କରିବା ପାଇଁ ମହାନଦୀ ପାରହୋଇ ଗଡ଼ଗଡ଼ିଆ ଘାଟକୁ ଆସିଥିଲେ । ତତ୍କାଳୀନ ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବ ଥିଲେ ଶ୍ରୀଚୈତନ୍ୟଙ୍କର ପ୍ରଥମ ପୃଷ୍ଠପୋଷକ ।

ତାଙ୍କର ବ୍ୟକ୍ତିତ୍ୱ ପ୍ରେମରେ ଆକୃଷ୍ଟ ହୋଇ ରାଜା ବୈଷ୍ଣବ ଧର୍ମର ଦୀକ୍ଷିତ ହୋଇଥିଲେ ।

ସେତେବେଳେ ଶ୍ରୀଚୈତନ୍ୟଙ୍କୁ ରାଜା ଗୌଡ଼ଦ୍ୱାର ଦୁର୍ଗରେ ରଖାଇବା ପାଇଁ ପଠାଇ ଦେଲେ । ଶ୍ରୀଚୈତନ୍ୟ ମହାନଦୀ ବାଲିରେ ଯେଉଁଠି ସ୍ନାନ କରି ନୌକାରେ ଗୌଡ଼ଦ୍ୱାର ଯାଇଥିଲେ ସେଠାରେ ଅଦ୍ୟାବଧି ତାହାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ କଟକ ମହାନଦୀ ଗର୍ଭରେ କାର୍ତ୍ତିକ ପୂର୍ଣ୍ଣିମୀ ଠାରୁ ସପ୍ତାହ ଧରି ବାଲିଯାତ୍ରା ଅନୁଷ୍ଠିତ ହେଉଅଛି ।

ଏହି ବାଲିଯାତ୍ରା ସହିତ ପୂର୍ବ ଭାରତୀୟ ଉପକୂଳରେ ଥିବା ବାଲିଦ୍ୱୀପର ସମ୍ପର୍କ ରହିଛି । ସପ୍ତମ ଶତାବ୍ଦୀରେ କଳିଙ୍ଗ ସମ୍ରାଟ ଶୈଳେନ୍ଦ୍ର ବାଲିଦ୍ୱୀପରେ ତାଙ୍କର ରାଜ୍ୟ ସ୍ଥାପନ କରିଥିଲେ । ଚତୁର୍ଦ୍ଦଶ ଶତାବ୍ଦୀର ଏକ ଓଡ଼ିଆ ଲିପି ବାଲି ଦ୍ୱୀପରେ ଅଦ୍ୟାବଧି ଅଛି । ଏଥିରୁ ଜଣାପଡ଼େ ଯେ ଉତ୍କଳୀୟ ବଣିକମାନେ ସମୁଦ୍ର ପଥରେ ବାଲିଯାତ୍ରା କରୁଥିଲେ ଏବଂ ଉଭୟ ଦେଶ ମଧ୍ୟରେ ନୌବାଣିଜ୍ୟ ଅତ୍ୟନ୍ତ ଘନିଷ୍ଠ ଥିଲା । ଓଡ଼ିଶାର ବାଲିଯାତ୍ରା ଓ ବୋଇତ ବନ୍ଦାଣ ପ୍ରଥା ଏହାର ସୂଚନା ଦିଏ । ଏହି ବାଲିଦ୍ୱୀପର ବସ୍ଥାନବେ ଭାଗ ଲୋକ ହିନ୍ଦୁ । ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ହିନ୍ଦୁ ବୋଲି କହନ୍ତି ।

ଭାରତୀୟମାନେ ସ୍ନାନ ସମୟରେ ଗଙ୍ଗା, ଗୋଦାବରୀ, ନର୍ମଦା, ସରସ୍ୱତୀ, ସିନ୍ଧୁ, କାବେରୀ, ଯମୁନା ଆଦି ନାମ ସ୍ମରଣ କରନ୍ତି । ବାଲିଦ୍ୱୀପର ଲୋକମାନେ ଗଙ୍ଗା, ଯମୁନା, ସରସ୍ୱତୀ, ମହାନଦୀ (ମହାସୁର ନଦୀ) ଓ ମହେନ୍ଦ୍ରତନୟା ନଦୀର ନାମୋଚ୍ଚାରଣ କରନ୍ତି । ମହେନ୍ଦ୍ରତନୟା ଅଞ୍ଚଳର ଲୋକେ ବାଲିଦ୍ୱୀପକୁ ଯାଇଥିବେ । ଅଦ୍ୟାବଧି ସେଠାରେ ଜନ୍ମଭୂମିକୁ ସେମାନେ ମନେ ରଖିଛନ୍ତି । ବୋଧହୁଏ ଅନ୍ୟ ନଦୀ ନାମ ସହ ମହେନ୍ଦ୍ରତନୟା ନଦୀର ସାମଞ୍ଜସ୍ୟ ଥିବାରୁ ସେମାନେ ଏଭଳି ମନେ ରଖିଛନ୍ତି ।

କାର୍ତ୍ତିକ ପୂର୍ଣ୍ଣିମୀ ଦିନ ବୋଇତ ବନ୍ଦାଣ ପରେ ସାଧବ ପୁଅମାନେ ନୌଯାତ୍ରା କରୁଥିଲେ । ଆଗରେ ଦିଗନ୍ତବିସ୍ତାରି ଗଭୀର ସାଗର । ଉପରେ ସୀମାହୀନ ନୀଳ ଆକାଶ । ଏଭଳି ପରିବେଶକୁ ଭୟ ନକରି ସାହସର ସହିତ କର୍ତ୍ତବ୍ୟ ପଥରେ ଅଗ୍ରସର ହେବା-ପାଇଁ ସାଧବମାନଙ୍କୁ ଆହ୍ୱାନ ଦିଆଯାଉଥିଲା । "ଆକାମା ବୈ, ପାନଗୁଆ ଥୋଇ, ପାନଗୁଆ ତୋର, ମାସକ ଧରମ ମୋର"—ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠୁଥିଲା । 'ଆ' ଅର୍ଥ ଆକାଶ, 'କା' ଅର୍ଥ ଜଳ, 'ମା ବୈ' ଅର୍ଥ ଭୟନାହିଁ । ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖ ଏହି ଚାରିମାସ ସୂର୍ଯ୍ୟଙ୍କର ଅୟନାନ୍ତକାଳ ହୋଇଥିଲେ ମଧ୍ୟ କେବଳ ଆଷାଢ଼ ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ନୌଯାତ୍ରା ସାଧବମାନଙ୍କ ପକ୍ଷରେ ଅତ୍ୟନ୍ତ ଅନୁକୂଳ ଥିଲା ।

ସେହି ଅଭୁଲା ସ୍ମୃତିକୁ ଧରିରଖି ଅଦ୍ୟାବଧି ଓଡ଼ିଆ କୂଳବଧୂ କାର୍ତ୍ତିକ ପୂର୍ଣ୍ଣିମୀ ଦିନ ପ୍ରତ୍ୟୁଷରୁ ଉଠି କଦଳୀ ବାହୁଙ୍ଗା ଓ ସୋଲର ଡଙ୍ଗା ଭସାଉଛନ୍ତି । ଏହି ଡଙ୍ଗାରେ

ଲୁଣ, ସୋରଷ, ଘିଅ ଆଦି ରଖି ସାତଦୀପ ଜଳାଇ ଭସାଇ ଦିଅନ୍ତି । କାର୍ତ୍ତିକ ଏକାଦଶୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ପାଞ୍ଚଦିନ ପଞ୍ଚକ ବ୍ରତ ପାଳନ କରାଯାଏ । ପଞ୍ଚକରେ ଝିଅ-ବୋହୂମାନେ ଚୌରମୂଳେ ମୁରୁଜ ପକାଇ ବାଲୁକା କରି ଦେବପୂଜା କରନ୍ତି । କିମ୍ବଦନ୍ତୀ ଅଛି ଯେ ଗୋପୀମାନେ ବରଦାତା ମହାଦେବଙ୍କୁ ଆରାଧନା କରି କୃଷ୍ଣଙ୍କୁ ନିଜର କରି ପାଇ ଆଜୀବନ ସୁଖରେ କାଳାତିପାତ କରିଥିଲେ । ଅଦ୍ୟାବଧି ଓଡ଼ିଆ ଯୁବତୀମାନେ ସେହି ଉଦ୍ଦେଶ୍ୟରେ ଭାଦ୍ରବ ଓ କାର୍ତ୍ତିକ ମାସରେ ନଦୀ ବାଲୁକା ଶଯ୍ୟାରେ ମହାଦେବ ଓ ବିଷ୍ଣୁଙ୍କୁ ଆରାଧନା କରିଥାନ୍ତି । ଉତ୍କଳୀୟ ବୀର ସନ୍ତାନ ଅନନ୍ତ ସାଗରରେ ଜାହାଜ ନେଇ ଜାଭା, ସୁମାତ୍ରା ପ୍ରଭୃତି ସୁଦୂର ଦେଶମାନଙ୍କୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିବାରୁ ସେହି ସ୍ମୃତିର ଚିହ୍ନ ସ୍ୱରୂପ କଦଳୀ ଡଙ୍ଗାକୁ ନଦୀ ଗର୍ଭରେ ଭସାଇବାର ପରମ୍ପରା ବାଲୁକା ପୂଜାରେ ପରିଲକ୍ଷିତ ହୁଏ ।

ଉତ୍କଳରେ ଯେବେଠାରୁ ସମୁଦ୍ରରେ ବୋଇତଯାତ୍ରା ବନ୍ଦ ହେଲା ସେହି ବର୍ଷଠାରୁ ନୌଯାତ୍ରାର ସ୍ମୃତିକୁ ରକ୍ଷା କରିବାପାଇଁ ପ୍ରତିବର୍ଷ ଆମେ କାର୍ତ୍ତିକ ପୂର୍ଣ୍ଣମୀରେ ଡଙ୍ଗାଭସା ପର୍ବ ପାଳନ କରୁଛୁ । କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ଯେତେବେଳେ ବୋଇତ-ଗୁଡ଼ିକ ଦୂରଦେଶକୁ ଜଳଯାତ୍ରା କରୁଥିଲା ସେତେବେଳେ ମଧ୍ୟ ଏହି ଉତ୍ସବ ପାଳନ କରାଯାଉଥିଲା । ଜଳଯାତ୍ରା ପୂର୍ବରୁ ବୋଇତବନ୍ଦାଣ କରାଯାଇ ପରେ ପରେ ଛୋଟ ଛୋଟ ଡଙ୍ଗାଗୁଡ଼ିକ ଭସା ଯାଉଥିଲା । ଜଳଦେବତାଙ୍କୁ ସନ୍ତୁଷ୍ଟ କରିବାପାଇଁ ତଥା ଜଳଯାତ୍ରାର ବିପତ୍ତିରୁ ରକ୍ଷା ପାଇବାପାଇଁ ଧର୍ମ ଦେବତାଙ୍କ ଶୁଭାଶିଷ ନିମନ୍ତେ ପ୍ରାର୍ଥନା କରାଯାଉଥିଲା ।

ଉତ୍କଳୀୟ ସାଧବମାନଙ୍କ ଦ୍ୱାରା ଉଚ୍ଚାରିତ 'ଆକା ମା ବୈ' ମାଲେସିଆ ଓ ଇଣ୍ଡୋନେସିଆରେ ମଧ୍ୟ ପ୍ରଚଳିତ । ସେମାନଙ୍କ ଭାଷାରେ 'ଆ-ଗାମା' ଅର୍ଥ ହେଉଛି ଧର୍ମ ଏବଂ 'ବୈକ' ଅର୍ଥ ହେଉଛି ଶୁଭ । ତେଣୁ ଏହି ପର୍ବରେ ଛୋଟ ଛୋଟ ଡଙ୍ଗା ଭସାଇବା ଉତ୍କଳୀୟ ବୋଇତଗୁଡ଼ିକ ଦୂରଦେଶକୁ ଜଳଯାତ୍ରା କରିବା ସମୟରେ ପ୍ରଚଳିତ ଥିଲା । ପୁରୀ ବଡ଼ଦାଣ୍ଡରେ ଜଗନ୍ନାଥଙ୍କ ରଥ ପରେ ପରେ ବହୁ ଛୋଟ ଛୋଟ ରଥ ଟଣାଯାଏ । ସେତେବେଳେ ମଧ୍ୟ ସେହିପରି କ୍ଷୁଦ୍ର କ୍ଷୁଦ୍ର କଦଳୀ ବାହୁଙ୍ଗା ବୋଇତଗୁଡ଼ିକ ମୂଳ ବୋଇତ ପରେ ପରେ ଭସା ଯାଉଥିବା ସମ୍ଭବପର । ଓଡ଼ିଶା ଏବଂ ଶ୍ୟାମ ଦେଶ ବ୍ୟତୀତ ଅନ୍ୟ କୌଣସି ଦେଶରେ ଏ ଧରଣର ଡଙ୍ଗାଭସା ପ୍ରାୟ ଦେଖାଯାଏ ନାହିଁ । ଶ୍ୟାମ ଦେଶର ଅଧିବାସୀମାନେ କାର୍ତ୍ତିକ ପୂର୍ଣ୍ଣମୀ ଦିନ ରାତି ଥାଉଁ ଥାଉଁ କଦଳୀ ବାହୁଙ୍ଗାର ଡଙ୍ଗାରେ ଦୀପ ଜଳାଇ ନୌକାଗୁଡ଼ିକୁ ନଦୀରେ ଭସାଇ ଦିଅନ୍ତି ।

ଏବେ ସୁଦ୍ଧା ତାହାଙ୍କ ବୋଇତ ବନ୍ଦାଣ ଉତ୍ସବ (ତାହାଙ୍କ ଭାଷାରେ ଲୟ କ୍ରାଥଙ୍ଗ/ଲୟକ୍ରାଧୋଙ୍ଗ) ଏକ ପ୍ରଧାନ ପର୍ବଭାବରେ ପାଳନ କରାଯାଉଛି । ସେହିଦିନ

ଅଙ୍ଗୋବାସୀମାନେ କଳଙ୍ଗଦେବ 'ମେ ଖୋଙ୍ଗ ଖାଁ'ଙ୍କ ପୂଜା ଆରାଧନା କରୁଥାନ୍ତି । କଳିଙ୍ଗ ସହିତ ସିଂହଳର ସାଂସ୍କୃତିକ ସମ୍ପର୍କ ଅତ୍ୟନ୍ତ ନିବିଡ଼ ଥିଲା । ସିଂହଳର ପ୍ରଥମ ରାଜା ବିଜୟଙ୍କ ଜନ୍ମସ୍ଥଳୀ କଳିଙ୍ଗ ହୋଇଥିବାରୁ ତାହାଙ୍କ ନାମ ଥିଲା ବିଜୟ କଳିଙ୍ଗ । ଉତ୍କଳର ବଣିକ 'ତପସୁ' 'ଭଲ୍ଲିକ' ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ସିଂହଳର ପୂର୍ବ ଉପକୂଳରେ ଚୈତ୍ୟ ନିର୍ମାଣ କରିଥିଲେ । କଳିଙ୍ଗ ରାଜା ଗୁହଶିବ ନିଜର କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ଦ୍ୱାରା ବୁଦ୍ଧଙ୍କ ପବିତ୍ର ଦନ୍ତ ସିଂହଳକୁ ପଠାଇଥିଲେ । ପଞ୍ଚଦଶ ଶତାବ୍ଦୀରେ ସାଧବ ଦଧିବାମନ ସାହୁ ପ୍ରାଚୀ ନଦୀରେ ବୋଇତ ଚଳାଇ ସିଂହଳ ସହିତ ବାଣିଜ୍ୟ କାରବାର କରୁଥିଲେ । ସେତେବେଳେ ସିଂହଳରୁ ମା ମଙ୍ଗଳାଙ୍କ ପାଷାଣ ବିଗ୍ରହ ଆଣି କାକଟପୁରରେ ସ୍ଥାପନା କରିଥିଲେ । ଫଳରେ ଉତ୍କଳ ସହିତ ସିଂହଳର ସାଂସ୍କୃତିକ ଓ ବାଣିଜ୍ୟିକ ସମ୍ପର୍କ ଅତ୍ୟନ୍ତ ସୁଦୃଢ଼ ଥିଲା । ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ—

"ବହିତ୍ର ଲାଗିଲା ଯାଇ
ସିଂହଳ ଦ୍ୱୀପରେ
ସାଧବ ସୁବର୍ଣ୍ଣମାନେ
ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ......"

ଏହି ଉକ୍ତିରୁ ସିଂହଳ ସହିତ ଉତ୍କଳର ସମ୍ପର୍କ ସୁସ୍ପଷ୍ଟ । ସିଂହଳ ପରି ବର୍ମା ସହିତ ଉତ୍କଳର ସମ୍ପର୍କ ନିବିଡ଼ ଥିଲା । ବର୍ମାର ପେଗୁ ଉପକୂଳ କଳିଙ୍ଗ ନାମରେ ଏବଂ ଉତ୍ତର ଉପକୂଳ ଉତ୍କଳ ନାମରେ ପରିଚିତ ଥିଲା । ଉତ୍କଳର ବଣିକମାନେ ତାମ୍ରଲିପ୍ତିରୁ ବର୍ମା ଯାଉଥିଲେ । ଭିଏତ୍‌ନାମର ପ୍ରାଚୀନ ନାମ ଚମ୍ପାର ରାଜଧାନୀ ଥିଲା ସିଂହପୁର ।

ଏହା କଳିଙ୍ଗ ରାଜଧାନୀ ସିଂହପୁରର ନାମାନୁସାରେ ହୋଇଛି । ବର୍ତ୍ତମାନ ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଆନ୍ଧ୍ରର ଶ୍ରୀକାକୁଲମ୍ ଜିଲ୍ଲାରେ ଏହା ଅବସ୍ଥିତ । ବିଜୟ କଳିଙ୍ଗ ରାଜାଙ୍କର ପିତା ସିଂହବାହୁ ଏହି ସିଂହପୁରରେ ପ୍ରାସାଦ ନିର୍ମାଣ କରିଥିଲେ । ଚମ୍ପା ଓ କଳିଙ୍ଗ ମଧ୍ୟରେ ସାମାଜିକ ଓ ବାଣିଜ୍ୟିକ ସମ୍ପର୍କ ରହିଥିଲା । କଳିଙ୍ଗରୁ ବହୁ ପରିବାର ଜାଭାରେ ବସତି ସ୍ଥାପନ କରିଛନ୍ତି । ଜାଭାର କଳିଙ୍ଗ ସମ୍ପ୍ରଦାୟ ଲୋକଙ୍କ ବାସସ୍ଥାନ ହେଉଛି କଳିଙ୍ଗ । ସପ୍ତମ ଶତାବ୍ଦୀର 'ବୋରବୁଦୁର ମନ୍ଦିର' ଗାତ୍ରରେ ନୌବିହାର, ନୌବାଣିଜ୍ୟ ଏବଂ ବୋଇତରେ ଚିତ୍ର ଖୋଦିତ ହୋଇଛି । ଜାଭାର ବୋଇତ ଚିତ୍ର ଓ ବୌଦ୍ଧ ମୂର୍ତ୍ତି ସହିତ ଓଡ଼ିଶାର ରତ୍ନଗିରିସ୍ଥ ବୌଦ୍ଧ ମୂର୍ତ୍ତିର ସାମଞ୍ଜସ୍ୟ ରହିଛି । ଓଡ଼ିଆ ସାଧବପୁଅମାନେ ଜାଭା ଦ୍ୱୀପ ଦେଇ ଚୀନ ଦେଶକୁ ଯାଉଥିଲେ ।

ଚୀନ ପରିବ୍ରାଜକ ଫାହିୟାନ ଦୁଇ ଶହ ଯାତ୍ରୀଙ୍କ ସହିତ ଜାହାଜରେ ଜାଭା ବାଟ ଦେଇ ଉତ୍କଳ ଗୃଦ୍ଧବାଳକୁ ଆସିଥିଲେ ବୋଲି ଐତିହାସିକଙ୍କ ମତ । ସମୁଦ୍ର ପଥରେ ଉତ୍କଳୀୟ ସାଧବମାନେ ଆଫ୍ରିକା, ରୋମ୍ ଓ ଗ୍ରୀସ୍ ଦେଶ ସହିତ ବାଣିଜ୍ୟ କରୁଥିଲେ ।

ଶିଶୁପାଳଗଡ଼ରୁ ରୋମିଓ ଟୁଲ୍ ଏବଂ ବାରପଦାର ବାମନଘାଟିରୁ ରୋମ ମୁଦ୍ରା ଆବିଷ୍କୃତ ହୋଇଛି । ଏହା ବ୍ୟତୀତ ବ୍ରହ୍ମଦେଶର ଅନ୍ୟ ନାମ ଥିଲା କଳିଙ୍ଗ ରାଷ୍ଟ୍ର । ବ୍ରହ୍ମଦେଶର ଅଧିବାସୀ ଥିଲେ ବି କଳିଙ୍ଗର ଅଧିବାସୀ । ପ୍ରୋମର ପ୍ରାଚୀନ ନାମ 'ଶ୍ରୀକ୍ଷେତ୍ରକୁ' ଚୀନ ପରିବ୍ରାଜକ 'ଶିଲିଟେଲେ' (ଟେଲିତାଲୋ) ବୋଲି କହୁଛନ୍ତି । ପୁଣି ପେଗୁର ପ୍ରାଚୀନ ନାମ ଓଷ୍ଟ୍ରା>ଓଡ଼ିଶା । ମାଳୟ ଦ୍ୱୀପର ହିନ୍ଦୁ ଅଧିବାସୀମାନଙ୍କୁ କ୍ଲିଙ୍ଗ୍ ବା କେଲିଙ୍ଗ୍ ବୋଲି କୁହାଯାଏ । ବ୍ରହ୍ମଦେଶର ଉତ୍ତର ପଶ୍ଚିମ ଭାଗର ନାମ ଥିଲା ଉତ୍କଳ । ଅତଏବ ଉତ୍କଳ, କଳିଙ୍ଗ ଅଧିବାସୀମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ହିନ୍ଦୁ ସାମ୍ରାଜ୍ୟ ସ୍ଥାପନ କରିଥିଲେ ।

ତଅପୋଇ ଉପାଖ୍ୟାନ ଓଡ଼ିଶାର ପଲ୍ଲୀରେ ବେଶ୍ ଜଣାଶୁଣା । ଏହା ଉତ୍କଳ ନୌବାଣିଜ୍ୟକୁ କେନ୍ଦ୍ର କରି ଗଢ଼ି ଉଠିଛି । ସାତଜଣ ସାଧବପୁଅ ମା'ମଙ୍ଗଳାଙ୍କ ଆଶୀର୍ବାଦରୁ କପରି ବିଦେଶରେ ବାଣିଜ୍ୟକରି ବହୁଦିନ ପରେ ଜାହାଜ ଘେନି ସ୍ୱଦେଶକୁ ଫେରି ଆସୁଥିଲେ ତାହା ଏଥିରେ ଉଲ୍ଲିଖିତ । ଦେବୀ ମଙ୍ଗଳା ହେଉଛନ୍ତି ନୌଯାତ୍ରାର ଅଧିଷ୍ଠାତ୍ରୀ ଦେବୀ । ସାତ ଭାଇଙ୍କର ଏକମାତ୍ର ଅଲିଅଳି ଟେହ୍ଲା ଭଉଣୀ ସାଧବ ଝିଅ ତଅପୋଇ ପ୍ରତ୍ୟେକ ଭାଦ୍ରବ ମାସ ରବିବାର ଦିନ ଏହି ସର୍ବମଙ୍ଗଳାଙ୍କର ପୂଜା କରିବା ଯୋଗୁ ମା' ମଙ୍ଗଳା ପ୍ରସନ୍ନ ହୋଇ ସାତଭାଇଙ୍କୁ ନିରାପଦରେ ଫେରାଇ ଆଣିଥିଲେ । ଏହାକୁ ଖୁଦୁରୁକୁଣି ବା ଭୋଦେଇ ଓଷା କହନ୍ତି ।

ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଅଦ୍ୟାବଧି ଏହି ଖୁଦୁରୁକୁଣି ଓଷା କୁମାରୀମାନଙ୍କ ଦ୍ୱାରା ପାଳନ କରାଯାଇଥାଏ । ଖୁଦୁରୁକୁଣି ଓଷା ବା ତଅପୋଇ କାହାଣୀ ଏକାଦଶ ଶତାବ୍ଦୀର ଐତିହାସିକ ଘଟଣା ଉପରେ ଆଧାରିତ । ଏଥିରେ ଓଡ଼ିଆ ସୌଦାଗର ବା ସାଧବମାନଙ୍କ ବାଣିଜ୍ୟ ଦକ୍ଷତାର ଚିତ୍ର ପ୍ରତିଫଳିତ । କବିକର୍ଣ୍ଣ ରଚିତ 'ସଦାନନ୍ଦ ସୌଦାଗର ପାଲା' ଓ 'ଭ୍ରମରବର ପାଲା' ଏବଂ ଧନେଶ୍ୱର ସୌଦାଗର ସୁଆଙ୍ଗ ପ୍ରଭୃତିରେ ଏହି ଚିତ୍ର ପରିଲକ୍ଷିତ । ଅବସ୍ଥାଚକ୍ରରେ ପଡ଼ି ଭାଉଜମାନଙ୍କ କ୍ରୂର ଦୃଷ୍ଟିରେ ଲାଞ୍ଛିତା, ପୀଡ଼ିତା ଧର୍ମ ସାଧବ ଝିଅ ତଅପୋଇ ନିଷ୍ଠା, ଭକ୍ତି ଓ ଏକାଗ୍ରତାର ସହିତ ସାମାନ୍ୟ ଖୁଦ ପୂଜା କରି ସର୍ବମଙ୍ଗଳା ମା'ଙ୍କର ଆଶୀର୍ବାଦ ଲାଭ କରିଥିଲା ।

ସେତେବେଳେ ମା' ମଙ୍ଗଳା ଠାକୁରାଣୀ ସାମାନ୍ୟ ଖୁଦରୁକୁଣି ହୋଇ ବିପଦରୁ ତଅପୋଇଙ୍କୁ ଉଦ୍ଧାର କରିଥିବାରୁ ଅଦ୍ୟାବଧି ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ମାନଦକାଳ ଏହି ଖୁଦୁରୁକୁଣି ଓଷା ପାଳନ କରାଯାଉଛି । ଏକାଦଶ ଶତାବ୍ଦୀରେ ସାଧବମାନେ ବହୁ କଷ୍ଟ ସ୍ୱୀକାର କରି ଓଡ଼ିଆର ଅତିପ୍ରିୟ ପାନ ଗୁଆ ଠାରୁ ଆରମ୍ଭ କରି ଉତ୍କୃଷ୍ଟ କୃଷିଜାତ ଦ୍ରବ୍ୟ ବିଦେଶରେ ବିକ୍ରୟ କରିବା ସଙ୍ଗେ ସଙ୍ଗେ ବିଦେଶରୁ ବହୁ ମୂଲ୍ୟବାନ ପଦାର୍ଥ ବୋଝ ଆଣୁଥିଲେ । ସେତେବେଳେ ଅଲିଅଳି ତଅପୋଇର ଅଳି ସୁନା କୁଲେଇ ଓ ଗୁନ୍ଦ ମଧ୍ୟ ସହଜରେ ତିଆରି ହୋଇ ପାରୁଥିଲା । ଧନର ପ୍ରାଚୁର୍ଯ୍ୟ ଭିତରେ ସାଧବମାନେ ଜୀବନ ଉପଭୋଗ କରୁଥିଲେ ।

କେଉଟମାନଙ୍କର ଚଇତ୍ରପର୍ବରେ ଚୈତ୍ର ପୂର୍ଣ୍ଣିମା ଦିନ ସେମାନେ ନିଜର କୁଳଦେବତା ଅଶ୍ୱିନୀକୁମାରଙ୍କୁ ପୂଜା କରିଥାନ୍ତି । ସାମୁଦ୍ରିକ ବାଣିଜ୍ୟ କାରବାରରେ ନାନା ରୋଗରୁ ମୁକ୍ତ ପାଇବାପାଇଁ ଦେବତାଙ୍କ ବୈଦ୍ୟ ଅଶ୍ୱିନୀକୁମାରଙ୍କୁ ପୂଜା କରିବାର ପରମ୍ପରା ରହିଆସିଛି । ଓଡ଼ିଶାର ପ୍ରଧାନ ପର୍ବ ରଜପର୍ବର ତୃତୀୟ ଦିନରେ ହେଉଥିବା 'ବସୁମତୀ ଗାଧୁଆ' ସେହି ପୂର୍ବ ପରମ୍ପରାର ସ୍ମାରକୀ ବହନ କରେ । ଏହି ସମୟରେ ଧନରତ୍ନ ପରିପୂର୍ଣ୍ଣ ବୋଇତର ଚିତ୍ର ଅଙ୍କନ କରାଯାଇ ଗୃହ ପ୍ରାଙ୍ଗଣରେ ମହାଲକ୍ଷ୍ମୀଙ୍କ ପୂଜା କରାଯାଏ । ନିଶା ମଙ୍ଗଳବାର ବା ଖୁଲଣାସୁନ୍ଦରୀ ଓଷାରେ ବଣିକ ଧନେଶ୍ୱରଙ୍କର ନୌଯାତ୍ରାର ଚିତ୍ର ପ୍ରକଟିତ । ନଦୀ କୂଳରେ ଖୁଲଣା ନିଜର ପତିଦେବତା ଓ ପୁତ୍ରର ମଙ୍ଗଳ କାମନା କରି ମା'ମଙ୍ଗଳାଙ୍କୁ ପୂଜା କରିଛି ।

ଉତ୍କଳର ଘରେ ଘରେ ପ୍ରଚଳିତ ସତ୍ୟନାରାୟଣ ପାଲାରେ ହିନ୍ଦୁର ସତ୍ୟନାରାୟଣ ଓ ମୁସଲମାନ ସତ୍ୟପୀର ଦୁହିଁଙ୍କ ମଧ୍ୟରେ ମୈତ୍ରୀଭାବ ସ୍ଥାପନ କରିବା ହିଁ ଥିଲା ଉଦ୍ଦେଶ୍ୟ । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ପରେ ଶ୍ରୀଚୈତନ୍ୟଙ୍କ ଅବତାରବାଦର ପ୍ରତିଷ୍ଠା ପାଇଁ ପାଲାଗୁଡ଼ିକରେ ଶ୍ରୀଚୈତନ୍ୟଙ୍କୁ ବିଷ୍ଣୁଙ୍କ ଅବତାର ରୂପେ ବର୍ଣ୍ଣନା କରାଯାଇଛି । ଉତ୍କଳୀୟ ରାଜାମାନଙ୍କ ସହିତ ମରହଟ୍ଟାମାନଙ୍କର ସଂଘର୍ଷ ଏବଂ ଉତ୍କଳରେ ସାଧବମାନଙ୍କ ନୌବାଣିଜ୍ୟର ଚିତ୍ର ଏଥିରେ ପରିଲକ୍ଷିତ ।

ମରହଟ୍ଟା ଓ ମୁସଲମାନମାନଙ୍କ ସହିତ ଅହରହ ସଂଘର୍ଷ ହେବା ଫଳରେ ଉତ୍କଳୀୟମାନଙ୍କର ଆର୍ଥିକ ଓ ନୈତିକ ଅବସ୍ଥାର ଅବନତି ଘଟିଲା । ଦେଶ ମଧ୍ୟରେ ନାନାବିଧ କର ଓ ପଣି ଦ୍ୱାରା ଉତ୍କଳୀୟମାନେ ଅତିଷ୍ଠ ହେବାକୁ ଲାଗିଲେ । ବୈଦେଶିକ ଜଳଦସ୍ୟୁମାନଙ୍କ ଆକ୍ରମଣରୁ ନିଜର ବାଣିଜ୍ୟପୋତ ଗୁଡ଼ିକୁ ରକ୍ଷା କରିବା ସମ୍ଭବପର ହେଲାନାହିଁ । ୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଦ୍ୱାରା ଲବଣ ଆଇନ୍ ପ୍ରଚଳନ ଫଳରେ ଲାଭଜନକ ନ ହେବାରୁ ନୌବାଣିଜ୍ୟ ଚଳାଚଳ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ୧୮୬୧ରେ ଭୀଷଣ ଝଡ଼ ବତାସରେ ଜାହାଜ ସବୁ ଧ୍ୱଂସ ପାଇଗଲା । ଆଜି ଓଡ଼ିଆମାନେ ଆଉ କେହି ଜାହାଜ ରଖି ନାହାନ୍ତି । କେବଳ ନଦୀ ବକ୍ଷରେ ପଟୁଆ ଓ ସମୁଦ୍ର ତଟରେ ନୋଳିଆମାନଙ୍କର ପଟୋଉ (ହୁଲ-ଡଙ୍ଗା) ଏବଂ କୁଜଙ୍ଗର ଭୂୟାଁମାନଙ୍କ ଦ୍ରୁତଗାମୀ ଜାଲିଆ ଗୁଡ଼ିଏ ରହିଛି ।

କଟକର ତାଳଦଣ୍ଡା କେନାଲ, କେନ୍ଦ୍ରାପଡ଼ା ଓ ପଟ୍ଟାମୁଣ୍ଡାଇ କେନାଲରେ ନୌକା ସାହାଯ୍ୟରେ କିଛି ବର୍ଷ ବାଣିଜ୍ୟ କାରବାର ଚାଲୁଥିଲା । କିନ୍ତୁ ବର୍ତ୍ତମାନ ପ୍ରାୟ ବନ୍ଦ ହୋଇ ଆସିଲାଣି । ପୂର୍ବ ଗୌରବ ଓ ଐତିହ୍ୟ ସବୁ ଆଜି ଲୁପ୍ତପ୍ରାୟ । କର୍ପୂର ଉଡ଼ିଯାଇଛି ମାତ୍ର ପଡ଼ିଛି ଟିକିଏ ସେହି କନାର ବାସନା । ଉତ୍କଳୀୟ ବନ୍ଦର ଗୁଡ଼ିକ ମଧ୍ୟରେ ତାମ୍ରଲିତସ୍ (ତାମ୍ରଲିପ୍ତି), କୋଶମ୍ବ (ବାଲେଶ୍ୱର), ଅଜମସ (ସୁବର୍ଣ୍ଣରେଖା), ତନ୍ଦସ୍ (ବ୍ରାହ୍ମଣୀ), ଦୋସରମ (ବୈତରଣୀ), ମନଦ (ମହାନଦୀ), କତ୍ତକର୍ଦ୍ଦମ (କଟକ), ନନଗେନ୍ (ପୁରୀ), ନୈନଗୋନା ବା କୋଣାଗର ବା କନ୍‌ନୋଗର

(କୋଣାର୍କ), ପାଲୁର (ପାଲୁର୍), କଟକଗ୍ରାମ୍ (କଟକଗ୍ରାମ୍ (କଳିଙ୍ଗନଗର/କଳିଙ୍ଗ ପାଟଣା) ପ୍ରଭୃତି ବାଣିଜ୍ୟ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ ସେଗୁଡ଼ିକର ସତ୍ତା ଆଉ ନାହିଁ—କାଳ ଗର୍ଭରେ ବିଲୀନ ପ୍ରାୟ ।

ତତ୍କାଳୀନ କଳିଙ୍ଗର ରାଜଧାନୀ କଟକ କହିଲେ ଉତ୍ତରରେ ମେଦିନୀପୁର ତାମ୍ରଲିପ୍ତି ବନ୍ଦର ଠାରୁ ଦକ୍ଷିଣରେ ଚିଲିକା ଦେଇ କଳିଙ୍ଗ ପାଟଣା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ବାଲେଶ୍ୱର ବନ୍ଦର ଠାରୁ ଚିଲିକା ପାଲୁର୍ ବନ୍ଦର ଭିତରେ କଟକର ନୌବାଣିଜ୍ୟ ଚାଲୁଥିଲା । ପୁଣି ତାମ୍ରଲିପ୍ତି ବନ୍ଦରରୁ ଧାମରା ବନ୍ଦରୁ ଦେଇ ପାରାଦ୍ୱୀପ ଓ କୋଣାର୍କ ତଥା ପାଲୁର୍ ବନ୍ଦର ବାଟେ ସିଂହଳ, ଜାଭା, ସୁମାତ୍ରା, ବାଲି ବୋର୍ଣ୍ଣିଓ, ମାଳୟ, ଚୀନ ଓ ଶ୍ୟାମ ଦେଶ ପ୍ରଭୃତି ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ସହିତ ଯେଉଁ ବାଣିଜ୍ୟିକ ସମ୍ପର୍କ ରହିଥିଲା ତାହାର ଯୋଗସୂତ୍ର ରକ୍ଷା କରୁଥିଲା ଏହି ମହାନଦୀ ଓ କାଠଯୋଡ଼ିର ମଧ୍ୟସ୍ଥଳୀ କଟକ ନଗରୀ । ସେତେବେଳେ କଟକର ମହାନଦୀ ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧ୍ୟରେ ନୌବାଣିଜ୍ୟର ଯୋଗସୂତ୍ର ରକ୍ଷା କରିପାରୁଥିଲା । ଜଳପଥ ହିଁ ଗମନାଗମନର ଏକମାତ୍ର ସୁବିଧା ଓ ନିରାପଦ ପଥ ଥିଲା । ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ବୈତରଣୀ, ବ୍ରାହ୍ମଣୀ, ବିରୁପା, ଗେଙ୍ଗୁଟି, ମହାନଦୀ, ଦେବୀ ନଦୀ, କାଠଯୋଡ଼ି, ଚିତ୍ରୋତ୍ପଳା, ପାଇକା, ଦୟା, ଭାର୍ଗବୀ, କୁଶଭଦ୍ରା, ପ୍ରାଚୀ ଚନ୍ଦ୍ରଭାଗା, ମାଟିଆ ନଦୀ, ଋଷିକୁଲ୍ୟା, ବଂଶଧାରା ଓ ନାଗାବଳି ଆଦି ପୁରାଣପ୍ରସିଦ୍ଧ ପୁଣ୍ୟ ନଦନଦୀ ପୂର୍ବରେ ସମୁଦ୍ର ସହିତ ସଂଯୋଗ ହୋଇଥିବାରୁ ବୋଇତ ଓ ଜାହାଜରେ ବାଣିଜ୍ୟ କାରବାର ସହଜ ହେଉଥିଲା ।

ଏହି ନଦୀ ସମୂହକୁ ଭିତ୍ତିକରି ବହୁ ତୀର୍ଥ ବା କ୍ଷେତ୍ର ଗଢି ଉଠିଛି ଓ ନୌବାଣିଜ୍ୟର ସ୍ମୃତିକୁ ବକ୍ଷରେ ଧାରଣ କରି ଇତିହାସ ଭଳି ପଡ଼ିରହିଛି । ବୋଇତ ବନ୍ଦାଣ ଉତ୍କଳର ନିଜସ୍ୱ ସଂସ୍କୃତି । କଟକର ମହାନଦୀରେ ପୂର୍ଣ୍ଣିମା ଦିନ 'ବୋଇତ ବନ୍ଦାଣ ଉତ୍ସବ' ଏବଂ ବାଲେଶ୍ୱରର ସୁନହାଟ ଅଞ୍ଚଳରେ 'ବୋଇତ ବନ୍ଦାଣ ଉତ୍ସବ' ଅଦ୍ୟାବଧି ମହାସମାରୋହରେ ପାଳିତ ହୋଇଆସୁଛି ।

ପ୍ରାଚୀନ ଗୌରବାବହ ସଂସ୍କୃତିର ସ୍ୱାକ୍ଷର ବହନକରି ଆଜି ଓଡ଼ିଆ ପବିତ୍ର କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ଭସାଣ ଉତ୍ସବ ଜରିଆରେ ଅତୀତର ମହାନ୍ ସ୍ମୃତିକୁ ଯୁଗ ଯୁଗ ଧରି ବଞ୍ଚାଇ ରଖିଛି ଓ ରଖିବ ମଧ୍ୟ । କଟକର ନୌବାଣିଜ୍ୟ କହିଲେ ଉତ୍କଳ ବା କଳିଙ୍ଗର ନୌବାଣିଜ୍ୟକୁ ବୁଝାଉଥିବାରୁ—କଟକର ପ୍ରାଚୀନ ସଂସ୍କୃତି ହିଁ ଉତ୍କଳୀୟ ସଂସ୍କୃତି ଏହା ନିଃସନ୍ଦେହ ।



# କଟକରେ ବିଭିନ୍ନ ଧର୍ମ-ସମ୍ପ୍ରଦାୟ

ଡଃ ପ୍ରହ୍ଲାଦ ଚରଣ ମହାନ୍ତି

ଭାରତର ରାଜଧାନୀଭିତ୍ତିକ ସହର ଗୁଡ଼ିକ ମଧ୍ୟରେ କଟକ ସହର ହେଉଛି ପ୍ରାଚୀନତମ ସହର । ଏପର୍ଯ୍ୟନ୍ତ ଏ ସହରରେ ବୟସ ସୀମା ଏକ ହଜାର ବର୍ଷ ମଧ୍ୟରେ ସୀମିତ ରଖାଯାଇଥିଲେ ମଧ୍ୟ ଏହାର ସାମାଜିକ ସ୍ଥିତି, ଭୌଗୋଳିକ ଗୁରୁତ୍ୱ, ବାଣିଜ୍ୟିକ ପ୍ରାଧାନ୍ୟ ଯେ ତାହାର ରାଜନୈତିକ ସ୍ଥିତିର ବହୁ ପୂର୍ବବର୍ତ୍ତୀ ତାହା ନିର୍ବିବାଦରେ କୁହାଯାଇପାରେ । ଓଡ଼ିଶାର ପ୍ରାଚୀନ ଭୂଖଣ୍ଡରେ ଅବସ୍ଥିତି ଦୃଷ୍ଟିରୁ କଟକ ଯେ ବହୁ ସାମାଜିକ, ଆଧ୍ୟାତ୍ମିକ ଓ ରାଜନୈତିକ ଉଦ୍‌ବର୍ତ୍ତନର ମୂକସାକ୍ଷୀ ହୋଇ ରହିଥିବ ତାହା ମଧ୍ୟ କଳ୍ପନା କରିବା କଷ୍ଟକର ବ୍ୟାପାର ନୁହେଁ ।

କଟକର ସାମାଜିକ ବା ସାଂସ୍କୃତିକ ଇତିହାସର ଅଣ୍ଟ୍ରାରମ୍ଭ କେବେ ହୋଇଥିଲା, ତାହା ଉଲ୍ଲେଖ କରିବା ସମ୍ଭବ ନ ହେଲେ ମଧ୍ୟ ଏହାର ଆଦିମ ଅଧିବାସୀମାନେ ଯେ ଓଡ଼ିଶାର ଧର୍ମ-ପ୍ରବାହରେ ପ୍ରତ୍ୟକ୍ଷ ଭାବରେ ଅବଗାହନ କରିଥିବେ ତାହା ଅନାୟାସରେ ଅନୁମାନ କରାଯାଇପାରେ । ଓଡ଼ିଶାରେ ଆର୍ଯ୍ୟ ସଂସ୍କୃତିର ଅଭ୍ୟୁତ୍ଥାନ ପୂର୍ବରୁ ଏଠାରେ ଶବର-ସଂସ୍କୃତି ଜନ-ଜୀବନକୁ ବିଶେଷଭାବରେ ପ୍ରଭାବିତ କରିଥିଲା । ବିଶ୍ୱର ସମ୍ଭବତଃ ପ୍ରାଚୀନତମ ବିଗ୍ରହ ଶ୍ରୀଜଗନ୍ନାଥଙ୍କଠାରେ ଏବଂ ତାଙ୍କର ସେବା-ପୂଜା-ଉତ୍ସବରେ ଶାବର-ସଂସ୍କୃତିର ଅସପନ୍ନ ପ୍ରାଧାନ୍ୟ ଲକ୍ଷ୍ୟକଲେ ଉପରୋକ୍ତ ମନ୍ତବ୍ୟକୁ ଅବିଶ୍ୱାସ କରିହୁଏ ନାହିଁ । ବିଶିଷ୍ଟତଃ ଓଡ଼ିଆ ଜାତିର ଧର୍ମଧାରଣାରେ ଶବର ବା ଆଦିବାସୀ-ପ୍ରଭାବ-ସମନ୍ୱିତ ଗ୍ରାମଦେବୀ, ବୃକ୍ଷପୂଜା, ଦଣ୍ଡପୂଜା ଇତ୍ୟାଦିର ପରମ୍ପରା ଉପରୋକ୍ତ ମତକୁ ଦୃଢ଼ୀଭୂତ କରେ । ପ୍ରାଚୀନ କାଳରେ ଓଡ଼ିଶା ଭୂଖଣ୍ଡ ଏକ୍ସ ଶାବର-ସଂସ୍କୃତିର ଯେ ପୀଠସ୍ଥଳୀ ଥିଲା, ତାହା କହିବା ବାହୁଲ୍ୟମାତ୍ର ।

କଟକର ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ ତତ୍କାଳୀନ କଟକର ଚତୁଃପାର୍ଶ୍ୱସ୍ଥ ଅଞ୍ଚଳ ଅରଣ୍ୟ ବହୁଳ ଥିବାଯୋଗୁଁ ଏବଂ ଏପର୍ଯ୍ୟନ୍ତ କଟକ ସହରର ଅଦୂରବର୍ତ୍ତୀ ଅଞ୍ଚଳରେ ଶବରମାନେ ବାସ କରୁଥିବାରୁ, ଏହା ସେତେବେଳେ ସାମାଜିକ, ଆଧ୍ୟାତ୍ମିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ କଟକ ଯେ ଆଦ୍ୟ ଅଧିବାସୀ

ତେବେ ଶବର ସମ୍ପ୍ରଦାୟ ଅଥବା ଶାବରୀ ସଂସ୍କୃତି ପ୍ରଭାବିତ ଏକ ଧାର୍ମିକ ସମ୍ପ୍ରଦାୟକୁ ଆଶ୍ରୟ ଦେଇଥିବ ଏହା ନିଃସନ୍ଦେହରେ କୁହାଯାଇପାରେ ।

ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ଉତ୍ତର ଭାରତର ଆର୍ଯ୍ୟମାନେ ଦକ୍ଷିଣଭାରତର ଦ୍ରାବିଡ଼ ଓ ଶାବରୀ ସଂସ୍କୃତିକୁ ଘୃଣା କରୁଥିବାରୁ ସେତେବେଳେ ଏ ଅଞ୍ଚଳକୁ ବିଶେଷତଃ ଓଡ଼ିଶାକୁ ଅପବିତ୍ର ଦେଶ ବା ବ୍ରାତ୍ୟଦେଶ ବୋଲି ଅଭିହିତ କରିଥିଲେ ଏବଂ ଓଡ଼ିଶାରେ ପାଦ ଦେଲେ ପ୍ରାୟଶ୍ଚିତ୍ତ କରିବାକୁ ନିର୍ଦ୍ଦେଶ ଦେଉଥିଲେ । "ପ୍ରାଚ୍ୟ ଦେଶର ପବିତ୍ର ଗ୍ରନ୍ଥମାଳା" ନାମକ ଇଂରାଜୀ ପୁସ୍ତକ ସଂକଳନର ୧୫ଶ ଭାଗରେ ଉଲ୍ଲିଖିତ ହୋଇଥିବା ନିମ୍ନଲିଖିତ ଶ୍ଳୋକଟି ଏ ପ୍ରସଙ୍ଗରେ ତାତ୍ପର୍ଯ୍ୟପୂର୍ଣ୍ଣ ।

"ପଦଭ୍ୟାଂ ସକୃନ୍ନତେ ପାପଂ ଯଃ କଳଙ୍ଗାନ ପ୍ରପଦ୍ୟତେ
ଋଷୟ ନିଷ୍କୃତିଂ ତସ୍ୟ ପ୍ରାହୁର୍ବୈଶ୍ୱାନରଂ ହବିଃ ।"

ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ବା ସଭ୍ୟତାରେ ମାତୃ ଉପାସନାରୁ ଧାର୍ମିକ ପରମ୍ପରା ଅଭ୍ୟୁଦୟ ହୋଇଥିବା ଲକ୍ଷ୍ୟ କରାଯାଏ । ବେଦରେ ସରସ୍ୱତୀଙ୍କୁ ଆଦିମାତା ରୂପେ କଳ୍ପନା କରାଯାଇଛି । ପୃଥିବୀକୁ ମା' ରୂପେ କଳ୍ପନା କରିବା ହିନ୍ଦୁ ସଂସ୍କୃତିର ଏକ ପ୍ରାଚୀନ ପରମ୍ପରା । ଏହି ମାତୃ-ଉପାସନାରୁ ପରବର୍ତ୍ତୀ କାଳରେ ଶାକ୍ତ-ଉପାସନା ଉଦ୍‌ଭବ ହୋଇଥିଲା । ଓଡ଼ିଆମାନଙ୍କ ନିଜସ୍ୱ ରଜପର୍ବ ଏହି ମାତୃ ଉପାସନା ଉପରେ ପ୍ରତିଷ୍ଠିତ । ମାଟି ମା'ର ନିରଜନା ଆଦିବାସୀ ଧର୍ମଧାରଣାର ଏକ ଅବିଚ୍ଛେଦ୍ୟ ଅଙ୍ଗ ।

କଟକରେ ଏପର୍ଯ୍ୟନ୍ତ ପୂଜିତ ହେଉଥିବା କେତେକ ଦେବୀଙ୍କୁ ଶାକ୍ତ ଉପାସନାର ଅଧିଷ୍ଠାତ୍ରୀ ଦେବୀ ରୂପେ ପରବର୍ତ୍ତୀ କାଳରେ ଗ୍ରହଣ କରାଗଲେ ମଧ୍ୟ ସେମାନଙ୍କର ଆବିର୍ଭାବ ପ୍ରାକ୍-ଆର୍ଯ୍ୟ ଯୁଗରେ ଶାବରୀ ସଂସ୍କୃତିରେ ସଂଘଟିତ ହୋଇଥିଲା । ଏହିପରି ଦେବୀମାନେ ହେଲେ ଶ୍ରୀ ଚଡ଼ିଚଣ୍ଡୀ, ଶ୍ରୀ କଟକ ଚଣ୍ଡୀ, ମଙ୍ଗଳାବାଗର ବାଘମଙ୍ଗଳା ଠାକୁରାଣୀ, ମହିମାଦାସ ବଜାର ବୁଢ଼ୀ ଠାକୁରାଣୀ ଇତ୍ୟାଦି ।

ପ୍ରଖ୍ୟାତ ଆଲୋଚକ ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି 'ଉଷାଭିଳାଷ' କାବ୍ୟର ମୁଖବନ୍ଧରେ ଦର୍ଶାଇଛନ୍ତି ଯେ ଉଷାର ପିତା ବାଣାସୁର ଜଣେ ପରାକ୍ରମଶାଳୀ ଅସୁର ରାଜା ଥିଲେ ଏବଂ ତାଙ୍କର ସାମ୍ରାଜ୍ୟ ମେଦିନୀପୁର (ତମଲୁକ ନେଇ) ଠାରୁ ଦକ୍ଷିଣରେ ବାଣପୁରର ଭଗବତୀଙ୍କ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଶୋଣିତହାଟ (ବାଲେଶ୍ୱର ସହରର ଶୁନହାଟ) ତାର ରାଜଧାନୀ ଥିଲା । ସାରଳାଦାସ 'ମହାଭାରତ'ର ମଧ୍ୟପର୍ବରେ ଲେଖିଛନ୍ତି—

"ଶୋଣିତପୁର ବୋଲି ବୈତରଣୀର ତୀର ।
ବାଣାସୁର ବୋଲି ତହିଁ ଥିଲା ନୃପବର ।"

ହରିବଂଶ, ଭାଗବତରେ ଉଷା ଉପାଖ୍ୟାନ ପ୍ରସଙ୍ଗରେ ବାଣାସୁରର ଶିବକୃପା-ପ୍ରାପ୍ତି ଅପୂର୍ବ ଐଶ୍ୱର୍ଯ୍ୟ, ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା ବିଷୟ ବର୍ଣ୍ଣନା କରାଯାଇ

'ଶ୍ରୋଣିତପୁର' ପରିବର୍ତ୍ତେ 'ଶୋଣିତପୁର' ରାଜଧାନୀ ବୋଲି ଉଲ୍ଲେଖ କରାଯାଇଛି । ସାରଳାଦାସଙ୍କ ବର୍ଣ୍ଣନାରୁ ଅନୁମିତ ହୁଏ ଯେ ପ୍ରାଚୀନକାଳରେ ବାଣେଶ୍ୱରର ବର୍ତ୍ତମାନ ସ୍ଥାନଠାରୁ ଏକ ବିଶାଳ ଜନପଦ ଥିଲା ଏବଂ ତାହା ବୈତରଣୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । 'ଭାଗବତ'ରେ ମଧ୍ୟ ବର୍ଣ୍ଣିତ ହୋଇଛି ଯେ, ନର୍ମଦା ନଦୀର ଉତ୍ତର ପାର୍ଶ୍ୱରେ ଅସୁରରାଜ ବଳି ଭୃଗୁମାନଙ୍କ ପୌରହିତ୍ୟରେ ଯଜ୍ଞାନୁଷ୍ଠାନ କରୁଥିଲାବେଳେ ଶ୍ରୀକୃଷ୍ଣ ବାମନ ରୂପ ଧାରଣ କରି ବଳିଠାରୁ ଭିକ୍ଷାରୂପେ ତ୍ରିପାଦଭୂମି ଗ୍ରହଣପୂର୍ବକ ତାଙ୍କୁ ଛଳରେ ପାତାଳଗାମୀ କରିଥିଲେ ।

ଐତିହାସିକଙ୍କ ମତରେ ପ୍ରାଚୀନ କାଳରେ ଭାରତର ପୂର୍ବୋପକୂଳ ପାତାଳ ନାମରେ କଥିତ ହେଉଥିଲା । ଏଣୁ ବଳି ନର୍ମଦା କୂଳରୁ ଶ୍ରୀକୃଷ୍ଣଙ୍କ ଦ୍ୱାରା ବିତାଡ଼ିତ ହୋଇ ଏହି ପୂର୍ବୋପକୂଳରେ ଆଶ୍ରୟ ନେବା ବା ରାଜ୍ୟ ସ୍ଥାପନ କରିବା କିଛି ଅସମ୍ଭବ ନୁହେଁ । ବାଣାସୁର ଏହି ବଳିର ସନ୍ତାନ ଏବଂ ଶିବଙ୍କ କୃପାରୁ ସେ ଅମିତ ବଳଶାଳୀ ହେବା ଓ ଏହି ଅଞ୍ଚଳର ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହୋଇ ପୂର୍ବୋକ୍ତ ଶୋଣିତପୁରକୁ ରାଜଧାନୀ କରିବା ବିଷୟ ଭାଗବତ ଓ ହରିବଂଶରେ ଉଲ୍ଲେଖ କରାଯାଇଛି । ଅଧିକ କୌତୂହଳର ବିଷୟ ଏହି ଯେ ମୟୂରଭଞ୍ଜ ଓ ତମଲୁକର ପୂର୍ବତନ ମୟୂରଧ୍ୱଜୀ ରାଜାମାନେ କାର୍ତ୍ତିକେୟଙ୍କ ଠାରୁ ମୟୂରଧ୍ୱଜ ଓ ମୟୂରବାହନ ପାଇଥିବା ହେତୁ ସେମାନେ ଅସୁରରାଜ ବାଣାସୁରର ବଂଶଧର ବୋଲି ହରିବଂଶରେ ଉଲ୍ଲେଖ ଅଛି ।

ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ "ପ୍ରାଚୀନ କାଳରେ ଓଡ଼ିଶାର ସମସ୍ତ ଗଡ଼ଜାତ ଦିନେ ଏହି ମୟୂରଧ୍ୱଜୀ ରାଜାମାନଙ୍କ ଅଧୀନରେ ଥିଲା ।" କେନ୍ଦ୍ରାପଡ଼ାର ପ୍ରତ୍ନତାତ୍ତ୍ୱିକ ଆଲୋଚନାରୁ ସୂଚନା ମିଳେ ଯେ କନ୍ଦର ନାମକ ଅସୁର ସେଠାରେ ଶାସନ କରୁଥିଲା । କନ୍ଦର କନ୍ୟା ତୁଳସୀଙ୍କୁ ବିବାହ କରି ଆର୍ଯ୍ୟନେତା ବଳରାମ ଯେଉଁ ସ୍ଥାନରେ ବସତି ସ୍ଥାପନ କରିଥିଲେ ତାହା ଏପର୍ଯ୍ୟନ୍ତ ତୁଳସୀକ୍ଷେତ୍ର ରୂପେ ପ୍ରସିଦ୍ଧ । ସୁତରାଂ ଏସବୁ ବିବରଣୀରୁ ଜଣାଯାଏ ଯେ ଏକଦା ଓଡ଼ିଶା ଭୂଖଣ୍ଡରେ ଅସୁର ସଭ୍ୟତା ପରିବ୍ୟାପ୍ତ ଥିଲା ।

ଏହି ଅସୁର ସଭ୍ୟତା ଯେ ଏକ ଉନ୍ନତ ସଭ୍ୟତା ଥିଲା ତାହା ବେଦ, ପୁରାଣ, ଇତିହାସ ପ୍ରତ୍ନତାତ୍ତ୍ୱିକ ଆବିଷ୍କାରରୁ ମଧ୍ୟ ପ୍ରମାଣିତ ହୁଏ ଏବଂ ଆର୍ଯ୍ୟ ସଭ୍ୟତା ଏହି ଅସୁର ସଭ୍ୟତା ନିକଟରେ ଯେ ବହୁ ପରିମାଣରେ ଋଣୀ ତାହା ମଧ୍ୟ ପ୍ରମାଣିତ ହୁଏ ।

ବେଦରେ ଆର୍ଯ୍ୟ-ଅସୁର ଯୁଦ୍ଧର ବର୍ଣ୍ଣନା, ହରପ୍ପା-ମହେଞ୍ଜୋଦାରୋରେ ଅସୁର ସଭ୍ୟତାର ଐଶ୍ୱର୍ଯ୍ୟାବଶେଷ ତଥା ଆର୍ଯ୍ୟ-ଅସୁର-ଯୁଦ୍ଧର ଭୟାବହ ପରିବେଶର ନମୁନା, ଅସୁର ଦେବତା ଶିବଙ୍କୁ ଆର୍ଯ୍ୟଦେବତା ରୂପେ ଗ୍ରହଣ କରିବା, ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା, ବାଣ-କନ୍ୟା ଉଷା, ହିଡ଼ିମ୍ବ ଭଗିନୀ ହିଡ଼ିମ୍ବା ପ୍ରଭୃତି ଅସୁରକୁଳରେ ଜାତ ହୋଇଥିଲେ ହେଁ ଯଥାକ୍ରମେ ଯଯାତି, ଅନିରୁଦ୍ଧ, ଭୀମ ପ୍ରଭୃତି ଆର୍ଯ୍ୟବୀରମାନେ ସେମାନଙ୍କ ପାଣିଗ୍ରହଣ କରିବା ଇତ୍ୟାଦି ଅବତାରଣାରୁ ପ୍ରାକ୍-ବୈଦିକ ଯୁଗରେ ଅସୁର ସଭ୍ୟତାର

ପ୍ରାଣ ପ୍ରାକ୍ ଆର୍ଯ୍ୟ ଓ ବୈଦିକ ଯୁଗରେ ଆର୍ଯ୍ୟ-ସଭ୍ୟତା ଉପରେ ଅସୁର-ସଭ୍ୟତାର ସୁଦୂର ପ୍ରସାରୀ ପ୍ରଭାବ ବେଶ୍ ଅନୁମାନ କରାହେବ । ଓଡ଼ିଶା ଯେ ପ୍ରାକ୍-ବୈଦିକ ଯୁଗରେ ଏଭଳି ଏକ ଐଶ୍ୱର୍ଯ୍ୟଶାଳୀ ଅସୁର ସଭ୍ୟତାର ପୀଠସ୍ଥଳୀ ଥିବ ଏବଂ ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ କଟକ ଯେ ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବ ତାହା ଅନାୟାସରେ କୁହାଯାଇପାରେ ।

ଉତ୍ତର ଭାରତରୁ ଆର୍ଯ୍ୟମାନଙ୍କ ଆଗମନ ପରେ ଅଥବା ଓଡ଼ିଶାରେ ଆର୍ଯ୍ୟୀକରଣ ପ୍ରକ୍ରିୟା ଆରମ୍ଭ ହେବା ପରେ ଅସୁରମାନେ ବିତାଡ଼ିତ ହୋଇ ଦକ୍ଷିଣଭାରତରେ ବସତି ସ୍ଥାପନ କଲେ ଏବଂ ସେମାନେ ଦ୍ରାବିଡ଼ ନାମରେ ପରିଚିତ ହେଲେ । କ୍ରମେ କ୍ରମେ ଓଡ଼ିଶାରେ ଆର୍ଯ୍ୟ ସଂସ୍କୃତି ପରିବ୍ୟାପ୍ତ ହୋଇଥିଲି । କିନ୍ତୁ ଏହି ସଂସ୍କୃତି ଥିଲି ଶବର-ଅସୁର-ଆର୍ଯ୍ୟ ସଂସ୍କୃତିର ଏକ ସମନ୍ୱୟାତ୍ମକ ରୂପ । ସମ୍ଭବତଃ ସମଗ୍ର ଭାରତବର୍ଷରେ ଏହି ଓଡ଼ିଶା ଭୂଖଣ୍ଡହିଁ ସେତେବେଳେ ଶବର, ଅସୁର, ଆର୍ଯ୍ୟ ସମ୍ପ୍ରଦାୟ ମଧ୍ୟରେ ସମନ୍ୱୟ ଓ ସମୀକରଣ ପ୍ରକ୍ରିୟା ପାଇଁ ସୁଯୋଗ ସୃଷ୍ଟି କରିଥିଲି । ଓଡ଼ିଶାର ଶବରମାନଙ୍କ ଦାରୁଦେବତା ବେଦରେ ଏବଂ ଗୀତାରେ ପୁରୁଷୋତ୍ତମ ରୂପେ ଗୃହୀତ ହେବା, ଅସୁର ମାନଙ୍କ ଆରାଧ୍ୟ ଦେବତା ରୁଦ୍ର ବା ଶିବ ବେଦ ଓ ପୁରାଣରେ ଆର୍ଯ୍ୟ ଦେବତା ରୂପେ ସ୍ୱୀକୃତ ହେବା ନିଶ୍ଚିତଭାବେ ଭାରତୀୟ ସଂସ୍କୃତିରେ ଏକ ଚାଞ୍ଚଲ୍ୟକର ଘଟଣା ଏବଂ ସମଗ୍ର ହିନ୍ଦୁଧର୍ମ ଓ ଆର୍ଯ୍ୟ ସଂସ୍କୃତି ଉପରେ ଓଡ଼ିଶାର ତତ୍କାଳୀନ ତଥାକଥିତ ଅନାର୍ଯ୍ୟାତର ସଂସ୍କୃତିର ଅପ୍ରତିହତ ପ୍ରଭାବର ସର୍ବଶ୍ରେଷ୍ଠ ପ୍ରମାଣ ।

କେବଳ ଓଡ଼ିଶାରେ ନୁହେଁ ସମଗ୍ର ଭାରତ ବର୍ଷରେ, ହିନ୍ଦୁଧର୍ମ ତଥା ଭାରତୀୟ ସଂସ୍କୃତିର ବିଭିନ୍ନ ଶାଖା ମଧ୍ୟରେ ସମନ୍ୱୟ ସ୍ଥାପନ କରିଥିବା ଏକମାତ୍ର ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ । ସୁତରାଂ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ପ୍ରାଗୈତିହାସିକ ଯୁଗରୁ ଓଡ଼ିଶାରେ ବିଭିନ୍ନ ଧର୍ମଧାରା ପ୍ରବାହିତ ହୋଇ ଓଡ଼ିଶାବାସୀଙ୍କୁ ଉଦ୍‌ବୁଦ୍ଧ କରିଛି । ଓଡ଼ିଶାର ଅଧିବାସୀମାନେ ରାଜାନୁଗତ ଧର୍ମକୁ ନିଜ ଧର୍ମ ରୂପେ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରି ଆସିଛନ୍ତି ।

ଐତିହାସିକ ବିବରଣୀରୁ ଜଣଯାଏ ଯେ ପ୍ରଥମ ତୀର୍ଥଙ୍କର ଋଷଭ ଓ ୨୪ତମ ତୀର୍ଥଙ୍କର ମହାବୀର ଜିନ୍, ଓଡ଼ିଶାକୁ ଜୈନଧର୍ମ ପ୍ରଚାରର ପ୍ରଧାନ ପୀଠ ରୂପେ ଗ୍ରହଣ କରିଥିଲେ । ଏହି ଜୈନଧର୍ମ କଳିଙ୍ଗ ସାମ୍ରାଜ୍ୟର ରାଜଧର୍ମ ରୂପେ ବହୁକାଳ ପ୍ରଚଳିତ ଥିଲି । ମହାବୀରଙ୍କ ପୂର୍ବବର୍ତ୍ତୀ ତୀର୍ଥଙ୍କର ପାର୍ଶ୍ୱନାଥ ତାମ୍ରଲିପ୍ତ ବନ୍ଦରରୁ କଳିଙ୍ଗ ଅଭିମୁଖେ ଆସି ପ୍ରଥମେ କୋପ କଟକ (ବାଲେଶ୍ୱର ଜିଲ୍ଲା କୁପାରି ଗ୍ରାମ)ରେ ଜନୈକ ବ୍ୟକ୍ତିଙ୍କର ଆତିଥେୟତା ଗ୍ରହଣପୂର୍ବକ କଳିଙ୍ଗର ରାଜା କରକଣ୍ଡୁଙ୍କୁ ଜୈନ ଧର୍ମରେ ଦୀକ୍ଷିତ କରାଇଥିଲେ ।

ଖ୍ରୀ: ପୂ: ୪ର୍ଥ ଶତାବ୍ଦୀରେ ମଗଧରାଜ ମହାପଦ୍ମ ନନ୍ଦ କଳିଙ୍ଗ ଆକ୍ରମଣ ପୂର୍ବକ ତାର ବିଷ୍ଟଦେବତା ଜିନ୍ ପ୍ରତିମାକୁ ନିଜ ରାଜଧାନୀ ରାଜଗୃହକୁ ନେବା, କଳିଙ୍ଗ ଯୁଦ୍ଧରେ

ଜୈନ ଶ୍ରମଣଙ୍କ ଷଡ ସମ୍ପର୍କରେ ଅଶୋକଙ୍କ ଶିଳାଲିପିରେ ଲିପିବଦ୍ଧ ହେବା, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଚେଦି ବଂଶର ତୃତୀୟ ରାଜା ଜୈନଧର୍ମର ପୃଷ୍ଠପୋଷକ ମହାମେଘ ବାହନ ଖାରବେଳ ମଗଧକୁ ପରାସ୍ତ କରି ଅପହୃତ ଜିନ୍ ମୂର୍ତ୍ତିକୁ ଆଡ଼ମ୍ବରପୂର୍ଣ୍ଣ ଶୋଭା-ଯାତ୍ରାରେ ନିଜ ରାଜଧାନୀ କଳିଙ୍ଗନଗର (ବର୍ତ୍ତମାନର ଭୁବନେଶ୍ୱର)କୁ ଆଣିବା, ଖାରବେଳ ମଥୁରା ବିଜୟ କରି ସ୍ୱଦେଶକୁ କଳ୍ପବୃକ୍ଷ ଆଣିବା ଇତ୍ୟାଦି ଐତିହାସିକ ଘଟଣା ପ୍ରମାଣ କରେ ଯେ ସେତେବେଳେ କଳିଙ୍ଗ ସାମ୍ରାଜ୍ୟରେ ରାଷ୍ଟ୍ରଧର୍ମ ଥିଲା ଜୈନଧର୍ମ ।

ଐତିହାସିକମାନେ ମତ ଦିଅନ୍ତି ଯେ ପୂର୍ବୋକ୍ତ ଜିନ୍ ପ୍ରତିମା ଶ୍ରୀଜଗନ୍ନାଥଙ୍କ ପ୍ରତିମା ବ୍ୟତୀତ ଅନ୍ୟ କିଛି ନୁହେଁ । ଶ୍ରୀଜଗନ୍ନାଥଙ୍କ ଉପରେ ଜୈନଧର୍ମର ପ୍ରଭାବ କିପରି ସୁଦୂରପ୍ରସାରୀ ଥିଲା, ତାହା ତାଙ୍କ ନାମକରଣ, ରଥଯାତ୍ରା, କଳ୍ପବଟ, ଚନ୍ଦନ ବିହାର, ତ୍ରିମୂର୍ତ୍ତି ଇତ୍ୟାଦିର ଉତ୍ପତ୍ତି ଓ ବିକାଶର ରହସ୍ୟ ଆଲୋଚନା କଲେ ଉପଲବ୍ଧି କରିହେବ । ସମ୍ବଳକ (ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଜ୍ଞାନସିଦ୍ଧି'ର ପ୍ରାରମ୍ଭରେ ନିଜର ଇଷ୍ଟଦେବତା ଜଗନ୍ନାଥଙ୍କୁ ସ୍ତୁତି କରି ତାଙ୍କ ଠାରେ ଜିନତ୍ୱ ଓ ବୌଦ୍ଧତ୍ୱ ଯେପରି ଆରୋପ କରିଛନ୍ତି, ତାହା ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ ।

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ପ୍ରାକ୍—ବୈଦିକ ଯୁଗରୁ ଶବର ଦେବତା ଶ୍ରୀଜଗନ୍ନାଥ ବୈଦିକ ଯୁଗରେ ପ୍ରାଧାନ୍ୟ ଲାଭ କରି ବ୍ରାହ୍ମଣ୍ୟଧର୍ମର ଅବିସମ୍ବାଦିତ ଦେବତା ରୂପେ ଗୃହୀତ ହେବା ସଙ୍ଗେ ସଙ୍ଗେ ଇନ୍ଦ୍ରଭୂତିଙ୍କ ସମୟକୁ ଜୈନଧର୍ମ ଓ ବୌଦ୍ଧଧର୍ମର ସମସ୍ତ ଦାର୍ଶନିକ ନିର୍ଯ୍ୟାସକୁ ଅଂଗୀଭୂତ କରି ସମଗ୍ର ଭାରତରେ ହିନ୍ଦୁ-ଜୈନ-ବୌଦ୍ଧ ଧର୍ମ ମଧ୍ୟରେ ସମନ୍ୱୟ ସ୍ଥାପନପୂର୍ବକ ହିନ୍ଦୁ ଦେବଦେବୀଙ୍କ ମଧ୍ୟରେ ଏକ ଅପ୍ରତିଦ୍ୱନ୍ଦୀ ଆସନରେ ଆସୀନ ହୋଇଛନ୍ତି ।

ପାଶ୍ଚାତ୍ୟ ଗବେଷିକା ଶ୍ରୀମତୀ ଷ୍ଟିଭେନ୍‌ସନ୍‌ଙ୍କ ମତାନୁସାରେ, ବେଦ, ଉପ-ନିଷଦର ଦର୍ଶନ, ଜୈନ ପ୍ରଭାବର ଫଳ, ଏହା ଯଦି ସ୍ୱୀକାର କରାଯାଏ, ତେବେ ପ୍ରାକ୍ ବୈଦିକ ଦେବତା ଶ୍ରୀଜଗନ୍ନାଥ ଅଥବା ଜୈନ ଦର୍ଶନ-ପ୍ରଭାବିତ ଶ୍ରୀଜଗନ୍ନାଥ ବେଦ ଉପନିଷଦ ରଚୟିତାମାନଙ୍କୁ ନିଜର ଅଲୌକିକ ଦର୍ଶନ ଦ୍ୱାରା ଯେ ଉଦ୍‌ବୁଦ୍ଧ କରିଥିବେ ତାହା ଅନାୟାସରେ ବୁଝାଯାଇପାରେ ।

ଓଡ଼ିଶାବାସୀଙ୍କ ଆଧ୍ୟାତ୍ମିକ ତଥା ସାମାଜିକ ଜୀବନକୁ ଯୁଗେ ଯୁଗେ ଏହି ଧର୍ମ ପ୍ରବାହ ବିଶେଷଭାବେ ପ୍ରଭାବିତ କରିଛି । ଓଡ଼ିଶାରେ ଜୈନକୀର୍ତ୍ତି, ଜୈନମନ୍ଦିର, ଜୈନପୀଠର ଇତିହାସ ଅଧ୍ୟୟନ କଲେ ଏକଦା ଜୈନଧର୍ମ ଓଡ଼ିଶାର ରାଜା ଓ ପ୍ରଜାଙ୍କୁ କିପରି ମନ୍ତ୍ରମୁଗ୍ଧ କରିଥିଲା ଓ ତାଙ୍କ ଜୀବନ ସହିତ କିପରି ଓତପ୍ରୋତ ଭାବେ ଜଡ଼ିତ ଥିଲା, ତାହା ଉପଲବ୍‌ଧି କରିହେବ । କଟକ ସହରର ବହୁ ଜୈନ ମନ୍ଦିର, କୀର୍ତ୍ତି ଧ୍ୱଂସ ପାଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ଯେଉଁ କେତୋଟି ରହିଛି ସେଥିରୁ ପ୍ରତୀୟମାନ ହୁଏ କଟକ ଏକଦା ଜୈନ ସମ୍ପ୍ରଦାୟଙ୍କ ଦ୍ୱାରା ଅଧ୍ୟୁଷିତ ଥିଲା । ଏହାପରି ପ୍ରାଚୀନ ଜୈନମନ୍ଦିର

ମଧ୍ୟରୁ ଚୌଧୁରୀ ବଜାରର ଶ୍ରୀ ଦିଗମ୍ବର ଜୈନମନ୍ଦିର ଅନ୍ୟତମ । ଏଠାରେ ମହାବୀରଙ୍କ ଉଲଗ୍ନ ପ୍ରତିମାକୁ ପୂଜା କରାଯାଉଅଛି ।

ସମଗ୍ର ବିଶ୍ୱରେ ବୌଦ୍ଧଧର୍ମର ବିକାଶ ଓ ପ୍ରସାରର ପ୍ରଧାନ ପୀଠ ଥିଲା ଓଡ଼ିଶା । ଏହାରିକି କେତେକ ଗବେଷକ ପ୍ରାମାଣିକ ତଥ୍ୟ ଓ ଅକାଟ୍ୟ ଯୁକ୍ତି ଦ୍ୱାରା ପ୍ରମାଣ କରି କହିଛନ୍ତି ଯେ ଗୌତମ ବୁଦ୍ଧ ଭୁବନେଶ୍ୱର ନିକଟବର୍ତ୍ତୀ ଏକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ବୁଦ୍ଧଦେବ ସର୍ବପ୍ରଥମେ ଦୁଇଜଣ ଓଡ଼ିଆ ବଣିକଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବା, କଳିଙ୍ଗ ରାଜା ବ୍ରହ୍ମଦତ୍ତ ଦନ୍ତପୁରରେ ବୁଦ୍ଧଦେବଙ୍କ ଦୁଇଟି ଦନ୍ତ ରଖି ଏହି ପବିତ୍ର ଭୂମିରେ ପୂଜାକରିବା, ନରହନ୍ତା ଚଣ୍ଡାଶୋକ ବୌଦ୍ଧଧର୍ମ ଗ୍ରହଣ କରି ଧର୍ମାଶୋକରେ ପରିଣତ ହେବା, ଭାରତ ବାହାରେ ବୌଦ୍ଧ ଧର୍ମର ପ୍ରଚାର ପାଇଁ ଅଶୋକ ପ୍ରଥମେ ଏହି ପବିତ୍ର ଓଡ଼ିଶା ଭୂମିରୁ ନିଜର ସନ୍ତାନଙ୍କୁ ପ୍ରେରଣ କରିବା ବୌଦ୍ଧ ଦର୍ଶନ ଅଧ୍ୟୟନ-ଅଧ୍ୟାପନା-ଗବେଷଣାରେ ଲଳିତଗିରି, ରତ୍ନଗିରି ଇତ୍ୟାଦି ବୌଦ୍ଧ ବିହାର ସମଗ୍ର ବିଶ୍ୱରେ ଖ୍ୟାତି ଅର୍ଜନ କରିବା, ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଅସଂଖ୍ୟ ବୌଦ୍ଧସ୍ତୂପ ବୌଦ୍ଧମୂର୍ତ୍ତି, ବୌଦ୍ଧକୀର୍ତ୍ତି ପରିଦୃଷ୍ଟ ହେବା, ବୌଦ୍ଧଧର୍ମର ପବିତ୍ର ଭାଷା, ପାଲିର ଜନ୍ମଭୂମି ଓଡ଼ିଶା ହେବା ସର୍ବୋପରି ଶ୍ରୀ ଜୟଦେବ ଶ୍ରୀଗୀତଗୋବିନ୍ଦରେ ଓ ସାରଳା ଦାସ ମହାଭାରତରେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପେ ଚିତ୍ରଣ କରିବା ଝଙ୍କଡ଼ର ସାରଳା, ବାଙ୍କିର ଚର୍ଚ୍ଚିକା, ବଡ଼ମ୍ବାର ଭଟ୍ଟାରିକାଙ୍କ ପ୍ରତିମୂର୍ତ୍ତି ପ୍ରଭୃତି ବଜ୍ରଯାନୀ ମାର୍ଗର ବୌଦ୍ଧଦେବୀ ରୂପେ ପରିକଳ୍ପିତ ହେବା ପ୍ରଭୃତି ଘଟଣାରୁ ପ୍ରତୀୟମାନ ହୁଏ ଓଡ଼ିଶାର ଜନଜୀବନକୁ ବୌଦ୍ଧଧର୍ମ ପ୍ରବଳଭାବେ ପ୍ରଭାବିତ କରିଥିଲା ।

କଟକ ଜିଲ୍ଲାରେ ବୌଦ୍ଧ ବିହାର ଓ ବୌଦ୍ଧ କୀର୍ତ୍ତିର ଯେତେ ଧ୍ୱଂସାବଶେଷ ଦେଖିବାକୁ ମିଳେ, ଓଡ଼ିଶାର ଅନ୍ୟ ସ୍ଥାନରେ ସେ ପରିମାଣରେ ଦେଖିବାକୁ ମିଳେନାହିଁ । ଗତ ୧୯୮୭ ମସିହାରେ ରତ୍ନଗିରିର ଗୋଟିଏ ସ୍ତୂପ ଖନନରୁ ବୁଦ୍ଧଙ୍କ ଦୁଇଟି ଅସ୍ଥି ରୂପକ ଦେହାବଶେଷ ଉଦ୍ଧାର କରାଯାଇଛି । ବୌଦ୍ଧ ଧର୍ମର ଏହି ପ୍ରଭାବଶାଳୀ ପରିବେଶରୁ ଜଣାଯାଏ ଯେ ଓଡ଼ିଶାର ଅନ୍ୟ ଅଞ୍ଚଳ ଅପେକ୍ଷା କଟକ ବୌଦ୍ଧ ଧର୍ମାବଲମ୍ବୀଙ୍କ ପକ୍ଷରେ ଅଧିକ ଆକର୍ଷଣୀୟ ଥିଲା ଏବଂ ଧର୍ମ ପ୍ରଚାର, ପ୍ରସାର, ଆଲୋଚନା, ଗବେଷଣାର ଏକ କେନ୍ଦ୍ରସ୍ଥଳୀ ଥିଲା ।

ଭାରତବର୍ଷରେ ହିନ୍ଦୁ ଧର୍ମର ଯେତେ ଶାଖା ଓ ମତବାଦ ସୃଷ୍ଟି ହୋଇଛି ସେ ସମସ୍ତର ପ୍ରଚାର, ପରୀକ୍ଷା ଓ ସମନ୍ୱୟ ଭୂମି ରୂପେ ଓଡ଼ିଶା ବିଶିଷ୍ଟସ୍ଥାନ ଅର୍ଜନ କରିଛି । ପ୍ରାକ୍ ବୈଦିକ ଯୁଗରୁ ଓଡ଼ିଶାର ଉଦାରଚେତା ଶାସକ ଏବଂ ସରଳ ତଥା ଧର୍ମପ୍ରାଣ ଅଧିବାସୀମାନେ ଉକ୍ତ ସମସ୍ତ ମତବାଦକୁ ସମ୍ମାନ ଦେଇ ଆସିଛନ୍ତି । ଓଡ଼ିଶାର ଆଧ୍ୟାତ୍ମିକ ଜୀବନରେ ପ୍ରଜାହିତୈଷୀ ଜନପ୍ରିୟ ଓଡ଼ିଆ ସମ୍ରାଟମାନେ ବିଭିନ୍ନ ଯୁଗରେ, ବିଭିନ୍ନ ମତବାଦ ପ୍ରତି ସମ୍ମାନ ପ୍ରଦର୍ଶନ କରି ଓ ପୃଷ୍ଠପୋଷକତା ପ୍ରଦାନ କରି ମୂଳ ଶ୍ରୀଜଗନ୍ନାଥ ଧର୍ମରେ ସେଗୁଡ଼ିକ ସମୀକରଣ ପାଇଁ ଯେଉଁ ବ୍ୟବସ୍ଥା କରି ଯାଇଛନ୍ତି, ତାହାର ଦୃଷ୍ଟାନ୍ତ

ଭାରତ ଇତିହାସରେ ସମ୍ପୂର୍ଣ୍ଣ ଦୁର୍ଲଭ । ଯେଉଁ ଯୁଗରେ ହିନ୍ଦୁ ଧର୍ମର ଯେଉଁ ମତବାଦର ପ୍ରାବଲ୍ୟ ଦେଖା ଦେଇଛି, ଓଡ଼ିଶାବାସୀମାନେ ତାକୁ ସାଦରେ ଗ୍ରହଣ କରି ସେହି ସମ୍ପ୍ରଦାୟରେ ଅନ୍ତର୍ଭୁକ୍ତ ହୋଇଛନ୍ତି ଏବଂ ଅନ୍ୟ ମାର୍ଗ ପ୍ରତି ଅନୁଦାର ନ ହୋଇ ସହିଷ୍ଣୁତାର ପରିଚୟ ଦେଇଛନ୍ତି ।

ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କରାଚାର୍ଯ୍ୟ କଟକରେ ପ୍ରବେଶ କରି ପୁରୀ ଧାମରେ ଅବସ୍ଥାନପୂର୍ବକ ବ୍ରାହ୍ମଣ୍ୟ ଧର୍ମର ପୁନଃ ପ୍ରବର୍ତ୍ତନ କରି ପୂର୍ବ ପ୍ରଚଳିତ ବୌଦ୍ଧଧର୍ମର ପ୍ରଭାବକୁ ପ୍ରତିହତ କରିଥିଲେ । ଭାରତବର୍ଷର ବିଭିନ୍ନ ତୀର୍ଥକ୍ଷେତ୍ର ଓ ପ୍ରସିଦ୍ଧ ସ୍ଥାନ ଭ୍ରମଣ କରି ବୈଦିକ ଧର୍ମର ମହତ୍ତ୍ୱ ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ ବୌଦ୍ଧଧର୍ମର ଅସାରତା ପ୍ରତିପାଦନ କରିଥିଲେ ।

ଫଳରେ ଭାରତବର୍ଷରୁ ବୌଦ୍ଧଧର୍ମର ପ୍ରାୟ ବିଲୁପ୍ତି ଘଟିଥିଲା । ଆତ୍ମାରହିତ ପରିବର୍ତ୍ତନ ପରି ଭାରତବାସୀ ବୌଦ୍ଧମାର୍ଗ ପରିହାର କରି ବ୍ରାହ୍ମଣ୍ୟ ମାର୍ଗ ଗ୍ରହଣ କରିଥିଲେ । ଓଡ଼ିଶାରେ ଏ ପ୍ରକ୍ରିୟାର ଫଳସ୍ୱରୂପ ବୌଦ୍ଧଧର୍ମ ଶ୍ରୀଜଗନ୍ନାଥଙ୍କ ଠାରେ ଶରଣାପନ୍ନ ହୋଇ ଶୈବ ଓ ଶାକ୍ତ ଧର୍ମ ମଧ୍ୟରେ ଆତ୍ମଗୋପନ କରି ରହିଲା । ସୁତରାଂ କଟକର ସାମାଜିକ ଜୀବନରେ ବ୍ରାହ୍ମଣ୍ୟଧର୍ମର ଅଭ୍ୟୁତ୍ଥାନ ଓ ପ୍ରସାର ଏକ ସ୍ୱାଭାବିକ ଆଧ୍ୟାତ୍ମିକ ପ୍ରକ୍ରିୟା ।

ଖାରବେଳଙ୍କ ରାଜତ୍ୱ ପରଠାରୁ ଅର୍ଥାତ୍ ଖ୍ରୀ: ପୂ: ପ୍ରଥମ ଶତାବ୍ଦୀ ଠାରୁ ପ୍ରାୟ ଖ୍ରୀଷ୍ଟ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସ ଅନ୍ଧକାରାଚ୍ଛନ୍ନ । ବସ୍ତୁତଃ କେଶରୀ ବଂଶର ରାଜତ୍ୱ ଠାରୁ ଓଡ଼ିଶା ଇତିହାସର ଧାରାବାହିକ ବିବରଣୀ ଦୃଷ୍ଟିପଥାରୂଢ଼ ହୁଏ । କେଶରୀ ବଂଶର ସମ୍ରାଟମାନେ ଶୈବଧର୍ମାବଲମ୍ବୀ ଥିଲେ ଏବଂ ଏହି ଧର୍ମ ରାଜନ୍ୟ ପୃଷ୍ଠପୋଷକତା ଲାଭ କରିଥିଲା । ଏଣୁ ଏହି ସମୟରେ ଲିଙ୍ଗରାଜ ମନ୍ଦିର ସମେତ ବହୁ ଶିବମନ୍ଦିର ନିର୍ମିତ ହୋଇଥିଲା । ଆଜିର କଟକ ନଗର ଏହି କେଶରୀ ବଂଶର ପ୍ରାତଃସ୍ମରଣୀୟ ସମ୍ରାଟ ନୃପକେଶରୀଙ୍କ ଦ୍ୱାରା ସ୍ଥାପିତ ହୋଇଥିବାରୁ, କାଠଯୋଡ଼ି ପଥର ବନ୍ଧ ଏହି ବଂଶର ଅନ୍ୟଜଣେ ପ୍ରଖ୍ୟାତଯଶା ସମ୍ରାଟ ମର୍କତକେଶରୀଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ କଟକରେ ଶୈବଧର୍ମର ପ୍ରଭାବ ଓ ପରାକ୍ରମ ଅକ୍ଲେଶରେ ଅନୁମାନ କରିହେବ । ଏତଦ୍-ବ୍ୟତୀତ କଟକ ସହରରେ ଅଦ୍ୟାପି ତିଷ୍ଠି ରହିଥିବା ପ୍ରାଚୀନ ଶିବମନ୍ଦିର ଯଥା ଅଷ୍ଟଶମ୍ଭୁ ମନ୍ଦିର, ଗଡ଼ଗଡ଼େଶ୍ୱର ମନ୍ଦିର ଇତ୍ୟାଦି କଟକରେ ଶୈବଧର୍ମ ଓ ଶୈବ ସମ୍ପ୍ରଦାୟର ପ୍ରାଚୀନତା ସାବ୍ୟସ୍ତ କରେ । କୃଷ୍ଣ ମନ୍ତ୍ରିଆ ବୈଷ୍ଣବ ଅର୍ଥାତ୍ ଗୌଡ଼ୀୟ ବୈଷ୍ଣବମାନେ ଶିବଙ୍କ ଦର୍ଶନ ଓ ଶିବଙ୍କ ନିର୍ମାଲ୍ୟ-ଗ୍ରହଣକୁ ବିରୋଧ କଲେ ମଧ୍ୟ ଓଡ଼ିଶାରେ ଶୈବ ଓ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠିତ ହୋଇଛି ।

ଶାବର ସଂସ୍କୃତିରୁ ମାଟି ବା ମାତୃଉପାସନା ଓ ଶିବ-ଆରାଧନା ଉଦ୍‌ଭବ ହୋଇ ଓଡ଼ିଶାରେ ଆର୍ଯ୍ୟୀକରଣ ପ୍ରକ୍ରିୟାରେ ହିନ୍ଦୁଧର୍ମରେ ତାହା ପ୍ରବେଶ କରି ପରବର୍ତ୍ତୀ

କାଳରେ ଦୁଇଟି ପ୍ରଭାବଶାଳୀ ଆଧ୍ୟାତ୍ମିକ ମତବାଦ ରୂପେ ସ୍ୱୀକୃତି ଲାଭ କରିଛି । ପୂର୍ବରୁ ସୂଚିତ ହୋଇଛି ଯେ ଏକଦା ଓଡ଼ିଶାରେ ଶାକ୍ତଧର୍ମର ପ୍ରାବଲ୍ୟ ଓଡ଼ିଆଙ୍କର ରାଜନୈତିକ ଓ ସାମାଜିକ ଜୀବନକୁ ପ୍ରଭାବିତ କରିଥିଲା । ଓଡ଼ିଶାରେ ବୌଦ୍ଧଧର୍ମରେ ତନ୍ତ୍ରଯାନ ସୃଷ୍ଟି ହେବାରୁ ଭାରତରେ ଦେବୀ ଉପାସନା ଏକ ଭିନ୍ନ ମୋଡ଼ ନେଇ ୫୧ଟି ପୀଠରେ ତାନ୍ତ୍ରିକ ଦେବୀମାନେ ପ୍ରତିଷ୍ଠା ଅର୍ଜନ କଲେ ଏବଂ ବୌଦ୍ଧଧର୍ମର ବିପର୍ଯ୍ୟୟ ପରେ ଏହି ଦେବୀମାନେ ହିନ୍ଦୁଧର୍ମରେ ଅଙ୍ଗୀଭୂତ ହୋଇଥିଲେ ।

ହିନ୍ଦୁଧର୍ମର ସର୍ବପ୍ରାଚୀନ ଓ ସର୍ବୋଚ୍ଚ ଦେବତା ପୁରୁଷୋତ୍ତମ ଶ୍ରୀଜଗନ୍ନାଥ କିପରି ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ସମନ୍ୱୟ ପ୍ରତୀକ ହୋଇ ରହିଛନ୍ତି ତାହା "ବିମଳା ଭୈରବୀ ସାକ୍ଷାତ୍ ଜଗନ୍ନାଥସ୍ତୁ ଭୈରବଃ" ଅଥବା "ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ" (ତନ୍ତ୍ର ଚୂଡ଼ାମଣି) ଉକ୍ତିରୁ ଉପଲବ୍ଧି କରିହେବ । ଶ୍ରୀକ୍ଷେତ୍ରରେ ବିମଳା, ଯାଜପୁରର ବିରଜା, ଝଙ୍କଡ଼ର ଶାରଳା, କାକଟପୁରର ମଙ୍ଗଳା, ବାଙ୍କିର ଚର୍ଚ୍ଚିକା, ବଡ଼ମ୍ବାର ଭଟ୍ଟାରିକା, କଟକରେ ଶ୍ରୀଚଣ୍ଡୀ ପ୍ରଭୃତି ଶାକ୍ତଦେବୀଙ୍କ ପ୍ରଭାବ ଓ ପ୍ରତିଷ୍ଠା ଅନୁଧ୍ୟାନ କଲେ ଲକ୍ଷ୍ୟ କରିହେବ ଓଡ଼ିଶାରେ ଶାକ୍ତଧର୍ମର ପ୍ରଭାବ କିପରି ସୁଦୂର ପ୍ରସାରୀ ଓ ଶକ୍ତି ଉପାସନାର ପରମ୍ପରା କେତେ ପ୍ରାଚୀନ । ହିନ୍ଦୁଧର୍ମର ଏହା ଏକ ମତବାଦ ହୋଇଥିବାରୁ ଅନ୍ୟ ମତବାଦ ସହିତ ଏହାର ସହାବସ୍ଥାନ ବହୁ ପ୍ରାଚୀନ କାଳରୁ ଲକ୍ଷ୍ୟ କରାଯାଏ । ଗଡ଼ଚଣ୍ଡୀ, କଟକଚଣ୍ଡୀ ପରି ପ୍ରାଚୀନ ଦେବୀ-ପୀଠରୁ ପ୍ରତୀୟମାନ ହୁଏ କଟକରେ ଶାକ୍ତ ଉପାସକ ଓ ତନ୍ତ୍ରସାଧକଙ୍କ ଅବସ୍ଥାନ ବହୁ ପୁରାତନ କାଳରୁ । ଶାରଦୀୟ ଦୁର୍ଗୋତ୍ସବରେ କଟକ ସହରରେ ଶତାଧିକ ସୁସଜ୍ଜିତ ମଣ୍ଡପରେ ମୃଣ୍ମୟ ଦୁର୍ଗାଙ୍କର ଯେଉଁ ସାର୍ବଜନୀନ ପୂଜା ଅନୁଷ୍ଠିତ ହୁଏ ଏବଂ ସପ୍ତମୀ ଠାରୁ ଦଶହରା ପର୍ଯ୍ୟନ୍ତ ଏହି ଆଡ଼ମ୍ବରପୂର୍ଣ୍ଣ ଉତ୍ସବକୁ ଉଦ୍ୟୋକ୍ତାଗଣ ଓ ସହରବାସୀମାନେ ଯେପରି ଆକଣ୍ଠ ଉପଭୋଗ କରନ୍ତି ସେଥିରୁ ଯେ କେହି ବିଦେଶାଗତ ପରିବ୍ରାଜକ ଅନୁମାନ କରିବ କଟକରେ ଅଧିବାସୀମାନେ ହେଉଛନ୍ତି ଦୁର୍ଗାଙ୍କ ଭକ୍ତ ।

ଓଡ଼ିଶାର ଆଧ୍ୟାତ୍ମିକ ଇତିହାସରେ ଯେଉଁ ପଞ୍ଚଦେବତାଙ୍କ ଉପାସନା ଦୃଷ୍ଟିଗୋଚର ହୁଏ ତାହା କଟକରେ ଗତ ଏକହଜାର ବର୍ଷର ଇତିହାସରେ ସ୍ପଷ୍ଟଭାବେ ପ୍ରତିବିମ୍ବିତ ହୋଇଛି । ଓଡ଼ିଶାରେ ଶ୍ରୀଜଗନ୍ନାଥ ଧର୍ମର ସମନ୍ୱୟ ଓ ସମୀକରଣ ପ୍ରକ୍ରିୟାରୁ ସମ୍ଭବତଃ ପଞ୍ଚଦେବତା ଉପାସନା ଉତ୍ପନ୍ନ ହୋଇଛି । ସ୍ମାର୍ତ୍ତ ବୈଷ୍ଣବମାନେ ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗା—ଏହି ପଞ୍ଚଦେବତାଙ୍କୁ ଭକ୍ତିପୂତ ଚିତ୍ତରେ ଆରାଧନା କରିଥାନ୍ତି ।

କଟକରେ ହିନ୍ଦୁ ସମ୍ପ୍ରଦାୟର ଅଧିବାସୀମାନେ ବହୁ ପ୍ରାଚୀନ କାଳରୁ ଏହି ପରମ୍ପରା ଯେ ରକ୍ଷା କରି ଆସିଛନ୍ତି ତାହା କଟକ ସହରର ପୂର୍ବୋକ୍ତ ଦେବଦେବୀଙ୍କ ମନ୍ଦିରଗୁଡ଼ିକରେ ପୂଜାର୍ଚ୍ଚନା ଦର୍ଶନ କଲେ ଲକ୍ଷ୍ୟ କରିହେବ । ଓଡ଼ିଶାରେ ବିଷ୍ଣୁ ଉପାସନାର ପରମ୍ପରା ପ୍ରାଚୀନ ହେଲେ ମଧ୍ୟ ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ସମ୍ରାଟମାନେ

ବୈଷ୍ଣବଧର୍ମର ପ୍ରାଧାନ୍ୟକୁ ପ୍ରତିଷ୍ଠିତ କରିଲେ ଶ୍ରୀଜଗନ୍ନାଥଙ୍କର ମହିମା ଓ ଜଗନ୍ନାଥ ଦର୍ଶନର ମହାତ୍ମ୍ୟ ପ୍ରଖ୍ୟାପନ କରିବାରେ କାୟମନୋବାକ୍ୟରେ ଉଦ୍ୟମ କରିଥିଲେ । ହିନ୍ଦୁଧର୍ମରେ ଯେତେ ଦାର୍ଶନିକ ମତବାଦ ସୃଷ୍ଟି ହୋଇଛି ତାହାର ପ୍ରବକ୍ତାମାନେ ଶ୍ରୀଜଗନ୍ନାଥଙ୍କର ଦର୍ଶନାକାଂକ୍ଷୀ ଓ କୃପାପ୍ରାର୍ଥୀ ହୋଇ ଶ୍ରୀକ୍ଷେତ୍ର ପୁରୀଧାମକୁ ଆସିଥିଲେ ଓ ପୁରୀ ପଣ୍ଡିତ ମଣ୍ଡଳୀର ସ୍ୱୀକୃତି ଲାଭ କରି ସେମାନଙ୍କ ଦାର୍ଶନିକ ମତବାଦ ସମଗ୍ର ଭାରତରେ ପ୍ରସାର ଲାଭ କରିଛି ।

ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ, ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତବାଦ, ରାମାନୁଜଙ୍କ ବଶିଷ୍ଟାଦ୍ୱୈତବାଦ, ନିମ୍ବାର୍କାଚାର୍ଯ୍ୟଙ୍କ ଦ୍ୱୈତା ଦ୍ୱୈତବାଦ, ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧା-ଦ୍ୱୈତବାଦ, ଶ୍ରୀଧରସ୍ୱାମୀଙ୍କ ଅଚିନ୍ତ୍ୟଭେଦାଭେଦ, ଓଡ଼ିଶୀ ତଥା ଗୌଡ଼ୀୟ ବୈଷ୍ଣବ ମତବାଦ ପ୍ରଭୃତି ଶ୍ରୀଜଗନ୍ନାଥ ଦର୍ଶନରେ ଅଙ୍ଗୀଭୂତ ହୋଇ, ସାଗରରେ ସ୍ରୋତସ୍ୱିନୀ ମିଳିତ ହେବା ପରି ଶ୍ରୀଜଗନ୍ନାଥଙ୍କଠାରେ ସମସ୍ତ ଧର୍ମଧାରା ଠୂଳଭୂତ ହୋଇଛନ୍ତି । ପୁରୀଧାମ ପରି କଟକରେ ଉପରୋକ୍ତ ବିଭିନ୍ନ ମତବାଦୀଙ୍କ ସମ୍ପ୍ରଦାୟ ଓ ସେମାନଙ୍କ ଆରାଧ୍ୟଦେବତାଙ୍କ ବହୁ ମନ୍ଦିର ମଠ ପ୍ରଭୃତିରୁ ପ୍ରମାଣିତ ହୁଏ ଯେ ଓଡ଼ିଶାର ସ୍ୱାଧୀନ ସମ୍ରାଟମାନେ ସେମାନଙ୍କ ରାଜଧାନୀ କଟକରେ ହିନ୍ଦୁଧର୍ମର ବିଭିନ୍ନ ଆଧ୍ୟାତ୍ମିକ ପନ୍ଥୀମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଯଥୋଚିତ ପୃଷ୍ଠପୋଷକତା ଯୋଗାଇ ଦେଉଥିଲେ ।

ସେଥିପାଇଁ କଟକର 'ବାଉନ ବଜାର ତେପନ ଗଳି'ରେ ବହୁ ମନ୍ଦିର, ମଠ, ଗ୍ରାମଦେବୀ, ଟାଙ୍ଗି, ଆଶ୍ରମ ପ୍ରଭୃତି ଦେଖିବାକୁ ମିଳିଥାଏ । ହିନ୍ଦୁଧର୍ମାବଲମ୍ବୀ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରୁ ଶୈବ ସମ୍ପ୍ରଦାୟର ଅମରେଶ୍ୱର ମନ୍ଦିର (ବକ୍ସି ବଜାର), ଅଷ୍ଟଶମ୍ଭୁ ମନ୍ଦିର (ଗୃହମାରଗିକ), ଗଡ଼ଗଡ଼େଶ୍ୱର ମନ୍ଦିର (ଗଡ଼ଗଡ଼ିଆ), ବିନାଥ ମନ୍ଦିର (କ୍ୟାଣ୍ଟନମେଣ୍ଟ), ଗଙ୍ଗେଶ୍ୱର ମନ୍ଦିର (ଚୈତଗ୍ରା ବଜାର) ଶାକ୍ତ ସମ୍ପ୍ରଦାୟର କଟକଚଣ୍ଡୀ ମନ୍ଦିର, ଗଡ଼ଚଣ୍ଡୀ ମନ୍ଦିର (କିଲ୍ଲା) କାଳୀ ମନ୍ଦିର (କାଳୀଗଳି) ଗଣେଶ ଘାଟ ଇତ୍ୟାଦି, ବୈଷ୍ଣବ ସମ୍ପ୍ରଦାୟର ଅନନ୍ତ ବାସୁଦେବ ମନ୍ଦିର (କ୍ୟାଣ୍ଟନମେଣ୍ଟ), ଆଣ୍ଟୁଆଗୋପାଳ ମନ୍ଦିର (ଚୌଧୁରୀବଜାର), କୁଞ୍ଜବିହାରୀ ମନ୍ଦିର (ଗୁଡ଼ଲଆଗଞ୍ଜ), ନୃସିଂହନାଥ ମନ୍ଦିର (କଟମଙ୍ଗା ମଠ), କ୍ୟାଣ୍ଟନମେଣ୍ଟ (ତିଗରପଡ଼ା), ଜଗନ୍ନାଥ ମନ୍ଦିର (ଜଗନ୍ନାଥ ବଲ୍ଲଭ, ଜଗନ୍ନାଥ ମଠ), ପତିତପାବନ ମନ୍ଦିର (ଦୋଳମୁଣ୍ଡେଇ), ଗୋପୀନାଥଜୀଉ ମନ୍ଦିର (ଶଙ୍କରପୁର, ନୟାସଡ଼କ), ଗୋପାଳଜୀଉ ମନ୍ଦିର (ଚୌଧୁରୀ ବଜାର) ଇତ୍ୟାଦି ପ୍ରସିଦ୍ଧ । ଏତଦ୍‌ବ୍ୟତୀତ ଗଣେଶ ମନ୍ଦିର (ଗଣେଶଘାଟ, କାଳୀଗଳି), ରଘୁନାଥଜୀଉ ମନ୍ଦିର (ତେଲେଙ୍ଗା ବଜାର, ତୁଳସୀପୁର), ହନୁମାନ ମନ୍ଦିର (ହନୁମାନ ଘାଟ, ବାଖରାବାଦ, ନେତାଜୀ ନଗର), ନଣ୍ଡା ଦେଉଳ (ସାହେବଜାଦା ବଜାର) ଏବଂ ବାଘମଙ୍ଗଳା, ବୁଢ଼ି ଠାକୁରାଣୀ, ଝାଞ୍ଜିରି ମଙ୍ଗଳା ଇତ୍ୟାଦି ପ୍ରଧାନ ।

କଟକରେ ସ୍ଥାପିତ ହୋଇଥିବା ମଠ, ଟୁଙ୍ଗୀ, ଆଶ୍ରମ, ଟାଙ୍ଗି ଇତ୍ୟାଦିର ଇତିହାସ ପର୍ଯ୍ୟାଲୋଚନା କଲେ ଏଠାରେ ହିନ୍ଦୁଧର୍ମର ବିଭିନ୍ନ ଶାଖା ବା ମତବାଦ ସମ୍ପର୍କରେ

ଏବଂ କଟକର ଆଧ୍ୟାତ୍ମିକ ଉଦ୍‌ବର୍ତ୍ତନରେ ସେଗୁଡ଼ିକର ପ୍ରତିଷ୍ଠାତା ସାଧୁସନ୍ଥଙ୍କ ମହନୀୟ ଅବଦାନ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉଦ୍‌ଘାଟିତ ହୋଇପାରିବ । ମଠଗୁଡ଼ିକ ମଧ୍ୟରୁ ମସ୍ତରାମ ମଠ, ମାତା ମଠ, ଝରଣା ମଠ, ରଘୁନାଥଜୀଉ ମଠ, ଜଗନ୍ନାଥ ମଠ ଗୋପାଳଜୀଉ ମଠ, ନୃସିଂହନାଥ ମଠ, କରମଙ୍ଗା ମଠ, କୁଞ୍ଜବିହାରୀ ମଠ ଇତ୍ୟାଦି ଉଲ୍ଲେଖ ଯୋଗ୍ୟ ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଓଡ଼ିଶାର ମହିମା ଗୋସାଇଁଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିବା ମହିମାଧର୍ମ ବା ଅଲେଖ ଧର୍ମ ବଙ୍ଗ, ଆସାମ, ବିହାର, ମଧ୍ୟପ୍ରଦେଶ, ଇନ୍ଦୋର ପ୍ରଭୃତି ରାଜ୍ୟକୁ ପରିବ୍ୟାପ୍ତ ହୋଇଥିଲା । ସନ୍ଥକବି ଭୀମଭୋଇ ପରି କେତେ-ଜଣ ସାଧୁସନ୍ଥ ଭକ୍ତ ମଣ୍ଡଳୀରେ ଏହି ଧର୍ମକୁ ଅତ୍ୟନ୍ତ ଜନପ୍ରିୟ କରାଇ ପାରିଥିଲେ । କଟକରେ ଏହି ଧର୍ମର ପ୍ରଭାବ ଓ ଅଲେଖ ସମ୍ପ୍ରଦାୟର ଅବସ୍ଥିତି ସମ୍ପର୍କରେ ସୂଚନା ମିଳେ ସହରର ବିଭିନ୍ନ ସ୍ଥାନରେ ସ୍ଥାପିତ ହୋଇଥିବା ଅଲେଖ ଟୁଙ୍ଗୀ ଓ ମହିମା ଗାଦିରୁ । ଜୋବ୍ରା, ଗୃହମାର୍ଗେକ, ମାଛୁଆବଜାର, ଗୁଡ଼ଲିଆଗଞ୍ଜ, ବଡ଼ାନାସୀ, ଖଟବିନ୍‌ସାହି, ଖାନନଗର, କାଫଲ୍ ବଜାର, ଚହଟା, ବାଦାମବାଡ଼ିରେ ମହିମାଧର୍ମୀ ସାଧୁମାନଙ୍କ ଟୁଙ୍ଗୀ ଓ ଅଲେଖ ଆଶ୍ରମମାନ ଦେଖାଯାଉଥିବାରୁ ଏ ସହରରେ ଅଲେଖ ସମ୍ପ୍ରଦାୟଙ୍କ ପ୍ରଭାବ ସହଜରେ ଅନୁମେୟ ।

ଓଡ଼ିଶାର ଶେଷ ସ୍ୱାଧୀନ ସମ୍ରାଟ ମୁକୁନ୍ଦ ଦେବ ଆଫଗାନଙ୍କ ଦ୍ୱାରା ପରାସ୍ତ ହେବା ପରେ ଓଡ଼ିଶା ଖ୍ରୀ ୧୫୬୮ରୁ ଖ୍ରୀ ୧୭୫୧ (ମରହଟ୍ଟାଙ୍କ ଓଡ଼ିଶା ଅଧିକାର) ପର୍ଯ୍ୟନ୍ତ ପ୍ରାୟ ୧୮୩ ବର୍ଷ କାଳ ବ୍ୟାପୀ ଓଡ଼ିଶା ମୁସଲମାନ ଶାସନାଧୀନ ହୋଇଥିଲା ଏବଂ କଟକ ଥିଲା ସେମାନଙ୍କ ରାଜଧାନୀ । ଏହି ଦୀର୍ଘ ସମୟ ମଧ୍ୟରେ କଟକର ଅଧିବାସୀମାନଙ୍କ ସାମାଜିକ, ରାଜନୈତିକ ଓ ଆଧ୍ୟାତ୍ମିକ ଜୀବନରେ ଯେ ବିରାଟ ପରିବର୍ତ୍ତନ ଘଟିଥିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଅଧିକନ୍ତୁ ମୁସଲମାନ ଶାସକଙ୍କ ତୀବ୍ର ହିନ୍ଦୁ ବିଦ୍ୱେଷ ମତ ଓ ହତ୍ୟା-ଲୁଣ୍ଠନ-ନିର୍ଯ୍ୟାତନାର ଶାସନ ପଦ୍ଧତି, ସେତେ-ବେଳେ ଶତାଧିକ ବର୍ଷର ଶାନ୍ତିପ୍ରିୟ ହିନ୍ଦୁ ଅଧିବାସୀଙ୍କୁ ଅତିଷ୍ଠ କରିଥିବା ଫଳରେ କେତେକ ଅଧିବାସୀ ବାଧ୍ୟବାଧକତାରେ ଓ ପରିସ୍ଥିତି ଚାପରେ ଧର୍ମାନ୍ତର ଗ୍ରହଣ କରି ମୁସଲମାନ ହୋଇଥିବେ ଏବଂ କେତେକ ସମ୍ଭ୍ରାନ୍ତବଂଶ ଐଶ୍ୱର୍ଯ୍ୟର ଆସକ୍ତି ଓ ଜନ୍ମ-ଭୂମିର ମୋହ ତ୍ୟାଗ କରି କଟକରୁ ବହୁ ଦୂର ସ୍ଥାନକୁ ଚାଲିଯାଇଥିବେ ।

କଟକର ସାମାଜିକ ଅବସ୍ଥା କେତେକ ସ୍ଥାନ-ବଜାରର ଯାବନିକ ନାମକରଣ, ବାରବାଟୀ ଦୁର୍ଗ ନିକଟବର୍ତ୍ତୀ ଅଞ୍ଚଳରେ ସମ୍ଭ୍ରାନ୍ତ ଜନବସତି ନିଶ୍ଚିହ୍ନ ହେବା ଅଥବା ରୂପାନ୍ତରିତ ହେବା ଦୃଷ୍ଟିରୁ ଏ ଅନୁମାନ ଦୃଢ଼ୀଭୂତ ହୁଏ । ଇତିହାସରୁ ପ୍ରମାଣ ମିଳେ ଯେ ମୁସଲମାନମାନେ ଭାରତବର୍ଷର ବିଭିନ୍ନ ସ୍ଥାନରେ ବହୁ ମନ୍ଦିର, ଦେବାନୁଷ୍ଠାନ, ବିହାର, ଗ୍ରନ୍ଥାଗାର ଧ୍ୱଂସ କରିଛନ୍ତି । ଦିଲ୍ଲୀର ମୋଗଲ ବାଦଶାହ ଔରଙ୍ଗଜେବ

ଖ୍ରୀ ୧୬୬୯ରେ ସମସ୍ତ ପ୍ରାଦେଶିକ ଶାସକମାନଙ୍କୁ ଆଦେଶ ଦେଇଥିଲେ, ହିନ୍ଦୁ ବିଦ୍ୟାଳୟ ଓ ଦେବାଳୟଗୁଡ଼ିକୁ ନଷ୍ଟ କରିଦେବା ପାଇଁ । ଡଃ ମହତାବ 'ଓଡ଼ିଶା ଇତିହାସ'ରେ ଉଲ୍ଲେଖ କରିଛନ୍ତି ଯେ ଔରଙ୍ଗଜେବ୍‌ଙ୍କ ଶାସନକାଳରେ ଓଡ଼ିଶାର କଟକଠାରୁ ମେଦିନୀପୁର ପର୍ଯ୍ୟନ୍ତ ସମସ୍ତ ଫୌଜଦାର, ଥାନାଦାର, ଜାଗିରଦାରଙ୍କ ଏଜେଣ୍ଟ, ଖଜଣା ଅସୁଲକାରୀଙ୍କ ଉପରେ ଏହି ଆଦେଶ ଜାରି କରାଯାଇଥିଲା ।

କେଶରୀବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶର ଅଦ୍ୱିତୀୟ ସମ୍ରାଟମାନଙ୍କର ଅକ୍ଷୟ କୀର୍ତ୍ତି ପୁରୀ, କୋଣାର୍କ, ଭୁବନେଶ୍ୱରରେ ଏପର୍ଯ୍ୟନ୍ତ ବିରାଜିତ ଥିବା ସ୍ଥଳେ ସେମାନଙ୍କ ରାଜଧାନୀ କଟକରେ ଦୀର୍ଘ ୭୨୧ ବର୍ଷର ଅସପନ୍ନ ଶାସନରେ କୌଣସି ସୁଦୃଶ୍ୟ ମନ୍ଦିର ନିର୍ମିତ ନ ହେବା ଅସମ୍ଭବ କଥା । ଗୁଜୁରାଟରୁ ମିଳିଥିବା ଏକ ଅଭିଲେଖରେ ଉଲ୍ଲିଖିତ ହୋଇଛି ଯେ କଟକର ବାରବାଟୀ ଦୁର୍ଗରେ ଜଗନ୍ନାଥ ମନ୍ଦିର ଥିଲା । ସୁତରାଂ ଏକଥା ନିଃସନ୍ଦେହ ଯେ ଯବନ ରାଜତ୍ୱରେ କଟକରେ ବିଭିନ୍ନ ମନ୍ଦିର, ଦେବାନୁଷ୍ଠାନ ନଷ୍ଟ କରିଦିଆଯାଇଛି । ପୁନଶ୍ଚ ସ୍ୱାଧୀନ ସମ୍ରାଟଙ୍କ ଶାସନକାଳରେ ରାଜଧାନୀ, ବନ୍ଦର, ଦେବପୀଠକୁ କେନ୍ଦ୍ର କରି ଯେଉଁ ଜନବସତି ଗଢ଼ି ଉଠିଥିଲା ତାହାର ଢାଞ୍ଚା ବା ସ୍ୱରୂପ, ଏକ ଗବେଷଣାର ବିଷୟ । ବିଭିନ୍ନ ବୃତ୍ତିର ଲୋକଙ୍କୁ ନେଇ ଉକ୍ତ ସହରରେ ଶାସନ, ସାହି, ପଡ଼ା, ଉଆସ ଇତ୍ୟାଦି ଗଢ଼ି ଉଠିଥିଲା । ଏପରି ଢାଞ୍ଚା ପୁରୀ, ବାଲେଶ୍ୱର ଏବଂ ତତ୍କାଳୀନ ବିଭିନ୍ନ ସାମନ୍ତ ରାଜ୍ୟ ବା ଗଡ଼ଜାତ ରାଜ୍ୟର ରାଜଧାନୀରେ ଦେଖିବାକୁ ମିଳେ ।

ମାତ୍ର ସହସ୍ରାଧିକ ବର୍ଷର ସହର କଟକରେ ଏପରି ଢାଞ୍ଚା ନଷ୍ଟ ହେବା ମୂଳରେ କି କାରଣ ବିଦ୍ୟମାନ ତାହା ଉପରେ ଗବେଷଣା କରିବା ଆବଶ୍ୟକ । ସେ ଯାହାହେଉ ମୁସଲମାନ ରାଜତ୍ୱରେ ମୁସଲମାନ ସମ୍ପ୍ରଦାୟ ସେମାନଙ୍କ ସାମରିକ ପ୍ରତିପତ୍ତି ଯୋଗୁଁ କଟକରେ ପ୍ରାଧାନ୍ୟ ବିସ୍ତାର କରିଥିଲେ ଏବଂ କ୍ଷୁଦ୍ର ବୃହତ୍ ବହୁ ମସଜିଦ ଓ ପ୍ରାସାଦ ନିର୍ମାଣ କରିଥିଲେ । ଖ୍ରୀ ୧୬୬୨ରେ ଦେଓ୍ୱାନ ମୁର୍ଶିଦକୁଲି ଜାଫର ଖାଁଙ୍କ ନିର୍ମିତ ଦେଓ୍ୱାନ ବଜାର ମସଜିଦ୍, ଖ୍ରୀ ୧୬୮୯ରେ ନବାବ ନଜମ ଏନାମ ଖାଁଙ୍କ ଦ୍ୱାରା ନିର୍ମିତ ଗମ୍ବୁଜ ଶୋଭିତ ଜାମି ମସଜିଦ୍, ମହମ୍ମଦିଆ ବଜାରରେ ଉଜାଲେ ଖାଁ ମସଜିଦ୍, ବାରବାଟୀ ଦୁର୍ଗ ମଧ୍ୟରେ ସାହି ମସଜିଦ୍ ଓଡ଼ିଶାର ପ୍ରାଚୀନ ମସଜିଦ୍ ମଧ୍ୟରେ ଅନ୍ୟତମ ।

ଖ୍ରୀ ୧୭୧୫ରେ ଦରଘା ବଜାରରେ ଡେପୁଟି ନାଜିମ୍ ସୁଜାଉଦ୍ଦିନ ଖାଁଙ୍କ ଦ୍ୱାରା ନିର୍ମିତ କଦମରସୁଲ ମୁସଲମାନଙ୍କ ପକ୍ଷରେ ଅତି ପବିତ୍ର ସ୍ଥାନ । ପାରସ୍ୟରୁ ଆଣିତ ରସୁଲଙ୍କ ପାଦଚିହ୍ନ ପ୍ରସ୍ତରରେ ଖୋଦିତ କରାଯାଇ ଏଠାରେ ପୂଜା କରାଯାଏ । କଟକର ଶେଖ୍ ବଜାର, ମହମ୍ମଦିଆ ବଜାର, ସାହେବଜାଦା ବଜାର, ଖଟବିନ୍ ସାହି, ଲାଲ୍‌ବାଗ, କାଫଲା ବଜାର ଇତ୍ୟାଦି ମୁସଲମାନ ସଂସ୍କୃତିର ସ୍ମୃତି ରୂପେ ଆଜି ବିଦ୍ୟମାନ ।

ମୁସଲମାନ ପିଲ୍ମାନଙ୍କୁ ଶିକ୍ଷାଦେବା ପାଇଁ ବହୁ ମକ୍ତବ ଓ ମାଦ୍ରାସା ପ୍ରତିଷ୍ଠା କରା-ଯାଇଥିଲା । ଖାଦ୍ୟ, ବସ୍ତ୍ର, ଭାଷା, ସାହିତ୍ୟ କ୍ଷେତ୍ରରେ ଉଭୟ ହିନ୍ଦୁ ଓ ଇସଲାମ୍ ଧର୍ମ ପରସ୍ପରକୁ ପ୍ରଭାବିତ କରିଥିଲେ ।

ସତ୍ୟପୀର ପୂଜା ହେଉଛି ହିନ୍ଦୁ-ମୁସଲମାନ ସମ୍ପ୍ରଦାୟଙ୍କ ମଧ୍ୟରେ ଆଧ୍ୟାତ୍ମିକ ମିଳନର ସର୍ବୋତ୍କୃଷ୍ଟ ନିଦର୍ଶନ । ବହୁ ମୁସଲମାନ ଶାସକ ଉଦାରଚେତା ଥିବାରୁ ଉଭୟ ସମ୍ପ୍ରଦାୟ ମଧ୍ୟରେ ସମ୍ପ୍ରୀତି ସ୍ଥାପିତ ହୋଇ ପାରିଥିଲା । ଏହି ସମୟରେ କାଗଜ, କଉଡ଼ି ସହିତ ମୁଦ୍ରାର ପ୍ରଚଳନ, କଟକରେ ଟଙ୍କାଶାଳା ସ୍ଥାପନ ଏକ ଉଲ୍ଲେଖଯୋଗ୍ୟ ଘଟଣା । ମୁସଲମାନ ଓ ଅଣମୁସଲମାନ ସମ୍ପ୍ରଦାୟ ମଧ୍ୟରେ ସମ୍ପ୍ରୀତି ଓ ସମନ୍ୱୟ ସ୍ଥାପନ କ୍ଷେତ୍ରରେ ସମଗ୍ର ବିଶ୍ୱରେ ସମ୍ଭବତଃ କଟକ ହେଉଛି ଏକମାତ୍ର ଆଦର୍ଶ ସହର । ସମଗ୍ର ଭାରତରେ ମଧ୍ୟ କଟକ ହେଉଛି ଏକମାତ୍ର ସ୍ଥାନ, ଯେଉଁଠି ଗତ ପ୍ରାୟ ସାଢ଼େଚାରି ବର୍ଷ ବ୍ୟାପୀ ହିନ୍ଦୁ-ମୁସଲମାନ ଲୋକମାନେ ସାମ୍ୟ-ଶାନ୍ତି ଓ ସଦ୍‌ଭାବର ସହିତ ଏକତ୍ର ବାସ କରି ଆସିଛନ୍ତି ।

ଖ୍ରୀ ୧୭୫୧ରେ ମରହଟ୍ଟାମାନଙ୍କ ଦ୍ୱାରା ଓଡ଼ିଶା ଅଧିକାର ହେବାପରେ ଏବଂ ଖ୍ରୀ ୧୮୦୩ରେ ଇଂରେଜମାନଙ୍କ ଆଗମନ ପର୍ଯ୍ୟନ୍ତ ୫୨ ବର୍ଷ ବ୍ୟାପୀ, ରାଜଧାନୀ-କଟକରେ ମରହଟ୍ଟା ସମ୍ପ୍ରଦାୟର ଅବସ୍ଥାନ କଟକର ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ସଂଘଟିତ କରିଥିଲା । ଏହି ସମୟରେ ଉତ୍ତର ଭାରତର କେତେକ ହିନ୍ଦୁ ସମ୍ପ୍ରଦାୟ ଯଥା ମହାରାଷ୍ଟ୍ରୀୟ, ଗୁଜରାଟୀ, ରାଜସ୍ଥାନୀ, ଶିଖମାନେ କଟକରେ ସ୍ଥାୟୀ ଭାବେ ବସତି ସ୍ଥାପନ କରିଥିଲେ । ଏହି ସମୟରେ ରଘୁନାଥଜୀଉ ମନ୍ଦିର, ହନୁମାନ ମନ୍ଦିର, ଗଣେଶ ମନ୍ଦିର ପରି କେତେକ ମନ୍ଦିର, ମସ୍ତରାମ ମଠ, ଭାରତୀ ମଠ, ମାତା ମଠ, ରଘୁନାଥଜୀଉ ମଠ ପରି କେତେକ ମଠ ମଧ୍ୟ ସ୍ଥାପିତ ହୋଇଥିଲା । ପରବର୍ତ୍ତୀ କାଳରେ ଉପରୋକ୍ତ ସମ୍ପ୍ରଦାୟର ଲୋକମାନେ କଟକର ଅର୍ଥନୈତିକ ଓ ସାଂସ୍କୃତିକ ଜୀବନର ଅଭିବୃଦ୍ଧିରେ ବିଶେଷ ସହାୟକ ହୋଇଥିଲେ ।

ବାର୍ଷିକ କର ବିନିମୟରେ କଟକକୁ ହସ୍ତାନ୍ତର କରିବା ପାଇଁ ଲର୍ଡ କ୍ଲାଇବ୍, ଗଭର୍ଣ୍ଣର ଜେନେରାଲ, ଓ୍ୱାରେନ୍ ହେଷ୍ଟିଂସ୍, ଲର୍ଡ କର୍ଣ୍ଣୱାଲିସ୍‌ଙ୍କ ଅନୁରୋଧ ବ୍ୟର୍ଥ ହେବାରୁ ଶେଷରେ ଗଭର୍ଣ୍ଣର ଜେନେରାଲ ଓ୍ୱେଲେସଲି କର୍ଣ୍ଣେଲ ହାର୍‌କୋର୍ଟଙ୍କୁ ପଠାଇ ଖ୍ରୀ ୧୮୦୩ରେ କଟକ ବାରବାଟୀ ଦୁର୍ଗଟି ଅଧିକାର କରିଥିଲେ ଏବଂ କଟକକୁ କରିଥିଲେ ନିଜର ରାଜଧାନୀ । ଓଡ଼ିଶାରେ ମୁସଲମାନ ରାଜତ୍ୱ ହତ୍ୟା, ଲୁଣ୍ଠନ, ନିର୍ଯ୍ୟାତନାରେ କଳଙ୍କିତ ହେବାପରି, ୧୯୪୭ ପର୍ଯ୍ୟନ୍ତ ଇଂରେଜମାନଙ୍କ ୧୪୪ ବର୍ଷର ରାଜତ୍ୱ ଶୋଷଣ, ପ୍ରତାରଣା ଓ ଦୁର୍ନୀତିଗ୍ରସ୍ତ ଶାସନରେ ପରିପୂର୍ଣ୍ଣ ଥିଲା । ଏହି ସମୟରେ ଇଂରେଜମାନେ ଓଡ଼ିଆଙ୍କର କେବଳ ଅର୍ଥନୈତିକ ମାନଦଣ୍ଡକୁ ଧୂଳିସାତ୍ କରି ନଥିଲେ ଓଡ଼ିଆଙ୍କ ଗର୍ବ-ଗୌରବ-ଐତିହ୍ୟର ଶେଷ ସ୍ମାରକ ବାରବାଟୀ ଦୁର୍ଗକୁ ଧ୍ୱଂସ କରି ଦେଇଥିଲେ ।

ସେମାନେ କଟକ ସହରରେ ବହୁ ଗୀର୍ଜା ନିର୍ମାଣ କରି ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ବ୍ୟବସ୍ଥା କରିଥିଲେ । ଗୀର୍ଜାଗୁଡ଼ିକ ମଧ୍ୟରେ ମିଶନ୍ ରୋଡ଼ର ବ୍ୟାପଟିଷ୍ଟ ଚର୍ଚ୍ଚ, କଟକ ଚଣ୍ଡୀ ରୋଡ଼ର ଚର୍ଚ୍ଚ ଅଫ୍ ଗଡ୍, କ୍ୟାଥଲିକ୍ ଚର୍ଚ୍ଚ ଇତ୍ୟାଦି ଅନ୍ୟତମ । କଟକ ସହରର ଖ୍ରୀଷ୍ଟିଆନ୍ ପୁର, କଟକ ଚଣ୍ଡୀ, ସୁତାହାଟ, ପେଟେନ୍ ସାହି ପ୍ରଭୃତି ଅଞ୍ଚଳର ଖ୍ରୀଷ୍ଟିଆନଙ୍କ ସଂଖ୍ୟା ଅଧିକ । ଇଂରେଜମାନଙ୍କ ସର୍ବଶ୍ରେଷ୍ଠ ଅବଦାନ ହେଉଛି କଟକରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ । କଟକ (ରେଭେନ୍ସା) କଲେଜ, ଟ୍ରେନିଂ କଲେଜ, ମେଡ଼ିକାଲ ସ୍କୁଲ, ଇଞ୍ଜିନିୟରିଂ ସ୍କୁଲ, କଟକ ମେଡ଼ିକାଲ ସ୍ଥାପନ, ଇଂରାଜ-ଓଡ଼ିଆ-ମୁଦ୍ରଣାଳୟ ସ୍ଥାପନ, ପତ୍ର-ପତ୍ରିକା-ପୁସ୍ତକ ପ୍ରକାଶନରେ ପ୍ରୋତ୍ସାହନ, ଆନିକଟ ନିର୍ମାଣପୂର୍ବକ ଜଳସେଚନ ବ୍ୟବସ୍ଥା ପ୍ରଚଳନ ଓ ରେଳରାସ୍ତା ନିର୍ମାଣ । ଆଧୁନିକ ଓଡ଼ିଶାର ନବ ନିର୍ମାଣରେ ଇଂରେଜଙ୍କ ରାଜଧାନୀ ଏହି କଟକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ବିଭିନ୍ନ ଧର୍ମ ସମ୍ପ୍ରଦାୟଙ୍କର ସମନ୍ୱୟ ପୀଠ ରୂପେ କଟକ ଯୁଗେ ଯୁଗେ ଖ୍ୟାତି ଅର୍ଜନ କରିଆସିଛି । ଜାତି ଧର୍ମ ନିର୍ବିଶେଷରେ ଶ୍ରୀଜଗନ୍ନାଥଙ୍କ ପୀଠ ପୁରୀଧାମ ଯେପରି ବିଶ୍ୱ-ଭ୍ରାତୃତ୍ୱର ପ୍ରତୀକ ହୋଇ ଆସିଛି କଟକ ସେହିପରି ହିନ୍ଦୁଧର୍ମର ବିଭିନ୍ନ ଶାଖା ଓ ମତବାଦର, ମୁସଲମାନ, ଖ୍ରୀଷ୍ଟିଆନ, ଶିଖ୍ ପରି ବିଭିନ୍ନ ସମ୍ପ୍ରଦାୟର ଓଡ଼ିଆ, ହିନ୍ଦୀ, ବଙ୍ଗାଳୀ, ଗୁଜୁରାଟୀ, ରାଜସ୍ଥାନୀ, ପାର୍ସିଆନ ଇତ୍ୟାଦି ବିଭିନ୍ନ ଭାଷାର ଲୋକଙ୍କୁ ଆଶ୍ରୟ ଦେଇ ଓ ସେମାନଙ୍କୁ ଭ୍ରାତୃତ୍ୱ ବନ୍ଧନରେ ଆବଦ୍ଧ କରି ପୃଥିବୀରେ ଗୋଟିଏ ପ୍ରାଚୀନତମ ସହର ରୂପେ ଖ୍ୟାତି ଅର୍ଜନ କରି ଆସିଛି । ଦୁର୍ଗା ପୂଜାର ମେଢ଼ ଶୋଭାଯାତ୍ରାରେ ଇଦ୍, ମହରମ୍‌ରେ, ଖ୍ରୀଷ୍ଟିଆନଙ୍କ ବଡ଼ଦିନ ଓ ନୂତନ ବର୍ଷ ଉତ୍ସବରେ ହିନ୍ଦୁ-ମୁସଲମାନ-ଖ୍ରୀଷ୍ଟିଆନ-ଶିଖ୍ ସମ୍ପ୍ରଦାୟର ଲୋକମାନଙ୍କ ଯୋଗଦାନ ଓ ଅନାବିଳ ଭାବରେ ଆଦାନପ୍ରଦାନ ଲକ୍ଷ୍ୟ କଲେ ଯେ କେହି ସ୍ୱୀକାର କରିବ ଯେ ଏହି ସମସ୍ତ ସମ୍ପ୍ରଦାୟର ଲୋକମାନେ ହେଉଛନ୍ତି ଏକମାତ୍ର ଶାନ୍ତି ପ୍ରଦାୟକ ବିଶ୍ୱାଭିମୁଖୀ ମାନବଧର୍ମର ସ୍ତାବକ ।



# କଟକରେ ସଂସ୍କୃତ ଚର୍ଚ୍ଚା

**ପଣ୍ଡିତ ମାୟାଧର ନନ୍ଦ**

ସଂସ୍କୃତକୁ ବିଶ୍ୱର ଆଦିଭାଷା ରୂପେ ମନୀଷୀମାନେ ସ୍ୱୀକାର କରିଛନ୍ତି । ଏହି ଭାଷା ଭାରତୀୟ ଭାଷାମାନଙ୍କର ମହୀୟସୀ ଜନନୀ । ଯେହେତୁ ଅସଂଖ୍ୟ ସଂସ୍କୃତ ଶବ୍ଦଦ୍ୱାରା ଭାରତର ପ୍ରାଦେଶିକ ଭାଷାଗୁଡ଼ିକ ସମୃଦ୍ଧ, ସାବଲୀଳ, ବିଶୁଦ୍ଧ ତଥା ହୃଦୟଗ୍ରାହୀ ହୋଇ ପାରିଛନ୍ତି । ବୈଦିକ ଯୁଗରୁ ଆରମ୍ଭ କରି ଏହି ଭାଷାର ପ୍ରଭାବ କେବଳ ଆମ ଦେଶରେ ନୁହେଁ ପାଶ୍ଚାତ୍ୟ ଜଗତରେ ମଧ୍ୟ ସମାଦୃତ ହୋଇଆସୁଛି । ତେଣୁ ଇଣ୍ଡୋ-ୟୁରୋପୀୟ ଭାଷା ହିଁ ୟୁରୋପୀୟ ଭାଷାମାନଙ୍କର ନିଦାନ, ଇଣ୍ଡୋ ଶବ୍ଦର ଅର୍ଥ ଭାରତୀୟ ସଂସ୍କୃତ ଭାଷା । ତେଣୁ ଆମ ପୂର୍ବାଚାର୍ଯ୍ୟମାନେ ସଂସ୍କୃତର ମର୍ଯ୍ୟାଦା ଏପରି ବ୍ୟାପକ ଓ ସୁଦୃଢ଼ କରି ଯାଇଛନ୍ତି ଯେ ତାହା ବିଶ୍ୱଦରବାରରେ ଯୁଗ ଯୁଗ ଧରି ବରେଣ୍ୟ ହୋଇଆସୁଛି ।

ଭାରତର ପ୍ରତ୍ୟେକ ପ୍ରଦେଶରେ ବିଦ୍ୱାନମାନେ ଉପାଦେୟ ଗ୍ରନ୍ଥ ଲେଖି ଆଲୋଚନା, ଚର୍ଚ୍ଚା ଓ ଗବେଷଣା ମାଧ୍ୟମରେ ସଂସ୍କୃତ ଭାଷାକୁ ଲୋକପ୍ରିୟ କରିଯାଇଛନ୍ତି ଏବଂ ଏ ଯୁଗରେ ମଧ୍ୟ ପୂର୍ଣ୍ଣତଃ ନ ହେଲେ ହେଁ କେତେକାଂଶରେ କରୁଛନ୍ତି । ସବୁ ରାଜ୍ୟ ସହିତ ଆମ ଉତ୍କଳ ମଧ୍ୟ କାନ୍ଧମିଳାଇ ସଂସ୍କୃତର ଉଲ୍ଲେଖନୀୟ ସମୁନ୍ନତି ସାଧନ କରିଥିଲା । ଏହି ଭୂମିରେ ଆଳଙ୍କାରିକ ବିଶ୍ୱନାଥ କବିରାଜ, ଭକ୍ତକବି ଶ୍ରୀ ଜୟଦେବ, ଗାଣିତିକ ସାମନ୍ତ ଚନ୍ଦ୍ରଶେଖର, ସ୍ମୃତିକାର ଗଦାଧର ପ୍ରଭୃତି ମହାମନୀଷୀମାନେ ଜନ୍ମଗ୍ରହଣ କରି ଜନନୀ ଜନ୍ମଭୂମିର ମୁଖ ଉଜ୍ଜ୍ୱଳ କରିଛନ୍ତି ନିଜ ନିଜ ଅନୁପମ କୃତିଗୁଡ଼ିକ ଦ୍ୱାରା । ସେତେବେଳେ ଉତ୍କଳୀୟ ବିଦ୍ୱାନମାନଙ୍କ ଜ୍ଞାନଗରିମା ସ୍ୱଦେଶ ତଥା ବିଦେଶରେ ପ୍ରଚାର ଓ ପ୍ରସାର ଲାଭ କରିଥିଲା । ବର୍ତ୍ତମାନ ସେହି ସୁବର୍ଣ୍ଣଯୁଗ ନାହିଁ, ଅଛି କେବଳ କର୍ପୂର ଯାଇ କନା । ସେହି କନାର ମଧ୍ୟ ସୌରଭ କମ୍ ନୁହେଁ ।

ଦେଶର ପରାଧୀନତା ହିଁ ଆମ ରାଜ୍ୟରେ ସଂସ୍କୃତ ଚର୍ଚ୍ଚାର ପରିପନ୍ଥୀ ହୋଇ ଦଣ୍ଡାୟମାନ ହୋଇଥିଲା । ବିଦେଶୀ ଶାସକମାନେ ଦେଦୀପ୍ୟମାନ ସଂସ୍କୃତ ପ୍ରଦୀପଟିକୁ

ଲକ୍ଷ୍ୟ ନ ଦେଇ ମିଞ୍ଜି ମିଞ୍ଜି କରି ଜଳାଇ ରଖିଥିଲେ । ସେତେବେଳେ ଆମ ରାଜ୍ୟରେ ସଂସ୍କୃତ ବିଶ୍ୱବିଦ୍ୟାଳୟର ସତ୍ତାସୁଦ୍ଧା ନଥିଲା, ଥିଲା କେବଳ ଗୋଟିଏ ଦୁଇଟି ସଂସ୍କୃତ ମହାବିଦ୍ୟାଳୟ ଏବଂ ୬୦/୭୦ଟି ସଂସ୍କୃତ ବିଦ୍ୟାଳୟ (ଟୋଲ) । ମାତ୍ର ସ୍ୱାଧୀନତା ପରେ ଏହି ରାଜ୍ୟରେ ବହୁ ସଂସ୍କୃତ ମହାବିଦ୍ୟାଳୟ, ଶତ ଶତ ସଂସ୍କୃତ ବିଦ୍ୟାଳୟ ଓ ଶ୍ରୀକ୍ଷେତ୍ର ପୁରୀରେ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସଂସ୍କୃତର ଅଧ୍ୟୟନ, ଅଧ୍ୟାପନ, ଗବେଷଣା ତଥା ଚର୍ଚ୍ଚା ଆଶାନୁରୂପ ହୋଇପାରୁଛି ।

କଟକ ଜିଲ୍ଲାରେ ୭ଟି ସଂସ୍କୃତ ମହାବିଦ୍ୟାଳୟ ଏବଂ ଶତାଧିକ ସଂସ୍କୃତ ବିଦ୍ୟାଳୟ ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ହୋଇ ପରିଚାଳିତ ହେଉଛି । ଉକ୍ତ ଅନୁଷ୍ଠାନମାନଙ୍କରେ ସାହିତ୍ୟ, ବ୍ୟାକରଣ, ନ୍ୟାୟ, ଦର୍ଶନ ପ୍ରଭୃତି ବିଭାଗମାନଙ୍କରେ ଉପାଧିଧାରୀ ସଂସ୍କୃତ ବିଦ୍ୱାନ୍‌ମାନେ ନିଯୁକ୍ତ ହୋଇ ଅଧ୍ୟାପନାର ଦାୟିତ୍ୱ ନେଇଛନ୍ତି । ଏହାଦ୍ୱାରା ସହର ତଥା ଗ୍ରାମାଞ୍ଚଳମାନଙ୍କରେ ସଂସ୍କୃତ ଚର୍ଚ୍ଚା କରାଯାଉଛି । ଏହି ସବୁ ଶିକ୍ଷାୟତନରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ରାଜ୍ୟରେ ସଂସ୍କୃତର ଗୌରବ ବଢ଼ାଇ ଲିଭି ଲିଭି ଯାଇଥିବା ପ୍ରଦୀପ ଶିଖାକୁ ସମୁଜ୍ଜ୍ୱଳ କରି ପ୍ରକାଶ କରିବାକୁ ସତତ ଯତ୍ନବାନ୍ ହେବା ଲକ୍ଷ୍ୟ କରାଯାଉଛି । ପୁଣି ଦେଖାଯାଉଛି, ସାଧାରଣ ଜନତାର ସଂସ୍କୃତ ପ୍ରୀତି କ୍ରମେ କ୍ରମେ ବଢ଼ିବାରେ ଲାଗିଛି ।

କଟକ ଓଡ଼ିଶାର ଶ୍ରେଷ୍ଠ ନଗର । ବର୍ତ୍ତମାନ ଭୁବନେଶ୍ୱର ରାଜ୍ୟର ରାଜଧାନୀ ହେଲେ ହେଁ କଟକର ପୂର୍ବଗୌରବ ଅକ୍ଷୁର୍ଣ୍ଣ ଅଛି । କଟକରେ ବହୁବିଧ ଶିକ୍ଷାନୁଷ୍ଠାନ ମଧ୍ୟରେ ଉତ୍କଳର ହରେକୃଷ୍ଣ ମହତାବ ସଂସ୍କୃତ ମହାବିଦ୍ୟାଳୟ ପ୍ରଜାତନ୍ତ୍ର ପରିସର ମଧ୍ୟରେ ଏବଂ ଅତି ପୁରାତନ ଆଦର୍ଶ ଆୟୁର୍ବେଦ ବିଦ୍ୟାଳୟ ଟାଉନ ହଲ୍ ରୋଡ଼ରେ ପରିଚାଳିତ ହେଉଛି । ମହାବିଦ୍ୟାଳୟରେ ବର୍ଷ ମଧ୍ୟରେ ବହୁବାର ଆଲୋଚନାଚକ୍ର ଓ ସଭାସମିତି କରାଯାଇ ବିଭିନ୍ନ ଦିଗରୁ ସଂସ୍କୃତର ସମ୍ବନ୍ଧିକ ଚର୍ଚ୍ଚା କରାଯାଇଥାଏ ।

ସଂସ୍କୃତ ସମ୍ବନ୍ଧିକ ଆଲୋଚନା ତଥା ସଂସ୍କୃତ ଭାଷାକୁ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇ ଦେବା ଉଦ୍ଦେଶ୍ୟରେ ୧୯୮୩ ମସିହାରେ ଉଦ୍‌ଘାଟିତ ହୋଇଥିଲା 'ଉତ୍କଳ ଲୋକଭାଷା ପ୍ରଚାର ସମିତି' । ପ୍ରଥମେ ଉକ୍ତ ସମିତିର ପରିସର ଥିଲା ଉତ୍କଳରାଜ୍ୟ, ମାତ୍ର ଉଦ୍‌ଯୋଗୀ କର୍ମକର୍ତ୍ତୃବୃନ୍ଦ ତାକୁ ଓଡ଼ିଶାର ଅନୁଷ୍ଠାନ କେବଳ କରିନାହାନ୍ତି, ତାହା ବର୍ତ୍ତମାନ ସର୍ବଭାରତୀୟ ଅନୁଷ୍ଠାନ ରୂପେ ମାନ୍ୟତା ଲାଭ କରିଛି । ଲୋକଭାଷା ପ୍ରଚାର ସମିତିର ଯୋଜନା ବହୁମୁଖୀ । ସେଥି ମଧ୍ୟରୁ ପ୍ରଥମ ତଥା ମୁଖ୍ୟ ଯୋଜନା ହେଉଛି ସଂସ୍କୃତ ସମ୍ଭାଷଣ ଶିକ୍ଷାଦାନ । ସମ୍ଭାଷଣକୁ ଅଗ୍ରାଧିକାର ଦିଆଯିବାର ଲକ୍ଷ୍ୟ ମହତ୍ । ଛାତ୍ରମାନେ ସଂସ୍କୃତରେ ଆଳାପ କରିପାରିଲେ ସଂସ୍କୃତ ପ୍ରତି ସେମାନଙ୍କର ବଳବତୀ ସ୍ପୃହା ଜାଗ୍ରତ ହେବ । ତେଣୁ ସେମାନେ ସଂସ୍କୃତ ଅଧ୍ୟୟନ ଓ ଚର୍ଚ୍ଚା ଆଡ଼କୁ ସ୍ୱତଃ ଆକୃଷ୍ଟ ହେବେ । ସମ୍ଭାଷଣ ବ୍ୟତୀତ ସରଳ ସଂସ୍କୃତ ପୁସ୍ତକ ପ୍ରକାଶ, ଆଲୋଚନାଚକ୍ର,

ସଂସ୍କୃତ ସମାଚାର ପ୍ରଭୃତି କେତୋଟି ଉପାଦେୟ ଯୋଜନା ପ୍ରଚାର ସମିତିର କାର୍ଯ୍ୟ ପରିସରଭୁକ୍ତ ହୋଇଅଛି । ସମିତି ମଧ୍ୟ ନିଜ ଆର୍ଥିକ ଶକ୍ତି ଅନୁସାରେ ସବୁ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଯଥାସମ୍ଭବ ଚେଷ୍ଟା କରୁଛି ।

ଉତ୍କଳ ଲୋକଭାଷା ପ୍ରଚାର ସମିତି ପକ୍ଷରୁ ୧୯୮୪ ମସିହା ମେ ମାସ ୨୫ ତାରିଖରେ କଟକର ପ୍ୟାରୀମୋହନ ଏକାଡେମୀ—ପରିସରରେ ଗୋଟିଏ ସଂସ୍କୃତ ସମ୍ଭାଷଣ ଶିବିର ଉଦ୍‌ଘାଟିତ ହୋଇ ୧୦ ଦିନ ପର୍ଯ୍ୟନ୍ତ ଶିକ୍ଷା ଦିଆଯାଇଥିଲା । ସେହି ଶିବିରର ଉଦଯାପନ ଅବସରରେ ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥ ଓ ତତ୍କାଳୀନ ମାତୃଭୂମି ସମ୍ପାଦକ ସ୍ୱର୍ଗତ ବିଚିତ୍ରାନନ୍ଦ କର ମହୋଦୟଙ୍କ ପୃଷ୍ଠପୋଷକତାରେ କେତେ ଜଣ ଉତ୍ସାହୀ ସଂସ୍କୃତ ବିଦ୍ୱାନ୍ ତଥା ସଂସ୍କୃତପ୍ରେମୀଙ୍କୁ ନେଇ ଲୋକଭାଷା ପ୍ରଚାର ସମିତିର କଟକଶାଖା ଜନ୍ମଲାଭ କଲା । ସେହି ଦିନ ଠାରୁ କଟକ ସହରରେ ସଂସ୍କୃତ ଚର୍ଚ୍ଚା ନବଜୀବନ ଲାଭ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଟକ ଶାଖାର କର୍ମପ୍ରବଣତା କ୍ରମଶଃ ବଢ଼ି ବାରୁ ପ୍ରତିବର୍ଷ ସେକେଣ୍ଡାରୀ ବୋର୍ଡ଼ ବିଦ୍ୟାଳୟ, ରେଭେନ୍‌ସା କଲେଜିଏଟ୍, ରେଭେନ୍‌ସା ବାଳିକା ବିଦ୍ୟାଳୟ, ପ୍ୟାରୀମୋହନ ଏକାଡେମୀ, ରାଣୀହାଟ ହାଇସ୍କୁଲ, ରାଜାବଗିଚା ବିଦ୍ୟାଳୟ, ଥୋରିଆ ସାହି ବାଳିକା ବିଦ୍ୟାଳୟ, ବୁଢ଼ୀମଙ୍ଗଳା ବିଦ୍ୟାପୀଠ, କମଳାକାନ୍ତ ବିଦ୍ୟାପୀଠ, ଖ୍ରୀଷ୍ଟ କଲେଜିଏଟ୍, ଅଭ୍ୟାସ ବାଳିକା ବିଦ୍ୟାଳୟ, ମାତୃମନ୍ଦିର, ଜୋବ୍ରା ହାଇସ୍କୁଲ ପ୍ରଭୃତି ବିଦ୍ୟାୟତନ-ମାନଙ୍କରେ ଏକାଧିକବାର ସମ୍ଭାଷଣ ଶିବିର ପରିଚାଳିତ ହୋଇ ଆସୁଛି । କେବଳ ଛାତ୍ରମାନେ ଯେ ସମ୍ଭାଷଣ ଶିକ୍ଷା କରୁଛନ୍ତି, ତାହା ନୁହେଁ । ସମୟେ ସମୟେ ପ୍ରୌଢ଼ଶିବିର ଉଦ୍‌ଘାଟିତ ହୋଇ ପ୍ରୌଢ଼ମାନଙ୍କୁ ସଂସ୍କୃତରେ ବାର୍ତ୍ତାଳାପ କରିବା ପାଇଁ ପ୍ରେରଣା ଦିଆଯାଉଛି ଏବଂ ସଂସ୍କୃତ ଶାସ୍ତ୍ରର ମଧ୍ୟ ଆଲୋଚନା କରାଯାଉଛି । ଚଳିତ ବର୍ଷ ଅକ୍ଟୋବର ମାସରୁ ପ୍ରତି ରବିବାସରରେ ପୂର୍ବାହ୍ନ ୭.୩୦ ଠାରୁ ୯ଟା ପର୍ଯ୍ୟନ୍ତ ରେଭେନ୍‌ସା ମହାବିଦ୍ୟାଳୟରେ ସଂସ୍କୃତ ସ୍ନେହ ମିଳନ କାର୍ଯ୍ୟକ୍ରମ ପରିଚାଳିତ ହେଉଛି । ଏହି ସ୍ନେହ ମିଳନ କାର୍ଯ୍ୟକ୍ରମ ୧୯୮୭ ମସିହାରେ ପ୍ୟାରୀମୋହନ ଏକାଡେମୀ, ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ, ସଂସ୍କୃତ ଶିଶୁକ୍ଲବ, ମହାନଦୀ ବିହାର ଇତ୍ୟାଦିରେ ମଧ୍ୟ ଅନୁଷ୍ଠିତ ହୋଇଯାଇଛି ।

କଟକଶାଖା ପକ୍ଷରୁ ପ୍ରତିବର୍ଷ କାଳିଦାସ ଜୟନ୍ତୀ, ଜୟଦେବ ଜୟନ୍ତୀ, ଗୀତା ଜୟନ୍ତୀ, ସଂସ୍କୃତ ଦିବସ ପ୍ରଭୃତି ବିଶିଷ୍ଟ ଦିବସ ପାଳିତ ହୁଏ ଏବଂ ସଂସ୍କୃତ ସମ୍ମେଳନ ତଥା ରାଷ୍ଟ୍ରୀୟ ସଂସ୍କୃତସମ୍ମେଳନ ଅନୁଷ୍ଠିତ ହୋଇଥାଏ । ଏହି ଗୁଡ଼ିକ ସଂସ୍କୃତ ସମ୍ଭାଷଣ, ଚର୍ଚ୍ଚା, ପ୍ରବନ୍ଧପାଠର ପ୍ରକୃଷ୍ଟ କ୍ଷେତ୍ର ତଥା ଅବସର । ବହୁ ପ୍ରବୀଣ ସଂସ୍କୃତ ବିଦ୍ୱାନ ଏଥିରେ ଯୋଗଦେଇ ସଂସ୍କୃତର ଉନ୍ନତିକଳ୍ପେ ସୁଚିନ୍ତିତ ମତ ପ୍ରକାଶ କରି ସଂସ୍କୃତପ୍ରେମୀ ଶ୍ରୋତାମାନଙ୍କୁ ଉଦ୍‌ବୋଧନ ଦେଇଥାନ୍ତି ।

ଲୋକଭାଷା ପ୍ରଚାରସମିତି, କଟକଶାଖାର କାର୍ଯ୍ୟକ୍ରମ କେବଳ କଟକ ସହରରେ ସୀମିତ ନ ରହି ଜିଲ୍ଲାର ସୁଦୂର ଗ୍ରାମାଞ୍ଚଳମାନଙ୍କରେ ପ୍ରସାରିତ ହୋଇଛି । ଏହି ସମିତି

ଫଳରୁ ପଲ୍ଲୀ ବିଦ୍ୟାଳୟମାନ ଗୁଡ଼ିକରେ ଦଶଦିନାତ୍ମକ ସମ୍ଭାଷଣ ପରିଚାଳନା କରାଯାଇ ଭାଷଣ ମାଧ୍ୟମରେ ଗ୍ରାମବାସୀଙ୍କ ମଧ୍ୟରେ ସଂସ୍କୃତିର ଗୌରବ ପ୍ରଚାରିତ ହେଉଛି । ତାହାଦ୍ୱାରା ସ୍ଥାନ ବିଶେଷ ସାଧାରଣ ଅଧିବାସୀଙ୍କ ଅନ୍ତରରେ କ୍ରମେ କ୍ରମେ ସଂସ୍କୃତପ୍ରୀତି ଜାଗ୍ରତ ହେବା ସଙ୍ଗେ ସଙ୍ଗେ ଉତ୍ସାହ ଓ ଉଦ୍ଦୀପନା ପରିଲକ୍ଷିତ ହେଉଛି । ଫଳତଃ ସେମାନେ ବହୁବାର ନାନାବିଧ କାର୍ଯ୍ୟକ୍ରମର ଅନୁଷ୍ଠାନ ପାଇଁ ଅନୁରୋଧ କରୁଛନ୍ତି । ସେମାନଙ୍କୁ ବେଶି ଆକୃଷ୍ଟ କରୁଛି ସାଂସ୍କୃତିକ କାର୍ଯ୍ୟକ୍ରମ । ଉଦ୍‌ଯାପନ ଅବସରରେ ଶିବିର ଶିକ୍ଷାର୍ଥୀମାନେ ସଂସ୍କୃତ ଭାଷାରେ କ୍ଷୁଦ୍ର କ୍ଷୁଦ୍ର ନାଟିକା, ଶ୍ଲୋକାବୃତ୍ତି ପ୍ରତିଯୋଗିତା, ଶ୍ଳୋକାନ୍ତ ପ୍ରଭୃତି କରି ମନୋରଞ୍ଜନ କରୁଛନ୍ତି ।

ଲୋକଭାଷା-ପ୍ରଚାର-ସମିତିର ମୁଖପତ୍ର 'ଲୋକସୁଶ୍ରୀ' ଏବଂ 'ପ୍ରିୟମ୍ବଦା' ନାମକ ଅନ୍ୟ କୋଟିଏ ସଂସ୍କୃତ ପତ୍ରିକା କଟକରୁ ପ୍ରକାଶିତ ହେଉ ନଥିଲେ ମଧ୍ୟ ଉକ୍ତ ପତ୍ରିକା ଦୁଇଟିର ବହୁଳ ପ୍ରଚାର ସହରରେ ହେଉଥିବା ଦେଖାଯାଉଛି । 'ବେଦଭାଷା' ନାମଧାରୀ ସଂସ୍କୃତ ପତ୍ରିକା ବହୁବର୍ଷ ଧରି କଟକରୁ ପ୍ରକାଶିତ ହେଉଥିଲେ ହେଁ କେତେକ ଅନିବାର୍ଯ୍ୟ କାରଣବଶତଃ ବର୍ତ୍ତମାନ ତାର ପ୍ରକାଶନ ବନ୍ଦ କରାଯାଇଛି; ମାତ୍ର ସେହି ପତ୍ରିକାକୁ ଅଭିନବ କଳେବରରେ ଦେଇ ପ୍ରକାଶ ନିମିତ୍ତ ସମ୍ପାଦକମଣ୍ଡଳୀ ପରିକଳ୍ପନା କରୁଛନ୍ତି । ସେହି ପତ୍ରିକାରେ କଟକର ତଥା ବାହାରର ପ୍ରତିଷ୍ଠିତ ସଂସ୍କୃତ ବିଦ୍ୱାନ୍‌ମାନଙ୍କ ଯୁଗୋପଯୋଗୀ ପ୍ରବନ୍ଧ, ଗଳ୍ପ, ଭ୍ରମଣବୃତ୍ତାନ୍ତ, କବିତା ପ୍ରଭୃତି ପ୍ରକାଶିତ ହୋଇ ସଂସ୍କୃତର ପ୍ରଚାର ଓ ଚର୍ଚ୍ଚାରେ ସହାୟତା କରୁଥିଲା ।

ଏକଦା ଆମ ଭାରତଭୂମି ସଭ୍ୟତା, ସଂସ୍କୃତି, ଐତିହ୍ୟ ତଥା ସୁସଂହତି ପାଇଁ ବିଶ୍ୱବନ୍ଦନୀୟା ହୋଇଥିଲେ ମଧ୍ୟ ବର୍ତ୍ତମାନ ପୂର୍ବଗୌରବ ହରାଇ ବସିଛି । ଏହି ଅଧଃପତନର ମୁଖ୍ୟ ନିଦାନ ହେଉଛି ସଂସ୍କୃତ ଶାସ୍ତ୍ରମାନଙ୍କ ଚର୍ଚ୍ଚାର ଅଭାବ । ସମ୍ବିଧାନ ସଦୃଶ ସଂସ୍କୃତ ଗ୍ରନ୍ଥମାନଙ୍କରେ ମାନବ ଜୀବନର ପ୍ରତ୍ୟେକ ବିଭାଗର ସୁପରିଚାଳନା ଉଦ୍ଦେଶ୍ୟରେ ବହୁ ଅମୂଲ୍ୟ ଉପଦେଶ ଦିଆଯାଇଛି ।

ଅତୀତରେ ଭାରତୀୟମାନେ ଶାସ୍ତ୍ରର ନିର୍ଦ୍ଦେଶ ଅନୁସାରେ ସାମାଜିକ ଜୀବନମାର୍ଗକୁ ସୁଶୃଙ୍ଖଳ, ନୀତିମାନ, ଧର୍ମାନୁକୂଳ କରି ପାରିଥିବାରୁ ସୁଖଶାନ୍ତିରେ ଜୀବନଯାପନ କରୁଥିଲେ । ସେତେବେଳେ ଭାରତୀୟମାନେ ବୁଝୁଥିଲେ, 'ନିଜ ସୁଖ ପାଇଁ ଜାତ ନୁହେଁ ହିନ୍ଦୁ, ବିଶ୍ୱହିତେ ହିନ୍ଦୁ ପ୍ରତିରକ୍ତବିନ୍ଦୁ ।'' କିନ୍ତୁ ଆଜି ସେଦିନ ନାହିଁ କି ସେହି ନିଃସ୍ୱାର୍ଥପର ଭାରତବାସୀ ନାହାନ୍ତି । ଆଜି ନୈତିକତା ଯୋଥିବାଇଗଣରେ ପରିଣତ ହେଲାଣି । ତେଣୁ ସବୁଠାରେ ଭେଦଭାବ, ସାମ୍ପ୍ରଦାୟିକତା, ବାଦବିସମ୍ବାଦ ଏବଂ ହିଂସା ପ୍ରତିହିଂସା ତାଣ୍ଡବନୃତ୍ୟ କରୁଛି । ଫଳରେ ନିରୀହ ଜନତା ନିପୀଡ଼ିତ ହୋଇ ଜାହି ଜାହି ଡାକ ଛାଡ଼ୁଛି । ମାତୃଭୂମିର ଏହି ମର୍ମନ୍ତୁଦ ଦୁରବସ୍ଥା କଟକ ନଗରର କେତେଜଣ ସଂସ୍କୃତପ୍ରେମୀ ବୁଦ୍ଧିଜୀବୀଙ୍କ ଅନ୍ତରକୁ ଆଲୋଡ଼ିତ କରିବାରୁ ସେମାନଙ୍କ

ପ୍ରଚେଷ୍ଟାରେ ତୁଳସୀପୁରରେ ଥିବା ମୃଟୋଦ୍ୟାନ ନିକଟରେ କନକାଦେବୀ ମହାନ୍ତିଙ୍କର ଉଦ୍ଦେଶ୍ୟରେ ଗଢ଼ି ଉଠିଛି 'ନୈତିକ-ପୁନରୁତ୍ଥାନ-ସମିତି' ।

ଉକ୍ତ ସମିତି ପକ୍ଷରୁ ସେଠାରେ ଗୋଟିଏ 'ବେଦପାଠଶାଳା' ଉଦ୍‌ଘାଟିତ ହୋଇ ବେଦାଧ୍ୟୟନର ପରମ୍ପରା ରକ୍ଷା କରାଯାଉଛି । ଅତୀତ ଗୁରୁକୁଳାଶ୍ରମରେ ଶିଷ୍ୟମାନେ କ୍ରମେ ଗୁରୁଙ୍କଠାରୁ ବେଦ ଅଧ୍ୟୟନ କରିବା ପରି ପାଠଶାଳାରେ ଜଣେ ବୈଦିକ ପଣ୍ଡିତ ବେଦମନ୍ତ୍ର ଗାନ ସହ ଶିକ୍ଷା ଦେଉଛନ୍ତି । ତେଣୁ ପ୍ରତିଦିନ କେତେ ଘଣ୍ଟା ବେଦଧ୍ୱନିର ସୁମଧୁର ଝଙ୍କାରରେ ସୋତସ୍ୱିନୀର ତୀରଭୂମି ମୁଖରିତ ହେଉଛି । ବର୍ତ୍ତମାନ ପାଠଶାଳାରେ କେବଳ ବେଦାଧ୍ୟୟନ ଓ ସାମୟିକ ଆଲୋଚନା ହିଁ କରାଯାଉଥିଲେହେଁ ଉଦ୍ୟୋକ୍ତାମାନେ ବିବିଧ 'କାର୍ଯ୍ୟକ୍ରମର ପରିକଳ୍ପନା କରି 'ଶନୈଃ ପନ୍ଥାଃ, ଶନୈଃ କନ୍ଥା, ଶନୈଃ ପର୍ବତଲଙ୍ଘନଂ' ନୀତିର ଅନୁସରଣରେ କର୍ମପନ୍ଥା ସ୍ଥିର କରିଛନ୍ତି । ମନେହୁଏ ନୈତିକ-ପୁନରୁତ୍ଥାନ-ସମିତି ଏକଦା ଜୀବନ୍ତ ଅନୁଷ୍ଠାନରେ ପରିଣତ ହେବ ।

କଟକରେ ସଂସ୍କୃତଚର୍ଚ୍ଚା ପାଇଁ ଯାହା ଯାହା କରାଯାଉଛି, ତାହା ଅତୀତ ତୁଳନାରେ ସମୁଦ୍ରକୁ ଶଙ୍ଖେ ପାଣି ପରି ପ୍ରତୀୟମାନ ହେଉଥିଲେ ମଧ୍ୟ ନାହିଁ ମାମୁଁଠାରୁ କଣା ମାମୁଁ ଭଲ ନୀତିରେ ବିଚାର କରି ସେଥିପ୍ରତି କଟକବାସୀମାନେ ଆଗ୍ରହାତିଶଯ୍ୟ ପ୍ରକାଶ କରୁଛନ୍ତି । ଯେପରି ଉତ୍ତରୋତ୍ତର ପ୍ରଚେଷ୍ଟା ଚାଲିଛି ସେଥିରୁ ଜଣାଯାଉଛି ସଂସ୍କୃତ ଚର୍ଚ୍ଚାର କ୍ଷୀଣତର ପ୍ରବାହ ଅଦୂର ଭବିଷ୍ୟତରେ ସ୍ଥୂଳତର ହୋଇପାରେ । ତେବେ ସଂସ୍କୃତ ବିଦ୍ୱାନମାନଙ୍କ ଅଦମ୍ୟ ଉତ୍ସାହ ଓ ନିଷ୍ଠା ଉପରେ ସବୁ ନିର୍ଭର କରେ ।

# କଟକରେ ପ୍ରଥମ ଉତ୍କଳ ସମ୍ମିଳନୀ

ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

୧୯୦୩ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖରେ କଟକର ଇଦ୍‌ଗା ପଡ଼ିଆରେ ପ୍ରଥମ ଉତ୍କଳ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀ ଅନୁଷ୍ଠିତ ହେବାର ବହୁ ପୂର୍ବରୁ ଆଧୁନିକ ଓଡ଼ିଶାର ବହୁ ଅଞ୍ଚଳ ବଙ୍ଗଳା, ମଧ୍ୟପ୍ରଦେଶ ଓ ମାଡ୍ରାସ ଅଧୀନରେ ଥିଲା । ତେଣୁ ଏହି ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରୀକରଣ କରିବା ନିମନ୍ତେ ୧୮୯୨ ମସିହାରେ ଗୌରୀଶଙ୍କର ରାୟଙ୍କ ସମ୍ପାଦକତ୍ୱରେ ଗଠିତ ଉତ୍କଳସଭା ପ୍ରାରମ୍ଭିକ ଉଦ୍ୟମ କରିଥିଲା । ୧୯୦୦ ମସିହାରେ ଲର୍ଡ କର୍ଜନ ଓଡ଼ିଆ ଆନ୍ଦୋଳନ ସମ୍ପର୍କରେ ମଧୁବାବୁଙ୍କ ପତ୍ର ପାଇ ତାଙ୍କୁ ସାକ୍ଷାତ ହେବା ନିମନ୍ତେ ଅନୁରୋଧ କରିଥିଲେ । କିନ୍ତୁ ଅଣଓଡ଼ିଆ ପଦସ୍ଥ ସରକାରୀ କର୍ମଚାରୀ ମଧୁବାବୁଙ୍କୁ ଡାକି ନଥିବାରୁ ଶେଷରେ ଲର୍ଡ କର୍ଜନ ତାଙ୍କୁ ଡକାଇବାକୁ ବାଧ କରିଥିଲେ ଓ ମଧୁବାବୁଙ୍କଠାରୁ ସମସ୍ତ ଘଟଣା ବୁଝିଥିଲେ । ପୁନର୍ବାର ୧୯୦୧ ମସିହାରେ ମଧୁବାବୁ ସିମଳାଠାରେ ଲର୍ଡ କର୍ଜନଙ୍କ ସହିତ ସାକ୍ଷାତ ହୋଇ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା, ସମ୍ବଲପୁରରେ ଓଡ଼ିଆଭାଷାର ପୁନଃ ପ୍ରଚଳନ ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ନିମନ୍ତେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ । ଏହା ମଧ୍ୟରେ ଅଣଓଡ଼ିଆ ପଦସ୍ଥ କର୍ମଚାରୀମାନେ ବିଭିନ୍ନ ଚକ୍ରାନ୍ତ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସବୁ ଅଞ୍ଚଳ ବଙ୍ଗଳାର ଅଧୀନରେ ରହିବ କି ମଧ୍ୟପ୍ରଦେଶ ଅଧୀନରେ ରହିବ ସେ ବିଷୟ ନେଇ ନେତାମାନଙ୍କ ଭିତରେ ମନୋମାଳିନ୍ୟ ସୃଷ୍ଟି ହେଲା । ଠିକ୍ ଏହି ସମୟରେ ୧୯୦୨ ମସିହା ଜାନୁୟାରୀ ମାସ ୨୯ ତାରିଖରେ ଭାରତ ସରକାରଙ୍କ ସେକ୍ରେଟେରୀ ସାର୍ ସି. ରିଭର ସାହେବଙ୍କ ରିପୋର୍ଟ ଓଡ଼ିଆ ଜାତିର ଆଶା ଆକାଂକ୍ଷା ଉପରେ ଭୀଷଣ କୁଠାରଘାତ କଲା । କାରଣ ସେ ରିପୋର୍ଟରେ ଉଲ୍ଲେଖ କରିଥିଲେ ଯେ ଓଡ଼ିଶାକୁ ବଙ୍ଗଳାରୁ ଅନ୍ୟତ୍ର ନେବା ବା ଓଡ଼ିଶାକୁ ସ୍ୱତନ୍ତ୍ର ଚିଫ୍ କମିଶନରଙ୍କ ଅଧୀନରେ ରଖିବା ପ୍ରସ୍ତାବ ଗ୍ରହଣ ଯୋଗ୍ୟ ନୁହେଁ ।

ଏହାର ପ୍ରତିକ୍ରିୟାରେ ଗଞ୍ଜାମବାସୀ ଓଡ଼ିଆମାନଙ୍କ ତରଫରୁ ବଡ଼ଲାଟ ଲର୍ଡ କର୍ଜନଙ୍କ ନିକଟରେ ଏକ ପ୍ରତିବାଦ ପତ୍ର ଦାଖଲ କରାଗଲା ଓ ଖଲ୍ଲିକୋଟର ରାଜା

ହରିହର ମର୍ଦ୍ଦରାଜ ଦେବଙ୍କ ପୃଷ୍ଠପୋଷକତାରେ ୧୯୦୨ ମସିହାରେ ରମ୍ଭାରେ ଏକ ସମ୍ମିଳନୀର ଆୟୋଜନ କରାଗଲା । ଏହି ସମ୍ମିଳନୀରେ ଗଞ୍ଜାମର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳର ରାଜା ଓ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ଏହି ସମ୍ମିଳନୀରେ ମଧୁବାବୁ, ରାଧାନାଥ ରାୟ, ଫକୀରମୋହନ, ମୟୂରଭଞ୍ଜ ମହାରାଜା, ପଶୁରାମ ପାତ୍ର, ଗଦାଧର ବିଦ୍ୟାଭୂଷଣ, ସଦାଶିବ ବିଦ୍ୟାଭୂଷଣ, ବଳରାମ ମହାରଣା ଓ ନରସିଂହ ଦାସ ଆଦି ସକ୍ରିୟ ସହଯୋଗ କରିଥିଲେ । କେବଳ ସେତିକି ନୁହେଁ ପ୍ରଥମଥର ପାଇଁ ରମ୍ଭାର ଏହି ପବିତ୍ର ମିଳନ ପୀଠରେ ଉତ୍କଳମାତାର ଜୟଧ୍ୱନି ଗଗନ ପବନକୁ ମୁଖରିତ କରିଥିଲା । ମଧୁବାବୁ ଏହି ମିଳନ ପୀଠକୁ ଏକ ଜାତୀୟ ଯଜ୍ଞପୀଠ ରୂପେ ବହୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ଏହି ପୀଠରେ ବ୍ରହ୍ମପୁର-ଠାରେ "ଗଞ୍ଜାମ ସମ୍ମିଳନୀ" କରିବା ନିମନ୍ତେ ମଧୁବାବୁଙ୍କ ସସ୍ନେହ ପରାମର୍ଶକୁ ଗ୍ରହଣ କରାଯାଇଥିଲା । ରାଜା ହରିହର ମର୍ଦ୍ଦରାଜଙ୍କ ଦ୍ୱାରା ପ୍ରତିଷ୍ଠିତ ଖଲିକୋଟ ଏଷ୍ଟେଟ ପ୍ରେସରୁ ପ୍ରକାଶିତ ସାପ୍ତାହିକ ପତ୍ରିକା ଏହି ସମ୍ମିଳନୀର ପ୍ରଚାର ନିମନ୍ତେ ଯଥେଷ୍ଟ ସହାୟକ ହୋଇଥିଲା । ଏହି ସାପ୍ତାହିକ ପତ୍ରିକା ୧୯୦୨ ମସିହା ଜୁନ ମାସରୁ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ପ୍ରତ୍ୟେକ ବୁଧବାରରେ ଆତ୍ମପ୍ରକାଶ କରିବାରେ ଲାଗିଲା । ଏଥିରେ ରାଜକର୍ମଚାରୀ ଜୟକୃଷ୍ଣ ଚ୍ୟାଉ ପଟ୍ଟନାୟକ ମଧ୍ୟ ଯଥେଷ୍ଟ ସହଯୋଗ ପ୍ରଦାନ କରୁଥିଲେ ।

୧୯୦୩ ମସିହା ଏପ୍ରିଲ ମାସରେ ଗଞ୍ଜାମର ପ୍ରଥମ ଗ୍ରାଜୁଏଟ ପାରଳାଖେମୁଣ୍ଡି ନିବାସୀ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଏହି ଗଞ୍ଜାମ ସମ୍ମିଳନୀ ଅନୁଷ୍ଠିତ ହେଲା । ଏଥିରେ ଜାତି, ଧର୍ମ, ଭାଷା ନିର୍ବିଶେଷରେ ବହୁ ଭଦ୍ରବ୍ୟକ୍ତି ସହଯୋଗ କରିଥିଲେ । ମଧୁବାବୁ ମଧ୍ୟ ଏଥିରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇଥିଲେ । ଏହି ସମ୍ମିଳନୀରେ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ପ୍ରତିନିଧି ଯୋଗ ଦେଇ-ଥିବାରୁ ଏହାକୁ ଉତ୍କଳ ସମ୍ମିଳନୀ ରୂପେ ନାମିତ କରିବା ପାଇଁ ମଧୁବାବୁ ପ୍ରସ୍ତାବ ଦେଲେ ଓ ଏହି ସମ୍ମିଳନୀର ପ୍ରଥମ ଅଧିବେଶନ କଟକଠାରେ ଅନୁଷ୍ଠିତ ହେବା ନିମନ୍ତେ ନିର୍ଦ୍ଧାରଣ କରାଗଲା । ଉତ୍କଳ ସମ୍ମିଳନୀ ସମୟରେ ପ୍ରତ୍ୟେକ ପ୍ରତିନିଧି ଜାତୀୟପରିଚ୍ଛଦ ରୂପେ ଗୋଲାପି ରଙ୍ଗର ପାଗ ପରିଧାନ ପାଇଁ ସ୍ଥିର କରାଗଲା । ତେଣୁ ୧୯୦୩ ମସିହା ଡିସେମ୍ବର ମାସ ୩୦।୩୧ ତାରିଖରେ ହୋଇଥିବା ପ୍ରଥମ "ଉତ୍କଳ ସମ୍ମିଳନୀ"ର ଜନ୍ମଦାତ୍ରୀ ଭାବେ ବ୍ରହ୍ମପୁରଠାରେ ଅନୁଷ୍ଠିତ ଗଞ୍ଜାମ ସମ୍ମିଳନୀକୁ ଗ୍ରହଣ କରାଯାଇପାରେ ।

ଏହି ଉତ୍କଳ ସମ୍ମିଳନୀର ନାମକରଣ ସମ୍ପର୍କରେ କଟକରୁ ପ୍ରକାଶ ପାଇଥିବା ସମ୍ମିଳନୀ ବିବରଣୀରେ କୁହାଯାଇଛି, "ଯେଉଁମାନେ ଉତ୍କଳର ସ୍ଥାୟୀ ଅଧିବାସୀ ହୋଇଅଛନ୍ତି ଅର୍ଥାତ ଯେଉଁମାନେ ଉତ୍କଳକୁ ସେମାନଙ୍କ ଗୃହସ୍ୱରୂପ ମଣିଅଛନ୍ତି, ସେମାନେ ଭିନ୍ନ ଜାତୀୟ ହେଲେ ସୁଦ୍ଧା ସେମାନଙ୍କୁ ଉତ୍କଳୀୟ ବୋଲି ଗଣନା କରାଯିବ ।

ସେଇଁମାନେ ଅନେକ ଦିନ ହେଲା ଏଠାକୁ ଆସି ଓଡ଼ିଶାକୁ ଆପଣାର ମାତୃଭୂମି ସ୍ୱରୂପ ଗ୍ରହଣ ଏବଂ ସ୍ୱୀକାର କରୁଅଛନ୍ତି ଓ ଓଡ଼ିଆମାନଙ୍କ ହିତ ସାଧନକୁ ସ୍ୱଜାତି ପ୍ରତି କର୍ତ୍ତବ୍ୟ କର୍ମ ବୋଲି ମନେ କରୁଅଛନ୍ତି ସେମାନଙ୍କୁ ଉତ୍କଳୀୟ ବୋଲି ଡାକୁଅଛୁଁ ।" ତେଣୁ ଏମାନଙ୍କ ସମ୍ମିଳନୀ ହେଉଛି ଉତ୍କଳ ସମ୍ମିଳନୀ ।

ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା ପ୍ରଥମେ ରାଜନୈତିକ ଚର୍ଚ୍ଚା ତଥା ଧର୍ମଭାବକୁ ଦୂରରେ ରଖି ଉତ୍କଳୀୟମାନଙ୍କର ଶିକ୍ଷା, ଧନ, ଶିଳ୍ପ ଓ ସମାଜର ଉନ୍ନତି ପାଇଁ ଉଦ୍ୟମ କରିବା, ଦ୍ୱିତୀୟରେ ବିଭିନ୍ନ କାରଣରୁ ଭିନ୍ନ ଭିନ୍ନ ହୋଇ ରହିଥିବା ଉତ୍କଳଭାଷୀ ପ୍ରଦେଶର ଲୋକମାନଙ୍କୁ ଭାଷାସୂତ୍ରରେ ଏକତ୍ରୀକରଣ କରିବା । କାରଣ ଯେତେବେଳେ ସମ୍ବଲପୁରର କଚେରୀରୁ ଓଡ଼ିଆ ଭାଷାକୁ ଉଠାଇ ଦେବା ନିମନ୍ତେ ପ୍ରାରମ୍ଭିକ ଉଦ୍ୟମ ହୋଇଥିଲା ସେତେବେଳେ ସମ୍ବଲପୁରବାସୀଙ୍କ ଦୃଢ଼ ପ୍ରତିବାଦ ସହିତ ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆମାନଙ୍କ ସମର୍ଥନ ତଥା ସହାନୁଭୂତି ଫଳରେ ତତ୍କାଳୀନ ବଙ୍ଗଳାର ଗ୍ରେଟଲାଟ ଶ୍ରୀଯୁକ୍ତ ସାର୍ ଆଣ୍ଡ୍ରୁ ଫ୍ରେଜର ଓଡ଼ିଆଭାଷାର ପୁନଃ ପ୍ରଚଳନକୁ ଅନୁମୋଦନ କରିଥିଲେ । ଏହାଦ୍ୱାରା ଭାଷାସୂତ୍ରରେ ଓଡ଼ିଆମାନଙ୍କୁ ଏକତ୍ରୀତ କଲେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ହୋଇପାରିବ ବୋଲି ତତ୍କାଳୀନ ଜନନାୟକମାନଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା । ତେଣୁ ରମ୍ଭା ଓ ବ୍ରହ୍ମପୁରଠାରେ ଆୟୋଜିତ ବିଭିନ୍ନ ସମ୍ମିଳନୀ ଓଡ଼ିଆ ପ୍ରାଣରେ ସୁପ୍ତାବସ୍ଥାରେ ଥିବା ଜାତୀୟତା ଭାବକୁ କ୍ରମଶଃ ଜାଗ୍ରତ ତଥା ସଚେତନ କରିବାକୁ ଲାଗିଲା ।

ଏହି ଜାତୀୟତା ଭାବକୁ ସନ୍ଦୀପ୍ତ କରିବା ନିମନ୍ତେ 'ଉତ୍କଳ ସମ୍ମିଳନୀ'ର ଆୟୋଜନ କଟକରେ ହୋଇଥିଲା । ଏହା ଫଳରେ କୃଷୀ ମୂଲିଆଙ୍କଠାରୁ ରାଜା ମହାରାଜାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ସମ୍ପର୍କ ସ୍ଥାପନ କରାଯିବା ସଙ୍ଗେ ସଙ୍ଗେ ସମ୍ମିଳନୀର ଆଦର୍ଶ କୃଷୀ ମୂଲିଆଙ୍କ ନିକଟରେ ସୁବିଧାରେ ପହଞ୍ଚିବାର ବନ୍ଦୋବସ୍ତ ହୋଇଥିଲା । କାରଣ ସମାଜ ତଥା ଜାତିର ଉନ୍ନତି ପାଇଁ କୃଷୀ ଓ କାରିଗରଙ୍କ ଉନ୍ନତି, ଏଥିନିମନ୍ତେ ବାଣିଜ୍ୟ ତଥା ଶିକ୍ଷାଦି ଆବଶ୍ୟକତା, ଉକ୍ତ ଆବଶ୍ୟକତାର ପରିପୂରଣ ନିମନ୍ତେ ଜାତୀୟ ସାହିତ୍ୟ ବା ଓଡ଼ିଆ ଭାଷାର ଉନ୍ନତି ଏକାନ୍ତ ଅପରିହାର୍ଯ୍ୟ ବୋଲି ଧାରଣା ସୃଷ୍ଟି ହେଲା ।

ଏ ସମସ୍ତ ଘଟଣାକୁ ଆଖିଆଗରେ ରଖି କଟକରେ ଉତ୍କଳ ସମ୍ମିଳନୀର ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୋଇଥିଲା । ଏଥିପାଇଁ ଗୋଟିଏ ଅଧିବେଶନ ୧୯୦୩ ମସିହା ଅକ୍ଟୋବର ମାସ ୨୫ ତାରିଖରେ କନିକା ରାଜବାଟୀରେ ଅନୁଷ୍ଠିତ ହୋଇ କାର୍ଯ୍ୟନିର୍ବାହି ସମିତି ଗଠନ ଓ ଡିସେମ୍ବର ମାସ ୩୦, ୩୧ ତାରିଖରେ ସମ୍ମିଳନୀ କରିବା ନିମନ୍ତେ ଦିନ ନିର୍ଦ୍ଧାରଣ କରାଯାଇଥିଲା । ତାପରେ କାର୍ଯ୍ୟନିର୍ବାହୀ ସମିତିର ୮ ଗୋଟି ଅଧିବେଶନ ଯଥାକ୍ରମେ ୧୯୦୩ ମସିହା ନଭେମ୍ବର ମାସ ୧୫, ୨୨ ତାରିଖ ଓ ଡିସେମ୍ବର ମାସ ୬, ୧୦, ୧୬, ୨୦, ୨୧, ୨୪ ତାରିଖରେ ଅନୁଷ୍ଠିତ ହୋଇଥିଲା ।

ଏହି ଅଧିବେଶନ ଗୁଡ଼ିକରେ ନିମନ୍ତ୍ରଣ ପତ୍ର ପ୍ରେରଣ, ପ୍ରଦର୍ଶନୀ, ସଭାପତି ନିର୍ଦ୍ଧାରଣ, ବିଭିନ୍ନ କମିଟି ଗଠନ, ସମ୍ମିଳନୀରେ ଆଲୋଚିତ ହେବା ବିଷୟ ସ୍ଥିରୀକୃତ, ବିଭିନ୍ନ ଅଞ୍ଚଳରୁ ଆସିବା ପ୍ରତିନିଧି ଓ ବିଶିଷ୍ଟ ବ୍ୟକ୍ତିଙ୍କର ରହିବା ଓ ଖାଇବା ଆଦି ଚର୍ଚ୍ଚା ନିମନ୍ତେ ବନ୍ଦୋବସ୍ତ, ସ୍ୱେଚ୍ଛାସେବକ ନିର୍ବାଚନ, ବିଭିନ୍ନ ପ୍ରସ୍ତାବର ପ୍ରସ୍ତାବକ, ଅନୁମୋଦନ ଓ ସମର୍ଥନକାରୀ ନିର୍ଣ୍ଣୟ, ପ୍ରସ୍ତାବଗୁଡ଼ିକ ମୁଦ୍ରଣ, ନିମନ୍ତ୍ରଣ ପତ୍ର ପ୍ରେରଣ ଓ ଉଦ୍‌ଘାଟନ ନିମନ୍ତେ କମିଶନରଙ୍କୁ ଅନୁରୋଧ ଆଦି ବିଷୟର ପୁଙ୍ଖାନୁପୁଙ୍ଖ ବିଚାର ବିମର୍ଶ ହୋଇଥିଲା ।

ଏହି ଅଧିବେଶନଗୁଡ଼ିକ ମଧ୍ୟରୁ ୮ମ ଅଧିବେଶନ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । କାରଣ ବିଭିନ୍ନ କମିଟିରେ ମିଶିବା ଓ ସହଯୋଗ କରୁଥିବା କେତେଜଣ ସରକାରୀ କର୍ମଚାରୀ ସମ୍ମିଳନୀ କାର୍ଯ୍ୟରୁ ଇସ୍ତଫା ପ୍ରଦାନ ଓ ସରକାରୀ କର୍ମଚାରୀ ସମ୍ମିଳନୀରେ ଯୋଗ ନ ଦେବା ପାଇଁ ଗଭର୍ଣ୍ଣମେଣ୍ଟରୁ ଆସିଥିବା ଗୋଟିଏ ଆଦେଶନାମା ଉପରେ ଏହି ଦିନ ବିଶେଷ ଭାବରେ ଆଲୋଚନା ହୋଇଥିଲା । ଶେଷରେ କାର୍ଯ୍ୟନିର୍ବାହ ସମିତିର ସମ୍ପାଦକ ମଧୁସୂଦନ ଦାସ ଟେଲିଗ୍ରାମ ମାଧ୍ୟମରେ ବଙ୍ଗଳା ଗଭର୍ଣ୍ଣମେଣ୍ଟକୁ ଏ ସମ୍ପର୍କରେ ଦୃଢ଼ ପ୍ରତିବାଦ ଜଣାଇବାକୁ ବାଧ୍ୟ ହୋଇଥିଲେ । ଏହି ପ୍ରତିବାଦ ସହିତ ସମ୍ମିଳନୀର ପ୍ରସ୍ତାବମାନ ଜଣାଇ ଏହା ରାଜନୈତିକ ଆନ୍ଦୋଳନ ହୋଇ ନଥିବାରୁ ଓ ସରକାରଙ୍କ ଅଗୋଚରରେ କୌଣସି କାର୍ଯ୍ୟ ହେଉ ନଥିବାରୁ ଏଥିରେ ସରକାରୀ କର୍ମଚାରୀ ସହଯୋଗ କରିବା ନିମନ୍ତେ କୌଣସି ପ୍ରତିବନ୍ଧକ ନାହିଁ ବୋଲି ଯୁକ୍ତି ଦର୍ଶାଇଥିଲେ ।

ଏହାପରେ କମିଶନରଙ୍କ ଆହ୍ୱାନ କ୍ରମେ କେତେକ ସଭ୍ୟ ତାଙ୍କୁ ସାକ୍ଷାତ କଲେ ଓ ବଙ୍ଗଳା ଗଭର୍ଣ୍ଣମେଣ୍ଟ ମଧୁବାବୁଙ୍କ ଟେଲିଗ୍ରାମକୁ ବିଚାର କରି ଏହା ରାଜନୈତିକ ଆନ୍ଦୋଳନ ନ ହୋଇ ଏଥିରେ ସମାଜ, ଶିଳ୍ପ ଓ ଶିକ୍ଷାଦିର ଉନ୍ନତି ବିଷୟ ଚର୍ଚ୍ଚା ହେଉଥିବାରୁ ସରକାରୀ କର୍ମଚାରୀ ସଭାରେ ଯୋଗଦେବା ଓ ସହଯୋଗ କରିବା ଉଚିତ ବୋଲି ଜଣାଇଦେଲେ । ସଭ୍ୟମାନଙ୍କ ଅନୁରୋଧ କ୍ରମେ କମିଶନର ସାହେବ ନିଜେ ପ୍ରଦର୍ଶନୀ ଉଦ୍‌ଘାଟନ କରିବା ନିମନ୍ତେ ସ୍ୱୀକୃତି ପ୍ରଦାନ କଲେ ।

ଏହି ପର୍ଯ୍ୟାୟ ପରେ ଉତ୍କଳ ସମ୍ମିଳନୀ ଦିନ ପାଖେଇ ଆସିଲା । କଟକ ଚାନ୍ଦିନୀ ବଜାରର ରାଧାପ୍ରସାଦ ଭଗତ, ଖାସରାମ ଇବ୍ରାହିମ୍, ପଦନ ସାହୁ, ନିର୍ମାଲ୍ୟ ସୁଲେନ୍‌ର କାର୍ତ୍ତିକ ଭଗତ, ବାଖରାବାଦର ଶ୍ରୀ ନନ୍ଦିଆ ବାବୁ, କଟକ ଚଣ୍ଡୀ ନିକଟସ୍ଥ ଲକ୍ଷ୍ମୀନାରାୟଣ ଚୌଧୁରୀ, ତେଲେଙ୍ଗା ବଜାର ହରିରାମ ମାରୱାଡ଼ି ଆଦି ସେମାନେ ଘରେ ଅତିଥି ଓ ପ୍ରତିନିଧିମାନଙ୍କ ରହିବା ନିମନ୍ତେ ନିଜ ନିଜର ଘରଗୁଡ଼ିକୁ ଯୋଗାଇ ଦେଇଥିଲେ । କେବଳ ସେତିକି ନୁହେଁ, ରାଉରକେଲାଆଗ୍ରେସ୍ଥ ବର୍ଦ୍ଧମାନ ରାଜାଙ୍କ କୋଠି, ଖଲ୍ଲିକୋଟ ଓ କନିକା ରାଜାଙ୍କ କୋଠିରେ ମଧ୍ୟ କେତେଜଣ ବିଶିଷ୍ଟ ଅତିଥି ରହିବା ନିମନ୍ତେ ବନ୍ଦୋବସ୍ତ ହୋଇଥିଲା ।

ସେତେବେଳେ କଟକ ସହର ଉତ୍ସବ ମୁଖରିତ ହୋଇ ଉଠିଥିଲା । ସମସ୍ତଙ୍କ କଣ୍ଠରେ ଉତ୍କଳ ମାତାର ଜୟଧ୍ୱନି, ଉତ୍କଳ ଭାଷୀଙ୍କର ଏକତ୍ରୀକରଣ ମନପ୍ରାଣକୁ ପୁଲକିତ କରିଥିଲା । କଟକ ମ୍ୟୁନିସିପାଲିଟି ଓ କ୍ୟାଣ୍ଟନମେଣ୍ଟ କର୍ତ୍ତୃପକ୍ଷ ଅଭ୍ୟାଗତଙ୍କ ପାଇଁ ଗାଡ଼ି ଓ ପାଇଖାନାର ସୁବନ୍ଦୋବସ୍ତ କରି ଉତ୍କଳ ସମ୍ମିଳନୀର ସୁଶୃଙ୍ଖଳ ସମ୍ପାଦନାରେ ସକ୍ରିୟ ସହଯୋଗ କରିଥିଲେ । ସମ୍ମିଳନୀ ଉଦ୍ଦେଶ୍ୟରେ ଗଠିତ ସ୍ୱେଚ୍ଛାସେବକ ବ୍ୟବସ୍ଥା ଜଣେ ଉଚ୍ଚଶିକ୍ଷିତା ମହିଳାଙ୍କ ତତ୍ତ୍ୱାବଧାନରେ ବିଭିନ୍ନ ଶ୍ରେଣୀରେ ପଢ଼ୁଥିବା ଛାତ୍ରମାନଙ୍କ ସହାୟତାରେ ସମାହିତ ହୋଇଥିଲା ।

ଏହି ସମ୍ମିଳନୀରେ ଯୋଗଦେବା ନିମନ୍ତେ ଗଞ୍ଜାମ, ସମ୍ବଲପୁର, ମେଦିନୀପୁର ଓ ଗଡ଼ଜାତ ଅଞ୍ଚଳରୁ ବହୁ ବ୍ୟକ୍ତିଙ୍କର ସମାଗମ ହୋଇଥିଲା । ମାନ୍ୟଗଣ୍ୟ ତଥା ବିଶିଷ୍ଟ ବ୍ୟକ୍ତିଙ୍କ ମଧ୍ୟରେ ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ, ଆଠଗଡ଼, ମଧୁପୁର, ଖଲିକୋଟ ଓ କନିକାର ରାଜା ମହାରାଜାମାନେ, ରାଜା ବୈକୁଣ୍ଠନାଥ ଦେବ ବାହାଦୁର, ଜୟପୁରର ଶ୍ରୀ ବିକ୍ରମଦେବ ବର୍ମା, ମଞ୍ଜୁଷାର ପାଟଦେବ, ସୁରଙ୍ଗୀର ରାଜଭ୍ରାତା, ଅମୃତ ବଜାର ପତ୍ରିକାର ସମ୍ପାଦକ ବାବୁ ମତିଲାଲ ଘୋଷ, ଓଡ଼ିଶାର କମିଶନର ଶ୍ରୀଯୁକ୍ତ କେ. ଜି. ଗୁପ୍ତ, ପାଦରିୟଙ୍ଗ ଓ ପାଦରିହାଉଏଲସ୍ ଆଦି ଅନ୍ୟତମ । ଏମାନଙ୍କ ବ୍ୟତୀତ କେତେଜଣ ମଠାଧୀଶ ମଧ୍ୟ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ ।

ଏହି ସମସ୍ତ ପ୍ରତିନିଧି ତଥା ବିଶିଷ୍ଟ ବ୍ୟକ୍ତିଙ୍କ ଉପସ୍ଥିତିରେ ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖ ବୁଧବାର ଦିନ ୧୧ ଘଣ୍ଟା ସମୟରେ ଆଠଗଡ଼ର ରାଜା ସଂସ୍କୃତସ୍ତବଟିଏ ପାଠ କରିବା ପରେ ସଭାକାର୍ଯ୍ୟ ଆରମ୍ଭ ହୋଇଥିଲା । ତାପରେ କାର୍ଯ୍ୟ ନିର୍ବାହ କମିଟିର ସଭାପତି ତଥା କନିକାର ରାଜା ସମସ୍ତ ସଭ୍ୟମାନଙ୍କୁ ସ୍ୱାଗତ ଜଣାଇଥିଲେ । ବଡ଼ଲାଟ ସଭାର ସଦସ୍ୟ ଶ୍ରୀଯୁକ୍ତ ଆଶୁତୋଷ ବାନାର୍ଜୀ, କଲିକତା ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଶ୍ରୀଯୁକ୍ତ କାଳୀଚରଣ ବାନାର୍ଜୀ, ହିନ୍ଦୋଳ, ବୌଦ, ଖଣ୍ଡପଡ଼ା ଓ ସୋନପୁରର ରାଜାମାନେ କେତେକ ଅନିବାର୍ଯ୍ୟ କାରଣରୁ ଉପସ୍ଥିତ ହୋଇପାରି ନଥିବାରୁ ସେମାନଙ୍କ ଦ୍ୱାରା ପ୍ରେରିତ ବାର୍ତ୍ତାଗୁଡ଼ିକୁ ସମ୍ପାଦକ ମଧୁସୂଦନ ଦାସ ଉପସ୍ଥିତ ବ୍ୟକ୍ତିମାନଙ୍କ ଆଗରେ ପଢ଼ି ଶୁଣାଇଥିଲେ । ତାପରେ କେନ୍ଦୁଝର ରାଜାଙ୍କ ପ୍ରସ୍ତାବ ତଥା ଢେଙ୍କାନାଳ ରାଜାଙ୍କ ଅନୁମୋଦନକ୍ରମେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଏହି ଅଧିବେଶନରେ ସଭାପତି ଆସନ ଗ୍ରହଣ କରି ସଭାକାର୍ଯ୍ୟ ପରିଚାଳନା କରିଥିଲେ ।

ସଭାପତି ଆସନ ଅଳଂକୃତ କରିବା ପରେ ସଭାକାର୍ଯ୍ୟ ଆରମ୍ଭ ହୋଇଥିଲା । ସଭାକାର୍ଯ୍ୟ ଆରମ୍ଭରେ ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ଉର୍ଦ୍ଦୁ ଭାଷାରେ ଲିଖିତ ସ୍ୱାଗତ ସଙ୍ଗୀତ ଗାନ କରାଯାଇଥିଲା । ତାପରେ ସଭାପତିଙ୍କ ପ୍ରସ୍ତାବକ୍ରମେ ବାମଣ୍ଡାଧିପତି ସାର୍ ସୁଢ଼ଳଦେବଙ୍କ ଇହଲୀଳା ସମ୍ବରଣ ହେତୁ ଶୋକ ପ୍ରସ୍ତାବ ଆନୟନ ପରେ ସଭାପତି ଅଭିଭାଷଣ ପ୍ରଦାନ କରିଥିଲେ ।

ଏହି ଅଭିଭାଷଣରେ ସଭାପତି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ରୂପେ ଦେଶର ଶିଳ୍ପ ଓ ଗୃହଦ୍ୱାରା ଧନ ବୃଦ୍ଧି, ଶିକ୍ଷାର ପ୍ରଚାର, ଭାଷା ଓ ସାହିତ୍ୟରେ ଉନ୍ନତି ତଥା ସମାଜ ସଂସ୍କାର କରିବା ଆଦି ଉପରେ ସ୍ପଷ୍ଟ ସୂଚନା ଦେଇଥିଲେ । ଏହି ଉଦ୍ଦେଶ୍ୟଗୁଡ଼ିକୁ ଉପସ୍ଥାପନ କରିବାକୁ ଯାଇ ପ୍ରାଚୀନ ଉତ୍କଳର ଧର୍ମ, ସଂସ୍କୃତି, ତଥା ଐତିହ୍ୟ ଗୌରବ ସମ୍ପର୍କରେ ସୂଚନା ଦେଇଥିଲେ । କେବଳ ସେତିକି ନୁହେଁ ଏହା ସହିତ ସ୍ତ୍ରୀ ଶିକ୍ଷା, ଉଚ୍ଚଶିକ୍ଷା, ରାଜା ଓ ଜମିଦାରମାନଙ୍କର ଶିକ୍ଷା, କୃଷି ବିଜ୍ଞାନ ଓ ଶିଳ୍ପର ଶିକ୍ଷା ତଥା ସେଥିରେ ଥିବା ବିଭିନ୍ନ ଅଭାବ ଆଦି ସମ୍ପର୍କରେ ବିସ୍ତୃତ ଆଲୋଚନା କରିବା ସଙ୍ଗେ ସଙ୍ଗେ ଏ ସମସ୍ତ ଶିକ୍ଷାର ଉପାଦେୟତା ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ଏତଦ୍‌ବ୍ୟତୀତ ଏହି ସମ୍ମିଳନୀର ୧ମ ଦିବସରେ ଅର୍ଥାତ୍ ଡିସେମ୍ବର ୩୦ ତାରିଖରେ ୩ ଗୋଟି ଓ ୩୧ ତାରିଖରେ ୮ ଗୋଟି ପ୍ରସ୍ତାବ ଅନୁମୋଦନ ଲାଭ କରିଥିଲା ।

ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତୀୟତା, ଭାଷା ସୂତ୍ରରେ ଏକତ୍ରୀକରଣ ଆଦି ପ୍ରସ୍ତାବକୁ ଦୃଢ଼ ରୂପେ ପରିପାଳନ କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ସମୟରେ କଟକ, ବାଲେଶ୍ୱର, ବ୍ରହ୍ମପୁର, ପୁରୀ, ପାରଳାଖେମୁଣ୍ଡି, ସମ୍ବଲପୁର, ସିଂହଭୂମି ଜିଲ୍ଲାର ଚକ୍ରଧରପୁର, ଜଳନ୍ତର, ମଞ୍ଜୁଷା, ଜୟପୁର ଓ ମହେନ୍ଦ୍ରଗିରି ଆଦିରେ ଏହାର ବିଭିନ୍ନ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

ସ୍ୱାଧୀନତା ପୂର୍ବରୁ ଏହି ଉତ୍କଳ ସମ୍ମିଳନୀ ଅନ୍ୟୂନ ୩୨ ଥର ଓଡ଼ିଶାର ବିଭିନ୍ନ ସ୍ଥାନରେ ଅଧିବେଶନ କରି ଓଡ଼ିଆ ଜନମାନସରେ ଭାଷାସୂତ୍ରରେ ଏକତ୍ରୀକରଣ ନିମନ୍ତେ ପ୍ରଚଣ୍ଡ ପ୍ରଭାବ ପକାଇବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ସଚେଷ୍ଟ ଥିଲା । ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଏଥିପାଇଁ ଅଦମ୍ୟ ଉଦ୍ୟମ କରିଥିଲେ ମଧ୍ୟ ରମ୍ଭାରେ ଅନୁଷ୍ଠିତ ବନ୍ଧୁମିଳନ, ବ୍ରହ୍ମପୁରର ଗଞ୍ଜାମ ସମ୍ମିଳନୀ ପରେ କଟକର ପ୍ରଥମ ଉତ୍କଳ ସମ୍ମିଳନୀର ପ୍ରଚେଷ୍ଟା ତଥା ସଫଳତା ଯଥେଷ୍ଟ ପ୍ରେରଣାପ୍ରଦ ହୋଇଥିଲା । କେବଳ ସେତିକି ନୁହେଁ ଏଠାରୁ ବାରମ୍ବାର ଏହି ସମ୍ମିଳନୀର ଅଧିବେଶନ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ନବଜାଗରଣ ସୃଷ୍ଟି କରିଥିଲା ତାହା ଅନସ୍ୱୀକାର୍ଯ୍ୟ ।

●

# କଟକରେ ବିଧାନସଭା

**ଶ୍ରୀ ହରିହର ବାହିନୀପତି**

କଟକରେ ଓଡ଼ିଶା ବିଧାନସଭା ସମ୍ପର୍କରେ ଆଲୋଚନା ଆରମ୍ଭ କଲାବେଳେ, ଓଡ଼ିଶାରେ କଟକର ପ୍ରାଧାନ୍ୟ ବା ଗୁରୁତ୍ୱ ଆପେ ଆପେ ମନକୁ ଚାଲିଆସେ। ସେହିପରି ଓଡ଼ିଶା ପ୍ରଶ୍ନ ମଧ୍ୟ ଆସିବା ସ୍ୱାଭାବିକ।

ବର୍ତ୍ତମାନ ଓଡ଼ିଶା ରାଜ୍ୟ ବୋଲି ଆମେ ଯାହା ଦେଖୁଛେ, ତାହା ତତ୍କାଳୀନ ଇଂରେଜ ଶାସନ କାଳରେ ୧୯୩୫ ମସିହା ଭାରତୀୟ ଶାସନ ଖସଡ଼ାର ୨୮୯ ଧାରା ଅନୁଯାୟୀ ଭାରତ ସରକାରଙ୍କ ୧୯୩୬ ମସିହା ଓଡ଼ିଶା ଗଠନ ଆଦେଶର ଚତୁର୍ଥ ପରିଚ୍ଛେଦର ପ୍ରଥମ ଅନୁଚ୍ଛେଦରେ ଘୋଷିତ ହୋଇଥିଲା। ଏହା ଅବଶ୍ୟ ୧/୪/୧୯୩୬ରୁ କାର୍ଯ୍ୟକାରୀ ହୋଇ ସେ ସମୟର ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରୁ କେତେକ ଅଂଶ ବିଶେଷକୁ ନେଇ ବିହାର ଓ ଓଡ଼ିଶା ପ୍ରଦେଶରୁ ପୃଥକ ହୋଇ ଓଡ଼ିଶା ପ୍ରଦେଶ ନାମରେ ନାମିତ ହୋଇଥିଲା, ସ୍ୱାଧୀନତା ପରେ ଏହି ପ୍ରଦେଶଗୁଡ଼ିକ ଭାରତର ନୂତନ ସମ୍ବିଧାନ ଅନୁଯାୟୀ ରାଜ୍ୟ ଭାବରେ ନାମିତ ହୋଇ, ପୂର୍ବତନ ଗଡ଼ଜାତ ବା ଦେଶୀୟ ରାଜ୍ୟ ମିଶ୍ରଣ, ଭାଷା ଭିତ୍ତିରେ ପ୍ରଦେଶ ଗଠନ ଇତ୍ୟାଦି କାରଣରୁ, ନୂଆ କେତେକ ରାଜ୍ୟ ଗଠନ ହେବା ସଙ୍ଗେ ସଙ୍ଗେ, ସେମାନଙ୍କର ଭୌଗୋଳିକ ସୀମା ସରହଦରେ ପରିବର୍ତ୍ତନ ଘଟିଛି। ସେହି ପରିପ୍ରେକ୍ଷୀରେ ୧୯୪୮ ଜାନୁୟାରୀ ପହିଲାରେ ଓଡ଼ିଶାର ସେ ସମୟର ୨୫ ଗୋଟି ଗଡ଼ଜାତ ଓଡ଼ିଶା ସହିତ "୧୯୪୮ ଓଡ଼ିଶା ପ୍ରଶାସନିକ ଆଦେଶ" ଅନୁଯାୟୀ ସାମିଲ ହୋଇଥିଲା।

ପ୍ରସଙ୍ଗକ୍ରମେ ଏଠାରେ ଏତିକି ଉଲ୍ଲେଖ କରାଯାଇପାରେ ଯେ ଖରସୁଆଁ, ସରାଇକଳା, ମୟୂରଭଞ୍ଜ ବ୍ୟତୀତ ଅନ୍ୟାନ୍ୟ ଗଡ଼ଜାତ ସହ ଓଡ଼ିଶାରେ ସାମିଲ ହୋଇ ଥିଲେ ହେଁ, ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ, ବିହାରରେ ସାମିଲ ହୋଇଛି। ମୟୂରଭଞ୍ଜ ମଧ୍ୟ ପରବର୍ତ୍ତୀ ସମୟରେ ଓଡ଼ିଶାର ଅଂଶବିଶେଷ ହୋଇ ଯାଇଛି, ଯଦିବା ଅନ୍ୟ ସବୁ ଓଡ଼ିଶା ଗଡ଼ଜାତ ମିଶିଲାବେଳେ, ଏହା ତାହାର ବିରୋଧ

କରିଥିଲା ଏବଂ ଝରସୁଆଁ ଇତ୍ୟାଦି ଶାସନ କରିବାରେ ଓଡ଼ିଶା ପକ୍ଷରୁ ଶାସନ ପରିଚାଳନା ପାଇଁ, କଟକଠାରୁ ଅନ୍ତରାୟ ସୃଷ୍ଟି ହୋଇଥିଲା।

ସେ ଯାହାହେଉ ଏହି ଓଡ଼ିଶା ପ୍ରଦେଶରେ ୧୯୪୯ ପର୍ଯ୍ୟନ୍ତ, କଟକ, ଯାହାକି ଓଡ଼ିଶାର କେବଳ ସାଂସ୍କୃତିକ ପ୍ରାଣକେନ୍ଦ୍ର ନୁହେଁ, ଭୌଗୋଳିକ ସ୍ଥିତି ବା ପ୍ରାକୃତିକ ପରିବେଶ ଯୋଗୁ ବାଣିଜ୍ୟ ବ୍ୟବସାୟର ମୁଖ୍ୟସ୍ଥାନ ତାଙ୍କୁ ଶାସନ ପରିଚାଳନାର ପ୍ରଧାନସ୍ଥଳୀ ବା ରାଜଧାନୀ ହୋଇ ଆସିଥିଲା।

କଟକ ଓଡ଼ିଶାର ରାଜଧାନୀ କେବେ ହେଲା, ଅବଶ୍ୟ ଏ ବିଷୟରେ ମତଦ୍ୱୈଧ ଅଛି। ତାହା ହେଉଛି ଅଷ୍ଟମ କି ଦ୍ୱାଦଶ ଶତାବ୍ଦୀରେ ହିନ୍ଦୁ ରାଜତ୍ୱ କାଳର ପ୍ରଥମ ଭୌମକର, ଅଷ୍ଟମ ଶତାବ୍ଦୀରେ ଓ ପରେ ସୋମବଂଶୀ ରାଜାମାନେ ଓଡ଼ିଶାର ପ୍ରାଚୀନ କଳିଙ୍ଗ, ଯାହାକି ଉତ୍କଳ ଓ ଉତ୍କଳ ତୁଳନାରେ ଉପକୂଳବର୍ତ୍ତୀ ଅଞ୍ଚଳ ଭାବରେ ସର୍ବାଧିକ ସମୃଦ୍ଧିଶାଳୀ, ତାହାର ରାଜଧାନୀ ଥିଲା, ଯାଜପୁର ବା ଯଜ୍ଞ-ପୁର। ପରେ କିଛିକାଳ ଚୌଦ୍ୱାର ବା ଚତୁର୍ଦ୍ୱାର। ତାହାପରେ ବାରାଣସୀ (ବିଡ଼ାନାସୀ) କଟକ, ଥିଲା ଏହାର ରାଜଧାନୀ।

କେତେକଙ୍କ ମତରେ ଚୌଦ୍ୱାର କଟକ ହେଲା ସୋମବଂଶୀୟ ରାଜାଙ୍କ ଦ୍ୱିତୀୟ ରାଜଧାନୀ। କିନ୍ତୁ ଏହାର ପ୍ରତିଷ୍ଠାତା ମହାଭବଗୁପ୍ତ ଜନ୍ମେଜୟ, ଚୌଦ୍ୱାର—କଟକକୁ ରାଜଧାନୀ କରି ଏଠାରୁ ତିନୋଟି ତାମ୍ରପଟ୍ଟ ପ୍ରଚଳନ କରିଥିଲେ। ଅନ୍ୟ ଏକ ମତରେ ଗଙ୍ଗବଂଶର ତୃତୀୟ ଅନଙ୍ଗଭୀମ ଦେବ, କଟକ ରାଜଧାନୀର ପ୍ରତିଷ୍ଠାତା। ଅନ୍ୟ କେତେକଙ୍କ ମତରେ ଏହି ବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗ ଦେବ ୧୧୩୫ ଖ୍ରୀଷ୍ଟାବ୍ଦରେ କଟକକୁ ନିଜର ରାଜଧାନୀ କରିଥିଲେ। ମାଦଳାପାଞ୍ଜି ଯାହାର ମତକୁ ଷ୍ଟର୍ଲିଂ ସାହେବ ମଧ୍ୟ ଗ୍ରହଣ କରିଛନ୍ତି।

ସେଥିରେ ଉଲ୍ଲେଖ ଅଛି ଯେ, ୯୮୯ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ଦଶମ ଶତାବ୍ଦୀରେ ନୃପ କେଶରୀ କଟକରେ ରାଜଧାନୀ ପ୍ରତିଷ୍ଠା କରିଥିଲେ। ଭାରତର ଇତିହାସ ଭଳି ଓଡ଼ିଶାର ପ୍ରଥମେ ହିନ୍ଦୁ, ପରେ ମୁସଲମାନ, ତହିଁପରେ ଇଂରେଜ ଓ ଶେଷରେ ସ୍ୱାଧୀନୋତ୍ତର ଶାସନର ପର୍ଯ୍ୟାୟ ଅନୁସାରୀ ଓଡ଼ିଶାରେ ହୋଇଥିବା ଏହି ହିନ୍ଦୁ, ମୁସଲମାନ, ମରହଟ୍ଟା ଓ ଇଂରେଜ ଶାସନ କାଳରେ କଟକ ହିଁ ଓଡ଼ିଶାର ପ୍ରାୟ ଏକ ହଜାର ବର୍ଷର ରାଜଧାନୀ।

୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ନରପତି ମୁକୁନ୍ଦଦେବଙ୍କର ପତନ ପରେ ଆଫଗାନ ରାଜତ୍ୱ, ଆଫଗାନଙ୍କ ପରେ ୧୫୯୨ରେ ମୋଗଲ ଶାସନ, ୧୭୫୧ରେ ମୋଗଲଙ୍କ ପରେ ମରହଟ୍ଟା ଏବଂ ୧୮୦୩ରେ ମରହଟ୍ଟାଙ୍କ ପରେ ଇଂରେଜଙ୍କ ଦ୍ୱାରା ଓଡ଼ିଶା ଶାସନର ପୂର୍ଣ୍ଣ ନିୟନ୍ତ୍ରଣକୁ ମିଶାଇ ସ୍ୱାଧୀନତା ପରେ ୧୯୪୮ ମସିହା ପର୍ଯ୍ୟନ୍ତ କଟକ ହିଁ ଓଡ଼ିଶାର ରାଜଧାନୀ ଥିଲା। ଅବଶ୍ୟ ଉତ୍କଳର ହରେକୃଷ୍ଣ ମହତାବ,

ଙ୍କ ସ୍ୱାଧୀନତାର ପୂର୍ବ ଓ ପରବର୍ତ୍ତୀ କାଳର ସନ୍ଧି-ସମୟରେ ଭାରତୀୟ ନୂତନ ସମ୍ବିଧାନର ପୂର୍ବ ଏବଂ ପରବର୍ତ୍ତୀ କାଳରେ ଶେଷ ପ୍ରଧାନ ଏବଂ ପ୍ରଥମ ମୁଖ୍ୟ-ମନ୍ତ୍ରୀ ଥିଲେ, ତାଙ୍କର ଶାସନ କାଳରେ ଅର୍ଥାତ୍ ୩୦।୯।୧୯୪୬ରେ କଟକରେ ରେଭେନ୍ସା ମହାବିଦ୍ୟାଳୟରେ ହୋଇଥିବା ବିଧାନ-ସଭା ବୈଠକରେ କଟକରୁ ରାଜଧାନୀ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବାର ପ୍ରସ୍ତାବ ଗୃହୀତ ହୋଇଥିଲା ।

ଏପରିକି ୧୯୪୯ ମସିହା ଅକ୍ଟୋବର ୧୦, ୧୧ ଓ ୧୨ ତାରିଖରେ ଓଡ଼ିଶାର ଗଡ଼ଜାତ ମିଶ୍ରଣ ପରେ, ଓଡ଼ିଶା ଗଡ଼ଜାତ ବିଧାନସଭାକୁ ତତ୍କାଳୀନ ରାଜ୍ୟପାଳ ଯେଉଁ ୩୧ ଜଣ ବିଧାନସଭା ସଭ୍ୟଙ୍କୁ ମନୋନୟନ କରିଥିଲେ ଏବଂ ଏମାନଙ୍କ ସହିତ ତତ୍କାଳୀନ ଓଡ଼ିଶାର ପ୍ରଧାନମନ୍ତ୍ରୀ, ତିନିଜଣ ଏକ୍‌ଜିକ୍ୟୁଟିଭ କାଉନ୍‌ସିଲର ଓ ମୁଖ୍ୟ ପ୍ରଶାସକ ତଥା ସ୍ୱତନ୍ତ୍ର କମିଶନର ଏପରି ପାଞ୍ଚଜଣ ଅର୍ଥାତ୍ ମୋଟ ୩୬ ଜଣଙ୍କୁ ନେଇ ଗଡ଼ଜାତ ବିଧାନସଭା ଗଠନ କରିଥିଲେ, ସେହି ବିଧାନସଭା ଏବଂ ୧୯୪୬ରେ ସୀମିତ ଭୋଟାଧିକାରୀଙ୍କ ଦ୍ୱାରା ନିର୍ବାଚିତ ଓଡ଼ିଶା ବିଧାନସଭାର ମିଳିତ ବୈଠକ, ନୂଆ ରାଜଧାନୀ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲେ ହେଁ, ତାହା ପୁଣି ପରବର୍ତ୍ତୀ କାଳରେ କଟକସ୍ଥ ରେଭେନ୍‌ସା ମହାବିଦ୍ୟାଳୟ ହଲ୍‌ରେ ହୋଇଥିଲା ।

ଏପରି ଥିରକି ବ୍ୟତୀତ ମାର୍ଚ୍ଚ ତା ୮ ରିଖ ୧୯୫୨ ମସିହାରେ ନୂତନ ସମ୍ବିଧାନ ଅନୁଯାୟୀ ସାବାଳକ ଭୋଟାଧିକାର ଭିତ୍ତିରେ ନିର୍ବାଚନ ହୋଇ ସ୍ୱାଧୀନୋତ୍ତର କାଳର ପ୍ରଥମ ବିଧାନସଭାର ବୈଠକ ଭୁବନେଶ୍ୱରସ୍ଥ ସର୍ଦ୍ଦାର ପଟେଲ ହଲରେ ଅନୁଷ୍ଠିତ ହେବା ପର୍ଯ୍ୟନ୍ତ, ସମସ୍ତ ବିଧାନସଭାର ବୈଠକ କଟକ ରେଭେନ୍‌ସା କଲେଜ ହଲ୍‌ରେ ଅନୁଷ୍ଠିତ ହୋଇଥିଲା ।

ଆକବରଙ୍କ ପର୍ଯ୍ୟନ୍ତ ଓଡ଼ିଶା ବଙ୍ଗ ପ୍ରଦେଶ ଅନ୍ତର୍ଗତ ଥାଇ, ଜାହାଙ୍ଗୀରଙ୍କ ଅମଳରୁ ଆଓରଙ୍ଗଜେବ ଏବଂ ପରେ ମରହଟ୍ଟାଙ୍କ ଶାସନ କାଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ରାଜଧାନୀ କଟକ ଥିଲା । କିନ୍ତୁ ୧୮୦୩-୪ ବେଳକୁ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେଲାବେଳକୁ ଏହାର ମାତ୍ର ତିନୋଟି ଜିଲ୍ଲା, ଯଥା ପୁରୀ, କଟକ, ବାଲେଶ୍ୱର ଥାଇ ଅନ୍ୟାନ୍ୟ ଅଞ୍ଚଳ ତତ୍କାଳୀନ ମାଡ୍ରାସ ପ୍ରେସିଡ଼େନ୍‌ସୀ, କେନ୍ଦ୍ର ପ୍ରଦେଶ, ବିହାର ଓ ବଙ୍ଗ ସହିତ ସାମିଲ ଥିଲା । ୟୁରୋପୀୟ ଜାତିମାନଙ୍କ ଭିତରୁ ୧୫୧୪ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପର୍ତ୍ତୁଗୀଜମାନେ ଓଡ଼ିଶା ଆସି ପିପିଲିରେ ଏବଂ ପ୍ରାୟ ତାର ଶହେ ବର୍ଷ ପରେ ପୁରୀ ଜିଲ୍ଲାର ସେହି ସ୍ଥାନରେ ଓଲନ୍ଦାଜମାନେ ବାଣିଜ୍ୟ ବ୍ୟବସାୟ କରିଥିଲେ ହେଁ ଉଭୟଙ୍କ ଭିତରେ ବିବାଦ ହେବାରୁ ଓଲନ୍ଦାଜମାନେ ଅବଶେଷରେ ବାଲେଶ୍ୱରକୁ ପଳାଇ ଯାଇଥିଲେ ।

ଇଂରେଜମାନେ ମଧ୍ୟ ସବା ଶେଷରେ ଆସି ପ୍ରଥମେ ପୁରୀ, କଟକ, ବାଲେଶ୍ୱରରେ ଆଧିପତ୍ୟ ବିସ୍ତାର କରିବା ସମୟେ ୧୮୧୭ ପର୍ଯ୍ୟନ୍ତ ପୁରୀରେ ରାଜଧାନୀ ରଖି,

ସେହିବର୍ଷ କଟକକୁ ଏହା ସ୍ଥାନାନ୍ତରିତ କରିଥିଲେ । ୧୯୦୩ରେ ରମ୍ଭା ଏବଂ ପରେ ମାନ୍ଦ୍ରାଜରେ ମଧ୍ୟ, ଓଡ଼ିଶାର ସେକାଳର ରାଜନ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଭିନ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନ ମିଶାଇବାକୁ ଉତ୍କଳ ସମ୍ମିଳନୀ ବା ଉତ୍କଳ ଇଉନିୟନ କନ୍‌ଫରେନସ ଗଠିତ ହେଲା । ଏହାର ସଦ୍ୟଫଳ ସ୍ୱରୂପ ୧୯୦୫ରେ କେନ୍ଦ୍ର ପ୍ରଦେଶର ସମ୍ବଲପୁର ଆସି ଓଡ଼ିଶାର ଚତୁର୍ଥ ଜିଲ୍ଲା ହେଲା ।

୧୯୧୧ ଦିଲ୍ଲୀ ଦରବାରରେ ବ୍ରିଟିଶ ସମ୍ରାଟ ପଞ୍ଚମ ଜର୍ଜ ବଙ୍ଗ ଭଙ୍ଗ ବାତିଲ କରିବା ସଙ୍ଗେ ସଙ୍ଗେ ଅନୁଗୁଳକୁ ଓଡ଼ିଶାର ପଞ୍ଚମ ଜିଲ୍ଲା ଭାବରେ ଗ୍ରହଣ କରି ବିହାର ଓଡ଼ିଶାକୁ ପୃଥକ୍ ରାଜ୍ୟ ଭାବରେ ସ୍ୱୀକୃତି ଦେଇ ଓଡ଼ିଶାକୁ ସ୍ୱତନ୍ତ୍ର ଉଦ୍ଭଜନର ପାହ୍ୟା ପ୍ରଦାନ କଲେ । ଏହି ସମୟରେ ଲର୍ଡ କର୍ଜନ ଯେ କି ବଡ଼ଲାଟ, ଓଡ଼ିଆଙ୍କର ଏହି ଦାବି ପ୍ରତି ସମ୍ମାନ ଦେଖାଇ ବ୍ରିଟିଶ ପାର୍ଲାମେଣ୍ଟର ଉପର ସଭାରେ ଭାଷଣ ଦେଲେ ଯେ ଓଡ଼ିଆମାନେ ଆନ୍ଦୋଳନ ପ୍ରିୟ ଜାତି ନଥିବାରୁ, ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଏକତ୍ର କରାଯାଇ ସେମାନଙ୍କ ପ୍ରତି ନ୍ୟାୟ କରାଯାଉ ନାହିଁ । ଅଥଚ ଉତ୍କଳ ସମ୍ମିଳନୀ ପରି ଯେଉଁ ଅନୁଷ୍ଠାନ ପ୍ରଥମରୁ ଗଞ୍ଜାମ ଅଞ୍ଚଳରୁ ଆରମ୍ଭ ହୋଇଥିଲା ସେହି ଅଞ୍ଚଳ ସବୁ ଓଡ଼ିଶାରେ ନ ମିଶିବାରୁ ଆନ୍ଦୋଳନ ତୀବ୍ରତର ହେଲା । ୧୯୨୧ରେ ମାନ୍ଦ୍ରାଜ ବ୍ୟବସ୍ଥା ପରିଷଦ ପ୍ରଖ୍ୟାତ ଓଡ଼ିଆ ସଭ୍ୟ ଶ୍ରୀମାନ ଶଶିଭୂଷଣ ରଥ, ମହାମହିମ ଭାରତ ସରକାରଙ୍କ ସୁପାରିଶମତେ ଓଡ଼ିଆ ଭାଷା-ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାକୁ ମାନ୍ଦ୍ରାଜ ସରକାର ପଦକ୍ଷେପ ନେବାକୁ ଏକ ସରକାରୀ ପ୍ରସ୍ତାବ ଆଗତ କଲେ ।

ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ପ୍ରମୁଖ ଏହି ଆନ୍ଦୋଳନର ପୁରୋଭାଗରେ ରହିଲେ । ସତକୁ ସତ ସେତେବେଳର ଓଡ଼ିଶାରେ ବା ଓଡ଼ିଆମାନଙ୍କର ଦେଶସେବା ବା ସାଧାରଣ କାର୍ଯ୍ୟର ମାଧ୍ୟମ ହେଲା, ଏହି ଦେଶ ମିଶ୍ରଣ ଆନ୍ଦୋଳନ । ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାର ପ୍ରଥମ ନିର୍ବାଚନ ରାଜନୀତିରେ ଏହି ଦେଶ ମିଶ୍ରଣ ଆନ୍ଦୋଳନକାରୀ ବା ଉତ୍କଳ ସମ୍ମିଳନୀର ପ୍ରମୁଖ ସଭ୍ୟମାନଙ୍କର ଉଲ୍ଲେଖନୀୟ ଭୂମିକା ରହିଲା । ଏହିବା ଜାତୀୟ ସ୍ତରରେ, ସେକାଳର ନିଖିଳ ଭାରତ କଂଗ୍ରେସ ସଂଗଠନ ଦ୍ୱାରା ଭାଷା-ଭିତ୍ତିରେ ପ୍ରଦେଶ ଗଠନ କରିବା ନୀତି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉଦ୍ୟମରେ ୧୯୨୦ରେ ଗୃହୀତ ହୋଇଥିଲା । ଏହାପରେ ୧୯୩୬ରେ ଗଞ୍ଜାମ କୋରାପୁଟକୁ ନେଇ ଛଅ ଗୋଟି ଜିଲ୍ଲା ଏବଂ ୧୯୪୭-୪୮ରେ ଗଡ଼ଜାତ ମିଶ୍ରଣ ଯୋଗୁ ଓଡ଼ିଶାର ତେରଗୋଟି ଜିଲ୍ଲା ହେବାର ଆଗରୁ ସୂଚନା ଦିଆଯାଇଛି ।

ଏ ସମୟର ବହୁ ପୂର୍ବରୁ ଏପରିକି ଓଡ଼ିଶାର ହିନ୍ଦୁ ସ୍ୱାଧୀନ ରାଜାମାନଙ୍କ ଅମଳରୁ କଟକ ରାଜଧାନୀ ଥିଲେ ହେଁ ଏବଂ ବ୍ରିଟିଶ ଶାସନ କାଳରେ ୧୯୧୯ ଶାସନ ଆଇନ୍ ଅନୁଯାୟୀ ସୀମିତ କ୍ଷମତା ଓ ଅଳ୍ପସଂଖ୍ୟକ ଭୋଟଦାତାଙ୍କ ମତ ବା ମନୋନୀତ

ପ୍ରତିନିଧିମାନଙ୍କ ଦ୍ୱାରା ବ୍ୟବସ୍ଥାପକ ରାଜ୍ୟସ୍ତରରେ ଗଠିତ ହୋଇଥିଲେ ହେଁ, ସେତେବେଳେ ବିହାର ଓଡ଼ିଶା ଗୋଟିଏ ରାଜ୍ୟ ଥାଇ ଏହାର ରାଜଧାନୀ ପାଟନା ଥିବାରୁ ଯଦିବା ସମୟେ ସମୟେ ଏ ସମୟରେ ବିହାର ଓଡ଼ିଶାର କାଉନ୍‌ସିଲ୍ ରାଞ୍ଚିରେ ବସୁଥିଲା, କଟକରେ ଏ ବୈଠକ କେବେ ହୋଇ ନାହିଁ ।

୧୯୩୫ ଶାସନ ଖସଡ଼ା ଅନୁଯାୟୀ ଯଦିବା ସେହିପରି କିଛି ଅଧିକତର ହେଲେ ହେଁ ସୀମିତ ଅଧିକାର ଓ ନିର୍ଦ୍ଦିଷ୍ଟ ଲୋକଙ୍କର ଭୋଟ ଦେବାର କ୍ଷମତା ଥିବାରୁ ୧୯୩୭ ମସିହା ଜାନୁୟାରୀ ୧୮ ଠାରୁ ୨୩ ପର୍ଯ୍ୟନ୍ତ ହୋଇଥିବା ନିର୍ବାଚିତ ଓ ମନୋନୀତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିବା ବିଧାନସଭାର ପ୍ରଥମ ବୈଠକ ୧୯୩୭ ଜୁଲାଇ ୨୮ ତାରିଖରେ ଅନୁଷ୍ଠିତ ହୋଇଥିଲା । ଗୁରୁଜଣ ମନୋନୀତ ସଭ୍ୟଙ୍କୁ ମିଶାଇ ଏହି ବିଧାନସଭାର ମୋଟ ସଭ୍ୟ ସଂଖ୍ୟା ଥିଲା ଷାଠିଏ । କଂଗ୍ରେସ ଦଳ ନିର୍ବାଚନରେ ୩୬ଟି, ପାରଳାଖେମୁଣ୍ଡି ମହାରାଜାଙ୍କ ଜାତୀୟ ଦଳ ୧୩ଟି ଏବଂ ଓଡ଼ିଶା ମିଳିତ ଦଳ ୬ ଗୋଟି ସ୍ଥାନରୁ ନିର୍ବାଚିତ ହୋଇଥିଲେ ହେଁ, ଲାଟ ସାହେବ ଶାସନ କାର୍ଯ୍ୟରେ ତାଙ୍କର ସ୍ୱତନ୍ତ୍ର କ୍ଷମତା ବଳରେ ହସ୍ତକ୍ଷେପ ନ କରିବାକୁ ପ୍ରତିଶ୍ରୁତିବଦ୍ଧ ନହେଲେ, କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ କ୍ରମେ, ସଂଖ୍ୟାଗରିଷ୍ଠ କଂଗ୍ରେସ ଦଳର ଦଳପତି ଭାବରେ ନିର୍ବାଚିତ ହୋଇଥାଇ ସୁଦ୍ଧା, ଶାସନ ଦାୟିତ୍ୱ ଗ୍ରହଣ କରିବାକୁ ମନା କରି ଦେଲେ । ଫଳରେ ତତ୍‌କାଳୀନ ବ୍ରିଟିଶ ଶାସନ ଦେଶରେ ଏହି ନୂତନ ଶାସନ ସଂସ୍କାରକୁ ଯଥା ସମୟରେ କାର୍ଯ୍ୟକାରୀ କରିବାକୁ ଦୃଢ଼ ନିଶ୍ଚିତ ଥିବାରୁ, ଓଡ଼ିଶାର ପ୍ରଥମ ଲାଟ ସାହେବ (ରାଜ୍ୟପାଳ) ସାର୍ ଜନ୍ ଅଷ୍ଟିନ୍ ହବାକ୍ ନୂତନ ଓଡ଼ିଶା ଗଠନର ଠିକ ଏକ ବର୍ଷ ପୂର୍ତ୍ତି ଦିବସ ଅର୍ଥାତ୍ ୧ । ୪ । ୩୭ ମସିହାରେ ପାରଳା-ଖେମୁଣ୍ଡି ମହାରାଜା କ୍ୟାପଟେନ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କୁ ପ୍ରଧାନ ମନ୍ତ୍ରୀ ଭାବରେ ନିଯୁକ୍ତ କରିଥିଲେ ।

୧୯୩୫ ଶାସନ ଖସଡ଼ା ଅନୁଯାୟୀ ମନ୍ତ୍ରୀମଣ୍ଡଳର ମୁଖ୍ୟ ବ୍ୟକ୍ତି, ପ୍ରଧାନମନ୍ତ୍ରୀ ଭାବରେ ଅଭିହିତ ହେଉଥିଲେ । ଓଡ଼ିଶାର ଏହି ସଂଖ୍ୟାଲଘୁ ଦଳର ପ୍ରଥମ ପ୍ରଧାନମନ୍ତ୍ରୀ, ମାନଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହମନଙ୍କୁ ନେଇ ମନ୍ତ୍ରୀ-ମଣ୍ଡଳ ଗଠନ କରି ୧୯ । ୭ । ୧୯୩୭ ପର୍ଯ୍ୟନ୍ତ ଶାସନ କ୍ଷମତାରେ ଥିଲେ । କାରଣ ବଡ଼ଲାଟ, ଲାଟମାନେ ସେମାନଙ୍କର ସ୍ୱତନ୍ତ୍ର କ୍ଷମତା ବଳରେ ସଂଖ୍ୟାଗରିଷ୍ଠ ଲୋକ ପ୍ରତିନିଧି ଶାସନରେ ହସ୍ତକ୍ଷେପ ନ କରିବାକୁ ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଦେବାରୁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷ ବିଭିନ୍ନ ରାଜ୍ୟରେ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ଶାସନ ଦାୟିତ୍ୱ ଗ୍ରହଣ କରିବାକୁ ଅନୁମତି ଦେଲେ ଏବଂ ତଦନୁଯାୟୀ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ପାରଳା ମହାରାଜାଙ୍କ ମନ୍ତ୍ରୀମଣ୍ଡଳ ୧୩ ଜୁଲାଇ ୧୯୩୭ରେ ଇସ୍ତଫା ଦେଇଥିଲେ, ଯାହାକି ଗୃହୀତ ହୋଇଥିଲା ୧୯ । ୭ । ୧୯୩୭ରେ ।

ରାଜ୍ୟର ଗଣତାନ୍ତ୍ରିକ ଶାସନ ପଦ୍ଧତିର ଇତିହାସରେ ଏହି ୧।୪।୧୯୩୭ ହେଉଛି ସ୍ମରଣୀୟ ଦିବସ, ଯେଉଁ ଦିନକି ତତ୍କାଳୀନ ସଂଖ୍ୟାଗରିଷ୍ଠ ଲୋକ-ପ୍ରତିନିଧି କଂଗ୍ରେସ ଦଳର ନେତା ଭାବରେ ଶ୍ରୀ ବିଶ୍ୱନାଥ ଦାସ ଓ ତାଙ୍କର ଦୁଇଜଣ ସହଯୋଗୀ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଶ୍ରୀ ବୋଧରାମ ଦୁବେଙ୍କୁ ନେଇ ପୂର୍ବଭଳି ତିନି ଜଣିଆ ମନ୍ତ୍ରୀମଣ୍ଡଳର ଶାସନ ଦାୟିତ୍ୱ ଗ୍ରହଣ କଲେ ।

ସେହି ମାସର ୨୮ ତାରିଖରେ ରେଭେନ୍‌ସା କଲେଜ, ଯାହାକି ଓଡ଼ିଶାର ପ୍ରଥମ ଡିଗ୍ରୀ କଲେଜ ଭାବରେ ୧୮୭୬ରେ ପ୍ରତିଷ୍ଠିତ ହୋଇଥିଲା, ସେଠାରେ ବିଧାନସଭାର ପ୍ରଥମ ଐତିହାସିକ ବୈଠକ ବସିବା ପୂର୍ବରୁ ତା ୨୬ ଓ ୨୭ ରିଖ ଦୁଇ ଦିନ ଧରି ସଭ୍ୟମାନେ ଶପଥ ଗ୍ରହଣ କରିଥିଲେ । ବୈଠକ ଦିନ ବାବୁ ବିଚିତ୍ରାନନ୍ଦ ଦାସ, ଅନ୍ୟତମ ନିର୍ବାଚିତ ସଭ୍ୟଙ୍କ ଅଧ୍ୟକ୍ଷତାରେ ବିଧାନସଭାର ବାଚସ୍ପତି ଭାବରେ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ଓ ଉପବାଚସ୍ପତି ଭାବରେ ଶ୍ରୀ ନନ୍ଦକିଶୋର ଦାସ ନିର୍ବାଚିତ ହୋଇଥିଲେ ।

୧୯୩୯ ନଭେମ୍ବର ୪ ତାରିଖରେ, ପୃଥିବୀରେ ଦ୍ୱିତୀୟ ମହାସମରର ଆରମ୍ଭରେ ବ୍ରିଟିଶ ଶାସକ ଗୋଷ୍ଠୀ ଲୋକ-ପ୍ରତିନିଧି ଶାସନର ବିନା-ପରାମର୍ଶରେ ଭାରତକୁ ଏହି ଯୁଦ୍ଧରେ ଜଡ଼ିତ କରିବାରୁ, ପ୍ରତିବାଦ କରି, ଇସ୍ତଫା ଦେଲେ । ଦୁଇଦିନ ପରେ ଏହି ଇସ୍ତଫା ଗ୍ରହଣ କରି ଲାଟସାହେବ ପ୍ରତ୍ୟକ୍ଷ ଶାସନ ଦାୟିତ୍ୱ ଗ୍ରହଣ କଲେ, କିନ୍ତୁ ବିଧାନସଭାକୁ ଭାଙ୍ଗିଲେ ନାହିଁ । ତା ୨୪।୧୧।୧୯୪୧ରେ ପୁଣି ପାରଳା ମହାରାଜଙ୍କୁ ଦ୍ୱିତୀୟବାର ପ୍ରଧାନମନ୍ତ୍ରୀ କରି ଏବଂ ଏହି ମନ୍ତ୍ରିମଣ୍ଡଳରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ମୌଲବୀ ଅବଦୁସ ଶୋଭାନ ଖାଁ ଅନ୍ୟ ଦୁଇ ମନ୍ତ୍ରୀ ଥାଇ, ରାଜ୍ୟ ଶାସନ ଲୋକ ପ୍ରତିନିଧିମାନଙ୍କ ମାଧ୍ୟମରେ ଚାଲିଲା ।

୧୯୪୪ ଜୁନ ୨୦ ତାରିଖରେ କ୍ଷମତାସୀନ ଦଳମାନଙ୍କ ଭିତରେ ମତଭେଦ ଯୋଗୁ, ପ୍ରଧାନମନ୍ତ୍ରୀ ଇସ୍ତଫା ଦେଲେ, ଯାହାକି ଗୃହୀତ ହେଲା ୨୯ ତାରିଖ ଜୁନ୍ ୧୯୪୪ରେ ପରଦିନ ଠାରୁ ଓଡ଼ିଶା ରହିଲା ଲାଟସାହେବଙ୍କ ପ୍ରତ୍ୟକ୍ଷ ଶାସନରେ, ପୂର୍ବରୁ ଯେପରି ଆଜି ଥରେ ବିଶ୍ୱନାଥ ଦାସଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବା ଫଳରେ ହୋଇଥିଲା । ଓଡ଼ିଶାର ଏହି ପ୍ରଥମ ବିଧାନ ସଭା ୩।୨।୧୯୩୭ରେ ଗଠିତ ହୋଇ ୧୧।୨।୧୯୪୫ରେ ଭାଙ୍ଗି ଯାଇଥିଲା ଏବଂ ରେଭେନ୍‌ସା କଲେଜ ହଲରେ ଏହି ବିଧାନ ସଭାର ମୋଟ ୧୦ ଗୋଟି ଅଧିବେଶନରେ ୧୮୭ ଦିନର ବୈଠକ ଅନୁଷ୍ଠିତ ହୋଇଥିଲା । ସେତେବେଳେ ବିଧାନସଭା ପାଇଁ ସ୍ୱତନ୍ତ୍ର ସଚିବାଳୟ ନଥାଇ ଏହାର ପରିଚାଳନା ରାଜ୍ୟ ସରକାରଙ୍କ ଆଇନ୍ ବିଭାଗ ଦ୍ୱାରା ହେଉଥିଲା ଏବଂ ସେ ସମୟର ଆଇନ୍ ବିଭାଗର ସଚିବ ଦେବାନ ବାହାଦୁର ସି. ଗୋବିନ୍ଦ ନାମ୍ବିଆର, ସି. ଆଇ. ଇ. ଏହାର ପ୍ରଥମ ସଚିବ ଥିଲେ ।

ଅବଶ୍ୟ ୩୦ ସେପ୍‌ଟେମ୍ବର୍ ୧୯୪୭ରେ ସ୍ୱାଧୀନତା ପୂର୍ବରୁ ଓଡ଼ିଶାର ବ୍ୟବସ୍ଥାପକ ବିଧାନସଭାରେ କଟକରୁ ଭୁବନେଶ୍ୱରକୁ ରାଜଧାନୀ ଉଠାଇ ନେବାକୁ ପ୍ରସ୍ତାବ ଗୃହୀତ ହେବାର କିଛି କାଳ ପରେ ଅର୍ଥାତ୍ ୧୯୪୮ ମସିହାରେ ସ୍ୱରାଷ୍ଟ୍ର ବା ଘରୋଇ ବିଭାଗ ନିୟନ୍ତ୍ରଣରେ ଓଡ଼ିଶା ବିଧାନସଭାର ପରିଚାଳନା ରଖିବାକୁ ଏକ ସ୍ୱତନ୍ତ୍ର ଉପବିଭାଗ ସୃଷ୍ଟି ହୋଇଥିଲା । କିନ୍ତୁ ସ୍ୱାଧୀନତା ପରେ ଭାରତୀୟ ସମ୍ବିଧାନ ଅନୁଯାୟୀ ସାବାଳକ ଭୋଟ ଅଧିକାର ଭିତ୍ତିରେ ୧୯୫୨ରେ ହୋଇଥିବା ବ୍ୟବସ୍ଥାପକ ବିଧାନସଭାରେ ଲେଖକ ତତ୍କାଳୀନ ବିଧାନସଭାର ସଭ୍ୟ ଭାବରେ, ସାମ୍ବିଧାନିକ ବ୍ୟବସ୍ଥାକୁ ଉଦ୍ଧାର କରି ବ୍ୟବସ୍ଥା ସଭାର ସଚିବାଳୟ ଘରୋଇ ବିଭାଗ ନିୟନ୍ତ୍ରଣରୁ ଅଲଗା ହୋଇ ସ୍ୱତନ୍ତ୍ର ନହେଲେ, ସଭ୍ୟ ତଥା ସଭାର ସ୍ୱାଧିକାର ଭଙ୍ଗ ହେବାକୁ ପ୍ରଶ୍ନ ଉତ୍‌ଥାପନ କରିବାରେ, ଏହା ଏକ ସ୍ୱାଧିକାର କମିଟିର ନିଷ୍ପତ୍ତି ଅନୁଯାୟୀ, ସ୍ୱତନ୍ତ୍ର ହୋଇଛି ।

ଘଟଣାକ୍ରମରେ ଓଡ଼ିଶା ଉଚ୍ଚନ୍ୟାୟାଳୟର ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ, ସଂପୃକ୍ତ ସମୟରେ ଓଡ଼ିଶାର ଉପମୁଖ୍ୟମନ୍ତ୍ରୀ ଯାଙ୍କୁ ଘରୋଇ ବିଭାଗର ମନ୍ତ୍ରୀ ଥିଲେ ।

ସ୍ୱାଧୀନତାର ପୂର୍ବ ଏବଂ ପର, ଓଡ଼ିଶାର ସଂପୂର୍ଣ୍ଣ ବ୍ୟବସ୍ଥାପକ ବିଧାନସଭାର ବୈଠକ ମଧ୍ୟ ଏହି ରେଭେନ୍‌ସା କଲେଜ ହଲ, କଟକରେ ଅନୁଷ୍ଠିତ ହୋଇଥିଲା । ଅପ୍ରେଲ ଚାରି ଠାରୁ ନଅ ପର୍ଯ୍ୟନ୍ତ ୧୯୪୬ ମସିହାରେ ଏଥିପାଇଁ ନିର୍ବାଚନ ହୋଇଥିଲା । ଷାଠିଏ ଗୋଟି ସ୍ଥାନରୁ ମନୋନୀତ ସ୍ୱରଜଣଙ୍କୁ ବାଦ ଦେଇ ଅବଶିଷ୍ଟ ଆସନରୁ କଂଗ୍ରେସ ଏକାକୀ ୪୭, ମୁସଲିମ୍‌ଲିଗ୍ ୪, କମ୍ୟୁନିଷ୍ଟ ୧ ଓ ସ୍ୱାଧୀନ ୪ ଗୋଟି ସ୍ଥାନ ଅଧିକାର କରିଥିଲେ । ୧୯୪୬ ଅପ୍ରେଲ ୨୩ ତାରିଖରେ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାର ତୃତୀୟ ପ୍ରଧାନମନ୍ତ୍ରୀ ଭାବରେ ଶାସନ ଭାର ଗ୍ରହଣ କରି ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାକୃଷ୍ଣ ବିଶ୍ୱାସରାୟ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ନେଇ ତାଙ୍କର ମନ୍ତ୍ରୀ-ମଣ୍ଡଳ ଗଠନ କରିଥିଲେ ।

କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଡକ୍ଟର ମହତାବ ସ୍ଥାନ ପାଇବାରୁ ୧୨।୪।୧୯୫୦ରେ ଇସ୍ତଫା ଦେବା ଫଳରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କଲେ । ପୂର୍ବ କଥିତମତେ ରାଜ୍ୟରେ ଗଡ଼ଜାତଗୁଡ଼ିକର ମିଶ୍ରଣ ହୋଇଥିବାରୁ ଗଡ଼ଜାତ ବିଧାନସଭାର ମନୋନୀତ ୩୧ ଜଣ ସଭ୍ୟ ଓ ଓଡ଼ିଶାର ବିଧାନ ସଭାର ୬୦ ଜଣ ସଭ୍ୟଙ୍କୁ ନେଇ ମିଳିତ ବିଧାନସଭାର ଗୋଟିଏ ଅଧିବେଶନ ୧୯୪୯ ଭୁବନେଶ୍ୱରରେ ହେବା ବ୍ୟତୀତ ଏହି ବିଧାନସଭାର ପୂର୍ବ ଓ ପରବର୍ତ୍ତୀ ସମସ୍ତ ଅଧିବେଶନ ରେଭେନ୍‌ସା କଲେଜରେ ହୋଇଥିଲା । ଏହି ବିଧାନସଭା ୧୮।୩।୧୯୪୬ରେ

ଗଠିତ ହୋଇ ୨୦।୨।୧୯୫୨ ଅର୍ଥାତ୍ ନୂତନ ସାମ୍ବିଧାନିକ ବ୍ୟବସ୍ଥା ଅନୁଯାୟୀ ହୋଇଥିବା ପ୍ରଥମ ବ୍ୟବସ୍ଥାସଭା ଗଠନ ପର୍ଯ୍ୟନ୍ତ ରହିଥିଲା ।

ଏହି ବିଧାନସଭାର ସର୍ବମୋଟ ଅଧିବେଶନ ହୋଇଥିଲା ଚଉଦଟି ଏବଂ ବୈଠକ ହୋଇଥିଲା ୨୨୩ ଦିନ । ଶ୍ରୀ ଲାଲମୋହନ ପଟ୍ଟନାୟକ ଓ ଶ୍ରୀମତୀ ଲକ୍ଷ୍ମୀବାଈ ଯଥାକ୍ରମେ ଏହି ବିଧାନସଭାର ବାଚସ୍ପତି ଓ ଉପବାଚସ୍ପତି ଥିଲେ ।

ଶେଷରେ ଏତିକି କହିଲେ, ଯଥେଷ୍ଟ ହେବ ଯେ କଟକ କାଳ କାଳ ଧରି ଓଡ଼ିଶାର ରାଜନୀତିକ, ବାଣିଜ୍ୟ ବ୍ୟବସାୟ, ସାଂସ୍କୃତିକ କାର୍ଯ୍ୟକ୍ରମ ବା ବିକାଶଧାରାର ଯେପରି ପ୍ରାଣକେନ୍ଦ୍ର ରହି ଆସିଛି, ଓଡ଼ିଶା ବ୍ୟବସ୍ଥାସଭା ବା ଆଇନ୍ ପ୍ରଣୟନର ଇତିହାସ ମଧ୍ୟ, ତାହା ପାଖରୁ ବାଦ ପଡ଼ିନାହିଁ ।



# କଟକରେ ଶ୍ରୀଚୈତନ୍ୟ

ଶ୍ରୀ ଧୂନ୍ ଖୁଣ୍ଟିଆ

ଉତ୍ତରରେ ପୁଣ୍ୟତୋୟା ମହାନଦୀ ଓ ଦକ୍ଷିଣରେ ଏହାର ପ୍ରଥମ ଶାଖାନଦୀ କାଠଯୋଡ଼ି ମଧ୍ୟସ୍ଥ ତ୍ରିକୋଣଭୂମିର ଶୀର୍ଷ ଦେଶରେ ଏକ ପୁରାତନ ଐତିହାସିକ କଟକ ନଗର ଅବସ୍ଥିତ । ଦୁଇଟି ନଦୀ ମଧ୍ୟରେ ରୁଦ୍ଧ ହୋଇ ଯାଇଥିବା କେତେ ଗ୍ଲେଟିଆ ଖାଲୁଆ ଜାଗାଟିଏ ଏ କଟକ; ତଥାପି ଏ ମାଟିର ରହିଛି ଦୁର୍ବାର ଆକର୍ଷଣ । ବଡ଼ ବିଚିତ୍ର ଏ କଟକ । ଏ ମାଟିରେ ଶକ୍ତିଶାଳୀ ହିଂସ୍ର ବାଜପକ୍ଷୀକୁ ବି ନିରୀହ ବଗଟିଏ ମାଡ଼ିବସେ । ଏ ମାଟିକଥା ଚନ୍ଦ୍ରାକର ସାଧାରଣ ଗରିବ ବୁଢ଼ା ବାଇମୁଣ୍ଡିର ବି ମୁଣ୍ଡ ବଥାଏ । କଟକର ମାଟିକୁ ନୁହେଁ, ଏ ମାଟିର ସୁରକ୍ଷା ଦାୟିତ୍ୱରେ ଥିବା ପବିତ୍ର ମହାନଦୀର ଜଳଧାରରେ ପାଦ ଦେଲା ମାତ୍ରେ ମହାପ୍ରତାପୀ ଚଣ୍ଡାଶୋକର ପ୍ରବଳ ପରାକ୍ରମୀ ଦୁର୍ଦ୍ଦାନ୍ତ ସୈନ୍ୟମାନଙ୍କ ହାତରୁ ବି ତରବାରି ଖସିପଡ଼େ । ଭକ୍ତଗଣ ଏ ମାଟିକୁ ଛୁଇଁ ଦେଲେ ଭକ୍ତିଭାବରେ ବିହ୍ୱଳ ହୋଇ ଏ ମାଟିରେ ଗଡ଼ିଯାଆନ୍ତି ।...ଏ ମାଟିରେ କାନଡେରିଲେ ଓଡ଼ିଆ ବୀରମାନଙ୍କର ରଣହୁଙ୍କାର ସହିତ ମୁନିଙ୍କର ଓଁକାର ଧ୍ୱନି ବି ଗୁଞ୍ଜରି ଉଠେ ।

ପ୍ରକୃତରେ ବୀର ରକ୍ତ ସିଞ୍ଚେ ଗଢ଼ା ଏ ମାଟିର ଶୌର୍ଯ୍ୟଶାଣିତ ସାମରିକ ଐତିହ୍ୟ ଯେତିକି ଅଛି, ସେତିକି ରହିଛି ଆଧ୍ୟାତ୍ମିକ ମହତ୍ତ୍ୱ । ରାଜା ଅନଙ୍ଗଭୀମ ଦେବ ଏ ମାଟିର ମହିମାମୟତା ଓ ପବିତ୍ରତାକୁ ପରଖି ଚୌଦ୍ୱାରରୁ ତାଙ୍କର ରାଜଧାନୀ ତତ୍କାଳୀନ ଏଇ କଟକର କୋଦଣ୍ଡାଦଣ୍ଡପାଟକୁ ଉଠାଇ ଆଣିଥିଲେ ଏବଂ ଏହାର ନାମ ରଖିଥିଲେ ଅଭିନବ ବାରଣାସୀ । କେଡ଼େ ତାତ୍ପର୍ଯ୍ୟପୂର୍ଣ୍ଣ ଏଇ ନାଆଁ । ବାରଣାସୀ ଯେପରି ଗଙ୍ଗା କୂଳରେ ଅବସ୍ଥିତ ଓ ବିଶ୍ୱନାଥଙ୍କର ବିଜେସ୍ଥଳୀ, ସେପରି ଏହି ଅଭିନବ ବାରଣସୀ ପବିତ୍ର ମହାନଦୀ କୂଳରେ ଅବସ୍ଥିତ ଓ ସେତେବେଳେ ଥିଲା ଶ୍ରୀ ବିଶ୍ୱେଶ୍ୱର ମହାଦେବଙ୍କର ଅଧିଷ୍ଠାନସ୍ଥଳୀ ।

"କଳୌ ଚିତ୍ରୋତ୍ପଳା ଗଙ୍ଗା"

ଚନ୍ଦ୍ରୋପୃକା ଅର୍ଥାତ୍ ମହାନଦୀ ମଧ୍ୟ ଗଙ୍ଗାପରି ପବିତ୍ର । ପୁଣି ପ୍ରୟାଗ ଓ ଟାଉନୀପୁର ଯେପରି ଦୁଇଟି ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ସେପରି କଟକ ଚନ୍ଦ୍ରୋପୃକା ଓ କାଠଯୋଡ଼ିର ବିଭକ୍ତ ସ୍ଥଳରେ ଅବସ୍ଥିତ ରହି ହୋଇଛି ସେତିକି ପବିତ୍ର ।

ଭାରତର ସର୍ବଶ୍ରେଷ୍ଠ ତୀର୍ଥସ୍ଥଳୀ ଓ ଧାର୍ମିକ ଉଦାରତାର ପ୍ରତୀକ ଶ୍ରୀକ୍ଷେତ୍ରର ଆକର୍ଷଣ ସର୍ବଜନବିଦିତ । ପ୍ରଖ୍ୟାତ ଜଗନ୍ନାଥ ସଡ଼କ ଏଇ କଟକଦେଇ ନୀଳାଚଳ-ଧାମକୁ ପଡ଼ିଛି । ଉତ୍ତରଆଡ଼ୁ ଆସୁଥିବା ସମସ୍ତଯାତ୍ରୀ ଏଠାରେ ମହାନଦୀ ଓ କାଠଯୋଡ଼ି ପାରହୋଇ ଶ୍ରୀକ୍ଷେତ୍ରକୁ ଯାଆନ୍ତି । ତେଣୁ କଟକ ଯେପରି ପୁରୀଧାମର ମୁହଁଦ୍ୱାର... ପବିତ୍ର ପ୍ରବେଶଦ୍ୱାର । କେତେ ଭକ୍ତ ସାଧୁ ସନ୍ଥ ଏ ମାଟିରେ ପାଦ ଦେଇଛନ୍ତି ତାର ହିସାବ କିଏ ରଖିଛି ? ତଥାପି ଅନେକ ଭକ୍ତଙ୍କର ଶାଶ୍ୱତ ସ୍ମୃତିକୁ ଏବେବି ସାଇତିରଖିଛି ଏ କଟକ । କେବଳ ଯେ ମହାପୁରୁଷ ଶ୍ରୀଚୈତନ୍ୟ ଏ ମାଟିରେ ପାଦଦେଇ ଭକ୍ତି ଗଦ୍‌ଗଦ ଚିତ୍ତରେ ସଙ୍କୀର୍ତ୍ତନରେ ଭୋଳ ହୋଇ ନୃତ୍ୟ କରିଥିଲେ ତାହା ନୁହେଁ, ଗୁରୁନାନକ ମଧ୍ୟ ତାଙ୍କ ପିତା କାଲୁଦେବଙ୍କ ସହ ଶ୍ରୀକ୍ଷେତ୍ରକୁ ଯିବାବାଟରେ ଏ ମାଟିର ଆକର୍ଷଣକୁ ଏଡ଼ାଇ ପାରିନଥିଲେ ।

ସେ ମଧ୍ୟ ବିଶ୍ରାମ ନେଇଥିଲେ ଏଇମାଟିରେ । କଥିତ ଅଛି ବର୍ତ୍ତମାନର କାଳିଆ-ବୁଦା କାଲୁଦେବଙ୍କ ନାମାନୁସାରେ ନାମିତ ଏବଂ ନାନକ ଯେଉଁଠାରେ ଦାନ୍ତଘଷି ଦାନ୍ତ-କାଠିକୁ ପୋତିଦେଇଥିଲେ ଓ ପରେ ପରେ ସେଇ କାଠିରୁ ଏକ ବିରାଟ ମହୀରୁହ ମୁଣ୍ଡ ଟେକିଥିଲା ସେଇସ୍ଥାନରେ ଏବେବି ରହିଛି ନାନକ ଆଗମନର ସ୍ମାରକୀ ହୋଇ 'ଦାନ୍ତନ ସାହେବ ଗୁରୁଦ୍ୱାର' । ଏହାବ୍ୟତୀତ ମସ୍ତରାମ ମଠ । ପୁରାତନ ଦିଗମ୍ବର ଜୈନମନ୍ଦିର । କୁଞ୍ଜ ବିହାରୀମଠ, ଅମରେଶ୍ୱରମନ୍ଦିର, ନିମ୍ବାର୍କ ସଂପ୍ରଦାୟର ଆଣ୍ଠୁଆ ଗୋପାଳ ମଠ ପ୍ରଭୃତି ଅନେକ ଦେବସ୍ଥାନ, ମସଜିଦ୍ ଗୀର୍ଜା ଏ ମାଟିର ଉଦାର ଆଧ୍ୟାତ୍ମିକ ଐତିହ୍ୟର ସଙ୍କେତ ବହନ କରେ ।

କଟକକୁ ଘେରି ଏକ ଅପୂର୍ବ ବୈଷ୍ଣବୀୟ, ବାତାବରଣ ଯୁଗେ ଯୁଗେ ରହି-ଆସିଛି । ଯାଜପୁରର ବରାହନାଥ ଓ ଗରୁଡ଼ମୂର୍ତ୍ତି, କଣ୍ଟିଲୋର ନୀଳମାଧବ, ନିଆଳିର ମାଧବ ଭୁବନେଶ୍ୱରର ଅନନ୍ତବାସୁଦେବ ମନ୍ଦିର ପ୍ରଭୃତି ଅନେକ ବିଷ୍ଣୁ ଆରାଧନା ପୀଠ ଏଇ ବାତାବରଣକୁ ସତେଜ ଓ ସଜାଗ ରଖି ବୈଷ୍ଣବମାନଙ୍କୁ ଆକୃଷ୍ଟ କରିଆସିଛି । ସତେଯେପରି ଏକ ନିରବଚ୍ଛିନ୍ନ ଆଧ୍ୟାତ୍ମିକ ଅବବୋଧର ଧାରା ଏ ମାଟିକୁ ଯୁଗ ଯୁଗଧରି ସ୍ୱପ୍ନାଚ୍ଛନ୍ନ କରିରଖିଛି । ଏଇ ଆଧ୍ୟାତ୍ମିକ ପୃଷ୍ଠଭୂମି ସହାବେଳେ ହୀନ ସଙ୍କୀର୍ଣ୍ଣତାକୁ ଘୃଣାକରିଛି ଓ ଧାର୍ମିକ ଉଦାରଚେତନାକୁ ସମର୍ଥନ କରିଆସିଛି । କଟକର ଏଇ ସ୍ୱପ୍ନାବିଷ୍ଟ ଧାର୍ମିକ ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ପାଇଁ ଶ୍ରୀଚୈତନ୍ୟ ଏ ମାଟିକୁ ଅତି ପବିତ୍ର ମନେ କରୁଥିଲେ ।

ଅନଙ୍ଗଭୀମଦେବଙ୍କ ରାଜତ୍ୱ ସମୟରୁ ଇଂରେଜ ଅଧିକାର ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ଥିଲା ଏଇ କଟକ ଓ ବାରବାଟୀ ଦୁର୍ଗଥିଲା ସମସ୍ତ ରାଜନୈତିକ, ସାମରିକ ଓ ଧାର୍ମିକ ଅନୁଷ୍ଠାନର କେନ୍ଦ୍ରବିନ୍ଦୁ । ସୂର୍ଯ୍ୟବଂଶୀରାଜା କପିଳେନ୍ଦ୍ରଦେବଙ୍କ ସମୟରେ ଏହାର ମହତ୍ତ୍ୱ ଆହୁରି ବଢ଼ିଯାଇଥିଲା । ଏ ସମୟରେ ଉଭୟ ରାଜା ଓ ପ୍ରଜା ଥିଲେ ଧର୍ମପରାୟଣ । ଧର୍ମସମ୍ବନ୍ଧୀୟ ବିଭିନ୍ନ ମତବାଦର ପ୍ରଚାର ପାଇଁ ରାଜା ସବୁ ସମ୍ପ୍ରଦାୟର ସନ୍ତମାନଙ୍କୁ କେବଳ ସୁଯୋଗ ଦେଉନଥିଲେ ବରଂ ଉତ୍ସାହିତ କରୁଥିଲେ । କପିଳେନ୍ଦ୍ର ଦେବଙ୍କ ପରେ ପୁରୁଷୋତ୍ତମଦେବଙ୍କ ରାଜତ୍ୱ କାଳରେ କଟକ ହୋଇଥିଲା ଆହୁରି ମହିମାମଣ୍ଡିତ ।

ରାଧାନାଥ ଦରବାରରେ ଲେଖିଛନ୍ତି—

"କାଞ୍ଚିଅଭିଯାନେ ଯେ ଦୁର୍ଗପ୍ରାଚୀର
ବାଦ୍ୟନାଦେ ଦେଉଥିଲା ପ୍ରତିରୀର"

କେବଳ ଯେ କଟକ ସେତେବେଳେ ବୀରତ୍ୱପରିପ୍ଲୁତ ଥିଲା ତାହାନୁହେଁ, ଏହାଥିଲା ଭକ୍ତିଭାବନାରେ ସମୁଜ୍ଜ୍ୱଳ ଓ ସୁନନ୍ଦିତ । କାରଣ ପୁରୁଷୋତ୍ତମଦେବ ଥିଲେ ଯେତିକି ପରାକ୍ରମୀ ସେତିକି ଭକ୍ତିଭାବନାରେ କୋମଳ ଓ ପରମବୈଷ୍ଣବ । ତାଙ୍କର ରଚିତ ବସ୍ତୁ ଭକ୍ତି କଳ୍ପଦ୍ରୁମ, ନାମମାଳା ମହୋଦଧି ପ୍ରଭୃତି ଗ୍ରନ୍ଥ ଏହାର ପ୍ରମାଣ ଦିଏ । ବିଦ୍ୟାନଗରୀ ବା କାଞ୍ଚିରାଜ୍ୟ ଜୟକରି ଆପଣାର ବଡ଼ଠାକୁରଙ୍କ ପାଇଁ ସେ ସେଠାରୁ ଯେ କେବଳ ରତ୍ନ-ସିଂହାସନ ନେଇ ଆସିଥିଲେ ତାହା ନୁହେଁ, ସାଙ୍ଗରେ ଆଣିଥିଲେ କାଞ୍ଚି ଆରାଧ୍ୟଦେବ ଗଣେଶ ମୂର୍ତ୍ତି ଓ ବୈଷ୍ଣବମାନଙ୍କର ପ୍ରିୟ ଦେବ ଗୋପାଳମୂର୍ତ୍ତି । ଚୈତନ୍ୟଚରିତାମୃତରେ ଲେଖାଅଛି ଯେ ଗୋପାଳଙ୍କୁ ଆଣିବାପୂର୍ବରୁ ତାଙ୍କର ଅନୁମତି ଭିକ୍ଷାକରି ସେ ତାଙ୍କୁ ପ୍ରାର୍ଥନା କରିଥିଲେ ଓ ଗୋପାଳ ତାଙ୍କର ଭକ୍ତିରେ ତୁଷ୍ଟ ହୋଇ ତାଙ୍କୁ ସାଙ୍ଗରେ ନେଇ ଆସିବା ପାଇଁ ଆଜ୍ଞା ଦେଇଥିଲେ ।

"ଉତ୍କଳର ରାଜା ପୁରୁଷୋତ୍ତମ ଦେବ
ସେଇ ଦେଶ ଜିନି ନିଲ କରିୟା ସଂଗ୍ରାମ
×　　　×　　　×
ପୁରୁଷୋତ୍ତମଦେବ ସେଇ ଯେ ଭକ୍ତଆର୍ଯ୍ୟ
ଗୋପାଲ ଚରଣେ ମାଗେ ଚଲ ମୋର ରାଜ୍ୟ
ତାର ଭକ୍ତିବଶେ ଗୋପାଲ ଆଜ୍ଞା ଦିଲ
ଗୋପାଲ ଲଇଆଁ ସେଇ କଟକ ଆଇଲ
ଜଗନ୍ନାଥେ ଆନି ଦିଲ ରତ୍ନ ସିଂହାସନ
କଟକେ ଗୋପାଲସେବା କରିଲ ସ୍ଥାପନ ।"

ସେଇ ଗୋପାଳ ମୂର୍ତ୍ତି ତାଙ୍କର ବିଜୟର ସାକ୍ଷୀ ରୂପେ 'ସାକ୍ଷୀଗୋପାଳ' ହୋଇ ପ୍ରଥମେ ଅଧିଷ୍ଠିତ ହୋଇଥିଲେ ଏଇ ବାରବାଟୀ ଦୁର୍ଗରେ । ଯେଉଁ ସ୍ଥାନରେ

ସାକ୍ଷୀଗୋପାଳଙ୍କ ପୂଜାର୍ଚ୍ଚନା କରାଯାଉଥିଲା ସେ ସ୍ଥାନର ନାମ ସେତେବେଳେ ଗୋପାଳପ୍ରିୟ କଟକ ଥିଲା ବୋଲି ପୁରୁଷୋତ୍ତମ ଦେବଙ୍କ ଜଗନ୍ନାଥ ମନ୍ଦିର ଶିଳାଲେଖରୁ ଜଣାପଡ଼େ ।

"ବାରଣାସୀ କଟକେ ଶ୍ରୀନଅର ଗୋପାଳପ୍ରିୟ କଟକର
ଦକ୍ଷିଣମେଢ଼ରେ ବଡ଼ ଅବକାଶେ ।"

ସାକ୍ଷୀଗୋପାଳଙ୍କ ବିଜେସ୍ଥଳୀ ହେବାପରେ କଟକର ଆଧ୍ୟାତ୍ମିକ ମହତ୍ତ୍ୱ ବୈଷ୍ଣବମାନଙ୍କ ପାଇଁ ଆହୁରି ବଢ଼ିଯାଇଥିଲା । ପୁରୁଷୋତ୍ତମଦେବଙ୍କ ପରେ ପ୍ରତାପରୁଦ୍ରଦେବ (୧୪୯୭-୧୫୪୦) ସିଂହାସନ ଆରୋହଣ କରିଥିଲେ ଓ ସେତେବେଳେ ମଧ୍ୟ ଏଇ ବାରବାଟୀ ଦୁର୍ଗରେ ସାକ୍ଷୀଗୋପାଳ ଗୋପାଳପ୍ରିୟ କଟକ ଉପରେ ଶୋଭା ପାଉଥିଲେ । ଅବଶ୍ୟ ପ୍ରତାପରୁଦ୍ରଦେବଙ୍କ ପରେ ବାରବାଟୀ ଦୁର୍ଗ ଉପରେ କଳାପାହାଡ଼ ଓ ଉକ୍କାଖାଁଙ୍କ ଆକ୍ରମଣ ଫଳରେ ସାକ୍ଷୀଗୋପାଳମୂର୍ତ୍ତି ଖୁରୁଧାଗଡ଼, ରଥୀପୁରଗଡ଼, ଚିଲିକାଗର୍ଭବର୍ତ୍ତୀ କନ୍ତଲବାଇ, ପୁଣି ମନ୍ଦିରକୁ ସ୍ଥାନାନ୍ତରିତ ହୋଇ ଶେଷରେ ସତ୍ୟ-ବାଦୀରେ ଦ୍ୱିତୀୟ ଦିବ୍ୟସିଂହଦେବଙ୍କ ଦ୍ୱାରା ଅଧିଷ୍ଠିତ ହୋଇଥିଲେ ।

ସେ ଯାହାହେଉ କଟକରେ ସାକ୍ଷୀଗୋପାଳଙ୍କ ଅଧିଷ୍ଠାନ ଫଳରେ ଏହା ହୋଇ ଉଠିଲା ବୈଷ୍ଣବମାନଙ୍କର ପବିତ୍ର ତୀର୍ଥ ଭୂଇଁ । ପୁଣି ସ୍ୱୟଂ ପ୍ରତାପରୁଦ୍ରଦେବ ଥିଲେ ପରମବୈଷ୍ଣବ ଓ ଭକ୍ତିମାର୍ଗର ଶ୍ରେଷ୍ଠ ଅନୁରକ୍ତ ଭକ୍ତ । ବୈଷ୍ଣବୀୟ ମଧୁର ରସରେ ତାଙ୍କର ବିଶେଷ ଆଗ୍ରହ ଥିଲା । ତେଣୁ ସେ ଦେବଦାସୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ କେବଳ ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ଗାନ କରିବା ପାଇଁ । ଏକଥା ଲିପିବଦ୍ଧ ହୋଇରହିଛି ଜଗନ୍ନାଥ ମନ୍ଦିର ଜୟ ବିଜୟଦ୍ୱାର ଶିଳାଲେଖରେ ।

କେତେଦିନରୁ ପ୍ରଚଳିତ ଏ ମାଟିର ବୌଦ୍ଧମତବାଦର ଧାରାମଧ୍ୟ ଏଇ ଭକ୍ତିପ୍ରବାହ ଆଗରେ ଦୁର୍ବଳ ହୋଇଯାଇଥିଲା । କେବଳ ପ୍ରତାପରୁଦ୍ରଦେବ ନୁହନ୍ତି, ତାଙ୍କର ସୁଦକ୍ଷ ପ୍ରଶାସକ ରାୟରାମାନନ୍ଦ ଓ ଗୋପୀନାଥ ବଡ଼ଜେନା ମଧ୍ୟ ଭକ୍ତିମାର୍ଗର ଆଶ୍ରୟ ନେଇ-ଥିଲେ । ଓଡ଼ିଆ ସାହିତ୍ୟର ବିଶିଷ୍ଟ ପଞ୍ଚସଖା ବଳରାମ, ଅଚ୍ୟୁତାନନ୍ଦ, ଜଗନ୍ନାଥ, ଯଶୋବନ୍ତ ଓ ଅନନ୍ତଙ୍କ ଦୃଷ୍ଟିରେ ଚହଟି ଉଠୁଥିଲା ଏଇ ଭକ୍ତିଭାବନାର ମଧୁର ମହକ । ଏ ପ୍ରକାର ଏକ ସାରସ୍ୱତ ଓ ଆଧ୍ୟାତ୍ମିକ ଭିତ୍ତିଭୂମିରେ ଓଡ଼ିଶା ଓ ଏହାର ରାଜଧାନୀ କଟକ ସମ୍ଭାବିତ ହୋଇଉଠିଥିବା ବେଳେ ଶ୍ରୀଚୈତନ୍ୟଙ୍କର ପାଦ ପଡ଼ିଥିଲା ଏଇ ଐତିହାସିକ କଟକ ମାଟିରେ ।

ଶ୍ରୀଚୈତନ୍ୟ ୨୪ ବର୍ଷ ବୟସରେ ଯେଉଁ ଗୁରୁଙ୍କଠାରୁ ପ୍ରେମଭକ୍ତି ମନ୍ତ୍ରର ଦୀକ୍ଷା ନେଇଥିଲେ ସେଇ ବୈଷ୍ଣବ ଈଶ୍ୱରପୁରୀଙ୍କ ଗୁରୁଥିଲେ ମାଧ୍ୱ ସମ୍ପ୍ରଦାୟର ଶ୍ରେଷ୍ଠ ସାଧକ ଓଡ଼ିଆ ମାଧବେନ୍ଦ୍ର ପୁରୀ । ସେ ଥିଲେ ଶ୍ରୀକୃଷ୍ଣଙ୍କର ବାଳଗୋପାଳ ମୂର୍ତ୍ତିର

ଆରାଧକ । ସେଇ ପନ୍ଥାରେ ସେ ରେମୁଣାରେ କ୍ଷୀରଚୋରା ଗୋପୀନାଥ ପ୍ରତିଷ୍ଠା କରିଥିଲେ । ପ୍ରେମଭକ୍ତିମାର୍ଗର ସାଧକ ଶ୍ରୀଚୈତନ୍ୟଙ୍କର ଏଇ ଅପରୂପ ବିଗ୍ରହ ପ୍ରତି ଥିଲା ଅପୂର୍ବ ଆକର୍ଷଣ । ଶ୍ରୀକ୍ଷେତ୍ରକୁ ଆସିବା ବାଟରେ ରେମୁଣାରେ ସେ ଗୋପୀନାଥଙ୍କୁ ଦର୍ଶନ କରି ଭାବବିହ୍ୱଳ ହୋଇ ପଡ଼ିଥିଲେ ।

"ରେମୁଣାତେ ଗୋପୀନାଥ ପରମ ମୋହନ
ଭକ୍ତିକରି କୈଲ ପ୍ରଭୁ ତାର ଦରଶନ ।"

(ଚୈ: ଚ: ମଧ୍ୟଲୀଳା)

ସେଇ ସମୟରେ ମଧ୍ୟ ରେମୁଣାରେ କଟକର ସାକ୍ଷୀଗୋପାଳଙ୍କ ମହିମା ପ୍ରଚଳିତ ହୋଇସାରିଥିଲା । ଏକଦା କାଞ୍ଚି ରାଜ୍ୟକୁ ପରିଦର୍ଶିତ କରିଥିବା ତାଙ୍କର ପ୍ରିୟ ଗୋପାଳଙ୍କୁ କଟକରେ ଦର୍ଶନ କରିବା ପାଇଁ ତାଙ୍କ ପ୍ରାଣରେ ଅପୂର୍ବ ଆବେଗ ଓ ଗଭୀର ଅଭୀପ୍ସା ସୃଷ୍ଟି ହୋଇଥିଲା । ଅବଶ୍ୟ ଆସିବା ବାଟରେ ସେ ଯାଜପୁର ଯିବାକୁ ଭୁଲିପାଇନଥିଲେ । ଏହାର ଥିଲା ଦୁଇଟି କାରଣ । ପ୍ରଥମଟି ହେଉଛି ଯାଜପୁର ଥିଲା ତାଙ୍କର ପୂର୍ବଜ ମାନଙ୍କର ଭିଟାମାଟି ଏବଂ ଦ୍ୱିତୀୟଟି ହେଉଛି ଏହାଥିଲା ବରାହନାଥଙ୍କ ଯୋଗୁ ବୈଷ୍ଣବ ମାନଙ୍କର ପବିତ୍ର ତୀର୍ଥକ୍ଷେତ୍ର ।

"ଚଲିତେ ଚଲିତେ ଆଇଲା ଯାଜପୁରଗ୍ରାମ
ବରାହଠାକୁର ଦେଖି କରିଲା ପ୍ରଣାମ ।"

(ଚୈ: ଚ: ମଧ୍ୟଲୀଳା)

ସେ ଯାଜପୁରକୁ ଆସିବାର ମାତ୍ର କେତୋଟି ବର୍ଷତଳେ ତାଙ୍କର ପିତାମହ ଉପେନ୍ଦ୍ର ମିଶ୍ର ବଙ୍ଗଳାର ଶ୍ରୀହଟ୍ଟ ଜିଲ୍ଲାକୁ ଉଠିଯାଇଥିଲେ ଓ ତାଙ୍କର ପିତା ଜଗନ୍ନାଥ ମିଶ୍ର ଶ୍ରୀହଟ୍ଟରୁ ନଦିଆନବଦ୍ୱୀପକୁ ଯାଇ ସେଠାରେ ବାସ କରିଥିଲେ । ଶ୍ରୀଚୈତନ୍ୟ ବଙ୍ଗବାସୀ ହେଲେ ମଧ୍ୟ ସେ ଥିଲେ ଓଡ଼ିଆ । ତେଣୁ ଏଇ ଯାଜପୁର ପ୍ରତି ଥିଲା ତାଙ୍କର ଏକ ପ୍ରଗାଢ଼ ରକ୍ତଗତ ଆକର୍ଷଣ ।

ସେ ଦଶାଶ୍ୱମେଧ ଘାଟରେ ସ୍ନାନକରି ତାଙ୍କ ପ୍ରିୟ ଭକ୍ତମାନଙ୍କ ସହ ବରାହନାଥ ଦର୍ଶନ କରିଥିଲେ ଓ ସମସ୍ତ ଭକ୍ତଗଣଙ୍କୁ ଗଭୀର ଉତ୍କଣ୍ଠା ଓ ଉଦ୍‌ବେଗ୍ନତାରେ ପକାଇ ସେ ବରାହନାଥ ମନ୍ଦିରରୁ ଏକୁଟିଆ ଚାଲିଯାଇଥିଲେ ତାଙ୍କର ପୂର୍ବବଂଶଧର ମାନଙ୍କ ଆଦରର ଭିଟାମାଟିକୁ । ସେଠାରେ ତାଙ୍କର ବଂଶର କମଳଲୋଚନ ମିଶ୍ର ଯେ କି ଜଣେ ପରମ ବୈଷ୍ଣବ ତାଙ୍କର ସହିତ ସେ ରାତିଟା କଟାଇ ସକାଳୁ ସେ ମନ୍ଦିରକୁ ଫେରି ଆସିଥିଲେ ।

"ସେଇ ବଂଶର ପରମବୈଷ୍ଣବ କମଳଲୋଚନ ତାର ନାମ
ପୂର୍ବ ଜନ୍ମେର ତପେ ଗୋସାଇଁ ସେ ଘରେ କରିଲ ବିଶ୍ରାମ ।"

(ଚୈ: ଚ: ମଧ୍ୟଲୀଳା)

ସେଠାରେ ମଧ୍ୟ ଓଡ଼ିଆମାନଙ୍କର ବିଜୟର ସ୍ମାରକୀ ସାକ୍ଷୀଗୋପାଳଙ୍କ ବିଷୟରେ ଚହଳ ପଡ଼ିଯାଇଥିଲା । ଚୈତନ୍ୟଦେବ ଗଭୀର ଭାବାବେଶରେ ସାକ୍ଷୀ-

ଗୋପାଳଙ୍କୁ କଟକରେ ଦର୍ଶନ କରିବା ପାଇଁ ଅଧୀର ହୋଇ ଉଠିଥିଲେ । ଯେଣୁ ସେ ସକାଳୁ ବାହାରି ପଡ଼ିଥିଲେ ଐତିହାସିକ କଟକ ଅଭିମୁଖେ । ରାଜପୁରରୁ ଧନେଶ୍ୱର, ଗୋପୀନାଥପୁର, ଚନ୍ଦ୍ରପୁର ଦେଇ ସେ ଚୌଦ୍ୱାରରେ ଆସି ପହଞ୍ଚିଲେ । ତାଙ୍କର ଏ ପବିତ୍ର ଯାତ୍ରାର ସ୍ମୃତି ହୋଇ ଏବେ ବି ଏହି ସ୍ଥାନମାନଙ୍କରେ ରହିଛି ଅନେକ ମଠ ଓ ମନ୍ଦିର ।

ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ ତାଙ୍କର ପବିତ୍ର ଯାତ୍ରା ଆରମ୍ଭ କରିଥିଲେ । ଯେଉଁ ଚୌଦ୍ୱାର ବିଷୟରେ—

"ବହୁଦ୍ୱାର ଶୋଭି ପୁର ଚଉଦ୍ୱାର
ଉତ୍ତର କୋଶଳା ମୌଳି ଅଳଙ୍କାର ।"

ଥିଲା ସେତେବେଳେ ମଧ୍ୟ ତାର ସେ ପୂର୍ବ ଗୁରୁତ୍ୱକୁ ହରାଇ ନଥିଲା । କଟକ ଓଡ଼ିଶାର ରାଜଧାନୀ ଥିଲେ ମଧ୍ୟ ଏହାର ଦକ୍ଷିଣରେ କାଠଯୋଡ଼ି ଓ ପ୍ରସିଦ୍ଧ ସାରଙ୍ଗଗଡ଼ ଏବଂ ଉତ୍ତରରେ ମହାନଦୀ ଓ ଚୌଦ୍ୱାର ଦୁର୍ଗ ରାଜଧାନୀର ସୁରକ୍ଷା ପାଇଁ ସତତ ଜାଗ୍ରତ ଥିଲା । ଚୈତନ୍ୟଦେବ ଏଇ ଚୌଦ୍ୱାରରେ ପହଞ୍ଚି ଚଷାପଡ଼ା ଘାଟରୁ ନୌକାଯୋଗେ ମହାନଦୀ ପାର ହୋଇ କଟକରେ ପହଞ୍ଚିଥିଲେ । ଯେଉଁ ପଥରରେ ପାଦଦେଇ ସେ ନୌକାରୋହଣ କରିଥିଲେ ତାହା ଏବେବି ଚୈତନ୍ୟଙ୍କ ପଦଚିହ୍ନକୁ ଧାରଣ କରି "ଶ୍ରୀଚୈତନ୍ୟ ପାଦ ପଥର" ନାମରେ ନାମିତ । ଭକ୍ତମାନେ ଏବେ ସେଇ ପଥରକୁ ଭକ୍ତିପୂତ ହୃଦୟରେ ପୂଜା କରୁଛନ୍ତି ।

ଶ୍ରୀଚୈତନ୍ୟ ଚଷାପଡ଼ା ଘାଟଠାରେ ନୌକାରୋହଣ କରିବା କଥା ଜାଣି ତାଙ୍କର ପବିତ୍ର ଦର୍ଶନ ପାଇଁ ଭକ୍ତମାନଙ୍କଠାରେ ଗଭୀର ଉତ୍ସାହ ଓ ଉଦ୍ଦୀପନା ଖେଳି ଯାଇଥିଲା । ତାଙ୍କର ସାଦର ଅଭ୍ୟର୍ଥନା ପାଇଁ ଯେମିତି କଟକ ନଗରର ସମସ୍ତ ଅଧିବାସୀ ଖୁବ ବିହ୍ୱଳ ହୋଇ ଉଠିଥିଲେ ।

ଶ୍ରୀଚୈତନ୍ୟ ମହାନଦୀ ପାର ହୋଇ ଗଡ଼ଗଡ଼ିଆ ଘାଟଠାରେ ପହଞ୍ଚି ପ୍ରେମାନନ୍ଦରେ ପୁଲକିତ ହୋଇ ଉଠିଥିଲେ । ସେ ଭକ୍ତମାନଙ୍କ ଗହଣରେ କୀର୍ତ୍ତନରେ ମଜ୍ଜି ସାଙ୍ଗେ ସାଙ୍ଗେ ଯାଇଥିଲେ ସାକ୍ଷୀଗୋପାଳଙ୍କୁ ଦର୍ଶନ କରିବାକୁ । ଗୋପାଳଙ୍କ ସୌନ୍ଦର୍ଯ୍ୟରେ ସେ ସମ୍ପୂର୍ଣ୍ଣ ବିମୋହିତ ହୋଇ ଯାଇଥିଲେ ଓ ସନ୍ଧ୍ୟା ଆଳତି ଦର୍ଶନ କରିବା ପାଇଁ ଅପେକ୍ଷା କରିଥିଲେ । ସନ୍ଧ୍ୟା ଆଳତିକାଳରେ ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ପ୍ରେମାବେଶରେ ଭକ୍ତମାନଙ୍କ ସହ ନୃତ୍ୟ କରିବାରେ ଲାଗିଥିଲେ । ଶ୍ରୀଚୈତନ୍ୟଙ୍କର ଏ ପ୍ରକାର ଭଜନ ସଂକୀର୍ତ୍ତନ ଓ ନୃତ୍ୟରେ ସମସ୍ତ ଭକ୍ତ ବିମୁଗ୍ଧ ହୋଇ ଯାଇଥିଲେ । ସେଇ ମନ୍ଦିରରେ ସେ ଗୋଟିଏ ରାତି ରହିଥିଲେ ଓ ସାକ୍ଷୀଗୋପାଳଙ୍କର ମାହାତ୍ମ୍ୟ ଶ୍ରବଣରେ ନିଜକୁ ଧନ୍ୟ ମନେ କରିଥିଲେ ।

ଚୈତନ୍ୟ ଚରିତାମୃତ ମଧ୍ୟଲୀଳା ପଞ୍ଚମ ପରିଚ୍ଛେଦରେ ଏହାର ଉଲ୍ଲେଖ ରହିଛି ।

"କଟକେ ଆଇଲ୍ ସାକ୍ଷୀଗୋପାଳ ଦେଖିତେ
ଗୋପାଲ ସୌନ୍ଦର୍ଯ୍ୟ ଦେଖି ହେଲା ଆନନ୍ଦତେ
ପ୍ରେମାବେଶେ ନୃତ୍ୟ ଗୀତ କୈଇ କତକ୍ଷଣ
ଆବିଷ୍ଟ ହୟାଁ କୈଲ ଗୋପାଲ ସ୍ତବନ
ସେଇ ରାତ୍ରେ ତାହାଁ ରହି ଭକ୍ତଗଣ ସଙ୍ଗେ
ଗୋପାଲେର ପୂର୍ବକଥା ଶୁନେ ବହୁ ରଙ୍ଗେ ।"

ପୂର୍ବେ ଶ୍ରୀଚୈତନ୍ୟଙ୍କ ଅଗ୍ରଜତୁଲ୍ୟ ଭକ୍ତ ଏବଂ ସହଚର ଶ୍ରୀ ନିତ୍ୟାନନ୍ଦ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ସମସ୍ତ ଭାରତ ଭ୍ରମଣ କରିବା ଅବସରରେ ସାକ୍ଷୀଗୋପାଳଙ୍କ ଦର୍ଶନ ପାଇଁ କଟକ ଆସିଥିଲେ ଓ ସେଠାରେ ସେ ଲୋକମାନଙ୍କ ମୁଖରୁ ସାକ୍ଷୀଗୋପାଳଙ୍କ ବିଷୟରେ ଯାହା ଶୁଣିଥିଲେ ସେ ସବୁକଥା ସେ ଶ୍ରୀଚୈତନ୍ୟଙ୍କୁ ସେହି ରାତରେ ଶୁଣାଇଥିଲେ ଓ ସେ ଆଖ୍ୟାନ ଶୁଣି ଶ୍ରୀଚୈତନ୍ୟଙ୍କ ସମେତ ସମସ୍ତ ଭକ୍ତ ପ୍ରୀତ ହୋଇଥିଲେ ।

ଗୋପାଳ ମୂର୍ତ୍ତି ଆଗରେ ଶ୍ରୀଚୈତନ୍ୟ ବସି ସ୍ତବ କଲାବେଳେ ଏକ ଅପୂର୍ବ ଦୃଶ୍ୟ ସୃଷ୍ଟି ହୋଇଥିଲା । ମନେହେଉଥିଲା ସତେ ଯେପରି ସେ ଦୁହିଁଙ୍କ ରୂପକାନ୍ତିରେ କୌଣସି ପାର୍ଥକ୍ୟ ନାହିଁ । ଗୋପାଳଙ୍କ ପରି ଶ୍ରୀଚୈତନ୍ୟ ମଧ୍ୟ କାନ୍ତିମୟ । ଉଭୟଙ୍କ ଚକ୍ଷୁ ପଦ୍ମ ପୁଷ୍ପ ପରି ଚଳ ଚଳ । ମୁଖ ଦୁଇଟି ଚନ୍ଦ୍ରର ସ୍ନିଗ୍ଧତା ପରି ଶୀତଳ ଓ ଶାନ୍ତିଦାୟକ । ଭକ୍ତଗଣ ମନେ କରୁଥିଲେ ଶ୍ରୀଚୈତନ୍ୟଙ୍କ ପରି ଗୋପାଳ ଯେପରି ଭାବାବିଷ୍ଟ ହୋଇ ଉଠିଛନ୍ତି । ସେ ଦୁହେଁ ଯେପରି ଏକ ଓ ଅଭିନ୍ନ ।

ଏହି ଅପୂର୍ବ ସ୍ୱର୍ଗୀୟ ଭାବାବେଗ ମଧ୍ୟରେ ଚୈତନ୍ୟ ସେ ସ୍ମରଣୀୟ ସ୍ୱପ୍ନାବିଷ୍ଟ ରାତିଟି କଟାଇ ପ୍ରଭାତରେ ଗୋପାଳଙ୍କର ମଙ୍ଗଳ ଆଳତି ଦର୍ଶନ କରି ଶ୍ରୀକ୍ଷେତ୍ର ଉଦ୍ଦେଶ୍ୟରେ କଟକରୁ ବିଦାୟ ନେଇଥିଲେ ।

"ଏଇମତେ ମହାରଙ୍ଗେ ସେ ରାତ୍ରି ବଞ୍ଚିୟା
ପ୍ରଭାତେ ଚଲିଲ ମଙ୍ଗଲ ଆରତି ଦେଖିୟାଁ"

ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦ ଫାଲଗୁନ ମାସରେ ଶ୍ରୀନୀଳାଚଳଧାମରେ ପହଞ୍ଚିଥିଲେ ଓ ବୈଶାଖ ମାସରେ ଦକ୍ଷିଣ ଭାରତ ଭ୍ରମଣରେ ଯାଇଥିଲେ । ଦାକ୍ଷିଣାତ୍ୟ ତୀର୍ଥ ଦର୍ଶନରୁ ଫେରି ସେ ୧୫୧୩ ଖ୍ରୀଷ୍ଟାବ୍ଦରେ ବୃନ୍ଦାବନ ଯିବା ପାଇଁ ଇଚ୍ଛା କରିଥିଲେ ମଧ୍ୟ ପ୍ରତାପରୁଦ୍ର ଦେବ ଓ ରାୟରାମାନନ୍ଦ ପ୍ରଭୃତି ଭକ୍ତଗଣ ତାଙ୍କୁ ଛାଡ଼ିବାକୁ ଆଦୌ ମନେ କରୁନଥିଲେ । କିନ୍ତୁ ୧୫୧୫ ଖ୍ରୀଷ୍ଟାବ୍ଦରେ ସେ ସମସ୍ତଙ୍କୁ ବୁଝାଇ ବୃନ୍ଦାବନ ଯାତ୍ରା ଆରମ୍ଭ କରିଥିଲେ ଓ ଏଇ ଅବସରରେ ସେ କଟକରେ ପଦାର୍ପଣ କରିଥିଲେ ।

ଶ୍ରୀକ୍ଷେତ୍ରରେ ରହଣି ସମୟରେ ସାରା ଓଡ଼ିଶାରେ ତାଙ୍କର ଖ୍ୟାତିକୁ ନେଇ ଚହଳ ପଡ଼ିଯାଇଥାଏ । କାରଣ ସେତେବେଳକୁ ସ୍ୱୟଂ ଓଡ଼ିଶାର ରାଜା ପ୍ରତାପରୁଦ୍ର

ଦେବଙ୍କ ସମେତ ତାଙ୍କର ସୁଦକ୍ଷ ପ୍ରଶାସକ ରାୟରାମାନନ୍ଦ ଓ ଅନ୍ୟାନ୍ୟ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥାଆନ୍ତି । ଶହ ଶହ ଶିଷ୍ୟପରିବେଷ୍ଟିତ ହୋଇ ସେ ଯେତେବେଳେ କଟକରେ ପହଞ୍ଚିଲେ ତାଙ୍କର ଅଭ୍ୟର୍ଥନା ଓ ସମ୍ବର୍ଦ୍ଧନା ପାଇଁ ସମସ୍ତ ରାଜକର୍ମଚାରୀ ତତ୍ପର ହୋଇ ଉଠିଥିଲେ । ପ୍ରତାପରୁଦ୍ର ଦେବ ତାଙ୍କର ଯାତାୟାତ ପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ । କଟକରେ ଶ୍ରୀଚୈତନ୍ୟ ପହଞ୍ଚିବା ପୂର୍ବରୁ ପରମାନନ୍ଦ ପୁରୀ ଓ ଅନ୍ୟ ବରିଷ୍ଠ ଭକ୍ତଗଣ ସାକ୍ଷୀଗୋପାଳ ମନ୍ଦିରରେ ପହଞ୍ଚି ତାଙ୍କୁ ଅପେକ୍ଷା କରିଥିଲେ । ଏହି ଅଭ୍ୟର୍ଥନା ଉତ୍ସବ ପାଇଁ କଟକର ରାସ୍ତାଘାଟ ସବୁ ପରିଷ୍କାର କରାଯାଇ ତୋରଣରେ ସୁଶୋଭିତ କରାଯାଇଥିଲା । ସମଗ୍ର କଟକ ସଂକୀର୍ତ୍ତନର ବାଦ୍ୟରୋଳରେ ପ୍ରକମ୍ପିତ ହୋଇ ଉଠିଥିଲା । ଶହଶହ ସୁରମ୍ୟ ପତାକାରେ କାଠଯୋଡ଼ିକୂଳ ସୁସଜ୍ଜିତ ହୋଇ ଅପୂର୍ବ ଶୋଭାଧାରଣ କରିଥିଲା ।

ଶ୍ରୀଚୈତନ୍ୟ କାଠଯୋଡ଼ି ପାରି ହୋଇ ସତୀଚଉରାଠାରେ କଟକରେ ପଦାର୍ପଣ କଲେ । ଯେଉଁଠି ସେ ନୌକାରୁ ଅବତରଣ କରିଥିଲେ ତାହା ଚୈତନ୍ୟଘାଟ ନାମରେ ଏବେବି ବିଦିତ । ଚୈତନ୍ୟଙ୍କର ସେହି ଆଗମନ ସ୍ମୃତିରେ ଏବେବି ଏକ ସଂକୀର୍ତ୍ତନ ଦଳ ଆଶ୍ୱିନ ଶୁକ୍ଳ ତ୍ରୟୋଦଶୀ ଦିନ ଚୈତନ୍ୟଙ୍କ ବିଜୟ ବିଗ୍ରହସହ ମହମ୍ମଦିଆ ବଜାରର ଚୈତନ୍ୟମଠରୁ ବାହାରି ଏହି ଘାଟକୁ ଯାଆନ୍ତି । ପୂର୍ବେ ଏହିଘାଟରୁ ସଂକୀର୍ତ୍ତନ ଦଳ କନିକା କୋଠି, ପୋଷ୍ଟଅଫିସ, ବାଟମଙ୍ଗଳା, ରାମଚଣ୍ଡୀ, ମାନସିଂହ ପାଟଣା, ମହାରାମ ମଠ, ଅଲିଶା ବଜାର ଦେଇ ଚୈତନ୍ୟମଠକୁ ଆସୁଥିଲେ ଏବଂ ଏହି ବାଟ ଦେଇ କୁମାର ପୂର୍ଣ୍ଣିମା ଦିନ ଗଡ଼ଗଡ଼ିଆ ଘାଟକୁ ଯାଉଥିଲେ ବୋଲି ଡକ୍ଟର ସଂସାର ମୋହନ ଦାଶ ତାଙ୍କ "ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପଦାଙ୍କ ପୂତ ଓଡ଼ିଶା" ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଏବେ କିନ୍ତୁ ବିଜୟ ବିଗ୍ରହ ସହ ସଂକୀର୍ତ୍ତନ ମଣ୍ଡଳୀ ସତୀଚଉରାରୁ ଇଦ୍‌ଗାପଡ଼ିଆ ଓ କାଫଲପାଣ୍ଡି ଦେଇ ଯାତାୟାତ କରି ଚୈତନ୍ୟଙ୍କ ଆଗମନ ସ୍ମୃତିକୁ ତଥାପି ସଜାଗ ରଖିଛନ୍ତି । ପୁଣି ଏଠାରେ ଅବସ୍ଥିତ କଟକେଶ୍ୱର ମହାଦେବ ମନ୍ଦିରରେ ଭକ୍ତମାନେ ଯେଉଁ ଜଣାଣ ଗାଆନ୍ତି ସେଥିରେ ମଧ୍ୟ ଚୈତନ୍ୟ ସ୍ମୃତି ସୂଚିତ ହୁଏ ।

"ଚୈତନ୍ୟଘାଟ ମଶାଣି ମଧ୍ୟରେ ରହିଛୁ ପୁଣି<br>ସ୍ୱୟଂ ସତୀନାଥଙ୍କର ବର ହେ କଟକେଶ୍ୱର"

ଏହି ସତୀଚଉରାଠାରେ ନୌକାରୁ ଅବତରଣ କରି ଶ୍ରୀଚୈତନ୍ୟ ସାଙ୍ଗେ ସାଙ୍ଗେ ଧାଇଁଥିଲେ ତାଙ୍କର ପ୍ରିୟ ସାକ୍ଷୀଗୋପାଳଙ୍କୁ ଦର୍ଶନ କରିବାକୁ । ସାଙ୍ଗରେ ଥିଲେ ଅନେକ ଧର୍ମପରାୟଣ ଭକ୍ତଗଣ ଓ ଶିଷ୍ୟ ବୃନ୍ଦ । ସେ ଭକ୍ତି ଭାବରେ ବିହ୍ୱଳ ହୋଇ ଉଠି ଏକ-ପ୍ରକାର ଆତ୍ମବିସ୍ମୃତ ହୋଇ ସାକ୍ଷୀଗୋପାଳଙ୍କୁ ସ୍ତବପାଠ ପୂର୍ବକ ଅର୍ଚ୍ଚନା କରିଥିଲେ । ପୂଜାର୍ଚ୍ଚନା ପରେ ପରେ ସ୍ୱପ୍ନେଶ୍ୱର ବିପ୍ର ତାଙ୍କୁ ସାଦର ନିମନ୍ତ୍ରଣ କରିଥିଲେ ତାଙ୍କ ଘରକୁ, ଭିକ୍ଷା ଅର୍ଥାତ ଭୋଜନ କରିବା ପାଇଁ । ରାୟରାମାନନ୍ଦ ଅନ୍ୟସବୁ ଭକ୍ତମାନଙ୍କୁ ବିନମ୍ର ଭାବରେ ନିମନ୍ତ୍ରଣ କରିଥିଲେ ଭୋଜନ ନିମିତ୍ତ । ଭୋଜନ ଓ ଭିକ୍ଷା ପରେ

ଚୈତନ୍ୟଦେବ ମନ୍ଦିର ବାହାରେ ଥିବା ଏକ ଉଦ୍ୟାନରେ ବିଶ୍ରାମ କରିଥିଲେ । ସେ ଏହି ଉଦ୍ୟାନରେ ଏକ ବକୁଳବୃକ୍ଷ ମୂଳେ ବିଶ୍ରାମ ନେବାକଥା ଚୈତନ୍ୟଚରିତାମୃତରୁ ଜଣାପଡେ । ଶ୍ରୀଚୈତନ୍ୟ ଯେଉଁଠାରେ ବିଶ୍ରାମ ନେଇଥିଲେ ଏବେ ସେଇ ସ୍ଥାନରେ ମହାନ୍ଦିଆ ବଜାରର ଚୈତନ୍ୟ ପାଦମଠ ଅବସ୍ଥିତ ଏବଂ ସେଇ ମଠର ନାଟମନ୍ଦିର ଆଗରେ ଏବେ 'ଶ୍ରୀଚୈତନ୍ୟପୀଠ' ପ୍ରତିଷ୍ଠା କରାଯାଇଛି । ପୁଣି ଲୋକମୁଖରୁ ଶୁଣାଯାଏ ଯେ ଚୈତନ୍ୟ ଏହିଠାରେ ବିଶ୍ରାମ ନେବାଯୋଗୁ ଏହାର ସ୍ମାରକୀ ସ୍ୱରୂପ ସ୍ୱୟଂ ପ୍ରତାପରୁଦ୍ରଦେବ ସେଠାରେ ଗୌର ନିତ୍ୟାନନ୍ଦ ମୂର୍ତ୍ତି ପ୍ରତିଷ୍ଠା କରାଇ ସେ ପୀଠର ପୂଜାର୍ଚ୍ଚନା ଦାୟିତ୍ୱ ସ୍ୱପ୍ନେଶ୍ୱର ବିପ୍ରଙ୍କୁ ଦେଇଥିଲେ ।

ଶ୍ରୀଚୈତନ୍ୟ ଉଦ୍ୟାନରେ ବିଶ୍ରାମ ନେବାକଥା ରାୟରାମାନନ୍ଦ ଯାଇ ପ୍ରତାପରୁଦ୍ର-ଦେବଙ୍କୁ ଜଣାଇଥିଲେ । ଏ ସମ୍ବାଦ ପାଇବା ମାତ୍ରେ ସାଙ୍ଗେ ରାଜା ପାତ୍ରମନ୍ତ୍ରୀ ପାରିଷଦବୃନ୍ଦଙ୍କ ସହ ଚୈତନ୍ୟଦେବଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ସେଇ ଉଦ୍ୟାନରେ ଚୈତନ୍ୟଦେବଙ୍କୁ ଦେଖି ସେ ପ୍ରେମାଭିଭୂତ ହୋଇ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ ।

"ଶୁନି ଆନନ୍ଦିତ ରାଜା ଅତିଶୀଘ୍ର ଆଇଲା
ପ୍ରଭୁ ଦେଖି ଦଣ୍ଡବତ ଭୂମିତେ ପଡ଼ିଲା ।"
(ଚୈ: ଚ: ମଧ୍ୟଲୀଳା)

ଶ୍ରୀଚୈତନ୍ୟଙ୍କ ସାନ୍ନିଧ୍ୟ ପାଇ ତାଙ୍କ ଅଙ୍ଗ ପୁଲକିତ ହୋଇ ଉଠିଲା ଓ ନୟନରୁ ଧାରେଧାର ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ସେ ଏକ ପ୍ରକାର ବିହ୍ୱଳ ଅବସ୍ଥାରେ ଶ୍ରୀଚୈତନ୍ୟଙ୍କୁ ବାରମ୍ବାର ପ୍ରଣାମ କରିବାକୁ ଲାଗିଥିଲେ ଓ ଶ୍ରୀଚୈତନ୍ୟ ରାଜାଙ୍କର ଭକ୍ତିଭାବରେ ବିମୁଗ୍ଧ ଓ ପରିତୁଷ୍ଟ ହୋଇ ତାଙ୍କୁ ପ୍ରେମାଲିଙ୍ଗନ କରିଥିଲେ । ଆଲିଙ୍ଗନା-ବଦ୍ଧ ଅବସ୍ଥାରେ ସେ ଶ୍ରୀଚୈତନ୍ୟଙ୍କୁ ସ୍ତୁତିକରୁଥିଲେ ଓ ତାଙ୍କର ଅଶ୍ରୁଧାରରେ ଚୈତନ୍ୟଙ୍କର ଅଙ୍ଗ ଅଶ୍ରୁସ୍ନାତ ହୋଇ ଯାଇଥିଲା ।

ରାଜାଙ୍କର ଏପ୍ରକାର ସମ୍ମୋହିତ ଅବସ୍ଥା ଦେଖି ରାୟରାମାନନ୍ଦ ବ୍ୟସ୍ତ ହୋଇ ଉଠିଥିଲେ । ସେ ରାଜାଙ୍କୁ ସୁସ୍ଥ କରାଇଥିଲେ । ପ୍ରତାପରୁଦ୍ରଦେବଙ୍କ ଅତିଶୟ ଅନ୍ତରଙ୍ଗତା ଓ ଆନ୍ତରିକତାରେ କାୟମନୋବାକ୍ୟରେ ତାଙ୍କ ପ୍ରତି ଅନୁରକ୍ତି ଓ କୃପା ଫୁଟିଉଠିଥିଲା । ଏ ପ୍ରକାର ଦୃଶ୍ୟରେ ଅନ୍ୟ ଭକ୍ତଗଣ ବିସ୍ମିତ ଓ ବିମୁଗ୍ଧ ହୋଇ ଯାଇଥିଲେ । ସମସ୍ତେ ତନ୍ମୟ ହୋଇ ଉଠି ଶ୍ରୀଚୈତନ୍ୟଙ୍କର ଚରଣ ବନ୍ଦନା କରିଥିଲେ । ଏହିଠାରେ ରାଜାଙ୍କୁ ଶ୍ରୀଚୈତନ୍ୟ ସ୍ୱର୍ଗୀୟ କୃପା ଦାନ କରିଥିବାରୁ ସେ 'ପ୍ରତାପରୁଦ୍ର ସଂତ୍ରାତା' ନାମରେ ଏହି କଟକଠାରେ ହିଁ ବନ୍ଦିତ ହୋଇଥିଲେ ।

ପ୍ରେମାନନ୍ଦରେ ନିମଜ୍ଜିତ ରାଜା ଓ ପାତ୍ରମନ୍ତ୍ରୀମାନଙ୍କୁ ଶ୍ରୀଚୈତନ୍ୟ ବିଦାୟ ଦେଇଥିଲେ । ରାଜା ବାହାରକୁ ଆସି ରାଜକର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଲେ ଯେ ଚୈତନ୍ୟଙ୍କ

ଯାହା ପଥରେ ତାଙ୍କର ବିଶ୍ରାମ ପାଇଁ ପ୍ରତିଗ୍ରାମରେ ନୂତନ ଗୃହ ନିର୍ମାଣ କରିବା ପାଇଁ ଓ ପାଞ୍ଚ ସାତଟି ନବନିର୍ମିତ ଘରେ ସମସ୍ତ ପ୍ରକାର ଖାଦ୍ୟଦ୍ରବ୍ୟ ଉଚ୍ଛିତ ରଖିବା ପାଇଁ । ବାଟରେ ଶ୍ରୀଚୈତନ୍ୟଙ୍କୁ ଯେପରି ସାଦର ସମ୍ବର୍ଦ୍ଧନା ଦିଆଯାଏ ସେଥିପାଇଁ ସେ ରାଜକର୍ମଚାରୀଙ୍କୁ ସଚେତନ କରାଇ ଦେଇଥିଲେ । କେତେକ କର୍ମଚାରୀ ବେଶହସ୍ତ ହୋଇ ଗୌରଚନ୍ଦନ ଚୈତନ୍ୟଙ୍କ ପାଖରେ ରହିବାକୁ ସେ ମଧ୍ୟ ଆଦେଶ ଦେଇଥିଲେ । ଏସବୁ କାର୍ଯ୍ୟର ତଦାରଖ ଭାର ସେ ତାଙ୍କର ବିଶିଷ୍ଟ ରାଜକର୍ମଚାରୀ ହରିଚନ୍ଦନ ଓ ମଙ୍ଗରାଜଙ୍କ ଉପରେ ନ୍ୟସ୍ତ କରିଥିଲେ ।

ଶ୍ରୀଚୈତନ୍ୟ ଏହି ଅବସରରେ କଟକରେ କିଛିଦିନ ଅବସ୍ଥାନ କରିଥିଲେ ଏହା ଭିତରେ ତାଙ୍କର ବିଦାୟ ସମ୍ବର୍ଦ୍ଧନା ଉତ୍ସବ ବେଶ୍ ଆକର୍ଷଣୀୟ କରିବା ପାଇଁ ସମସ୍ତେ ଲାଗି ପଡ଼ିଥିଲେ । ଚୈତନ୍ୟଦେବ କଟକରୁ ବିଦାୟ ନେବାବେଳେ ଯେଉଁଠାରେ ସ୍ନାନ କରିବେ ଓ ନୌକାରୋହଣ କରି ଆଗପାରିକୁ ଯିବେ ସେ ସ୍ଥାନଟି ନିର୍ଦ୍ଦିଷ୍ଟ ହୋଇଥିଲା ଓ ସେଠାରେ ଏ ଯାତ୍ରାର ସ୍ମୃତିକୁ ନେଇ ଏକ ସ୍ମୃତିସ୍ତମ୍ଭ ନିର୍ମାଣ କରିବା ପାଇଁ ରାଜା ଆଜ୍ଞା ଦେଇଥିଲେ । କେବଳ ସେତିକି ନୁହେଁ ଶ୍ରୀଚୈତନ୍ୟ ମହାନଦୀ ପାରି ହେବା ପାଇଁ ଏକ ନୂତନ ନୌକା ତିଆରି ହୋଇ ଏହି ଘାଟରେ ରହିଥିଲା । ସେଇ ବିଦାୟକାଳୀନ ଉତ୍ସବର ପ୍ରସ୍ତୁତି ଚାଲିଥିବାବେଳେ ରାଜା ଭକ୍ତ ଗଦ୍ ଗଦ୍ କଣ୍ଠରେ କହିଥିଲେ ତାଙ୍କର ପ୍ରଭୁ ଶ୍ରୀଚୈତନ୍ୟ ଯେଉଁଠାରେ ସ୍ନାନ କରିବେ ସେ ଏଣିକି ସେଇଠାରେ ସ୍ନାନ କରିବେ ଓ ସେଇ ସ୍ଥାନରେ ଯଦି ତାଙ୍କର ମୃତ୍ୟୁ ହୁଏ ସେ କୃତାର୍ଥ ହୋଇ ମୁକ୍ତି ଲାଭ କରିବେ ।

ଚୈତନ୍ୟ ଚରିତାମୃତରେ ଅଛି—

"ଏକ ନବ ନୌକା ଆନି ରାଖିଛ ନଦୀ ତୀରେ
ଯାହାଁ ସ୍ନାନକରି ପ୍ରଭୁ ଯାନ୍ ନଦୀ ପାରେ ।
ତାହାଁ ସ୍ତମ୍ଭ ରୋପଣ କର ମହାତୀର୍ଥ କରି
ନିତ୍ୟ ସ୍ନାନ ତାହା ତାହାଁ ଯେନ ମରି ।"

ପ୍ରକୃତରେ ଶ୍ରୀଚୈତନ୍ୟଙ୍କ ଏ ସ୍ମୃତିକୁ ନେଇ ଆଜିର ସେଇ ଗଡ଼ଗଡ଼ିଆଘାଟ ମହାତୀର୍ଥ ଭାବରେ ପ୍ରଖ୍ୟାତ ହୋଇ ସାରିଛି । ଶ୍ରୀଚୈତନ୍ୟ ମହାପ୍ରଭୁ ଶିଷ୍ୟ ଓ ଭକ୍ତମାନଙ୍କ ସହ ପ୍ରେମାବେଶରେ ଏଇ ତୀର ସୈକତରେ ଗଡ଼ିଯାଇଥିବାରୁ ଏହାର ନାମ 'ଗଡ଼ଗଡ଼ିଆଘାଟ' ଓ ଶ୍ରୀଚୈତନ୍ୟ ଏଇ କୂଳ ବାଲିରେ ଚାଲିଚାଲି ଯାତ୍ରା କରିଥିବାରୁ ଏହାର ନାମ 'ବାଲିଯାତ୍ରା' ହୋଇଛି ବୋଲି ଏହା ସ୍ପଷ୍ଟ ଜଣାପଡ଼େ । ଏହି କଥାକୁ ଅନେକ ବିଶିଷ୍ଟ ସମାଲୋଚକ ସ୍ୱୀକାର କରିଛନ୍ତି । ଶ୍ରୀଚୈତନ୍ୟଙ୍କର ଏଇ ଘାଟରେ ନୌଯାତ୍ରାକୁ ନେଇ ଏବେ ମଧ୍ୟ କାର୍ତ୍ତିକ ପୂର୍ଣ୍ଣିମାରେ ଏଠାରେ ନୌକା ଭସାଯାଏ । ଅବଶ୍ୟ ଏହି ବାଲିଯାତ୍ରା ଓ ନୌକା ଭସାଣି ଉତ୍ସବ ସହିତ ଉତ୍କଳର ନୌଯାତ୍ରା ସମ୍ପର୍କିତ ବୋଲି କେତେକ ଐତିହାସିକ କହନ୍ତି । ତେବେ ଏଇ ବାଲିଯାତ୍ରା ଉତ୍ସବ ଯେ

ଶ୍ରୀଚୈତନ୍ୟଙ୍କର ସେଇ ଐତିହାସିକ ଯାତ୍ରାର ସ୍ମାରକୀ ହୋଇ ନଥିବ ଏକଥା କିଏ କହି ପାରିବ ? ପୁଣି ଗଡ଼ଗଡ଼ିଆ ଘାଟର ନାମକରଣ ମଧ୍ୟ ଚୈତନ୍ୟସ୍ମୃତିର ଏକ ଶକ୍ତିଶାଳୀ ସୂଚକ । ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ଧର୍ମ ସହିତ ନାମ ସଂକୀର୍ତ୍ତନରେ ସମ୍ପର୍କ ଏକାନ୍ତ ନିବିଡ଼ । ବାଲିଯାତ୍ରା ସମୟରେ ପୂର୍ବ ପରମ୍ପରାକୁ ଅନୁସରଣ କରି ଆଖପାଖ ଅଞ୍ଚଳରୁ ବହୁ ସଂକୀର୍ତ୍ତନ ଦଳ ଏଠାକୁ ଆସନ୍ତି । ଏହା ଧାରାଟି ଶ୍ରୀଚୈତନ୍ୟଙ୍କର ସେଇ ବିଦାୟ-କାଳୀନ ଉତ୍ସବର ସ୍ମାରକୀ ବୋଲି ଅସ୍ୱୀକାର କରି ହୁଏନାହିଁ ।

ସେ ଯାହାହେଉ ଶ୍ରୀଚୈତନ୍ୟଙ୍କର କଟକରୁ ବିଦାୟ ନେବାବେଳେ ସେଣ୍ଟକ ପାଖେଇ ଆସୁଥାଏ ରାଜା ପ୍ରତାପରୁଦ୍ରଦେବ ସେଣ୍ଟକ ଦୁଃଖରେ ଭାଙ୍ଗି ପଡ଼ୁଥାନ୍ତି । ଶେଷରେ ସେଇ ବିଦାୟକାଳୀନ ଶୋକାର୍ତ୍ତ ସନ୍ଧ୍ୟା ଆସି ଉପସ୍ଥିତ ହେଲା । ରାଜା ଶ୍ରୀଚୈତନ୍ୟଙ୍କୁ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇ ଉଠିଲେ ଏବଂ କେତେକ ହାତୀ ଉପରେ ଛୋଟ ଛୋଟ ତମ୍ବୁଘର ପକାଇ ଅନ୍ତଃପୁରର ମହିଷୀ ଓ ଅନ୍ୟାନ୍ୟ ମହିଳାଙ୍କୁ ସେଥିରେ ଆଣି ଶ୍ରୀଚୈତନ୍ୟଙ୍କ ଦର୍ଶନ ପାଇଁ ନଦୀ କୂଳରେ ଉପସ୍ଥିତ କରାଇଲେ । ଶ୍ରୀଚୈତନ୍ୟ ଯେତେବେଳେ ଗଡ଼ଗଡ଼ିଆ ଘାଟ ପର୍ଯ୍ୟନ୍ତ ବାଲିରେ ଚାଲି ଚାଲି ଆସିଲେ ସେତେବେଳେ ଉପସ୍ଥିତ ବିଶାଳ ଜନସମାବେଶରେ ଶୋକର ଉଚ୍ଛ୍ୱାସ ଖେଳି ଯାଇଥିଲା । ନାମସଂକୀର୍ତ୍ତନରେ ଗଗନପବନ ମୁଖରିତ ହୋଇ ଉଠିଥିଲା । ପ୍ରେମଭକ୍ତିର ଏ ନିଷ୍ଠା ଓ ନିଦର୍ଶନ ଥିଲା ଏକାନ୍ତ ଅମୂଲ୍ୟ ଓ ଅତୁଳନୀୟ ।

ଶ୍ରୀଚୈତନ୍ୟ ସେଇ ସ୍ୱର୍ଣ୍ଣୀଭ ସାୟାହ୍ନରେ ମହାନଦୀରେ ସ୍ନାନ କଲେ ଓ ସମସ୍ତ ଜନତା ସେଇ ସମୟରେ ତାଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇଲେ । ସେମାନଙ୍କ ପ୍ରେମାପ୍ଲୁତ କଣ୍ଠରୁ ବାରମ୍ବାର କୃଷ୍ଣନାମ ଉଚ୍ଚାରିତ ହେଉଥିଲା ଓ ନୟନରୁ ଧାରେ ଧାରେ ଅଶ୍ରୁ ବହିଯାଉଥିଲା ।

"ପ୍ରଭୁ ଦରଶନେ ସର୍ବେ ହେଲେ ପ୍ରେମମୟ<br>
କୃଷ୍ଣ କୃଷ୍ଣ କହେ ନେତ୍ର ଅଶ୍ରୁ ବରଷୟ ।"

ଦୂରରେ ଯେଉଁ ଭକ୍ତମାନେ ଥିଲେ ଓ ଶ୍ରୀଚୈତନ୍ୟଙ୍କୁ ଦେଖି ପାରୁ ନଥିଲେ ସେମାନେ ମଧ୍ୟ ପ୍ରେମଭକ୍ତିରେ କମ୍ପିତ ହୋଇ ଯାଉଥାନ୍ତି । ସତରେ ଶ୍ରୀଚୈତନ୍ୟ ମହାପ୍ରଭୁ ତ୍ରିଭୁବନରେ ଏକମାତ୍ର କୃପାଳୁ ଶକ୍ତି ଯାହାଙ୍କୁ ଦୂରରୁ ଦେଖିଲେ ମଧ୍ୟ ଭଗବତ୍ ପ୍ରେମ ହୃଦୟରେ ସ୍ୱତଃପ୍ରବୃତ୍ତି ସଞ୍ଚାରିତ ହୁଏ ବୋଲି ଚୈତନ୍ୟ ଚରିତାମୃତରେ କୃଷ୍ଣଦାସ କହିଛନ୍ତି ।

ଚୈତନ୍ୟ ଦେବ ସ୍ନାନ ସାରି ନୌକାରୋହଣ କରିବାକୁ ଗିବା ବେଳେ ତାଙ୍କ ସାଙ୍ଗରେ ରାୟରାମାନନ୍ଦ, ଶ୍ରୀ ମର୍ଦ୍ଦରାଜ, ଶ୍ରୀ ହରିଚନ୍ଦନଙ୍କ ସମେତ ପରମାନନ୍ଦ ପୁରୀ ଗୋସ୍ୱାମୀ, ସ୍ୱରୂପ ଦାମୋଦର, ଜଗଦାନନ୍ଦ, ମୁକୁନ୍ଦ, ବକ୍ରେଶ୍ୱର ପଣ୍ଡିତ ପ୍ରଭୃତି ଅନେକ ପ୍ରଧାନ ପ୍ରଧାନ ଭକ୍ତଗଣ ଥାଆନ୍ତି । ଭକ୍ତ ଗଦାଧର ପଣ୍ଡିତ ଯେକ 'କ୍ଷେତ୍ର

ସନ୍ୟାସ' ବ୍ରତ ଗ୍ରହଣ କରିଥାଆନ୍ତି ସେ ଯେତେବେଳେ ବୃନ୍ଦାବନକୁ ଉପେକ୍ଷା କରି ଶ୍ରୀଚୈତନ୍ୟଙ୍କ ସହିତ ଯିବାକୁ ବସିଲେ ସେ ତାଙ୍କୁ ପୁରୀ ଫେରିଯିବା ପାଇଁ ବହୁତ ବୁଝାଇଲେ । ଗଦାଧର ପଣ୍ଡିତ ଅଶ୍ରୁସଜଳ କଣ୍ଠରେ ଉତ୍ତର ଦେଇଥିଲେ ଯେ ଚୈତନ୍ୟଙ୍କ ସାନ୍ନିଧ୍ୟ ହିଁ ତାଙ୍କର ପରମବ୍ରତ । ସେ ତାଙ୍କୁ ଛାଡ଼ି ମୁହୂର୍ତ୍ତିଏ ବି ବଞ୍ଚିପାରିବେ ନାହିଁ । ଯେଉଁଠି ତାଙ୍କର ପ୍ରଭୁ ଶ୍ରୀଚୈତନ୍ୟ ସେଇଠି ରହିବେ ତାଙ୍କର ସମସ୍ତ ବ୍ରତ ଓ ସେବା ହିଁ ତାଙ୍କର ଶ୍ରୀକ୍ଷେତ୍ର । ଶ୍ରୀଚୈତନ୍ୟ ଯେତେବେଳେ ତାଙ୍କୁ ବହୁତ ବୁଝାଇ ଅନ୍ୟ ଭକ୍ତମାନଙ୍କ ସହିତ ସଜ୍ଜିତ ନୌକାରେ ପାଦଦେଲେ ସେତେବେଳେ ଗଦାଧର ପଣ୍ଡିତ ମୂର୍ଚ୍ଛିତ ହୋଇ ସେଇ ନଦୀ କୂଳରେ ପଡ଼ିଯାଇଥିଲେ । ତାଙ୍କୁ ସଚେତ କରାଇ ପୁରୀ ନେଇ ଯିବାକୁ ଶ୍ରୀଚୈତନ୍ୟ ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କୁ ଆବେଗ ଆକୁଳିତ କଣ୍ଠରେ ଆଦେଶ ଦେଇଥିଲେ । ନୌକା ଛାଡ଼ିବା ମାତ୍ରେ ସହସ୍ର ଜନତାଙ୍କ ହୃଦୟରୁ ଯେପରି ହାହାକାର କରି ଉଠିଥିଲା ।

ଯେତେବେଳେ ପୂର୍ବଦିଗ୍‌ବଳୟରୁ ଜହ୍ନ ଉଠି ଆସିଥାଏ ଆକାଶକୁ । ଗୁରଆଡ଼େ ଜ୍ୟୋସ୍ନା ଯେପରି ମୂର୍ଚ୍ଛିତ ହୋଇ ପଡ଼ିଥାଏ । ନାମ ସଂକୀର୍ତ୍ତନ ଧ୍ୱନି ସହିତ ଗଭୀର କାରୁଣ୍ୟରେ ମହାନଦୀ କୂଳ ଏକ ଅପୂର୍ବ ଅଧୀରତାରେ ମାୟାମୟ ହୋଇ ଉଠିଥାଏ ।

ପବିତ୍ର କଟକ ମାଟିରୁ ବିଦାୟ ନେଇ ଶ୍ରୀଚୈତନ୍ୟ ସେଇ ଗମ୍ଭୀର ଆବେଗସିକ୍ତ ମନ୍ଦ୍ର ରଜନୀରେ ଚୌଦ୍ୱାରରେ ଯାଇ ପହଁଞ୍ଚିଥିଲେ । ଆଗରୁ ତ ସେଠାରେ ଶ୍ରୀଚୈତନ୍ୟଙ୍କ ବିଶ୍ରାମ ପାଇଁ ନୂତନ ଗୃହ ନିର୍ମାଣ ସହ ଅନ୍ୟ ଆନୁସଙ୍ଗିକ ଆୟୋଜନ ହୋଇଥାଏ । ସେ ରାତିରେ ଭକ୍ତଗଣଙ୍କ ସହ ରହିଥିଲେ । ସକାଳୁ ସ୍ନାନକୃତ୍ୟ ସମାପନ କରି ରାଜାଙ୍କ ଦ୍ୱାରା ପ୍ରେରିତ ଜଗନ୍ନାଥଙ୍କ ମହାପ୍ରସାଦ ସମସ୍ତ ଭକ୍ତ ଓ ଶିଷ୍ୟଙ୍କ ସହିତ ସେବନ କରିଥିଲେ ଏବଂ ହରି ହରି ଉଚ୍ଚାରଣ କରି ବୃନ୍ଦାବନ ଯାତ୍ରା କରିଥିଲେ । ତୀର୍ଥଯାତ୍ରାରୁ ଫେରି ସେ ଅବଶିଷ୍ଟ ସମୟ ପୁରୀରେ କଟାଇ ଶେଷରେ ସେଇ ପୁରୀରେ ୧୫୩୩ ଖ୍ରୀଷ୍ଟାବ୍ଦରେ ଇହଲୀଳା ସମ୍ବରଣ କରିଥିଲେ ।

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ମହାପ୍ରୟାଣ କେବେଠାରୁ ହେଲାଣି ତଥାପି ତାଙ୍କର ପବିତ୍ର ସ୍ମୃତି ଏବେବି ଏ ମାଟିରେ ଉଜ୍ଜୀବିତ ହୋଇ ରହିଛି । ଷୋଡ଼ଶ ଶତାବ୍ଦୀରେ ଆବିର୍ଭାବରେ ଯେଉଁ ଅଭିନବ ଧାର୍ମିକ ବିପ୍ଳବ ସଂଘଟିତ ହୋଇଥିଲା ତାହା ଓଡ଼ିଶାର ପାରମ୍ପରିକ ଧାରାକୁ କମ ପ୍ରଭାବିତ କରିନାହିଁ । ଏଇ ବିପ୍ଳବର କେନ୍ଦ୍ରବିନ୍ଦୁ ଶ୍ରୀକ୍ଷେତ୍ର ହୋଇଥିଲେ ବି ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକର ଭୂମିକା ଏଥିପାଇଁ ଯଥେଷ୍ଟ ଥିଲା । ଏହାର ସ୍ମୃତି ସମ୍ଭାର ଏବେବି ରହିଛି କଟକର ନଦୀ ଘାଟ; ମନ୍ଦିରର ବିଗ୍ରହ ପଥର ଓ ଅନେକ ଲୋକସ୍ମୃତିରେ । ଅନେକ ବର୍ଷ ବିତିଯାଇଥିଲେ ବି କେତେ ଭଙ୍ଗା ଗଢ଼ା ଇତିହାସ ଭିତରେ ଏକ ମାର୍ମିକ ଓ ଆଧ୍ୟାତ୍ମିକ ଆବାହାଓ୍ୱା ଏ ମାଟିକୁ ଏବେବି ଆମୋଦିତ ଓ ଆଚ୍ଛନ୍ନ କରି ରଖିଛି ।

# ବାରବାଟି ଦୁର୍ଗର ଖନନ ପରେ
# କେତେକ ନୂତନ ତଥ୍ୟ

**ଡଃ କରୁଣାସାଗର ବେହେରା**

ଇତିହାସର ମୂକସାକ୍ଷୀ ବାରବାଟି ଦୁର୍ଗ ଓଡ଼ିଶାର ଗର୍ବ ଓ ଗୌରବର ପ୍ରତୀକ । ବାରବାଟି ଦୁର୍ଗର ଇତିହାସ ଓଡ଼ିଶାର ଇତିହାସ ସହିତ ଘନିଷ୍ଠ ଭାବରେ ଜଡ଼ିତ । କିନ୍ତୁ ଦୁର୍ଗର ସ୍ଥାପନ କାଳ ଓ ବିକାଶ ଆଜି ମଧ୍ୟ ରହସ୍ୟାବୃତ । ମାଦଳା ପାଞ୍ଜିର କିମ୍ବଦନ୍ତୀ ଅନୁସାରେ ମର୍କତ କେଶରୀ "ମହାନଦୀ ଭିତରେ ବାରବାଟି କଲି" ନିର୍ମାଣ କରିଥିଲେ । କିନ୍ତୁ ଓଡ଼ିଶାର ସୋମବଂଶରେ ଏହି ନାମରେ କୌଣସି ରାଜା ନଥିବାରୁ ଏହି ମତ ସମସାମୟିକ ତଥ୍ୟ ଦ୍ୱାରା ସମର୍ଥିତ ନୁହେଁ ।

ସେହି ମାଦଳାପାଞ୍ଜିରେ ଅନ୍ୟତ୍ର କୁହାଯାଇଛି ଯେ ଗଙ୍ଗରାଜା ଅନଙ୍ଗଭୀମ ଦେବ ପ୍ରଥମେ ଚଉଦ୍ୱାର କଟକରେ ବାସ କରୁଥିଲେ । ପରେ ମହାନଦୀ ପାରହୋଇ ବାରବାଟି ଗ୍ରାମରେ ନଅର ତୋଳାଇ କଟକ କରି ଏ କଟକ ନାମ ବାରଣାସୀ କଟକ ଦେଇ ଚଉଦ୍ୱାର ଗୁଡ଼ ଆସି କଟକ କରି ରହିଲେ । ତୃତୀୟ ଅନଙ୍ଗଭୀମ ଦେବଙ୍କ ନଗରୀ ତାମ୍ରଶାସନରେ ଅଭିନବ ବାରଣାସୀ କଟକ ନାମ ଉଲ୍ଲେଖ ଥିବାରୁ କେତେକ ଗବେଷକଙ୍କ ମତ ଯେ ବାରବାଟି ଦୁର୍ଗ ତୃତୀୟ ଅନଙ୍ଗଭୀମ ଦେବଙ୍କ ସମୟରେ ଖ୍ରୀଷ୍ଟାବ୍ଦ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା ।

ଆକବରଙ୍କ ରାଜଦରବାରର ଐତିହାସିକ ଆବୁଲ ଫାଜଲ ତାଙ୍କ "ଆଇନି—ଆକବରୀ" ଗ୍ରନ୍ଥରେ ଲେଖିଛନ୍ତି ଯେ ରାଜା ମୁକୁନ୍ଦ ଦେବ କଟକର ଏହି ପଥର ଦୁର୍ଗ ଭିତରେ ଏକ ନବତଳ ପ୍ରାସାଦ ନିର୍ମାଣ କରିଥିଲେ; ପ୍ରଥମଟିରେ ହାତୀ ଓ ଅଶ୍ୱଶାଳା ଥିଲା, ଦ୍ୱିତୀୟଟି ଅରକ୍ଷୀ, ଅନୁଚର ଓ କମାଣ ରଖିବା ଲାଗି ବ୍ୟବହୃତ ହେଉଥିଲା, ତୃତୀୟଟିରେ ଚର ଓ ଦ୍ୱାରରକ୍ଷୀ ରହୁଥିଲେ, ଚତୁର୍ଥ ତଳରେ କାରଖାନା ଥିଲା, ପଞ୍ଚମରେ ପାକଶାଳା, ଷଷ୍ଠରେ ଅଭ୍ୟର୍ଥନା କକ୍ଷ, ସପ୍ତମରେ ଘରୋଇ କକ୍ଷମାନ ଥିଲା । ଅଷ୍ଟମ ତଳରେ ସ୍ତ୍ରୀ ଲୋକମାନଙ୍କର ରହିବା ଗୃହ ଥିଲା ଓ ନବମତଳଟି ରାଜାଙ୍କର ଶୟନ କକ୍ଷ ରୂପେ ବ୍ୟବହାର କରାଯାଉଥିଲା ।"

ପ୍ରାସାଦଟି ନବଟି ମହଲା ବିଶିଷ୍ଟ ଥିଲା କି ନବ ପ୍ରକୋଷ୍ଠ ବିଶିଷ୍ଟ ଥିଲା, ଏହାଠାରେ ସନ୍ଦେହ ରହିଛି । ଗ୍ରନ୍ଥରେ ବ୍ୟବହୃତ "ଆଥିଆନ" ଶବ୍ଦର ତର୍ଜମା କରି କେତେକ ଏହାକୁ ନବତଳ ଅଟ୍ଟାଳିକା କହନ୍ତି, କେତେକ ଏହା ନଅଟି ଖଣ୍ଡରେ ବିଭକ୍ତ ଥିଲା ବୋଲି ମତ ବ୍ୟକ୍ତ କରନ୍ତି ।

ଓଡ଼ିଶା ରାଜାମାନଙ୍କର ପ୍ରାସାଦ କଟକର ବାରବାଟି ଦୁର୍ଗରେ ଅବସ୍ଥିତ ଥିବାରୁ ଏହା ଓଡ଼ିଶାର ପ୍ରଶାସନିକ କେନ୍ଦ୍ର ଥିଲା । ଗଙ୍ଗ, ଗଜପତି, ଏପରିକି କିଛିକାଳ ପାଇଁ ମୋଗଲ ସୁବାଦାରମାନଙ୍କର ବାସସ୍ଥଳୀ ଭାବରେ ଏହା ବ୍ୟବହୃତ ହୋଇଥିଲା ।

ଓଡ଼ିଶାରେ ରାଜତ୍ୱ କରିଥିବା ପ୍ରତ୍ୟେକ ରାଜା ଏହି ଦୁର୍ଗରେ କିଛିଟା ନୂଆ ନିର୍ମାଣ କରିଥିଲେ । ଫଳରେ ଦୁର୍ଗଟି ଖୁବ୍ ବଡ଼ ହୋଇ ଯାଇଥିଲା, ଦୁର୍ଗଟି କଟକ ସହରର ପଶ୍ଚିମ ଅଞ୍ଚଳରେ ମହାନଦୀ କୂଳରେ ଅବସ୍ଥିତ । ଦୁର୍ଗର ଆୟତନ ପ୍ରାୟ ୧୦୦ ଏକର । ଅନ୍ୟ ଦୁର୍ଗପରି ପ୍ରାକାର ଓ ପରିଖା ପରିବେଷ୍ଟିତ ହୋଇ ଏହା ନିର୍ମିତ ହୋଇଅଛି । ପରିଖାର ଓସାର ୧୦ ମିଟରରୁ ୨୦ ମିଟର ଥିଲା । ପ୍ରାଚୀର ବର୍ତ୍ତମାନ ନାହିଁ ।

୧୮୦୩ ମସିହାରେ ବ୍ରିଟିଶମାନେ ଦୁର୍ଗ ଅଧିକାର କରିବାପରେ ରାସ୍ତା, ନଦୀବନ୍ଧ ଓ Light House ନିର୍ମାଣ ଲାଗି ଦୁର୍ଗରୁ ପଥରମାନ ନେଇ ଯାଇଥିଲେ, ଓଡ଼ିଶାର ଏହି ମହତ୍ତ୍ୱପୂର୍ଣ୍ଣ ପ୍ରତ୍ନକୀର୍ତ୍ତି ଧ୍ୱଂସ ସ୍ତୂପରେ ପରିଣତ ହେଲା । ଅଛି କେବଳ ଏହି ଐତିହାସିକ ଦୁର୍ଗର ମୁଖ୍ୟ ପ୍ରବେଶ ପଥ । ୧୯୧୫ ମସିହାରୁ ଏହା ଏକ ସଂରକ୍ଷିତ ପ୍ରତ୍ନକୀର୍ତ୍ତି ଭାବରେ ସଂରକ୍ଷିତ ।

ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ଭୁବନେଶ୍ୱର—ଉତ୍‌ଖନନ ଶାଖା ଅନୁକୂଳ୍ୟରେ ବାରବାଟିର ଖନନ କାର୍ଯ୍ୟ ୧୯୮୯ ମସିହା ଡିସେମ୍ବର ୧ ତାରିଖରୁ ଆରମ୍ଭ କରାଯାଇଛି । ପ୍ରତ୍ନତତ୍ତ୍ୱବିଦ୍ Dr. B. K. Sinhaଙ୍କ ନିର୍ଦ୍ଦେଶରେ ଏହି ଖନନ କାର୍ଯ୍ୟ ଚାଲିଛି । ପ୍ରତ୍ନତାତ୍ତ୍ୱିକ ଖନନ ସାଧାରଣତଃ ଐତିହାସିକ ସମସ୍ୟା ପରିପ୍ରେକ୍ଷୀରେ କରାଯାଇଥାଏ । ମାଟିତଳେ ଥିବା ତଥ୍ୟରୁ ବାହାର କରିବା ଓ ମାଟିତଳେ ଥିବା ପ୍ରତ୍ନକୀର୍ତ୍ତିକୁ ଅଜ୍ଞାତର ବିସ୍ମୃତି ଗର୍ଭରୁ ଲୋକ ଲୋଚନକୁ ଆଣିବା ଖନନର ଉଦ୍ଦେଶ୍ୟ ।

ତେଣୁ ସାଧାରଣ ଖନନ ପ୍ରକ୍ରିୟାଠାରୁ ପ୍ରତ୍ନତାତ୍ତ୍ୱିକ ଖନନ ସମ୍ପୂର୍ଣ୍ଣ ଭାବରେ ପୃଥକ । ପ୍ରତ୍ନତାତ୍ତ୍ୱିକ ଖନନ ଭିତ୍ତିରେ ନୂତନ ତଥ୍ୟ ସଂଗ୍ରହ କରି ପ୍ରକୃତ ଇତିହାସ ଲେଖା ଯାଇପାରେ । ବାରବାଟୀ ଦୁର୍ଗ ଖନନ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଦୁର୍ଗର ସାଂସ୍କୃତିକ ଯୁଗ ବିକାଶ ନିର୍ଦ୍ଧାରଣ କରିବା ଓ ବ୍ୟାପକ ଖନନ ଦ୍ୱାରା ଦୁର୍ଗର ସ୍ୱରୂପ ଓ ବୈଶିଷ୍ଟ୍ୟ ନିରୂପଣ କରିବା । ଲମ୍ବ ଉତ୍‌ଖନନ ଦ୍ୱାରା ଦୁର୍ଗର ଆଦ୍ୟ ଇତିହାସ ଓ ବିଭିନ୍ନ ପର୍ଯ୍ୟାୟ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିହେବ । ବିସ୍ତୃତ ଉତ୍‌ଖନନ ଦ୍ୱାରା ଯୋଜନାର ବିଭବ ଯଥା ରାଜପ୍ରାସାଦ ଦେବାଳୟ, ରାସ୍ତା, ପ୍ରାକାର, ପରିଖା ପ୍ରଭୃତି ବିଷୟ ସହିତ ବିଭିନ୍ନ ଲୋକଙ୍କର ଜୀବନଧାରା ସମ୍ବନ୍ଧରେ ସମ୍ୟକ ଜ୍ଞାନ ଆହରଣ କରିହେବ । ବିଭିନ୍ନ ସମୟରେ ବାରବାଟୀ ଦୁର୍ଗର ଅବସ୍ଥା ବିଷୟରେ ଏଥିରୁ ସୂଚନା ମିଳିପାରିବ ।

ଦୁର୍ଗ ମଧ୍ୟରେ ପ୍ରାୟ ୧୫ ଏକର ଭୂମି ଉପରେ ପର୍ବତ ସଦୃଶ ଏକ ମାଟି କୁଦ ରହିଛି । ଏହାର ଉଚ୍ଚତା ସମୁଦ୍ର ପତ୍ତନଠାରୁ ପ୍ରାୟ ୪୦ ମିଟର । ୧୮୫୪ ମସିହାରେ ଭୂସର୍ବେକ୍ଷଣ ସଂସ୍ଥା କୁଦର ଅଗ୍ରଭାଗରେ ଗୋଟିଏ Bench Mark ସ୍ଥାପନ କରିଥିଲେ । ଏହି କୁଦର ଉପରେ ଓ ତଳେ ଖନନ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କୁଦର ନିମ୍ନ ଭାଗରେ ଦକ୍ଷିଣ ଓ ଦକ୍ଷିଣ ପଶ୍ଚିମ ପାର୍ଶ୍ୱରେ ଖନନ ଦ୍ୱାରା, Khandolite ବା କନ୍ଦା ପଥର କାମ ଦୃଷ୍ଟିଗୋଚର ହେଲା ।

କୁଦର ଉପର ଭାଗରେ ଦକ୍ଷିଣ ଓ ପୂର୍ବ ପାର୍ଶ୍ୱର ଖନନ ଫଳରେ ମାଙ୍କଡ଼ା ପଥର କାନ୍ଥର ଏକ ପ୍ରାଚୀର ଲୋକଲୋଚନକୁ ଆସି ପାରିଛି । ଦକ୍ଷିଣ ପାର୍ଶ୍ୱରେ ଏହି ପଥର କାନ୍ଥର ଲମ୍ବ ପ୍ରାୟ ୫୦ ମିଟର । ଏହାର ଦକ୍ଷିଣ ପୂର୍ବକୋଣ ଓ ପୂର୍ବଦିଗରେ ୨୦ ମିଟର ପର୍ଯ୍ୟନ୍ତ ଏହି କାନ୍ଥକୁ ଅନାବୃତ କରାଯାଇପାରିଛି । ନିକଟରେ ବାସଗୃହ ଥିବାରୁ ଖନନ ପ୍ରସାର କରିବାରେ ଅସୁବିଧା ରହିଛି ।

କୁଦର ଉପରେ ଦକ୍ଷିଣ ପଶ୍ଚିମ ଭାଗରେ ଖନନ ଫଳରେ କୁଦର ଚୂଡ଼ା ଦେଶରେ ଏକ ବର୍ଗାକାର ସୌଧର ଅବଶେଷ ମିଳିଛି । ଏହା କନ୍ଦା ପଥରରେ ନିର୍ମିତ । ଗୋଟିଏ ପାଖର ଲମ୍ବ ପ୍ରାୟ ୨୦ ମିଟର । ସୌଧଟି ଦୁଇଟି ପର୍ଯ୍ୟାୟରେ ନିର୍ମିତ ହୋଇଥିଲା । ପ୍ରଥମ ପର୍ଯ୍ୟାୟରେ ଏହାର ଲମ୍ବ ପ୍ରାୟ ୧୮ ମିଟର ଥିଲା । ଦ୍ୱିତୀୟ ପର୍ଯ୍ୟାୟରେ ଏହା ଆଉ ଦୁଇ ମିଟର ବଢ଼ା ଯାଇଥିଲା ଓ ଉତ୍ତର ପାଖରେ ଏକ ସୋପାନ ପଥ ଯୋଗ କରାଯାଇଥିଲା । ଏହି ଗୁମ୍ବଜ ସଦୃଶ ସୌଧର କାନ୍ଥ ଅନ୍ତତଃ ପକ୍ଷେ ୪ ମିଟର ଚଉଡ଼ା ଓ ମଧ୍ୟଭାଗ ମାଟି ଦ୍ୱାରା ପୂର୍ଣ୍ଣ । ପଥର କାନ୍ଥ ନିର୍ମାଣ କରିବାରେ ସ୍ଥାନେ ସ୍ଥାନେ ଭଗ୍ନ ମୂର୍ତ୍ତି ଓ ସ୍ଥାପତ୍ୟାଂଶ ବ୍ୟବହାର କରାଯାଇଛି । ଦୁଇଟି ନାରୀମୂର୍ତ୍ତିର ମସ୍ତକ ସହିତ ଗ୍ଲେଟ ବଡ଼ ହୋଇ ପ୍ରାୟ ୧୦୦ଟି ଭଗ୍ନ କାରୁକାର୍ଯ୍ୟ ବିଶିଷ୍ଟ ପଥର ଏହି ସୌଧ ଅଞ୍ଚଳରୁ ମିଳିଛି । ସୌଧ ଉପର ଅଂଶରେ ଗୋଟିଏ ପତାକାଦଣ୍ଡ ଥିଲା ଓ ଏହା ବ୍ରିଟିଶ ରାଜତ୍ୱକାଳର । ପରେ ୧୮୫୪ ମସିହାରେ ତା ଉପରେ ଭୂସର୍ବେକ୍ଷଣ ସଂସ୍ଥା Bench Mark ସ୍ଥାପନ କରିଥିଲେ ।

ଏହି ସୌଧର ପାର୍ଶ୍ୱବର୍ତ୍ତୀ ସ୍ଥାନ ଖନନ ଫଳରେ ଏକ ସମତଳ ଅଞ୍ଚଳ ଆବିଷ୍କୃତ ହୋଇଛି । ପଥର ଓ ଚୂନ କାମ ଦ୍ୱାରା ଏହାର ଚଟାଣ ନିର୍ମିତ । ଖନନକାରୀ ପ୍ରତ୍ନତତ୍ତ୍ୱବିଦ ଅନୁମାନ କରନ୍ତି ଯେ ଗମ୍ବୁଜ ସମ ଏହି ସୌଧଟି ଏକ ସମାଧି ବା ସ୍ମୃତି-ସୌଧ ଥିଲା ଓ ତତ୍ ସଂଲଗ୍ନ ସମତଳ ଅଞ୍ଚଳରେ ଲୋକମାନେ ଏକତ୍ରିତ ହେଉଥିଲେ । ଏହା ଏକ ପାର୍ସିଭାଷାର ଅଭିଲେଖରୁ ସୂଚିତ ହୁଏ । ପର୍ବତ ସଦୃଶ୍ୟ ଏହି ସୌଧଟି ମୋହନ ସିଂ ନିର୍ମାଣ କରିଥିଲେ । ୧୬୩୩ ଖ୍ରୀଷ୍ଟାବ୍ଦରେ ବ୍ରୁଟନ୍ ସାହେବ ଦୁର୍ଗ ମଧ୍ୟରେ ଏକ ବିରାଟ ବର୍ଗାକାର ଗମ୍ବୁଜ ଥିବାର ଉଲ୍ଲେଖ କରିଛନ୍ତି । ତେଣୁ ନିଶ୍ଚିତ ରୂପେ ସୌଧଟି ୧୬୩୩ ଖ୍ରୀଷ୍ଟାବ୍ଦ ପୂର୍ବରୁ ନିର୍ମିତ ହୋଇଥିଲା । ଏହା ଏକ ନିରୀକ୍ଷଣ ସୌଧ ଭାବରେ ପରିକଳ୍ପିତ ହୋଇଥାଇ ପାରେ ।

ସେ ଯାହା ହେଉନା କାହିଁକି ଏହି ସୌଧର ନିମ୍ନରେ ପୂର୍ବ ପାର୍ଶ୍ୱରେ ଖନନ ଫଳରେ ମାଙ୍କଡ଼ା ପଥର ତିଆରି ୩୨ଟି ସ୍ତମ୍ଭ ଲୋକଲୋଚନକୁ ଆସିପାରିଛି । ସାଧାରଣତଃ ସ୍ତମ୍ଭ ଗୁଡ଼ିକ ବର୍ଗାକାର । ଉଚ୍ଚତା ପ୍ରାୟ ୭ ମିଟର । ସ୍ତମ୍ଭ ଉପରେ ବର୍ତ୍ତମାନ ଛାତର କୌଣସି ଅବଶେଷ ନାହିଁ । ଏତେ ସଂଖ୍ୟକ ସ୍ତମ୍ଭରୁ ଅନୁମାନ କରାଯାଏ ଯେ ସେଠାରେ ଏକ ବୃହତ କକ୍ଷ ବା ଭବନ ଥିଲା । ଭବନଟିର ପୂର୍ବ-ପଶ୍ଚିମ ଲମ୍ବ ୨୫ ମିଟର ଓ ଉତ୍ତର-ଦକ୍ଷିଣରେ ଏହାର ଓସାର ପ୍ରାୟ ୧୦ ମିଟର । ଭବନର ପାର୍ଶ୍ୱରେ ସ୍ତମ୍ଭଯୁକ୍ତ ବାରଣ୍ଡା ଥିଲା । ଏହିସବୁ ସ୍ତମ୍ଭର କେତେକ ଅବଶେଷ ମିଳିଛି । ବାରଣ୍ଡାର ଚଟାଣ ମାଙ୍କଡ଼ା ପଥରରେ ନିର୍ମିତ ଥିଲା । ସ୍ତମ୍ଭର ଉଚ୍ଚତାରୁ ଅନୁମାନ କରାଯାଏ ଯେ ଭବନର ଉଚ୍ଚତା ପ୍ରାୟ ୭ ମିଟର ଥିଲା ।

ସେହି ଭବନର ଉତ୍ତର ପୂର୍ବ ଭାଗରେ ଖନନ ଫଳରେ ସ୍ତମ୍ଭମାନଙ୍କର ନିମ୍ନ ଭାଗରେ ଏକ ପଥର ଜଗତିର ଅବଶେଷ ମିଳିଛି । ଖନନକାରୀ ଏହାକୁ ମନ୍ଦିରର ପୀଠ ଭାଗ ବୋଲି ଅନୁମାନ କରିଛନ୍ତି । ଦୁର୍ଗରେ ମିଳିଥିବା ଏହା ହେଉଛି ସବୁଠାରୁ ପ୍ରାଚୀନ କୀର୍ତ୍ତି । ତା ତଳକୁ ଖନନ ଫଳରେ ଅନ୍ୟ କୌଣସି ସ୍ମାରକ ମିଳିନାହିଁ । ଏହି ସ୍ଥାନରେ କାରୁକାର୍ଯ୍ୟ ଯୁକ୍ତ ପଥର ଓ ଭଗ୍ନମୂର୍ତ୍ତି ବହୁ ସଂଖ୍ୟାରେ ମିଳିଥିବାରୁ ଏହା ମନ୍ଦିରର ଅବଶେଷ ବୋଲି ଗ୍ରହଣ କରାଯାଏ । କିନ୍ତୁ କେହି ଲୋକ ମନ୍ଦିରର ଅବଶେଷ ଉପରେ ଭବନ ନିର୍ମାଣ କରିବାର ଚିନ୍ତା କରିପାରିବ ନାହିଁ । ଏହା ଅନ୍ୟ ଏକ ସଦନର ନିମ୍ନାଂଶ ହୋଇପାରେ । ଏହି ଧ୍ୱଂସାବଶେଷ ଉପରେ ଭବନ ନିର୍ମାଣ କରାଯାଇଥିବାରୁ ପ୍ରତୀୟମାନ ହୁଏ ଯେ ଭବନଟି ବହୁ ବର୍ଷ ପରେ ନିର୍ମିତ ହୋଇଥିଲା ।

ହିନ୍ଦୁ ସ୍ଥାପତ୍ୟ ଶୈଳୀରେ ନିର୍ମିତ ହୋଇଥିବାରୁ ଭବନର ନିର୍ମାଣ କାଳ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗ ବୋଲି ଧରାଯାଇପାରେ । ସ୍ତମ୍ଭମାନଙ୍କର ତାରତମ୍ୟରୁ ଖନନକାରୀ ବିଶ୍ୱାସ କରନ୍ତି ଯେ ଭବନଟି ପ୍ରାୟ ଦୁଇଥର ପୁନଃନିର୍ମିତ ହୋଇଥିଲା । ଏ ସବୁ ଦୃଷ୍ଟିରୁ ଏହା ମୁକୁନ୍ଦଦେବଙ୍କ ସମୟର କୀର୍ତ୍ତି ବୋଲି ଧରାଯାଇପାରେ ।

ବାରବାଟୀ ଦୁର୍ଗ ମଧ୍ୟରେ ଏକ ମନ୍ଦିର ଥିବା ଆବୁଲଫାଜଲ ଉଲ୍ଲେଖ କରିଛନ୍ତି । ଖନନରୁ ମିଳିଥିବା କାରୁକାର୍ଯ୍ୟ ଖଚିତ ପଥରମାନଙ୍କରୁ ନିଶ୍ଚିତ ରୂପେ ଜଣାଯାଏ ଯେ ଦୁର୍ଗ ମଧ୍ୟରେ ଏକ ମନ୍ଦିର ଥିଲା । ଦିଲ୍ଲୀର ସୁଲତାନ ଫିରୋଜ ଶାହ ତୋଗଲକ ଖ୍ରୀ ୧୩୬୦ରେ ଓଡ଼ିଶା ଆକ୍ରମଣ ସମୟରେ ଭାନୁଦେବଙ୍କ ଦୁର୍ଗ ମଧ୍ୟରୁ ଜଗନ୍ନାଥଙ୍କ ପ୍ରସ୍ତର ବିଗ୍ରହ ଦିଲ୍ଲୀ ନେଇ ଯାଇଥିଲେ । ଏହି ସୂଚନା ସିରାତ-ଇ-ଫିରୁଜ ଶାହି ଓ ତାରିଖ-ଇ-ଫିରୁଜ ଶାହି ଗ୍ରନ୍ଥରୁ ମିଳେ । ଗୁଜୁରାଟରୁ ପ୍ରାପ୍ତ ଏକ ଅଭିଲେଖରେ ଫିରୋଜ ଶାହାଙ୍କ ଓଡ଼ିଶା ଆକ୍ରମଣ ବିଷୟ ବର୍ଣ୍ଣନା କରାଯାଇଛି । କିନ୍ତୁ ଏ ସବୁ ସତ୍ତ୍ୱେ ବାରବାଟୀ ଦୁର୍ଗ ଗଙ୍ଗ ଗଜପତି ରାଜତ୍ୱକାଳରେ ସ୍ୱାଧୀନ ଓଡ଼ିଶାର ସ୍ୱାଭିମାନର ପ୍ରତୀକ ରୂପେ ରହିଥିଲା ଓ ଏହାର ଯଶ କୌଣସି ଗୁଣରେ ହ୍ରାସ ପାଇନଥିଲା । ୧୫୬୮

ଖ୍ରୀଷ୍ଟାବ୍ଦର ଏକ ଅଭିଲେଖରେ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜଧାନୀକୁ ଇନ୍ଦ୍ରଙ୍କ ଅମରାବତୀ ସହିତ ତୁଳନା କରାଯାଇଛି—

> କଟକା ନାମ ପୁରସ୍ୟ ରାଜଧାନୀ ବିରାଜତେ
>
> ମହାନଦୀ ପରସରେ ଶତ୍ରେସ୍ୟେ ବା ଅମରାବତୀ ।

ଏପରିକି ୧୭୬୭ ଖ୍ରୀଷ୍ଟାବ୍ଦ T. Motte ବାରବାଟୀ ଦୁର୍ଗ Windsor Castle ପରି ଦେଖାଯାଉଥିବାର ଉଲ୍ଲେଖ କରିଛନ୍ତି ।

ବର୍ତ୍ତମାନ ମିଳିଥିବା ତଥ୍ୟ ଭିତ୍ତିରେ ବାରବାଟୀ ଦୁର୍ଗ ସପ୍ତଦଶ ଶତାବ୍ଦୀ ବେଳକୁ ଖ୍ୟାତିଲାଭ କରିଥିବା ଜଣାଯାଏ । ତା ପୂର୍ବର କୌଣସି ଅବଶେଷ ବର୍ତ୍ତମାନ ସୁଦ୍ଧା ଖନନରୁ ମିଳିନାହିଁ । ଦୁର୍ଗ ମଧ୍ୟରେ ମନ୍ଦିର ଥିବା ଭଗ୍ନ ସ୍ଥାପତ୍ୟାଂଶରୁ ସୂଚିତ ହୁଏ । ଖନନରୁ ପ୍ରାପ୍ତ ବିଭିନ୍ନ ସାମଗ୍ରି ମଧ୍ୟରେ ଧନୁଶର ଅଗ୍ରଭାଗର ଲୌହାଂଶ, ଭଗ୍ନମୂର୍ତ୍ତି ଓ ଗଣେଶ ମୂର୍ତ୍ତି କମାଣରେ ବ୍ୟବହୃତ ଲୁହା ଓ ପଥର ଗୋଳା, ଗୁଆ ଆକୃତିର ମାଳ, ସମ୍ରାଟ ଶାହାଜାହାନଙ୍କ ଏକ ରୌପ୍ୟ ମୁଦ୍ରା, ଚୀନା ପାତ୍ର, କାଚ ପାତ୍ର, ବ୍ରିଟିଶ ସମୟର ସିସା ବୁଲେଟ, ଆଦି ଉଲ୍ଲେଖ ଯୋଗ୍ୟ । ଦୁର୍ଗର ରାଜପ୍ରାସାଦ ନବତଲ ବିଶିଷ୍ଟ ଥିଲା କି ନାହିଁ—ସଠିକ ତଥ୍ୟ ଏଯାବତ୍ ମିଳିନାହିଁ । ଦୁର୍ଗର ପୂର୍ଣ୍ଣାଙ୍ଗ ଖନନ ପରେ ଏ ବିଷୟରେ ଚୂଡ଼ାନ୍ତ ନିର୍ଣ୍ଣୟ କରାଯାଇ ପାରିବ । ଖନନ କାର୍ଯ୍ୟ ବର୍ତ୍ତମାନ ଚାଲିଛି ଓ ନିଶ୍ଚିତ ରୂପେ ଏହା ବାରବାଟୀ ଦୁର୍ଗର ମହତ୍ତ୍ୱ ଓ ବୈଶିଷ୍ଟ୍ୟ ଜାଣିବାରେ ସହାୟକ ହେବ ।



# କଟକର ରଙ୍ଗମଞ୍ଚ

**ଡଃ ହେମନ୍ତ କୁମାର ଦାସ**

ଊନବିଂଶ ଶତାବ୍ଦୀର ଶେଷପାଦରେ କଟକ ସହରରେ ରଙ୍ଗମଞ୍ଚର ବ୍ୟବସ୍ଥା କରାଯାଇଥିବାର ସମ୍ବାଦ ତତ୍କାଳୀନ ପତ୍ରିକା 'ଉତ୍କଳଦୀପିକା'ରୁ ଦେଖିବାକୁ ମିଳେ । ୧୮୭୨ ମସିହା ଜୁଲାଇ ୨୭ ତାରିଖ ଶନିବାର ଓ ୩୦ ତାରିଖ ମଙ୍ଗଳବାର, ଏହି ଦୁଇଦିନ କାଥଲିକ୍ ମିଶନ ବିଦ୍ୟାଳୟର ଛାତ୍ରମାନେ ବିଦ୍ୟାଳୟ ପ୍ରାଙ୍ଗଣରେ ଗୋଟିଏ ରଙ୍ଗମଞ୍ଚ ସ୍ଥାପନ କରି ତହିଁରେ ଇଂରେଜୀ ନାଟକ ଅଭିନୟର ବ୍ୟବସ୍ଥା କରିଥିଲେ । ନାଟକର ଅଭିନୟ ଦେଖାଇବା କାରଣ ନାଟ୍ୟଶାଳାକୁ ଯେମନ୍ତ ସୁଶୋଭିତ କରିବାର ଉଚିତ, ତହିଁରେ କିଛିମାତ୍ର ତ୍ରୁଟି ହୋଇ ନଥିଲା ଓ ସମସ୍ତ ବ୍ୟାପାର ଏମନ୍ତ ସୁଶୃଙ୍ଖଳା ଓ ମନୋମତ ରୂପେ ନିର୍ବାହ ହେଲା ଯେ, ଦର୍ଶକମାନେ ସର୍ବତୋ ଭାବରେ ଆନନ୍ଦଲାଭ କଲେ । ଏକେତ ନାଟକର ଅଭିନୟ ଏ ନଗରରେ ଅମୂଲ୍ୟ ପଦାର୍ଥ—'' (୩-୮-୧୮୭୨) ଏହାହିଁ ହେଉଛି କଟକ ସହର ନୁହେଁ ସମଗ୍ର ଓଡ଼ିଶାରେ ଏକ ମୁଖ୍ୟ ମଞ୍ଚର ପ୍ରଥମ ଆତ୍ମପ୍ରକାଶ ।

ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଏହାର ବହୁପୂର୍ବରୁ ବଙ୍ଗ ଦେଶରେ ନାଟକାଭିନୟର ସୂତ୍ରପାତ ହୋଇସାରିଥିଲା । ଇଂରେଜମାନେ କଲିକତାଠାରେ ଏକମଞ୍ଚ ୧୭୫୬ ଖ୍ରୀ: ଅ: ରେ ଲାଲବଜାର ଆଉ ମିଶନରୋଡ଼ର ମୋଡ଼ ଉପରେ ଥିବା ଗୋଟିଏ ଘରେ ପ୍ରଥମ ଥର ପାଇଁ ଖୋଲିଲେ । ଏହାର ନାମ ପ୍ଲେ ହାଉସ' (ଭାରତୀୟ ନାଟ୍ୟମଞ୍ଚ-୨—ପୃ: ୨୫ ଡଃ ହେମନ୍ତ ନାଥ ଦାସଗୁପ୍ତ) ଏହାହିଁ ହେଉଛି ଭାରତର ପ୍ରଥମ ରଙ୍ଗମଞ୍ଚ । ଏଥିସହ ଦେଶୀୟ ଲୋକଙ୍କର କୌଣସି ସମ୍ପର୍କ ନଥିଲା ।

ତେବେ ୧୭୭୭ ଖ୍ରୀ: ଅ:ରେ ଖୋଲିଥିବା 'କଲିକତା ଥିଏଟର' ସହିତ ଦେଶୀୟ ଲୋକଙ୍କର ସମ୍ପର୍କ ସ୍ଥାପିତ ହୋଇଥିବା ଭଳି ମନେ ହୁଏ । କାରଣ ଏଥିରେ ୧୭୮୯ ଖ୍ରୀ:ଅ:ରେ କାଳିଦାସଙ୍କର 'ଅଭିଜ୍ଞାନଶାକୁନ୍ତଳମ୍' ନାଟକର ଇଂରେଜୀରୂପ ଅଭିନୀତ ହୋଇଥିବାର ଜାଣିବାକୁ ମିଳୁଛି । ତେବେ ୧୭୯୫ ଖ୍ରୀ: ଅ:ରେ ରୁଷୀୟ ଅଭିନେତା ବାଦକ ଗେରାସିମ୍ ଲେବେଡେଫ୍ ସ୍ଥାପନ କରନ୍ତି 'ବେଙ୍ଗଲ ଥିଏଟର ।'

ଏଥିରେ ୨୭ ନଭେମ୍ବର ୧୭୯୫ ରେ ପ୍ରଥମ ଥର ପାଇଁ The Disguise' ଓ Love is the bestdocton ନାଟକର (୨୩ ମାର୍ଚ୍ଚ ୧୭୯୬) ବଙ୍ଗଳା ଅନୁବାଦ ଅଭିନୀତ ହୋଇଥିଲା । ଏହାପରେ ଊନବିଂଶ ଶତକରେ ଏକାଧିକ ମଞ୍ଚ ଦେଶୀୟ ଲୋକଙ୍କ ଉଦ୍ୟୋଗରେ ପ୍ରତିଷ୍ଠିତ ହୋଇ ମଞ୍ଚାଭିନୟର ଏକ ପରମ୍ପରା ସୃଷ୍ଟି ହେଲା । ୧୮୦୩ ରେ ଇଂରେଜମାନଙ୍କ ସହିତ ଯେଉଁ ବଙ୍ଗୀୟମାନେ ଓଡ଼ିଶା ଆସିଥିଲେ କଲିକତା ସହିତ ସେମାନଙ୍କର ନିୟମିତ ସମ୍ପର୍କ ଥିଲା । ତେଣୁ ଏଠାରେ ମଧ୍ୟ ସେହିମାନଙ୍କ ପ୍ରଚେଷ୍ଟାରେ ପ୍ରଥମ ମଞ୍ଚାଭିନୟର ସୂତ୍ରପାତ ହୋଇଥିଲା ।

ଏହାପରର ସମ୍ବାଦ ୧୮୬୫ ମସିହାର 'ଦୀପିକା' ଲେଖିଲେ, 'ଏଠାରେ ରୋମାନ କାଥଲିକ ସ୍କୁଲର ଛାତ୍ରମାନେ ପ୍ରତିବର୍ଷ ଏହି ସମୟରେ ନାଟ୍ୟ କ୍ରୀଡ଼ା କରନ୍ତି । ନାଟ୍ୟଶାଳା ସ୍କୁଲଗୃହରେ ହୋଇଥିଲା । ଇଂରେଜୀ 'ଏଗାଲଡ୍ରସ୍ମିଥ' କୃତନାଟ୍ୟ ପୁସ୍ତକର ଏକ କ୍ଷୁଦ୍ର-ଅଂଶର ନାଟ୍ୟକ୍ରୀଡ଼ା ହୋଇଥିଲା । କଲିକତାରେ ବଙ୍ଗାଳୀମାନେ ନାଟ୍ୟଶାଳା ସ୍ଥାପନ କରି ନାଟ୍ୟକ୍ରୀଡ଼ା ଅତି ଉତ୍ତମ ରୂପେ କରୁଅଛନ୍ତି । ଏଠାଲୋକଙ୍କର ଏପରି ରୁଚି ଓ ଯତ୍ନ କେବେ ହେବ ?'' (୧୮ । ୧୨ । ୧୮୬୨ ।

ଅଭିନୟର ଦ୍ବିତୀୟ ସମ୍ବାଦ ୧୮୭୮ ମସିହାର ଦୀପିକା ଜଣାଇଛନ୍ତି ''ଏ ନଗରରେ ଗତବର୍ଷଠାରୁ ବାରୋୟାରି ନିୟମରେ ଶ୍ରୀସରସ୍ୱତୀ ପୂଜା ହୋଇ ଆସୁଅଛି । ଏହି ହେତୁରୁ ଗତ ବସନ୍ତ ପଞ୍ଚମୀ ରାତ୍ରରେ ତାହାଙ୍କ ପୂଜା ଉପଲକ୍ଷରେ ଏକ ନୂତନ ଉତ୍ସାହ ଦେଖାଗଲା । ଓଡ଼ିଶାରେ ନାଟକର ଅଭିନୟ ଏତେଶୀଘ୍ର ହେବ କେହି ସ୍ୱପ୍ନରେ ସୁଦ୍ଧା ଜାଣି ନଥିଲେ ।

ନାଟକର ଅଭିନୟ କିପରି ହୁଅଇ ଏଠାଲୋକେ ତାହା ଦେଖି ନାହାନ୍ତି ଓ ଯଦ୍ୟପି କି ଦୁଇମାସ ତଳେ ଏକଦଳଲୋକ କଲିକତାରୁ ବାଲେଶ୍ୱର ପର୍ଯ୍ୟନ୍ତ ନାଟକର ଅଭିନୟ ଦେଖାଇବା ସକାଶେ ଆସିଥିଲେ ଓ ଏଠାକୁ ଆସିବେ ବୋଲି ଶୁଣା ଯାଇଥିଲା କିନ୍ତୁ ଏ ନଗରବାସୀ ଯୁବକବୃନ୍ଦଙ୍କୁ ଆମ୍ଭେମାନେ ଅସଂଖ୍ୟଧନ୍ୟବାଦ ଦେଉଅଛୁ ଯେ ସେମାନେ ଅତି ଅଳ୍ପକାଳ ମଧ୍ୟରେ ଏକଦଳ ପ୍ରସ୍ତୁତ କରି ଯଥା ବିଧିରେ ନାଟକର ଅଭିନୟ ଆମ୍ଭମାନଙ୍କୁ ଦେଖାଇ ଆଶାତିରିକ୍ତ ସୁଖ ପ୍ରଦାନ କଲେ । ଏହି ବସନ୍ତ ପଞ୍ଚମୀ ରାତ୍ରରେ ଓଡ଼ିଶାରେ ନାଟକର ଅଭିନୟ ପ୍ରଥମଥର ହେଲା ବାବୁ ମନମୋହନ ବସୁଙ୍କ କୃତ ରାମାଭିଷେକ ନାଟକରୁ ଅଭିନୟ ହୋଇଥିଲା । (୯ । ୨ । ୧୮୭୮) ବଙ୍ଗଳା ନାଟକର ଏହି ଅଭିନୟ ପର ମାର୍ଚ୍ଚ ମାସରେ ପୁନର୍ବାର ଦୁଇଥର ପାଇଁ ହୋଇଥିଲା । ଏଥର ଦେବକା ମଧ୍ୟ ଏଠା କାରିଗର ଦ୍ୱାରା ସୁନ୍ଦରରୂପେ ରଚିତ ହୋଇଥିବାରୁ ବହୁ ପ୍ରଶଂସା ଲାଭ କରିଥିଲା । ଏହି ସମ୍ବାଦରୁ ଜଣାଯାଏ ଯେ, ଅଭିନୟ ନିମନ୍ତେ 'ଏଠା ଲୋକଙ୍କର ରୁଚିର ଯତ୍ନ ଓ ୧୮୭୮ ମସିହା ବେଳକୁ ଆରମ୍ଭ ହୋଇସାରିଥିଲା ।

୧୮୭୬-୭୭ ମସିହା ବେଳକୁ ବମ୍ବେର ପାର୍ଶି-ଓପନ ଥିଏଟର ଏବଂ ସାଗର୍ଣ୍ଣ ଥିଏଟର କଟକ ଆସି ମ୍ୟୁନିସିପାଲିଟି ହତାରେ ଅଭିନୟ ପ୍ରଦର୍ଶନର ଆୟୋଜନ କରି ଏ ଦିଗରେ ଲୋକରୁଚି ନିର୍ମାଣରେ ସହାୟକ ହୋଇଥିଲେ । ଧୀରେ ଧୀରେ କଟକର ସ୍କୁଲ ଛାତ୍ରମାନେ ମଧ୍ୟ ଅଭିନୟ ପ୍ରତି ଆକୃଷ୍ଟ ହୋଇ ଏକମୁଖୀ ମଞ୍ଚରେ ଅଭିନୟ ପ୍ରଦର୍ଶନ କରିବାକୁ ଆରମ୍ଭ କରିଥିଲେ । ୧୮୮୦ ମସିହା ପର୍ଯ୍ୟନ୍ତ କଟକରେ କାଁଭାଁ ଯେଉଁସବୁ ନାଟକ ଅଭିନୟର ସମ୍ବାଦ ମିଳେ ସେଗୁଡ଼ିକ ହେଉଛି ବଙ୍ଗଳା ନାଟକ ବା ପ୍ରହସନ । ଇତିମଧ୍ୟରେ ଓଡ଼ିଆ ନାଟକ 'ବାବାଜୀ' ରଚିତ ଓ ଅଭିନୀତ ହୋଇ ଯାଇଥିଲେ ମଧ୍ୟ କଟକବାସୀ ତାହା ଦେଖିବାର ସୁଯୋଗ ପାଇନଥିଲେ । ନାଟ୍ୟକାର ରାମଶଙ୍କର ୧୮୮୦ ମସିହାରେ ତାଙ୍କର ପ୍ରସିଦ୍ଧ ନାଟକ 'କାଞ୍ଚିକାବେରୀ' ଲେଖି ସାରିଥିଲେ ଏବଂ ଏହାର ଅଭିନୟ ୧୮୮୧ ମସିହା ଫେବୃୟାରୀ ସାତତାରିଖରେ ପ୍ରଥମଥର ପାଇଁ କଟକରେ ଏକ ଅସ୍ଥାୟୀ ମଞ୍ଚରେ ହେଲା ।

ଏହା ପରଠୁ କଟକରେ ନିୟମିତ ନାଟକାଭିନୟର ସମ୍ବାଦ ଶୁଣିବାକୁ ମିଳୁଛି । ଉତ୍କଳଗୌରବ ମଧୁସୂଦନ, ତାଙ୍କ ଗୃହପରିସରରେ 'ଆମେଚର ଥିଏଟର' ଦଳ ଦ୍ୱାରା ୧୮୮୭ ମସିହାରେ ବଙ୍ଗଳା ହରିଶ୍ଚନ୍ଦ୍ର ନାଟକର ଅଭିନୟ କରାଇଥିବାର ମଧ୍ୟ ଜଣାଯାଏ । ଏହି ସମୟରେ କଟକଠାରେ ଏକ ସ୍ଥାୟୀ ରଙ୍ଗମଞ୍ଚର ସ୍ଥାପନ ନିମନ୍ତେ ଉଦ୍ୟମ ହୋଇଥିଲେ ହେଁ, ତାହା ଫଳବତୀ ହୋଇ ପାରିନଥିଲା ।

ନୟାଗଡ଼ର ରାଜା ଏଥିନିମନ୍ତେ ୫୦୦ ଟଙ୍କା ଦେବେ ବୋଲି ସମ୍ବାଦ ମଧ୍ୟ ପ୍ରଚାରିତ ହୋଇଥିଲା । ୧୮୮୯ ମସିହା ବେଳକୁ ମଧୁସୂଦନ ଦାସଙ୍କ ଉଦ୍ୟମରେ ତାଙ୍କ ଗୃହ ପରିସରରେ ପୁନର୍ବାର ନାଟ୍ୟାଭିନୟର ବ୍ୟବସ୍ଥା ହୋଇଥିଲା । ମଧୁବାବୁଙ୍କ ପ୍ରଚେଷ୍ଟାକୁ ପ୍ରଶଂସା କରି 'ଦୀପିକା' ଲେଖିଥିଲେ, "ମଧୁବାବୁଙ୍କ ଯତ୍ନରୁ ଏଠାରେ ନାଟକାଭିନୟ ଦର୍ଶନ ସହଜ ହୋଇଅଛି । (୧୬ । ୨ । ୧୮୮୯)

କଟକର ଉମାଚରଣ ବିଶ୍ୱାସ ଏହି ସମୟରେ 'ଜଗନ୍ନାଥ ଥିଏଟର' ନାମକ ଏକ ଦଳ ପ୍ରତିଷ୍ଠା କରି, ତାହାଦ୍ୱାରା କିଛି ନାଟକର ଅଭିନୟ କରାଇଥିଲେ । ମଧୁସୂଦନଙ୍କ କନିଷ୍ଠ ଭ୍ରାତା ଗୋପାଳବଲ୍ଲଭ ମଧ୍ୟ ନାଟ୍ୟପ୍ରେମୀ ଥିଲେ । ୧୮୯୨ ମସିହାର ମାର୍ଚ୍ଚ ମାସରେ ତାଙ୍କ ଗୃହଠାରେ ରାମଶଙ୍କରଙ୍କ ରଚିତ 'ବୁଢ଼ାଙ୍କର' ପ୍ରହସନ ଅଭିନୀତ ହୋଇଥିଲା । ଏତେବେଳକୁ କଟକରେ ତିନୋଟି ନାଟକଦଳ ନାଟକାଭିନୟର ଆୟୋଜନ କରୁଥିଲେ ବୋଲି ଜଣାଯାଇଥାଏ ।

ନାଟ୍ୟକାର ରାମଶଙ୍କର ନିଜ ନାଟକରେ ଅଭିନୟ ନିମନ୍ତେ ଗୋଟିଏ ଦଳ ତିଆରି କରିଥିଲେ । ଏହାଛଡ଼ା ଥିଲା ମଧୁସୂଦନଙ୍କ ନାଟ୍ୟଦଳ । ତିନିଦଳ ମଧ୍ୟରେ ନବପ୍ରତିଷ୍ଠିତ ଦଳ 'ଅତିଉତ୍ତମ' ଅଭିନୟ କରୁଥିଲେ ବୋଲି ସମ୍ବାଦରୁ ପ୍ରକାଶ ।

୧୮୯୫ ମସିହାରେ କଟକରେ ବାରିକମିସ୍ତ୍ରୀ ବଜାରର କେତେକ ଉତ୍ସାହୀ କର୍ମୀଙ୍କ ଉଦ୍ୟମରେ ଏକ ସ୍ଥାୟୀମଞ୍ଚ ପ୍ରତିଷ୍ଠିତ ହୋଇ ସେଥିରେ କେତେକ ବଙ୍ଗଳା

ନାଟକର ଅଭିନୟ ହୋଇଥିଲା । ଏହି ରଙ୍ଗମଞ୍ଚର ଆୟୁଷ ମାତ୍ର ଏକବର୍ଷ । ୧୮୯୪ ମସିହାରେ ତତ୍କାଳୀନ ଚିତ୍ରଶିଳ୍ପୀ ଘଣ୍ଟଶ ଚନ୍ଦ୍ର ସରକାର ପ୍ରତିଷ୍ଠା କରନ୍ତି 'ମାଗନେଟିକ ଥିଏଟର ।' ଏଥିରେ କେବଳ ବଙ୍ଗଳା ପୌରାଣିକ ନାଟକମାନ ଅଭିନୀତ ହେଉଥିଲା । ଏହା ବଞ୍ଚିରହିଲା ୧୮୯୬ ମସିହା ପର୍ଯ୍ୟନ୍ତ ।

୧୮୯୮ ମସିହାରେ କଟକ ବିନୋଦବିହାରଠାରେ 'ବୀଣାପାଣିଥିଏଟର' ପ୍ରତିଷ୍ଠିତ ହୁଏ । ଏହି ମଞ୍ଚ ୧୯୦୩ ମସିହାପର୍ଯ୍ୟନ୍ତ ନିୟମିତ ଏବଂ ୧୯୦୬ ମସିହା ପର୍ଯ୍ୟନ୍ତ ଯଥାକଥା ଚାଲି ଶେଷରେ ବନ୍ଦ ହୋଇଗଲା । ଏଠାରେ ମଧ୍ୟ ବଙ୍ଗଳା ନାଟକର ଅଭିନୟ କରାଯାଉଥିଲା । ୧୮୭୭ ମସିହାଠାରୁ କଟକରେ ଏକ ସ୍ଥାୟୀ ମଞ୍ଚ ସ୍ଥାପନ କରିବାର ଉଦ୍ୟମ ହୋଇ ଆସୁଥିଲେ ହେଁ ତାହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ପାରି-ନଥିଲା । ରଙ୍ଗମଞ୍ଚ ଗଢ଼ି ଉଠୁଥିଲା, ପୁଣି ଭାଙ୍ଗି ଯାଉଥିଲା । ଅବଶ୍ୟ ଇତିମଧ୍ୟରେ କୋଠପଦା ଏବଂ ପାରଳାଖେମୁଣ୍ଡିଠାରେ ସ୍ଥାୟୀ ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇସାରିଥିଲା । ତେବେ କଟକର ଅଭିନୟ ପରମ୍ପରା କେତେକ ସୌଖୀନଦଳ ଓ ସ୍କୁଲ୍ କଲେଜର ଛାତ୍ର-ମାନଙ୍କ ଦ୍ୱାରା ହିଁ ବଞ୍ଚି ରହିଥିଲା । ଏହି ଅବସ୍ଥା ବଳବତ୍ତର ରହିଲା ୧୯୧୦ ମସିହା ପର୍ଯ୍ୟନ୍ତ ।

ଏହି ବର୍ଷ କଟକର ମେହେନ୍ଦୀପୁରଠାରେ ଯାଜପୁରର ଜମିଦାର କୁଞ୍ଜବିହାରୀ ବୋଷଙ୍କ ପ୍ରଚେଷ୍ଟାରେ ଏକ ସ୍ଥାୟୀ ରଙ୍ଗମଞ୍ଚ ପ୍ରତିଷ୍ଠିତ ହେଲା । ଏହାର ନାମ ଦିଆଗଲା 'ବାସନ୍ତୀ ରଙ୍ଗମଞ୍ଚ' । ସର୍ବପ୍ରଥମେ ଏଠାରେ 'ମେଘନାଦ' ନାମକ ଏକ ବଙ୍ଗଳା ନାଟକର ଅଭିନୟ ହୋଇଥିଲା । କିଛିକାଳ ପୂର୍ବପର୍ଯ୍ୟନ୍ତ ସେହି ରଙ୍ଗମଞ୍ଚର ଧ୍ୱଂସାବଶେଷ ବିଦ୍ୟମାନ ଥିଲା । ଏହି ମଞ୍ଚରେ ୧୯୧୬ ପର୍ଯ୍ୟନ୍ତ ନିୟମିତ ଅଭିନୟ ହେଉଥିଲା ।

୧୯୧୩ ମସିହାରେ ରଜନୀକାନ୍ତ ବିଶ୍ୱାସ ଯେ କି 'ବାସନ୍ତୀ'ର ଜଣେ ପୃଷ୍ଠ-ପୋଷକ ଥିଲେ, ସେ ବାସନ୍ତୀ ସହିତ ସମସ୍ତ ସମ୍ପର୍କଛିନ୍ନ କରି ବାଙ୍କାବଜାରଠାରେ 'ଉଷାପେଣ୍ଡାଲ' ନାମରେ ଏକ ମଞ୍ଚ ସ୍ଥାପନ କଲେ ।

ବର୍ତ୍ତମାନ ଯେଉଁଠି ଜନତା ରଙ୍ଗମଞ୍ଚ ରହିଛି 'ଉଷା' ସେଇଠାରେ ଥିଲା ଏବଂ ଏଠାରେ ମଧ୍ୟ ବଙ୍ଗଳା ନାଟକ ଅଭିନୀତ ହେଉଥିଲା । ତେବେ 'ଉଷା' ମଞ୍ଚର ପ୍ରଥମ ଓଡ଼ିଆ ନାଟକ ହେଉଛି 'ଭିକାରିଚରଣଙ୍କ ରଚିତ 'ନନ୍ଦକେଶରୀ' ନାଟକ । ୧୯୧୬ ମସିହାରେ ଏହାର ଅଭିନୟ ହୋଇଥିଲା ଏବଂ ଏଥିରେ କାଳୀଚରଣ ନାୟିକା ଭୂମିକାରେ ଅଭିନୟ କରିଥିଲେ ।

ଏଥିରୁ ଯାହା ଦେଖାଯାଉଛି, ଊନବିଂଶ ଶତକର ଶେଷପାଦ ତଥା ବିଂଶ ଶତକର ପ୍ରଥମ ଦୁଇଦଶକ, ଏହି ସମୟସୀମା ମଧ୍ୟରେ କଟକଠାରେ ଦୁଇଟି ସ୍ଥାୟୀ ମଞ୍ଚ ସ୍ଥାପିତ ହୋଇଥିଲା । ମାତ୍ର ଏଗୁଡ଼ିକ କେହି ଦୀର୍ଘଜୀବୀହୋଇ ପାରିନଥିଲେ । ସୌଖୀନ

ଅଭିନୟଦଳ ଅସ୍ଥାୟୀ ମଞ୍ଚରେ ଅଭିନୟର ଆୟୋଜନ କରି ଅଭିନୟ ପରମ୍ପରାକୁ କୌଣସି ମତେ ବଞ୍ଚାଇ ରଖିଥିଲେ ମାତ୍ର ।

ଦୀର୍ଘଦିନଧରି କଟକରେ ଆଉ କୌଣସି ମଞ୍ଚସ୍ଥାପନର ଉଦ୍ୟମ ହୋଇନଥିଲା, ହେଲେ ବି ଅଭିନୟ କାର୍ଯ୍ୟ ବନ୍ଦନଥିଲା । ଇତିମଧ୍ୟରେ ପୁରୀଜିଲ୍ଲାର ବଳଙ୍ଗାଠାରେ ୧୯୧୦-୧୧ ବେଳକୁ ବନମାଳୀ ପତି ପ୍ରତିଷ୍ଠା କରି ସାରିଥିଲେ 'ରାଧାକୃଷ୍ଣ ଥିଏଟର' ।

ଏହାଥିଲା ଏକ ଭ୍ରାମ୍ୟମାଣ ଦଳ ଏବଂ ମଝି ମଝିରେ କଟକ ଆସି ଅଭିନୟ ଦେଖାଉଥିଲା । ୧୯୨୭ ମସିହାରେ ଏହାର ପ୍ରତିଷ୍ଠାତା ବନମାଳୀ ପତି ଅକାଳରେ ଏକ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ଦଳ ଭାଙ୍ଗିଗଲା । ଏ ଭିତରେ ନାଟକାଭିନୟ ସୂତ୍ରରେ ଅଶ୍ୱିନୀବାବୁଙ୍କର ଏହି ଦଳ ସହିତ ଘନିଷ୍ଠ ପରିଚୟ ହୋଇଥିଲା । ବାଧ୍ୟ-ବାଧକତାରେ ଅଶ୍ୱିନୀବାବୁ ଦଳର ସମସ୍ତ ସତ୍ତ୍ୱ କିଣିନେଇ ତାହାର ନାମକରଣ କଲେ 'ବନମାଳୀ ଆର୍ଟ ଥିଏଟର' ଏବଂ ୧୯୨୮ ମସିହାଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ଏହି ଦଳ ନାଟକାଭିନୟ କରୁଥିଲେ ।

ଏଥିପାଇଁ ଅଶ୍ୱିନୀକୁମାରଙ୍କୁ ସର୍ବସ୍ୱାନ୍ତ ହେବାକୁ ପଡିଥିଲା । ଏହାର କୌଣସି ସ୍ଥାୟୀ ମଞ୍ଚ ନଥିଲା ଏବଂ ଏହା ଭ୍ରାମ୍ୟମାଣ ଦଳଥିଲା । ତଥାପି କଟକରେ ଆର୍ଟଥିଏଟରର ବେଶ୍ ସୁନାମଥିଲା । ଅଶ୍ୱିନୀକୁମାର ଦଳକୁ ବଞ୍ଚାଇ ରଖିବା ପାଇଁ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ । ଏଭଳିକି ଜୟପୁରର ମହାରାଜାଙ୍କୁ ପ୍ରବର୍ତ୍ତାଇ ତାଙ୍କଠାରୁ ଦଶହଜାର ଟଙ୍କାର ସାହାଯ୍ୟର ପ୍ରତିଶ୍ରୁତି ପାଇ କଟକଠାରେ 'ବିକ୍ରମଥିଏଟର' ନାମରେ ସ୍ଥାୟୀରଙ୍ଗମଞ୍ଚ ପ୍ରତିଷ୍ଠା କରିବା ନିମନ୍ତେ ସବୁପ୍ରକାର ଉଦ୍ୟମ କରିଥିଲେ । ଜମିଇତ୍ୟାଦି ମଧ୍ୟ କିଣା ସରିଥିଲା । ମାତ୍ର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କର ପ୍ରତାରଣା, ଏହି ଯୋଜନାକୁ ଅସମ୍ପୂର୍ଣ୍ଣ ରଖିଦେଲା । ଅଶ୍ୱିନୀକୁମାର ବ୍ୟର୍ଥହୋଇଗଲେ ।

ଏହାପରେ ପ୍ରାୟ ଗୋଟିଏ ସମୟରେ 'ଅନ୍ନପୂର୍ଣ୍ଣା ଥିଏଟର' ଏବଂ 'ଓଡ଼ିଶା ଥିଏଟର' କଟକରେ ଆତ୍ମପ୍ରକାଶ କରିଥିଲେ । କାଳୀଚରଣ ୧୯୨୯ ମସିହାରୁ ପୁରୀଠାରେ ତାଙ୍କର ସେକାଳର ପ୍ରସିଦ୍ଧ ରାସଦଳ 'ସାକ୍ଷୀଗୋପାଳନାଟ୍ୟ ସଂଘ' ପ୍ରତିଷ୍ଠା କରି, ସାରା ଓଡ଼ିଶା ବୁଲି ବୁଲି ଅଭିନୟ ପ୍ରଦର୍ଶନ କରୁଥିଲେ । ୧୯୩୯ ମସିହାରେ ଏହି ଦଳର ଧ୍ୱଂସାବଶେଷକୁ ନେଇ ପ୍ରତିଷ୍ଠିତ ହେଲା 'ଓଡ଼ିଶା ଥିଏଟର୍ସ ।'

ଏହା ବାଙ୍କାବଜାରରେ ଯେଉଁ ଆଜି ଜନତା ରଙ୍ଗମଞ୍ଚ ରହିଛି; ଠିକ୍ ସେହି ଜାଗାରେ ଥିଲା । ଗୋଟିଏ ଦଶନ୍ଧି (୧୯୩୯-୪୯)ର ଏହା ଜୀବନ କାଳ ମଧ୍ୟରେ, ଏହି ଦଳ ଓଡ଼ିଶାର ଅଭିନୟ ପରମ୍ପରାରେ ଏକ ନବଯୁଗ ପ୍ରତିଷ୍ଠା କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । କାଳୀଚରଣ ଅଭିନୟକୁ ଗ୍ରହଣ କରିଥିଲେ ଏକ ବ୍ୟବସାୟ ରୂପେ । ତେଣୁ ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ସବୁବେଳେ ଚେଷ୍ଟା କରୁଥିଲେ । ସେ ସ୍ୱୟଂ ନାଟ୍ୟକାର । ଅଭିନେତା, ନିର୍ଦ୍ଦେଶକ, ସଙ୍ଗୀତକାର ନୃତ୍ୟ ପରିଚାଳକ ଏବଂ ସର୍ବୋପରି

ଜଣେ ସୂତ୍ରଧରଙ୍କ ହୋଇଥିବାରୁ ଓଡ଼ିଶା ଥିଏଟର ବଞ୍ଚିଥିବା ପର୍ଯ୍ୟନ୍ତ ବିଶେଷ କୌଣସି ସମସ୍ୟାର ସମ୍ମୁଖୀନ ହୋଇନାହିଁ ।

ତେବେ ୧୯୪୫ ମସିହା ବେଳକୁ ଦଳ ମଧ୍ୟରେ ଅର୍ଥଗତ କାରଣରୁ ଏକ ଅଶାନ୍ତି ସୃଷ୍ଟି ହୋଇ ଏହାର କେତେକ ମୁଖ୍ୟ କଳାକାର ଦଳ ଛାଡ଼ି ବାହାରି ଯାଇ ନବ ପ୍ରତିଷ୍ଠିତ 'ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ମଞ୍ଚରେ ଯୋଗ ଦେଇଥିଲେ । ତଥାପି କାଳୀଚରଣ ହାହାସ ନହୋଇ ୧୯୪୯ ମସିହା ପର୍ଯ୍ୟନ୍ତ ଦଳକୁ ବଞ୍ଚାଇ ରଖିଥିଲେ । 'ଫଟାଭୂଇଁ' ହେଉଛି, କଟକରେ ଓଡ଼ିଶା ଥିଏଟରର ଶେଷ ନାଟକ । ବାହାରକୁ ଯାଇ ଅବ୍ୟବସ୍ଥା ଯୋଗୁ ଦଳ ଭାଙ୍ଗିଗଲା । ପାରିବାରିକ ଅସୁବିଧା ଯୋଗୁଁ କାଳୀଚରଣ ମଧ୍ୟ ସେତେବେଳେ ଏ ବିଷୟରେ କୌଣସି ପଦକ୍ଷେପ ନେଇ ପାରିଲେ ନାହିଁ । ତେବେ ଏହା ସ୍ୱୀକାର କରାଯାଇ ପାରେ ଯେ, 'ଓଡ଼ିଶା ଥିଏଟର' ହେଉଛି, କେବଳ କଟକର ନୁହେଁ, ସମଗ୍ର ଓଡ଼ିଶାରେ ଅଭିନୟ କ୍ଷେତ୍ରରେ ଏକ ମାଇଲ୍ ଖୁଣ୍ଟି ।

ଏହାପରେ ଆସୁଛି 'ଅନ୍ନପୂର୍ଣ୍ଣା ମଞ୍ଚ' କଥା । ଖଣ୍ଡୁଆଳକୋଟ ଗ୍ରାମରେ ୧୯୩୩ ମସିହାରେ ଏକ ଅପେରା ଦଳ ସ୍ଥାପନ କରନ୍ତି ସୋମନାଥ ଦାସ । ୧୯୩୫ ମସିହାରେ ଏହି ଦଳରେ ଯୋଗ ଦିଅନ୍ତି ବାଉରୀବନ୍ଧୁ ମହାନ୍ତି । ୧୯୩୭ରେ ଆର୍ଟ ଥିଏଟରର ପତନ ପରେ ପ୍ରଥମେ ରାମଚନ୍ଦ୍ର ମାଣିଆ ଏବଂ ପରେ ଅନ୍ୟ କେତେକ କଳାକାର ଏହି ଦଳରେ ଯୋଗ ଦିଅନ୍ତି । ଏହି ସମୟରେ ହିଁ ଦଳକୁ ଥିଏଟର ଦଳ ରୂପରେ ପରିଣତ କରିବା ନିମନ୍ତେ ଉଦ୍ୟମ ଆରମ୍ଭ ହୁଏ । ନାମକରଣ କରାଯାଏ 'ଅନ୍ନପୂର୍ଣ୍ଣା ଥିଏଟର' ।

୧୯୩୯ ମସିହାରେ ପି:ଡବ୍ଲୁ:ଡି: ନାମକ ଏକ ବଙ୍ଗଳା ନାଟକର ଅନୁବାଦ (ଶ୍ରୀ କାର୍ତ୍ତିକ କୁମାର ଘୋଷଙ୍କ କୃତ) ଅଭିନୟ କରି ଏହି ଦଳ ନିଜର ମଞ୍ଚ ଜୀବନ ଆରମ୍ଭ କରେ ଏବଂ ଅଚିରେ ପ୍ରତିଷ୍ଠିତ ହୋଇଯାଏ । ପରେ ଏଥିରେ ଅଶ୍ୱିନୀକୁମାରଙ୍କର ନାଟକ ଅଭିନୀତ ହୁଏ ।

ଏହା ଥିଲା ଏକ ଭ୍ରାମ୍ୟମାଣ ଦଳ । କ୍ରମଶଃ ଦଳରେ କଳାକାର ସଂଖ୍ୟା ବୃଦ୍ଧି ପାଇବାରୁ ଏହାକୁ ଦୁଇ ଭାଗରେ ବିଭକ୍ତ କରି ପ୍ରଥମ ଦଳ ପୁରୀଠାରେ ଏବଂ ଦ୍ୱିତୀୟ ଦଳ କଟକ ଠାରେ ସ୍ଥାୟୀ ରଙ୍ଗମଞ୍ଚ ସ୍ଥାପନ କରି ଅଭିନୟ ଦେଖାଇବାର ପରିକଳ୍ପନା ଗତ ନିଷ୍ପତ୍ତି ନିଆଯାଏ । ୧୯୪୫ ମସିହାରେ କଟକ ଦଳ (ଯାହାକୁ କୁହାଯାଉଥିଲା 'ଅନ୍ନପୂର୍ଣ୍ଣା ବି ଗ୍ରୁପ) ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କର 'ମ୍ୟାନେଜର' ନାଟକର ଅଭିନୟ ଦେଖାଇ ନିଜର ମଞ୍ଚ ଜୀବନ ଆରମ୍ଭ କରେ ।

ତାହା ପରେ ସାର୍ଦ୍ଧ ତେଇଶ ବର୍ଷ ଧରି (୧୯୪୫-୬୮) ତିନିକୋଣିଆ ବଗିଚାର ସ୍ଥାୟୀ ମଞ୍ଚରେ ଅଭିନୟ ଦେଖାଇ ବହୁ ନାଟ୍ୟକାର, କଳାକାର ଇତ୍ୟାଦି ସୃଷ୍ଟି କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ଏହି ସମସ୍ତ ନାଟ୍ୟକାର ଏବଂ

କଳାକାରମାନେ ଆଜ ଓଡ଼ିଶାର ନାଟକ ଜଗତର ଜଣେ ଜଣେ ଦିକ୍‌ପାଳ । ପରେ ଆଭ୍ୟନ୍ତରୀଣ ବିବାଦ, ଆର୍ଥିକ ଦୁରବସ୍ଥା, ପରିଚାଳକଙ୍କର ମୃତ୍ୟୁ, ଅଭିନେତା-ଅଭିନେତ୍ରୀମାନଙ୍କର ଦଳତ୍ୟାଗ, ସର୍ବୋପରି ନାଟକାଭିନୟ ପ୍ରତି ଦର୍ଶକମାନଙ୍କର ବୀତସ୍ପୃହତା ପ୍ରଭୃତି ନାନା କାରଣରୁ ଏହି ଦଳଟି ଭାଙ୍ଗି ଯାଇଛି ଏବଂ ପୁଣିରେ ଏହାର ଅନ୍ୟ ଦଳଟି କୌଣସି ମତେ ବଞ୍ଚି ରହିଛି ।

ଓଡ଼ିଶାର ରଙ୍ଗମଞ୍ଚର ଇତିହାସରେ 'ଓଡ଼ିଶା ଥିଏଟର' ଏବଂ 'ଅନ୍ନପୂର୍ଣ୍ଣା ଥିଏଟର' ଏ ଦୁଇଟି ମଞ୍ଚର ନାମ ନିଶ୍ଚିତ ଭାବରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ଅଭିନୟକୁ ବ୍ୟବସାୟ ରୂପରେ ପ୍ରତିଷ୍ଠିତ କରିବାର ଯେଉଁ ଉଦ୍ୟମ ଏକଦା ବନମାଳୀ ପତି ଆରମ୍ଭ କରିଥିଲେ । ପୂର୍ବୋକ୍ତ ଦୁଇଦଳ ହିଁ ତାହାର ସାର୍ଥକ ରୂପାୟନ କରି ପାରିଥିଲେ ଏହି ଦଳ ଦୁଇଟିର ବିଲୁପ୍ତି ଓଡ଼ିଶାର ଅଭିନୟ ଜଗତ ପାଇଁ ଅପୂରଣୀୟ କ୍ଷତି ବୋଲି କୁହାଯାଇପାରେ ।

କଟକର ମାଣିକଘୋଷ ବଜାରରେ ୧୯୪୨ ମସିହାର ଶେଷ ଭାଗକୁ ପ୍ରତିଷ୍ଠିତ ହୋଇଥିବା 'ଭାରତୀ ଥିଏଟର' ପ୍ରାୟ ଓଡ଼ିଶା ଥିଏଟରର ସମସାମୟିକ । କେତେକ କଳାପ୍ରାଣ ଉତ୍ସାହୀ ଯୁବକଙ୍କ ଉଦ୍ୟମରେ ପ୍ରଥମେ ସୌଖୀନ ଦଳ ରୂପରେ ଏବଂ ପରେ ବ୍ୟବସାୟିକ ଦଳ ଭାବେ ଏହାର ଆତ୍ମପ୍ରକାଶ । ମାତ୍ର ବର୍ଷକର ଆୟୁଷ୍କାଳ ମଧ୍ୟରେ ଏହି ଦଳଟି ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । 'ଓଡ଼ିଶା ଥିଏଟର' କଟକରେ ସ୍ଥାୟୀ ଭାବରେ ଆତ୍ମପ୍ରକାଶ କରେ ଏହି ସମୟରେ । ଫଳରେ ଭାରତୀ ଥିଏଟରର ସାମୂହିକ କ୍ଷତି ହୁଏ ।

ଏହାର ଉଦ୍ୟୋକ୍ତାମାନେ ଥିଲେ ଗୁରୁକଞ୍ଚୁକ । ଦଳର ସ୍ଥିତି ସହିତ କାହାର ସ୍ଥିତି ଜଡ଼ିତ ନଥିଲା । ଓଡ଼ିଆ ନାଟକ ପାଇଁ ଏହି ଦଳର ସ୍ଥାୟୀ ଅବଦାନ ହେଉଛନ୍ତି ନାଟ୍ୟକାର ରାମଚନ୍ଦ୍ର ମିଶ୍ର । ଏହାଙ୍କ ରଚିତ ପ୍ରଥମ ନାଟକ 'ଅଭିମାନ' ଭାରତୀ ଥିଏଟର ଦ୍ୱାରା ଅଭିନୀତ ହୋଇ ନାଟ୍ୟକାରଙ୍କୁ ମଞ୍ଚ ପ୍ରବେଶର ସୁଯୋଗ ଦେଇଥିଲା । ଏହି ସମୟରେ 'ଓଡ଼ିଶା ଥିଏଟର'ରେ କାଳୀଚରଣଙ୍କ ରଚିତ 'ଚୁମ୍ବନ' ନାଟକ ଅଭିନୀତ ହେଉଥିଲା । କାଳୀଚରଣ ବିଜ୍ଞାପନରେ ପ୍ରଚାର କରାଇଥିଲେ । ଅଭିମାନର ଶ୍ରେଷ୍ଠ ମହୌଷଧି ଚୁମ୍ବନ ।

ଏଥିରୁ ଭାରତୀ ଥିଏଟରର ସାଫଲ୍ୟ ସମ୍ପର୍କରେ କାଳୀଚରଣଙ୍କର ମନୋଭାବଟି ସ୍ପଷ୍ଟ ଜଣାଯାଇ ଥାଏ । ନୂତନ ନାଟ୍ୟକାରଙ୍କର ଆତ୍ମବିଶ୍ୱାସ ମଧ୍ୟ ଏହା ଫଳରେ ବୃଦ୍ଧି ପାଇଥିଲା । ପରବର୍ତ୍ତୀ କାଳର ପ୍ରଖ୍ୟାତ ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟ ମଧ୍ୟ ଏହି ମଞ୍ଚରେ ଆତ୍ମପ୍ରକାଶ କରିଥିଲେ ଜଣେ ଅଭିନେତା ରୂପେ ।

ଏହା ବ୍ୟତୀତ କଟକର କେତୋଟି ସୌଖୀନ ନାଟ୍ୟ ସଂସ୍ଥା ମଧ୍ୟ ଏଠାରେ ସ୍ଥାୟୀ ମଞ୍ଚ ସ୍ଥାପନ କରିବା ନିମନ୍ତେ-ବିଶେଷ ସକ୍ରିୟ ହୋଇ ଥିବାର ଜଣାଯାଏ । ୧୯୧୯

ମସିହାରେ ବଡ଼େଇ ସାହି (ବକ୍ସି ବଜାର) ଠାରେ 'ବୀଣାପାଣି କ୍ଲବ' ନାମକ ଏକ ସାଂସ୍କୃତିକ ଦଳ ପ୍ରତିଷ୍ଠିତ ହୁଏ । ୧୯୨୧ ମସିହାରେ ଏହାର ଏକ ସ୍ଥାୟୀ ପ୍ରେକ୍ଷାଳୟ ସ୍ଥାପିତ ହୁଏ, ଯାହା ଅଦ୍ୟାବଧି ରହିଛି ।

ଏଠାରେ କେବଳ ବଙ୍ଗଳା ନାଟକମାନ ଅଭିନୀତ ହେଉଥିଲା । ଡାକ୍ତର ଆଶୁତୋଷ ରକ୍ଷିତଙ୍କ ରଚିତ 'ମଯାତି' ହେଉଛି ଏହି ଦଳର ପ୍ରଥମ ଓଡ଼ିଆ ନାଟକ । ୧୯୩୫ ମସିହା ପର୍ଯ୍ୟନ୍ତ ଏଠାରେ ନିୟମିତ ଏବଂ ପରେ ସାମୟିକ ଭାବରେ ଅଭିନୟ ହୋଇ ଆସୁଛି ।

୧୯୨୨ ମସିହାରେ କଟକର କାଠଗଡ଼ା ସାହିରେ ପ୍ରତିଷ୍ଠିତ ହୁଏ 'ଉମାକାନ୍ତ ସମିତି' ନାମକ ଏକ ସାଂସ୍କୃତିକ ଅନୁଷ୍ଠାନ । ଏଠାରେ ନିୟମିତ ଭାବରେ ଐତିହାସିକ ଏବଂ ପୌରାଣିକ ନାଟକମାନ ଅଭିନୀତ ହେଉଥିଲା । ଏହି ଦଳ ରାମଚନ୍ଦ୍ର ମହାପାତ୍ରଙ୍କର 'ସୁଦାମା' 'ରଘୁ ଅରକ୍ଷିତ' ଏବଂ ଭିକାରୀ ଚରଣଙ୍କର 'ରାଜା ପୁରୁଷୋତ୍ତମ' ନାଟକକୁ ମଞ୍ଚସ୍ଥ କରାଇଥିଲେ । ୧୯୩୦ ମସିହା ପର୍ଯ୍ୟନ୍ତ ଏହି ଦଳ ବହୁ ନାଟକ ମଞ୍ଚସ୍ଥ କରାଇଛନ୍ତି । ପରେ ଏହା ଭାଙ୍ଗି ଯାଏ ।

୧୯୪୮-୪୯ ବେଳକୁ କଟକରେ ରେଭେନସା କଲେଜ ଅଞ୍ଚଳରେ ଯେଉଁଠି ଖ୍ରୀମା ବରଫ କଳ ଅଛି, ଠିକ୍ ତାହାର ବିପରୀତ ପାର୍ଶ୍ୱରେ ଆତ୍ମପ୍ରକାଶ କରେ 'ରୂପଶ୍ରୀ ଥିଏଟର' । ବର୍ତ୍ତମାନ କମ୍ପାଉଣ୍ଡ ଲଗାଏତ୍ତ ଜଣେ ମାଡ଼ୁଆଡ଼ିଙ୍କର ଗୋଦାମ ଘରେ ଏହି ମଞ୍ଚ ସ୍ଥାପିତ ହୋଇଥିଲା । ଏହାର ସ୍ୱତ୍ତ୍ୱାଧିକାରୀ ଥିଲେ 'ରୂପ ଭାରତୀ ପ୍ରାଇଭେଟ୍ ଲିମିଟେଡ୍' ।

ଯେଉଁମାନେ ୧୯୪୯ ମସିହାରେ 'ଶ୍ରୀଜଗନ୍ନାଥ' ନାମକ ଏକ ଅତ୍ୟନ୍ତ ଲୋକ-ପ୍ରିୟ ଓଡ଼ିଆ ଚଳଚ୍ଚିତ୍ର ପ୍ରସ୍ତୁତ କରି ପ୍ରଚୁର ଲାଭବାନ ହୋଇଥିଲେ । ଏଥିରେ କଳାକାର ରୂପେ ଯୋଗ ଦେଇଥିଲେ ଅନ୍ନପୂର୍ଣ୍ଣା ତଥା ଓଡ଼ିଶା ଥିଏଟରରୁ ବାହାରି ଯାଇଥିବା କେତେଜଣ କଳାକାର । ପରିଚାଳକ ଥିଲେ ଶ୍ରୀ ସୁରେନ୍ଦ୍ର ନାଥ ଦାସ । ପ୍ରଥମରୁ ଦଳଟି ଥିଲା ଭ୍ରାମ୍ୟମାଣ । ପରେ ଦଳର ଆଭ୍ୟନ୍ତରୀଣ ବିବାଦ ଉତ୍କଟ ହେବାରୁ ସେକାଳର ଜଣେ ନାଟ୍ୟକାର ଶ୍ରୀ ଲକ୍ଷ୍ମୀଧର ନାୟକ ଏହାର ଦାୟିତ୍ୱ ବହନ କରିଥିଲେ ।

୧୯୫୦ ମସିହା ବେଳକୁ ଦଳପାଇଁ ଗୋଟିଏ ସ୍ଥାୟୀ ମଞ୍ଚ ନିର୍ମାଣ କରିଯିବାର ପ୍ରସ୍ତାବ ହେଲା । ଧର୍ମାନନ୍ଦ ମହାନ୍ତିଙ୍କର 'ଚଉଠି ରାତି' ଆନନ୍ଦ ଶଙ୍କରଙ୍କର 'ସମାଧି, ପ୍ରଭୃତି ନାଟକ ଏହି ଦଳ ଦ୍ୱାରା ଅଭିନୀତ ହୋଇଥିଲା । ସଫଳତା ପାଇଁ ଗୋଟିଏ ଥିଏଟର ପାର୍ଟିର ଯାହା ଆବଶ୍ୟକ, ସେ ସବୁ ଏ ଦଳର ଥିଲା । ଷୋହଳ ମାସ ଧରି ଲକ୍ଷ୍ମୀଧର ନାୟକ ଦଳଟିକୁ ଠିକ୍ ବାଟରେ ପରିଚାଳନା କରିବାକୁ ଯଥାସମ୍ଭବ ଉଦ୍ୟମ କରି ମଧ୍ୟ କୃତକାର୍ଯ୍ୟ ହେଲେ ନାହିଁ । ସମ୍ଭବତଃ ୧୯୫୧ରେ ମଧ୍ୟ ଭାଗକୁ ବ୍ୟକ୍ତି ବିଶେଷଙ୍କର ଅସହଯୋଗ ମନୋଭାବରୁ ଦଳର ପତନ ହେଲା ।

୧୯୫୩ ମସିହା ଅକ୍ଟୋବର ୧୭ ତାରିଖରେ ଏକ ନୂତନ ସ୍ଥାୟୀ ମଞ୍ଚ ବାଙ୍କା ବଜାରରେ 'ଓଡ଼ିଶା ଥିଏଟର'ର ଭିତ୍ତି ଉପରେ ଆତ୍ମପ୍ରକାଶ କଲା—ଯାହାର ନାମ ହେଉଛି ଜନତା ରଙ୍ଗମଞ୍ଚ । ଓଡ଼ିଶା ଥିଏଟରର କେତେକ କଳାକାର ଅନ୍ନପୂର୍ଣ୍ଣା ଏବଂ ରୂପଶ୍ରୀ ବାଟ ଦେଇ ନବ ପ୍ରତିଷ୍ଠିତ ମଞ୍ଚରେ ଯୋଗ ଦେଲେ ।

ରଙ୍ଗମଞ୍ଚର ପ୍ରାଥମିକ ବ୍ୟୟ ସେତେବେଳର ଶିଳ୍ପପତି ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ବହନ କରାଯାଇଥିଲା । ଏହାର ପରିଚାଳନା ଦାୟିତ୍ୱ ବହନ କରିଥିଲେ ଏକ ନିର୍ବାଚିତ ଗୋଷ୍ଠୀ ଏବଂ ଏହାର କୌଣସି ବ୍ୟକ୍ତିଗତ ମାଲିକାନା ନଥିଲା । ମଞ୍ଚ ପ୍ରତିଷ୍ଠାର ଉତ୍ତେଜନା କେତେକ ପରିମାଣରେ କଟିଯିବା ଫଳରେ ଦଳରେ ଦୁଇ ଗୋଷ୍ଠୀ ବିବାଦ ଆରମ୍ଭ ହୋଇଗଲା । ପରିଚାଳନା କ୍ଷେତ୍ରରେ ଗୁରୁତର ସଙ୍କଟ ସୃଷ୍ଟି ହେବାରୁ ମାନେଜରଙ୍କଠାରୁ ଚାବି ନେଇ ଅଣାଗଲା । ୧୯୬୦ ମସିହାରେ ଏହାକୁ ୧୮୬୦ ମସିହାର ରେଜିଷ୍ଟ୍ରେସନ ଅଫ୍ ସୋସାଇଟିର ଆକ୍ଟ ଅନୁସାରେ ରେଜେଷ୍ଟ୍ରି କରି ଦିଆଗଲା । ନୂତନ ପରିଚାଳକ ଆସିଲେ । କେଉଁଠି କିଛି ହେଲା ନାହିଁ । ଦୁଇ ଦଶନ୍ଧି ଧରି ବଞ୍ଚି ରହିବା ପରେ ଏ ଦଳ ମଧ୍ୟ ଶେଷରେ ପୂର୍ବ ଦଳଗୁଡ଼ିକର ପନ୍ଥାଙ୍କ ଅନୁସରଣ କଲା । ଯୌତୁକ, ଭରସା, ପରକଲମ, ନଷ୍ଟ ଉର୍ବଶୀ, ବନ୍ଦିତା, ଉଠା ପାରେଇ, ମଲାଜହ୍ନ, ଯାଯାବର, ଲୁହା ଶିକୁଳି, ଭୁଲି ହୁଏନା, କାପୁରୁଷ, ଧୃତରାଷ୍ଟ୍ର ଓ ଗାନ୍ଧାରୀ ପ୍ରଭୃତି ବେଶ୍ ଭଲ ନାଟକ କେତେଗୁଡ଼ିଏ ଏହି ମଞ୍ଚ ଦ୍ୱାରା ମଞ୍ଚସ୍ଥ ହୋଇଛି ।

ଗୋପାଳ ଛୋଟରାୟ, ଆନନ୍ଦଶଙ୍କର ଦାସ, ବଳରାମ ମିଶ୍ର, କମଳଲୋଚନ ମହାନ୍ତି, ବିଜୟ ମିଶ୍ର, କାର୍ତ୍ତିକକୁମାର ଘୋଷ, ଯଦୁନାଥ ଦାଶମହାପାତ୍ର ପ୍ରମୁଖ ନାଟ୍ୟକାରମାନେ ଏହି ମଞ୍ଚ ନିମନ୍ତେ ନାଟକ ଲେଖିଛନ୍ତି । ନୂତନ ନାଟକ ସୃଷ୍ଟି ନିମନ୍ତେ ଏହି ମଞ୍ଚ ଯେଉଁ ସୁଯୋଗ ଦେଇଥିଲା ସେଥିପାଇଁ ରଙ୍ଗମଞ୍ଚର ଇତିହାସରେ ଏହାର ସ୍ଥାନ ଚିରଦିନ ନିର୍ଦ୍ଦିଷ୍ଟ ରହିବ ।

ଜନତା-ଦଳର ପତନ ଅନିବାର୍ଯ୍ୟ ହୋଇଯିବା ସମୟରେ ପୁନର୍ବାର ଏକ ନୂତନ ଦଳ ଗଢ଼ିବାର ଉଦ୍ୟମ ଆରମ୍ଭ ହେଲା । ପରିଣାମରେ ଆତ୍ମପ୍ରକାଶ କଲା ୧୯୭୭ ମସିହା ଏପ୍ରିଲ ଅଠର ତାରିଖରେ 'କଳାଶ୍ରୀ ଥିଏଟର' ନାମକ ଏକ ନୂତନ ମଞ୍ଚ ବାଦାମବାଡ଼ି ବସ୍‌ଷ୍ଟାଣ୍ଡର ଅଦୂରବର୍ତ୍ତୀ ଉତ୍କଳ ସଂଗୀତ କଳା ମଣ୍ଡପ ନିକଟରେ । ଏହି ମଞ୍ଚ ପ୍ରତିଷ୍ଠିତ ହେଲା ଏବଂ ଅଦ୍ୟାବଧି ରହିଛି ମଧ୍ୟ ।

ଜନତାର କିଛି କଳାକାରଙ୍କ ସହିତ ଏଥିରେ ଯୋଗଦେଲେ କିଛି ନୂତନ କଳାକାର । ପରିଚାଳନା ନିମନ୍ତେ ଗୋଟିଏ କାର୍ଯ୍ୟକାରୀ ସମିତି ରହିଲା । ମାତ୍ର ଏହା ଦୀର୍ଘାୟୁ ହୋଇ ରହିପାରିଲା ନାହିଁ । ଅଶୀ ଦଶକର ପ୍ରଥମ ପାଦରେ ଏହା ଶେଷ ନିଃଶ୍ୱାସ ତ୍ୟାଗ କଲାବେଳକୁ ଦଳୀୟ ଅସନ୍ତୋଷର ସ୍ୱର ଶୁଣା ଯିବାକୁ ଆରମ୍ଭ କରିଥିଲା । ତେବେ ଦର୍ଶକମାନେ ଆଉ ରଙ୍ଗମଞ୍ଚ ସହିତ ସହଯୋଗ କରିବାକୁ ପ୍ରସ୍ତୁତ ନଥିଲେ ।

ଓଡ଼ିଆ ନାଟକର ଚୋନୁଗତକତା ସେମାନଙ୍କୁ ପ୍ରଭାବିତ କରିପାରୁ ନଥିଲା । ମନୋ-ରଞ୍ଜନ ପାଇଁ ସେମାନେ ଯାହା ଚାହୁଁଥିଲେ, ମଞ୍ଚ ତାହା ସେମାନଙ୍କୁ ଯୋଗାଇ ଦେଇପାରୁ ନଥିଲା । ବସ୍ତୁତଃ କଳାଶ୍ରୀମଞ୍ଚ ହେଉଛି, ଏପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇଥିବା ମଞ୍ଚମାନଙ୍କ ମଧ୍ୟରେ ଶେଷ ବ୍ୟବସାୟୀ ମଞ୍ଚ ।

ଏହାର ଜୀବନ କାଳ ସଂକ୍ଷିପ୍ତ ହୋଇପାରେ, ମାତ୍ର ମଞ୍ଚ କଳାର ପ୍ରସାରରେ ଏହାର ଭୂମିକା ଆଦୌ ଗୁରୁତ୍ୱହୀନ ନୁହେଁ । କେତେକ ପ୍ରଖ୍ୟାତ ଉପନ୍ୟାସର ନାଟ୍ୟରୂପ ଏହି ମଞ୍ଚରେ ଅଭିନୀତ ହୋଇଥିଲା । ମାଟିର ମଣିଷ, ଶାସ୍ତି, ହାଡ଼ମାଟି, ଛମାଣ ଆଠଗୁଣ୍ଠ ପ୍ରଭୃତି । ସୂର୍ଯ୍ୟସ୍ନାନ, କାଳଜ୍ୟୋତ୍ସ୍ନା, ମଧୁଚରଣ, ଅଶ୍ରୁତର୍ପଣ, କ୍ଷମା କରିବେକ, ବାଉଁଶବାଣୀ, ସେହିନ ରାତିରେ, ଧୂପ ଓ ଦୀପ, ପାଷାଣ୍ଡୁଙ୍କରେ ଲୁହ ପ୍ରଭୃତି ବହୁ ଲୋକପ୍ରିୟ ନାଟକ ଏହାର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଏହି ମଞ୍ଚରେ ଅଭିନୀତ ହୋଇଛି । ଏହି ମଞ୍ଚର ଶୁଭାରମ୍ଭ ହୋଇଥିଲା ପ୍ରଫୁଲ୍ଲଚନ୍ଦ୍ର ଦାସଙ୍କର 'ଧୂପ ଓ ଦୀପ' ନାଟକର ମଞ୍ଚାୟନରେ ଏବଂ ଭାଗ୍ୟର ବିଡ଼ମ୍ବନା ଏହି ଯେ, ଏହାର ଶେଷ ନାଟକ ହେଉଛି 'ଅଶ୍ରୁତର୍ପଣ' । ହୁଏତ ଓଡ଼ିଶାର ବ୍ୟବସାୟୀ ମଞ୍ଚ ନିମନ୍ତେ ଏହା ଯଥାର୍ଥରେ ଥିଲା କଳାର ଅଶ୍ରୁ ତର୍ପଣ ।

ଶୁଣା ଯାଉଛି, କେତେଜଣ ଉତ୍ସାହୀ କଳା ପ୍ରାଣ ବ୍ୟକ୍ତି ପୁନର୍ବାର 'କଳାଶ୍ରୀ'କୁ ବଞ୍ଚାଇବାର ଉଦ୍ୟମ କରୁଛନ୍ତି । ତେବେ ନାଟକ ପାଇଁ ବର୍ତ୍ତମାନ ଅନ୍ତତଃ ଏ ନଗରରେ ବିଶେଷ କୌଣସି ଉଦ୍‌ବୋଧକତା ଅଛି ବୋଲି କୁହାଯାଇ ପାରୁ ନାହିଁ । କିଛି ଦିନ ତଳେ ଅଭିନେତା ନାସିରୁଦ୍ଦିନ୍ ଶାହ କହିଥିଲେ—"Unless the commercial cinema suffers a seven set back in lenms of audience, I donot see any great hope for theatre in the Eightys" ବର୍ତ୍ତମାନ ତ ଟେଲିଭିଜନ ଆସିଯିବା ଫଳରେ ଅବସ୍ଥା ଆହୁରି ଖରାପ ହୋଇଛି ।

ମୋଟାମୋଟି ଭାବରେ ଏହାହିଁ ହେଉଛି କଟକରେ ରଙ୍ଗମଞ୍ଚର ଇତିହାସ । ବର୍ତ୍ତମାନ କଟକରେ ଅଭିନୟ କରୁଥିବା କୌଣସି ରଙ୍ଗମଞ୍ଚ ନାହିଁ । ଅନ୍ନପୂର୍ଣ୍ଣା, ଜନତା ଏବଂ କଳାଶ୍ରୀର ମଞ୍ଚ ଅବଶ୍ୟ ରହିଛି । ମାତ୍ର ଆଇନ୍‌ଗତ କାରଣରୁ ଏଗୁଡ଼ିକ ଅଭିନୟ ନିମନ୍ତେ ଉପଲବ୍ଧ ନୁହନ୍ତି । ତେଣୁ ସୌଖୀନ ସଂସ୍ଥାଗୁଡ଼ିକ ପେଣ୍ଡାଲଟିଏ ପାଇବା ଅସମ୍ଭବ ହୋଇପଡ଼ିଛି ।

ଏକଦା ନାଟକର ସୃଷ୍ଟି ଲଗ୍ନରେ ଏହି ସୌଖୀନ ସଂସ୍ଥା ଗୁଡ଼ିକ ଖଟିପକାଇ, ଚାଲିଚାଣି ଅଭିନୟ କଳାର ଉଦ୍‌ବୋଧନ ଘଟାଇ ଥିଲେ । ସମୟ ସମୟରେ ଆମେ ଏମାନଙ୍କ ଠାରୁ 'ଘରେ ମନ୍ଥନ' ପ୍ରତାପ ଗଡ଼ରେ ବନ୍ଧନ, ବନହଂସୀ, ଅର୍ଦ୍ଧ ବଂଶୀ, ଅଶାନ୍ତ ପ୍ରଭୃତି ବେଶ୍ ଭଲ ନାଟକ ମଧ୍ୟ ପାଇଛୁ । ମାତ୍ର ବର୍ତ୍ତମାନ ତ ପେଣ୍ଡାଲ ପ୍ରାପ୍ୟ ନାହିଁ । ତେଣୁ କଟକ ମଞ୍ଚାଭିନୟ ପ୍ରାପ୍ୟ ସ୍ଥାଣୁ ହୋଇ ପଡ଼ିଛି କହିଲେ ଚଳେ ।

କଟକରେ ମଞ୍ଚ କଳାର ଇତିହାସ ଅନୁଧ୍ୟାନ କଲେ, ଗୋଟିଏ ଚମତ୍କାରପ୍ରଦ ବିଷୟ ଆମର ଦୃଷ୍ଟି ଆକର୍ଷଣ କରେ । ଯେତେବେଳେ ଗୋଟିଏ ମଞ୍ଚ ଭାଙ୍ଗିଛି, ସେତେ-ବେଳେ ଆଉ ଗୋଟିଏ ମଞ୍ଚ ଗଢ଼ାହୋଇଛି । 'ଓଡ଼ିଶା ଥିଏଟର' ଗଢ଼ିଥିଲା, ଏ ଦେଶର ବ୍ୟବସାୟୀ ମଞ୍ଚର ପ୍ରଥମ କଳାକାର ଗୋଷ୍ଠୀ, ଯେଉଁମାନଙ୍କୁ ନେଇ ଗଢ଼ାହେଲା 'ଅନ୍ନପୂର୍ଣ୍ଣା' । ଅନ୍ନପୂର୍ଣ୍ଣା, ଓଡ଼ିଶା ଥିଏଟରର ଅନେକ ଦଳତ୍ୟାଗୀ ଗଢ଼ିଲେ 'ରୂପଶ୍ରୀ' । ସେ ଭାଙ୍ଗିଲା ଗଢ଼ାହେଲା ଜନତା । ଜନତାର ଧ୍ୱଂସ ସ୍ତୂପ ଭିତରୁ ଆତ୍ମ-ପ୍ରକାଶ କଲା 'କଳାଶ୍ରୀ' । ବର୍ତ୍ତମାନ ଜୀବନ ସାରା ଏହି ଭଙ୍ଗା ଗଢ଼ା ଖେଳରେ ବ୍ୟାପୃତ ଥିବା କଳାକାରମାନେ ହୁଏତ କ୍ଳାନ୍ତ, ଶ୍ରାନ୍ତ, ତେଣୁ ଆଉ ନୂତନ ଦଳ ଗଢ଼ିବାର ଶକ୍ତି ସାମର୍ଥ୍ୟ ସେମାନଙ୍କର ନାହିଁ ।

ଓଡ଼ିଶା ଥିଏଟରସ୍ ଭଙ୍ଗା ହେବା ପୂର୍ବରୁ ଏଠାରେ ଯେ କଳାକାର ନଥିଲେ । କିମ୍ବା ବର୍ତ୍ତମାନ ଯେ ଓଡ଼ିଶା କଳାକାର ଶୂନ୍ୟ ହୋଇଛି, ଏହା କୁହାଯାଉ ନାହିଁ । ତେବେ ପ୍ରାଥମିକ ପର୍ଯ୍ୟାୟର ବ୍ୟବସାୟୀ ମଞ୍ଚର ଏହି କଳାକାରମାନେ ଯେତିକି ଖ୍ୟାତି ପାଇଛନ୍ତି । ତାହା ସେମାନଙ୍କର ପୂର୍ବବର୍ତ୍ତୀ କଳାକାରମାନଙ୍କ ଭାଗ୍ୟରେ ସମ୍ଭବପର ହୋଇ ପାରିନାହିଁ ।

କଟକରେ ବ୍ୟବସାୟୀ ମଞ୍ଚର ପ୍ରଥମ ଏବଂ ପ୍ରଧାନ କାରଣ ହେଉଛି, ପରିବର୍ତ୍ତିତ ଲୋକରୁଚି ସହିତ ସାମଞ୍ଜସ୍ୟ ରକ୍ଷା କରି ପାରିବାରେ ଅସାମର୍ଥ୍ୟ । ଓଡ଼ିଶା ଥିଏଟର୍ସ ମଞ୍ଚ ଶିଳ୍ପକୁ ଏକ ଲାଭଜନକ ବ୍ୟବସାୟ ରୂପରେ ପ୍ରତିଷ୍ଠା ଦେଇ ପାରିବା ପରେ ଏଥିପ୍ରତି ଅନ୍ୟମାନଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଫଳରେ ଗୋଟିକ ପରେ ଗୋଟିଏ ମଞ୍ଚ ଆତ୍ମପ୍ରକାଶ କରି ପାରିଥିଲା । ମାତ୍ର ଦର୍ଶକମାନଙ୍କୁ ଅଭିନବ କିଛି ଦେଖାଇବାର ଚିନ୍ତାର ଘୋର ଅଭାବ, ମଞ୍ଚ ପ୍ରତି ଦର୍ଶକମାନଙ୍କୁ ବିମୁଖ କରାଇଲା । ପାରମ୍ପରିକ ଧାରାର ନାଟକ ଦର୍ଶକମାନଙ୍କ ରୁଚି ସହିତ ଖାପ ଖାଇପାରୁ ନଥିଲା । ପରିଚାଳକମାନେ ଏ ଦିଗରେ ବିଶେଷ ଚିନ୍ତା କରିବା ଆବଶ୍ୟକବୋଧ ନଥିଲେ । ଦ୍ୱିତୀୟ କଥା ହେଉଛି, କଳାକାର-ମାନଙ୍କର ନିରାପତ୍ତା ।

ଅଭିନୟ ପାଇଁ କେତେକ କଳାକାରଙ୍କର ହୁଏତ ସେଭଳି କୌଣସି ଧନସ୍ପୃ ସଂପୃକ୍ତ ନଥିଲା, ତେବେ ଏଥି ସହିତ ଜଡ଼ିତ ହୋଇଥିଲା ସେମାନଙ୍କର ଜୀବନ ଓ ଜୀବିକାର ପ୍ରଶ୍ନ । ସାମାନ୍ୟ ନିଶ୍ଚିନ୍ତତା ସେମାନଙ୍କୁ ଏଥିପାଇଁ ଯେଉଁ ସମର୍ପଣ ମନୋଭାବ ଦେଇପାରି ଥାଆନ୍ତା, ଏ କ୍ଷେତ୍ରରେ ତାହା ହୋଇପାରୁ ନଥିଲା । କେତେକ ପ୍ରତିଷ୍ଠିତ କଳାକାରଙ୍କୁ ଛାଡ଼ିଦେଲେ, ଅନ୍ୟମାନେ ପରିଚାଳକଙ୍କର କୃପାର ପାତ୍ର ହୋଇ ରହି ଥିଲେ ।

ତେଣୁ ଅବ୍ୟବସ୍ଥିତ ମନ ନେଇ ସେମାନଙ୍କର କଳା ପାଇଁ କିଛି କରିବାର ଚିନ୍ତା ଆଦୌ ନଥିଲା । ଫଳରେ ଦଳ ଭିତରେ ଅସନ୍ତୋଷ ବୃଦ୍ଧି ପାଉଥିଲା । ବ୍ୟକ୍ତିଗତ

ମାଲିକାନା, ବ୍ୟକ୍ତି ମାଲିକାନା ଏବଂ ଶେଷରେ ସମବାୟଭିତ୍ତିର ମଞ୍ଚ ପରିଚାଳନା ମଞ୍ଚ ଶିଳ୍ପକୁ ପତନ ମୁଖରୁ ରକ୍ଷା କରିପାରିଲା ନାହିଁ । କଳାକାରମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରି ଏମାନଙ୍କର ଲକ୍ଷ୍ୟକୁ ଏକମୁଖୀ କରିବା କିମ୍ବା ଏମାନଙ୍କର ସମ୍ମୁଖରେ କୌଣସି ଉଚ୍ଚ ଆଦର୍ଶ ସ୍ଥାପନ କରିବା—ଏ ସବୁ ହୋଇ ପାରିଲା ନାହିଁ । ପରିଣାମ ଯାହା ହେବାର ହେଲା ।

କାରଣତ ଅନେକ ଥିଲା । ବର୍ତ୍ତମାନ ଆଉ ସେ ସବୁ ଆଲୋଚନା କରି ବିଶେଷ କୌଣସି ଲାଭ ହେବ ନାହିଁ । ଏକ ଲାଭଜନକ ବ୍ୟବସାୟ ରୂପେ ମଞ୍ଚ ଦେଶବାସୀଙ୍କ ମନଯୋଗ ପାଇବା କଥା ତାହା ହୋଇ ନପାରିବାରୁ ହିଁ ଏହାର ପତନ ହେଲା କେବଳ ଏତିକି କୁହାଯାଇ ପାରେ ।

କାଳୀଚରଣ ମଞ୍ଚକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ପରିଣାମରେ କଟକ ସହରରେ ଏକ ନାଟକପ୍ରେମୀ ଦର୍ଶକମଣ୍ଡଳୀ ସୃଷ୍ଟି ହୋଇଯାଇ ଥିଲେ । ମଞ୍ଚର ନୃତ୍ୟ, ସଙ୍ଗୀତ, ସଂଳାପ, ଚରିତ୍ର, ଘଟଣା—ସବୁ ଏମାନଙ୍କ ଚିନ୍ତାରେ ସ୍ଥାୟୀ ଭାବରେ ପ୍ରବେଶ କରି ଯାଇଥିଲେ । ସିନେମା ତ ସେତେବେଳେ ମଧ୍ୟ ଥିଲା । ତେବେ ଏଠାକାର ମଧ୍ୟବିତ୍ତ ଦର୍ଶକଗୋଷ୍ଠୀ ମଞ୍ଚ ପ୍ରତି ହିଁ ନିଜର ଆନୁଗତ୍ୟ ପ୍ରକାଶ କରୁଥିଲେ । ନାଟକର ସଙ୍ଗୀତ ସେତେବେଳେର ଦର୍ଶକମାନଙ୍କର ମୁହେଁ ମୁହେଁ ବୁଲୁଥିଲା । ନୂତନ ନାଟକ ଦେଖିବା ପାଇଁ ସେମାନର ଆଗ୍ରହ ଥିଲା । ତାହା ଧୀରେ ଧୀରେ ମଉଳିଗଲା ଏବଂ ଚଳଚ୍ଚିତ୍ରର ଜାକଜମକ ନିକଟରେ ହିଁ ମୁଖ୍ୟତଃ ମଞ୍ଚକୁ ପରାଜୟ ବରଣ କରିବାକୁ ପଡ଼ିଲା ।

ଗୋଟିଏ ଜାତିକୁ ଜଣା ଯାଇଥାଏ ତାହାର ରଙ୍ଗମଞ୍ଚ ମାଧ୍ୟମରେ । ଏ ମନ୍ତବ୍ୟର ସାର୍ଥକତା ଖୋଜିବା ପାଇଁ ଓଡ଼ିଶାରେ ଆଜି କୌଣସି ସ୍ଥାୟୀ ବ୍ୟବସାୟୀ ମଞ୍ଚ ନାହିଁ । ଅଭିନୟ କଳାର ଭବିଷ୍ୟତ ଏବେ ଏ ଦେଶର ସୌଖୀନ ସଂସ୍ଥା ହାତରେ ନ୍ୟସ୍ତ ହୋଇଛି । ସେମାନେ ମଞ୍ଚରେ ନାନା ପ୍ରକାର ପରୀକ୍ଷାନିରୀକ୍ଷାର ସୁଯୋଗ ପାଉଛନ୍ତି ଯାହା ବ୍ୟବସାୟୀଦଳ ପାଉନଥିଲେ ।

ନିକଟ ଭବିଷ୍ୟତରେ ଏହାର ଭିତରୁ ଯେ, ମଞ୍ଚଶିଳ୍ପର ନବଜୀବନ ନିମନ୍ତେ କୌଣସି ଗୋଟାଏ ଉପାୟ ବାହାରି ଆସିବ, ବର୍ତ୍ତମାନ ଏ କଥା ଚିନ୍ତା କରାଯାଇ ପାରୁ ନାହିଁ । ଲୋକରୁଚି ପରିବର୍ତ୍ତିତ ହୋଇସାରିଛି । ସେମାନେ ଯାହା ଚାହୁଁଛନ୍ତି, ମଞ୍ଚରୁ ତାହା ଆଶା କରାଯାଇ ପାରିବ ନାହିଁ । ତେବେ ମଣିଷର କଥା, କିଛି ଅଭିନବ ଉପାୟରେ କୁହାଯାଇ ପାରିଲେ, ହୁଏତ ମଞ୍ଚ ପ୍ରତି ଦର୍ଶକମାନେ ପୁନର୍ବାର ଆକୃଷ୍ଟ ହେବେ । କଲିକତା, ବମ୍ବେ, ଦିଲ୍ଲୀ ପ୍ରଭୃତି ବଡ଼ ସହରରେ ଏହି ଉପାୟରେ ମଞ୍ଚ ବଞ୍ଚି ରହିଛି । ଏଠାରେ ତାହାର ପରୀକ୍ଷା କରି ଦେଖାଯାଇପାରେ ।

●

# କଟକରେ ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମର ବିକାଶ

**ଶ୍ରୀମତୀ ବୀଣାଦେବୀ**

କଥାଟି ସହିତ ବହୁ ଭାବରେ, ବହୁ ପରିମାଣରେ ସଂପୃକ୍ତ ବୋଲି-ସେଇ କଥାଟିକୁ ଲେଖାର ଆକାର ଦେବାକୁ ଯିବା ଖୁବ୍ ସହଜ ନୁହେଁ । କିନ୍ତୁ ଗଣମାଧ୍ୟମ ଆକାଶବାଣୀ ଓ ଦୂରଦର୍ଶନର ବିକାଶ ସହିତ-ଆମର କଟକ ସହରର ଜୀବନ, ବିଶେଷ କରି କଟକର ସାଂସ୍କୃତିକ ଜୀବନ ଏତେ ଭାବରେ ସଂପୃକ୍ତ ଯେ-ଶେଷ ପର୍ଯ୍ୟନ୍ତ ସ୍ଥିର କଲି, କଥାଟା ଲେଖିବି । ଅନ୍ତତଃ-କଥାଟାକୁ ଲେଖିବାକୁ ଚେଷ୍ଟା କରିବି ।

ପ୍ରଥମେ- ଏହି ନିୟମରେ, ତାର ଆରମ୍ଭରୁ ହିଁ ଆରମ୍ଭ କରିବା ଠିକ୍ ହେବ । ସୁତରାଂ-ସଂକ୍ଷେପରେ ଆଲୋଚନା କରିବା, ଗଣମାଧ୍ୟମର ଆରମ୍ଭ କଥା ।

ଇଲେକ୍‌ଟ୍ରୋନିକ ଗଣମାଧ୍ୟମ କଥା କହିବାକୁ ଗଲେ, ପ୍ରଥମେ କହିବାକୁ ହେବ- ଆକାଶବାଣୀ କଥା । ସଠିକ ଭାବରେ କହିବାକୁ ଗଲେ-କହିବାକୁ ହେବ-All India Radio । ସେତେବେଳେ ଇଂରେଜ ଶାସନର ଯୁଗ ଥିଲା । ସୁତରାଂ-ନାଁଟି ମଧ୍ୟ ଥିଲା ଇଂରେଜୀ ନାଁ । ତେବେ ନାଁଟିର ଗୋଟିଏ ତାତ୍ପର୍ଯ୍ୟ, ସେତେବେଳେ ବି ତାର କର୍ମୀମାନଙ୍କର ଖୁବ୍ ପସନ୍ଦ ହୋଇ ଥିଲା । All India Radio—କଥାଟିକୁ ସଂକ୍ଷିପ୍ତ କରି, କୁହାଯାଇଥିଲା—A. I. R ବା air !

ବେତାର ପ୍ରଚୁର ଭାରତରେ ଶବ୍ଦତରଙ୍ଗ ଓ ବାୟୁମଣ୍ଡଳ-ଏ ସବୁକୁ ଏକାଠି କରି ଦେଇ ପାରିଥିଲା । ପ୍ରକୃତରେ କହିବାକୁ ଗଲେ-ମାର୍କୋନୀ ୧୮୯୬ ମସିହାରେ, ଯେତେବେଳେ ନିଜର ଉଦ୍ଭାବିତ ବେତାର ମାଧ୍ୟମର ପ୍ରସାର ଆରମ୍ଭ କଲେ-ସେତେବେଳେ ବାୟୁମଣ୍ଡଳ ସହିତ ଏହାର ସଂପର୍କ କଥାଟି ବହୁ ଭାବରେ ଆଲୋଚିତ ହୋଇଥିଲା ।

କିନ୍ତୁ ଏହାର ପ୍ରଭାବର ଧାରଣା-କେବଳ ଆମେରିକା ଓ ଇଉରୋପ ମହାଦେଶର ଉନ୍ନତ ଦେଶମାନଙ୍କରେ ସୀମାବଦ୍ଧ ହୋଇ ନ ରହି, ବ୍ୟାପି ଯାଇଥିଲା ସମଗ୍ର

ପୃଥିବୀରେ । ତାହାର ଫଳରେ-ପରାଧୀନ ହୋଇ ଥିଲେବି,ଭାରତରେ ମଧ୍ୟ ୧୯୨୪ ମସିହାବେଳକୁ ବମ୍ବେ ଓ ମାନ୍ଦ୍ରାଜ ଠାରେ ରେଡ଼ିଓ କ୍ଲବ୍‌ମାନ ପ୍ରତିଷ୍ଠିତ ହୋଇଥିଲା ।

ତେବେ-ବାଧ୍ୟବନ୍ଧ ଭାବରେ, ଭାରତରେ ପ୍ରଥମ ବେତାର କେନ୍ଦ୍ରରୁ ପ୍ରଚାର ଆରମ୍ଭ ହୋଇଥିଲା—୧୯୨୭ ମସିହା ଜୁଲାଇ ୨୩ ତାରିଖରେ । ସେଦିନ ବମ୍ବେଠାରେ ଭାରତର ତଦାନନ୍ତୀନ ବଡ଼ଲାଟଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା ବମ୍ବେର ବେତାରକେନ୍ଦ୍ର । ପରୀକ୍ଷା ନିରୀକ୍ଷାର ଗୋଟିଏ ସୌଖିନ୍ ସଂସ୍ଥାରୁ ପରିବର୍ତ୍ତିତ ହୋଇ-ଏହା ହେଲା ଗୋଟିଏ ପେଶାଦାର ବାଧ୍ୟବନ୍ଧ ଅନୁଷ୍ଠାନ । ଏହାର କିଛି ଦିନ ପରେ କଲିକତାଠାରେ ମଧ୍ୟ ଏହିଭଳି ଗୋଟିଏ ବେତାରକେନ୍ଦ୍ର ପ୍ରତିଷ୍ଠିତ ହେଲା ପରେ, ଭାରତରେ ଆରମ୍ଭ ହେଲା—ଇଲେକ୍‌ଟ୍ରୋନିକ୍ ଗଣମାଧ୍ୟମର ପ୍ରଚାର ବ୍ୟବସ୍ଥା । ନାନା ଉତ୍‌ଥାନ ପତନ, ନାନା ପରିବର୍ତ୍ତନ ମଧ୍ୟ ଦେଇ ବେତାର ପ୍ରଚାର ପହଞ୍ଚିଛି ବର୍ତ୍ତମାନର ଅବସ୍ଥାରେ । ଦେଶ ସ୍ୱାଧୀନ ହେଲା ପରେ—All India Radio ର ନୂଆ ନାମକରଣ ହେଲା "ଆକାଶବାଣୀ" ।

କଲିକତା ବେତାରକେନ୍ଦ୍ର ସହିତ, ଓଡ଼ିଶାର ବେତାର ପ୍ରଚାରର କିଛି ସମ୍ପର୍କ ଥିଲା ବୋଲି ତାହାର ସଂକ୍ଷିପ୍ତ ଆଲୋଚନା ଯୁକ୍ତିଯୁକ୍ତ । କଲିକତା କେନ୍ଦ୍ରରୁ ୧୯୦୩ର ଆରମ୍ଭରୁ, ପ୍ରଥମେ ପରୀକ୍ଷାମୂଳକ ଭାବରେ ଓଡ଼ିଆ କାର୍ଯ୍ୟକ୍ରମର ପ୍ରଚାର ଆରମ୍ଭ ହୋଇଥିଲା । ପରେ ନିୟମିତ ଭାବରେ, ପ୍ରତିଦିନ ୩୦ ମିନିଟ୍ କରି ଓଡ଼ିଆରେ କାର୍ଯ୍ୟକ୍ରମମାନ ପ୍ରଚାରିତ ହେଲା । ସେ ସମୟରେ ସ୍କୁଲ୍‌ରେ ପଢ଼ୁଥିଲେ ବି ପ୍ରଥମ କରି ବେତାର ମାଧ୍ୟମରେ ସଙ୍ଗୀତ କାର୍ଯ୍ୟକ୍ରମ ପ୍ରଚାର କରିବାର ସୌଭାଗ୍ୟ ଲାଭ କରିଥିବା, କଳାକାରମାନଙ୍କ ମଧ୍ୟରେ ମୁଁ ମଧ୍ୟ ଥିଲି । ଗାର୍ଷ୍ଟିନ୍‌ପ୍ଲେସ୍‌ର ସେ ଷ୍ଟୁଡ଼ିଓରେ, ସୀମିତ ସମୟ ସୀମା ମଧ୍ୟରେ ବି ସଙ୍ଗୀତ ସହିତ ଆଲୋଚନା, କ୍ଷୁଦ୍ରନାଟିକା, ରୂପକ, ସାକ୍ଷାତ୍‌କାର ପ୍ରଭୃତି ପ୍ରଚାର କରାଯାଉଥିଲା । ସେଇଠି ମୂଳଦୁଆ ପଡ଼ିଲା—ଓଡ଼ିଆ ବେତାର ପ୍ରଚାରର ।

ଦେଶ ସ୍ୱାଧୀନ ହେବାର କେତେ ମାସ ପରେ ୧୯୪୮ ଜାନୁୟାରୀ ୨୮ ତାରିଖରେ, କଟକର ମଟ୍ଟପୁର କୋଠିର ଷ୍ଟୁଡ଼ିଓ ଏବଂ ବାରବାଟୀ କିଲ୍ଲାର ଟ୍ରାନ୍‌ସମିଟର ନେଇ ଉଦ୍‌ଘାଟିତ ହେଲା—All India Radio Cuttack । ଯାହାପରେ ପରିଚିତ ହୋଇଛି—ଆକାଶବାଣୀ, କଟକକେନ୍ଦ୍ର ନାମରେ । ବହୁ କଳାକାର, ଗାୟକ-ଗାୟିକା, ଅଭିନେତା-ଅଭିନେତ୍ରୀ, ଲେଖକ-ଲେଖିକା, ସଙ୍ଗଠକ, ପ୍ରଯୋଜକ, କର୍ମଚାରୀ—ବହୁ ଚିନ୍ତାନାୟକଙ୍କ ସାଧନାର ପୀଠ, ବହୁ ପ୍ରକାରର କାର୍ଯ୍ୟକ୍ରମ ନେଇ ପରୀକ୍ଷା ନିରୀକ୍ଷାର ପୀଠ ଭାବରେ ଆକାଶବାଣୀ, କଟକକେନ୍ଦ୍ର ବହୁ ବର୍ଷଧରି ସଫଳତାର ସହିତ କାମକରି ଆସିଛି ଓ କରୁଛି । ଫଙ୍କାର ପଡ଼ିଆଠାରେ ଏବେ କାମ କରୁଛି ଅତି ଉଚ୍ଚ ଶକ୍ତି ସମ୍ପନ୍ନ ବେତାର ଟ୍ରାନ୍‌ସମିଟର ।

ଅପେକ୍ଷାକୃତ ନବୀନତର ଦୂରଦର୍ଶନ ଆମ ଦେଶରେ ଆତ୍ମପ୍ରକାଶ କରେ ୧୯୫୯ ମସିହା ସେପ୍ଟେମ୍ବର ପନ୍ଦର ତାରିଖରେ । କେତେ ବର୍ଷ ପୂର୍ବରୁ ଅନ୍ୟାନ୍ୟ ଉନ୍ନତିଶୀଳ ଦେଶମାନଙ୍କରେ ପ୍ରଚାର ଲାଭ କରିଥିଲେ ବି ବିଭିନ୍ନ କାରଣରୁ ସେ ପର୍ଯ୍ୟନ୍ତ ଦୂରଦର୍ଶନ ପ୍ରସାର ଆମ ଦେଶ ଲାଗି ଉପଯୋଗୀ ନୁହେଁ ବୋଲି ବିଶ୍ୱାସ କରାଯାଉଥିଲା । ପ୍ରଥମେ ଶିକ୍ଷାଦାନ ଲାଗି ଉଦ୍ଦିଷ୍ଟ, ଦୂରଦର୍ଶନ କାର୍ଯ୍ୟକ୍ରମ ସପ୍ତାହରେ ଦୁଇ ଦିନ ପାଇଁ ଘଣ୍ଟାଏ କରି ପରୀକ୍ଷାମୂଳକ ଭାବରେ ଆରମ୍ଭକରା ଯାଇଥିଲା । ଏ ପ୍ରାଥମିକ ପ୍ରଚେଷ୍ଟାର ଉତ୍ସାହ ପାଇ ଦୂରଦର୍ଶନରେ ନିୟମିତ ଭାବରେ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଗଲା ୧୯୬୧ ମସିହାରେ ।

ସେତେବେଳେ ଏହା ସୀମାବଦ୍ଧ ଥିଲା କେବଳ ମହାନଗରୀ ଦିଲ୍ଲୀର ବିଦ୍ୟାଳୟ-ମାନଙ୍କ ଲାଗି କାର୍ଯ୍ୟକ୍ରମ ପ୍ରଚାର ମଧ୍ୟରେ । ଯେତେବେଳେ ମାତ୍ର ବାର ହଜାର ଛାତ୍ର ଛାତ୍ରୀଙ୍କ ଲାଗି କାମରେ ଲାଗି ପାରୁଥିବା, ସେ ଶିକ୍ଷା କାର୍ଯ୍ୟକ୍ରମ ଆଜି କେବଳ ଦିଲ୍ଲୀରେ ତିନି ଲକ୍ଷରୁ ଅଧିକ ଛାତ୍ର ଛାତ୍ରୀଙ୍କୁ ଉପକୃତ କରୁଛି । ମାତ୍ର ତିରିଶ ବର୍ଷ ମଧ୍ୟରେ ଭାରତରେ ଦୂରଦର୍ଶନର ପ୍ରସାର, ପ୍ରଚାର ଓ ଲୋକପ୍ରିୟତା ଏଭଳି ଅବସ୍ଥାରେ ପହଞ୍ଚିଛି ଯେ, ଚିନ୍ତାକଲେ ବିସ୍ମିତ ହେବାକୁ ହୁଏ । ପ୍ରକୃତରେ ନ ଦେଖିଥିଲେ, ଏହା ବିଶ୍ୱାସ କରିବା କଷ୍ଟକର ହୋଇଥାନ୍ତା ।

ସକାଳ, ଦ୍ୱିପ୍ରହର, ସନ୍ଧ୍ୟା ଓ ରାତିର ବିଭିନ୍ନ ପ୍ରହର ଦୂରଦର୍ଶନର କାର୍ଯ୍ୟକ୍ରମ ଏ ସବୁ ସମୟରେ ଅଗଣିତ ଦର୍ଶକଙ୍କ ମନୋରଞ୍ଜନ କରିପାରୁଛି । ଉପଗ୍ରହ, ମାଇକ୍ରୋୱେଭ, ଅଳ୍ପଶକ୍ତି ଓ ଅତି ଅଳ୍ପଶକ୍ତି ସମ୍ପନ୍ନ ବହୁ ଟ୍ରାନ୍ସମିଟର, ବହୁ ସଂଖ୍ୟକ କାର୍ଯ୍ୟକ୍ରମ ପ୍ରସ୍ତୁତ କେନ୍ଦ୍ର, ଦ୍ୱିତୀୟ ଚ୍ୟାନେଲ୍‌ର ପ୍ରଚାର ଏ ସବୁର ପ୍ରୟୋଗ ଫଳରେ, ଦୂରଦର୍ଶନ ଆଜି ଭାରତର ସବୁ ଠାରୁ ଅଧିକ ଶକ୍ତିଶାଳୀ ଗଣମାଧ୍ୟମରେ ପରିଣତ ହୋଇ ପାରିଛି ବୋଲି ଗବେଷକମାନେ ମତ ଦିଅନ୍ତି । ଏହା ବର୍ତ୍ତମାନ ପୃଥିବୀର ସର୍ବବୃହତ୍ତ ଦୂରଦର୍ଶନ ପ୍ରସାରଣ ବ୍ୟବସ୍ଥା ଏବଂ ଏପ୍ରିଲ ୧୯୮୯ ସୁଦ୍ଧା ୩୩୫ଟି ଟ୍ରାନ୍ସମିଟର ମାଧ୍ୟମରେ ଏହା ଆମ ଦେଶର ଲୋକ ସଂଖ୍ୟାର ଶତକଡ଼ା ୭୩ ଭାଗ ଲୋକଙ୍କ ନିକଟରେ ପହଞ୍ଚି ପାରୁଥିଲା । ଏହା ମଧ୍ୟରେ ଏହାର ପରିସର ଆହୁରି ଅନେକ ବେଶି ବଢ଼ିଯାଇଛି ଏବଂ ଅନେକ ବେଶି ବଢ଼ିବାର ଯୋଜନା ମଧ୍ୟ କରାଯାଇଛି ।

ଓଡ଼ିଶାରେ ଦୂରଦର୍ଶନ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ପ୍ରଥମେ ୧୯୭୩ ମସିହାର, ସେପ୍ଟେମ୍ବର ମାସରେ କଟକ ଠାରେ କାର୍ଯ୍ୟକ୍ରମ ପ୍ରସ୍ତୁତ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ପରେ ଏହା ଉପଗ୍ରହ ଦୂରଦର୍ଶନ କେନ୍ଦ୍ରରେ ପରିଣତ ହେଲା ୧୯୭୪ ମସିହାର ଅକ୍ଟୋବର ମାସରେ । ସେତେବେଳେ ଓଡ଼ିଆ ଭାଷାରେ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରି, ଉପଗ୍ରହ ମାଧ୍ୟମରେ ସେ ସବୁର ପ୍ରସାରଣରେ ଦାୟିତ୍ୱ ଏହି କେନ୍ଦ୍ର ଗ୍ରହଣ କରିଥିଲା । ଅତି ସୀମିତ ଅଞ୍ଚଳରେ ଦେଖା ଯାଇ ପାରୁଥିବା ଏ କାର୍ଯ୍ୟକ୍ରମମାନ ସେ ପର୍ଯ୍ୟନ୍ତ

ଗ୍ରାମାଞ୍ଚଳର ଅଂଶଗ୍ରାହୀମାନଙ୍କୁ ଦର୍ଶକ ଭାବରେ, ଆଖି ଆଗରେ ରଖି ପ୍ରସ୍ତୁତ କରା ଯାଉଥିଲା ।

ପରେ ସମ୍ବଲପୁର ଓ ଆଖପାଖର ପ୍ରାୟ ଖୁଲାଶ କିଲୋମିଟର ପରିସର ମଧ୍ୟସ୍ଥ ଅଞ୍ଚଳ ଲାଗି ୧୯୭୮ ମସିହା ମେ' ମାସରେ ଏହି କେନ୍ଦ୍ର କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରିବାକୁ ଆରମ୍ଭ କରିଥିଲା। ଏହାପରେ ୧୯୮୫ ମାର୍ଚ୍ଚ ମାସରେ, କଟକ ଠାରେ ପ୍ରତିଷ୍ଠିତ ହେଲା ଉଚ୍ଚ ଶକ୍ତିସମ୍ପନ୍ନ ଟ୍ରାନ୍ସମିଟର । ସେତେବେଳେ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ, ସବୁ କାର୍ଯ୍ୟକ୍ରମ ରିଲେ କରିବା ସଙ୍ଗେ ସଙ୍ଗେ ଉପଗ୍ରହ (INSAT-IB) ମାଧ୍ୟମରେ ଖୁଲାଶ ମିନିଟ୍ ଲାଗି ଯେଉଁ ଓଡ଼ିଆ କାର୍ଯ୍ୟକ୍ରମ, ଏହି କେନ୍ଦ୍ର ପ୍ରସ୍ତୁତ କରିଥିଲା ତାହା ମଧ୍ୟ ରିଲେ କରି ପ୍ରସାର କରାଯାଉଥିଲା ।

କଟକ ଦୂରଦର୍ଶନ କେନ୍ଦ୍ରରୁ, ତାହା ନିଜସ୍ୱ କାର୍ଯ୍ୟକ୍ରମ ପ୍ରସାରଣ ଆରମ୍ଭ ହେଲା ୧୯୮୭ ମସିହା ନଭେମ୍ବର ମାସରେ । ଅନ୍ୟ ଯେକୌଣସି ସ୍ୱୟଂ ସମ୍ପୂର୍ଣ୍ଣ କେନ୍ଦ୍ର ଭଳି ଏଠି ସବୁ ପ୍ରକାରର, ଏପରିକି ସମ୍ବାଦ ମଧ୍ୟ ପ୍ରସାରଣ କରିବା ଆରମ୍ଭ ହୋଇଛି । ଏ ଦାୟିତ୍ୱ ସହିତ କଟକର ଦୂରଦର୍ଶନ କେନ୍ଦ୍ରର, ଅନ୍ୟାନ୍ୟ ଦାୟିତ୍ୱ ମଧ୍ୟ ରହିଥିଲା। ଜାତୀୟ କାର୍ଯ୍ୟକ୍ରମ ଲାଗି, ଭିଡ଼ମାନରେ ବିଭିନ୍ନ ପ୍ରକାରର କାର୍ଯ୍ୟକ୍ରମ ପଠାଇବା ସଙ୍ଗେ ସଙ୍ଗେ ଏହି କେନ୍ଦ୍ର କଟକରେ ପ୍ରସାରିତ, ସବୁ କାର୍ଯ୍ୟକ୍ରମ ରେକର୍ଡ ଦ୍ୱାରା ଗ୍ରହଣ କରି ପଠାଉଥିଲା ସମ୍ବଲପୁର କେନ୍ଦ୍ରକୁ । ପୁଣି ସେତେବେଳେ ଉପଗ୍ରହ ମାଧ୍ୟମରେ ପ୍ରସାର ଲାଗି ଏ କେନ୍ଦ୍ର କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରି ପଠାଉଥିଲା ଦିଲ୍ଲୀ କେନ୍ଦ୍ରକୁ । ଆଜିକାଲି ସାରା ଓଡ଼ିଶାରେ ବହୁ ସଂଖ୍ୟକ ଦୂରଦର୍ଶନ ରିଲେ ଟ୍ରାନ୍ସମିଟର ପ୍ରତିଷ୍ଠିତ ହୋଇଛି । କଟକ ଦୂରଦର୍ଶନ କେନ୍ଦ୍ର ସବୁ କାର୍ଯ୍ୟକ୍ରମ, ଓଡ଼ିଶାର ସବୁ ଟ୍ରାନ୍ସମିଟର ଏବେ ରିଲେ କରି ପ୍ରସାର କରନ୍ତି ଉପଗ୍ରହ ମାଧ୍ୟମରେ ।

ନାନା ପ୍ରକାରର ସମସ୍ୟା ମଧ୍ୟରେ, ସୀମିତ ସୁବିଧା ସୁଯୋଗର ଅଧିକାରୀ ହୋଇ ଥିଲେ ବି ଏ କେନ୍ଦ୍ରର କାର୍ଯ୍ୟକ୍ରମ ଯେ ଲୋକପ୍ରିୟ ହୋଇ ପାରିଛି ତାହା ସର୍ବବାଦୀ ସମ୍ମତ । ଏ କଥା ମଧ୍ୟ ସତ୍ୟ ଯେ, ଅନ୍ୟ ଯେକୌଣସି ସୃଜନଶୀଳ, କଳାତ୍ମକ ସୃଷ୍ଟି ଭଳି କଟକ ଦୂରଦର୍ଶନ କେନ୍ଦ୍ର ଦ୍ୱାରା ପ୍ରସ୍ତୁତ କାର୍ଯ୍ୟକ୍ରମଗୁଡ଼ିକର ମଧ୍ୟ ମାନ ଉନ୍ନତତର କରାଯାଇ ପାରେ । ତେବେ ସେଥିଲାଗି ଦରକାରୀ ସୁବିଧା, ସୁଯୋଗ ଓ ସମ୍ବଳର ବ୍ୟବସ୍ଥା କରାଗଲା ପରେ ତାହା ମଧ୍ୟ କରାଯାଇ ପାରିବ ।

ବହୁ ବର୍ଷଧରି ଆକାଶବାଣୀ କଟକରୁ ଓ ଏବେ ଦୂରଦର୍ଶନ, କଟକରୁ ଯେଉଁ ସବୁ କାର୍ଯ୍ୟକ୍ରମ ପ୍ରଚାର ଓ ପ୍ରସାର କରାଯାଇ ତାହା ମଧ୍ୟରୁ ସାଂସ୍କୃତିକ କାର୍ଯ୍ୟକ୍ରମ-ମାନଙ୍କର ସଂଖ୍ୟା ସବୁ ଠାରୁ ବେଶି । ସଙ୍ଗୀତ, ସାହିତ୍ୟ ଓ ନାଟକ ସହିତ ଏବେ ଦୂରଦର୍ଶନ ମାଧ୍ୟମରେ ନୃତ୍ୟ ପ୍ରଦର୍ଶନର ସୁଯୋଗ ମଧ୍ୟ ସୃଷ୍ଟି ହୋଇ ସାରିଛି । କଟକରେ ସଙ୍ଗୀତର ବହୁ ପ୍ରାଚୀନ ପରମ୍ପରା ପ୍ରଚଳିତ ଥିଲେ ମଧ୍ୟ, ଆକାଶବାଣୀ କଟକର କାର୍ଯ୍ୟକ୍ରମ

ପ୍ରଚାର ଆରମ୍ଭ ହେଲା ବେଳକୁ, ସଙ୍ଗୀତଶିଳ୍ପୀମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ଏ ଦିଗରେ ବହୁ ଉଦ୍ୟମ ଫଳରେ, ଧୀରେ ଧୀରେ ଶିଳ୍ପୀମାନଙ୍କ ସଂଖ୍ୟା ବଢ଼ିଛି । ଶାସ୍ତ୍ରୀୟ ସଙ୍ଗୀତ ଠାରୁ ଆରମ୍ଭ କରି, ଲୋକ ସଙ୍ଗୀତ ପର୍ଯ୍ୟନ୍ତ ବିବିଧ ପ୍ରକାରର ସଙ୍ଗୀତ କାର୍ଯ୍ୟକ୍ରମର ବହୁଳ ପ୍ରଚାର ଫଳରେ, ସବୁ ପ୍ରକାରର ଶ୍ରୋତାମାନଙ୍କର ମନୋରଞ୍ଜନ କରାଯିବା ସଙ୍ଗେ ସଙ୍ଗେ ସଙ୍ଗୀତର ପ୍ରଚାର ଓ ପ୍ରସାର ବହୁ ଗୁଣରେ ବଢ଼ିଗଲା । ପ୍ରତିଷ୍ଠିତ କଳାକାରମାନଙ୍କୁ ବିଦଗ୍ଧ ଶ୍ରୋତାମାନଙ୍କ ଆଗରେ ଉପସ୍ଥାପିତ କରିବାର ସୁଯୋଗ ସୃଷ୍ଟି ହେଲା ।

ଏଥିରେ ଅନ୍ୟ ଏକ ପ୍ରଭାବଶାଳୀ ସମ୍ଭାବନା ମଧ୍ୟ ସୃଷ୍ଟି ହେଲା । ଏ ସବୁ ଗଣମାଧ୍ୟମରେ କଳାପ୍ରଦର୍ଶନର ସୁଯୋଗ—ପ୍ରତିଭାଶାଳୀ ବହୁ ନୂଆ ନୂଆ କଳାକାରଙ୍କୁ ମଧ୍ୟ ଆକୃଷ୍ଟ କଲା । ସଙ୍ଗୀତର ଚର୍ଚ୍ଚା, ଶିକ୍ଷା ଓ ପ୍ରଚାର କ୍ରମଶଃ ବଢ଼ି ଯିବାରୁ, ନୂଆ ନୂଆ ଅନେକ ସଙ୍ଗୀତ ଅନୁଷ୍ଠାନ ମଧ୍ୟ ଗଢ଼ି ଉଠିଲା । ସଙ୍ଗୀତର ଆଦର ଏବଂ ସେଥିରୁ ଉପୁଜୁ ଥିବା ବହୁ ସୁଯୋଗ ଅନେକ ପ୍ରତିଭାବାନ କଳାକାରଙ୍କୁ, ଆଜି ଅନୁପ୍ରାଣିତ କରି ପାରିଛି ସଙ୍ଗୀତକୁ ବୃତ୍ତି ଭାବରେ ଗ୍ରହଣ କରିବାକୁ । ମଞ୍ଚ ପ୍ରଦର୍ଶନ ଠାରୁ ଆରମ୍ଭ କରି, ଗ୍ରାମୋଫୋନ ରେକର୍ଡ, କ୍ୟାସେଟ୍ ଓ ଚଳଚ୍ଚିତ୍ର କ୍ଷେତ୍ରରେ ଆଜି ପ୍ରତିଷ୍ଠିତ ବହୁ ସଙ୍ଗୀତଶିଳ୍ପୀ ସେମାନଙ୍କର କଳାକାର ଜୀବନ ଆରମ୍ଭ କରିଥିଲେ ଆକାଶବାଣୀ କଟକରୁ ।

ସଙ୍ଗୀତ ଅନୁଷ୍ଠାନମାନଙ୍କରେ ବିଧିବଦ୍ଧ ତାଲିମ ବ୍ୟବସ୍ଥା ସୃଷ୍ଟି ହେଲା—ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ବହୁ କଳାକାରଙ୍କୁ ଗୁରୁ ରୂପରେ ପାଇ । ଓଡ଼ିଶାର ଓ ରାଜ୍ୟ ବାହାରୁ ଆସି, ଆକାଶବାଣୀର ବହୁ କଳାକାର ଏ କ୍ଷେତ୍ରରେ କାମ କରି ଯାଇଛନ୍ତି । ଶ୍ରୀ ବାଳକୃଷ୍ଣ ଦାସ, ଶ୍ରୀ ଭୁବନେଶ୍ୱର ମିଶ୍ର ଏବଂ ଶ୍ରୀ ହରିପ୍ରସାଦ ଚୌରାଶିଆଙ୍କ ଉଦାହରଣ ଦିଆଯାଇପାରେ ।

ଆକାଶବାଣୀରେ ମଧ୍ୟ ସଙ୍ଗୀତ ଶିକ୍ଷାର ବ୍ୟବସ୍ଥା ଏ ଦିଗରେ ଅନ୍ୟ ଏକ ପଦକ୍ଷେପ । ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା, ଓଡ଼ିଶୀ ସଙ୍ଗୀତ ଶିକ୍ଷା, ସୁଗମ ସଙ୍ଗୀତ ଶିକ୍ଷା ଏବଂ ଶିଶୁ ସଙ୍ଗୀତ ଶିକ୍ଷା କାର୍ଯ୍ୟକ୍ରମମାନ ବହୁ ନବୀନ ପ୍ରତିଭାଙ୍କୁ ଏ ଦିଗରେ ଆକୃଷ୍ଟ କରି ପାରିଛି । ଏପରିକି ଆଜିର ଅନେକ ପ୍ରତିଭାବାନ, ପ୍ରତିଷ୍ଠିତ ସଙ୍ଗୀତଶିଳ୍ପୀ ମଧ୍ୟ ଏଥିରୁ ଲାଭବାନ ହୋଇ ପାରିଛନ୍ତି ।

ନାଟକ କ୍ଷେତ୍ରରେ, ଏ ଗଣମାଧ୍ୟମମାନଙ୍କର ଭୂମିକା ମଧ୍ୟ ଅତି ଗୁରୁତ୍ୱପୂର୍ଣ୍ଣ । କଟକରେ ଥିଲା ବହୁବର୍ଷର ପୁରାତନ ନାଟ୍ୟପରମ୍ପରା । ରାଧାକୃଷ୍ଣ ଥିଏଟର ପେଣ୍ଡାଲର ଭଗ୍ନ ଅବଶେଷ ତାର ନୀରବ ସାକ୍ଷୀ । କିନ୍ତୁ ପରବର୍ତ୍ତୀ କାଳରେ—ଓଡ଼ିଶା ଥିଏଟର୍ସ, ଅନ୍ନପୂର୍ଣ୍ଣା, ଜନତା ଓ କଳାଶ୍ରୀ ଭଳି ପେଶାଦାର ରଙ୍ଗମଞ୍ଚ ମାନଙ୍କରେ, ନିୟମିତ ନାଟକ ପ୍ରଦର୍ଶନ—ନାଟ୍ୟପ୍ରେମୀ ଦର୍ଶକମାନଙ୍କୁ ନାଟକ ଦେଖିବାର ବହୁ ସୁଯୋଗ ଦେଇଥିଲା । ସେତେବେଳେ ବହୁ ନାଟ୍ୟଶିଳ୍ପୀ ଏ କ୍ଷେତ୍ରରେ କାମ କରୁଥିଲେ ।

ଆକାଶବାଣୀ, କଟକର ପ୍ରସାରର ଆରମ୍ଭ ଯୁଗରେ, ସେତେବେଳର ବହୁ ପ୍ରତିଷ୍ଠିତ ନାଟ୍ୟକାରମାନଙ୍କର ଜଣାଶୁଣା ନାଟକମାନଙ୍କର ପ୍ରସାର ଆରମ୍ଭ ହୋଇଥିଲା । କିନ୍ତୁ ଧୀରେ ଧୀରେ ଆକାଶବାଣୀ ଓ ଦୂରଦର୍ଶନ ନିଜସ୍ୱ ଶୈଳୀରେ ନାଟକ ପ୍ରସାର ଆରମ୍ଭ କଲେ । ଆକାଶବାଣୀ କଟକରୁ ପ୍ରସାରିତ ନାଟକମାନଙ୍କରୁ ସୃଷ୍ଟି ହେଲା— ଗୋଟିଏ ନୂଆ ଶୈଳୀର ଶ୍ରବଣ-ପ୍ରଧାନ ନାଟକ । ନୂଆ ପ୍ରକାରର ଏ ସବୁ ନାଟକ, 'ବେତାରନାଟକ' ନାମରେ ପରିଚିତ ହୋଇ ଓଡ଼ିଶାର ନାଟ୍ୟ ସାହିତ୍ୟ କ୍ଷେତ୍ରରେ ସୃଷ୍ଟି କଲା ଗୋଟିଏ ନୂଆ ପରମ୍ପରା । କେବଳ ବିଭିନ୍ନ ପ୍ରକାରର ଶବ୍ଦ ମାଧ୍ୟମରେ ଉପସ୍ଥାପିତ ଏ ନାଟକ-ରଙ୍ଗମଞ୍ଚରେ ଅଭିନୀତ ନାଟକମାନଙ୍କ ଠାରୁ, ବହୁ ଭାବରେ ଭିନ୍ନ ଥିଲା । ପରବର୍ତ୍ତୀକାଳରେ—ଦୂରଦର୍ଶନରେ ପ୍ରସାରିତ ହେବାକୁ ଯାଇ, ସୃଷ୍ଟି ହେଇଛି ଅନ୍ୟ ଶୈଳୀ, ଯାହା ଏବେ ମଧ୍ୟ ପରୀକ୍ଷାନିରୀକ୍ଷା ସ୍ତରରେ ଅଛି । ରଙ୍ଗମଞ୍ଚର ନାଟକ, ବେତାର ନାଟକ ଏବଂ ଚଳଚ୍ଚିତ୍ର ଏ ସମସ୍ତର ସମନ୍ୱିତ ପ୍ରୟୋଗରୁ ସୃଷ୍ଟି—ଦୂରଦର୍ଶନର ନାଟକ ।

ଅନେକେ ଅଭିଯୋଗ କରନ୍ତି –ଚଳଚ୍ଚିତ୍ର, ଆକାଶବାଣୀ ଏବଂ ଦୂରଦର୍ଶନ— ଏଇମାନଙ୍କୁ ଦାୟୀ କରାଯାଇ ପାରିବ, ଆଜିର ଓଡ଼ିଆ ନାଟକର ଅବକ୍ଷୟ ଲାଗି । କଥାଟି ଆଲୋଚନା ସାପେକ୍ଷ । ତେବେ କୌଣସି ପ୍ରକାରର ମତାନ୍ତରକୁ ଯାଇ ମଧ୍ୟ, ଏତିକ କୁହାଯାଇପାରେ ଯେ ଆଜିର ରଙ୍ଗମଞ୍ଚର ଏଇ ଅବଲୁପ୍ତ ଅବସ୍ଥାରେ ଦର୍ଶକ, ନାଟ୍ୟକାର ଓ କଳାକାର ସବୁରି ଲାଗି ଏବେ ବି ଆକାଶବାଣୀ ଓ ଦୂରଦର୍ଶନ କାମ କରି ଚାଲିଛି । ଏ କ୍ଷେତ୍ରରେ ଏବେ ବି ବହୁ ସଙ୍ଗଠକ, ନାଟ୍ୟକାର, ଅଭିନେତା, ଅଭିନେତ୍ରୀ ଓ ନିର୍ଦ୍ଦେଶକ ଏ ଦୁଇ ଗଣମାଧ୍ୟମରେ ସୁଯୋଗ ପାଉଛନ୍ତି । ନୂଆ କରି ଗଢ଼ି ଉଠି ଥିବା ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ମଧ୍ୟ ଏମାନେ ସୁଯୋଗ ପାଉଛନ୍ତି ଓ ଏଇମାନଙ୍କ ଉପରେ ନିର୍ଭର କରି ଗଢ଼ି ଉଠିଛି, ଓଡ଼ିଶାର ଚଳଚ୍ଚିତ୍ର ଶିଳ୍ପ ।

ନାଟକର ବିଭିନ୍ନ କ୍ଷେତ୍ରରେ ଏବଂ ନାଟକ ପ୍ରସାର କ୍ଷେତ୍ରରେ, ବିଭିନ୍ନ କ୍ଷେତ୍ରରେ, ବିଭିନ୍ନ ପରୀକ୍ଷା ନିରୀକ୍ଷା କରିବା ସଙ୍ଗେ ସଙ୍ଗେ, ଆକାଶବାଣୀ ଓ ଦୂରଦର୍ଶନ ଲୋକନାଟ୍ୟ କ୍ଷେତ୍ରରେ ମଧ୍ୟ କାମ କରୁଛନ୍ତି । ଯାତ୍ରା, ରାସ, ସୁଆଙ୍ଗ, ଏ ସବୁର ପ୍ରଚଳନ ବହୁ ପୂର୍ବରୁ ହୋଇ ଥିଲେ ମଧ୍ୟ, ଆଜି କାଲି ଏ ଦିଗରେ ନୂତନ ଆଗ୍ରହ ସୃଷ୍ଟି କରିବାରେ, ଏ ସବୁ ଗଣମାଧ୍ୟମମାନେ ଅନେକଭାବରେ କାମ କରୁଛନ୍ତି । ବୈଷ୍ଣବ ପାଣିଙ୍କର ଗୀତାଭିନୟ 'ରଙ୍ଗସଭା'କୁ ବେତାର ପ୍ରସାର ମାଧ୍ୟମରେ, ଯେଉଁଦିନ ଆକାଶବାଣୀ, କଟକ ଉପସ୍ଥାପିତ କରିଥିଲା, ସେଦିନ ଅନୁମାନ କରିବା କଷ୍ଟକର ଥିଲା, ପରବର୍ତ୍ତୀ କାଳରେ ଏଭଳି ଲୋକନାଟ୍ୟ, ଏତେ ଲୋକପ୍ରିୟ ହୋଇ ପାରିବ । ଏ ଲୋକପ୍ରିୟତା କେବଳ ଗ୍ରାମାଞ୍ଚଳରେ ନୁହେଁ, ତାହା ଏବେ ପରିବ୍ୟାପ୍ତ ସହରମାନଙ୍କରେ ମଧ୍ୟ । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ, ଆବଶ୍ୟକୀୟ ସମ୍ପାଦନା ଫଳରେ ତାହା ସମ୍ଭବ ହୋଇ ପାରିଛି ।

ପ୍ରଥମେ ବାବାଜୀ ବୈଷ୍ଣବଚରଣ ଦାସ, ମୋହନସୁନ୍ଦର ଦେବ ଗୋସ୍ୱାମୀ, ଗୋପାଳ ଦାଶ, ଧ୍ରୁବଚରଣ ଓ ବୈଷ୍ଣବ ପାଣିଙ୍କ ଲେଖାରୁ ଆରମ୍ଭ ହୋଇ ଥିଲେ ବି ଆଜି ବହୁ ପ୍ରତିଷ୍ଠିତ ନାଟ୍ୟକାର ଏଭଳି ଲୋକନାଟ୍ୟମାନ ରଚନା କରି, ନାନା ଭାବରେ ଓଡ଼ିଆ ନାଟ୍ୟସାହିତ୍ୟକୁ ସମୃଦ୍ଧ କରୁଛନ୍ତି । ଲୁପ୍ତପ୍ରାୟ ଲୋକନାଟ୍ୟର ପୁନରୁଦ୍ଧାର ହେବା ସଙ୍ଗେ ସଙ୍ଗେ—ଏଭଳି ଲୋକନାଟ୍ୟରେ ନୂଆ ନୂଆ ପ୍ରୟୋଗ ମଧ୍ୟ ଆରମ୍ଭ ହୋଇଛି । ପୌରାଣିକ, ଐତିହାସିକ ଓ ପାରମ୍ପରିକ ବିଷୟବସ୍ତୁ ଅପେକ୍ଷା, ଆଜିକାଲି ନାନା ସମସାମୟିକ ବିଷୟବସ୍ତୁ ନେଇ, ଏଭଳି ଲୋକନାଟ୍ୟରେ ପ୍ରୟୋଗ କରାଯାଉଛି ଅନେକ କ୍ଷେତ୍ରରେ ।

ଶ୍ରୋତା ଓ ଦର୍ଶକମାନଙ୍କୁ, ଉନ୍ନତ ରୁଚିର ଲୋକନାଟ୍ୟ ଉପଭୋଗର ସୁଯୋଗ ଦେବା ସାଙ୍ଗେ ସାଙ୍ଗେ, ଏ ସବୁରେ ସମ୍ପୃକ୍ତ ବହୁ କଳାକାରଙ୍କୁ ଲୋକଲୋଚନକୁ ଅଣା ଯାଇ ପାରିଛି । ଏ ସମ୍ପର୍କରେ ବହୁ ଆଲୋଚନା, ଚର୍ଚ୍ଚା ଓ ପରୀକ୍ଷା ନିରୀକ୍ଷା ଚାଲିଛି ଏବଂ କଟକର ସାହିବସ୍ତିରେ ଗଢି ଉଠିଛି, ବହୁ କଳା ଓ ସାଂସ୍କୃତିକ ଅନୁଷ୍ଠାନ ।

କଟକରେ ସାହିତ୍ୟର ପ୍ରଚାର ଓ ପ୍ରସାର ଲାଗି, ପୂର୍ବରୁ ପତ୍ର ପତ୍ରିକାମାନେ କାମ କରି ଆସିଛନ୍ତି । ଲେଖକ ସୃଷ୍ଟି କରିବା ସହିତ, ଲେଖକମାନଙ୍କର ଲେଖା ପାଠକମାନଙ୍କ ନିକଟରେ ପହଞ୍ଚାଇ ଦେବାରେ, ସେମାନଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଆକାଶବାଣୀ, କଟକ କେନ୍ଦ୍ର ପ୍ରତିଷ୍ଠିତ ହେବା ପରେ, ସାହିତ୍ୟର ବିଭିନ୍ନ କାର୍ଯ୍ୟକ୍ରମମାନ ପ୍ରଚାର କରା ଗଲା । ଘରେ ବସି, ପତ୍ର ପତ୍ରିକା କିଣି ପଢ଼ିବାର ଅସୁବିଧାରେ ନ ପଡ଼ି ମଧ୍ୟ, ଗଳ୍ପ, କବିତା; ପ୍ରବନ୍ଧ ଭଳି ସାହିତ୍ୟକୃତି ସହିତ ଗୀତ, ନାଟକ ଓ ଆଲୋଚନା ମାଧ୍ୟମରେ ସାହିତ୍ୟର ସ୍ୱାଦଗ୍ରହଣ କରିବାର ସୁଯୋଗ ସୃଷ୍ଟି ହେଲା । ପ୍ରତିଷ୍ଠିତ ଅଧିକାଂଶ ଲେଖକଙ୍କୁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ, ଶ୍ରୋତାମାନଙ୍କ ଆଗରେ ପହଞ୍ଚାଇଦେଲେ ଆକାଶବାଣୀ, କଟକ; ଏ ସହରବାସୀ ତଥା ଓଡ଼ିଶାର ଜନସାଧାରଣଙ୍କ ସେବାର ଯେଉଁ ଭୂମିକାଟି ତୁଲାଉ ଥିଲା—ଏବେ ଦୂରଦର୍ଶନ ତାକୁ ଆହୁରି ସୁଦୂର ପ୍ରସାରୀ କରି ପାରିଛି ।

ବିଭିନ୍ନ ପ୍ରକାରର ସାହିତ୍ୟ ସମ୍ପର୍କିତ କାର୍ଯ୍ୟକ୍ରମ ସହିତ ସାହିତ୍ୟିକମାନଙ୍କୁ ଭେଟିବାର ସୁଯୋଗ, ଦର୍ଶକମାନଙ୍କ ଲାଗି ସୃଷ୍ଟି କରି ପାରିଛି ଦୂରଦର୍ଶନ । ସେମାନଙ୍କ ସୃଷ୍ଟି ପୁସ୍ତକ, ସେମାନଙ୍କ କର୍ମକ୍ଷେତ୍ର, ସେମାନଙ୍କ ବର୍ଣ୍ଣିତ ବିଷୟକୁ ଦର୍ଶକମାନେ ଦେଖି ପାରୁଛନ୍ତି ଦୂରଦର୍ଶନ ମାଧ୍ୟମରେ । ମହାନଦୀରେ ନୌକାବିହାରର ବର୍ଣ୍ଣନା; କବିତାରେ କେବଳମାତ୍ର ପାଠ କରି ଦୂରଦର୍ଶନର କର୍ତ୍ତବ୍ୟ ଶେଷ ହେଉ ନାହିଁ । ପ୍ରକୃତରେ ଜ୍ୟୋତ୍ସ୍ନାସ୍ନାତ ମହାନଦୀ ଏବଂ ସେ ପରିବେଶରେ ନୌକାବିହାରକୁ ମଧ୍ୟ ଆଜି ଦୂରଦର୍ଶନ ତୋଳି ଧରି ପାରିଛି ଦର୍ଶକମାନଙ୍କ ସମ୍ମୁଖରେ ।

କଟକର ସାଂସ୍କୃତିକ ଜୀବନକୁ ବହୁଭାବରେ ପ୍ରଭାବିତ କରି ପାରିଛି ଏସବୁ ଗଣମାଧ୍ୟମ । ଅନେକ ପ୍ରତିଷ୍ଠିତ ସାଂସ୍କୃତିକ ଅନୁଷ୍ଠାନକୁ ନ ଯାଇ ମଧ୍ୟ କଟକର

ଦର୍ଶକ ସେ ସବୁର ବିବରଣୀ ପାଉଛନ୍ତି, ଏଇ ସବୁ ମାଧ୍ୟମମାନଙ୍କର ସହାୟତାରେ । ଭଞ୍ଜଜୟନ୍ତୀ, କୁମାର-ଉତ୍ସବ ଓ ବିଷୁବମିଳନ, କଟକରୁ ଆରମ୍ଭ ହୋଇ, ଆଜି ଓଡ଼ିଶାର ବହୁ ଅଞ୍ଚଳରେ ପୂର୍ଣ୍ଣାଙ୍ଗରେ ପାଳିତ ହେଉଛି । କିନ୍ତୁ ଏ ସବୁର ଲୋକପ୍ରିୟତାମୂଳରେ ଏଇ ଗଣମାଧ୍ୟମର ଭୂମିକା ମଧ୍ୟ ପ୍ରଣିଧାନଯୋଗ୍ୟ । ପୁଣି ବାଲିଯାତ୍ରା, ଦଶହରା ଭଳି ଉତ୍ସବ ଅନୁଷ୍ଠାନ ଠାରୁ ଆରମ୍ଭ କରି କ୍ରିକେଟ, ଫୁଟବଲ ଭଳି ଖେଳ କସରତ ପର୍ଯ୍ୟନ୍ତ ଏ ସବୁକୁ କଟକ ଓ କଟକ ବାହାରେ ସମଗ୍ର ଓଡ଼ିଶାରେ, ଏଇ ଗଣମାଧ୍ୟମମାନେ ହିଁ ଦେଖାଇ ଦେଇ ପାରୁଛନ୍ତି । ପୁଣି କଟକଠାରୁ ଦୂରରେ ହୋଇଥିବା, ଅନେକ ଉତ୍ସବ ଅନୁଷ୍ଠାନ ମଧ୍ୟ, କଟକର ନାଗରିକମାନଙ୍କ ନିକଟରେ, ଏଇ ସବୁ ଇଲେକ୍ଟ୍ରୋନିକ୍ ଗଣମାଧ୍ୟମମାନେ ଦେଖାଇ ଦେଇ ପାରୁଛନ୍ତି ।

ଏ ସବୁର ଆଲୋଚନାରୁ ଗୋଟିଏ କଥା ସ୍ପଷ୍ଟ ହୁଏ ଯେ, କଟକର ନାଗରିକ ଜୀବନ ବହୁଭାବରେ, ଓତଃପ୍ରୋତ ଭାବରେ ଜଡ଼ିତ, ଆକାଶବାଣୀ ଓ ଦୂରଦର୍ଶନ; ଏଇ ଦୁଇ ଗଣମାଧ୍ୟମ ସହିତ । ପୁଣି; ଏ ଦୁଇ ଗଣମାଧ୍ୟମ ମଧ୍ୟ ବହୁଭାବରେ ସମୃଦ୍ଧ— କଟକର ସାଂସ୍କୃତିକ ପରମ୍ପରା ଦ୍ୱାରା । କଟକର ଗଣମାଧ୍ୟମର ପରମ୍ପରାକୁ; ଓଡ଼ିଶାର ଗଣମାଧ୍ୟମର ପରମ୍ପରା କହିବା ଯେମିତି ଅତ୍ୟୁକ୍ତି ନୁହେଁ; ଯେମିତି କଟକର ନାଗରିକ ଜୀବନ ସହିତ, ଏଇ ଗଣମାଧ୍ୟମଗୁଡ଼ିକ କେତେ ପରିମାଣରେ ଜଡ଼ିତ ହୋଇ ଯାଇଛି ତାର ଆକାର ପ୍ରକାର ନିର୍ଦ୍ଧାରଣ କରିବା-ଧୃଷ୍ଟତା ମାତ୍ର । କଟକର ସଚେତନ, ଗୁଣଗ୍ରାହୀ, ସମ୍ବେଦନଶୀଳ ନାଗରିକ ଜୀବନର ଗୋଟିଏ ଅତି ଦରକାରୀ, ଲୋକପ୍ରିୟ ଓ ଆକର୍ଷଣୀୟ ଅଂଶ ହେଲା, କଟକର ଆକାଶବାଣୀ ଓ ଦୂରଦର୍ଶନ ।



# କଟକର ପ୍ରେକ୍ଷାଳୟ

**ଶ୍ରୀ ତୀର୍ଥାନନ୍ଦ ମିଶ୍ର**

## ପ୍ରାରମ୍ଭିକୀ :

ପ୍ରେକ୍ଷାଳୟ ପ୍ରତ୍ୟେକ ଜାତିର ପରିଚୟ ପତ୍ର । ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ପ୍ରଗତି, ତା'ର କ୍ରମ ଉତ୍ତରଣ—ଅବତରଣ, ଅବସ୍ଥା ସମସାମୟିକ ପ୍ରେକ୍ଷାଳୟରୁ ହିଁ ମିଳିଥାଏ । ଏହା କେବଳ ଏକ ଅବସର ବିନୋଦନ ବା ଶସ୍ତା ବିନୋଦନ ପରିବେଶ ନୁହେଁ, ବରଂ ଏକ ସାମାଜିକ ସଚେତନତା ସୃଷ୍ଟି କରିବାରେ ଏହାର ଅବଦାନ ଯଥେଷ୍ଟ ଅଛି । ଏହି ପ୍ରେକ୍ଷାଳୟ ବ୍ୟକ୍ତିର ସଙ୍କୀର୍ଣ୍ଣ କୂପମଣ୍ଡୂକଭାବକୁ ଦୂରେଇ ଦେଇ ତାକୁ ଦେଶ ଏବଂ ଆନ୍ତର୍ଜାତିକ ସମସ୍ୟାମାନଙ୍କ ସମ୍ପର୍କରେ ସଚେତନ କରିଦିଏ । ଲୋକ-ଶିକ୍ଷା ପ୍ରଦାନ ମଧ୍ୟ ଏହି ପ୍ରେକ୍ଷାଳୟ ଦ୍ୱାରା ସମ୍ଭବ ହୋଇଥାଏ ।

ଏହା ଦେହରେ ପ୍ରଦର୍ଶିତ ଚଳଚ୍ଚିତ୍ର ଦର୍ଶକଙ୍କୁ ମିତ୍ର ସମ୍ମିତ ତଥା କାନ୍ତା ସମ୍ମିତ ଉପଦେଶ ଦାନରେ ମଧ୍ୟ ସହାୟକ ହୋଇଥାଏ । ଭାରତରେ ଚଳଚ୍ଚିତ୍ର ପ୍ରଦର୍ଶନ ପ୍ରମୁଖ ଭାବରେ ଇଂରେଜମାନଙ୍କର ଏକ ସୁମହାନ୍ ଅବଦାନ । ପ୍ରଥମ କରି ଭାରତରେ ୧୮୯୬ ଖ୍ରୀ: ଜୁଲାଇ ୭ ତାରିଖରେ ଲୁମିନିଅର ବ୍ରଦର୍ସ ବମ୍ବେର ଓ୍ୱାଟ୍‌ସନ୍‌ସ ହୋଟେଲରେ ଏକ ଇଂରାଜୀ ଚଳଚ୍ଚିତ୍ର ପ୍ରଦର୍ଶନ କରିଥିଲେ । (୧)

ଏହା କାଳକ୍ରମେ ଲୋକପ୍ରିୟ ହୋଇ ଉଠିଲା । ଭାରତରେ ବସବାସ କରୁଥିବା ଇଂରେଜମାନେ ଏହି ଚଳଚ୍ଚିତ୍ରକୁ ଏକ ସମ୍ଭ୍ରାନ୍ତ ଅବସର ବିନୋଦନ ମାଧ୍ୟମ ଭାବରେ ଗ୍ରହଣ କରି ନେଲାପରେ ଭାରତୀୟମାନଙ୍କ ମନରେ ଏହାପ୍ରତି ମଧ୍ୟ ଆଗ୍ରହ ଦେଖାଦେଲା । ଏହାର ଫଳଶ୍ରୁତି ରୂପେ ୧୯୧୩ ମସିହା ମେ' ୩ ତାରିଖରେ ଦାଦା ସାହେବ ଫାଲକେଙ୍କ ଦ୍ୱାରା ପ୍ରଥମ ଭାରତୀୟ ସବାକ୍ ଚଳଚ୍ଚିତ୍ର 'ରାଜା ହରିଶ୍ଚନ୍ଦ୍ର' ନିର୍ମିତ ହୋଇଥିଲା ।

---

(୧) Report of the Working Group of National film Policy : Minister of Information and Broad Casting, Govt of India, 1980. Introduction.

ଏହା ପୂର୍ବରୁ ଭାରତର ପ୍ରଥମ ନିର୍ବାକ୍ ଚଳଚ୍ଚିତ୍ର ଭାବରେ ଏକ ପ୍ରେମ କାହାଣୀକୁ ଆଧାର କରି 'ଆଲମ୍ଆରା' ନାମକ ଏକ ନିର୍ବାକ୍ ଚଳଚ୍ଚିତ୍ର ଗଢ଼ି ଉଠିଥିଲା, ମାତ୍ର 'ରାଜା ହରିଶ୍ଚନ୍ଦ୍ର'କୁ ଭାରତୀୟ ଚଳଚ୍ଚିତ୍ର ଇତିହାସର ପ୍ରଥମ ଶୁଭାରମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ ।

ଓଡ଼ିଶାର ଅନ୍ୟାନ୍ୟ ପଡ଼ୋଶୀ ରାଜ୍ୟମାନେ ବହୁପୂର୍ବରୁ ଇଂରେଜମାନଙ୍କର ସଂସ୍ପର୍ଶରେ ଆସିଥିଲା ବେଳେ ଓଡ଼ିଶା ବହୁପରେ ଅର୍ଥାତ୍ ୧୮୦୩ ଖ୍ରୀ: ବେଳକୁ ଇଂରେଜ ଶାସନାଧୀନ ହୋଇଥିଲା । ସେତେବେଳେ କଲିକତା ଭଳି ଏକ ବିଳାସମୟୀ ନଗରୀ ଥାଉଁ ଥାଉଁ ଇଂରେଜମାନେ ଏକ ଶିକ୍ଷାହୀନ ତଥା ଦୁର୍ଭିକ୍ଷଗ୍ରସ୍ତ ପ୍ରଦେଶରେ ବହୁ ସମୟ ଅତିବାହିତ କରିବାକୁ ସମ୍ଭବତଃ ଇଚ୍ଛୁକ ନଥିଲେ । ତେଣୁ ବଙ୍ଗାଳୀମାନଙ୍କ ଅପେକ୍ଷା ଓଡ଼ିଆମାନେ ଖୁବ୍ କମ୍ ଇଂରେଜମାନଙ୍କ ସଂସ୍ପର୍ଶରେ ଆସିଥିଲେ ।

ଏହା ଫଳରେ ଓଡ଼ିଶାରେ ଚଳଚ୍ଚିତ୍ର ପ୍ରତି ଆଗ୍ରହ ବଙ୍ଗାଳୀ ଅପେକ୍ଷା ବହୁପରେ ଦେଖା ଦେଇଥିଲା । କଟକ ଥିଲା ସେ ସମୟର ଓଡ଼ିଶାର ପ୍ରଧାନ କେନ୍ଦ୍ରସ୍ଥଳ । ଅବଶ୍ୟ ବଙ୍ଗଳାକୁ ଲାଗିରହିଥିବା ବାଲେଶ୍ୱର ସର୍ବପ୍ରଥମେ ଇଂରେଜ ଶିକ୍ଷା ସଭ୍ୟତାରେ ପ୍ରଥମେ ପ୍ରଭାବିତ ହୋଇଥିଲା, ତଥାପି ଓଡ଼ିଶାର କେନ୍ଦ୍ରବିନ୍ଦୁ କଟକରେ ସେ ସମୟରେ ଓଡ଼ିଶାର ପ୍ରାୟ ଅଧିକାଂଶ ପ୍ରଥମ ଶ୍ରେଣୀର ନାଗରିକ ବସବାସ କରୁଥିଲେ । ତେଣୁ ଇଂରେଜ ଶିକ୍ଷା ସଭ୍ୟତା କ୍ରମେ କଟକରେ ନିଜର ପ୍ରଭାବ ବିସ୍ତାର କଲା । ବିନୋଦନର ଏକ ସମ୍ଭ୍ରାନ୍ତ ମାଧ୍ୟମ ଚଳଚ୍ଚିତ୍ର ପ୍ରତି କ୍ରମେ ଏହି ସହରର ଅଧିବାସୀଙ୍କ ଆକର୍ଷଣ ଦେଖିବାକୁ ମିଳିଲା । ଏହାର ପରିପୂର୍ତ୍ତି ପାଇଁ କଟକକୁ ପ୍ରାଥମିକ ସ୍ତରରେ କେତେକ ଭ୍ରାମ୍ୟମାଣ ଚଳଚ୍ଚିତ୍ର ପ୍ରଦର୍ଶନକାରୀ ଆସୁଥିଲେ ଆସି ଚଳଚ୍ଚିତ୍ର ପ୍ରଦର୍ଶନ କରିଥିଲେ ।

## ଉଦୟର ଆହ୍ୱାନ :

ପ୍ରାଥମିକ ସ୍ତରରେ ମୁଖ୍ୟତଃ ନିର୍ବାକ୍ ଚଳଚ୍ଚିତ୍ର (Silent Picture) ହିଁ ନିର୍ମିତ ହେଉଥିଲା । ଏହି ସମସ୍ତ ଛବି ମଧ୍ୟରୁ ଅଧିକାଂଶ ଥିଲା ଇଂରେଜୀ ଓ କେତେକ ଥିଲା ହିନ୍ଦୀ ଓ ବଙ୍ଗଳା ଭାଷାର । ଏହି ସମସ୍ତ ଚଳଚ୍ଚିତ୍ରର ପ୍ରଦର୍ଶନ ପାଇଁ କେତେକ ବ୍ୟବସାୟୀ ପ୍ରତିଷ୍ଠାନ ଚଳଚ୍ଚିତ୍ର ପ୍ରଦର୍ଶନର ସମସ୍ତ ସାଧନ ସହିତ ସ୍ଥାନକୁ ସ୍ଥାନ ବୁଲି ବୁଲି ଚଳଚ୍ଚିତ୍ର ପ୍ରଦର୍ଶନ କରୁଥିଲେ ।

ଏହି ଭ୍ରାମ୍ୟମାଣ ଦଳମାନଙ୍କ ମଧ୍ୟରୁ ସମ୍ଭବତଃ ପ୍ରଥମ କରି କଟକକୁ 'ଗ୍ଲୋମେରିଆ ସିନେମା କମ୍ପାନୀ' ନାମକ ଏକ ଦଳ ଆସି କଟକରେ ପ୍ରଥମ କରି ଚଳଚ୍ଚିତ୍ର ପ୍ରଦର୍ଶନ କରିଥିଲେ । ସମ୍ଭବତଃ ୧୯୨୬-୨୭ ବେଳକୁ ଏମାନେ କଟକ ଆସିଥିଲେ । ଏମାନେ ପୁରୁଣା ରେଲୱେ ଷ୍ଟେସନ ହୋଇଥିବା ମଧୁପୁର କୋଠିର ସମ୍ମୁଖରେ ଏବେ ଯେଉଁଠି 'କାଲ୍‌କାଟା ସୁଇଟ୍ସ' ହୋଇଛି ସେହି ସ୍ଥାନରେ ବାଉଁଶ ଓ ପାଲ ସାହାଯ୍ୟରେ

ଏକ ଅସ୍ଥାୟୀ ପ୍ରେକ୍ଷାଳୟର ଆୟୋଜନ କରି କେତେକ ନିର୍ବାକ୍ ଚଳଚିତ୍ର ପ୍ରଦର୍ଶନ କରିଥିଲେ । ବସିବାର ସାଧନ ମଧ୍ୟ ଏଥିରେ ଅତି ନିମ୍ନ ମାନର ଥିଲା । ଉପର ଶ୍ରେଣୀର ଦର୍ଶକମାନଙ୍କ ବସିବା ପାଇଁ ଲୁହାରତର ମୋଡ଼ାମୋଡ଼ା ଚୌକି ଥିଲା ଓ ସମ୍ମୁଖ ଭାଗରେ ସାଧାରଣ ଦର୍ଶକଙ୍କ ପାଇଁ ତଳେ ଦରି ପକାଯାଉଥିଲା ।

ଏହି ନିର୍ବାକ୍ ଚଳଚିତ୍ରମାନଙ୍କରେ ପର୍ଦ୍ଦା ଉପରେ କେବଳ ଅଭିନେତା ଅଭିନେତ୍ରୀମାନେ ଅଭିନୟ କରୁଥିଲେ । ରଙ୍ଗ ପର୍ଦ୍ଦାର ସମ୍ମୁଖଭାଗରେ ଦେଖ ଉପରେ କେତେକ ବାଦକମାନେ ବସି ମୁଖ୍ୟତଃ ଡ୍ରମ୍, ବେହେଲା ଆଦି ବଜାଉଥିଲେ । କରୁଣ ଦୃଶ୍ୟବେଳେ ବେହେଲାଦ୍ୱାରା ଓ ଆନନ୍ଦଦାନ ମୁହୂର୍ତ୍ତ ବେଳେ ଡ୍ରମ୍ ତଥା ବାଦ୍ୟ ଯନ୍ତ୍ରର ସମ୍ମିଳିତ ଧ୍ୱନିତରଙ୍ଗ ଭିତରେ ଏହି ବାଦକମାନେ ପ୍ରେକ୍ଷାପଟ ସଙ୍ଗୀତ ସୃଷ୍ଟି କରୁଥିଲେ । ଆଉଜଣେ ଲୋକ ଏକ ପଶ୍ଚରେ ଠିଆ ଚଳଚିତ୍ରର ଚରିତ୍ରମାନଙ୍କ ସମ୍ପର୍କରେ ଧାରଣା ଦେଉଥିଲେ ଓ ଘଟଣା ପ୍ରବାହର ସଂକ୍ଷିପ୍ତ ବର୍ଣ୍ଣନା ମଧ୍ୟ କରୁଥିଲେ ।

ଠିକ୍ ୧୯୨୬-୨୭ ବେଳକୁ ବା ଏହାର କିଛି ସମୟ ପରେ ଅନ୍ୟ ଏକ ସିନେମା କମ୍ପାନି କଟକରେ ନିର୍ବାକ୍ ଚଳଚିତ୍ର ପ୍ରଦର୍ଶନ କରିବାକୁ ଆରମ୍ଭ କରିଥିଲେ । ଏହି କମ୍ପାନିର ନାମ ଥିଲା 'ପ୍ରେକ୍ସୀ ଥିଏଟର୍ସ' । ବର୍ତ୍ତମାନ ଯେଉଁଠି ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ରଙ୍ଗମଞ୍ଚ ହୋଇଛି, ତାହା ନିକଟରେ ଏହି ଅସ୍ଥାୟୀ ପ୍ରେକ୍ଷାଳୟଟି ନିର୍ମିତ ହୋଇଥିଲା । ଏହି ଥିଏଟର୍ସ ପ୍ରମୁଖଭାବରେ ନିକୁଞ୍ଜକିଶୋର ଦାସଙ୍କ ପ୍ରଚେଷ୍ଟାରେ ହିଁ ପରିଚାଳିତ ହେଉଥିଲା । ନିକୁଞ୍ଜବାବୁ ଥିଲେ ତତ୍କାଳୀନ ପଲିଟିକାଲ୍ ଏଜେଣ୍ଟ ନନ୍ଦକିଶୋର ଦାସଙ୍କ ନାତି ଓ ଓଡ଼ିଶା ମନ୍ଦିର ପ୍ରଶାସନ ସେବାରେ କାର୍ଯ୍ୟ କରୁଥିବା ରାଜକିଶୋର ଦାସଙ୍କ ପୁଅ ।

ସେ ସେକାଳର ମେ ଇଂରେଜୀ ସମ୍ମାନଧାରୀ ସ୍ନାତକ ଥିଲେ । ଏହି ପ୍ରେକ୍ସୀ ଥିଏଟର୍ସ ମଧ୍ୟ ଏକ ଅସ୍ଥାୟୀ ପ୍ରେକ୍ଷାଳୟ ଥିଲା । ଏଥିରେ ମୁଖ୍ୟତଃ ନିର୍ବାକ୍ ଚଳଚିତ୍ର ପ୍ରଦର୍ଶିତ ହେଉଥିଲା । ଏହା ଦୁଇ ତିନିବର୍ଷ ଚାଲିଥିଲା । ୧୯୩୧-୩୨ ମସିହା ବେଳକୁ ଏହା ଭାଙ୍ଗି ଯାଇଥିବାର ଅନୁମିତ ହୁଏ ।

ଠିକ୍ ସେହି ସ୍ଥାନରେ 'ପ୍ରେକ୍ସୀ ଥିଏଟର୍ସ'ର ପାଦ ପ୍ରଦୀପ ଅସ୍ତମିତ ହୋଇଯିବା ପରେ କଟକରେ ଅନ୍ୟ ଏକ ପ୍ରତିଷ୍ଠିତ ପ୍ରେକ୍ଷାଳୟ ମୁଣ୍ଡଟେକିଲା । ତାର ନାମ ଥିଲା, 'ହାଲ୍‌ମୁକ୍' । ଏହି ପ୍ରେକ୍ଷାଳୟ କଟକରେ ଚଳଚିତ୍ର ପ୍ରଦର୍ଶନ ପାଇଁ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏହାର ମୁଖ୍ୟ ବ୍ୟବସ୍ଥାପକ ଥିଲେ 'ହାଲ୍‌ଦାର' ଏବଂ 'ମୁଖାର୍ଜୀ' ନାମକ ଦୁଇଜଣ ବଙ୍ଗାଳୀ ଭଦ୍ରବ୍ୟକ୍ତି, ଯେଉଁମାନଙ୍କର ମିଳିତ ନାମାନୁସାରେ ପ୍ରେକ୍ଷାଳୟଟି 'ହାଲ୍‌ମୁକ୍' ନାମରେ ନାମିତ ହୋଇଥିଲା ।

ଏଥିରେ ପ୍ରଥମେ ନିର୍ବାକ୍ ଚଳଚିତ୍ର ପଡ଼ୁଥିଲା । ପରେ ଏହି ପ୍ରେକ୍ଷାଳୟରେ ସବାକ୍ ଚଳଚିତ୍ର ପଡ଼ିଲା । ୧୯୩୨-୩୩ ମସିହା ବେଳକୁ ସମ୍ଭବତଃ ଏହାର ଶୁଭାରମ୍ଭ ହୋଇଥିଲା । ପ୍ରଥମ ହିନ୍ଦୀ ସବାକ୍ ଚଳଚିତ୍ର 'ରାଜା ହରିଶ୍ଚନ୍ଦ୍ର' ମଧ୍ୟ ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା ବୋଲି ଜଣାଯାଏ । ସ୍ୱର୍ଗତ ମୋହନ ସୁନ୍ଦର ଗୋସ୍ୱାମୀଙ୍କ ପ୍ରଯୋଜନାରେ ଓଡ଼ିଶାର ପ୍ରଥମ ଚଳଚିତ୍ର 'ସୀତା ବିବାହ' ୧୯୩୪ ମସିହାରେ ଏହି 'ହଲ୍‌ମୁକ୍' ପ୍ରେକ୍ଷାଳୟରେ ପଡ଼ିଥିଲା ।

ଏହା ମୁଖ୍ୟତଃ ଇଟାର କାନ୍ଥ ଦ୍ୱାରା ଆବୃତ୍ତ ହୋଇଥିବା ଓ ଉପରେ ଖଳ ଛପର ଦ୍ୱାରା ଆଚ୍ଛାଦିତ ଥିବା ଏକ ପ୍ରେକ୍ଷାଳୟ ଥିଲା । ବସିବାପାଇଁ ପ୍ରଥମ ଭାଗରେ ଇଟାର ଖଣ୍ଡ ଉପରେ ପଟା ବିଛାହୋଇ ଆସନର ବ୍ୟବସ୍ଥା ହୋଇଥିଲା ଓ ଶେଷ ଭାଗ ଆଡ଼କୁ ସମ୍ଭବତଃ ଚେୟାର ପଡ଼ୁଥିଲା । ପରବର୍ତ୍ତୀ କାଳରେ କ୍ୟାପିଟାଲ ସିନେମାର ସ୍ୱତ୍ୱାଧିକାରୀ ନରେନ୍ ମିତ୍ର ଏହି ପ୍ରେକ୍ଷାଳୟର ପ୍ରୋଜେକ୍ଟର ଅପରେଟର ଓ ପରିଚାଳନା ସହକାରୀ ଥିଲେ । ପ୍ରେକ୍ଷାଳୟର ସୁଚାରୁ ସମ୍ପାଦନ ପାଇଁ ସେ କିଛି ଟଙ୍କା ଏହାର ମାଲିକଙ୍କୁ ଦେଇଥିଲେ ।

ସମ୍ଭବତଃ ଦୁଇ ଅଂଶୀଦାରଙ୍କ ମଧ୍ୟରେ କୌଣସି କାରଣରୁ ବିବାଦ ଲାଗିବାରୁ ସେମାନେ ଏହି ପ୍ରେକ୍ଷାଳୟଟିକୁ ବିକ୍ରୀ କରିଦେବାକୁ ବସିଲେ ଏବଂ ନରେନ୍ ମିତ୍ରଙ୍କୁ ଦେବାକୁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ । ମାତ୍ର ପରେ ନିଜ ପ୍ରତିଶ୍ରୁତିକୁ ରକ୍ଷା ନକରି ସେମାନେ ଚୌଧୁରୀ ବଜାରର ମାରୱାଡ଼ି ବ୍ୟବସାୟୀ ଜୟନାରାୟଣଙ୍କୁ ଏହି ସିନେମା ବିକି ଦେଲେ । ନରେନ୍ ମିତ୍ର ନିଜ ଟଙ୍କା ଫେରି ନ ପାଇବାରୁ ପ୍ରେକ୍ଷାଳୟର ଦୁଇଟିଯାକ ପ୍ରୋଜେକ୍ଟର ଓ ତାର ସମ୍ପୂର୍ଣ୍ଣ ଉପାଦାନ ନେଇ ଚାଲି ଆସିଲେ । ବିକ୍ରୀ ହୋଇଯିବା ପରେ କେତେକ ସମୟ ଏହି ପ୍ରେକ୍ଷାଳୟ ଚାଲିଥିଲା ।

ସମ୍ଭବତଃ ୧୯୩୬ ମସିହା ବେଳକୁ ଏହା ବନ୍ଦ ହୋଇଗଲା । ବର୍ତ୍ତମାନ ନିର୍ମିତ ହୋଇଥିବା ହୋଟେଲ ଓରିଏଣ୍ଟା ସ୍ଥାନରେ ଏକ ବଡ଼ ପୋଖରୀ ଥିଲା ଓ ଥରେ ପ୍ରବଳ ବର୍ଷାରେ ଏହା ଜଳପୂର୍ଣ୍ଣ ହୋଇ ପାଣି ଉବୁକି ଆସିବାରୁ ହଲମୁକ୍‌ର ଗୋଟିଏ ପାଖର କାନ୍ଥ ଭାଙ୍ଗିଗଲା । ଫଳରେ ପ୍ରାୟ ୧୯୩୬ ମସିହା ବେଳକୁ ହଲ୍‌ମୁକ୍‌ର ପାଦ ପ୍ରଦୀପ ସବୁଦିନ ପାଇଁ ଅସ୍ତମିତ ହୋଇଗଲା । ଏହି ପ୍ରେକ୍ଷାଳୟରେ ଅନେକ ଆକର୍ଷଣୀୟ ହିନ୍ଦୀ, ବଙ୍ଗଳା ଓ ଇଂରାଜୀ ଚଳଚିତ୍ର ପ୍ରଦର୍ଶିତ ହୋଇଥିଲା । ଏମାନଙ୍କ ମଧ୍ୟରୁ 'ଥ୍ରି ମସ୍କ୍ୟୁଟେର୍ସ' (ମୁଖ୍ୟ ଅଭିନେତା ଡଗ୍‌ଲାସ୍ ଫେୟାର ବାଙ୍କ୍‌ସ), 'ଟୁ ଏଲ୍‌ଭ ମାଇଲ୍‌ସ ଆଉଟ' (ମୁଖ୍ୟ ଚରିତ୍ର-ଲନ୍ ଚ୍ୟାନି) ଆଦି ଇଂରାଜୀ ଚଳଚିତ୍ର, ଦେବଦାସ, ଦୁର୍ଗେଶନନ୍ଦିନୀ, କୃଷ୍ଣକାନ୍ତେର ଉଇଲ, ମୁକ୍ତି ଆଦି ବଙ୍ଗଳା ଚଳଚିତ୍ର ଓ ବନ୍ଧନ (ଅଶୋକ କୁମାର, ଲୀଳା ଚିଟ୍‌ନିସ୍) ଭଳି ହିନ୍ଦୀ ଚଳଚିତ୍ର ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ।

ଯେଉଁ ସ୍ଥାନରେ ଭ୍ରାମ୍ୟମାଣ ଗୁଜମହଆ ସିନେମା କମ୍ପାନୀ ଖେଳ ଦେଖାଉଥିଲି, ସେହି ସ୍ଵରୁଣା ରେଡ଼ିଓ ଷ୍ଟେସନ୍ ହୋଇଥିବା ମଧୁପୁର କୋଠିର ସମ୍ମୁଖଭାଗରେ ବର୍ତ୍ତମାନ ଯେଉଁଠି କାଲ୍‌କଟା ସୁଇଟ୍ସ ହୋଇଛି ସେହି ସ୍ଥାନରେ ୧୯୨୮-୨୯ ବେଳକୁ ଗୋଟିଏ ସ୍ଥାୟୀ ପ୍ରେକ୍ଷାଳୟ ନିର୍ମିତ ହୋଇଥିଲା । ତାହାର ନାମଥିଲା 'ସିନେମା ପ୍ୟାଲେସ୍' । ଏଠାରେ ଅନେକ ନିର୍ବାକ୍ ଚଳଚିତ୍ର ପଡ଼ୁଥିଲା ।

ସମ୍ଭବତଃ ଏହି ପ୍ରେକ୍ଷାଳୟରେ 'ଲାଇଫ୍ ଅଫ୍ କ୍ରାଇଷ୍ଟ' ନାମରେ ଏକ ଇଂରେଜୀ ନିର୍ବାକ୍ ଚଳଚିତ୍ର ପଡ଼ୁଥିଲା । ଏହାର ସମ୍ମୁଖଭାଗରେ ବେଞ୍ଚ, ପଛଭାଗରେ ଟିଣଚେୟାରର ବ୍ୟବସ୍ଥାଥିଲା । କେହି କେହି ବିଶେଷ ଭଦ୍ରଲୋକ ଆସିଲେ ତାଙ୍କ ପାଇଁ କଣ୍ଟି ବିଶେଷ ବ୍ୟବସ୍ଥା ହେଉଥିଲା । ଏହି ପ୍ରେକ୍ଷାଳୟରେ ଅନେକ ନିର୍ବାକ୍ ଚଳଚିତ୍ର ଖେଳାଥିଲା । ଡଗଲାସ୍ ଫେୟାର୍ ବ୍ୟାଙ୍କ୍ସ ଓ ମାଷ୍ଟର ଭିଟରଙ୍କ ଅଭିନୀତ ଚଳଚିତ୍ର ଏହି ପ୍ରେକ୍ଷାଳୟରେ ପ୍ରଭୂତ ଲୋକପ୍ରିୟତା ଅର୍ଜନ କରିଥିଲା । ଶିରିନ୍ ଫରହାଦ୍ ଏହି ପ୍ରେକ୍ଷାଳୟରେ ମଧ୍ୟ ଅନେକ କଳାପ୍ରେମୀ ଦର୍ଶକମାନଙ୍କ ଶ୍ରଦ୍ଧା ଆକର୍ଷଣ କରିଥିଲା । ଏହି ପ୍ରେକ୍ଷାଳୟର ମାଲିକଥିଲେ ତତ୍କାଳୀନ ସୁପ୍ରସିଦ୍ଧ ମୋଟର ମେକାନିକ୍ ଫ୍ରାନ୍‌ସିସ୍ ସାହେବ । ତାଙ୍କର ଏକ ମୋଟର ଗ୍ୟାରେଜ ମଧ୍ୟ ଥିଲା । ସେ ଗୋଟିଏ ଡାଇନାମୋରେ ଉଭୟ ମୋଟର ଗ୍ୟାରେଜ ଓ ଚଳଚିତ୍ର ପ୍ରେକ୍ଷାଳୟକୁ ଆଲୋକ ଯୋଗାଉଥିଲେ ।

ଏହି ସମସ୍ତ ପ୍ରେକ୍ଷାଳୟ ମୁଖ୍ୟତଃ ଦୁଇଟି ଶୋ କରୁଥିଲେ । ମ୍ୟାଟିନି ଶୋ ଏମାନଙ୍କଦ୍ଵାରା ସମ୍ଭବ ହେଉନଥିଲା । କାରଣ ସୂର୍ଯ୍ୟକିରଣ ପ୍ରବେଶ ନକରି ପାରିବାଭଳି ଅନ୍ଧାରକୋଠରୀ ଏମାନଙ୍କ ପାଖରେ ନଥିଲା । ପୁଣି ଏହି ସମସ୍ତ ପ୍ରେକ୍ଷାଳୟ ମୁଖ୍ୟତଃ କଟକର ପ୍ରାଥମିକ ଅବସ୍ଥାର ପ୍ରେକ୍ଷାଳୟ ଥିଲେ । ଏମାନଙ୍କ ଭିତରୁ ଅଧିକାଂଶ ପୁଣି ବାଉଁଶ ତାଟି ଓ ନଡ଼ାଛପରର ଘର ଥିଲେ । ଚଳଚିତ୍ର ଦର୍ଶକଙ୍କ ପାଇଁ ଏହି ଘରଗୁଡ଼ିକ ଏକ ଭବ୍ୟ ପରିବେଶ ସୃଷ୍ଟି କରି ପାରୁନଥିଲେ । ବର୍ତ୍ତମାନପରି ସେତେବେଳେ ଉନ୍ନତ-ମାନର ଆସନର ବ୍ୟବସ୍ଥା ମଧ୍ୟ ନଥିଲା । ଏହି ସମସ୍ତ କାରଣରୁ କଟକର ଏହି ପ୍ରେକ୍ଷାଳୟମାନଙ୍କୁ ଉପଯୁକ୍ତକାଳୀନ ପ୍ରଥମ କାକଳି ଭାବରେ ଗ୍ରହଣ କରାଯାଇପାରେ ।

## ମଧ୍ୟାହ୍ନର ପ୍ରତିଶ୍ରୁତି :

ପ୍ରେକ୍ଷାଳୟ ପାଇଁ ସମସ୍ତ ଆନ୍ତରିକ ଉଦ୍ୟମର ଫଳଶ୍ରୁତି ରୂପେ କଟକରେ ଆତ୍ମପ୍ରକାଶ କରେ 'କ୍ୟାପିଟାଲ ସିନେମା' । ଏହାର ସ୍ଵତ୍ଵାଧିକାରୀ ଥିଲେ 'ହାଲମୁକ୍'ର ପୂର୍ବୋକ୍ତ ପ୍ରୋଜେକ୍ଟର ଅପରେଟର୍ ଏବଂ ପରିଚାଳନା ସହାୟକ ନରେନ୍ ମିତ୍ର । 'ହାଲମୁକ୍'ରୁ ନରେନ୍‌ବାବୁ ବାହାରି ଆସିବାପରେ ଏକ ପ୍ରେକ୍ଷାଳୟ କରିବା ପାଇଁ ସ୍ଥିର କଲେ । ସେ ଏପରି ଗୋଟିଏ ସ୍ଥାନର ସନ୍ଧାନରେ ରହିଲେ ଯାହା କଟକ ସହରର କେନ୍ଦ୍ରବିନ୍ଦୁ ହୋଇଥିବ । ଶେଷରେ ବର୍ତ୍ତମାନ କ୍ୟାପିଟାଲ ସିନେମା ଗଢ଼ି ଉଠିଥିବା ସ୍ଥାନକୁ ସେ ଉପଯୁକ୍ତ ବୋଲି ମନସ୍ଥ କଲେ ।

ସେତେବେଳେ ଏହି ସ୍ଥାନ ମୁଖ୍ୟତଃ ଏକ କବର ସ୍ଥାନ ଥିଲା ଓ ୟୁସୁଫ୍ ମୁଲ୍ଲା ନାମକ ଏକ ଜମିଦାରଙ୍କ ଅଧୀନରେ ଥିଲା । ନରେନ୍‌ବାବୁ ତାଙ୍କଠାରୁ ପ୍ରଥମେ ଏହି ସ୍ଥାନ ଲିଜ୍‌ରେ ନେଲେ । ପରବର୍ତ୍ତୀରେ ୧୯୩୭ ମସିହାରେ ଉପରେ ବାଉଁଶ ବାନ୍ଧ ପାଲ ପକାଇ ବାଉଁଶ ଚାଟିଘେରା 'କ୍ୟାପିଟାଲ ସିନେମା'ର ଶୁଭାରମ୍ଭ କଲେ । କଟକ ସେତେବେଳେ ଥିଲା ଓଡ଼ିଶାର ରାଜଧାନୀ । ରାଜଧାନୀର ଇଂରେଜୀ ଶବ୍ଦ 'କ୍ୟାପିଟାଲ' (Capital) ହୋଇଥିବାରୁ ସେ ନିଜ ପ୍ରେକ୍ଷାଳୟର ଏହି ନାମ ରଖିଥିଲେ ।

ଏହି ପ୍ରେକ୍ଷାଳୟର ପ୍ରଥମ ଚଳଚ୍ଚିତ୍ର ଥିଲା ଚାର୍ଲି ଚାପ୍‌ଲିନ୍‌ଙ୍କ ଅଭିନୀତ ଇଂରାଜୀ ଛବି 'ଗୋଲ୍ଡ ରସ୍' (Gold Rush) । ସେତେବେଳେ କେବଳମାତ୍ର ଦୁଇଟି ସୋ' ଏହି ପ୍ରେକ୍ଷାଳୟରେ ଚାଲୁଥିଲା । ଉପଯୁକ୍ତ ବ୍ୟବସ୍ଥା ନଥିବାରୁ ମ୍ୟାଟିନି ସୋ ହୋଇ ପାରୁନଥିଲା ।

ଆଗରେ ଦର୍ଶକମାନଙ୍କ ବସିବାପାଇଁ ଦରି ପଡ଼ୁଥିଲା । ତା ପଛକୁ ରଙ୍ଗୁଡ଼ା-ହୋଇଥିବା ଚେୟାର୍ ପଡ଼ୁଥିଲା । ଅବଶ୍ୟ ପରେ ଫୋଲ୍‌ଡ଼ିଂ ଚେୟାର ପଡ଼ିଲା । ସେତେବେଳେ ଟିକେଟ୍‌ର ଦାମ୍ ଥିଲା ମାତ୍ର ଅଣାଏ ଦୁଇଅଣା । ଏହାର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ପ୍ରେକ୍ଷାଳୟ ଥିଲା 'ହଲ୍‌ମୁକ୍' । ଅନେକ ବଙ୍ଗଳାଛବି ଏଥିରେ ପ୍ରଦର୍ଶିତ ହୋଇଥିଲା ।

ଏହି ପ୍ରେକ୍ଷାଳୟ ନିରବଚ୍ଛିନ୍ନ ଭାବରେ ୧୯୪୫ ମସିହା ପର୍ଯ୍ୟନ୍ତ ଚାଲିବାପରେ ସରକାର ଏହାକୁ ଆଉ ପ୍ରେକ୍ଷାଗୃହ କରିବାକୁ ଅନୁମତି ଦେଲେନାହିଁ । କାରଣ ଏହା କାଠ ଓ ଚାଳଛପରର ଘର ହୋଇଥିବାରୁ ଏହା ଅଗ୍ନି ପ୍ରତିରୋଧକ (Fire Proof) ନଥିଲା । ତେଣୁ ଏହାର ମାଲିକ ନରେନ୍‌ବାବୁ ଏହାକୁ ଭାଙ୍ଗି ଇଟାସିମେଣ୍ଟରେ କାନ୍ଥ କରି ଉପରେ ଆଜ୍‌ବେଷ୍ଟସ୍ ପକାଇ ଏକ ସ୍ଥାୟୀ ପ୍ରେକ୍ଷାଳୟରେ ପରିଣତ କରିଥିଲେ ।

ଅବଶ୍ୟ ଏତେବେଳକୁ ପ୍ରଭାତ୍ ସିନେମା ଆତ୍ମପ୍ରକାଶ କରି ସାରିଥିଲା । ଏହି ନୂତନ ପ୍ରେକ୍ଷାଗୃହରେ ନରେନ୍‌ବାବୁ ଚାର୍ଲି ଚାପ୍‌ଲିନ୍‌ଙ୍କର ଏକ ଛବି ପକାଇଥିଲେ । ଦ୍ୱିତୀୟ ଓଡ଼ିଆ ଚଳଚ୍ଚିତ୍ର 'ଲଳିତା' ୧୯୪୯ ମସିହାରେ ମୁକ୍ତିଲାଭ କରି ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । 'ଗ୍ରେଟ୍ ଇଷ୍ଟର୍ଣ୍ଣ ମୋଭିଟୋନ୍' ନାମକ ଏକ ଘରୋଇ ସଂସ୍ଥା ଏହି ଚଳଚ୍ଚିତ୍ର ପ୍ରସ୍ତୁତ କରିଥିଲେ ।

ଏହାର ନିର୍ଦ୍ଦେଶକ ଥିଲେ କଲ୍ୟାଣଗୁପ୍ତ, ପ୍ରଯୋଜକ ଥିଲେ ଢେଙ୍କାନାଳରାଜାଙ୍କ ଭାଇ ଟିକାସାହେବ ଓ ନନ୍ଦସାହେବ । ଏଥିରେ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ ବର୍ତ୍ତମାନ ଆସାମର ରାଜ୍ୟପାଳ ଶ୍ରୀ ଲୋକନାଥ ମିଶ୍ର ଓ ଉମା ବାନାର୍ଜି (୨) ।

---

(୨) ଘୋଷ କାର୍ତ୍ତିକ କୁମାର : ଓଡ଼ିଆ ଚଳଚ୍ଚିତ୍ର: ଓଡ଼ିଆ ଚଳଚ୍ଚିତ୍ର ସୁବର୍ଣ୍ଣଜୟନ୍ତୀ ସ୍ମରଣିକା : ଚଳଚ୍ଚିତ୍ର ଉନ୍ନୟନ ନିଗମ, ଓଡ଼ିଶା : ୧୯୮୪ ।

ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ଦ୍ୱିତୀୟ ଓଡ଼ିଆ ଚଳଚ୍ଚିତ୍ର 'ଶ୍ରୀଜଗନ୍ନାଥ' ଅଭୂତପୂର୍ବ ଲୋକପ୍ରିୟତା ଲାଭ କରିଥିଲା ଏବଂ ଦୀର୍ଘ ଏକଶହ ଦିନ ପୂର୍ଣ୍ଣ ପ୍ରେକ୍ଷାଳୟରେ ଆଗେଇ ଚାଲିଥିଲା । 'ରୂପଶ୍ରୀ ଲିମିଟେଡ୍' ନାମକ ଏକ ଘରୋଇ କମ୍ପାନୀଦ୍ୱାରା ଏହି ଚିତ୍ର ପ୍ରସ୍ତୁତ ହୋଇଥିଲା । ଏହାର ନିର୍ଦ୍ଦେଶକ ଥିଲେ ଚିତ୍ତରଞ୍ଜନ ମିଶ୍ର, ସଙ୍ଗୀତ ନିର୍ଦ୍ଦେଶକ ଥିଲେ ବାଳକୃଷ୍ଣ ଦାସ ଓ ଅନ୍ୟଜଣେ ବଙ୍ଗୀୟ ବ୍ୟକ୍ତି । ଏଥିରେ ଗୋପାଳ ଘୋଷ, ଗ୍ଲୋରିଆ ରାଉତ ଓ ମାମୁଏଲ ସାହୁ (ବାବୁ) ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ । ୧୯୫୦ ମସିହାରେ ଆତ୍ମପ୍ରକାଶ କରିଥିବା ଏହି ଚଳଚ୍ଚିତ୍ର ସହିତ ଠିକ୍ ସେହିବର୍ଷ ଆତ୍ମପ୍ରକାଶ କରିଥିବା 'ଆମର ଗାଆଁ ଝିଅ' (ଗୌରପ୍ରସାଦ ଓ ଚନ୍ଦନା) ଏବଂ ପରବର୍ତ୍ତୀ 'ରୋଲ୍ ସ ଟୁ ଏଇଟ୍' (ରତିକାନ୍ତ ପାଢ଼ୀ, କମଳା) ଆଦି ଓଡ଼ିଆ ଚଳଚ୍ଚିତ୍ର ଏହି ପ୍ରେକ୍ଷାଳୟରେ ଖୁବ୍ ସଫଳତାର ସହ ପ୍ରଦର୍ଶିତ ହୋଇଥିଲା । ୧୯୮୩ ମସିହାରେ ଏହା ବନ୍ଦ ହୋଇଗଲା ଏକ ବୃହତ୍ତର ଆଗାମୀ ଆପଦାର କରି । ଏହାର ଶେଷ ଚଳଚ୍ଚିତ୍ର ଏକ ତେଲୁଗୁ ସିନେମା ଥିଲା । ଏହା ଏବେ ମଧ୍ୟ ନିର୍ମାଣାଧୀନ ଅବସ୍ଥାରେ ରହିଅଛି ।

୧୯୪୪-୪୫ ମସିହା ବେଳକୁ ବକ୍ସି ବଜାରର ପଟାପୋଲ ଅଞ୍ଚଳରେ ଏକ ସୁଦୃଶ୍ୟ ପ୍ରେକ୍ଷାଳୟ ଆତ୍ମପ୍ରକାଶ କଲା । ଏହାର ନାମ ହେଉଛି ପ୍ରଭାତ ସିନେମା' । ଏହି ପ୍ରେକ୍ଷାଳୟରେ ସମଗ୍ର କଟକ ସହରରେ ପ୍ରଥମ ବାଲକୋନିର ବ୍ୟବସ୍ଥା ଥିଲା । ପ୍ରଥମେ ଏଠାରେ ଏକ ହିନ୍ଦୀ ସିନେମା ଆତ୍ମପ୍ରକାଶ କଲା । ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ହେଉଛି 'କେଦାର ଗୌରୀ' (ଗୌର ଘୋଷ, ସଂଯୁକ୍ତା ଦାସ, ଧୀରବିଶ୍ୱାଳ, ଗୋବିନ୍ଦ ତେଜ) । ୧୯୫୪ରେ ଏହି ଚଳଚ୍ଚିତ୍ର ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । ଏହା ବ୍ୟତୀତ 'କିଏ କାହାର', ମନ ଆକାଶ' ଆଦି ଚିତ୍ର ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । ଏହି ପ୍ରେକ୍ଷାଳୟର ସ୍ୱତ୍ତ୍ୱାଧିକାରୀ ଥିଲେ ଲଖୁଭିରଜନ୍ଦ୍ ନାମକ ଜନୈକ ଗୁଜୁରାଟି ବ୍ୟବସାୟୀ । ବର୍ତ୍ତମାନ ଏହା ବନ୍ଦ ହୋଇଯାଇଛି ।

୧୯୫୧ ମସିହା ଏପ୍ରିଲ୍ ମାସ ୨୫ ତାରିଖରେ ରାଣୀହାଟ୍‌ରେ ପ୍ରଭାତ୍ ଓ କ୍ୟାପିଟାଲ ପ୍ରେକ୍ଷାଳୟ ସହ ପ୍ରତିଯୋଗିତା କରି ଏକ ନୂତନ ପ୍ରେକ୍ଷାଳୟର ଶୁଭ-ଉଦ୍‌ଘାଟନ ହୋଇଥିଲା । ଏହାର ନାମ ହେଉଛି 'ହିନ୍ଦ୍ ସିନେମା' । ଏହି ପ୍ରେକ୍ଷାଳୟକୁ ନିତ୍ୟାନନ୍ଦ କାନୁନ୍‌ଗୋ ଉଦ୍‌ଘାଟନ କରିଥିଲେ । ଦିଲ୍ଲିପ୍‌କୁମାର ଓ ନର୍ଗିସଙ୍କ ଅଭିନୀତ ହିନ୍ଦୀ ଚଳଚ୍ଚିତ୍ର 'ହଲ୍‌ଚଲ୍' ଏହି ହଲ୍‌ରେ ପ୍ରଥମକରି ଅଭିନୀତ ହୋଇଥିଲା ।

ଏହାର ସ୍ୱତ୍ତ୍ୱାଧିକାରୀ ହେଉଛନ୍ତି କୁଅଁର୍‌ଜୀ ଗାଙ୍ଗ୍‌ଜୀ ଏବଂ ତାଙ୍କ ପରିବାର ବୃନ୍ଦ । ଏହାର ସମୁଦାୟ ଆସନ ସଂଖ୍ୟା ୫୨୨ । ୧୯୯୦ ମସିହା ଅକ୍ଟୋବର ୩୦ ତାରିଖରେ ଏହା କଚ୍ଛିଦିନ ପାଇଁ ବନ୍ଦ ହୋଇଯାଇଥିଲା । ପ୍ରାଥମିକ କାଳରେ ଏହି ପ୍ରେକ୍ଷାଳୟରେ 'ଶ୍ୱଶୁରବାଡ଼ି' ନାମକ ଏକ ବଙ୍ଗଳା ଚଳଚ୍ଚିତ୍ର ଚାଲିଥିଲା । ମାତ୍ର ଏଥିରେ ଓଡ଼ିଆମାନଙ୍କ ପ୍ରତି ବ୍ୟଙ୍ଗ ତଥା ବିଦ୍ରୂପ ପୂରି ରହିଥିବାରୁ ଏହାକୁ ତତ୍କାଳୀନ ଜିଲ୍ଲାପାଳ ବନ୍ଦକରି ଦେଇଥିଲେ । ସେହିଦିନଠାରୁ ଏ ପ୍ରେକ୍ଷାଳୟରେ ଆଉ କୌଣସି ବଙ୍ଗଳା

ଚଳଚିତ୍ର ଚାଲୁନଥିବାର ଜଣାପଡ଼େ । ଏହି ପ୍ରେକ୍ଷାଳୟରେ ହିନ୍ଦୀ ପୌରାଣିକ ଚିତ୍ର 'ବୀର ଭୀମସେନ' ଦୀର୍ଘ ଏକଶହ ଦିନ ପର୍ଯ୍ୟନ୍ତ ଚାଲି ପ୍ରଭୂତ ଲୋକପ୍ରିୟତା ଅର୍ଜନ କରିଥିଲା । ଏ ପର୍ଯ୍ୟନ୍ତ ଏହି ପ୍ରେକ୍ଷାଳୟର ପାଦପ୍ରଦୀପ ଅସ୍ତମିତ ହୋଇନାହିଁ । ହିନ୍ଦ୍ ସିନେମା ହିଁ କଟକରେ ସର୍ବପ୍ରାଚୀନ ପ୍ରେକ୍ଷାଳୟ ଯାହା ଅଦ୍ୟାବଧି ଜୀବନ୍ତ ଅଛି ଓ ଦର୍ଶକମାନଙ୍କୁ ପୂର୍ବଭଳି ନହେଲେ ମଧ୍ୟ କିଛି ପରିମାଣରେ ଆକର୍ଷିତ କରୁଛି ।

ନିଜର ସ୍ୱତନ୍ତ୍ର ପ୍ରେକ୍ଷାଳୟ ନଥାଇ କଟକରେ ବେଶ୍ ପ୍ରଭାବ ବିସ୍ତାର କରିଥିବା 'ପାର୍ବତୀ ଟକିଜ' ୧୯୬୨ ମସିହାରେ ଆତ୍ମପ୍ରକାଶ କରିଥିଲା । ସେତେବେଳେ ରୂପଶ୍ରୀ ପ୍ରାଇଭେଟ୍ ଲିମିଟେଡ୍ କମ୍ପାନି କେତେକ ଓଡ଼ିଆ ଚଳଚିତ୍ର ପ୍ରସ୍ତୁତ କରୁଥିଲେ । ଏହି ସଂସ୍ଥାରେ ଗୋକୁଳଚନ୍ଦ୍ର କାନୁନ୍‌ଗୋ, ଗୋପାଳଚନ୍ଦ୍ର ଘୋଷ, ଅବ୍‌ଦୁଲ ହମିଦ୍ ଖାଁ ଓ ଯଦୁନାଥ ରାଉତରାୟ ଏହି ପାଞ୍ଚଜଣ ସଦସ୍ୟ ଥିଲେ ଏବଂ ଏହି ସଂସ୍ଥାର ପରିଚାଳନା ନିର୍ଦ୍ଦେଶକ (Managing Director) ଥିଲେ ନିଜେ ଗୋକୁଳଚନ୍ଦ୍ର କାନୁନ୍‌ଗୋ ।

ଏହି ପ୍ରତିଷ୍ଠାନ ପ୍ରଥମେ 'ଶ୍ରୀଲୋକନାଥ' ସିନେମା ପ୍ରସ୍ତୁତ କଲେ । ଏହା ସେ ସମୟରେ କ୍ୟାପିଟାଲ ସିନେମା ହଲରେ ଦୀର୍ଘ ଚଉଦ ସପ୍ତାହ ଚାଲିଥିଲା । ମାତ୍ର କିଛିଦିନ ପରେ ସେ ସମୟର ତିନୋଟି ପ୍ରତିଷ୍ଠିତ ପ୍ରେକ୍ଷାଳୟ ହିନ୍ଦ୍, କ୍ୟାପିଟାଲ ଓ ପ୍ରଭାତ ଏହି ଚଳଚ୍ଚିତ୍ରକୁ ଦ୍ୱିତୀୟଥର ଚାଲିବାକୁ ଦେଲେନାହିଁ ।

ଅଭିମାନରେ ଗୋକୁଳବାବୁ ନିଜ ବନ୍ଧୁମାନଙ୍କ ସହ ପରାମର୍ଶ କରି ଏକ ଅସ୍ଥାୟୀ ପ୍ରେକ୍ଷାଗୃହରେ ଏହି ଚଳଚ୍ଚିତ୍ରକୁ ପ୍ରଦର୍ଶନ କରିବାକୁ ଚାହିଁଲେ । ସୀମା ଆନ୍ଦୋଳନ ପାଇଁ ପୁରୁଣା ରେଡ଼ିଓ ଷ୍ଟେସନରେ ଗୁଳିବିଦ୍ଧ ହୋଇ ମୃତ୍ୟୁବରଣ କରିଥିବା ଶହୀଦ୍ ବେଙ୍ଗପାଣିଆଙ୍କ ସମ୍ମାନାର୍ଥେ ପ୍ରସ୍ତୁତ 'ଶହୀଦ ଭବନ'କୁ ସ୍ୱର୍ଗତ ବାଉରୀବନ୍ଧୁ ମହାନ୍ତି ଲିଜ୍ ସୂତ୍ରରେ ଆଣି ସେ ଏଥିରେ ନାଟକ ପ୍ରଦର୍ଶନ କରୁଥିଲେ । କୌଣସି କାରଣରୁ ସେ ଏହା ଛାଡ଼ିଦେବାରୁ ଗୋକୁଳବାବୁ ନିଜ ଅଂଶୀଦାରମାନଙ୍କୁ ସମ୍ମତ କରାଇ 'ଶହୀଦ ଭବନ'କୁ ସ୍ୱଳ୍ପ ମିଆଦି ସୂତ୍ରରେ ଲିଜ୍‌ରେ ନେଲେ ।

ପ୍ରଥମେ ଏହି ପ୍ରେକ୍ଷାଳୟରେ ଚାଲିଲା 'ଶ୍ରୀଲୋକନାଥ' । ଅବଶ୍ୟ ଏହାର ନାମ ସେତେବେଳେ 'ପାର୍ବତୀ ଟକିଜ' ନଥିଲା । ଥିଲା 'ୟୁନାଇଟେଡ୍ ଟକିଜ୍' । ଏହାର ପରିଚାଳନା ଦାୟିତ୍ୱରେ ଥିଲେ ଶ୍ରୀଯୁକ୍ତ ଗୋପାଳ ଘୋଷ । ୧୯୬୨ ମସିହାରେ ଏହା ଆତ୍ମପ୍ରକାଶ କଲା ।

ସରକାର ଏହାକୁ ମାତ୍ର ଦଶବର୍ଷ ପାଇଁ ଲିଜ୍ ଦେଲେ । ଏଥିରେ 'ସଙ୍ଗମ୍' 'ଜିସ୍ ଦେଶ୍‌ମେ ଗଙ୍ଗା ବହତି ହୈ' ଆଦି ଅନେକ ଉନ୍ନତ ମାନର ହିନ୍ଦୀ ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇଥିଲା ଓ ଏହା ପ୍ରଭୂତ ଲୋକପ୍ରିୟତା ଅର୍ଜନ ମଧ୍ୟ କରିଥିଲା । କୌଣସି କାରଣରୁ ମିଆଦି ନପୂରୁଣୁ ମାତ୍ର ତିନିଚାରି ବର୍ଷପରେ ସରକାର ଶହୀଦଭବନକୁ ଏମାନଙ୍କ ହାତରୁ ନେଇଗଲେ ।

ପ୍ରାୟ ୧୯୬୫ ମସିହା ବେଳକୁ 'ୟୁନାଇଟେଡ୍ ଟକିଜ୍'ର ପାଦପ୍ରଦୀପ ଅସ୍ତମିତ ହୋଇଥିଲା । ମାତ୍ର ଏହି ସଂସ୍ଥାର ପରିଚାଳକମାନଙ୍କ ଉତ୍ସାହ ଏତିକରେ ପ୍ରଶମିତ ହେଲା ନାହିଁ । ସଂସ୍ଥାର ମୁଖ୍ୟ ଗୋକୁଳବାବୁ ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କ ପରାମର୍ଶରେ ତତ୍କାଳୀନ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ସୁରଜ୍ ମଲ୍ଲ ସାହାଙ୍କୁ ମ୍ୟୁନିସିପାଲିଟି ପଡ଼ିଆକୁ ଲିଜ୍ ସୂତ୍ରରେ ଦେବା ପାଇଁ ଆବେଦନ କଲେ । ଯେଉଁଠାରେ ପୂର୍ବରୁ ଅନ୍ନପୂର୍ଣ୍ଣା ବି ଗ୍ରୁପ୍ ନିଜର ଅସ୍ଥାୟୀ ମଞ୍ଚ ପ୍ରସ୍ତୁତ କରି ନାଟକମାନ ମଞ୍ଚସ୍ଥ କରୁଥିଲେ । ସେହି ସ୍ଥାନରେ ମାତ୍ର ତେର ଦିନ ଭିତରେ ଏକ ଅସ୍ଥାୟୀ ପ୍ରେକ୍ଷାଳୟ ପ୍ରତିଷ୍ଠିତ ହେଲା ଏବଂ 'ଶ୍ରୀଲୋକନାଥ'ର ପ୍ରଯୋଜକ ଏହି ପଞ୍ଚ ସଷାର୍ଥଙ୍କ ଆରାଧ୍ୟଦେବୀ ମା ପାର୍ବତୀ ନାମରେ ଏହି ପ୍ରେକ୍ଷାଳୟର ନାମ ରହିଲା 'ପାର୍ବତୀ ଟକିଜ୍' । ଏହି ପ୍ରେକ୍ଷାଳୟ ସେତେବେଳେ ଅଗଣିତ ଚଳଚ୍ଚିତ୍ରପ୍ରେମୀ ଦର୍ଶକଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲା । ଏହାର ଉନ୍ନତ ମାନର ବିଦେଶୀ ପ୍ରୋଜେକ୍ଟର ଦ୍ୱୟ, ତାହାର ନାମ ଥିଲା 'Westrex-60' । ସେତେବେଳେ ଏହା ଭଳି ପ୍ରୋଜେକ୍ଟର କଟକର ଅନ୍ୟ ପ୍ରେକ୍ଷାଳୟମାନଙ୍କରେ ବିରଳ ଥିଲା । ମ୍ୟୁନିସିପାଲିଟି ଅଧିକ କାଳ ଲିଜ୍ ନ ଦେବାରୁ ଏହା ପ୍ରାୟ ୧୯୭୦ ବେଳକୁ ବନ୍ଦ ହୋଇଗଲା ।

ଏହାର ପ୍ରାୟ ଏକ ବର୍ଷ ପୂର୍ବରୁ, ଅର୍ଥାତ୍, ୧୯୬୯ ମସିହା ଜାନୁୟାରୀ ମାସ ପହିଲାରେ କଟକ ମହତାବ ରୋଡ଼ରେ 'ଗ୍ରାଣ୍ଡସିନେମା'ର ଶୁଭ ଉଦ୍‌ଘାଟନ ଡଃ ହରେକୃଷ୍ଣ ମହତାବଙ୍କ ଦ୍ୱାରା ହୋଇଥିଲା । ଏହାର ପ୍ରଥମ ଛବି ଥିଲା ଧର୍ମେନ୍ଦ୍ର ଓ ମାଲା ସିହ୍ନାଙ୍କ ଅଭିନୀତ ସୁପ୍ରସିଦ୍ଧ ହିନ୍ଦୀ ଚଳଚ୍ଚିତ୍ର 'ଆଁଖେ' । ଏହାକୁ ପ୍ରତିଷ୍ଠିତ କଣ୍ଟ୍ରାକ୍ଟର ଶ୍ରୀଯୁକ୍ତ ଉଚ୍ଛବଚରଣ ସାମନ୍ତରାୟ ପ୍ରତିଷ୍ଠା କରିଥିଲେ । ଏହାର ନାମକରଣ କରିଥିଲେ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ସୁଯୋଗ୍ୟ ଶିଷ୍ୟା ଜଗଜ୍ଜନନୀ ଶ୍ରୀମା । ଚଳଚ୍ଚିତ୍ର ପ୍ରେକ୍ଷାଳୟ ପାଇଁ ଏକ ଶୁଭେଚ୍ଛାରେ ତାଙ୍କ ବାର୍ତ୍ତା ଥିଲା 'Achieve Grand Success and Happyness' । ଏହି ବାର୍ତ୍ତା ଭିତରେ ପ୍ରଚ୍ଛନ୍ନ ଥିବା 'Grand' ଶବ୍ଦକୁ ଶ୍ରୀଯୁକ୍ତ ସାମନ୍ତରାୟ ନିଜ ପ୍ରେକ୍ଷାଳୟର ନାମ ଭାବରେ ସ୍ଥିର କରିଥିଲେ ।

ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ଥିଲା 'ଅଦିନ ମେଘ' । ପ୍ରଥମେ ଏହି ପ୍ରେକ୍ଷାଳୟରେ ଏୟାରକୁଲର୍ ବ୍ୟବସ୍ଥା ଥିଲା । ମାତ୍ର ୧୯୭୧ ମସିହାରେ ଏହା ଶୀତତାପ ନିୟନ୍ତ୍ରିତ (Air conditioned) ହେଲା । କଟକରେ ଏହା ପ୍ରଥମ ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟ । ଏହାର ସମୁଦାୟ ଆସନ ସଂଖ୍ୟା ପ୍ରାୟ ୯୫୧ । ଏଥିରେ ଏକ ଶହ ଦିନ ଧରି ମିଳିତ ଭାବରେ 'ଝୋପାଏ ସିନ୍ଦୂର ଟିପେ ଶଙ୍ଖା' ଓ ଏକକ ଭାବରେ ୫୦ ଦିନ ଧରି 'ବାଜେ ବଇଁଶୀ ନାଚେ ଘୁଙ୍ଗୁର' ପୂର୍ଣ୍ଣ ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । ଏପର୍ଯ୍ୟନ୍ତ ଏହା ଦର୍ଶକମାନଙ୍କୁ ଆକର୍ଷିତ କରିବାର ପୂର୍ଣ୍ଣ ସକ୍ଷମ ଅଛି ।

ଯେଉଁ ବର୍ଷ ଗ୍ରାଣ୍ଡ ସିନେମାର ଶୁଭାରମ୍ଭ ହୋଇଥିଲା, ଠିକ୍ ସେହିବର୍ଷ, ଅର୍ଥାତ୍ ୧୯୬୯ ମସିହା ନଭେମ୍ବର ୨୧ ତାରିଖରେ ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କ ଜୟନ୍ତୀ

ତିଥିରେ କଟକ ଗୃହମନ୍ତ୍ରୀଙ୍କର ପ୍ରଜାତନ୍ତ୍ର ପରିସରରେ 'ସୂରଜ ସିନେମା ହଲ' ଉଦ୍‌ଘାଟିତ ହୋଇଥିଲା । ଏହାର ଶୁଭ ଉଦ୍‌ଘାଟନ କରିଥିଲେ ସ୍ୱର୍ଗତ ହରେକୃଷ୍ଣ ମହତାବ । ୮୪୩ ଆସନ ବିଶିଷ୍ଟ ଏହି ପ୍ରେକ୍ଷାଳୟରେ ବାଲକୋନି ନଥିଲା । ସ୍ପେଶାଲ କ୍ଲାସ ପାଇଁ ଏହି ପ୍ରେକ୍ଷାଳୟରେ ୨୫୦ଟି ପୁସ୍‌ବ୍ୟାକ ଚେୟାର ଥିଲା । ସମ୍ଭବତଃ କଟକରେ ପ୍ରେକ୍ଷାଳୟମାନଙ୍କରେ ପ୍ରଥମ କରି ସୂରଜ୍ ସିନେମାରେ ଏହି ପୁସ୍‌ବ୍ୟାକ ଚେୟାରର ବ୍ୟବସ୍ଥା ହୋଇଥିଲା । ହିନ୍ଦୀ ଚଳଚ୍ଚିତ୍ର 'ପ୍ରେମନଗର' ଏଥିରେ ଦୀର୍ଘ ଏକଶହ ଦିନ ଧରି ଚାଲିଥିଲା । ମାତ୍ର କେତେକ ଆଭ୍ୟନ୍ତରୀଣ ଅସୁବିଧା, ଚଳଚ୍ଚିତ୍ର ବିତରକମାନଙ୍କର ଆକାଶଛୁଆଁ ଦରବୃଦ୍ଧି ଏବଂ ଏହାର ସ୍ୱତ୍ୱାଧିକାରୀ ମିର୍ଜା ଜଲାଲଉଦ୍ଦିନ-ଙ୍କର ଧର୍ମୀୟଭାବନାଜନିତ ଅନାଗ୍ରହ ହେତୁ ଏହି ପ୍ରେକ୍ଷାଳୟ ୧୯୮୨ ମସିହା ମାର୍ଚ୍ଚ ଏପ୍ରିଲ ମାସ ବେଳକୁ ବନ୍ଦ ହୋଇ ଯାଇଥିଲା ।

ସୂରଜ ସିନେମା ଆରମ୍ଭ ହେବାର ତିନିବର୍ଷ ପରେ ୧୯୭୨ ମସିହା ଏପ୍ରିଲ ୧୦ ତାରିଖରେ ଚାଉଳିଆଗଞ୍ଜରେ କଟକ-ପାରାଦ୍ୱୀପ ମୁଖ୍ୟ ସଡ଼କର ପାର୍ଶ୍ୱଦେଶରେ 'ଜ୍ୟୋତି ସିନେମା' ନିଜ ଅପରୂପ ରୂପ ସମ୍ଭାରରେ ଚଳଚ୍ଚିତ୍ର ପ୍ରେମୀଙ୍କୁ ଆକର୍ଷିତ କରିଥିଲା । ଏହାର ସ୍ୱତ୍ୱାଧିକାରୀ ଥିଲେ ଦୟାରାମ କୁମରାଣୀ ଏବଂ ତାଙ୍କ ଅଂଶୀଦାରବୃନ୍ଦ । ଏହାର ଉଦ୍‌ଘାଟନ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳଙ୍କ ଦ୍ୱାରା ହୋଇଥିଲା । ହିନ୍ଦୀଚିତ୍ର 'ହରେ କୃଷ୍ଣ ହରେ ରାମ' ଏହି ପ୍ରେକ୍ଷାଳୟର ପ୍ରଥମ ଚଳଚ୍ଚିତ୍ର । ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ହେଉଛି 'ଗପ ହେଲେ ବି ସତ' । ଏଥିରେ ସମ୍ଭବତଃ ୮୩୭ଟି ଆସନ ଥିଲା ଓ ବାଲ୍‌କୋନିରେ ୧୭୮ଟି ଆସନକୁ ଛାଡ଼ିଦେଲେ ଅନ୍ୟ ସମସ୍ତ ତଳେ ଥିଲା ।

ପରିଚାଳନାରେ ବିଶୃଙ୍ଖଳା ଦେଖାଦେବାରୁ ପ୍ରାୟ ଦଶବର୍ଷ ପରେ ୧୯୮୨ ମେ' ଜୁନ ଆଡ଼କୁ ଏହି ପ୍ରେକ୍ଷାଳୟ ବନ୍ଦ ହୋଇଗଲା । ଦୀର୍ଘ ଏକ ବର୍ଷରୁ ଅଧିକା କାଳ ବନ୍ଦ ରହିବାପରେ ଚାଉଳିଆଗଞ୍ଜର ସ୍ୱର୍ଗତ ସୁରେନ୍ଦ୍ର କୁମାର ସାହୁ ଏହି ପ୍ରେକ୍ଷାଳୟର ସ୍ୱତ୍ୱାଧିକାର ତଥା ପରିଚାଳନା ଦାୟିତ୍ୱ ହାତକୁ ନେଲେ । ଏ କ୍ଷେତ୍ରରେ ତାଙ୍କୁ ସାହାଯ୍ୟ କରିଥିଲେ ଏହି ପ୍ରେକ୍ଷାଳୟର ପରିଚାଳନା ଦାୟିତ୍ୱରେ ଆରମ୍ଭରୁ ଥିବା ଶ୍ରୀଯୁକ୍ତ ବାରିନିଧି ମହାନ୍ତି । ୧୯୮୩ ମସିହା ଅକ୍ଟୋବର ୧୩ ତାରିଖରେ ଏହି ପ୍ରେକ୍ଷାଳୟ ନିଜ ନାମ ପରିବର୍ତ୍ତନ କରି 'ଲକ୍ଷ୍ମୀ' ନାମରେ ପରିଚିତ ହେଲା । ଏଥିରେ ପ୍ରଥମେ ମିଥୁନ ଚକ୍ରବର୍ତ୍ତୀ ଏବଂ ରତି ଅଗ୍ନିହୋତ୍ରୀଙ୍କ ଅଭିନୀତ ହିନ୍ଦୀଚିତ୍ର 'ମୁଝେ ଇନ୍‌ସାଫ୍ ଚାହିଏ' ପ୍ରଦର୍ଶିତ ହୋଇଥିଲା । ଏହି ପ୍ରେକ୍ଷାଳୟ ପୂର୍ବରୁ ଶୀତତାପ ନିୟନ୍ତ୍ରିତ ନଥିଲେ ମଧ୍ୟ ସୁରେନ୍ଦ୍ରବାବୁ ଏହାକୁ ଶୀତତାପ ନିୟନ୍ତ୍ରିତ କରିଥିଲେ ଓ ଆସନ ସଂଖ୍ୟାକୁ ସାମାନ୍ୟ ବୃଦ୍ଧି କରି ପ୍ରାୟ ୮୭୬ କରିଥିଲେ । ବାଲ୍‌କୋନିର ଆସନରେ କିନ୍ତୁ କୌଣସି ପରିବର୍ତ୍ତନ ହୋଇନଥିଲା । ଏହି ପ୍ରେକ୍ଷାଳୟରେ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ଭାବରେ 'ସୁବର୍ଣ୍ଣ ସୀତା' ଆତ୍ମପ୍ରକାଶ କରିଥିଲା । ଏ ପର୍ଯ୍ୟନ୍ତ ଏହା ଦର୍ଶକମାନଙ୍କ ମନୋରଞ୍ଜନ ପାଇଁ ନିଜକୁ ସକ୍ଷମ ରଖିପାରିଛି ।

କଟକ ମ୍ୟୁନିସିପାଲିଟି ନିକଟରେ ୧୯୬୯ ମସିହା ମାର୍ଚ୍ଚ ୨୩ ତାରିଖରେ ଏକ ସୁଦୃଶ୍ୟ ପ୍ରେକ୍ଷାଳୟ 'ଦୁର୍ଗା' ନାମରେ ଗଢ଼ି ଉଠିଲା । ଏହାର ସ୍ୱତ୍ୱାଧିକାରୀ ହେଉଛନ୍ତି ଶ୍ରୀ ଦୁର୍ଗାକୁମାର ନନ୍ଦ ଓ ବର୍ତ୍ତମାନ ଏହାର ପରିଚାଳକ ଅଛନ୍ତି ଶ୍ରୀ ଦ୍ରୋଣନିଧି ଜେନା । ଦୁର୍ଗାବାବୁଙ୍କର ମା' ଏହି ପ୍ରେକ୍ଷାଳୟର ଶୁଭ ଉଦ୍‌ଘାଟନ କରିଥିଲେ ଓ ଓଡ଼ିଆ ଚଳଚିତ୍ର 'ବଳିଦାନ' ଏହି ପ୍ରେକ୍ଷାଳୟରେ ସର୍ବପ୍ରଥମେ ଶୁଭ ମୁକ୍ତି ଲାଭ କରିଥିଲା । ଏହାର ଆସନ ସଂଖ୍ୟା ପ୍ରାୟ ୧୧୧୯ । ଏହା ଏକ ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟ । ଏହି ପ୍ରେକ୍ଷାଳୟରେ 'ମା' ଓ ମମତା' ଚଳଚିତ୍ର ପଚିଶ ଦିନରୁ ଅଧିକ କାଳ ପ୍ରଦର୍ଶିତ ହୋଇଥିଲା ।

ଗ୍ରାଣ୍ଡ ସିନେମାର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ଉଦ୍ଧବ ଚନ୍ଦ୍ର ସାମନ୍ତରାୟ ଶଙ୍କରପୁର ଅଞ୍ଚଳରେ ଲିଙ୍କ୍ ରୋଡ଼ର ପାର୍ଶ୍ୱରେ 'ନିଶାମଣି ସିନେମା' ନାମକ ଅନ୍ୟ ଏକ ପ୍ରେକ୍ଷାଳୟ ନିର୍ମାଣ କରିଥିଲେ । ୧୯୮୦ ମସିହା ଜାନୁୟାରୀ ମାସ ୯ ତାରିଖରେ ଏହାର ଶୁଭ ଉଦ୍‌ଘାଟନ ହୋଇଥିଲା । ତତ୍କାଳୀନ ହିନ୍ଦୀ ଚଳଚିତ୍ର ଜଗତରେ ସୁପର୍‌ଷ୍ଟାର୍ ରାଜେଶ ଖାନ୍ନାଙ୍କ ଅଭିନୀତ 'ଅମର ଦୀପ' ଚଳଚିତ୍ର ଏହି ପ୍ରେକ୍ଷାଳୟରେ ସର୍ବପ୍ରଥମେ ମୁକ୍ତିଲାଭ କରିଥିଲା । ବର୍ତ୍ତମାନ ଏହାର ପରିଚାଳନା ଦାୟିତ୍ୱରେ ଅଛନ୍ତି ଶ୍ରୀଯୁକ୍ତ ମହେଶ୍ୱର ରାଉତ । 'କିଏ ଜିତେ କିଏ ହାରେ' ଓ 'ବତାସୀଝଡ଼' ପ୍ରଥମେ ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇ ପ୍ରଭୂତ ଲୋକପ୍ରିୟତା ଅର୍ଜନ କରିଥିଲା । ଏହାର ଆସନ ସଂଖ୍ୟା ପ୍ରାୟ ୧୦୧୧ । ହିନ୍ଦୀ ଚଳଚିତ୍ର 'ବେତାବ୍' ଏବଂ 'ଲଭ୍‌ଷ୍ଟୋରୀ' ଏହି ପ୍ରେକ୍ଷାଳୟରେ ପଚିଶ ଦିନରୁ ଅଧିକ କାଳ ପ୍ରଦର୍ଶିତ ହୋଇଥିଲା ।

ନିଶାମଣି ଉଦ୍‌ଘାଟିତ ହେବାର ଠିକ୍ ଦଶଦିନ ପରେ ଅର୍ଥାତ୍, ୧୯୮୦ ମସିହା ଜାନୁୟାରୀ ମାସ ୨୦ ତାରିଖ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ମଧୁପାଟଣାଠାରେ ପାଞ୍ଚ ନମ୍ବର ଜାତୀୟ ରାଜପଥ କଡ଼ରେ 'ସମ୍ରାଟ' ସିନେମା ଆତ୍ମପ୍ରକାଶ କଲା । ଏହାର ସ୍ୱତ୍ୱାଧିକାରୀ ହେଉଛନ୍ତି ବେଣ୍ଟକାର ଗ୍ରାମର ଶ୍ରୀ ସୁଦର୍ଶନ ଦେବତା ଏବଂ ପରିଚାଳକ ହେଉଛନ୍ତି ଶ୍ରୀନିବାସ ଭଟ୍ଟାଚାର୍ଯ୍ୟ । ଏହାର ପ୍ରଥମ ଚଳଚିତ୍ର ହେଉଛି ଶଚନ୍ ଓ ଜରିନାୱାହବ୍‌ଙ୍କ ଅଭିନୀତ ହିନ୍ଦୀ ଚଳଚିତ୍ର 'ଗୋପାଳ କ୍ରିଷ୍ଣା' । ଏହି ପ୍ରେକ୍ଷାଳୟରେ 'କିଏ କାହାର' ନାମକ ଏକ ଓଡ଼ିଆ ପୁନଃପ୍ରଦର୍ଶିତ ଚିତ୍ର (Repeat run Picture) ପ୍ରଥମ କରି ମଧ୍ୟାହ୍ନ ଅଭିନୟ (Noon-Show) ରେ ପ୍ରଦର୍ଶିତ ହୋଇଥିଲା । ଏହାର ସମୁଦାୟ ଆସନ ସଂଖ୍ୟା ୧୩୫୨ । ଏହା ଏକ ଶୀତତାପ ନିୟନ୍ତ୍ରିତ କକ୍ଷ । ତତ୍କାଳୀନ ଚଳଚିତ୍ର ଜଗତର ସୁପରଷ୍ଟାର ଅମିତାଭଙ୍କର 'ନସିବ୍' ଦୁର୍ଗା ସିନେମା ସହ ମିଳିତଭାବରେ ଏ ପ୍ରେକ୍ଷାଳୟରେ ପଚିଶ ଦିନ ଧରି ଚାଲିଥିଲା । ଏପର୍ଯ୍ୟନ୍ତ ଏହି ପ୍ରେକ୍ଷାଳୟ ନିଜର ଚଳଚିତ୍ର ପ୍ରଦର୍ଶନ କର୍ମକୁ ଅବ୍ୟାହତ ରଖିଛି ।

୧୯୮୨ ମସିହା ଅପ୍ରେଲ ପହିଲା ତାରିଖରେ ପବିତ୍ର ଉତ୍କଳ ଦିବସରେ କଟକର ବଜ୍ରକବାଟି ରୋଡ଼ରେ 'ବୃନ୍ଦାବନ' ନାମକ ଏକ ନୂତନ ପ୍ରେକ୍ଷାଳୟ ଉଦ୍‌ଘାଟିତ

ହୋଇଥିଲା । ଏହାର ସ୍ୱତ୍ତ୍ୱାଧିକାରୀ ହେଉଛନ୍ତି ଶ୍ରୀ ଗୋକୁଳଚନ୍ଦ୍ର କାନୁନ୍‌ଗୋ । ପାର୍ବତୀ ସିନେମା ଭାଙ୍ଗିଯିବାର ବାରବର୍ଷ ପରେ ଏହି ବୃନ୍ଦାବନ ସିନେମା ଗୋକୁଳବାବୁଙ୍କ ଉଦ୍ୟମରେ କଟକରେ ଆତ୍ମପ୍ରକାଶ କଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ଏହାର ଉଦ୍‌ଘାଟନ କରିଥିଲେ ।

ପ୍ରଥମରେ ଏହାର ପରିଚାଳକ ଥିଲେ ଶ୍ରୀ ଏ. କେ. ତିହାରୀ । ଏବେ ଶ୍ରୀ ସୁକାନ୍ତ ମହାନ୍ତି ଏହାର ସହକାରୀ ପରିଚାଳକ ଅଛନ୍ତି । ଏହି ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟରେ ପ୍ରଥମ ଚିତ୍ର ଭାବରେ ଅମିତାଭଙ୍କ 'ଯାରାନା' ଆତ୍ମପ୍ରକାଶ କରିଥିଲା । ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ହେଉଛି 'ଯାହାକୁ ରଖିବେ ଅନନ୍ତ' । ଏହାର ମୋଟ ଆସନ ସଂଖ୍ୟା ପ୍ରାୟ ୧୪୦୫ । ହିନ୍ଦୀ ସୁପରହିଟ୍ ଚଳଚ୍ଚିତ୍ର 'ମୈନେ ପ୍ୟାର କିୟା' ଏହି ପ୍ରେକ୍ଷାଳୟରେ ଦୀର୍ଘ ୧୧୯ ଦିନ ଖେଳି ପର୍ଯ୍ୟାପ୍ତ ଲୋକପ୍ରିୟତା ଅର୍ଜନ କରିଥିଲା ।

ବୃନ୍ଦାବନ ସିନେମା ଯେଉଁ ବର୍ଷ ଶୁଭମୁକ୍ତି ଲାଭ କଲା, ସେହିବର୍ଷ ଅର୍ଥାତ୍ ୧୯୮୨ ମସିହା ସେପ୍‌ଟେମ୍ବର ବେଳକୁ ମହତାବ ରୋଡ଼ରେ ଗ୍ରାଣ୍ଡ ସିନେମାର କିଛି ଦୂରରେ 'ସାଗର ସଙ୍ଗମ' ନାମକ ଏକ ଦ୍ୱୈତ ପ୍ରେକ୍ଷାଳୟ ଆତ୍ମପ୍ରକାଶ କଲା । କଟକରେ ଏହା ସର୍ବପ୍ରଥମ ଦ୍ୱୈତ ପ୍ରେକ୍ଷାଳୟ । ଏହାର ନିମ୍ନ ପ୍ରେକ୍ଷାଳୟଟିର ନାମ 'ସଙ୍ଗମ' ଓ ଉପରଟିର ନାମ 'ସାଗର' । ମାତ୍ର କେବଳ 'ସଙ୍ଗମ' ସିନେମା ଏବେ ଚଳଚ୍ଚିତ୍ର ପ୍ରଦର୍ଶନ କରୁଛି । 'ସାଗର' ଏ ପର୍ଯ୍ୟନ୍ତ ନିର୍ମାଣାଧୀନ ଅଛି । ଏହାର ସତ୍ତ୍ୱାଧିକାରୀ ହେଉଛନ୍ତି ଶ୍ରୀ ବିଶ୍ୱନାଥ ପ୍ରଧାନ । ଶ୍ରୀ ଦେବେନ୍ଦ୍ର ମହାପାତ୍ର ଏହାର ପରିଚାଳକ ଅଛନ୍ତି । ଏହି ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟରେ ପ୍ରଥମ ଚଳଚ୍ଚିତ୍ର ଭାବରେ ସୁରେଶ ଓବେରାୟ ଓ ରାକ୍ଷୀଙ୍କ ଅଭିନୀତ ହିନ୍ଦୀ ଚଳଚ୍ଚିତ୍ର 'ଶ୍ରଦ୍ଧାଞ୍ଜଳି' ଆତ୍ମପ୍ରକାଶ କରିଥିଲା । ତତ୍କାଳୀନ ଡ଼. ଜ. ଶ୍ରୀ ଏନ୍. ସି. ସ୍ୱାଇଁ ଏହାର ଶୁଭ ଉଦ୍‌ଘାଟନ କରିଥିଲେ ।

ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ଥିଲା ପ୍ରଶାନ୍ତ ନନ୍ଦଙ୍କ 'ହିସାବ ନିକାଶ ।' ଏହା ପ୍ରାୟ ଚଉଦ ସପ୍ତାହ ଧରି ପୂର୍ଣ୍ଣ ପ୍ରେକ୍ଷାଳୟରେ ଆସରେଇ ଚାଲିଥିଲା । ଏହାର ସମୁଦାୟ ଆସନ ପ୍ରାୟ ୭୦୨ । ପ୍ରାୟ ଏକଶହ ଦିନ ଧରି ଚାଲିଥିବା ଓଡ଼ିଆ ଚଳଚ୍ଚିତ୍ର ହିସାବ ନିକାଶ ବ୍ୟତୀତ 'ପ୍ରେମରୋଗ', 'ବିଧାତା', 'କୁଲି', 'ମାନିନୀ', 'ଏଇଆମ ସଂସାର', 'ଡ଼ୋରୀ' ଓ 'ଜଗାବଳିଆ' ଆଦି ଚଳଚ୍ଚିତ୍ର ପଚାଶଦିନରୁ ଅଧିକ ଦିନ ଏହି ପ୍ରେକ୍ଷାଳୟରେ ପ୍ରଦର୍ଶିତ ହୋଇଥିଲା । 'ଏଇ ଆମ ସଂସାର' ଖେଳିବାର ସପ୍ତମ ସପ୍ତାହ ବେଳକୁ ହଠାତ୍ ବୈଦ୍ୟୁତିକ ବିଭ୍ରାଟହେତୁ ୧୯୮୯ ମସିହାରେ ପ୍ରେକ୍ଷାଳୟରେ ନିଆଁ ଲାଗିଗଲା । ପ୍ରାୟ ଗୋଟିଏ ମାସଧରି ଚଳଚ୍ଚିତ୍ର ପ୍ରଦର୍ଶନ ବନ୍ଦ ହୋଇଗଲା । ମାତ୍ର ପୁଣି ଏହା ଚିତ୍ର ପ୍ରଦର୍ଶନ କରି ଏପର୍ଯ୍ୟନ୍ତ ଚଳଚ୍ଚିତ୍ରପ୍ରେମୀଙ୍କ ମନୋରଞ୍ଜନ କରି ଆସୁଛି ।

ଦୁର୍ଗାସିନେମାର ପରିସର ଭିତରେ ୧୯୮୨ ମସିହା ଡ଼ିସେମ୍ବର ୨୮ ତାରିଖରେ ଅନ୍ୟ ଏକ ପ୍ରେକ୍ଷାଳୟଗୃହ 'ଦେବୀ' ଆତ୍ମପ୍ରକାଶ କରିଥିଲା । ଏହାର ସ୍ୱତ୍ତ୍ୱାଧିକାରୀ ଥିଲେ

'ଦୁର୍ଗା'ର ମାଲିକ ଦୁର୍ଗାକୁମାର ନନ୍ଦ । 'ଦୁର୍ଗା' ଏବଂ 'ଦେବୀ' ଏହି ଉଭୟ ପ୍ରେକ୍ଷାଳୟର ଶୁଭ ଉଦ୍‌ଘାଟନ କରିଥିଲେ ଦୁର୍ଗାବାବୁଙ୍କର ମା' । ଏହି ପ୍ରେକ୍ଷାଳୟର ପ୍ରଥମ ଚିତ୍ର ଥିଲା ଧର୍ମେନ୍ଦ୍ରଙ୍କ ଅଭିନୀତ ହିନ୍ଦୀ ଚଳଚିତ୍ର 'ଚନ୍ଦନ' । ଏହାର ସମୁଦାୟ ଆସନ ପ୍ରାୟ ୭୦୦ । ଓଡ଼ିଆ ଚଳଚିତ୍ର 'ଭକ୍ତସାଲବେଗ' ଏହି ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟରେ ପଚିଶ ଦିନରୁ ଅଧିକ କାଳ ଚାଲିଥିଲା ।

ବକ୍ସିବଜାର ପଟାପୋଲ ନିକଟରେ 'ପ୍ରଭାତ' ସିନେମାର ଅନତିଦୂରରେ ୧୯୮୩ ମସିହା ଅକ୍ଟୋବର ୭ ତାରିଖରେ 'ରାଜତରଙ୍ଗିଣୀ' ନାମକ ଏକ ନୂତନ ପ୍ରେକ୍ଷାଳୟ ଗଢ଼ିଉଠିଲା । ଏହାର ସ୍ୱତ୍ୱାଧିକାରୀ ଥିଲେ ଶ୍ରୀ ଅଲେଖଚନ୍ଦ୍ର ସାହୁ ଓ ପରିଚାଳକ ହେଉଛନ୍ତି ଶ୍ରୀ ଲିଙ୍ଗରାଜ ଦାସ । ଏହାକୁ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭପଟ୍ଟନାୟକ ଉଦ୍‌ଘାଟନ କରିଥିଲେ ଏହାର ପ୍ରଥମ ଚଳଚିତ୍ର ହେଉଛି ଧର୍ମେନ୍ଦ୍ର ଓ ହେମାମାଳିନୀଙ୍କ ଅଭିନୀତ ହିନ୍ଦୀ ଚଳଚିତ୍ର 'ରଜିଆ ସୁଲତାନା ।'

ଏହି ପ୍ରେକ୍ଷାଳୟରେ ସର୍ବପ୍ରଥମ ଓଡ଼ିଆ ଚଳଚିତ୍ର 'କାବେରୀ' ଅଭିନୀତ ହୋଇ ଚଳଚିତ୍ର ପ୍ରେମୀଙ୍କ ଦ୍ୱାରା ବହୁଭାବରେ ଆଦୃତ ହୋଇଥିଲା । ଏହି ଶୀତତାପ ନିୟନ୍ତ୍ରିତ ପ୍ରେକ୍ଷାଳୟଟିରେ ପ୍ରାୟ ବାରଶହ ଏକଷଠିଟି ଆସନର ବ୍ୟବସ୍ଥା ଅଛି । ଏହି ପ୍ରେକ୍ଷାଳୟର ନିକଟବର୍ତ୍ତୀ 'ପ୍ରଭାତ'ର ପାଦପ୍ରଦୀପ ଏବେ ଅସ୍ତମିତ ହୋଇଯାଇଥିଲେ ମଧ୍ୟ ଏହା ବହୁ ବିଦଗ୍ଧ କଳାପ୍ରେମୀ ଦର୍ଶକମାନଙ୍କର ଦୃଷ୍ଟି ଏପର୍ଯ୍ୟନ୍ତ ଆକର୍ଷଣ କରିପାରିଛି ।

କଟକରେ ଅଦ୍ୟାବଧି ନିର୍ମିତ ହୋଇଥିବା ପ୍ରେକ୍ଷାଳୟମାନଙ୍କ ମଧ୍ୟରେ କନିଷ୍ଠ ପ୍ରେକ୍ଷାଳୟ ହେଉଛି 'ଜୟଶ୍ରୀ' ସିନେମା । ବାଦାମବାଡ଼ି ବସ୍‌ଷ୍ଟାଣ୍ଡର ସମ୍ମୁଖଭାଗରେ ଏକ ସମ୍ଭ୍ରାନ୍ତ ପରିବେଶରେ ଦଣ୍ଡାୟମାନ ଏହି ପ୍ରେକ୍ଷାଳୟଟି ୧୯୮୫ ମସିହା ଜାନୁୟାରୀ ମାସ ୧୧ ତାରିଖରେ ଆଳି ରାଣୀ ଶ୍ରୀମତୀ ଜୟଶ୍ରୀ ଦେବୀଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ଏହାର ସ୍ୱତ୍ତ୍ୱାଧିକାରୀ ହେଉଛନ୍ତି 'ବନବିହାରୀ ମୁଭି ପ୍ରାଇଭେଟ୍ ଲିମିଟେଡ୍ ।' ଏହି ପ୍ରତିଷ୍ଠାନର ଯୁଗ୍ମ ନିର୍ଦ୍ଦେଶକ ହେଉଛନ୍ତି ଆଳିରାଣୀ ଶ୍ରୀମତୀ ଜୟଶ୍ରୀ ଦେବୀ ଓ ଶ୍ରୀ ପ୍ରଶାନ୍ତ କୁମାର ରଥ । ଏହାର ପରିଚାଳନା ଦାୟିତ୍ୱରେ ଅଛନ୍ତି ଶ୍ରୀ ସତ୍ୟପ୍ରକାଶ ଦାସ । ଏହି ଶୀତତାପ ନିୟନ୍ତ୍ରିତ ଗୃହର ପ୍ରଥମ ପ୍ରଦର୍ଶିତ ଚଳଚିତ୍ର ହେଉଛି ସୁରେଶ ଓବେରୟଙ୍କ ଅଭିନୀତ ହିନ୍ଦୀ ଚଳଚ୍ଚିତ୍ର 'କାନୁନ୍ କ୍ୟା କରେଗା ।'

ଏହାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ହେଉଛି ଚକ୍ରପାଣି ତଥା ଚନ୍ଦ୍ରାରାୟଙ୍କ ଅଭିନୀତ 'ନଳଦମୟନ୍ତୀ ।' ଏହି ପ୍ରେକ୍ଷାଳୟର ସମୁଦାୟ ଆସନ ସଂଖ୍ୟା ପ୍ରାୟ ୧୧୨୪ । ଏହି ପ୍ରେକ୍ଷାଳୟରେ 'ଏଇ ତ ଦୁନିଆ', 'ନଳଦମୟନ୍ତୀ', 'ପକାକମଳ ପୋତଛତା' ଆଦି ଓଡ଼ିଆ ଚଳଚ୍ଚିତ୍ର ପଚିଶ ଦିନରୁ ଅଧିକ କାଳ ପ୍ରଦର୍ଶିତ ହୋଇଥିଲା । ଏବେ ମଧ୍ୟ ଏହାର ପାଦପ୍ରଦୀପ ଚିରପ୍ରଜ୍ଜ୍ୱଳ ଅଛି ଓ ଏହା ବହୁ ଚଳଚ୍ଚିତ୍ର ପ୍ରେମୀଙ୍କ ହୃଦୟକୁ ଏପର୍ଯ୍ୟନ୍ତ ମଧ୍ୟ ଏକ ଉଷ୍ମ ଆନ୍ତରିକତାରେ ଆଚ୍ଛନ୍ନ କରିଛି ।

## ଅସ୍ତରାଗ ନୁହେଁ, ଉଦୟ ଅନୁରାଗ :

ସାମ୍ପ୍ରତିକ ସ୍ଥିତିରେ ପ୍ରେକ୍ଷାଳୟମାନଙ୍କର ଆୟୁଷ ସମ୍ପର୍କରେ ବିଚାର କଲେ ମନ ଭିତରେ ନୈରାଶ୍ୟର ଏକ ଶୀତଳ ସ୍ରୋତ ସଞ୍ଚରିଯାଏ । ବର୍ତ୍ତମାନ କେବଳ କଟକରେ କାହିଁକି ଓଡ଼ିଶାର ଅଧିକାଂଶ ନଗରର ପ୍ରେକ୍ଷାଳୟମାନ ପ୍ରାୟ ବନ୍ଦ ହୋଇଯିବା ଅବସ୍ଥାକୁ ଆସିଲେଣି । ଅତୀତରେ ଚଳିତ ଶତାବ୍ଦୀର ପଞ୍ଚମ ଦଶକ ବେଳକୁ ଓଡ଼ିଆ ରଙ୍ଗମଞ୍ଚର ପାଦପ୍ରଦୀପମାନେ ଯେପରି ଚଳଚ୍ଚିତ୍ର ପ୍ରେକ୍ଷାଳୟମାନଙ୍କର ସ୍ପର୍ଦ୍ଧିତ ପଦ-ପାତରେ ସ୍ତିମିତ ହୋଇ ଆସିଥିଲେ, ବର୍ତ୍ତମାନ ସେହିପରି ଚଳଚ୍ଚିତ୍ର ପ୍ରେକ୍ଷାଳୟମାନେ ଭିଡ଼ିଓ, ଟେଲିଭିଜନ, ସାମ୍ପ୍ରଆଲୋକନା ତଥା କେବୁଲଟିଭି ଆଦିର କ୍ରମବର୍ଦ୍ଧିଷ୍ଣୁ ପ୍ରଭାବ ହେତୁ ବନ୍ଦ ପ୍ରାୟ ହୋଇଯିବାକୁ ବସିଲେଣି । ଏହାସହିତ ଚଳଚ୍ଚିତ୍ର ବିତରକମାନଙ୍କର ଦ୍ୱାରା ଚଳଚ୍ଚିତ୍ରଗୁଡ଼ିକର ହେଉଥିବା ଆକାଶଛୁଆଁ ମୂଲ୍ୟବୃଦ୍ଧି ଓ ସରକାରଙ୍କର ପ୍ରଚଳିତ କରହାର ମଧ୍ୟ ଏହି ପ୍ରେକ୍ଷାଳୟମାନଙ୍କର ପ୍ରଗତିରେ ଅନ୍ତରାୟ ସୃଷ୍ଟି କରୁଛନ୍ତି ବୋଲି କେତେ ପ୍ରେକ୍ଷାଳୟର ଶୁଭେଚ୍ଛୁମାନଙ୍କର ମତ ।

ଅବଶ୍ୟ ପ୍ରତ୍ୟେକ ଦୁଃସ୍ଥିତିରୁ ମୁକୁଳିବା ପାଇଁ ଏକ ବିକଳ୍ପ ସ୍ଥିତି ସୃଷ୍ଟିବେଳେ ପ୍ରାୟତଃ ଥାଏ । ଏ କ୍ଷେତ୍ରରେ ଅଧିକାଂଶ ପ୍ରେକ୍ଷାଳୟମାନେ ମଧ୍ୟ ସଚେତନ ରହି ବିହିତ ବ୍ୟବସ୍ଥା ଗ୍ରହଣ କରୁଛନ୍ତି । ଅଧିକାଂଶ ପ୍ରେକ୍ଷାଳୟମାନଙ୍କରେ ଇଂରେଜୀ ଚଳଚ୍ଚିତ୍ର, ଯାହା କେବଳ ପ୍ରାପ୍ତବୟସ୍କଙ୍କ ପାଇଁ ଉଦ୍ଦିଷ୍ଟ ତ ଅନେକ ମାଲୟାଲମ୍‌ରୁ ଉଦ୍ଭବ ହୋଇଥିବା ହିନ୍ଦୀ ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇ ପର୍ଯ୍ୟାପ୍ତ ଅର୍ଥ ଉପାର୍ଜନ କରି ପାରୁଛି । ମାତ୍ର ଏହାଦ୍ୱାରା ଏକ ସୁସ୍ଥ ତଥା ନିରୋଗ ସମାଜଗଠନରେ ତୀବ୍ର ପ୍ରତିବନ୍ଧକ ସୃଷ୍ଟି ହେଉଛି । ଏହାବ୍ୟତୀତ ହିନ୍ଦୀର ସୁପ୍ରସିଦ୍ଧ ସୁପରଷ୍ଟାର ଧର୍ମେନ୍ଦ୍ର, ଅମିତାଭ, ରାଜେଶ ଓ ଜୀତେନ୍ଦ୍ର ବର୍ତ୍ତମାନ ପୂର୍ଣ୍ଣଭାବରେ ଚଳଚ୍ଚିତ୍ର ଜଗତରୁ ଦୂରେଇ ଯାଇଛନ୍ତି ଓ ଅନେକ ନୂତନ ଚିତ୍ର-ତାରକା ହିନ୍ଦୀ ଚଳଚ୍ଚିତ୍ରର ରଜତ ପର୍ଦ୍ଦାକୁ ପୂର୍ଣ୍ଣ ଆଚ୍ଛନ୍ନ କରିଛନ୍ତି । ନୂତନ ଚଳଚ୍ଚିତ୍ରମାନଙ୍କର ଆକାଶଛୁଆଁ ମୂଲ୍ୟବୃଦ୍ଧି ହେତୁ 'ହିନ୍ଦ୍' ସେମାନେ ଭଳି ପ୍ରତିଷ୍ଠିତ ପ୍ରେକ୍ଷାଳୟମାନଙ୍କରେ ଦୀର୍ଘ ଦଶବର୍ଷ ଧରି ନୂତନ ଚଳଚ୍ଚିତ୍ର ପଡ଼ୁପାରି ନାହିଁ ।

ଏହି ସମସ୍ତ ପ୍ରତିକୂଳ ପରିସ୍ଥିତିସତ୍ତ୍ୱେ ମଧ୍ୟ ପ୍ରେକ୍ଷାଳୟର ସ୍ୱତ୍ୱାଧିକାରୀମାନେ ନିଜ ବ୍ୟବସାୟ ପ୍ରତି ଆସ୍ଥାଶୂନ୍ୟ ହୋଇନାହାନ୍ତି । ୧୯୫୨ ମସିହାରୁ ଏ ପର୍ଯ୍ୟନ୍ତ ଯେତେ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇ ପ୍ରେକ୍ଷାଳୟମାନଙ୍କରେ ପର୍ଯ୍ୟାପ୍ତ ଲୋକପ୍ରିୟତା ଓ ଅର୍ଥ ଅର୍ଜନ କରିଥିଲେ, ସେ ସମସ୍ତ ଚଳଚ୍ଚିତ୍ରମାନଙ୍କର ଅଭିଲେଖ (Record) ୧୯୯୧ ମସିହାରେ 'ମୈନେ ପ୍ୟାର କିଆ' ନାମକ ଏକ ହିନ୍ଦୀ ଚଳଚ୍ଚିତ୍ର ଭଙ୍ଗ କରିଦେଲା । ଏହା ହାରାହାରି କଟକରେ ପ୍ରାୟ ତିନିଲକ୍ଷ ଓ ବ୍ରହ୍ମପୁରରେ ପ୍ରାୟ ଚଉଦଲକ୍ଷ ଟଙ୍କା ଆଦାୟ କରିବାରେ ସକ୍ଷମ ହୋଇଥିଲା (୩) କ୍ରମେ କ୍ରମେ ପ୍ରାଚୀନ ସଙ୍ଗୀତ ପଦ୍ଧତିର

(୩) ବ୍ୟକ୍ତିଗତ ସାକ୍ଷାତକାର : ଶ୍ରୀ ସତ୍ୟପ୍ରକାଶ ଦାସ : ପରିଚାଳକ ଜୟଶ୍ରୀ ସିନେମା କଟକ । ତା ୨୦ । ୨ । ୧୯୯୨ ।

ଲୋକପ୍ରିୟତା ମଧ୍ୟ ହ୍ରାସ ପାଇଲା । ଏବେ ଛନ୍ଦବଦ୍ଧ ସଙ୍ଗୀତମାନଙ୍କରେ ଫୋର ଟ୍ରାକ ଷ୍ଟେରିଓଫୋନିକ ସାଉଣ୍ଡର ପ୍ରୟୋଗ, ଆଧୁନିକ ସାଙ୍ଗୀତିକ ପ୍ରଯୋଜନା (Modern Musical Composition) ଏବଂ ଗତାନୁଗତିକତାର ପରିହାର ଚଳଚ୍ଚିତ୍ରପ୍ରେମୀଙ୍କୁ ବହୁଭାବରେ ପ୍ରେକ୍ଷାଳୟରେ ଚଳଚ୍ଚିତ୍ର ଦେଖିବା ପାଇଁ ଆକୃଷ୍ଟ କଲା । ଏ କ୍ଷେତ୍ରରେ ସୁପ୍ରସିଦ୍ଧ ଉଦୀୟମାନ ହିନ୍ଦୀ ସଙ୍ଗୀତ ନିର୍ଦ୍ଦେଶକ 'ନଦ୍ଦିମ୍ ଶ୍ରାବନ'ଙ୍କୁ ସ୍ମରଣ କରାଯାଇ-ପାରେ । ଚଳଚ୍ଚିତ୍ରପ୍ରେମୀମାନେ ସବୁବେଳେ ଏକ ନୂତନ ସ୍ୱାଦକୁ ସାଧାରଣତଃ ଅପେକ୍ଷା କରିଥାନ୍ତି । ଭବିଷ୍ୟତରେ ପ୍ରେକ୍ଷାଳୟର ଆର୍ଥିକ ସ୍ୱଚ୍ଛଳତା ତଥା ଲୋକପ୍ରିୟତା ପାଇଁ ଚଳଚ୍ଚିତ୍ର ପ୍ରଯୋଜକମାନେ ଏ ଦିଗରେ ଦୃଷ୍ଟି ଦେବା ନିତାନ୍ତ ଆବଶ୍ୟକ ।

ଝଡ଼ବର୍ଷା, ବନ୍ୟା ଭଳି ପ୍ରାକୃତିକ ବିପର୍ଯ୍ୟୟ ଏବଂ କଟକରେ ପ୍ରେକ୍ଷାଳୟ-ମାନଙ୍କର ବହୁଳତା, କର୍ଫ୍ୟୁ ଭଳି ଆଇନଗତ ଅସୁବିଧା ହେଉ ପ୍ରେକ୍ଷାଳୟମାନଙ୍କରେ ଚଳଚ୍ଚିତ୍ର ପ୍ରଦର୍ଶନରେ ବାଧା ସୃଷ୍ଟି କରିଥାଏ, ତଥାପି ଏ ସମସ୍ତ ଅସୁବିଧା ପ୍ରେକ୍ଷାଳୟମାନଙ୍କ ପାଦପ୍ରଦୀପକୁ ଚିରନ୍ତନପାଇଁ ଅସ୍ତମିତ କରିପାରନ୍ତି ନାହିଁ ମାତ୍ର ଯଦି ପ୍ରେକ୍ଷାଳୟରୁ ଗୋଟିଏ ଦର୍ଶକ କୌଣସି ଏକ ଚିତ୍ରଦେଖି ବ୍ୟଥିତ ଓ ଅସନ୍ତୁଷ୍ଟ ହୋଇ ଫେରିଯାଏ ତେବେ ତାର ଭୁଣ୍ଡରେ ଛେଳି କୁକୁର ଭଳି ଚିତ୍ରଟିର ବ୍ୟର୍ଥତା ସମଗ୍ର ସହରରେ ପ୍ରସାରିତ ହୋଇଯାଏ ଓ ପ୍ରେକ୍ଷାଳୟରେ ଦର୍ଶକମାନଙ୍କର ସଂଖ୍ୟା କ୍ରମେ କ୍ରମେ ମ୍ଳାନ ହୋଇ ଆସେ । ଏ ସମସ୍ତ ସତ୍ତ୍ୱେ କଟକର ଅଧିକାଂଶ ପ୍ରେକ୍ଷାଳୟ ଏପର୍ଯ୍ୟନ୍ତ ସତେଜ ଓ ପ୍ରାଣୋଚ୍ଛ୍ୱଳ ଅଛନ୍ତି । ଭବିଷ୍ୟତ ପାଇଁ ଏମାନଙ୍କ ପାଖରେ ଅନେକ ମଧୁର ସ୍ୱପ୍ନ ଓ ସବୁଜ ସମ୍ଭାବନା ମଧ୍ୟ ଅଛି ।

କଟକର ପ୍ରେକ୍ଷାଳୟମାନଙ୍କ ସମ୍ପର୍କରେ ଏପର୍ଯ୍ୟନ୍ତ କୌଣସି ବିଧିବଦ୍ଧ ଆଲୋଚନା ଏହି ଆଲୋଚକର ଦୃଷ୍ଟିକୁ ଆସିନାହିଁ । ତେଣୁ ଏହି କ୍ଷେତ୍ରରେ ଏ ପ୍ରବନ୍ଧ ଏକ ପ୍ରାଥମିକ ପ୍ରୟାସ ମାତ୍ର । ଏଥିପାଇଁ କୌଣସି ଲିଖିତ ବିବରଣୀ ମଧ୍ୟ ପ୍ରବନ୍ଧ ରଚନାରେ ସହାୟକ ହୋଇ ନାହିଁ । ଯେଉଁ ସହୃଦୟ ନାଗରିକମାନେ ଏ କ୍ଷେତ୍ରରେ ସାମାନ୍ୟ ତଥ୍ୟ ପ୍ରଦାନ କରିଛନ୍ତି ସେମାନଙ୍କୁ ଏ ଅବସରରେ ଆନ୍ତରିକ ସାଧୁବାଦ ଏହି ଆଲୋଚକ ବାଢ଼ି ବସୁଛି । ଭବିଷ୍ୟତରେ କଟକର ପ୍ରେକ୍ଷାଳୟମାନଙ୍କ ଉପରେ ଆଲୋଚନା ପାଇଁ ଏହି ପ୍ରବନ୍ଧ ଏକ ସହାୟକ ସାମଗ୍ରୀ ଭାବେ ବ୍ୟବହୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ଅନୁଭୂତ ହେବ ।



# ଓଡ଼ିଶାରେ ଦୂରଦର୍ଶନ

**ଶ୍ରୀ ରବିରଞ୍ଜନ ମିଶ୍ର**

ସତୁରି ଦଶକର ପ୍ରାରମ୍ଭ ପୂର୍ବରୁ, ଦୃଶ୍ୟ କଳା କହିଲେ ହିଁ, ନୃତ୍ୟ ନାଟକର ପ୍ରଦର୍ଶନକୁ ବୁଝାଯାଉଥିଲା । ହଠାତ୍ ଓଡ଼ିଶାର ଜନସାଧାରଣ ଶୁଣିଲେ ଏମିତି ଏକ ଯନ୍ତ୍ର ଉଦ୍‌ଭାବିତ ହୋଇଛି, ଯାହା ମାଧ୍ୟମରେ ଅନେକ ଦୂରରେ ଘଟିଥିବା କିମ୍ବା ଘଟୁଥିବା ଘଟଣାଟିଏ ନିଜ ଆଖି ସାମ୍ନାରେ, ନିଜ ଘରେ ବସି ଗୋଟିଏ ବାକ୍ସ ସାହାଯ୍ୟରେ ଦର୍ଶନ କରି ହବ । ପୁଣି ଜୀବନ୍ତ ଭାବରେ । ଏହା ଭାରତର ଅନ୍ୟ ଅନୁନ୍ନତ ରାଜ୍ୟ ପରି ଓଡ଼ିଶାର ଦୁଇ ତୃତୀୟାଂଶ ଅଧିବାସୀଙ୍କୁ ହତବାକ କରିଦେଲା । ସେମାନେ ବିସ୍ମୟରେ ଅପେକ୍ଷା କରି ରହିଲେ ଏଇ ଦୂରଦର୍ଶନକୁ ଦୂରଦର୍ଶନ ମାଧ୍ୟମରେ ତାଙ୍କ ନିକଟରେ ପହଞ୍ଚିବାକୁ ପ୍ରସ୍ତୁତ ହେଉଥିବା ଦୂରଦର୍ଶନ କାର୍ଯ୍ୟକ୍ରମକୁ ।

୧୯୭୫ මସିହା ଅଗଷ୍ଟ ମାସ ୧ ତାରିଖ । ଓଡ଼ିଶାରେ ଦୂରଦର୍ଶନ ପ୍ରସାରଣର ଶୁଭାରମ୍ଭ ହେଲା । ଓଡ଼ିଶା ସମେତ ଭାରତବର୍ଷର ଆଉ ୫ଟି ରାଜ୍ୟରେ ଏକ ପରୀକ୍ଷାମୂଳକ ପ୍ରସାରଣ ଆରମ୍ଭ ହେଲା । ଆରମ୍ଭ ପୂର୍ବରୁ ପ୍ରସ୍ତୁତି ଚାଲିଲା ପ୍ରାୟ ବର୍ଷେକାଳ ।

ଏଇ ପ୍ରସ୍ତୁତି ଦୁଇ ଭାଗରେ ବିଭକ୍ତ । କାର୍ଯ୍ୟକ୍ରମ ପ୍ରସ୍ତୁତି ଓ ଆଞ୍ଚଳିକ ଦର୍ଶକ ଚିହ୍ନଟ । ଓଡ଼ିଶାର ତିନୋଟି ଜିଲ୍ଲାରେ ଏ କାର୍ଯ୍ୟକ୍ରମ ପ୍ରସାରରେ ଲକ୍ଷ୍ୟ ରଖାଯାଇ ଥାଏ । ସେଗୁଡ଼ିକ ହେଲା ସମ୍ବଲପୁର, ଢେଙ୍କାନାଳ ଏବଂ ଫୁଲବାଣୀ । ଏଇ ତିନୋଟି ଜିଲ୍ଲାରେ ସମସ୍ତ ଅଞ୍ଚଳରେ ଏ କାର୍ଯ୍ୟକ୍ରମ ପ୍ରସାରଣର ସୁବିଧା ନଥିଲା । ତେଣୁ ସମସ୍ତ ଅଞ୍ଚଳକୁ ପରିସର ଭୁକ୍ତ ନକରି ମାତ୍ର ୭ଟି ଶିକ୍ଷାଜିଲ୍ଲା ଯଥା—ଅନୁଗୁଳ, ଢେଙ୍କାନାଳ, ଫୁଲବାଣୀ, ବାଲିଗୁଡ଼ା, ସମ୍ବଲପୁର, ବରଗଡ଼ ଏବଂ ଦେବଗଡ଼କୁ ଚିହ୍ନଟ କରାଗଲା । ଏଇ ଶିକ୍ଷା ଜିଲ୍ଲାମାନଙ୍କର ସମସ୍ତ ଅଞ୍ଚଳକୁ ବିଦ୍ୟୁତ୍ ସଂଯୋଗ କରାଯାଇ ନଥିଲା କିମ୍ବା ଗମନାଗମନର ସୁବିଧା ବି ନଥିଲା । ତେଣୁ ସିଦ୍ଧାନ୍ତ ନିଆଗଲା, ୩୫୪ ଗ୍ରାମରେ କାର୍ଯ୍ୟକ୍ରମ ପ୍ରଦର୍ଶନର ବ୍ୟବସ୍ଥା କରାଯିବ ।

ସେମାନଙ୍କ ମଧ୍ୟରୁ ୩୨୬ଟି ବିଦ୍ୟାଳୟ, ୧୩ଟି ବ୍ଲକ ଘର, ୨ଟି ମହିଳା ସମିତି, ୨ଟି ଶସ୍ୟ ଗୋଲା, ଗୋଟିଏ ଧର୍ମଶାଳା, ଗୋଟିଏ ଯୁବକସଂଘ ଘର ଏବଂ ୯ଟି

ପଞ୍ଚାୟତ ସମିତି ଘରେ ଟେଲିଭିଜନ ସେଟ୍‌ଗୁଡ଼ିକ ସ୍ଥାପନ କରିବାର ବ୍ୟବସ୍ଥା କରାଗଲା । ବିଦ୍ୟାଳୟ ଶିକ୍ଷକ କିମ୍ବା ଅନ୍ୟ ସଂସ୍ଥାର ମୁଖ୍ୟମାନେ ଏସବୁ ଦାୟିତ୍ୱରେ ରହିଲେ । ଯେଉଁଠି ବିଦ୍ୟୁତ୍ ସଂଯୋଗ ହେବାର ସମ୍ଭାବନା ନଥିଲା ସେଠି ବ୍ୟାଟେରୀ-ଚାଳିତ ଟି. ଭି. ସେଟ୍ ସ୍ଥାପନ କରିବାର ବ୍ୟବସ୍ଥା ହେଲା । ୨୧୧ଟି ସ୍ଥାନରେ ବିଦ୍ୟୁତ୍ ଚାଳିତ ଏବଂ ୧୪୩ଟି ସ୍ଥାନରେ ବ୍ୟାଟେରୀଚାଳିତ ସେଟ୍ ସ୍ଥାପନ କରାଗଲା । ଏସବୁ କାର୍ଯ୍ୟ ତଦାରଖ କରୁଥିଲେ ଓଡ଼ିଶାରେ ଥିବା ଭାରତୀୟ ମହାକାଶ ଗବେଷଣା ସଂସ୍ଥାର ଅଧିକାରୀମାନେ ।

ସେମାନଙ୍କର ଆଉ ଗୋଟିଏ ଗୁରୁଦାୟିତ୍ୱ ଥିଲା । ତାହା ହେଲା, କାର୍ଯ୍ୟକ୍ରମ ପ୍ରସ୍ତୁତି ପୂର୍ବରୁ ପ୍ରସ୍ତୁତି କର୍ତ୍ତାମାନଙ୍କୁ ଦର୍ଶକମାନଙ୍କର ମାନସିକ ଜ୍ଞାନ, ସାମାଜିକ ଅବସ୍ଥା ଓ ଲୋକାଚାର ସମ୍ପର୍କରେ ସୂଚନା ଦେବା—ଯାହାକୁ ସାମ୍ନାରେ ରଖି କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ ଓ କାର୍ଯ୍ୟକ୍ରମଟି ପ୍ରସାରିତ ହୋଇ ଯାଇଥିବାପରେ ତାହା ଦର୍ଶକମାନଙ୍କୁ ପ୍ରଭାବିତ କରୁଛି କି ନାହିଁ, ହିତ କରୁନାହିଁ, ତା'ହେଲେ ଅଧିକ କଣ କଲେ ପ୍ରଭାବ ପକେଇବ ଏଇ ସବୁ ଗବେଷଣା ମାଧ୍ୟମରେ ପ୍ରସ୍ତୁତ କର୍ତ୍ତାମାନଙ୍କୁ ଜଣେଇଦବା । ସେମାନେ ପ୍ରାକ୍ ପ୍ରସ୍ତୁତିମୂଳକ ଗବେଷଣା ଆରମ୍ଭ କରି ଦେଲେ । ବର୍ତ୍ତମାନ କାର୍ଯ୍ୟକ୍ରମ ପ୍ରସ୍ତୁତି କରିବା ଓ ଦର୍ଶକମାନଙ୍କ ନିକଟରେ ପହଞ୍ଚେଇ ଦବା ଦରକାର ।

ଭାରତର ଛ'ଟି ରାଜ୍ୟ ପାଇଁ ଏ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଏ ରାଜ୍ୟ ଗୁଡ଼ିକ ହେଲା ରାଜସ୍ଥାନ ଓ ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକ । ଏଇ ଛ'ଟି ରାଜ୍ୟରେ କାର୍ଯ୍ୟକ୍ରମ ପ୍ରଦର୍ଶନ କରେଇବା ପାଇଁ ତିନୋଟି ପ୍ରସ୍ତୁତକେନ୍ଦ୍ର ବା Base Production Centre ନିର୍ମାଣ କରାଗଲା । ସେଗୁଡ଼ିକ ହେଲା ରାଜସ୍ଥାନ ଓ ବିହାର ପାଇଁ ଦିଲ୍ଲୀ, ମଧ୍ୟପ୍ରଦେଶ ଓ ଓଡ଼ିଶା ପାଇଁ କଟକ ଏବଂ ଆନ୍ଧ୍ରପ୍ରଦେଶ ଓ କର୍ଣ୍ଣାଟକ ପାଇଁ ହାଇଦ୍ରାବାଦ । କଟକରେ ଓଡ଼ିଶାପାଇଁ ଓଡ଼ିଆ ଭାଷାରେ ଏବଂ ମଧ୍ୟପ୍ରଦେଶ ପାଇଁ ହିନ୍ଦି ଭାଷାରେ କାର୍ଯ୍ୟକ୍ରମ ପ୍ରସ୍ତୁତିର ଯୋଜନା ତିଆରି ହେଲା ।

ଆକାଶବାଣୀ କଟକ କେନ୍ଦ୍ରର ପୁରୁଣା କାର୍ଯ୍ୟାଳୟ, ଯାହାକୁ ମଧୁପୁର କୋଠି କହନ୍ତି, ସେଇଠି ଗୋଟିଏ ବଖୁରିଆ ଘରେ ପ୍ରଥମେ ଦୂରଦର୍ଶନ ପାଇଁ କାର୍ଯ୍ୟାଳୟଟିଏ ଖୋଲାଗଲା ୧୯୭୩ ମସିହା ସେପ୍‌ଟେମ୍ବର ମାସରେ । ତାହାହେଲା ଓଡ଼ିଶାରେ ଦୂରଦର୍ଶନର ମଞ୍ଚ ପ୍ରବେଶ । ପ୍ରାୟ ବର୍ଷକ ପରେ ୧୯୭୪ ମସିହା ଅଗଷ୍ଟ ମାସରେ ଦୂରଦର୍ଶନ କାର୍ଯ୍ୟାଳୟ ଆକାଶବାଣୀ ପରିସର ମଧ୍ୟରୁ ଉଠି ଆସିଲା କଟକର ତୁଳସୀପୁରସ୍ଥିତ ଏକ ଭଡ଼ା ଘରକୁ । ସେଇଠି ନିର୍ମାଣ କରାଗଲା ଦୂରଦର୍ଶନ କାର୍ଯ୍ୟକ୍ରମ ପ୍ରସ୍ତୁତି କେନ୍ଦ୍ର ବା ଷ୍ଟୁଡିଓ ଓ କାର୍ଯ୍ୟାଳୟ । ସେତେବେଳକୁ ସିଦ୍ଧାନ୍ତ ନିଆ ଯାଇଥିଲା, ଠିକ୍ ବର୍ଷକ ପରେ ଅର୍ଥାତ୍ ୧୯୭୫ ମସିହା ଅଗଷ୍ଟ ୧ ତାରିଖରୁ ଆରମ୍ଭ ହେବ ପ୍ରସାରଣ । ହାତରେ ସମୟ ଅଳ୍ପ କାର୍ଯ୍ୟ କିନ୍ତୁ ଅନେକ ।

୧୯୭୩ ମସିହାରେ ଯେଉଁ କର୍ମଚାରୀମାନଙ୍କୁ ନିଯୁକ୍ତ ଦିଆ ଯାଇଥିଲା କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ, ସେମାନେ ଦିଲ୍ଲୀଠାରେ ଦୂରଦର୍ଶନର ବିଭିନ୍ନ ବିଭାଗରେ ପ୍ରଶିକ୍ଷଣ ନେଇ କଟକରେ ପହଞ୍ଚି ଯାଇଥାନ୍ତି । ଏମାନଙ୍କ ମଧ୍ୟରୁ ଅନେକେ ଆକାଶବାଣୀର ଅନୁଭବୀ କର୍ମଚାରୀ ଓ ଆଉ କେତେକ ନୃତ୍ୟ, ନାଟକ, ସଂସ୍କୃତି ଓ କୃଷିବିଜ୍ଞାନ କ୍ଷେତ୍ରରେ ଜ୍ଞାନ ଅର୍ଜନ କରିଥିବା ନୂତନ କର୍ମଚାରୀ । ଯେଉଁମାନେ କାର୍ଯ୍ୟକ୍ରମ ପ୍ରସ୍ତୁତ କରନ୍ତି ସେମାନଙ୍କୁ ପ୍ରସ୍ତୁତକର୍ତ୍ତା ବା ପ୍ରଯୋଜକ କୁହାଯାଏ । ପ୍ରଥମ ଅବସ୍ଥାରେ ଏମାନଙ୍କ ସଂଖ୍ୟା ଥିଲା ଚାରି । ପ୍ରଯୋଜନା ସହକାରୀ, ଚିତ୍ର ଉତ୍ତୋଳନକାରୀ, ଶବ୍ଦ ସଂଗ୍ରହକାରୀ ଏବଂ ଅନ୍ୟାନ୍ୟ ବୈଷୟିକ କର୍ମଚାରୀଙ୍କ ସାହାଯ୍ୟରେ ପ୍ରଯୋଜକମାନେ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ଆରମ୍ଭ କଲେ ।

ଓଡ଼ିଶା ପାଇଁ ସାଇଟ୍ ବା ଉପଗ୍ରହ ମାଧ୍ୟମରେ ଶିକ୍ଷାମୂଳକ ଦୂରଦର୍ଶନ କାର୍ଯ୍ୟକ୍ରମ ପ୍ରସାରଣ ଦୁଇ ଭାଗରେ ବିଭକ୍ତ । ସକାଳେ ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ପାଇଁ ଶିକ୍ଷାମୂଳକ କାର୍ଯ୍ୟକ୍ରମ ଓ ସନ୍ଧ୍ୟାବେଳେ ଗ୍ରାମାଞ୍ଚଳ ଅଧିବାସୀମାନଙ୍କ ପାଇଁ ଶିକ୍ଷା, ସୂଚନା ଓ ମନୋରଞ୍ଜନ କାର୍ଯ୍ୟକ୍ରମ । ଶିକ୍ଷା ଓ ସୂଚନାମୂଳକ କାର୍ଯ୍ୟକ୍ରମ ମଧ୍ୟରେ ଥିଲା କୃଷିବାସ ସମ୍ପର୍କୀୟ ସୂଚନା, ପରିବାର କଲ୍ୟାଣ, ସ୍ୱାସ୍ଥ୍ୟରକ୍ଷା, ମହିଳାମାନଙ୍କ ପାଇଁ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଏବଂ ମନୋରଞ୍ଜନ ପାଇଁ ନୃତ୍ୟ ଓ ନାଟକର କାର୍ଯ୍ୟକ୍ରମ । ସକାଳେ ପ୍ରାଥମିକ ବିଦ୍ୟାଳୟମାନଙ୍କ ପାଇଁ ୧୦ଟା ୨୨ ମିନଟ୍ ଠାରୁ ୧୦ଟା ୪୫ ମିନଟ୍ ପର୍ଯ୍ୟନ୍ତ ଓ ସନ୍ଧ୍ୟାବେଳେ, ୬୦ ମିନଟ୍ ପାଇଁ କାର୍ଯ୍ୟକ୍ରମ ପ୍ରସାରଣ କରାଗଲା ।

ସ୍ଥାନୀୟ ବିଶେଷଜ୍ଞ ଓ କଳାକାରମାନଙ୍କୁ ନେଇ ପ୍ରସ୍ତୁତ ହେଉଥିବା ଏଇ କାର୍ଯ୍ୟକ୍ରମଗୁଡ଼ିକ ଗୋଟିଏ ଦିନ ପାଇଁ ଏକତ୍ରକରି ଦିଲ୍ଲୀ ପଠା ଯାଉଥିଲା । ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ ଏଗୁଡ଼ିକ ପହଞ୍ଚୁଥିଲେ ଅହମ୍ମଦାବାଦର ଭୂକେନ୍ଦ୍ର ବା Earth Station ଠାରେ । ସେଠାରୁ କାର୍ଯ୍ୟକ୍ରମଗୁଡ଼ିକ ଯାନ୍ତ୍ରିକ ଉପାୟରେ ୪୭ ଫୁଟ ବ୍ୟାସବିଶିଷ୍ଟ ଏକ ଆଣ୍ଟେନା ସାହାଯ୍ୟରେ ଉପଗ୍ରହକୁ ପ୍ରେରଣ କରାଯାଉଥିଲା । ଉପଗ୍ରହରୁ କାର୍ଯ୍ୟକ୍ରମକୁ ସଂଗ୍ରହ କରୁଥିଲେ ନିର୍ଦ୍ଧାରିତ ଅଞ୍ଚଳର ଟେଲିଭିଜନ ସେଟ୍‌ମାନେ ଏବଂ ସାମ୍ନାରେ ବସି ଦର୍ଶକମାନେ ତାକୁ ଦେଖୁଥିଲେ ।

ଏହା ବ୍ୟତୀତ ଦିଲ୍ଲୀଠାରେ ଆଉ ଗୋଟିଏ ଭୂକେନ୍ଦ୍ର ଥିଲା । ସେହି ଭୂକେନ୍ଦ୍ର ମାଧ୍ୟମରେ ଆଉ ୩୦ ମିନଟ୍‌ର ହିନ୍ଦୀ କାର୍ଯ୍ୟକ୍ରମ ପ୍ରସାରିତ ହେଉଥିଲା । ଏଇ ୩୦ ମିନଟ୍ ମଧ୍ୟରେ ଦୈନିକ ସମ୍ବାଦ ବି ପ୍ରସାର କରାଯାଉଥିଲା ।

କାର୍ଯ୍ୟକ୍ରମଗୁଡ଼ିକର ପ୍ରଭାବ ସୁଦୂରପ୍ରସାରୀ । ପ୍ରଥମେ ଯେତେବେଳେ ପ୍ରସାରଣ ଆରମ୍ଭ ହେଲା, ଦର୍ଶକବୃନ୍ଦ ବିସ୍ମୟ ପ୍ରକାଶ କଲେ; କେମିତି ଗୋଟିଏ ଛୋଟ ବାକ୍ସ ଭିତରେ ଏତେ ଘଟଣା ଘଟି ଯାଉଛି । ଚାଷ ହେଉଛି, ଗଛ ରୋପଣ ହେଉଛି, ନାଚ

ହେଉଛୁ, ନାଟକ ମାଧ୍ୟମରେ ଉପକାରୀ କାହାଣୀଟିଏ ବି ଜାଣି ହେଉଛୁ ! ଏଠାକେ ଯୌଥ
ଅବସ୍ଥାରେ ଦର୍ଶକମାନେ କାର୍ଯ୍ୟକ୍ରମ ଦେଖିକରି କିଛୁ ଶିଖିବାକୁ ଓ ନିଜକୁ ସେଇମିତି
ଗଢ଼ି ତୋଳିବାକୁ ଚେଷ୍ଟା କଲେ । ଭାରତବର୍ଷର ଅନ୍ୟ ଅଞ୍ଚଳମାନଙ୍କ ପରି ଓଡ଼ିଶାରେ
ସାଇଟ୍ କାର୍ଯ୍ୟକ୍ରମ ଏକ ସଫଳ କାହାଣୀ ରୂପେ ପରିଗଣିତ ହେଲା ଏବଂ ଓଡ଼ିଶାରେ
ଦୂରଦର୍ଶନର ମୂଳଦୁଆକୁ ସୁଦୃଢ଼ କଲା । ଭାରତବର୍ଷର ୬ଟି ରାଜ୍ୟରେ ୪ଟି ଭାଷାରେ
ଦୁଇ ହଜାର ଚାରିଶହ ଗ୍ରାମ ପାଇଁ ଉଦ୍ଦିଷ୍ଟ ସାଇଟ କାର୍ଯ୍ୟକ୍ରମର ପରିସମାପ୍ତି ଘଟିଲା
୧୯୭୬ ମସିହା ଜୁଲାଇ ୩୧ ତାରିଖ ଦିନ । ଗବେଷଣା କରି ଦେଖାଗଲା, ଏ କାର୍ଯ୍ୟକ୍ରମ
ଗ୍ରାମାଞ୍ଚଳର ଦର୍ଶକମାନଙ୍କ ଉପରେ ଅଭୂତପୂର୍ବ ପ୍ରଭାବ ପକାଇଛି ।

ଅନେକ ବର୍ଷ ଧରି ବିଭିନ୍ନ ପ୍ରଚାର ମାଧ୍ୟମ ଦ୍ୱାରା ଯେଉଁ ସାମାଜିକ ସମସ୍ୟା-
ମୂଳକ ବାଣୀଟି ଲୋକଙ୍କ ପାଖରେ ପହଞ୍ଚି ପାରୁ ନଥିଲା, ତାହା ଏଇ ବର୍ଷକ ମଧ୍ୟରେ
ବିଭିନ୍ନ ଶିକ୍ଷା, ସୂଚନା ଓ ମନୋରଞ୍ଜନ କାର୍ଯ୍ୟକ୍ରମ ମାଧ୍ୟମରେ ଏଇ ଦର୍ଶକମାନଙ୍କ
ନିକଟରେ ପହଞ୍ଚି ପାରିଛି ଓ ସେମାନଙ୍କୁ ପ୍ରଭାବିତ କରିଛି । ଏ ପ୍ରଭାବକୁ ଆହୁରି ସୁଦୂର
ପ୍ରସାରୀ କରିବାପାଇଁ ସିଦ୍ଧାନ୍ତ ନିଆଗଲା ଯେ, ଏଇ ଅଞ୍ଚଳ ମାନଙ୍କରେ କାର୍ଯ୍ୟକ୍ରମ
ପ୍ରସାରଣ ଚାଲୁ ରହିବା ଦରକାର । କିନ୍ତୁ ସେତେବେଳକୁ ଆଉ ଗୋଟିଏ ଉପଗ୍ରହ
ମିଳିବାର ସମ୍ଭାବନା ନଥିଲା କିମ୍ବା ଆମ ଦେଶର ନିଜସ୍ୱ ଉପଗ୍ରହ ନଥିଲା । ଫଳରେ
ଯୋଜନା କରାଗଲା. ସାଇଟ୍ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କେତେକ ଗ୍ରାମାଞ୍ଚଳକୁ ନେଇ ଏଇ
ଯୋଜନାକୁ ଅବ୍ୟାହତ ରଖାଯିବ । ସେଥିପାଇଁ ଭୂପୃଷ୍ଠ ଟ୍ରାନ୍‌ସମିଟର ବା ପ୍ରେରକ ସ୍ଥାପନ
କରିବା ଦରକାର । ଏଇ ଯୋଜନା ଅନୁସାରେ ସମଗ୍ର ଦେଶରେ ୬ଟି ନୂଆ ଟ୍ରାନ୍‌ସମିଟର
ସ୍ଥାପନ କରାଗଲା ।

ସେଗୁଡ଼ିକ ହେଲା, ଜୟପୁର (ରାଜସ୍ଥାନ), ରାୟପୁର, ଗୁଲବର୍ଗା, ହାଇଦ୍ରାବାଦ,
ମୁଜାଫରପୁର ଏବଂ ଓଡ଼ିଶାର ସମ୍ବଲପୁର । ଏଇ ଛଅଟି ଟ୍ରାନ୍‌ସମିଟର ଦ୍ୱାରା ସମଗ୍ର-
ଦେଶର ୬୦ ହଜାର ବର୍ଗକିଲୋମିଟର ଅଞ୍ଚଳରେ ୧୩ ନିୟୁତ (୧୩୦ଲକ୍ଷ) ଦର୍ଶକ
କାର୍ଯ୍ୟକ୍ରମ ଦେଖି ପାରିବେ । ଏ ଅଞ୍ଚଳରେ ଗ୍ରାମାଞ୍ଚଳ ସଂଖ୍ୟା ୭ ହଜାର । ଏଇ ଗ୍ରାମ
ମାନଙ୍କ ମଧ୍ୟରୁ ୯ଶହ ୫୪ଟି ଗ୍ରାମ ପୂର୍ବରୁ ସାଇଟ୍ କାର୍ଯ୍ୟକ୍ରମ ଦେଖିବାର ସୁଯୋଗ
ପାଇଥିଲେ । ବର୍ତ୍ତମାନ ଆଉ ୬ ହଜାର ୫ ଶହ ୫୦ଟି ଗ୍ରାମ ନୂଆକରି ଦୂରଦର୍ଶନ
କାର୍ଯ୍ୟକ୍ରମର ପରିସରଭୁକ୍ତ ହୋଇଗଲା ।

ଓଡ଼ିଶାରେ ସାଇଟ୍ କାର୍ଯ୍ୟକ୍ରମର ପରିସମାପ୍ତି ଘଟିବାର ପ୍ରାୟ ୨୧ ମାସ ପରେ
ଅର୍ଥାତ୍ ୧୯୭୮ ମସିହା ମଇ ମାସ ୨ ତାରିଖରେ ସମ୍ବଲପୁରର ବୁକ୍‌ସହଲ୍ ଠାରେ
ଓଡ଼ିଶାର ପ୍ରଥମ ଦୂରଦର୍ଶନ ଟ୍ରାନ୍‌ସମିଟର କାର୍ଯ୍ୟକାରୀ ହେଲା । ଏଇ ଟ୍ରାନ୍‌ସମିଟରକୁ
ଉଦ୍‌ଘାଟନ କରିଥିଲେ ଆମ ଦେଶର ତତ୍କାଳୀନ ସୂଚନା ଓ ପ୍ରସାରଣ ମନ୍ତ୍ରୀ
ଶ୍ରୀଯୁକ୍ତ ଲାଲକୃଷ୍ଣ ଆଡ୍‌ଭାନୀ । ସମ୍ବଲପୁର ସହରର 'ଅଶୋକା' ସିନେମାହଲ୍ ଠାରେ,
ଏକ ନୃତ୍ୟ ସଙ୍ଗୀତଭରା କାର୍ଯ୍ୟକ୍ରମ ମାଧ୍ୟମରେ ୧୯୭୮ ମସିହା ଅପ୍ରେଲ୍ ୩୦ ତାରିଖ

ଦିନ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବକୁ ସିଧାସଳଖ ପ୍ରସାରଣ କରାଯାଇଥିଲା ।

ସମ୍ବଲପୁର ଟ୍ରାନ୍‌ସମିଟରଟି ଏକ କିଲୋୱାଟ୍ ଶକ୍ତି ବିଶିଷ୍ଟ ଓ ଏହା ଚ୍ୟାନେଲ- ୭ ଓ ବ୍ୟାଣ୍ଡ-୩ରେ କାର୍ଯ୍ୟକ୍ରମ ପ୍ରସାର କରେ । ଟ୍ରାନ୍‌ସମିଟରର ଚାରିକଡ଼େ ୪୦ କିଲୋମିଟରବ୍ୟାପୀ ବିଶିଷ୍ଟ ଅଞ୍ଚଳର ଦର୍ଶକମାନେ ଏ କାର୍ଯ୍ୟକ୍ରମ ଦେଖି ପାରନ୍ତି ।

ପ୍ରସାରଣ ପାଇଁ ସିନା ଟ୍ରାନ୍‌ସମିଟରଟିଏ ପ୍ରସ୍ତୁତ ହୋଇଗଲା ସମ୍ବଲପୁରରେ, ହେଲେ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାର କୌଣସି ବ୍ୟବସ୍ଥା ନଥିଲା ସେଠି । ଷ୍ଟୁଡିଓ ନଥିଲେ, କ୍ୟାମେରା ନଥିଲେ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ପାରିବ ନାହିଁ । ତେଣୁ ସିଦ୍ଧାନ୍ତ ନିଆ ଯାଇଥିଲା, ସମ୍ବଲପୁରରେ ପ୍ରଦର୍ଶିତ ହେବାକୁ ଥିବା କାର୍ଯ୍ୟକ୍ରମ, କଟକ ଠାରେ ପୂର୍ବରୁ ପ୍ରତିଷ୍ଠିତ ହୋଇଥିବା ଷ୍ଟୁଡିଓରେ ହିଁ ପ୍ରସ୍ତୁତ ହେବ । ପ୍ରକୃତ ପକ୍ଷେ ଦେଖିବାକୁ ଗଲେ, ସାଇଟ୍ କାର୍ଯ୍ୟକ୍ରମ ଶେଷ ହେବାର ଅଳ୍ପଦିନ ପରେ ଏହି ସିଦ୍ଧାନ୍ତ ନିଆଯାଇଥିଲା ଓ କଟକ, ଉପଗ୍ରହ ଦୂରଦର୍ଶନ କେନ୍ଦ୍ରକୁ ବନ୍ଦ କରିଦେବା ପରିବର୍ତ୍ତେ ଅଧିକ ସଂଖ୍ୟକ କର୍ମଚାରୀ ନିଯୁକ୍ତ କରାଯାଇ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଥିଲା । ପ୍ରସ୍ତୁତ କାର୍ଯ୍ୟକ୍ରମଗୁଡ଼ିକ ଭିଡ଼ିଓ ଟେପ୍ ମାଧ୍ୟମରେ ସଂଗୃହୀତ ହୋଇ ରହୁଥିଲା । ନିର୍ଦ୍ଧାରିତ ଦିନ ଅର୍ଥାତ୍ ୧୯୭୮ ମସିହା ମେ ମାସ ୨ ତାରିଖ ପର୍ଯ୍ୟନ୍ତ ।

ସମ୍ବଲପୁରରୁ ଯେଉଁ କାର୍ଯ୍ୟକ୍ରମ ପ୍ରସାରଣ ଆରମ୍ଭ ହେଲା—ତାହା ଦୁଇ ଭାଗରେ ବିଭକ୍ତ । ହାର୍ଡକୋର୍ (Hard core) ବା ଶିକ୍ଷାମୂଳକ ଓ ସଫ୍ଟ କୋର୍ (Soft core) ବା ସୂଚନା ଓ ମନୋରଞ୍ଜନଧର୍ମୀ । କୃଷି ସମ୍ପର୍କୀୟ ସାମୟିକ ସୂଚନା, ବିଭିନ୍ନ ଆଧୁନିକ ପଦ୍ଧତିର ଚାଷ ଓ ସାର ପ୍ରୟୋଗ ପ୍ରଣାଳୀ, ସ୍ୱାସ୍ଥ୍ୟରକ୍ଷା, ପ୍ରୌଢ଼ଶିକ୍ଷା, ପରିବାର କଲ୍ୟାଣ ଆଦି ଶିକ୍ଷାମୂଳକ କାର୍ଯ୍ୟ ସହିତ ଓଡ଼ିଶୀ, ଭଜନ, ଜଣାଣ, ଲୋକଗୀତ, ଆଦିବାସୀ ନୃତ୍ୟ, ପ୍ରାମାଣିକ ଚିତ୍ର ଓ ଅନେକ ସୂଚନାମୂଳକ ନାଟକ ପ୍ରସାରିତ ହେଉଥିଲା ପ୍ରସାରଣର ଅବଧି ଥିଲା ୧ ଘଣ୍ଟା ୧୫ ମିନିଟ୍ । ଏ କାର୍ଯ୍ୟକ୍ରମ ୫ ହଜାର ବର୍ଗ କିଲୋମିଟର ଅଞ୍ଚଳରେ, ୨ ଲକ୍ଷରୁ ଅଧିକ ଦର୍ଶକଙ୍କ ନିକଟରେ ପହଞ୍ଚି ପାରୁଥିଲା ।

ଏହି ସମୟରୁ ନିୟମିତ ଭାବରେ ସାପ୍ତାହିକ ନାଟକମାନ ପ୍ରସାରିତ ହେବାକୁ ଲାଗିଲା । ଏହି ନାଟକମାନଙ୍କର ସମୟ ସୀମା ଥିଲା କୋଡ଼ିଏରୁ ତିରିଶ ମିନିଟ୍ । ଏଥିରେ ସାହିତ୍ୟିକ ମୂଲ୍ୟ ଅପେକ୍ଷା ବେଶି ଗୁରୁତ୍ୱ ଦିଆଯାଉଥିଲା ପ୍ରଚାର ଉପରେ । ଅନ୍ୟ କଥାରେ କହିଲେ ଏ ନାଟକମାନଙ୍କ ସାହିତ୍ୟିକ ଧର୍ମଥିଲା ଗୌଣ, ମୁଖ୍ୟଥିଲା ସନ୍ଦେଶ । ସ୍ୱାସ୍ଥ୍ୟରକ୍ଷା, ପ୍ରୌଢ଼ଶିକ୍ଷା, ପରିବାର କଲ୍ୟାଣ ଆଦି ବିଷୟରେ ଏକ ସନ୍ଦେଶକୁ ଆଖି ଆଗରେ ରଖି ତାର ଚାରିକଡ଼ରେ କାହାଣୀଟିଏ ସୃଷ୍ଟି କରାଯାଉଥିଲା । ଫଳରେ ନାଟକ ମାଧ୍ୟମରେ ବାର୍ତ୍ତା ପ୍ରଚାରର ସୁବିଧା ସୃଷ୍ଟି କରାଯାଉଥିଲା । ଗବେଷଣା ଦ୍ୱାରା ଜଣା ପଡ଼ିଥିଲା, ଦୂରଦର୍ଶନରେ ନାଟକ ହେଉଛି ସବୁଠାରୁ ବଳିଷ୍ଠ ମାଧ୍ୟମ ।

ନାଟକ ମାଧ୍ୟମରେ ପ୍ରସ୍ତୁତ କରାଯାଉଥିବା ବାର୍ତ୍ତା ଯେତେ ସହଜରେ ଦର୍ଶକର ମନକୁ ଛୁଇଁ ପାରେ, ଅନ୍ୟ ମାଧ୍ୟମ ଯଥା, ସାକ୍ଷାତକାର, ଆଲୋଚନା ସେତେ ସହଜରେ ଦର୍ଶକ ମାନଙ୍କୁ ପ୍ରଭାବିତ କରି ପାରେନାହିଁ । ନାଟକ ପ୍ରସ୍ତୁତ କରିବା ଯଦିଓ ଅଧିକ କଷ୍ଟ ସାଧ୍ୟ, ବ୍ୟୟ ବହୁଳ ଓ ସମୟସାପେକ୍ଷ, ତଥାପି ନାଟକର ଦର୍ଶକମାନଙ୍କ ସହିତ ସିଧା ସଳଖ ସମ୍ପର୍କକୁ ଦୂରଦର୍ଶନର ପ୍ରଯୋଜକମାନେ ଅଧିକ ପରିମାଣରେ ବ୍ୟବହାର କରିବାକୁ ଲାଗିଲେ । ଅଳ୍ପଦିନ ପରେ ସମ୍ବଲପୁର କେନ୍ଦ୍ରରୁ ଏକ ଧାରାବାହିକ ନାଟକ ମଧ୍ୟ ପ୍ରସାରିତ ହେବାକୁ ଲାଗିଲା ।

ଓଡ଼ିଶାର ସମ୍ବଲପୁର ଟ୍ରାନ୍‌ସମିଟରକୁ ମିଶାଇ, ଏହି ସମୟରେ ସମଗ୍ର ଦେଶରେ ମାତ୍ର ୨୧ଟି ଟ୍ରାନ୍‌ସମିଟର ଥିଲା । ୧୯୮୨ ମସିହା ଅପ୍ରେଲ୍ ମାସ ୧୮ ତାରିଖ ଦିନ ଇନ୍‌ସାଟ୍-୧ 'ଏ' ମହାକାଶକୁ ପ୍ରେରିତ ହେଲା । ସେହିବର୍ଷ ଅଗଷ୍ଟ ୧୫ ତାରିଖ ଦିନ ଏହା କାର୍ଯ୍ୟକ୍ଷମ ହେଲା । ଦିଲ୍ଲୀର ଲାଲକିଲ୍ଲା ଠାରୁ ସ୍ୱାଧୀନତା ଦିବସ କାର୍ଯ୍ୟକ୍ରମର ସିଧା ପ୍ରସାରଣ ଓ ରଙ୍ଗୀନ କାର୍ଯ୍ୟକ୍ରମ ପ୍ରସ୍ତୁତ ଏଇ ଅଗଷ୍ଟ ୧୫ ତାରିଖରୁ କାର୍ଯ୍ୟକାରୀ ହେଲା । ପ୍ରାୟ ୨୩ ଦିନ ପରେ ଅର୍ଥାତ୍ ୧୯୮୨ ସେପ୍‌ଟେମ୍ବର ୭ ତାରିଖ ଦିନ ଏଇ ଉପଗ୍ରହଟି ଜାଣେନି ଅଭାବରୁ କାର୍ଯ୍ୟକ୍ଷମ ହୋଇ ରହିଲା ନାହିଁ । ଏତିକିବେଳେ ଆମ ଦେଶରେ ନବମ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ପାଇଁ ପୁରା ଦମ୍‌ରେ ପ୍ରସ୍ତୁତ ଚାଲିଥାଏ । ଉଦ୍‌ଘାଟନର ତାରିଖ ହେଉଛି ନଭେମ୍ବର ୨୧ ତାରିଖ ।

ଏ ଉଦ୍‌ଘାଟନ ଉତ୍ସବ ଏବଂ ପରେ ପରେ ଦୈନନ୍ଦିନ ଖେଳର ବିବରଣୀ ଦର୍ଶକମାନଙ୍କ ନିକଟରେ ପହଞ୍ଚାଇ ଦେବାର ଯୋଜନା ହୋଇଥାଏ । ଏତିକବେଳେ ଉପଗ୍ରହଟି କାର୍ଯ୍ୟକ୍ଷମ ନ ରହିବାରୁ—ସିଦ୍ଧାନ୍ତ ନିଆଗଲା ଏବଂ ଅନ୍ତର୍ଦେଶୀୟ ଉପଗ୍ରହ (INTELSAT) କୁ ବ୍ୟବହାର କରି କାର୍ଯ୍ୟକ୍ରମ ପ୍ରସାରଣ କରାଯିବ । ଉପଗ୍ରହରୁ କାର୍ଯ୍ୟକ୍ରମଗୁଡ଼ିକ ସଂଗ୍ରହ କରି ଦର୍ଶକମାନଙ୍କର ଟେଲିଭିଜନ ପର୍ଯ୍ୟନ୍ତ ପଠେଇ ଦେବାପାଇଁ ଏକ ଟ୍ରାନ୍‌ସମିଟର ଆବଶ୍ୟକ । ଏତିକବେଳେ ଆମ ଦେଶରେ ଟ୍ରାନ୍‌ସମିଟର ସଂଖ୍ୟା ୨୧ । ଏଇ ୨୧ ଟି ଟ୍ରାନ୍‌ସମିଟର ମାଧ୍ୟମରେ ଦେଶର ଖୁବ୍ କମ୍ ଅଞ୍ଚଳର ଦର୍ଶକମାନେ କାର୍ଯ୍ୟକ୍ରମ ଦେଖିବାର ସୁବିଧା ଥିଲା । ଏହିପରି ଏକ ସମୟରେ ସିଦ୍ଧାନ୍ତ ନିଆଗଲା ଯେ ଆମ ଦେଶର ବିଭିନ୍ନ ଛୋଟ ଛୋଟ ସହରରେ ବି ଦୂରଦର୍ଶନ ଟ୍ରାନ୍‌ମିଟର ସ୍ଥାପନ କରାଯିବ । ପ୍ରଥମ ଦଫାରେ ୨୦ଟି ସହରରେ ଏବଂ ପ୍ରାୟ ବର୍ଷକ ଭିତରେ ଆମ ଦେଶର ୧୧୩ଟି ସ୍ଥାନରେ ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନ୍‌ସମିଟର ସ୍ଥାପନ କରାଯିବ । ୧୯୮୪ ମସିହା ଶେଷବେଳକୁ ଆମ ଦେଶର ଟ୍ରାନ୍‌ସମିଟରମାନଙ୍କର ସଂଖ୍ୟା ହେବ ୧୮୦ ।

ପ୍ରଥମ ଦଫାରେ ଯେଉଁ ୨୦ଟି ଟ୍ରାନ୍‌ସମିଟର ସ୍ଥାପନ କରାଗଲା, ସେମାନଙ୍କ ମଧ୍ୟରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ବି ଅନ୍ତର୍ଭୁକ୍ତ ହେଲା । ଏ ଟ୍ରାନ୍‌ସମିଟର ମାଧ୍ୟମରେ ଭୁବନେଶ୍ୱର ସହର ଓ ଏହାର ପାର୍ଶ୍ୱବର୍ତ୍ତୀ ସହର ଯଥା—କଟକ, ଚୌଦ୍ୱାର ଆଦି ସହରମାନଙ୍କରେ ଦୂରଦର୍ଶନ କାର୍ଯ୍ୟକ୍ରମ ପ୍ରଦର୍ଶିତ ହୋଇପାରିଲା । ଏଇ ଟ୍ରାନ୍‌ସ-

ମିଟରଗୁଡ଼ିକ ସନ୍ଧ୍ୟାବେଳେ ଜିଲ୍ଲା ଦୂରଦର୍ଶନ କେନ୍ଦ୍ରର କାର୍ଯ୍ୟକ୍ରମ ରିଲେ କରି ପ୍ରସାର କରୁଥିଲେ । ଏହା ବ୍ୟତୀତ ଜାତୀୟ କାର୍ଯ୍ୟକ୍ରମ, ଯାହାର ସମୟ ସୀମା ଥିଲା ଏକଘଣ୍ଟା ତିରିଶ ମିନିଟ୍ ତାକୁ ବି ପ୍ରସାର କରୁଥିଲେ । ପନ୍ଦର ମିନିଟ୍ ସମୟର ହିନ୍ଦି ସମାଚାର ଓ ପନ୍ଦର ମିନିଟ୍ ସମୟର ଇଂରାଜୀ ସମ୍ବାଦ ଏ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

୧୯୮୩ ମସିହା ଅଗଷ୍ଟ ୩୧ ତାରିଖରେ ଆମ ଉପଗ୍ରହ ଇନ୍‌ସାଟ୍ ୧-ବି କୁ ସଫଳତାର ସହ ମହାକାଶକୁ ପ୍ରେରଣ କରାଗଲା ଓ ସେହି ବର୍ଷ ଅକ୍ଟୋବର ୧୫ ତାରିଖରୁ ଏହା କାର୍ଯ୍ୟକାରୀ ହେଲା । ଏହା ଅନ୍ୟୂନ ସାତବର୍ଷ କାଳ କାର୍ଯ୍ୟକରି ପାରିବାର ବ୍ୟବସ୍ଥା କରାଯାଇଥିଲା । ଏଇ ଉପଗ୍ରହ ପୃଥିବୀରେ ଅଦ୍ୱିତୀୟ । ଏହା ମାଧ୍ୟମରେ ଏକ ସମୟରେ ଦୂରଦର୍ଶନ ଓ ରେଡ଼ିଓ କାର୍ଯ୍ୟକ୍ରମ, ପାଣିପାଗ ସମ୍ପର୍କୀୟ ସୂଚନା ଏବଂ ଟେଲିଫୋନ ଆଦି ସବୁର ବିଭାଗର ମାଧ୍ୟମ ରୂପେ କାର୍ଯ୍ୟକରି ପାରିବ ।

ଏହି ଉପଗ୍ରହଟି ମହାକାଶରେ ସ୍ଥାପିତ ହେଲାପରେ କିପରି ଏହାକୁ ଅଧିକ ଜନ ବିନିଯୋଗ କରାଯାଇ ପାରିବ ସେଥିପାଇଁ ଯୋଜନା କରାଗଲା । ଆସ୍ତେ ଆସ୍ତେ ଓଡ଼ିଶା ସହ ଦେଶର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ନୂଆ ନୂଆ ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନ୍‌ସମିଟରମାନ ସ୍ଥାପନ କରାଗଲା । ଓଡ଼ିଶାର ଅନ୍ୟ ଦୁଇଟି ସହର, ଏଥିଭିତରେ ଦୂରଦର୍ଶନର ପ୍ରସାରଣ ସୀମା ଭିତରକୁ ଚାଲି ଆସିଲେ । ସେଗୁଡ଼ିକ ହେଲା ରାଉରକେଲା ଓ ବ୍ରହ୍ମପୁର । ଜାତୀୟ କାର୍ଯ୍ୟକ୍ରମ ସହିତ ଆଞ୍ଚଳିକ ଭାଷାରେ କେତେକ କାର୍ଯ୍ୟକ୍ରମ ପ୍ରସାର କରିବା ଦରକାର ପଡ଼ିଲା ଗ୍ରାମାଞ୍ଚଳ ଦର୍ଶକମାନଙ୍କ ପାଇଁ । ଏଇ କାର୍ଯ୍ୟକ୍ରମଗୁଡ଼ିକ ଗୋଟିଏ ଆଞ୍ଚଳିକ କେନ୍ଦ୍ରରେ ପ୍ରସ୍ତୁତ କରାଯିବ । ତାପରେ ତାକୁ ଦିଲ୍ଲୀ ପଠାଯିବ ।

ଦିଲ୍ଲୀରୁ କାର୍ଯ୍ୟକ୍ରମଗୁଡ଼ିକ ଉପଗ୍ରହ ମାଧ୍ୟମରେ ସେହି ଅଞ୍ଚଳର ସ୍ୱଳ୍ପସମ୍ପନ୍ନ ଟ୍ରାନସମିଟରଗୁଡ଼ିକ ସଂଗ୍ରହ କରି ଦର୍ଶକମାନଙ୍କ ନିକଟରେ ପହଞ୍ଚାଇ ଦେବେ । ଏଇ କାର୍ଯ୍ୟକ୍ରମକୁ ଇଂରାଜୀ ଭାଷାରେ **Area specific programe** ବା ଉପଗ୍ରହ ମାଧ୍ୟମରେ ଆଞ୍ଚଳିକ କାର୍ଯ୍ୟକ୍ରମ' କୁହାଗଲା । ଓଡ଼ିଶାର କଟକ ଷ୍ଟୁଡ଼ିଓରେ ଏଇ ଓଡ଼ିଆ କାର୍ଯ୍ୟକ୍ରମ ଗୁଡ଼ିକ ପ୍ରସ୍ତୁତ ହେଲା ଓଡ଼ିଶାରେ ଥିବା ସମସ୍ତ ଛୋଟ ବଡ଼ ଟ୍ରାନ୍‌ସମିଟର ପାଇଁ । ପ୍ରଥମ ଅବସ୍ଥାରେ ଏଇ ଉପଗ୍ରହ କାର୍ଯ୍ୟକ୍ରମ ସକାଳେ ଓ ସନ୍ଧ୍ୟାବେଳେ ପ୍ରସାର କରାଗଲା । ଓଡ଼ିଶାରୁ ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାର କରାଗଲା ପରି, ଆନ୍ଧ୍ରପ୍ରଦେଶରୁ ତେଲୁଗୁ ଓ ମହାରାଷ୍ଟ୍ରରୁ ମରାଠୀ କାର୍ଯ୍ୟକ୍ରମ ପ୍ରସାର କରାଗଲା । ଓଡ଼ିଶା ପାଇଁ 'ନିର୍ଦ୍ଦିଷ୍ଟ ସମୟ ଥିଲା ସକାଳ ୧୦ଟା ୩୦ ମିନିଟ୍‌ରୁ ୧୧ଟା ୧୫ ମିନିଟ୍ ପର୍ଯ୍ୟନ୍ତ ୪୫ ମିନିଟ୍‌ର ଶିକ୍ଷା ସମ୍ବନ୍ଧୀୟ କାର୍ଯ୍ୟକ୍ରମ । ଏହା ବିଦ୍ୟାଳୟରେ ପଠନରତ ଛାତ୍ର ଓ ତାଙ୍କର ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସନ୍ଧ୍ୟାବେଳେ ୬ଟା ୨୦ ମିନିଟ୍‌ରୁ ୭ଟା ପର୍ଯ୍ୟନ୍ତ (ପରବର୍ତ୍ତୀ କାଳରେ ଏ ସମୟ ୬ଟା ୧୫ରୁ ୬ଟା ୫୫ ମିନିଟ୍‌କୁ ପରିବର୍ତ୍ତିତ ହେଲା) ୪୦ ମିନିଟ୍ ଧରି 'ଗ୍ରାମାଭି-ମୁଖୀ' କାର୍ଯ୍ୟକ୍ରମ । ଏଥିରେ ସମସାମୟିକ କୃଷିବିଜ୍ଞାନ, କୃଷିପ୍ରଣାଳୀ ସମ୍ପର୍କରେ ସୂଚନା ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ ଆବଶ୍ୟକୀୟ ଆଲୋଚନା, ମହିଳା, ଶିଶୁ ଏବଂ ଯୁବକମାନଙ୍କ ପାଇଁ ବିଶେଷ କାର୍ଯ୍ୟକ୍ରମ, ପ୍ରାମାଣିକଚିତ୍ର ଏବଂ ମନୋରଞ୍ଜନ ପାଇଁ 'ସଙ୍ଗୀତ ଓ ନାଟକ

ସନ୍ନିବେଶିତ କରାଗଲା । ଆସ୍ତେ ଆସ୍ତେ ଓଡ଼ିଶାର ଅନ୍ୟାନ୍ୟ ସହର ଯଥା—କୋରାପୁଟ, ବାରିପଦା, ଜୟପୁର, ଭବାନୀପାଟଣା, ସୁନ୍ଦରଗଡ଼, ଫୁଲବାଣୀ ଓ ବାଲେଶ୍ୱର ଆଦି ସହରମାନଙ୍କରେ ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନ୍ସମିଟରମାନ ସ୍ଥାପିତ ହୋଇ ଆଞ୍ଚଳିକ କାର୍ଯ୍ୟକ୍ରମର ଦର୍ଶକ ସଂଖ୍ୟା ବଢ଼େଇବାରେ ସାହାଯ୍ୟ କଲା ।

ଓଡ଼ିଶାର ଅନ୍ୟ ସହରମାନଙ୍କରେ ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନ୍ସମିଟରମାନ ସ୍ଥାପନ କରାଯାଉଥିବାବେଳେ କଟକର ଷ୍ଟୁଡ଼ିଓ ନିକଟରେ ଏକ ଉଚ୍ଚ ଶକ୍ତିସମ୍ପନ୍ନ ଟ୍ରାନସମିଟର ସ୍ଥାପନ କରିବାର କାର୍ଯ୍ୟ ଆରମ୍ଭ ହୋଇଗଲା । ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନ୍ସ-ମିଟରଗୁଡ଼ିକର କ୍ଷମତା ୧୦୦ ଓ୍ୱାଟ୍ ହୋଇଥିବାବେଳେ କଟକରେ ସ୍ଥାପିତ ହେବାକୁ ଯାଉଥିବା ଉଚ୍ଚଶକ୍ତିସମ୍ପନ୍ନ ଟ୍ରାନସମିଟର କ୍ଷମତା ୧୦ କିଲୋଓ୍ୱାଟ୍ । ସ୍ୱଳ୍ପଶକ୍ତି ସମ୍ପନ୍ନ ଟ୍ରାନସମିଟରଗୁଡ଼ିକ ଏକଲକ୍ଷ ଲୋକ ସଂଖ୍ୟାବିଶିଷ୍ଟ ଗ୍ରେଟ ସହର ଓ ତାର ଆଖପାଖର ୨୫ କିଲୋମିଟର ବ୍ୟାସାର୍ଦ୍ଧ ବିଶିଷ୍ଟ ଅଞ୍ଚଳ ପାଇଁ ଉଦ୍ଦିଷ୍ଟ ଥିବାବେଳେ ଉଚ୍ଚଶକ୍ତିସମ୍ପନ୍ନ ଟ୍ରାନସମିଟରଟି ୮୦ କିଲୋମିଟର ବ୍ୟାସାର୍ଦ୍ଧ ବିଶିଷ୍ଟ ଅଞ୍ଚଳ ପାଇଁ ଉଦ୍ଦିଷ୍ଟ । କଟକ ଠାରୁ ଏହି ଟ୍ରାନସମିଟର ମାଧ୍ୟମରେ । କଟକ ଜିଲ୍ଲା, ପୁରୀ ଜିଲ୍ଲା, ଢେଙ୍କାନାଳ, କେନ୍ଦୁଝର, ବାଲେଶ୍ୱର କେତେକ ଅଞ୍ଚଳ ଦୂରଦର୍ଶନ କାର୍ଯ୍ୟକ୍ରମ ଦେଖି ପାରିବେ ।

୧୯୮୫ ମସିହା ମାର୍ଚ୍ଚ ମାସରେ ଏହି ଟ୍ରାନସମିଟରଟି କାର୍ଯ୍ୟକ୍ଷମ ହେଲା ଓ ଦିଲ୍ଲୀ ଦୂରଦର୍ଶନର କାର୍ଯ୍ୟକ୍ରମ ରିଲେ କରି ପ୍ରସାର କରିବାକୁ ଲାଗିଲା । ଦିଲ୍ଲୀ ଦ୍ୱାରା ପ୍ରସ୍ତୁତ ହିନ୍ଦୀ ଓ ଇଂରାଜୀ କାର୍ଯ୍ୟକ୍ରମ, ଜାତୀୟ କାର୍ଯ୍ୟକ୍ରମ ବ୍ୟତୀତ ଏହି ଟ୍ରାନସମିଟର ଉପଗ୍ରହ ମାଧ୍ୟମରେ ଆଞ୍ଚଳିକ ଓଡ଼ିଆ କାର୍ଯ୍ୟକ୍ରମ ରିଲେ କଲା । ଏ ଟ୍ରାନସମିଟର କାର୍ଯ୍ୟକ୍ଷମ ହେଲା ପରେ, ଭୁବନେଶ୍ୱର ଠାରେ ସ୍ୱଳ୍ପଶକ୍ତିସମ୍ପନ୍ନ ଟ୍ରାନସମିଟରଟି ଆଉ ଦରକାର ପଡ଼ିଲା ନାହିଁ । ଫଳରେ ତାକୁ ଅନ୍ୟତ୍ର ସ୍ଥାନାନ୍ତରିତ କରାଗଲା ।

କଟକରୁ ସମସ୍ତ କାର୍ଯ୍ୟକ୍ରମ ଦିଲ୍ଲୀରୁ ରିଲେ କରି ପ୍ରସାର କରାଯାଉଥିବା ବେଳେ, ସମ୍ବଲପୁରର ଦର୍ଶକବୃନ୍ଦ ସନ୍ଧ୍ୟା ସମୟରେ ଓଡ଼ିଆ କାର୍ଯ୍ୟକ୍ରମ ଦେଖିବାର ସୁଯୋଗ ପାଉଥିଲେ । ସନ୍ଧ୍ୟା ଛ'ଟାରୁ ଆଠଟା ପନ୍ଦର ମିନଟ ପର୍ଯ୍ୟନ୍ତ ସମ୍ବଲପୁରରୁ ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାର କରାଯାଉଥିଲା । ଆଠଟା ପନ୍ଦର ମିନଟ୍ ପରଠାରୁ ଜାତୀୟ କାର୍ଯ୍ୟକ୍ରମ ରିଲେ କରାଯାଉଥିଲା । ସନ୍ଧ୍ୟା ସମୟରେ ଯେଉଁ କାର୍ଯ୍ୟକ୍ରମ କଟକର ଦର୍ଶକମାନେ ଦେଖିପାରୁଥିଲେ ତାହା ଥିଲା ହିନ୍ଦୀ ଭାଷାର କାର୍ଯ୍ୟକ୍ରମ । ହିନ୍ଦୀ ବୁଝିପାରୁନଥିବା ଦର୍ଶକ-ମାନେ ଏ କାର୍ଯ୍ୟକ୍ରମକୁ ଆନ୍ତରିକତା ଦେଖାଉ ନଥିଲେ । ଅଥଚ ଏଇ ସମୟରେ ସମ୍ବଲପୁରଠାରେ ପ୍ରାୟ ସେହିପରି କାର୍ଯ୍ୟକ୍ରମ ଓଡ଼ିଆ ଭାଷାରେ ପ୍ରସାର କରାଯାଉଥିଲା । ଏଇ ଓଡ଼ିଆ କାର୍ଯ୍ୟକ୍ରମ ସବୁ ପ୍ରସ୍ତୁତ କରାଯାଉଥିଲା କଟକ ଷ୍ଟୁଡ଼ିଓରେ ଏବଂ ସମ୍ବଲପୁରକୁ ବସ୍‌ରେ ପଠାଯାଇ ବ୍ୟବହାର କରାଯାଉଥିଲା ।

ଉପଗ୍ରହ ମାଧ୍ୟମରେ ପ୍ରସାରିତ ଆଞ୍ଚଳିକ କାର୍ଯ୍ୟକ୍ରମଗୁଡ଼ିକ ଅଧିକ ଗ୍ରାମାଭିମୁଖୀ ହୋଇଥିବାରୁ ସହରାଞ୍ଚଳ ଦର୍ଶକମାନଙ୍କ ନିକଟରେ ବିଶେଷ ଆଦୃତ ହେଉ ନଥିଲା ।

ଅନ୍ୟ ପକ୍ଷରେ ସମ୍ବଲପୁରଠାରେ ଅନେକ ସଡ଼କଭିମୁଖୀ କାର୍ଯ୍ୟକ୍ରମ ଓ ମନୋରଞ୍ଜନ ମୂଳକ କାର୍ଯ୍ୟକ୍ରମ ଯଥା—ବଡ଼ ନାଟକ, ଗୀତିନାଟ୍ୟ, ଚଳଚ୍ଚିତ୍ର, ଚଳଚ୍ଚିତ୍ର ସଙ୍ଗୀତ ଇତ୍ୟାଦି ପ୍ରସାର କରାଯାଉଥିଲା । ଏ ସମ୍ବାଦ କଟକ ଅଞ୍ଚଳର ଦର୍ଶକମାନେ ଜାଣିଲା ପରେ କଟକରୁ ସମ୍ବଲପୁର ପରି ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାର କରିବା ପାଇଁ ପ୍ରବଳ ଦାବି ହେଲା । ଗଣ୍ୟମାନ୍ୟ ବ୍ୟକ୍ତି, ସମ୍ବାଦପତ୍ର ଓ ରାଜନୈତିକ ନେତାମାନେ ଜନସାଧାରଣଙ୍କ ସହ ଏକତ୍ର ହୋଇ ଏ ଦାବି ଉପସ୍ଥାପିତ କଲେ । ଫଳରେ; କଟକ ଷ୍ଟୁଡ଼ିଓରେ ଅଧିକ ଭଲ ଭଲ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାର ଯାନ୍ତ୍ରିକ ସୁବିଧା ନଥାଇ ମଧ୍ୟ ୧୯୮୭ ମସିହା ନଭେମ୍ବର ମାସ ୧୨ ତାରିଖ ସଂଧ୍ୟାରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାରର ଶୁଭ ଉଦ୍‌ଘାଟନ କଲେ । ପ୍ରକୃତରେ, କଟକ ଟ୍ରାନ୍‌ସମିଟରରୁ ବାଧ୍ୟବଦ୍ଧ ଭାବେ ଓଡ଼ିଆ କାର୍ଯ୍ୟକ୍ରମ ପ୍ରସାରିତ ହେବାକୁ ଲାଗିଲା ୧୯୮୭ ମସିହା ନଭେମ୍ବର ୧୬ ତାରିଖ ସନ୍ଧ୍ୟାରୁ । ସେତେବେଳେ କଟକ ଦୂରଦର୍ଶନ କେନ୍ଦ୍ରର ନିର୍ଦ୍ଦେଶିକା ଥାଆନ୍ତି ଶ୍ରୀମତୀ ଷଣାଦେବୀ ।

୧୯୮୭ ମସିହା ବେଳକୁ ଦୂରଦର୍ଶନ କାର୍ଯ୍ୟକ୍ରମ ପ୍ରସ୍ତୁତି ପାଇଁ ଚିନ୍ତାଧାରାରେ ପରିବର୍ତ୍ତନ ଘଟିଲାଣି । ପ୍ରଥମେ ଯେମିତି ଶିକ୍ଷାମୂଳକ କାର୍ଯ୍ୟକ୍ରମ ଉପରେ ଅଧିକ ଯୋର ଦିଆଯାଉଥିଲା, ଏ ସମୟରେ ସେ ଅବସ୍ଥା ନଥିଲା । ସିଧା ସଳଖ ଶିକ୍ଷା ଲାଭ କରିବାକୁ ଦର୍ଶକମାନେ ପ୍ରସ୍ତୁତ ନଥିବାର ଲକ୍ଷ୍ୟ କରାଗଲା । ଫଳରେ କାର୍ଯ୍ୟକ୍ରମ ଗୁଡ଼ିକ ବେଶି ଶିକ୍ଷାମୂଳକ ହେବା ପରିବର୍ତ୍ତେ ଅଧିକ ସୂଚନା ଓ ମନୋରଞ୍ଜନ ଧର୍ମୀ ହେବାକୁ ଆରମ୍ଭ ହେଲା । ବେଶି ସଂଖ୍ୟାରେ ନାଟକ, ସଙ୍ଗୀତ, ପ୍ରାମାଣିକ ଚିତ୍ର, ଚଳଚ୍ଚିତ୍ର ଗୀତିନାଟ୍ୟ, ଯାହା ଉପରେ ଯୋର ଦିଆଗଲେ । ମନୋରଞ୍ଜନର ଗୁଣାତ୍ମକ ଅଭିବୃଦ୍ଧି ଘଟିଥିବାରୁ କଟକରୁ ଓଡ଼ିଆ କାର୍ଯ୍ୟକ୍ରମ ଗୁଡ଼ିକ ଅଧିକରୁ ଅଧିକ ଲୋକପ୍ରିୟ ହେବାକୁ ଲାଗିଲା ।

ପୁଣିଥରେ ଦର୍ଶକମାନଙ୍କର ପ୍ରବଳ ଦାବିକୁ ସମ୍ମାନ ପ୍ରଦର୍ଶନ କରି ୧୯୮୮ ମସିହା ଜୁଲାଇ ୧ ତାରିଖରୁ କଟକରୁ ଓଡ଼ିଆ ଭାଷାରେ ସମାଚାର ପ୍ରସାରଣ ଆରମ୍ଭ ହେଲା । ପ୍ରସାରଣ ସମୟଥିଲା ସନ୍ଧ୍ୟା ୭ଟା ୩୦ ମିନିଟ୍ । ଏହା ପ୍ରଥମେ ୧୦ ମିନିଟ୍ ପାଇଁ ଓ ପରେ ସେହିବର୍ଷ ନଭେମ୍ବର ମାସରୁ ୧୫ ମିନିଟ୍ ପାଇଁ ପ୍ରସାରିତ ହେଲା ।

କଟକ ଦୂରଦର୍ଶନ ଇତିହାସରେ ପରବର୍ତ୍ତୀ ବିଶିଷ୍ଟ ଘଟଣା ଘଟିଲା ୧୯୯୧ ମସିହା ସେପ୍‌ଟେମ୍ବର ୭ତାରିଖ ଦିନ । ସେହିଦିନ ଓଡ଼ିଶାରେ ଆରମ୍ଭ ହେଲା ଆଞ୍ଚଳିକ ପ୍ରସାରଣ ସେବା । କଟକ ଦୂରଦର୍ଶନ ମାଧ୍ୟମରେ ପ୍ରସାର କରାଯାଉଥିବା ସମସ୍ତ କାର୍ଯ୍ୟକ୍ରମକୁ ଉପଗ୍ରହ ମାଧ୍ୟମରେ ସମଗ୍ର ଓଡ଼ିଶାରେ ପ୍ରସାର କରାଯିବା ବ୍ୟବସ୍ଥାକୁ ଉଦ୍‌ଘାଟନ କଲେ ଆମ ଦେଶର ସୂଚନା ଏବଂ ପ୍ରସାରଣ ମନ୍ତ୍ରୀ ଶ୍ରୀ ଅଜିତ୍ କୁମାର ପାଞ୍ଜା । ଏହାଦ୍ୱାରା କାର୍ଯ୍ୟକ୍ରମ ମାଧ୍ୟମରେ ସମଗ୍ର ଓଡ଼ିଶାର ପୁରପଲ୍ଲୀ ଏକ ସାଂସ୍କୃତିକ ବନ୍ଧନରେ ଅଧିକ ସୁଦୃଢ଼ ଭାବରେ ବାନ୍ଧି ହୋଇଗଲା ।

# ବୈଦେଶିକମାନଙ୍କ ଦୃଷ୍ଟିରେ କଟକ

**ଡକ୍ଟର ଶ୍ରୀଚରଣ ଦାସ**

ଭାରତବର୍ଷର ପ୍ରାଚୀନତମ ନଗରମାନଙ୍କ ମଧ୍ୟରୁ କଟକ ଅନ୍ୟତମ । ପ୍ରାୟ ଏକହଜାର ବର୍ଷରୁ ଊର୍ଦ୍ଧ୍ୱ ସମୟଧରି ପ୍ରତିଷ୍ଠାଲାଭ କରିଥିବା ଏହି ସହରଟିର ଐତିହ୍ୟ ଅତ୍ୟନ୍ତ ମହାନ ଏବଂ ଇତିହାସ ମହିମାମୟ । ଶିକ୍ଷା, ସଭ୍ୟତା ଓ ସଂସ୍କୃତିର ପ୍ରାଣକେନ୍ଦ୍ର-ଭାବେ ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲା ମାନଙ୍କଠାରୁ ଏହା ଯଥେଷ୍ଟ ଅଗ୍ରଣୀ । ଅତୀତ ଓଡ଼ିଶାର ରାଜଧାନୀଭାବେ କଟକର ପ୍ରସିଦ୍ଧି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ପ୍ରାଚୀନ ଓଡ଼ିଶାର ନରପତି ଚୋଡ଼ଗଙ୍ଗଦେବ ଆନ୍ଧ୍ରର ଶ୍ରୀକାକୁଲମ୍ ଜିଲ୍ଲାର କଳିଙ୍ଗନଗରରୁ ତାଙ୍କ ରାଜଧାନୀ କଟକକୁ ଉଠାଇଆଣିଥିଲେ ଏବଂ ଏଠାରେ ତାଙ୍କର ୧୪ଟି ବଂଶଧର ଶାସନ କରିଥିବାର ଏକ ଦୀର୍ଘ ବିବରଣୀ ଇତିହାସରେ ଦେଖିବାକୁ ମିଳେ । ଏହାର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋରମ । ବାଣିଜ୍ୟିକ କେନ୍ଦ୍ରଭାବେ ଭାରତରେ ଏହା ଏକ ବିଶିଷ୍ଟ ସ୍ଥାନ । କଳା, ସାହିତ୍ୟ ଓ ସଂସ୍କୃତି ଦୃଷ୍ଟିରୁ ଉତ୍କଳରେ କଟକ ଅଦ୍ୱିତୀୟ । ଶିଳ୍ପ ତଥା ବାଣିଜ୍ୟ ବ୍ୟବସାୟର ସମୃଦ୍ଧିଯୋଗୁ ସମୟକ୍ରମେ କଟକନଗର ଆଫଗାନ ମୋଗଲ ଓ ମରହଟ୍ଟାମାନଙ୍କର ଶାସନାଧୀନ ହୋଇଥିଲା ୧୭୫୭ ଖ୍ରୀଷ୍ଟାବ୍ଦରୁ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ମରହଟ୍ଟାମାନଙ୍କର ଶାସନରେ ଥିଲା । ତାପରେଠାରୁ ପାଳିପଡ଼ିଲା ଇଂରେଜମାନଙ୍କର ।

କମାଣ୍ଡର ହାର୍‌କୋର୍ଟଙ୍କ ନେତୃତ୍ୱରେ ଇଂରେଜମାନେ ୧୮୦୩ ମସିହା ସେପ୍ଟେମ୍ବର ମାସରେ ଓଡ଼ିଶା ଅଧିକାର ପର୍ବ ଆରମ୍ଭ କଲେ । ବ୍ରିଟିଶ ସୈନ୍ୟମାନେ ମାନ୍ଦ୍ରାଜଆଡ଼ୁ ଓଡ଼ିଶାର ଦକ୍ଷିଣାଞ୍ଚଳ ଆକ୍ରମଣ କରି ୧୮୦୩ ମସିହା ସେପଟେମ୍ବର ୮ ତାରିଖରେ ଗଞ୍ଜାମକୁ ନିଜ ଅକ୍ତିଆରକୁ ଆଣିଲେ । ଚିଲିକାହ୍ରଦ ଓ ବଙ୍ଗୋପସାଗର ମଧ୍ୟବର୍ତ୍ତୀ ମାଣିକପାଟଣାକୁ ଜୟକରି ସେମାନେ ମାନସିଂହ ପାଟଣାରେ ପହଞ୍ଚିଲେ । ୧୮୦୩ ମସିହା ସେପ୍ଟେମ୍ବର ମାସ ୧୮ ତାରିଖରେ ପୁରୀ ହାଇକୋର୍ଟ ପ୍ରତ୍ୟକ୍ଷ ନିୟନ୍ତ୍ରଣ ମଧ୍ୟକୁ ଆସିଲା । କର୍ଣ୍ଣେଲ ହାରକୋର୍ଟ ପୁରୀମନ୍ଦିରକୁ କେତେଜଣ ସିପାହୀଙ୍କ

ହସ୍ତରେ ନ୍ୟସ୍ତକରି କଟକ ଅଭିମୁଖେ ଯାତ୍ରା କଲେ । ବଳସ୍ତ ଓ ଝୀଙ୍କା ପିଣ୍ଡିଥିବାରୁ ପଥମଧ୍ୟରେ ଘୋର ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ ସୁଦ୍ଧା ତାଙ୍କୁ ଭୂକ୍ଷେପ ନକରି ଇଂରେଜବାହିନୀ କାଠଯୋଡ଼ି ନଦୀ ଅତିକ୍ରମ କରି ୧୮୦୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୦ ତାରିଖରେ କଟକ ସହରରେ ପହଞ୍ଚିଥିଲେ ।

ଏଣେ କର୍ଣ୍ଣେଲ ଫର୍ଗ୍ୟୁସନ୍‌ଙ୍କ ଅଧୀନରେ ବୃହତ୍ ବ୍ରିଟିଶ୍ ବାହିନୀ ମେଦିନୀପୁର ଠାରୁ କଟକ ଆସିଲେ । କଟକରେ ଫର୍ଗ୍ୟୁସନ୍ ହାରକୋର୍ଟଙ୍କ ସଙ୍ଗେ ମିଳିତ ହେଲେ । ଇଂରେଜମାନେ କଟକ ସହରକୁ ଅଧିକାର କଲାପରେ ମରହଟ୍ଟାମାନେ ବାରବାଟୀ ଦୁର୍ଗ ମଧ୍ୟରେ ଆଶ୍ରୟ ନେଇଥିଲେ । ସମୃଦ୍ଧ ନିର୍ମାଣ ପ୍ରଣାଳୀ ଓ ଗଡ଼ଖାଇ ଯୋଗୁଁ ଶତ୍ରୁପକ୍ଷ ଏହି ଦୁର୍ଗ ମଧ୍ୟରେ ପ୍ରବେଶ କରିବା ସହଜ ସାଧ୍ୟ ନଥିଲା । କିନ୍ତୁ ଜିଦ୍‌ଖୋର ତଥା ଧୀସମ୍ପନ୍ନ ଇଂରେଜମାନଙ୍କ ପକ୍ଷରେ ଏହି ଦୁର୍ଗ ଜୟକରିଥିବା ଥିଲା ଏକ ସାଧାରଣ ଘଟଣା ।

୧୮୦୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୪ ତାରିଖର ଏକ ନରମ ସକାଳରେ ଇଂରେଜ ବାହିନୀ ଦୁର୍ଗ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବ୍ରିଟିଶ୍ ବାହିନୀର ତୋପ ଶବ୍ଦ ଓ ଆକ୍ରମଣର ସମ୍ମୁଖୀନ ହୋଇ ଅନେକ ମରହଟ୍ଟା ମୃତ୍ୟୁବରଣ କଲେ । ବହୁ ମରହଟ୍ଟା ଆତ୍ମରକ୍ଷା ପାଇଁ ପଳାୟନପୂର୍ବକ ଗଡ଼ଖାଇ ମଧ୍ୟକୁ ଲମ୍ଫପ୍ରଦାନ କରିଥିଲେ ସୁଦ୍ଧା ସନ୍ତରଣର କୌଶଳ ସେମାନଙ୍କୁ ଜଣା ନଥିବାରୁ ଅନେକ ପାଣିରେ ବୁଡ଼ି ପ୍ରାଣ ହରାଇଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ଶେଷସୁଦ୍ଧା ସମଗ୍ର ଓଡ଼ିଶା ବ୍ରିଟିଶ୍‌ମାନଙ୍କ ଶାସନ ମଧ୍ୟକୁ ଆସି ଯାଇଥିଲା ।

କଟକ ଆକ୍ରମଣ କରିବାର ଗୋଟିଏ ବର୍ଷ ମଧ୍ୟରେ ଇଂରେଜମାନେ ଓଡ଼ିଶାରେ ବେଶ୍ ପ୍ରତିଷ୍ଠାଲାଭ କରିଥିଲେ । ଓଡ଼ିଶାକୁ ଶାସନ କରିବା ପାଇଁ ବ୍ରିଟିଶ୍ ଶାସକମାନେ କର୍ଣ୍ଣେଲ ହାରକୋର୍ଟ ଏବଂ ବେସାମରିକ ଅଫିସର ଜନ୍ ମେଲଭିଲ୍ ନାମକ ଦୁଇଜଣ କମିଶନରଙ୍କୁ ଅସ୍ଥାୟୀଭାବେ ନିଯୁକ୍ତ ଦେଇଥିଲେ । ଏହି କମିଶନର ଦ୍ୱୟ କଟକ ଠାରେ ଅବସ୍ଥାନ କରୁଥିଲେ । କିନ୍ତୁ କାର୍ଯ୍ୟକାରୀ କମିଶନର ଜେମସ୍ ହଣ୍ଟରଙ୍କ କାର୍ଯ୍ୟାଳୟ ଥିଲା ପୁରୀରେ । ଏହା ତତ୍କାଳୀନ ଓଡ଼ିଶାରେ ଜଗନ୍ନାଥ ପୁରୀ ନାମରେ ପ୍ରସିଦ୍ଧ ଥିଲା । ୧୮୦୪ ମସିହା ଜୁନ୍ ମାସରେ ମହାନଦୀକୁ ବିଭାଜିତ ରେଖାଭାବେ ନିର୍ଣ୍ଣୟ କରାଯାଇ ଇଂରେଜ ଅଧିକୃତ ଅଞ୍ଚଳଗୁଡ଼ିକୁ ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ଏହିପରି ଦୁଇଭାଗରେ ବିଭକ୍ତ କରାଗଲା ।

ଉତ୍ତରାଞ୍ଚଳର ମୁଖ୍ୟକାର୍ଯ୍ୟାଳୟ ବାଲେଶ୍ୱର ଏବଂ ଦକ୍ଷିଣାଞ୍ଚଳର କାର୍ଯ୍ୟାଳୟ ଜଗନ୍ନାଥପୁରୀଠାରେ ରହିଲା । ପ୍ରତ୍ୟେକ ଅଞ୍ଚଳ ଇଂରେଜ ଅଫିସରମାନଙ୍କ ତତ୍ତ୍ୱାବଧାନରେ ରହିଲା ଏବଂ ସେମାନେ କଲେକ୍ଟର ଓ ମାଜିଷ୍ଟ୍ରେଟ୍ ଭାବରେ କାର୍ଯ୍ୟକଲେ । ୧୮୦୫ ମସିହାରେ ସ୍ୱତନ୍ତ୍ର କମିଶନର ପଦବୀ ରଦ୍ଦ ହେଲା । ବ୍ରିଟିଶ ମହାନୁଭବମାନଙ୍କ

ଦୃଷ୍ଟିରେ କଟକ ସହରର ଗୁରୁତ୍ୱ ଥିଲା ସର୍ବାଧିକ । ସେମାନଙ୍କ ପାଇଁ ଏହା ଯେପରି ଥିଲା ଗୋଟିଏ ଆକର୍ଷଣର ବସ୍ତୁ । ଯେ କେହି ବିଦେଶୀ ଶାସକ କଟକ ଆସୁଥିଲେ ସମସ୍ତେ ଏହାର ଅମୃତମୟ ସ୍ପର୍ଶରେ ବାନ୍ଧି ହୋଇ ପଡ଼ୁଥିଲେ ।

୧୮୧୭ ମସିହାଠାରୁ ଓଡ଼ିଶାରୁ ଇଂରେଜ ଶାସନର ପରିସମାପ୍ତି ପର୍ଯ୍ୟନ୍ତ କଟକ ନିରବଚ୍ଛିନ୍ନଭାବେ ଇଂରେଜମାନଙ୍କର ମୁଖ୍ୟକାର୍ଯ୍ୟାଳୟ ହୋଇ ରହିଥିଲା । ବ୍ରିଟିଶ୍ ଶାସନ ସମୟରେ କଟକ ଆସିଛନ୍ତି । ଅନେକ ଗଭର୍ଣ୍ଣର, କମିଶନର୍, ପର୍ଯ୍ୟଟକ, କଲେକଟର, ମିଶନାରୀ ଓ ଧର୍ମଯାଜକ । ଭାରତ ଆସି ଓଡ଼ିଶା ପରିଭ୍ରମଣରେ ନ ଆସିବା ଏବଂ ଓଡ଼ିଶାରେ କଟକକୁ ନ ଆସିବା ପ୍ରତ୍ୟେକ ଇଂରେଜ ପାଇଁ ଏକ ଅସଫଳ ଯାତ୍ରାଭାବେ ପ୍ରତୀୟମାନ ହେଉଥିଲା । ଅନେକ ଇଂରେଜ କଲେକ୍ଟର, କମିଶନର ଏବଂ ଗଭର୍ଣ୍ଣରଙ୍କ ଦୃଷ୍ଟିରେ କଟକ ଥିଲା ବୈଭବମୟ ଓଡ଼ିଶାର ମାନଦଣ୍ଡ ।

ଗୋରାସାହେବମାନେ ବିଭିନ୍ନ ଦିଗରୁ ଏହାର ଭୂୟସୀ ପ୍ରଶଂସା କରିଥିଲେ । ଓଡ଼ିଶାର ପ୍ରଥମ ଇତିହାସ ଲେଖକ ଟେଏନବ ଓ ଷ୍ଟାର୍ଲିଂ ସାହେବଙ୍କ ଦୃଷ୍ଟିରେ ଓଡ଼ିଶା ଏବଂ ଏହାର ଜାତୀୟ ଚରିତ୍ର ଟିକେ ନିକୃଷ୍ଟ ଭାବରେ ସ୍ଥାନ ପାଇଥିଲେ ମଧ୍ୟ କଟକକୁ ସେମାନେ ଭୁଲିପାରି ନଥିଲେ । ପରବର୍ତ୍ତୀ ସମୟରେ ହଣ୍ଟର, ଫର୍ଗୁସନ ଓ ବେଲେର ପ୍ରମୁଖଙ୍କ ଓଡ଼ିଶା ସମ୍ପର୍କୀୟ ପୁସ୍ତକରେ କଟକର ସ୍ଥାନ ସର୍ବୋଚ୍ଚ ଉର୍ଦ୍ଧ୍ୱରେ ।

ସେହିପରି ମିଲ୍ ସାହେବଙ୍କ ଓଡ଼ିଶା ଭ୍ରମଣ ଏବଂ ମଣ୍ଟ ସାହେବଙ୍କ ଓଡ଼ିଶା ଭ୍ରମଣ ପୁସ୍ତକରେ କଟକର ପ୍ରଶଂସା କରାଯାଇଥିବା ଦେଖିବାକୁ ମିଳେ । ଏକ ଐତିହ୍ୟ ସମ୍ପନ୍ନ, ନଗର କଟକର ମହାନତା ପ୍ରତ୍ୟେକ ବୈଦେଶିକର ହୃଦୟକୁ ସ୍ପର୍ଶ କରିଥିଲା । ମହାନଦୀ ଏବଂ କାଠଯୋଡ଼ିର ମଧ୍ୟସ୍ଥଳରେ ଅବସ୍ଥିତ । ଏହି ସହରକୁ ଗମନାଗମନର ଅସୁବିଧା ଥିବାରୁ ପ୍ରଥମେ ଇଂରେଜମାନେ କଟକରେ ରହିବାକୁ ଭଲପାଉ ନଥିଲେ । କିନ୍ତୁ ଥରେ ଆସି କଟକରେ ରହିଗଲାପରେ ସେମାନେ ଏହାର ସୌନ୍ଦର୍ଯ୍ୟପୂର୍ଣ୍ଣ ପ୍ରାକୃତିକ ପରିବେଶ ଏବଂ ମଧୁର ସାମାଜିକ ଜୀବନ ଦ୍ୱାରା ବାନ୍ଧିହୋଇ ପଡ଼ୁଥିଲେ ।

ଦୃଷ୍ଟାନ୍ତ ସ୍ୱରୂପ ପୂର୍ବରୁ କଟକରେ ଥିବା ଜନୈକ କଲେକ୍ଟରଙ୍କ ମତକୁ ଆଲୋଚନା କରି ଜନ୍ ବାମସ୍ କହନ୍ତି—Sir William Grey the Lieutenant Governor used to say that he could not get man to go to Cuttack but once they had got there he could not get them to come away from it· Men did not like going there because it was so out of the way but when they once got there, found it so pleasant, they wished to stay·" (John Beames. memories of a Bengalee Civilian. London 1961· P-221) ଯେଉଁ କେତେଜଣ ଇଂରେଜ ଶୁଭେଚ୍ଛୁ ଓଡ଼ିଶା ପାଇଁ ସର୍ବଦା ଚିନ୍ତା କରୁଥିଲେ ସେମାନଙ୍କ ମଧ୍ୟରୁ ରେଭେନ୍‌ସା ସାହେବ ଓ ଜନବାମସ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ ।

କଟକର ମୁକ୍ତି ଥିଲା ଉଭୟଙ୍କ ପାଇଁ ଅବସ୍ମରଣୀୟ । କଟକର ସର୍ବାଙ୍ଗୀନ ଉନ୍ନତି ହୋଇ ପାରିଲେ ସମଗ୍ର ଓଡ଼ିଶା ସମୃଦ୍ଧ ହେବ ବୋଲି ସେମାନେ ମତ ପୋଷଣ କରୁଥିଲେ । ଟି. ଇ. ରେଭେନ୍‌ସାଙ୍କ ସମୟରେ ଓଡ଼ିଶାରେ ଯେଉଁ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା ତାହା କଟକର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ଅବଶ୍ୟ ଏହା ପୂର୍ବରୁ ବ୍ରିଟିଶ୍ ଶାସନରେ ୧୮୦୬, ୧୮୦୮, ୧୮୦୯, ୧୮୧୭, ୧୮୨୮, ୧୮୩୬, ୧୮୩୭, ଓ ୧୮୪୨ରେ ଦୁର୍ଭିକ୍ଷ ପଡ଼ିଥିଲା । କିନ୍ତୁ ୧୮୬୫-୬୬ ମସିହାରେ ଯେଉଁ ମନୁଷ୍ୟକୃତ ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା ତାହା ରେଭେନ୍‌ସା ସାହେବଙ୍କର ଅପରିପକ୍ୱ ଅଭିଜ୍ଞତାର ପରିଣତି କହିଲେ କିଛି ଭୁଲ୍ ହେବନି । ଏକ ପକ୍ଷରେ ଏହା ଯଦିଓ ଓଡ଼ିଶାର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା, ଅପର ପକ୍ଷରେ ଇଂରେଜ ସରକାର ଓଡ଼ିଶାର ସାମଗ୍ରିକ ଉନ୍ନତି ପାଇଁ ଏହି ଦୁର୍ଭିକ୍ଷ ପରେ ହିଁ ଅଧିକ ଧ୍ୟାନ ଦେଲେ ।

୧୮୬୮ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲାସ୍କୁଲରେ ଦୁଇଟି କଲେଜ ଶ୍ରେଣୀ ଖୋଲି ୧୮୭୮ ରେ ସମ୍ପୂର୍ଣ୍ଣ ହେଲା । ୧୮୮୧ ମସିହାରେ ଏହା ରେଭେନ୍‌ସା କଲେଜ ନାମରେ ନାମିତ ହେଲା । ୧୮୭୫ ମସିହାରେ କଟକଠାରେ ଓଡ଼ିଶା ମେଡ଼ିକାଲ ସ୍କୁଲ ସ୍ଥାପନ କରାଗଲା । ରେଭେନ୍‌ସା ସାହେବ କଟକର ଅଧିବାସୀମାନଙ୍କୁ ଅତ୍ୟଧିକ ଶ୍ରଦ୍ଧା କରୁଥିଲେ । ଜଣେ ସହୃଦୟଶୀଳ ପ୍ରତିଭାବାନ୍ ଓ ସୁବିଚାରକ ଭାବରେ ସାଧାରଣ ଜନତାଙ୍କ ନିକଟରେ ସେ ପରିଚିତ ଥିଲେ ।

ଜନ୍ ବିମସ୍‌ଙ୍କ ମତରେ କଟକ ହେଉଛି ତାଙ୍କ ମଧୁରତମ ଜୀବନଯାପନ ମାର୍ଗର ଶ୍ରେଷ୍ଠ ଅଧ୍ୟାୟ । କଟକର ସାଂଗଠନିକ ଜୀବନଯାତ୍ରା, ପରିପାଟୀ, ଜଳବାୟୁ ଓ ଆଗ୍ରହ ବ୍ୟବହାର ଜନ୍ ବିମସ୍‌ଙ୍କୁ ମୁଗ୍ଧ କରିଥିଲା । ୧୮୭୦ ମସିହାରେ ବିମସ୍ ସାହେବ କଟକର ବର୍ଣ୍ଣନା କରି କହିଥିଲେ, "ମୋର ପ୍ରଥମ ପରିଦର୍ଶନରେ କଟକର ଗଠନ ପ୍ରଣାଳୀ ଅତ୍ୟନ୍ତ ଆନନ୍ଦ ଦେଲା । ପ୍ରଶସ୍ତ ବୃକ୍ଷଯୁକ୍ତ ରାସ୍ତା, ସବୁଜ ସାମରିକ କ୍ରୀଡ଼ାଭୂଇଁ, ନେତ୍ର ଆକର୍ଷଣକାରୀ ସୁସଜ୍ଜିତ ପ୍ରାସାଦ, ଉଭୟପାର୍ଶ୍ୱରେ ପ୍ରବହମାନ ପ୍ରଶସ୍ତ ନଦୀଦ୍ୱୟ ଏବଂ ପଶ୍ଚାତରେ ନୀଳରଙ୍ଗର ପର୍ବତଶ୍ରେଣୀ ଏହାକୁ ଭାରତରେ ଅବସ୍ଥିତ ସ୍ଥାନମାନଙ୍କ ମଧ୍ୟରୁ ଏକ ଶ୍ରେଷ୍ଠସ୍ଥାନ ବୋଲି ଚିହ୍ନାଇଦିଏ ।" (Beames, Op Cit· P-194) କଟକକୁ ଭଲପାଇବାର ତାଙ୍କର ଅନ୍ୟଏକ କାରଣ ହେଉଛି ଏଠାରେ ତାଙ୍କର ପ୍ରମୋଶନ ହୋଇଥିଲା ।

ଜନ୍ ବିମସ୍ ୧୮୭୩ ଖ୍ରୀଷ୍ଟାବ୍ଦରେ କଲେକ୍ଟର ଓ ମାଜିଷ୍ଟ୍ରେଟ ଭାବେ କଟକ ଆସିଲେ ଏବଂ ୧୮୭୮ ମସିହା ପର୍ଯ୍ୟନ୍ତ ସେ ଏହି ପଦବୀରେ ଥିଲେ । ରେଭେନ୍‌ସା ସାହେବଙ୍କ ଅନୁପସ୍ଥିତି ସମୟରେ ସେ ଓଡ଼ିଶାର ଅସ୍ଥାୟୀ କମିଶନର ଭାବେ କାର୍ଯ୍ୟ କରୁଥିଲେ । ୧୮୭୫ ମସିହାରେ ରଚନା କରିଥିବା Bengali Civilian ପୁସ୍ତକରେ ସେ କଟକ ସହର ସମ୍ପର୍କରେ ଲେଖିଥିଲେ, "This great city of Cuttack the

capital of a large and isolate Province was a curious study. So many little worlds lived side by side, understanding each other often very heartily and yet all dwelling peaceably on the whole, under the strong hand of Brstish law and order. Its situation was peculiar and in many respects inconvenience.

୧୮୭୪ ମସିହା ନଭେମ୍ବର ମାସରେ ସାର ରେଗ୍ଗ ଟେମ୍ପଲ ଓଡ଼ିଶା ପରିଦର୍ଶନରେ ଆସିଥିବା ସମୟରେ କଟକଠାରେ ତାଙ୍କୁ ଉଚ୍ଚୋଚିତ ସମ୍ବର୍ଦ୍ଧନା ଦିଆଯାଇଥିଲା । କମିଶନର ରେଭେନ୍‌ସା ସାହେବଙ୍କ ପରାମର୍ଶକ୍ରମେ କଲେକ୍ଟର ଜନ୍ ବାମସ ଟେମ୍ପଲଙ୍କ ପାଇଁ ଏହାର ଆୟୋଜନ କରିଥିଲେ । ଗଭର୍ଣ୍ଣରଙ୍କୁ ୧୫ଟି ତୋପ ଫୁଟାଇ ସ୍ୱାଗତ କରାଯାଇଥିଲା । ଲାଲବାଗର ସାଜସଜ୍ଜା ପରିଦର୍ଶନ କରି ସେ ଚମତ୍କୃତ ହୋଇପଡ଼ିଥିଲେ ।

କଟକ ସହରର ଗଠନ କୌଶଳ ଏବଂ ଜୀବନଯାପନର ଧାରାକୁ ସେ ଅତ୍ୟନ୍ତ ଉଚ୍ଚ ମନେକରିଥିଲେ । ସମ୍ପ୍ରତି ଲାଲବାଗଠାରେ ଥିବା ଶିଶୁଭବନଟି ଥିଲା କମିଶନରଙ୍କର ବସାଘର । କିନ୍ତୁ, ଜନ୍ ବାମସ ସହରର ଉପକଣ୍ଠସ୍ଥିତ ପରିଚିତ ଗୁଡ଼ଲାଆଗଞ୍ଜରେ ରହୁଥିଲେ । ଏହା ତାଙ୍କପାଇଁ ଥିଲା ଅତ୍ୟନ୍ତ ସୁଖକର ଓ ସ୍ୱାସ୍ଥ୍ୟପ୍ରଦ ସ୍ଥାନ । ଏଠାରୁ ତାଙ୍କ କଚେରୀ ପାଖ ୩ ମାଇଲ ଦୂର ଥିଲେହେଁ ସେ ପ୍ରତ୍ୟହ ଘୋଡ଼ା ପିଠିରେ ବସି ସେଠାକୁ ଯାଉଥିଲେ । କଟକ ରହଣି ସମୟରେ ପ୍ରାୟ ସବୁଦିନ ଘୋଡ଼ାରେ ଚଢ଼ି ସେ ସହର ପରିଦର୍ଶନ କରୁଥିଲେ । ଏହାଦ୍ୱାରା ସହରର ସମସ୍ୟା ଓ ଲୋକମାନଙ୍କର ଅଭାବ ଅସୁବିଧାକୁ ପ୍ରତ୍ୟକ୍ଷ ଭାବରେ ଜାଣି ସେ ଏହାର ଆଶୁ ପ୍ରତିକାର ବ୍ୟବସ୍ଥା କରୁଥିଲେ । ଜନ୍‌ବାମସ୍ ଇଂରେଜ ମାଟିରୁ ଜନ୍ମ ହୋଇଥିଲେ ମଧ୍ୟ ସେ ଥିଲେ ଓଡ଼ିଶାର ପରମବନ୍ଧୁ ।

ଓଡ଼ିଆଭାଷା ଅବହେଳିତ ଅବସ୍ଥାରେ ଥିବା ସମୟରେ ଏବଂ ଏହାକୁ ସମ୍ପୂର୍ଣ୍ଣଭାବରେ ଲୋପ କରିଦେବାର ଚକ୍ରାନ୍ତ ଚାଲିଥିବାବେଳେ ଜନ୍ ବାମସ୍ ଏହିଭାଷାର ସୁରକ୍ଷାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଅବଶ୍ୟ ଏହା ପୂର୍ବରୁ ୧୮୬୫ ମସିହାରେ ଓଡ଼ିଶାକୁ ନବାଗତ କମିଶନର ରେଭେନ୍‌ସା ଓଡ଼ିଶାର ଶିକ୍ଷା ବିଷୟକ ୧୮୬୪-୬୫ ବାର୍ଷିକ ରିପୋର୍ଟରେ ଓଡ଼ିଶାର ବିଦ୍ୟାଳୟର ଉଚ୍ଚଶ୍ରେଣୀରେ ଓଡ଼ିଆ ଭାଷା ଅବହେଳିତ ହେଉଥିବାରୁ ସେଥିପ୍ରତି ବଙ୍ଗସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଯଥାଶୀଘ୍ର ବଙ୍ଗଳା ଭାଷା ପରିବର୍ତ୍ତେ କେବଳ ଓଡ଼ିଆ ଭାଷାର ପ୍ରଚଳନ କରିବାପାଇଁ ସୁପାରିଶ କରି ପ୍ରସ୍ତାବ ଦେଇଥିଲେ । କିନ୍ତୁ ବଙ୍ଗଳାକୁ ସମର୍ଥନ ଜଣେ ଇ ଶିକ୍ଷା ବିଭାଗର ଇନ୍‌ସପେକ୍ଟର ଓ ଡିରେକ୍ଟର ଏହାର ପ୍ରତିବାଦ କରିଥିଲେ ।

ଜନ୍ ବାମସ୍ ଓଡ଼ିଆଭାଷାର ଗୁରୁତ୍ୱ ତାଙ୍କ ' Comparative Grammer of Modern Aryan Language of India'' ପୁସ୍ତକରେ ଲିପିବଦ୍ଧ କଲେ । ୧୮୬୮ ମସିହାରେ 'ଉତ୍କଳ ଦୀପିକା' ମାଧ୍ୟମରେ ଉତ୍କଳର ବରିପୁତ୍ରମାନେ ଓଡ଼ିଆ ଭାଷା ସପକ୍ଷରେ ବହୁ ମୂଲ୍ୟବାନ ମତାମତ ଦେଇଥିଲେ । ବହୁ ବାଦ ପ୍ରତିବାଦକ୍ରମେ ଓଡ଼ିଆ-

ଭାଷାକୁ କେବଳ ବିଦ୍ୟାଳୟର ସମସ୍ତ ଶ୍ରେଣୀରେ ଚଳାଇବା ପାଇଁ ୧୮୬୯ରେ ବଙ୍ଗ ସରକାର ଡିରେକ୍ଟରଙ୍କୁ ଚିଠି ଲେଖିଲେ । ଏହି ଆଦେଶର ପ୍ରତିବାଦରେ ୧୮୭୦ ମସିହା ଜାନୁଆରୀ ମାସରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ଅସ୍ୱୀକାର କରି ପ୍ରକାଶ ପାଇଲା କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର "ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେ" ପୁସ୍ତକ ।

ଏହାର ତୀବ୍ର ବିରୋଧ କରି ଏବଂ ତତ୍କାଳୀନ ଓଡ଼ିଶାର ଶିକ୍ଷିତମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ଫକୀରମୋହନ ସେନାପତି ବହୁ ଲେଖା ଲେଖିଥିବା ଜନ୍ ବାମସଙ୍କ ପ୍ରବନ୍ଧରେ ସ୍ଥାନ ପାଇଛି । ତେଣୁ ଓଡ଼ିଆ ଭାଷା ଓ ସାହିତ୍ୟର ଉଦ୍ଧାରରେ ଉତ୍କଳର ବରପୁତ୍ର ଫକୀରମୋହନ ସେନାପତି ଓ କଟକରୁ ତତ୍କାଳୀନ ସମୟରେ ପ୍ରକାଶିତ 'ଉତ୍କଳ ଦୀପିକା' ମୁଖ୍ୟ ଭୂମିକା ନେଇଥିଲା । କିନ୍ତୁ ଜଣେ ବିଦେଶୀ ଭାବେ ଉତ୍କଳଭାଷାର ପ୍ରୀତି ଜନ୍ ବାମସଙ୍କର ଥିଲା ସର୍ବାଧିକ ।

ତାଙ୍କର ଉତ୍କଳୀୟ ପ୍ରୀତି ଏବଂ କଟକ ପ୍ରତି ଥିବା ଅହେତୁକୀ ଶ୍ରଦ୍ଧା ଯୋଗୁ ଫକୀରମୋହନ 'ଉତ୍କଳ ଦୀପିକା'ରେ ଜନବାମସଙ୍କର ଭୂୟସୀ ପ୍ରଶଂସା କରିଛନ୍ତି । ହାଟ ଓ ବଜାରର ଉନ୍ନତି ବାମସ୍ ସାହେବଙ୍କ କଟକବାସୀଙ୍କ ପ୍ରତି ଅନ୍ୟ ଏକ ମହାନ୍ କର୍ତ୍ତବ୍ୟ ଥିଲା । ସହରର ସର୍ବବିଧ ଉନ୍ନତିମୂଳରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ସେଥିପାଇଁ ୧୮୭୪ ମସିହା ଜୁନ୍ ୨୦ ତାରିଖ ସଂଖ୍ୟାରେ ପ୍ରକାଶିତ 'ଉତ୍କଳ ଦୀପିକା'ରେ କୁହାଯାଇଛି, "ସହରର ଉନ୍ନତିମୂଳକ ଓ ସଂସ୍କାର କାର୍ଯ୍ୟପାଇଁ ନିଜକୁ ଏପରି ଜଡ଼ିତ କରି ରଖିଥିବା ବାମସ୍ ସାହେବ ହେଉଛନ୍ତି ଅନ୍ୟତମ । ମାତ୍ର କେତେଜଣ ମାଜିଷ୍ଟ୍ରେଟଙ୍କୁ ତାଙ୍କ ସହିତ ତୁଳନା କରାଯାଇପାରେ । ଜନ୍ ବାମସ୍ କଟକ ଅଧିବାସୀଙ୍କ ସହିତ ଏପରି ସଂଶ୍ଳିଷ୍ଟ ହୋଇ ଯାଇଥିଲେ ଯେ, ୧୮୭୭ ମସିହାରେ ସେ ଯେତେବେଳେ କଟକ ତ୍ୟାଗକଲେ କଟକର ସହସ୍ରାଧିକ ଅଧିବାସୀ କାନ୍ଦିଥିଲେ ।

ଷ୍ଟାର୍ଲିଂସାହେବ ଓଡ଼ିଶା ଇତିହାସର ସମ୍ପୂର୍ଣ୍ଣ ତଥ୍ୟ ଲାଭ କରି ପାରିଥିଲେ କିନ୍ତୁ କଟକର କେତେକ ବିବରଣୀରୁ ତାଙ୍କର କଟକ ପ୍ରତି ଥିବା ଆକର୍ଷଣର ସୂଚନା ମିଳେ । ଷ୍ଟାର୍ଲିଂ ୧୮୨୨ ମସିହାରେ ଚୌଧୁରୀଚୌକ ବିଷୟରେ କହନ୍ତି, 'ଚୌଧୁରୀଚୌକରେ ଗୋଟିଏ ବଡ଼ ଓସାରିଆ ରାସ୍ତା ଥିଲା । ଏହି ରାସ୍ତାର ଦୁଇକଡ଼ରେ ସମବ୍ୟବଧାନରେ ପରିଚ୍ଛନ୍ନ ପଥରର ଘର ଥିଲା ।

ସେହିପରି ଉତ୍‌ଭଗାଁ, ଅଲସାହା, ସାହେବଦୀହା, ଓଡ଼ିଆ, ତେଲେଙ୍ଗା ଓ ଚୌଧୁରୀଙ୍କ ନାମରେ କଟକର ସାହି ଓ ମହଲଗୁଡ଼ିକ ନାମିତ ଥିବା କଥା ମଧ୍ୟ ତାଙ୍କ ବିବରଣୀରେ ସ୍ଥାନ ପାଇଛି । ଇଉରୋପୀୟମାନଙ୍କ ଆଗମନରେ ଏହାର ମର୍ଯ୍ୟାଦାସମ୍ପନ୍ନ ସାହି, ସୁନ୍ଦର ପ୍ରଶସ୍ତ ରାସ୍ତା ଓ ପକ୍କା ଘର ସେମାନଙ୍କୁ ମୁଗ୍ଧ କରିବା ସ୍ୱାଭାବିକ । ସେଥିପାଇଁ ପୂର୍ବରୁ ରାଜା ଓ ଜମିଦାରମାନେ କଟକରେ ରହୁଥିଲେ ଏବଂ ଏହା ଥିଲା ଶିଳ୍ପ, ବାଣିଜ୍ୟ, ଶିକ୍ଷା, ସଂସ୍କୃତି ଓ ସଭ୍ୟତାର କେନ୍ଦ୍ରସ୍ଥଳୀ ।

୧୮୬୨ ମସିହାରେ ଟଏନେଷ୍ଟ ସାହେବ 'A Sketch of the History of Orissa'ରେ କଟକ ଓ ବାରବାଟି ଦୁର୍ଗ ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଏହା ଏକ ବିଶାଳ ସହର ଓ ସଂସ୍କୃତି ପୀଠସ୍ଥଳୀ । ବାଣିଜ୍ୟ କେନ୍ଦ୍ର ହିସାବରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଯେତେବେଳେ ନଦୀରେ ଭୟଙ୍କର ବନ୍ୟା ଆସୁଥିଲା କିମ୍ବା ଫସଲ ନଷ୍ଟ ହେଉଥିଲା କଟକର ଅଧିବାସୀମାନେ ଖାଦ୍ୟ ପାଇଁ ଅନେକ ଅସୁବିଧାର ସମ୍ମୁଖୀନ ହେଉଥିଲେ । ନୃପକେଶରୀ ଏହି ସହରକୁ ୯୮୯ ଖ୍ରୀଷ୍ଟାବ୍ଦରେ ବସାଇଥିବା ପ୍ରସଙ୍ଗ ଟଏନେଷ୍ଟ ଉଲ୍ଲେଖ କରିଛନ୍ତି । ଟଏନେଷ୍ଟଙ୍କର ବନ୍ୟାକାଳୀନ ଖାଦ୍ୟ ଅସୁବିଧାର ତଥ୍ୟକୁ ଲକ୍ଷ୍ୟକରି କଟକର ଖାଦ୍ୟ ସଂରକ୍ଷିତ ବ୍ୟବସ୍ଥା କଲେକ୍ଟରଙ୍କ ଦ୍ୱାରା କରାଯାଇଥିଲା ।

କଟକର ଜେଲ୍ ୧୮୮୧ ମସିହା ଫେବୃୟାରୀ ମାସରେ କଏଦୀମାନଙ୍କୁ ରଖିବା ପାଇଁ ଉପଯୁକ୍ତ ହୋଇପାରିଥିଲା । ଷ୍ଟାର୍ଲିଂ ସାହେବ ୧୮୧୮ ମସିହା ଠାରୁ ଦୁଇବର୍ଷ ପାଇଁ କଟକରେ ରହିଥିଲେ; ଏହି ସମୟରେ ସେ କଟକର ସାହି, ବଜାର, ନଦୀ ପରିଦର୍ଶନରେ ହେଉଛି ସନ୍ତୁଷ୍ଟ ହୋଇ ପାରି ନଥିଲେ ତା'ଠାରୁ ଅଧିକ ଖୁସିହେଲେ ବାରବାଟି ଦୁର୍ଗକୁ ଦେଖି । ଏଣୁ ସେ ଏହି ଦୁର୍ଗର ବିବରଣୀ ତାଙ୍କ ଇତିହାସରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ଟଏନେଷ୍ଟ ସାହେବ ମଧ୍ୟ ଏହି ଦୁର୍ଗ ସମ୍ପର୍କରେ ପ୍ରକାଶ କରିଛନ୍ତି, କଟକ ପରି ଏକ ବୃହତ୍ତମ ସହରର ଗୌରବ ବାରବାଟି ଦୁର୍ଗ ଯୋଗୁ ବୃଦ୍ଧି ଲାଭ କରିଥିବା ଫର୍ଗୁସନ ସାହେବଙ୍କର ଏକ ବଳିଷ୍ଠ ମତ । ଏହାର ଐତିହାସିକ ଗଠନ ପ୍ରଣାଳୀରେ ସେ ଅତୀବ ସନ୍ତୋଷ ପ୍ରକାଶ କରିଥିଲେ ।

ଓଡ଼ିଶାକୁ ବିଭିନ୍ନ ସମୟରେ କମିଶନର ହୋଇ ଆସୁଥିବା ଇଂରେଜମାନଙ୍କ ମଧ୍ୟରୁ ଊନବିଂଶ ଶତାବ୍ଦୀରେ ଯଦିଓ ରେଭେନ୍‌ସା ସାହେବଙ୍କୁ ଓଡ଼ିଶା ନିର୍ମାଣର ପ୍ରଥମ ବ୍ୟକ୍ତିତ୍ୱ ଭାବରେ ଗ୍ରହଣ କରାଯାଇଛି, ତଥାପି ହେନେରୀ ରିକେଟସ୍ ଏବଂ ଜି. ଏଫ୍. କକବର୍ଣ୍ଣଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି କମିଶନରମାନେ ଓଡ଼ିଶାର ଉନ୍ନତି କରିବା ସହିତ କଟକର ଅଭିବୃଦ୍ଧି, ବାଣିଜ୍ୟ, ଶିଳ୍ପ ଓ ଶିକ୍ଷାର ବିକାଶ ଉପରେ ପ୍ରାଧାନ୍ୟ ଆରୋପ କରିଥିଲେ ।

୧୮୬୯ ମସିହା ଠାରୁ ୧୮୭୭ ମସିହା ମଧ୍ୟରେ ଓଡ଼ିଶାର କମିଶନର ଭାବେ ନିଯୁକ୍ତି ପାଇଥିବା ମିଲସ୍ ସାହେବ ତାଙ୍କର ମୁଖ୍ୟ କାର୍ଯ୍ୟାଳୟ କଟକ ଏବଂ କଟକ ନଗରର ଉନ୍ନତି ପାଇଁ ମନୋନିବେଶ କରିଥିଲେ । ମିଲସ୍ ସାହେବ କଟକର ଐତିହାସିକ, ରାଜନୈତିକ ଓ ବାଣିଜ୍ୟିକ ଗୁରୁତ୍ୱକୁ ଅଧିକ ମୂଲ୍ୟବାନ ମନେ କରୁଥିଲେ । ସୈନ୍ୟମାନଙ୍କ ଅବସ୍ଥାନ ପାଇଁ ଏହା ଅନୁକୂଳ ଥିଲା ।

ପ୍ରଥମେ ତାଙ୍କ କାର୍ଯ୍ୟାଳୟ ସର୍କିଟ ହାଉସ୍‌ରେ ରହିଲା ଏବଂ ପରେ ଏହାକୁ ଦ୍ୱିତଳ ବିଶିଷ୍ଟ କରାଯାଇ କଚେରୀରେ ପରିଣତ କରାଗଲା । କଟକ ସହରର ଏକ ପ୍ରଧାନ

କାରଣୀୟ ଥିଲ ବନ୍ୟା । ଏପରି ଏକ ସୁନ୍ଦର ସହରକୁ ବନ୍ୟାର ଭୟଙ୍କର ଆକ୍ରମଣରୁ ରକ୍ଷା କରିବା ପାଇଁ ସେ ପଦକ୍ଷେପ ଗ୍ରହଣ କରିଥିଲେ । ମୋଗଲ ଶାସନ ସମୟରେ ନିର୍ମିତ ହୋଇଥିବା ନଦୀବନ୍ଧ ବ୍ରିଟିଶ୍ ସରକାରଙ୍କ ସମୟରେ ବାରମ୍ବାର ମରାମତି କରାଯାଉଥିଲା । କିନ୍ତୁ ମିଲସ୍ ସାହେବ ଏହାର ପୁନଃନିର୍ମାଣ କରିଥିଲେ ।

୧୮୪୬ ମସିହା ମାର୍ଚ୍ଚ ମାସ ୧୯ ତାରିଖରେ ତେଲେଙ୍ଗା ବଜାରରେ ଘଟି-ଯାଇଥିବା ଏକ ବଡ଼ଧରଣର ଡକାୟତିକୁ ଲକ୍ଷ୍ୟକରି ସେ ପୋଲିସ୍ ବଳଟକୁ ଅଧିକ ସକ୍ରିୟ କରିଥିଲେ । କଟକର ଫାଣ୍ଡିମାନଙ୍କରେ ଅଧିକ ପୁଲିସ୍ ବ୍ୟବସ୍ଥା ଓ ଅଫିସର ନିଯୁକ୍ତ କରି ସେ କଟକ ସହରକୁ ଚୋର ଓ ଡକାୟତମାନଙ୍କ ହାତରୁ ରକ୍ଷା କରିବା ପାଇଁ ଉଦ୍ୟମ କରିଥିଲେ । ଏଥି ସହିତ ପେଟ୍ରୋଲିଂ ସିଷ୍ଟମ୍ ଏବଂ ରାତିରେ ସହରରେ ପୋଲିସ ମୁତୟନ ତାଙ୍କର ଅନ୍ୟ ଦୁଇଟି ପଦକ୍ଷେପ ଥିଲା । ସେ କଟକ ଜେଲ୍‌ର ଉନ୍ନତି, କଏଦୀମାନଙ୍କର ଖାଦ୍ୟ ପାଣିୟ ଓ ରହିବାର ସୁବନ୍ଦୋବସ୍ତ କରିଥିଲେ । ବନ୍ଦୀମାନେ ଶୀତତାପରୁ ରକ୍ଷା ପାଇବା ନିମିତ୍ତ ସେ ପ୍ରତ୍ୟେକ କଏଦୀକୁ ଦୁଇଟି ଲେଖାଏ କମ୍ବଳ ଯୋଗାଇ ଦେଉଥିଲେ ।

କଟକ ସହରର ବୈଶିଷ୍ଟ୍ୟ ମିଲସ୍ ସାହେବ ଅଧିକ ଉପଲବ୍ଧି କରିଥିଲେ । ତାଙ୍କର ଏପରି ସାଧୁଉଦ୍ୟମକୁ ସହରର ଅଧିବାସୀମାନେ ସ୍ୱାଗତ କରୁଥିଲେ । କଟକ ସହରର ରାସ୍ତା ନିର୍ମାଣରେ ବାରବାଟୀ ଦୁର୍ଗ ମଧ୍ୟରୁ ଆସୁଥିବା ପଥର ବ୍ୟବହାରକୁ ବନ୍ଦ କରିବାକୁ ପରବର୍ତ୍ତୀ ପର୍ଯ୍ୟାୟରେ ଚେଷ୍ଟା କରିଥିଲେ ମଧ୍ୟ ଏହାକୁ ବନ୍ଦ କରିପାରି ନଥିଲେ । ରାସ୍ତାର କୃତ୍ରିମ ଖାଲଗୁଡ଼ିକ ମରାମତି କରିବା ପାଇଁ ସେ ପ୍ରଚୁର ପରିମାଣରେ ଏହି ପଥରକୁ ବ୍ୟବହାର କରିବାକୁ ଅନୁମତି ଦେଇଥିଲେ । ୧୮୬୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ପଥର ସବୁ ବିକ୍ରୟ ହେଉଥିଲା ଏବଂ ସର୍ବସାଧାରଣ କାର୍ଯ୍ୟରେ ବ୍ୟବହାର କରା ଯାଉଥିଲା ।

୧୮୪୨ ଖ୍ରୀଷ୍ଟାବ୍ଦରେ ଟି. ଆକଲାଣ୍ଡ ନାମରେ ଜଣେ ଧର୍ମଯାଜକ ଭାରତ ଆସିଥିଲେ । ଆସାମ ପ୍ରଦେଶର ଚକରଣୀ ସୁପରିଣ୍ଟେଣ୍ଡେଣ୍ଟ ଭାବରେ କାର୍ଯ୍ୟକରିବା ପାଇଁ ତାଙ୍କୁ ଅଣାଯାଇଥିଲେ ମଧ୍ୟ କଲିକତାରେ ପହଞ୍ଚିବା ପରେ ସେଠାକାର ଖ୍ରୀଷ୍ଟଧର୍ମାଧ୍ୟକ୍ଷ ତାଙ୍କୁ କଟକରେ ନିଯୁକ୍ତ ଦେଲେ । ମେଦିନୀପୁର, ବାଲେଶ୍ୱର ଓ ପୁରୀ ତାଙ୍କ କ୍ଷମତାଧୀନ ଥିଲା ।

୧୮୪୩ ମସିହା ଜାନୁୟାରୀ ୧୦ ତାରିଖରେ ସେ କଟକ ଠାରେ ପହଞ୍ଚିଲେ । ତାଙ୍କ କଟକ ରହଣି ସମୟର ଅଭିଜ୍ଞତା "A Popular account of the manners and Customers of India" ପୁସ୍ତକରେ ଲିପିବଦ୍ଧ ହୋଇଅଛି । କଟକ ସହରର ଅବସ୍ଥାନ ସମ୍ପର୍କରେ ସେ କହନ୍ତି, "ଦୁଇଟି ନଦୀ ପରିବେଷ୍ଟିତ ଏକ କ୍ଷୁଦ୍ରଦ୍ୱୀପରେ କଟକର କାର୍ଯ୍ୟାଳୟ ଅବସ୍ଥିତ ଥିଲା । ଗ୍ରୀଷ୍ମକାଳରେ ଏହି କ୍ଷୁଦ୍ର ଦ୍ୱୀପଟି ଏକ ଅଣଓସାରିଆ ବାଲୁକା ରାସ୍ତାଦ୍ୱାରା ପ୍ରଧାନଭୂଖଣ୍ଡ ସହିତ ମିଳିତ ହୋଇ ଏକ

ଉପଦ୍ୱୀପ ସଦୃଶ ପ୍ରତୀୟମାନ ହେଉଥିଲା । ଏହି ଦ୍ୱୀପବାସୀମାନଙ୍କର ଏକମାତ୍ର ସୁବିଧା ଥିଲା ଯେ, ଯଦିଓ ସେମାନେ ନଦୀ ମଧ୍ୟରେ ଥିବା ଅଣ୍ଡିଆ କୁମ୍ଭୀରମାନଙ୍କ ଦ୍ୱାରା ପରିବେଷ୍ଟିତ ଥିଲେ କିନ୍ତୁ ବାଘ-ଭାଲୁମାନଙ୍କ କବଳରୁ ଥିଲେ ସମ୍ପୂର୍ଣ୍ଣ ମୁକ୍ତ ।

ଏହାର ବିପରୀତ ପାର୍ଶ୍ୱରେ ଅସଂଖ୍ୟ ବାଘ ଥିଲେ । ଦକ୍ଷିଣପାର୍ଶ୍ୱ ବ୍ୟତୀତ କଟକର ଅନ୍ୟ ତିନୋଟି ଦିଗରେ ପର୍ବତମାଳା ଘେରି ରହିଥିଲା । ବିଷ୍ଣୁଙ୍କ ପାଦରୁ ଏହା ସୃଷ୍ଟି ହୋଇଥିବାଭଳି ପ୍ରତୀୟମାନ ହୁଏ । ଏଠାରେ ଗୋଟିଏ ସୁବିଧା ହେଉଛି ଯେ, ସମୁଦ୍ର ଏଠାରୁ ୫୦ ମାଇଲ ଦୂରରେ ଏକ ସରଳରେଖାରେ ଦକ୍ଷିଣକୁ ଲମ୍ବି ରହିଥିଲା । ପ୍ରତ୍ୟହ ସନ୍ଧ୍ୟା ୫ଟା ସୁଦ୍ଧା ରମଣୀୟ ଶୀତଳ ସାମୁଦ୍ରିକ ବାୟୁ ସେହି ଦିଗରୁ ପ୍ରବାହିତ ହେଉଥିଲା । ସନ୍ଧ୍ୟା ୭ଟା ଠାରୁ ପ୍ରବଳ ବେଗରେ ସକାଳ ପର୍ଯ୍ୟନ୍ତ ଏହି ବାୟୁ ବହୁଥିଲା । ତେଣୁ ଦିବସର ଗ୍ରୀଷ୍ମତାପ ସହ୍ୟକରିବା ପରେ ସନ୍ଧ୍ୟା ସମୟରେ ଏପରି ମନୋରମପୂର୍ଣ୍ଣ ବାୟୁକୁ ଉପଭୋଗ କରିବା ଅତ୍ୟନ୍ତ ସ୍ୱାସ୍ଥ୍ୟପ୍ରଦ ମନେ ହେଉଥିଲା । ଏପରି ଆନନ୍ଦଦାୟକ ଜଳବାୟୁରେ ବାସକରିବାକୁ ସେ ପସନ୍ଦ କରିଥିଲେ ।

ତାଙ୍କର ରହଣିକାଳ ମଧ୍ୟରେ ସେ କଟକର ବିଭିନ୍ନ ସ୍ଥାନ ପରିଦର୍ଶନ କରିଥିଲେ । କଟକର କେତେକ ବିଶିଷ୍ଟ ପର୍ବ ଯଥା ଦୋଳ ଓ ମହରମ ପ୍ରଭୃତିକୁ ଆନନ୍ଦର ସହିତ ଉପଭୋଗ କରିଥିଲେ । କାଣ୍ଟୋନ୍‌ମେଣ୍ଟର ଏକ ସୁସ୍ଥ ସୁନ୍ଦର ସରକାରୀ ଗୃହରେ ତାଙ୍କର ଅବସ୍ଥାନ ଥିଲା । ଏହି ଗୃହର ଗଠନ ପ୍ରଣାଳୀଥିଲା ଆଧୁନିକ ଧରଣର, ଯାହାର ପ୍ରଂଶସା ତାଙ୍କ ପୁସ୍ତକରେ ହୋଇଥିବା ଲକ୍ଷ୍ୟ କରାଯାଏ । କଟକର ଭୌଗୋଳିକ ଅବସ୍ଥାନ ତାଙ୍କ ଦୃଷ୍ଟିରେ ଅଧିକ ପସନ୍ଦଯୋଗ୍ୟ ଥିଲା । ଏହାର ନଦୀ ଗୀର୍ଜା ଏବଂ ପ୍ରସିଦ୍ଧ ବାରବାଟୀ ଦୁର୍ଗ ତାଙ୍କୁ ମୁଗ୍ଧ କରିଥିଲା ।

ତାଙ୍କ ପୁସ୍ତକରେ କଟକ, ଦୂରଦେଶରୁ ଆସୁଥିବା ଜଗନ୍ନାଥ ଯାତ୍ରୀମାନଙ୍କର ବିଶ୍ରାମ ସ୍ଥାନଭାବେ ବର୍ଣ୍ଣିତ । ତାଙ୍କ ସମୟରେ ଖାଦ୍ୟାଭାବ ଏବଂ ରୋଗାକ୍ରାନ୍ତରେ କେତେଜଣ ଜଗନ୍ନାଥ ଯାତ୍ରୀ ମୃତ୍ୟୁବରଣ କରିଥିବା ସେ ଉଲ୍ଲେଖ କରିଛନ୍ତି ।

ଅତ୍ୟନ୍ତ କଷ୍ଟସହିଷ୍ଣୁ ଇଉରୋପୀୟ ମିଶନାରୀମାନଙ୍କର ଓଡ଼ିଶା ଅଧିବାସୀଙ୍କ ସହିତ ଆଭ୍ୟନ୍ତରୀଣ ସମ୍ପର୍କ ଥିଲା । କଟକ ସେମାନଙ୍କ ଦୃଷ୍ଟିରେ ଥିଲା ସର୍ବୋତ୍କୃଷ୍ଟ ସ୍ଥାନ । ୧୮୨୨ ମସିହା ଫେବୃୟାରୀ ମାସ ୧୨ ତାରିଖ ମଙ୍ଗଳବାର ଦିନ ବ୍ୟାପ୍‌ଟିଷ୍ଟ ମିଶନାରୀମାନେ କଟକ ଆସିଥିଲେ । ୧୮୪୫ ମସିହାରେ ରୋମାନ୍ କାଥଲିକ୍ ମିଶନାରୀମାନଙ୍କର ମଧ୍ୟ କଟକ ଉପରେ ଶୁଭଦୃଷ୍ଟି ପଡ଼ିଥିଲା ।

ଏହାକୁ ଓଡ଼ିଶାର ଶ୍ରେଷ୍ଠସ୍ଥାନ ମନେକରି ଏହିଠାରେ ବ୍ୟାପ୍‌ଟିଷ୍ଟ ଏବଂ ରୋମାନ୍ କାଥ୍‌ଲିକ ମିଶନାରୀମାନେ ସେମାନଙ୍କ ମୁଖ୍ୟ କାର୍ଯ୍ୟାଳୟ ରଖିଥିଲେ । କଟକ ସହରରେ ଶିକ୍ଷା ବିସ୍ତାର ଓ ପ୍ରେସ୍ ସ୍ଥାପନ କରିବା ଦିଗରେ ଏହି ମିଶନାରୀମାନେ ପ୍ରଥମ ପଦକ୍ଷେପ ନେଇଥିଲେ । ୧୮୨୩ ଖ୍ରୀଷ୍ଟାବ୍ଦରେ ବ୍ୟାପ୍‌ଟିଷ୍ଟ ପାଦ୍ରୀମାନେ କଟକରେ ଗୋଟିଏ

ଆଂଗ୍ଲୋଭର୍ଣ୍ଣାକୁଲର୍ ସ୍କୁଲ ବସାଇଲେ । ୧୮୩୭ ମସିହାରେ ବାପ୍ଟିଷ୍ଟ ମିଶନାରୀମାନେ କଟକରେ ଛାପାଖାନା ବସାଇ ସେଠାରୁ ଜ୍ଞାନାରୁଣ (୧୮୪୯), ପ୍ରବୋଧ ଚନ୍ଦ୍ରିକା (୧୮୫୬) ଓ ଅରୁଣୋଦୟ (୧୮୬୧) ନାମରେ ୩ଟି ପତ୍ରିକା ପ୍ରକାଶକଲେ ।

ଏହାପରେ ଜମିଦାର କାଳିପ୍ରସାଦ ବାନାର୍ଜୀ ୧୮୭୩ ମସିହାରେ 'ଉତ୍କଳ-ହିତୈଷିଣୀ ପ୍ରେସ' ଏବଂ ୧୮୮୫ରେ ଜଗନ୍ନାଥ ରାଓ ଭିକ୍ଟୋରିଆନ୍ ପ୍ରେସ ପ୍ରତିଷ୍ଠା କଲେ । ୧୮୬୬ ମସିହାରେ ଗୌରୀଶଙ୍କର ରାୟ କଟକରେ ଗୋଟିଏ ପ୍ରିଣ୍ଟିଂ କମ୍ପାନୀ ବସାଇ ସେଥିରୁ 'ଉତ୍କଳ ଦୀପିକା' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ କଲେ । ୧୮୭୩ ଖ୍ରୀଷ୍ଟାବ୍ଦରେ ପ୍ୟାରୀମୋହନଙ୍କର କଟକ ଠାରୁ ଉତ୍କଳପୁତ୍ର ଏବଂ ୧୮୯୭ରେ ବିଶ୍ୱନାଥ କରଙ୍କର 'ଉତ୍କଳ ସାହିତ୍ୟ' ପ୍ରକାଶ ପାଇଲା । ୧୮୨୩ ମସିହାରେ ବ୍ୟାପିଷ୍ଟ ମିଶନାରି-ମାନେ କଟକରେ ଯେଉଁ ଇଂଲିଶ୍ ଚ୍ୟାରିଟି ସ୍କୁଲ୍ ବସାଇଥିଲେ ତାହା ୧୮୪୧ ମସିହାରେ ସରକାର ହାତକୁ ନେଲେ ଏବଂ ୧୮୫୧ରେ ଏହା କଟକ ଜିଲ୍ଲା ସ୍କୁଲ ନାମରେ ନାମିତ ହୋଇଥିଲା ।

ଖ୍ରୀଷ୍ଟିୟାନ୍ ମିଶିନାରୀ ଆମସ୍ ସଟନ୍ ୧୮୨୫ ମସିହା ମାର୍ଚ୍ଚ ୧୧ ତାରିଖରେ ସସ୍ତ୍ରୀକ ଇଂଲଣ୍ଡରୁ ଆସି କଟକରେ ପହଞ୍ଚିଲେ । ସେ ଥିଲେ ଓଡ଼ିଆ ଭାଷାର ଜଣେ ବିଶିଷ୍ଟ ପଣ୍ଡିତ । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ, ଇତିହାସ, ବ୍ୟାକରଣ, ପଦାର୍ଥ ବିଜ୍ଞାନ, ନୀତିକଥା ପ୍ରଭୃତି ସେ ପ୍ରଥମେ ମିଶନ୍ ପ୍ରେସରୁ ପ୍ରକାଶ କରିଥିଲେ । ଓଡ଼ିଆ ଭାଷାର ପ୍ରଥମ ବ୍ୟାକରଣ ରଚନାକରି ସେ ଏ ଜାତିକୁ ଆଗେଇବାର ମୁଖ୍ୟ ସହାୟକ ହେଲେ । ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ତାଙ୍କ ପାଖରେ ସବୁଦିନ ପାଇଁ ଋଣୀ ହୋଇ ରହିଗଲା ।

କଟକର ଆକର୍ଷଣ ଏଡ଼ି ନପାରି କଟକରେ ରହିବାର ଯୋଜନା ଇଂରେଜମାନେ ଆରମ୍ଭ କଲେ । ୧୮୩୨ ମସିହାରେ କଟକର ପଲଟନ୍ ବଜାର ବା ବକ୍ସି ବଜାର ନିକଟରେ ଖଣ୍ଡେ ଜମି କିଣାହେଲା । ୧୮୩୩ ମସିହାରେ କେତେଜଣ ଖ୍ରୀଷ୍ଟିୟାନ୍ ଗୃହ ନିର୍ମାଣ କରି ସେଠାରେ ରହିଲେ । ଏହା ହେଲା ଓଡ଼ିଶାର ସର୍ବପ୍ରଥମ ଖ୍ରୀଷ୍ଟିୟାନ୍ ସାହି । ସେହିପରି ୧୮୩୩ ମସିହାରେ କଟକଚଣ୍ଡୀଙ୍କ ନିକଟରେ ଦ୍ୱିତୀୟ ଖ୍ରୀଷ୍ଟିୟାନ୍ ସାହି ଏବଂ ୧୮୪୫ରେ ସୂତାହାଟ ଖ୍ରୀଷ୍ଟିୟାନ୍ ସାହି ଲେସୀ ସାହେବଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ମେରିଆ ବଜାରରେ କେତେଜଣ ଜଜ୍‌ସାହେବ ରହୁଥିଲେ । ଆମସ୍ ସଟନ ୧୮୪୫ ମସିହାରେ ମିଶନ ଏକାଡେମୀ ବସାଇଥିଲେ ଯାହା ଅଧୁନା Theological School ନାମରେ ପରିଚିତ ।

ସେହିପରି ମିଶନ୍ ହାଇସ୍କୁଲ, ମିଶନ୍ ବାଳିକା ବିଦ୍ୟାଳୟ, ଷ୍ଟୁଆର୍ଟ ସ୍କୁଲ, ସିସନ ପ୍ରାଇମେରୀ ସ୍କୁଲ, ବକ୍ଲେ ବାଳିକା ବିଦ୍ୟାଳୟ, ଟ୍ରେନିଂ ସ୍କୁଲ ପ୍ରଭୃତି କଟକରେ ବ୍ୟାପିଷ୍ଟ ମିଶନାରୀମାନେ ପ୍ରତିଷ୍ଠା କରିଥିଲେ । ବୈଷୟିକ ଶିକ୍ଷା ଓ ମହିଳା ତାଲିମ ଶିକ୍ଷା ପାଇଁ ଖ୍ରୀଷ୍ଟିୟାନମାନେ ଉଦ୍ୟମ କରି କଟକରେ ବିଭିନ୍ନ ଅନୁଷ୍ଠାନ ମଧ୍ୟ ବସାଇଲେ ।

୧୮୬୯ରେ ବ୍ରାହ୍ମ ସମାଜ କଟକରେ ପ୍ରତିଷ୍ଠା ହେଲା । କଟକ ନଗରର ଶିକ୍ଷା, ସାହିତ୍ୟ ଓ ସାମାଜିକ ଜୀବନ ଇତିହାସରେ ଇଂରେଜ ସରକାର, ମିଶନାରୀ ଓ ବ୍ରହ୍ମଧର୍ମାବଲମ୍ବୀ ବ୍ୟକ୍ତିମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ଏ ନଗରର ଜନଜୀବନ ଧାରାରେ ଅଭୂତପୂର୍ବ ପରିବର୍ତ୍ତନ ପରିଲକ୍ଷିତ ହେଲା । କଟକ ସହିତ ଯୋଗାଯୋଗ ସୁଦୃଢ଼ କରିବା ଏବଂ ବାଣିଜ୍ୟ ବ୍ୟବସାୟର ସୁବିଧା ଦୃଷ୍ଟିରୁ ୧୮୭୯ ମସିହାରେ ବଙ୍ଗଳା ନାଗପୁର ରେଳପଥ କଟକକୁ କଲିକତା ଓ ମାନ୍ଦ୍ରାଜ ସହିତ ସଂଯୋଗ କରାଗଲା । କଟକରେ ଧାନ ବ୍ୟବସାୟର ସମୃଦ୍ଧି ଘଟିଥିଲା ଏବଂ ୧୮୭୦ ଖ୍ରୀଷ୍ଟାବ୍ଦରେ କଟକ ଓ ବାଲେଶ୍ୱରର ବଣିକମାନେ ମୁଖ୍ୟତଃ ପ୍ରଚୁର ପରିମାଣ ଧାନ ରପ୍ତାନୀ କରୁଥିଲେ । ଗୋପାଳି ଏବଂ ଅନେକ ପରିଓ୍ୱାରଙ୍କର ମରହଟ୍ଟା ସମୟରେ ଏହା ବାଣିଜ୍ୟିକ କେନ୍ଦ୍ର ଭାବେ ପରିଚିତ ଥିଲା । ଏହିଠାରେ ମଧ୍ୟ ଲୁଣ ବ୍ୟବସାୟର ସମୃଦ୍ଧି ଘଟିଥିଲା । କଟକ ନଗରର ସର୍ବାଙ୍ଗୀନ ଉନ୍ନତିକୁ ଆଖି ଆଗରେ ରଖି ୧୮୭୬ରେ ମ୍ୟୁନିସିପାଲିଟି ଗଢ଼ାଗଲା । ୧୮୮୨ରେ ଲର୍ଡ ରିପନ୍ ସ୍ୱାୟତ୍ତଶାସନ ନୀତି ପ୍ରଣୟନ କଲେ । ସେହି ବର୍ଷ ଜୁନ୍ ମାସ ୩୦ ତାରିଖରେ କଟକ ପ୍ରିଣ୍ଟିଂ କମ୍ପାନୀ କୋଠାରେ ବିହାରୀଲାଲ ପଣ୍ଡିତଙ୍କ ସଭାପତିତ୍ୱରେ ଜମିଦାର, ସରକାରୀ କର୍ମଚାରୀ ଏବଂ ଓକିଲ-ମାନଙ୍କର ଏକ ସଭା ହେଲା ।

ଏହି ନୂତନ ଆଇନ୍ ପ୍ରଣୟନକୁ ସ୍ୱାଗତ ଜଣାଇ ମଧୁସୂଦନ ଦାସ ଏକ ପ୍ରସ୍ତାବ ଆଗତ କଲେ ଏବଂ ଏହାକୁ ସମର୍ଥନ କଲେ ହାଜି ଅବଦୁଲ୍ ରହମନ୍ ମୁନ୍ସି । ୧୮୮୪ରେ ପ୍ରଥମ ଥର ପାଇଁ କଟକ ମ୍ୟୁନିସିପାଲିଟି ନିର୍ବାଚନ ହେଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ କଟକ ମୁଖ୍ୟ ଭୂମିକା ନେଇଥିଲା ଏବଂ ୧୯୩୬ ମସିହା ଏପ୍ରିଲ ପହିଲା ଠାରୁ ଏହା କାର୍ଯ୍ୟକାରୀ ହେଲା । କଟକ ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରଥମ ରାଜଧାନୀ । ଇଂରେଜମାନେ ଏହାକୁ ସବୁ ଦୃଷ୍ଟିରୁ ଆଗେଇ ନେଇ ପାରିଥିଲେ ।

ଏହାର ପ୍ରଥମ ଗଭର୍ଣ୍ଣର ହେଲେ ସାର ଜନ୍ ଅଷ୍ଟିନ୍ ହବାକ୍ । ରେଭେନ୍ସା କଲେଜ କୋଠାରେ ଅସ୍ଥାୟୀଭାବେ ସେକ୍ରେଟାରିଏଟ୍ କାର୍ଯ୍ୟ ଚାଲିଲା ଏବଂ ଲାଲବାଗ କୋଠି ଓଡ଼ିଶା ସରକାରୀ ଗୃହଭବନରେ କାର୍ଯ୍ୟକଲା ।

ବୈଦେଶିକମାନଙ୍କ ଦୃଷ୍ଟିରେ କଟକର ସ୍ଥାନ ଓଡ଼ିଶାରେ ଥିଲା ଅଦ୍ୱିତୀୟ । ଏହାର ଭୌଗୋଳିକ ଅବସ୍ଥିତି ସେମାନଙ୍କ ଦୃଷ୍ଟି କୋଣକୁ ଯେପରି ପ୍ରସାରିତ କରିଥିଲା । ଏହାର ଐତିହ୍ୟ, ପରମ୍ପରା, ବ୍ୟବସାୟକୁ ସେମାନେ ସେହିପରି ଅଧିକ ମୂଲ୍ୟବାନ ମନେ କରୁଥିଲେ । ଆଜିର ଭଗ୍ନ ବାରବାଟି ଦୁର୍ଗରୁ ସେମାନେ ତତ୍କାଳୀନ କଟକର ରାଜନୈତିକ ପାଣିପାଗ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲେ । ସେଥିପାଇଁ ଯେ କେହି ଶାସକ, କମିଶନର, ଗଭର୍ଣ୍ଣର ଅଥବା କଲେକ୍ଟର କଟକ ଆସୁଥିଲେ ସେମାନେ ଏହି ବାରବାଟୀ ନଗରର ସ୍ତୁତିଗାନ ନକରି ରହିପାରୁ ନଥିଲେ ।

# କଟକରେ ମହାତ୍ମାଗାନ୍ଧୀ

ଡକ୍ଟର ହରେକୃଷ୍ଣ ମହତାବ

୧୯୨୧ :

ରାତ୍ରି ଶେଷ । ଆସିଲା ସେ ଦିନ । ପ୍ରଭାତର ସମ୍ବାଦ ଶୁଣାଇଲେ ଚାରିଆଡ଼େ ଅସ୍ଥିର ହୋଇ କାକ କୋକିଳ କୁମ୍ଭଟୁଆ । 'ଜାଗ' 'ଜାଗ' ରବ ଚାରିଆଡ଼େ । ପ୍ରସ୍ତୁତକ ନାହାନ୍ତି, ଅଥଚ ପବନେ ପବନେ ପ୍ରଚାରିତ ହୋଇ ଯାଉଥାଏ ଗାନ୍ଧିଜୀଙ୍କ 'ଅସହଯୋଗ' । ସମ୍ବଲପୁରରେ ପ୍ରଥମେ ଛାତ୍ରମାନଙ୍କ ବିଦ୍ୟାଳୟ ବର୍ଜନ, ପରେ ପରେ, କଟକରେ କଲେଜ ବର୍ଜନ, ଓକିଲମାନଙ୍କ କଚେରୀ ବର୍ଜନ ଇତ୍ୟାଦି ଏତେ କ୍ଷିପ୍ରଗତିରେ ଚାଲିଥାଏ ଯେ ସେଥିସହିତ ପଦକ୍ଷେପ କରିବା ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପକ୍ଷେ ସମ୍ଭବ ହେଉ ନଥାଏ, କିନ୍ତୁ କେହି କାହାରି ପ୍ରତିଷ୍ଠାକୁ ଅପେକ୍ଷା କଲେ ନାହିଁ । ଚାଲିଲେ ସମସ୍ତେ ମହାତ୍ମାଗାନ୍ଧୀଙ୍କ ଜୟଗାନ କରି ।

ଗାନ୍ଧିଜୀଙ୍କ ଓଡ଼ିଶା ଆସିବା କଥା ହେଲା । ଅଦ୍ଭୁତ ଉତ୍ସାହ ଖେଳିଲା ଗ୍ରାମେ ଗ୍ରାମେ । ୧୯୨୧ ମାର୍ଚ୍ଚ ୨୨ ତାରିଖ ସକାଳ ପୁରୀ ଏକ୍ସପ୍ରେସ୍‌ରେ ଗାନ୍ଧିଜୀ କଟକରେ ପହଞ୍ଚିଲେ । ତତ୍ ପୂର୍ବଦିନ ଅର୍ଦ୍ଧରାତ୍ରିରେ ଭଦ୍ରଖ ଷ୍ଟେସନଠାରେ ବହୁ ଲୋକ ରୁଣ୍ଡ ହୋଇ ଗାନ୍ଧିଜୀଙ୍କୁ ଦେଖିବା ଲାଗି ଏପରି ବ୍ୟାକୁଳତା ପ୍ରକାଶ କରିଥିଲେ ଯେ ଗାନ୍ଧିଜୀ କଟକରୁ ଭଦ୍ରଖ ଆସିବା ପାଇଁ ପ୍ରତିଶ୍ରୁତି ଦେଇ ଯାଇଥିଲେ । ମାର୍ଚ୍ଚ ୨୩ ତାରିଖ ଦୋଳ ପୂର୍ଣ୍ଣିମା । ସାଧାରଣତଃ ଲୋକେ ହୋଲି ଖେଳରେ ଏହିଦିନ ମାତିଥାଆନ୍ତି, କିନ୍ତୁ ଏଥର ହେଲା ଆଉ ଏକ ପ୍ରକାରର ହୋଲିଖେଳ । ଆନନ୍ଦ ଉତ୍ସବ ଚାରିଆଡ଼େ । ପ୍ରାୟ ଦଶହଜାର ନରନାରୀ ଗାନ୍ଧିଜୀଙ୍କୁ ରେଳ ଷ୍ଟେସନରୁ ଶୋଭାଯାତ୍ରା ସହ କଟକ ସ୍ୱରାଜ ଆଶ୍ରମକୁ ପାଛୋଟି ଆଣିଥିଲେ । ବାସ୍ତବିକ କୀର୍ତ୍ତନମଣ୍ଡଳ ଏ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ଶହଶହ ସ୍ୱେଚ୍ଛାସେବକ ଶାନ୍ତିରକ୍ଷା କାର୍ଯ୍ୟର ଭାର ନେଇଥିଲେ । ଗାନ୍ଧିଜୀ ଗୋଟିଏ ସୁସଜ୍ଜିତ ମଟରକାରରେ ଶୋଭାଯାତ୍ରାରେ ଆସିଥିଲେ । ଯେଉଁ ବାଟରେ ସେ ଆସିଲେ, ତା'ର ଦୁଇପାଖରେ ଘର ସବୁ ପତ୍ରପୁଷ୍ପ ପତାକାଦ୍ୱାରା ସୁସଜ୍ଜିତ ହୋଇଥିଲା । ସ୍ତ୍ରୀ-ଲୋକମାନେ କୋଠା ଉପରୁ ପୁଷ୍ପ ବର୍ଷଣ କରୁଥିଲେ । 'ମହାତ୍ମାଗାନ୍ଧିଜୀ ଜୟ' ନିନାଦରେ

ଆକାଶ ମୁଖରିତ ହୋଇଥିଲା । (ଅମୃତବଜାର ପତ୍ରିକା ମାର୍ଚ୍ଚ ୨୭ ତାରିଖ ରିପୋର୍ଟ) । ୨୩ ତାରିଖ ସନ୍ଧ୍ୟାରେ କଟକ କାଠଯୋଡ଼ି ବାଲିରେ ପ୍ରାୟ ପଚିଶ ହଜାର ଲୋକଙ୍କର ଏକ ବିରାଟ ସଭାରେ ଗାନ୍ଧିଜୀ ଭାଷଣ ଦେଇଥିଲେ । ସେତେବେଳେ ସେ ଧୋତି ଜାମା ଓ ଟୋପି ପିନ୍ଧୁଥିଲେ । ସେଦିନ ସଭା ପରେ ସେ ମାରୱାଡ଼ି ଓ ଗୁଜରାଟୀ ବ୍ୟବସାୟୀମାନଙ୍କ ସହିତ ବିଦେଶୀ ବସ୍ତ୍ର ବର୍ଜନ ବିଷୟ ଆଲୋଚନା କରିଥିଲେ । ପରଦିନ ମାର୍ଚ୍ଚ ୨୪ ତାରିଖ ସକାଳ ୮ଟାରେ ମୁସଲମାନମାନଙ୍କ ସଭାରେ ଭାଷଣ ଦେଇଥିଲେ । ଦିନ ୨ଟାରେ ନାରୀମାନଙ୍କ ସଭା ଓ ସନ୍ଧ୍ୟା ୫ଟାରେ ଛାତ୍ର ଓ ଓକିଲମାନଙ୍କ ସଭାରେ କଂଗ୍ରେସର ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ଭାଷଣ ଦେଇଥିଲେ ।

୨୩ ତାରିଖ କାଠଯୋଡ଼ି ବାଲି ସଭାରେ ଗାନ୍ଧିଜୀ ଇଂରାଜୀ ଶିକ୍ଷାର ବ୍ୟର୍ଥତା ପ୍ରତିପାଦନ କରିବାକୁ ଯାଇ କହିଥିଲେ ଯେ, ରାମମୋହନ, ତିଳକ, ପ୍ରଭୃତି ଚୈତନ୍ୟ, କବିର, ନାନକ ପ୍ରଭୃତିଙ୍କ ତୁଳନାରେ ବାମନ ସ୍ୱରୂପ । ଏହି ମନ୍ତବ୍ୟ ଇଂରାଜୀ ଶିକ୍ଷିତ ସମାଜରେ ଓ ବିଶେଷତଃ ବ୍ରାହ୍ମ ସମାଜରେ ଅପ୍ରୀତିକର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସମ୍ବାଦପତ୍ରମାନଙ୍କରେ ଏପ୍ରକାର ମନ୍ତବ୍ୟର ସମାଲୋଚନା କରାହେଲା । ଗାନ୍ଧିଜୀ ଏହି ସମ୍ପର୍କରେ ୧୯୨୧ ଅପ୍ରେଲ ୨୧ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ଏକ ଲେଖା ପ୍ରକାଶ କରିଥିଲେ ।

## ୧୯୨୫ :

ଯେଉଁ ଶ୍ରେଣୀ ପ୍ରଥମେ ଅସହଯୋଗ ଆନ୍ଦୋଳନ ସମୟରେ ଇଂରେଜ ଶାସନ ସହିତ ସହଯୋଗ କରି ଶାସନ କ୍ଷେତ୍ରରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ, ସେ ଶ୍ରେଣୀର ବହୁ ମୁଖ୍ୟ ବ୍ୟକ୍ତି କ୍ରମେ ଶାସନର ନଗ୍ନ ସ୍ୱରୂପ ଦେଖିପାରି ମୋହମୁକ୍ତ ହେଲେ । ସେମାନଙ୍କ ମଧ୍ୟରେ ଓଡ଼ିଶାର ମଧୁସୂଦନ ଦାସ ପ୍ରଥମ । ଅସହଯୋଗ ଆନ୍ଦୋଳନ ସମୟରେ ସେ ବିହାର-ଓଡ଼ିଶାର ଜଣେ ମନ୍ତ୍ରୀ ହୋଇଥିଲେ, ମାତ୍ର ଅଳ୍ପ କେତେ ବର୍ଷ ପରେ ସେ ପଦ ତ୍ୟାଗ କରି ପୁଣି ଜନତା ଦଳକୁ ଫେରିଲେ । ସେ ନିଜ ଜୀବନରେ ବହୁ କୁଟୀର ଶିଳ୍ପ ସ୍ଥାପନ କରିଥିଲେ ଓ ପ୍ରୋତ୍ସାହନ ଦେଇଥିଲେ । ଏପରି କି ଗାନ୍ଧିଜୀଙ୍କ ଅରଟ ପ୍ରବର୍ତ୍ତନ ପୂର୍ବରୁ ସେ ଉତ୍କଳ ସମ୍ମିଳନୀରେ ଅରଟର ଉପଯୋଗିତା ବିଷୟରେ ପ୍ରସ୍ତାବ ଗ୍ରହଣ କରାଇଥିଲେ ଓ ନିଜେ ହାତକଟା ସୂତାର ହାତବୁଣା ଲୁଗା ପିନ୍ଧି ସମ୍ମିଳନୀରେ ଯୋଗଦେଇଥିଲେ ।

କଟକରେ 'ଉତ୍କଳ ଟେନେରି' ନାମରେ ଏକ ଶିଳ୍ପାନୁଷ୍ଠାନ ସେ ସ୍ଥାପନ କରିଥିଲେ । କ୍ରମେ ଏହାର ଆର୍ଥିକ ଅବସ୍ଥା ସଙ୍କଟାପନ୍ନ ହେଲା । ଗାନ୍ଧିଜୀଙ୍କ ସହାୟତାରେ ଏହାର ପୁନରୁଦ୍ଧାର କରିବା ପାଇଁ ସେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ ଓ ଆଲୋଚନା କରିଥିଲେ । ମନ୍ତ୍ରୀ ପଦରୁ ଇସ୍ତଫା ଦେବାପରେ ତାଙ୍କର ସମ୍ମାନ ଦେଶରେ ବହୁଗୁଣ ବଢ଼ି ଯାଇଥାଏ । ମଧୁବାବୁଙ୍କ ଆମନ୍ତ୍ରଣ କ୍ରମେ ଗାନ୍ଧିଜୀ ୧୯୨୫ ମସିହା ଅଗଷ୍ଟ ୧୯

ତାରିଖରେ କଟକ ଆସିଥିଲେ ଓ ମଧୁବାବୁଙ୍କ ଅତିଥି ହୋଇ ରହିଥିଲେ । ସେ ଉତ୍କଳ ଟେନେରୀ ପରିଦର୍ଶନ କରିଥିଲେ । ଏହାର ଆର୍ଥିକ ଅବସ୍ଥା ଅନୁଧ୍ୟାନ କରିବାପାଇଁ ସେ ସାଙ୍ଗରେ ଶ୍ରୀ ସତୀଶ ଦାସଗୁପ୍ତ ଓ ଅନ୍ୟ କେତେକ କଲିକତା ବ୍ୟବସାୟୀଙ୍କୁ ମଧ୍ୟ ଆଣିଥିଲେ । ଉତ୍କଳ ଟେନେରୀରେ ମଲା ଗୋରୁ ଚମଡ଼ାରେ ଯୋତା ତିଆରି ହେଉଥାଏ । ସେହି ପରୀକ୍ଷା ମଧ୍ୟ ସତୀଶବାବୁ କଲିକତାରେ କରୁଥାନ୍ତି ।

ଗୋରକ୍ଷାରେ ଉତ୍ସାହ ଥିବା ବ୍ୟବସାୟୀମାନଙ୍କ ଦୃଷ୍ଟି ଏହି ଟେନେରୀ ପ୍ରତି ଆକର୍ଷଣ କରିବା ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ଥିଲା ।

ଏଥର କଟକ ରହଣି କାଳରେ ମ୍ୟୁନିସିପାଲିଟି ହତାରେ ଏକ ସାଧାରଣ ସଭାରେ ଗାନ୍ଧିଜୀ ଭାଷଣ ଦେଇଥିଲେ ଓ କଟକ କୃଷ୍ଣାଶ୍ରମ ପରିଦର୍ଶନ କରିଥିଲେ, କିନ୍ତୁ ସେ ସମୟରେ ଏକ ଜଟିଳ ପ୍ରଶ୍ନର ସମାଧାନ ପାଇଁ ତାଙ୍କୁ ଅନୁରୋଧ କରାହୋଇଥିଲା । ସେ ସମ୍ପର୍କରେ ସେ ୧୯୨୫ ଅଗଷ୍ଟ ୨୭ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ଲେଖିଛନ୍ତି ।

କଟକ ରହଣିବେଳେ ଏକ ବାସ୍ତବ ସମସ୍ୟାର ସମାଧାନ କରିବାକୁ ମୋତେ ପଡ଼ିଥିଲା । ବିହାରର ହିନ୍ଦୀଭାଷୀ ଲୋକ ଓ ଓଡ଼ିଶାର ଓଡ଼ିଆ ଭାଷୀ ଲୋକଙ୍କ ମଝିରେ ଗୋଟିଏ ଜାତିର ଆଦିବାସୀ ବାସ କରୁଛନ୍ତି । ସେମାନଙ୍କର ପିଲାପିଲିଙ୍କର ଶିକ୍ଷା ପାଇଁ କ'ଣ କରିବାକୁ ହେବ ? ସେମାନଙ୍କୁ ହିନ୍ଦୀରେ ଶିକ୍ଷା ଦିଆଯିବ ନା ଓଡ଼ିଆରେ ? କିମ୍ବା ସେମାନଙ୍କୁ ସେମାନଙ୍କ କଥିତ ଭାଷାରେ ଶିକ୍ଷା ଦିଆଯିବ ? × × ନିଖିଳ ଭାରତର ସ୍ୱାର୍ଥ ଦୃଷ୍ଟିରୁ ବିଷୟଟିକୁ ଚିନ୍ତାକରି ମୁଁ ଉତ୍କଳୀୟ ବନ୍ଧୁମାନଙ୍କୁ ସୂଚନା ଦେଲି ଯେ, ଓଡ଼ିଆଭାଷୀ ଲୋକଙ୍କ ଭିତରେ ଓଡ଼ିଆ ଭାଷାକୁ ଦୃଢ଼ କରାଯାଉ ଓ ଆଦିବାସୀ ସନ୍ତାନ-ସନ୍ତତିମାନେ ହିନ୍ଦୀ ଶିକ୍ଷା କରନ୍ତୁ । ସ୍ୱଭାବତଃ ଦେବନାଗରୀ ଲିପି ସେମାନେ ବ୍ୟବହାର କରିବେ । ଅନ୍ୟ ସମସ୍ତଙ୍କୁ ନିଜ ଭାଷାକୁ ଟାଣିବାର ଭାବ ଏପରି ନିଷେଧକ ଓ ସଙ୍କୀର୍ଣ୍ଣ ଯେ ତାହା ଜାତୀୟତା ଓ ଆନ୍ତର୍ଜାତିକତା ବିରୋଧୀ । ମୋର କ୍ଷୁଦ୍ର ମତରେ ସବୁ ଅନୁନ୍ନତ କଥିତ ଭାଷାକୁ ବଳି ଦେଇ ମହାନ ହିନ୍ଦୁସ୍ତାନୀରେ ମିଶାଇ ଦେବା ଉଚିତ । ଏ ବଳିଦାନ ମହତ୍ତ୍ୱର ଉଦ୍ଦେଶ୍ୟରେ ହେବ ଆତ୍ମହତ୍ୟା ଉଦ୍ଦେଶ୍ୟରେ ନୁହେଁ ।

ଉତ୍କଳ ଟେନେରୀ ପ୍ରତି ଗୋହତ୍ୟା ବିରୋଧୀ ବ୍ୟବସାୟୀମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଗାନ୍ଧିଜୀ ୧୯୨୭ ନଭେମ୍ବର ୩ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ଲେଖିଛନ୍ତି ।

ଏହା ସତ ଯେ ବର୍ତ୍ତମାନ କଟା ଗୋରୁ ଗୁଡ଼ିକରୁ ଚମଡ଼ା ତିଆରି ହେଉଛି, କିନ୍ତୁ ଗତ ଯୁଦ୍ଧ ସମୟରେ ଭାରତ ସରକାର ମଲା ଗୋରୁ ଗୁଡ଼ିକରୁ ଭଲ ଚମଡ଼ା କରିବା ଉଦ୍ଦେଶ୍ୟରେ ପ୍ରଚୁର ଅର୍ଥ ବ୍ୟୟ କରିଥିଲେ । ଟେନେରୀ ବିଶେଷଜ୍ଞମାନେ ମୋତେ କହିଛନ୍ତି ଯେ କଟା ଗୋରୁ ଗୁଡ଼ିକରୁ, ଯେପରି ସୁନ୍ଦର ଚମଡ଼ା ପ୍ରସ୍ତୁତ ହୁଏ ମଲା ଗୋରୁ

ସ୍କୁଲରୁ ମଧ୍ୟ ସେହିପରି ହୋଇପାରିବ । ମୁଁ ନିଜେ ଏ ଦିଗରେ ପରୀକ୍ଷା ଚଳାଇଛି । କଟକରେ ଶ୍ରୀ ମଧୁସୂଦନ ଦାସ ବହୁବର୍ଷ ହେଲା ଏହା କରାଉଛନ୍ତି ଓ ସେ ମୋତେ କହିଛନ୍ତି ଯେ ଏହା ସଫଳ ହୋଇଛି । କଲିକତା ସରକାରଙ୍କ ଗବେଷଣା କେନ୍ଦ୍ର ମଧ୍ୟ ଏପ୍ରକାର ପରୀକ୍ଷା ଚଳାଇଛନ୍ତି ।

୧୯୨୭ :

ସେ ସମୟର ଓଡ଼ିଶାର ଅବସ୍ଥା ଭଗ୍ନ ମନ୍ଦିରର ଅବସ୍ଥା ପରି । ଶାସନ ପକ୍ଷରୁ ଆଘାତ ଓ ଅନ୍ୟ ଦିଗରୁ ଦାରିଦ୍ର୍ୟର କଷାଘାତ ଏ ଦୁଇ ଭିତରେ ଓଡ଼ିଶାର କର୍ମୀ ବ୍ୟତିବ୍ୟସ୍ତ । କେହି କାହାର କଥା ବୁଝିବାକୁ ନ ଥାନ୍ତି ବା ସବୁ ଜିଲ୍ଲାର ସମସ୍ତଙ୍କ ସହିତ ସମ୍ପର୍କ ରଖିବାର ବ୍ୟବସ୍ଥା ମଧ୍ୟ କିଛି ନଥାଏ । ଦୁର୍ଭାଗ୍ୟ ବଶତଃ ଓଡ଼ିଶା ସେତେବେଳେ ବିଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ ଥିବାରୁ ପରସ୍ପର ସମ୍ବନ୍ଧ ରଖିବା ମଧ୍ୟ କଠିନ ହୋଇଥାଏ । ଗଞ୍ଜାମ ସେତେବେଳେ ମାନ୍ଦ୍ରାଜ ପ୍ରଦେଶରେ ଓ ସେଠାରେ ଆନ୍ଧ୍ରମାନଙ୍କ ରାଜନୈତିକ ପ୍ରଭାବ କାର୍ଯ୍ୟ କରୁଥାଏ । ତଥି ସଙ୍ଗେସଙ୍ଗେ ଓଡ଼ିଆ କର୍ମୀମାନେ ଗାନ୍ଧିଜୀଙ୍କ ପ୍ରଦର୍ଶିତ ପଥରେ ଦୃଢ଼ତାର ସହିତ ଚାଲି ଥାଆନ୍ତି; କିନ୍ତୁ ଆନ୍ଧ୍ର ଓଡ଼ିଶା ସଂଘର୍ଷ ସେଠାର ମୁଖ୍ୟ ଭାବଧାରା ହୋଇଥିବାରୁ ଓଡ଼ିଶାର କାର୍ଯ୍ୟକ୍ରମପ୍ରତି ବାହାରର ଦୃଷ୍ଟି ପଡ଼ିବା କଠିନ ହେଉଥାଏ । ସେତେବେଳେ ନିଖିଳ ଭାରତ ଚର୍ଖା ସଂଘର ମୁଖ୍ୟ କାର୍ଯ୍ୟାଳୟ ବ୍ରହ୍ମପୁରରେ ଥାଏ ଏବଂ ଗଞ୍ଜାମ ଜିଲ୍ଲାରେ ଅନେକଗୁଡ଼ିଏ ଖଦି କେନ୍ଦ୍ର ପରିଚାଳିତ ହେଉଥାଏ । ପ୍ରତ୍ୟେକ କେନ୍ଦ୍ରରେ ଅନେକ କର୍ମୀ ସାଧାରଣଙ୍କ ସହିତ ମିଶି କାର୍ଯ୍ୟ କରୁଥାନ୍ତି । ସେହିପରି ପୁରୀ, କଟକ, ବାଲେଶ୍ୱରରେ ମଧ୍ୟ କାର୍ଯ୍ୟ ହେଉଥାଏ । ଏହି କାର୍ଯ୍ୟକୁ ପ୍ରଶ୍ରୟ ଦେବା ପାଇଁ ଗାନ୍ଧିଜୀ ଓଡ଼ିଶା ଆସିଲେ ମାସକ ପାଇଁ ।

(ଏହି ପର୍ଯ୍ୟାୟରେ···)

ଗାନ୍ଧିଜୀ ଡିସେମ୍ବର ୧୮ ତାରିଖରେ ଖୁରଦାରୋଡ଼ରୁ ବାହାରି ଉଦ୍ରାଖରେ ଟ୍ରେନ ଧରି କଟକରେ ସେହିଦିନ ପହଞ୍ଚିଲେ ।

ତାଙ୍କର ରକ୍ତଚାପ ବୃଦ୍ଧି ହେତୁ ସେ ଉପବାସ କଲେ ଓ ସମସ୍ତ କାର୍ଯ୍ୟକ୍ରମ ବନ୍ଦ କରିଦେଲେ । ୧୯ ତାରିଖ ମୌନ ଦିବସ ଥିଲେ ମଧ୍ୟ ଶ୍ରୀ ମଧୁସୂଦନ ଦାସଙ୍କୁ ସାକ୍ଷାତ ଦେବା ପାଇଁ ମୌନ ଭଙ୍ଗ କରିଥିଲେ । × × ୨୦ ତାରିଖ ଦିନ ସନ୍ଧ୍ୟାରେ କଟକରେ ଗାନ୍ଧିଜୀ ଏକ ସାଧାରଣ ସଭାରେ ଯୋଗ ଦେଇଥିଲେ, ମାତ୍ର ସେ (ଭଗ୍ନ ସ୍ୱାସ୍ଥ୍ୟ ହେତୁ) ବକ୍ତୃତା ଦେଇନଥିଲେ । ତାଙ୍କର ବକ୍ତୃତା ପଢ଼ି ଶୁଣାଇ ଦିଆ ହୋଇଥିଲା । ସଭାରେ ମ୍ୟୁନିସିପାଲିଟି ଓ ଲୋକାଲ ବୋର୍ଡ ପକ୍ଷରୁ ମାନପତ୍ରମାନ ଦିଆ ହୋଇଥିଲା । ଅନ୍ୟ ସ୍ଥାନ ପରି ଏଠାରେ ମଧ୍ୟ ଖଦି ପାଇଁ ଅର୍ଥ ସଂଗ୍ରହ କରାହୋଇଥିଲା । ଗାନ୍ଧିଜୀ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ଭାଷାକୋଷ' ପ୍ରଣୟନ ପରିଦର୍ଶନ କରିଥିଲେ । ୨୧ ତାରିଖ ଦିନ କୁଷ୍ଠାଶ୍ରମ ପରିଦର୍ଶନ କରିଥିଲେ ।

କଟକ ରହଣୀ ସମୟରେ ଗାନ୍ଧିଜୀ କର୍ମୀମାନଙ୍କ ସହ ଆଲୋଚନା ପାଇଁ ଅଧିକ ସମୟ ଦେଇଥିଲେ । (ସେ ଆଲୋଚନା ସମ୍ବନ୍ଧରେ ଡିସେମ୍ବର ୨ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ବିବରଣୀ ପ୍ରକାଶ କରିଥିଲେ ।)

## ୧୯୩୪ :

ସ୍ୱାଧୀନତା ଆନ୍ଦୋଳନ ମଧ୍ୟରେ ଅସ୍ପୃଶ୍ୟତା ଦୂରୀକରଣ ଆନ୍ଦୋଳନକୁ (ଗାନ୍ଧିଜୀଙ୍କୁ) ଏକ ଯୁଦ୍ଧ ବେଗରେ ଚଳାଇବାକୁ ହୋଇଥିଲା । କାରଣ, ତାଙ୍କର ଦୃଢ଼ମତ ଥିଲା ବାହାରର ସ୍ୱାଧୀନତାପ୍ରାପ୍ତି ରକ୍ଷା କରିହେବ, ଯଦି ଭିତରର ସ୍ୱାଧୀନତାପ୍ରାପ୍ତ ଦୃଢ଼ୀଭୂତ ହୁଏ । ସେଥିପାଇଁ ସେ ଆରମ୍ଭ କରିଥିଲେ ଭାରତ ବ୍ୟାପୀ ପରିଭ୍ରମଣ ହିନ୍ଦୁ ସମାଜର ସଂସ୍କାର ପାଇଁ । ସେହି ଭ୍ରମଣର ସାପ୍ତାହିକ ବିବରଣୀମାନ 'ହରିଜନ'ରେ ପ୍ରକାଶିତ ହୋଇଥିଲା । ୧୮।୫।୩୪ 'ହରିଜନ' ପତ୍ରିକାରେ ପ୍ରକାଶିତ ହୋଇଥିଲା ହରିଜନ ଭ୍ରମଣର ପ୍ରଥମ ବିବରଣୀ ଓ ୨୫।୫।୩୪ 'ହରିଜନ' ପତ୍ରିକାରେ ପ୍ରକାଶିତ ହୋଇଥିଲା ଭ୍ରମଣର ଦ୍ୱିତୀୟ ବିବରଣୀ ।

"୧୭ ତାରିଖ ଦିନ କାକଟପାଟଣା ଆସିଲୁ । ଏ ଗ୍ରାମ ଓ କଟକ ମଧ୍ୟରେ କାଠଯୋଡ଼ି ନଦୀ । × × ସନ୍ଧ୍ୟାରେ କାଠଯୋଡ଼ି ବାଲିରେ କଟକ ସହରବାସୀଙ୍କ ଏକ ବିରାଟ ସଭା ହୋଇଥିଲା । ଏ ସଭାର ବିଶେଷତ୍ୱ ଏହି ଥିଲା ଯେ, ଏଠାକୁ ସନାତନୀ ପଣ୍ଡିତ ଓ ତାଙ୍କର କଳାପତାକାଧାରୀ ସହଚରମାନେ ଆସିଥିଲେ ଓ ଗାନ୍ଧିଜୀଙ୍କ ନିର୍ଦ୍ଦେଶମତେ ଏମାନଙ୍କୁ ସଭାମଣ୍ଡପଠାକୁ ନିଆ ହୋଇଥିଲା ଓ ଅଳ୍ପ ସମୟ ପାଇଁ ଭାଷଣ ଦେବାକୁ ଅନୁମତି ଦିଆହୋଇଥିଲା । ଧୀର ଭାବରେ ପଣ୍ଡିତଙ୍କ କଥା ସଭାସ୍ଥ ଲୋକେ ଶୁଣିଥିବାରୁ ଗାନ୍ଧିଜୀ ଆନନ୍ଦ ପ୍ରକାଶ କରିଥିଲେ ଓ କହିଥିଲେ ଯେ ଏ ପ୍ରକାର ସୌଜନ୍ୟ ଧର୍ମ ଓ ସଂସ୍କୃତିର ସାରମର୍ମ । ସମସ୍ତେ ବିରୁଦ୍ଧ ମତବାଦୀମାନଙ୍କ ସହ ଭଦ୍ର ବ୍ୟବହାର କରି ସେମାନଙ୍କ ମତ ପରିବର୍ତ୍ତନ କରିବାକୁ ଚେଷ୍ଟା କରିବା ଉଚିତ । ହିଂସା ବା ବଳପ୍ରୟୋଗ ଦ୍ୱାରା କୌଣସି ଧର୍ମ ପ୍ରଗତି କେବେ ଆଗେଇ ପାରେ ନାହିଁ ।

## ୧୯୪୬ :

ଗାନ୍ଧିଜୀ ୧୯୪୪ ମଧ୍ୟଭାଗରେ ଜୀବନ୍ମୁକ୍ତ ହୋଇଥିଲେ ମଧ୍ୟ କଂଗ୍ରେସ କାର୍ଯ୍ୟ ନିର୍ବାହକ ସମିତି ସଦସ୍ୟମାନେ ମୁକ୍ତ ହେବାକୁ ଆହୁରି ବର୍ଷେ ଲାଗିଯାଇଥିଲା । ପୁଣି କଂଗ୍ରେସ ଅନୁଷ୍ଠାନ ଉପରୁ ନିଷେଧାଜ୍ଞା ପ୍ରତ୍ୟାହୃତ ହେବା ପାଇଁ ଆହୁରି ପ୍ରାୟ ୬ ମାସ ଲାଗିଯାଇଥିଲା । × × ୧୯୪୫ ମେ ମାସରେ ଜୀବନ୍ମୁକ୍ତ ହୋଇ ଗାନ୍ଧିଜୀଙ୍କ ସହ ସାକ୍ଷାତ କଲି ଓ କିଛିଦିନ ତାଙ୍କ ସଙ୍ଗରେ ରହିଲି ।

× × ଗାନ୍ଧୀଜୀଙ୍କୁ ଅନୁରୋଧ କରିଥିଲି ଓଡ଼ିଶା ଆସି ବୁଲିଯିବା ପାଇଁ । କଂଗ୍ରେସ ବେଆଇନ ଥିବାରୁ ସଭା ସମିତି ହୋଇ ପାରିବ ନାହିଁ । କେବଳ ଲୋକେ

ତାଙ୍କୁ ଦେଖିଲେ ଆଶ୍ୱସ୍ତ ହେବେ । ଗାନ୍ଧିଜୀ ଆସାମରୁ ମାନ୍ଦ୍ରାଜ ଯିବା ବାଟରେ ମଝିରେ ମଝିରେ ବିଭିନ୍ନ ଷ୍ଟେସନରେ ଲୋକଙ୍କ ସହିତ ମିଶିବେ ବୋଲି କହିଥିଲେ । + + ଟ୍ରେନ୍ କଟକରେ ମଧ୍ୟରାତ୍ରିରେ ପହଞ୍ଚିଲା । ବିଶାଳ ଜନତା ଷ୍ଟେସନରେ ରୁଣ୍ଡ ହୋଇଥିଲେ, ମାତ୍ର ଏତେ ପାଟିତୁଣ୍ଡ ଓ ବିଶୃଙ୍ଖଳା ଘଟିଲା ଯେ, ଗାନ୍ଧିଜୀ ବାହାରକୁ ଆସି ତିରସ୍କାର କରି କହିଲେ ଯେ, "ଓଡ଼ିଶାକୁ ସେ ଏତେ ସ୍ନେହ କରନ୍ତି ଓ ଯେଉଁ ଓଡ଼ିଶାରେ ସେ ହରିଜନ ପଦଯାତ୍ରା କରିଥିଲେ, ସେହି ଓଡ଼ିଶାରୁ ଯାହା ଆଶା କରାଯାଉଥିଲା ତାହା ହେଉ ନାହିଁ, ଏହି କଅଣ ଅହିଂସା ? ଏହି କଣ ଶୃଙ୍ଖଳା—ଯାହାକୁ ନେଇ ଆମେ ଏଟମ୍‌ବମ୍‌ର ସମ୍ମୁଖୀନ ହେବା ? ହିଂସା ଅହିଂସା ଭିତରୁ ଗୋଟାକୁ ବାଛି ନେବାକୁ ହେବ । ସ୍ୱହିଂସାକୁ ଗ୍ରହଣ ଦେବାର ସ୍ୱାଧୀନତା ସେମାନଙ୍କର ଅଛି, କିନ୍ତୁ ଅହିଂସା ନାମ ମୁହଁରେ ନେଇ ଯଦି ହିଂସା କଥା ସେମାନେ ଭାବୁଛନ୍ତି, ତେବେ ସେମାନେ ନିଜକୁ ଓ ଜନମତକୁ ପ୍ରବଞ୍ଚନା କରୁଛନ୍ତି । ମୁଁ ତୁମର ଆନନ୍ଦ ଧ୍ୱନି ଚାହେଁ ନାହିଁ । ମୁଁ ଚାହେଁ ତୁମର ଆତ୍ମାରୁ କଳୁଷ ଚାଲିଯାଉ । ସେଇଥିରେ ମୋର ଆନନ୍ଦ ହେବ । କୋଳାହଳ ମୋତେ ଆନନ୍ଦ ଦେବ ନାହିଁ ।"



# ଓଡ଼ିଆରେ ଅନୁବାଦ ସାହିତ୍ୟର ଇତିକଥା

**ଶ୍ରୀ ଆର୍. ପି. ଶାସ୍ତ୍ରୀ**

ଓଡ଼ିଶାର ସାହିତ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ ଓ ଲୋକଗୀତ, ଲୋକନୃତ୍ୟ, ପୁରାଣ ଧର୍ମଶାସ୍ତ୍ର ଅତି ପ୍ରାଚୀନ । ସଂସ୍କୃତ ଭାଷା, ସଂସ୍କୃତ ସାହିତ୍ୟ ଓ ଦର୍ଶନ ଶାସ୍ତ୍ରରେ ଓଡ଼ିଶାର ଉତ୍କଳୀୟ ମନୀଷୀମାନଙ୍କର ପାଣ୍ଡିତ୍ୟ, ପାରଦର୍ଶିତା ଓ ନୈପୁଣ୍ୟ ଅତି ଉଚ୍ଚ-କୋଟୀର ଥିଲେ ହେଁ ବ୍ରିଟିଶ ଶାସନ ସମୟରେ ଏହାର ଗ୍ଲାନି ଘଟିଥିଲା । କିନ୍ତୁ ଭସ୍ମାଚ୍ଛାଦ ବହ୍ନି ପରି ଉତ୍କଳ ସାହିତ୍ୟ ଅଗ୍ନି ସ୍ଫୁଲିଙ୍ଗ ଆଚ୍ଛାଦିତ ହୋଇ ରହିଆସିଥିଲା । ଜଗନ୍ନାଥ ଧର୍ମ ଓ ସଂସ୍କୃତି ଆମ ରାଜ୍ୟର ସାମାଜିକ ଓ ଆଧାତ୍ମିକ ଜୀବନ ମୂଳାଧାର ହୋଇଲେ ହେଁ ରଣକୌଶଳ, ନୌବାଣିଜ୍ୟ ଏବଂ ଦେଶ ବିଦେଶରେ ଜଗନ୍ନାଥଧର୍ମ ଉତ୍କଳ ସାହିତ୍ୟର ପ୍ରସାର ବିଶେଷତଃ ଖ୍ୟାତିଲାଭ କରିଥିଲା ।

ସପ୍ତଦଶ ଶତାବ୍ଦୀ ଓ ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଶାର ସାହିତ୍ୟ ସାମଗ୍ରିକ ଭାବରେ ପରିପୂର୍ଣ୍ଣତା ଲାଭ କରିଥିଲେ ହେଁ, ଊନବିଂଶ ଶତାବ୍ଦୀର ମଧ୍ୟମ ଓ ଶେଷ-ପର୍ଯ୍ୟାୟରେ ଉତ୍କଳ ସାହିତ୍ୟ ପଡ଼ୋଶୀ ରାଜ୍ୟମାନଙ୍କଠାରୁ ପ୍ରବଳ ଆକ୍ରମଣର ସମ୍ମୁଖୀନ ହୋଇଥିଲା । ଉତ୍କଳ ସାହିତ୍ୟକୁ ଏହି ଅଞ୍ଚଳରୁ ଲୋପ କରି ତା ବଦଳରେ ବଙ୍ଗସାହିତ୍ୟ ଓ ବଙ୍ଗଭାଷାକୁ ପ୍ରତିଷ୍ଠିତ କରିବା ପାଇଁ ସଙ୍ଗଠିତ ଉଦ୍ୟମ ହୋଇଥିଲା । କିନ୍ତୁ ଉତ୍କଳର ବୀରପୁତ୍ର, କବି, ଲେଖକ ଓ ସାହିତ୍ୟିକମାନଙ୍କ ପ୍ରଗାଢ଼ ଉଦ୍ୟମ ବଳରେ ସେହି ଅପପ୍ରୟାସ ପରିସମାପ୍ତି ଘଟିଥିଲା ସତ କିନ୍ତୁ ପ୍ରଶାସନିକ କ୍ଷେତ୍ରରେ ସେହି ଉଦ୍ୟମର ପ୍ରତିଫଳନ ଘଟିଥିଲା । ଓଡ଼ିଆ ସାହିତ୍ୟକୁ ଯେଉଁ କବି, ଲେଖକ, ସାହିତ୍ୟିକମାନେ ପୁନର୍ଜୀବିତ କରି ରଖିଥିଲେ ଓ ତାର ନବବିକାଶରେ ସାରଥି ସ୍ୱରୂପ ଓଡ଼ିଆମାନଙ୍କୁ ପଥପ୍ରଦର୍ଶନ କରିଥିଲେ ସେମାନଙ୍କ ମଧ୍ୟରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର, ଭକ୍ତକବି ଜୟଦେବ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତକବି ଗୋପାଳ କୃଷ୍ଣ ପଟ୍ଟନାୟକ, ଭକ୍ତକବି ଜଗନ୍ନାଥ ଦାସ, ଶାକ୍ତକବି ସାରଳାଦାସ, କେଶବ କୋଇଲିର ଲେଖକ ମାର୍କଣ୍ଡେୟ ଦାସ, ଭୀମଭୋଇ, କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ, ସ୍ୱଭାବକବି ଗଙ୍ଗାଧର ମେହେର, ବାମଣ୍ଡା ରାଜା ସୁଢ଼ଳଦେବ, ଟିକାଟି ରାଜା ରାଧାମୋହନ ରାଜେନ୍ଦ୍ର, ଜୟପୁର ମହାରାଜା ବିକ୍ରମଦେବ ବର୍ମା, ପଣ୍ଡିତ ନୀଳକଣ୍ଠ,

ପଣ୍ଡିତ ଗୋଦାବରୀଶ, ରାମଚନ୍ଦ୍ର ଆଚାର୍ଯ୍ୟ ବିଭିନ୍ନ ସମୟରେ ଲେଖନୀ ଗ୍ରନ୍ଥାକାରେ ଉତ୍କଳ ସାହିତ୍ୟର ବିଭିନ୍ନ ବିଭବର ଅଭିବୃଦ୍ଧି ସାଧନ କରିଛନ୍ତି । ସାହିତ୍ୟ କେବଳ ପଦ ସଂଯୋଜନ ଦ୍ୱାରା ସୃଷ୍ଟି ହୁଏ ନାହିଁ । ସାହିତ୍ୟ ରସଗର୍ଭକ, ମନୋରଞ୍ଜକ ହେବା ଆବଶ୍ୟକ, ସାହିତ୍ୟରେ ରସ ଓ ଅଳଙ୍କାର, ତାର ଚମତ୍କାରିତା ଓ ଉପଯୋଗୀତାଭିତ୍ତି ବସ୍ତୁାମକ ଅଟେ ।

କବି ଉପେନ୍ଦ୍ର ଭଞ୍ଜ ତାଙ୍କ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟଗୁଡ଼ିକରେ ଅଳଙ୍କାର ରସ ଓ ବ୍ୟଞ୍ଜନା ଅଭିବ୍ୟକ୍ତ ଏପରି ମନୋମୁଗ୍ଧକର ହୋଇଛି ଯେ ଯେଉଁମାନେ ହଠାତ୍ ତାର ତାତ୍ପର୍ଯ୍ୟ ବୁଝିପାରନ୍ତି ନାହିଁ ତଥାପି ସେହି କବିତାଗୁଡ଼ିକର ଲଳିତ କୋମଳକାନ୍ତ ପଦାବଳି ଦ୍ୱାରା ଅଭିଭୂତ ହୋଇ ପଡ଼ିଥାନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡସୁନ୍ଦରୀରେ 'ଦେଖିରେ ନଳିନୀ ନଳିନୀ ନଳିନୀରେ ପୂରିତ, ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରରେ ଶୋଭିତ" ଏହି ପଂକ୍ତିର ଆବୃତ୍ତି ତାନ ସ୍ୱର ଲୟ ସମନ୍ୱୟରେ ଶୁଣିବାମାନେ ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ପଡ଼ିଥାନ୍ତି । ସେହିପରି ଲାବଣ୍ୟବତୀ କାବ୍ୟରେ "ଦେଖି ନବକାଳିକା, ବିକାଳୀକା ମାଳିକା, ଆଳି କାଳୀକା କାନ୍ତସୁନ୍ଦରୀ ରକ୍ଷା କେମନ୍ତ କରି କରି ବା ମନ୍ତ୍ରକରି" ଇତ୍ୟାଦି ଶବ୍ଦ ଆଦିର କବିତା ଶ୍ରବଣରେ ଶ୍ରୋତାମାନେ କିଭଳି ଅନୁଭବ କରନ୍ତି ବା କି ପ୍ରେରଣା ପାଆନ୍ତି ତାହା ଅନୁଭବୀ ମାନେ ହିଁ କହିପାରିବେ । ସେହିପରି ଭକ୍ତକବି ଜୟଦେବଙ୍କ ଦଶାବତାର ସ୍ତୋତ୍ରାବଳୀ ସଂସ୍କୃତରେ ଲିଖିତ ହେଲେ ମଧ୍ୟ ସେ ଏତେ ହୃଦୟସ୍ପର୍ଶୀ ତାହା ଗାଇବା ଓ ଶୁଣିବା ଲୋକେ କିଛିକ୍ଷଣ ପାଇଁ ସଂସାର ମୋହ ଜାଲରୁ ମୁକ୍ତ ହୋଇ ପଡ଼ିଥାନ୍ତି ।

"ଯ୍ୟାହି ମାଧବ, ଯ୍ୟାହି କେଶବ
ମା ବଦ କୈତବ ବାଦଂ
ତା ଅନୁସ୍ମଂ, ସରଣୀରୁହ ଲୋଚନ
ଯାତବ ହରତି ବିଷାଦମ୍"

ରାଜାଙ୍କର ଏହି ଉକ୍ତି କି ଭାବନାର ଅଭିବ୍ୟଞ୍ଜକ ତାହା ଯେଉଁମାନେ ଅନୁଧ୍ୟାନ କରିବେ ସେହିମାନେ ହିଁ ଅନୁଭବ କରି ପାରିବେ ।

"ମେଘୈର୍ମେଦୁର ମମ୍ବରମ୍ ବନଭୁବଃ
ଶ୍ୟାମା ତମାଳ ଦ୍ରୁମୈ ଉପରୁନକ୍ତରୟଂ
ତ୍ୱମେବ ତଦିମଂ ରଥେ ଗୃହପ୍ରାପୟଂ
ଇତ୍ଥମ ନନ୍ଦ ନିଦେ୍ର୍ଦଶତ ଚଳିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ
ରାଧାମାଧବୟୋଃ ଜୟନ୍ତୀ ଯମୁନା କୂଳେ ରହ କେବଳୟୋଃ '

ଏହି ସଂସ୍କୃତ ପଦାବଳୀର ଆଳଙ୍କାରିକ ବ୍ୟଞ୍ଜନା ବିଭକ୍ତି କିପରି ହୃଦୟସ୍ପର୍ଶୀ ହୋଇଛି ତାହା ଶ୍ରୋତା ଓ ବକ୍ତାମାନେ ଅନୁଭବ କରିପାରିବେ । କବିସୂର୍ଯ୍ୟ ବଳଦେବ ରଥ

ଓଡ଼ିଆ ସାହିତ୍ୟକୁ ଏପରି ରସମୟ କରିଥିଲେ ତାହା ଏ ସାହିତ୍ୟର ଇତିହାସରେ ଚିରଦିନ ଅମ୍ଳାନ ଜ୍ୟୋତି ସ୍ୱରୂପ ରହିବ । କ ଠାରୁ କ୍ଷ ପର୍ଯ୍ୟନ୍ତ ଆଦ୍ୟାକ୍ଷର ସଂଯୁକ୍ତ ଚମ୍ପୂ ଓ ସେଥିରେ ଯେଉଁ ଆଳଙ୍କାରିକ ଶବ୍ଦ ବିନ୍ୟାସ ଓ ଭାବର ପରିପ୍ରକାଶ ହୋଇଛି ତାହା ସମସ୍ତ ସାହିତ୍ୟପ୍ରେମୀଙ୍କୁ ଉଦ୍‌ବୁଦ୍ଧ ଓ ଆହ୍ଲାଦିତ କରୁଥିବ ତାହା ନିଃସନ୍ଦେହରେ କୁହାଯାଇପାରେ ।

'ଖ' ଅକ୍ଷର ଆଦ୍ୟରେ ସେ ଯେଉଁ କବିତା ଲେଖିଛନ୍ତି ତାହା ନିଶ୍ଚିତ ଭାବରେ ମନୁଷ୍ୟର ଜୀବନର ଅନୁଭୂତି ଉପରେ ଆଧାରିତ ।

"ଖଗ ହୋଇ ସୁରତରୁ କୁସୁମ ବାଞ୍ଛିଲୁରେ
ଖମଣୀମଣ୍ଡଳକୁ କର ବଢ଼ାଇଲୁରେ
ଖେଳାଇଲା ଖଞ୍ଜନାକ୍ଷି କି ସାହସ କଲୁରେ
ଖଳକାର ନୋହି କଳାନାଗକୁ ଗୁଳିଲୁରେ ।"

କବିସୂର୍ଯ୍ୟଙ୍କ ଏହି ଚମ୍ପୂ ଯେତେଦୂର ସମ୍ଭବ ମହାକବି କାଳିଦାସଙ୍କ ରଚିତ ରଘୁବଂଶ ମହାକାବ୍ୟର ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଅଭିବ୍ୟକ୍ତ ଭାବଧାରାରୁ ସଂଗୃହୀତ । କାଳିଦାସ ଲେଖିଛନ୍ତି ମନ୍ଦକବି, ଯଶପ୍ରାର୍ଥୀ କବିସ୍ୟାମୁପହାସ୍ୟତାଂ, ପ୍ରାଂଶୁଲଭ୍ୟେ ଉଦବାହୁରିବ ବାମନଃ ଇତ୍ୟାଦି । ଭକ୍ତକବି ଗୋପାଳକୃଷ୍ଣ ତାଙ୍କର ରାଧାକୃଷ୍ଣ ଭକ୍ତିମୂଳକ କବିତାବଳୀରେ ଲେଖିଯାଇଛନ୍ତି—

"ଜଣାପଡ଼ିଲାରେ
ବଣାମୃଗାକ୍ଷୀ ତୋ ଗୁଳି
ଅଣାଇ କପଟେ ବଣା କରି ଦାଟେ
ଠଣାକୁ ଦେବାର ପେଲି ।"

ଏହି କବିତାରେ ଯମକ ଓ ଅଳଙ୍କାର ଏପରି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଓ ଏପରି ଶ୍ରୁତି ମଧୁର ଯେ ଦେଢ଼ ଶତାବ୍ଦୀ ତଳେ ଜଞ୍ଜାଳବିହୀନ ଉତ୍କଳୀୟମାନେ ଏହି କବିତାକୁ ସଙ୍ଗୀତ ମାଧ୍ୟମରେ ପଢ଼ି ଉପଭୋଗ କରୁଥିଲେ ।

ସେହିପରି କବିବର ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ଯୁଗରେ କବିତା ଓ ଗଦ୍ୟ ସାହିତ୍ୟର ସୃଷ୍ଟି ହେଲା । ଫକୀରମୋହନ କେନ୍ଦୁଝର ରାଜଦରବାରରେ କାର୍ଯ୍ୟକରି ମଧ୍ୟ ନିଜର ଅସାଧାରଣ ପ୍ରତିଭା ଓ ସାହିତ୍ୟ ସାଧନା ବଳରେ ଓଡ଼ିଆ ସାହିତ୍ୟକୁ ଯେଉଁ ଦାନ କରି ଯାଇଛନ୍ତି ତାହା ଅତୁଳନୀୟ । ତାଙ୍କ ଛ'ମାଣ ଆଠଗୁଣ୍ଠରେ ସମାଜରେ ପ୍ରଚଳିତ ଆର୍ଥିକ ବିଷମତା, ଧର୍ମଦ୍ରୋହ, ଦରିଦ୍ରର ଶୋଷଣର ଚିତ୍ର ପ୍ରକାଶ ପାଇଛି । ଏବେ ମଧ୍ୟ ସେହି ଚିତ୍ର ସମାଜରେ ଦେଖିବାକୁ ମିଳୁଛି । ଆମେ ଶୋଷଣବିହୀନ ସମାଜ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ରାଜନୀତିକ ଧ୍ୱନି ଦେଉଥିଲେ ହେଁ ସ୍ୱାଧୀନତାର ୪୫ ବର୍ଷପରେ ମଧ୍ୟ ସେହି ଧ୍ୱନି ଧ୍ୱନିରେ ହିଁ ରହିଛି । ଫକୀରମୋହନଙ୍କ ପ୍ରାଣରେ

ବ୍ୟାକୁଳତା ସମାଜର ନ୍ୟାୟ ପ୍ରତିଷ୍ଠା ପାଇଁ ଯେପରିଭାବେ ତାଙ୍କ ଲେଖାରେ ପରିଲକ୍ଷିତ ହୋଇଛି ତଦ୍ୱାରା ଆମେ ଉଦ୍‌ବୁଦ୍ଧ ହେଲେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ ଆଦର୍ଶ ଠାରୁ ବହୁ ଦୂରରେ ରହି ଯାଉଅଛୁ । ଏହାହିଁ ଆମର ରାଜନୈତିକ ଜୀବନର ସଙ୍କଳିତ ଗୀତ ।

କବିବର ରାଧାନାଥ, ମଧୁସୂଦନଙ୍କ ସମୟରେ କଟକ ସହର ଓ ଓଡ଼ିଶାର ବିଭିନ୍ନ ସହରରେ ଓଡ଼ିଆ ଭାଷାରେ ସମ୍ବାଦ ସାହିତ୍ୟ ସୃଷ୍ଟି ହେଲା । ସମ୍ବାଦ ସାହିତ୍ୟ ମୁଖ୍ୟତଃ ଲୋକାଭିମୁଖୀ ଓ ସେଥିରେ ଜନସାଧାରଣଙ୍କର ସମସ୍ୟାବଳୀ ସରଳ ଓ ବୋଧଗମ୍ୟ ଭାବରେ ପ୍ରତିଫଳିତ ହୋଇଥିଲା । ଯେଉଁମାନେ କଟକ ତଥା ରାଜ୍ୟର ବିଭିନ୍ନ ସହରରେ ସମ୍ବାଦ ସାହିତ୍ୟର ଅୟମାରମ୍ଭ କରିଥିଲେ, ସେମାନଙ୍କ ମଧ୍ୟରେ 'ଉତ୍କଳ ଦୀପିକା'ର ସମ୍ପାଦକ ଗୌରୀଶଙ୍କର ରାୟ, ପ୍ରଜାବନ୍ଧୁ, ଗଞ୍ଜାମ ଗୁଣଦର୍ପଣ, ହିତୈଷିଣୀ ସମ୍ବାଦବାହିକା, ଓଡ଼ିଆ ନବସମ୍ବାଦ ପ୍ରଭୃତି ଅନ୍ତର୍ଭୁକ୍ତ । ଉତ୍କଳ ଦୀପିକା ୧୮୬୬ରେ କଟକରୁ ତତ୍କାଳୀନ କମିଶନର T. E Revensha ଙ୍କର ସିରସ୍ତାଦାର ବିଚିତ୍ରାନନ୍ଦ ଦାସଙ୍କ ଆର୍ଥିକ ସାହାଯ୍ୟ ଓ ଅଦମ୍ୟ ଉତ୍ସାହ ଯୋଗୁ ଗୌରୀଶଙ୍କରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । ଏହି ପତ୍ରିକା ମାଧ୍ୟମରେ ଓଡ଼ିଶାର ସାହିତ୍ୟ ଯେପରି ପରିପୁଷ୍ଟ ହେଲା ; ସେହିପରି ଭାବରେ ଓଡ଼ିଶାର ତତ୍କାଳୀନ ଦୁର୍ଭିକ୍ଷଜନିତ ସାମାଜିକ ଚିତ୍ର ପ୍ରକାଶ ପାଇଥିଲା । ଏହା ଫଳରେ କେବଳ ଯେ T. E Revenshaଙ୍କ ଆଖି ଖୋଲିଗଲା ତାହା ନୁହେଁ ବ୍ରିଟିଶ୍ ସରକାର ଅଧିନସ୍ଥ ବଙ୍ଗଲାଟଙ୍କ ଅପାରଗତା ଓ ରେଭେନ୍‌ସାଙ୍କ ପ୍ରଶାସନିକ ଅକୁଶଳତା ହଣ୍ଟରସାହେବଙ୍କ ଦ୍ୱାରା ତଦନ୍ତ କରାଯାଇଥିଲା ।

ସାହିତ୍ୟିକ ଲେଖାମାଧ୍ୟମରେ ଦୁର୍ଭିକ୍ଷର ଭୟାବହ ଚିତ୍ର ପ୍ରକାଶ ପାଇଲା । ଓଡ଼ିଶାର ତତ୍କାଳୀନ ସରକାରୀ ରିପୋର୍ଟରୁ ଜଣାଯାଏ, ପ୍ରାୟ ଦଶଲକ୍ଷ ଲୋକ ଏହି ଦୁର୍ଭିକ୍ଷରେ ଖାଇବାକୁ ନପାଇ ପ୍ରାଣ ହରାଇଥିଲେ । ସେହି ସମୟରେ ଧାନ ମହଣକ ଟଙ୍କାକରୁ କମ୍ ଦାମ୍ ଥିଲା ବୋଲି ସରକାରୀ ରିପୋର୍ଟରେ ସ୍ଥାନ ପାଇଅଛି । ଉତ୍କଳ ଦୀପିକାରେ ଯେପରି ସରକାରୀ ପ୍ରଶାସନିକ ଅପାରଗତାକୁ ସାହିତ୍ୟିକ ଲେଖା ମାଧ୍ୟମରେ ପ୍ରକାଶ ପାଇଥିଲା, ସେହିପରି ପ୍ରଜାବନ୍ଧୁ, ସମ୍ବାଦବାହିକା, ସମ୍ବଲପୁର ହିତୈଷିଣୀ, ନବସମ୍ବାଦ ପ୍ରଭୃତି ପ୍ରକାଶ ପାଇଥିଲା ।

ଏହି ସମୟରେ ଅନେକ ଗୁଡ଼ିଏ ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କରିଥିଲା । ସେଗୁଡ଼ିକ ହେଲେ, କଟକର ଇନ୍ଦ୍ରଧନୁ, ବାମଣ୍ଡାର ବିଜୁଳି, ବାରିପଦାର ଉତ୍କଳପ୍ରଭା, ବାଲେଶ୍ୱରର ସଂସ୍କାରକ, କଟକର ଉତ୍କଳ ସାହିତ୍ୟ ଓ ମୁକୁର ପ୍ରଭୃତି ବିଭିନ୍ନ ପତ୍ର-ପତ୍ରିକା ସାହିତ୍ୟର ଭଣ୍ଡାରକୁ ସୁସମୃଦ୍ଧ କରିଥିଲେ । ଏହି ପତ୍ରିକା ଗୁଡ଼ିକରେ ମଧ୍ୟ ସାହିତ୍ୟ ମାଧ୍ୟମରେ ସମାଜର ପରିବେଷଣ ଅତି ଉଚ୍ଚକୋଟୀର ହୋଇଥିଲା । ସେତେବେଳର ସମ୍ପାଦକୀଗୁଡ଼ିକ ସତ୍ୟ ଓ ଆଦର୍ଶ ସାମାଜିକ ନୈତିକ ମୂଲ୍ୟବୋଧର ଦ୍ୟୋତକ । ୧୯୧୩ରେ ଶଶିଭୂଷଣ ରଥ 'ଆଶା' ପ୍ରକାଶ କରି ଉତ୍କଳର ମିଶ୍ରଣ ବା

ଓଡ଼ିଶା ପ୍ରଦେଶ---ଆନ୍ଦୋଳନକୁ ମୁଖ୍ୟତଃ ଲକ୍ଷ୍ୟ ସ୍ୱରୂପ ଗ୍ରହଣ କରିଥିଲେ । ଏହି ପତ୍ରିକାରେ ଓଡ଼ିଶାର ବହୁ ସ୍ୱନାମଧନ୍ୟ ସାମ୍ବାଦିକ ତାଲିମ ପାଇଥିଲେ । ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଗୋଦାବରୀଶ ମହାପାତ୍ର, ରାମପ୍ରସାଦ ମିଶ୍ର, ଶ୍ରୀହର୍ଷ ମିଶ୍ର ସାହିତ୍ୟିକ ମହେନ୍ଦ୍ର ପଟ୍ଟନାୟକ, ସମାଜ ସଂସ୍କାରକ ଓ ସାହିତ୍ୟିକ ଶରତ ମହାପାତ୍ର ପ୍ରମୁଖଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଏହି ସମସ୍ତ ମଧ୍ୟରେ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ ପତ୍ରିକା ମୁଦ୍ରଣକରି ଆଶା ପ୍ରେସ୍‌ରୁ ପ୍ରକାଶ କରୁଥିଲେ । ଶଶିଭୂଷଣଙ୍କ 'ଆଶା' ପତ୍ରିକା, ଗୋପାଳଚନ୍ଦ୍ର ପ୍ରହରାଜ, ପ୍ରମୁଖ ବହୁ ସ୍ୱନାମଧନ୍ୟ ସାହିତ୍ୟିକ ଓ ଲେଖକ ଲେଖାଲେଖି କରୁଥିଲେ । କିଛି ସମୟ ପାଇଁ ମଧୁସୂଦନ 'ଦି ଓଡ଼ିଆ' ବୋଲି ଗୋଟିଏ ପତ୍ରିକା ପ୍ରକାଶ କରୁଥିଲେ । ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ସତ୍ୟ ସମାଚାର ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ । କିନ୍ତୁ ପଣ୍ଡିତ ଗୋପବନ୍ଧୁ ଦେଶର ଅସହଯୋଗ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରକାଶ କରିବା ପାଇଁ 'ସମାଜ' ସାପ୍ତାହିକ ରୂପେ ପ୍ରକାଶ କଲେ । କିନ୍ତୁ ୧୯୩୧ରେ ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ବେଳେ 'ସମାଜ' ଦୈନିକ ସମ୍ବାଦପତ୍ରରେ ପରିଣତ ହେବା ଆଗରୁ ୧୯୨୮ରେ ଗୋପବନ୍ଧୁ ଇହଲୀଳା ସମ୍ବରଣ କଲେ । ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ, ପଣ୍ଡିତ ଲିଙ୍ଗରାଜ ପ୍ରମୁଖଙ୍କ ନେତୃତ୍ୱରେ ସମାଜ ୧୯୩୧ରେ ଦୈନିକରେ ପରିଣତ ହେଲା । ସମାଜକୁ ଦୈନିକ ସମ୍ବାଦପତ୍ରରେ ପରିଣତ କରିବାରେ ଶ୍ରୀ ରାଧାନାଥ ରଥଙ୍କ ପରିକଳ୍ପନାଗତ ନୈପୁଣ୍ୟ କେତେ ପରିମାଣରେ ସହାୟକ ହୋଇଛି ତାହାର କଳନା କରିବା ଏକ ଗବେଷଣାସାଧ୍ୟ ବ୍ୟାପାର ।

ସାହିତ୍ୟକ୍ଷେତ୍ରକୁ 'ସମାଜ' ଓ ତତ୍ପରବର୍ତ୍ତୀ କାଳରେ ପଣ୍ଡିତ ନୀଳକଣ୍ଠଙ୍କ ଦ୍ୱାରା ସମ୍ପାଦିତ ନବଭାରତର ଦାନ କମ୍ ନୁହେଁ । ସେକାଳର କବି ସାମ୍ବାଦିକ ଓ ହାସ୍ୟରସ କବିତା ଓ ସାହିତ୍ୟ ମାଧ୍ୟମରେ ସମ୍ବାଦକୁ ଜନସମାଜ ସମ୍ମୁଖରେ ଉପସ୍ଥାପନ କରିବାରେ ଅସାଧାରଣ ଦକ୍ଷତା କବି ଗୋଦାବରୀଶ ମହାପାତ୍ର ପ୍ରତିପାଦିତ କରିଯାଇଛନ୍ତି । ତତ୍କାଳୀନ ଓଡ଼ିଶା ସରକାରଙ୍କ ପ୍ରଶାସନଙ୍କ ବିଭାଗଗୁଡ଼ିକରେ ଅଣ-ଓଡ଼ିଆ କର୍ମଚାରୀ-ମାନେ କିପରି ପ୍ରଭାବ ବିସ୍ତାର କରି ଓଡ଼ିଶାର ଲୋକଙ୍କୁ ସଙ୍କୁଚିତ କରି ରଖିଥିଲେ, ସେଥିପାଇଁ କବି ମହାପାତ୍ର ତାଙ୍କ ସଂପାଦିତ 'ନିଆଁଖୁଣ୍ଟା' ମାସିକରେ ଯେଉଁପରି ଭାବରେ ଲେଖିଥିଲେ, ତାହାର କେତେକ ଅଂଶ ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ ବୋଲି ମୁଁ ମନେ କରେ ।

"ଦତ୍ତ ମଜୁମଦାର, ମାଥୁର, ନାୟାର
ଆଉଛନ୍ତି ଯେତେ ସୋଦର ଜାୟାର
ଦର ବଢ଼ାଇଲେ ଶାଢ଼ୀ ଓ ଶାୟାର

ଦତ୍ତ ମଜୁମ୍ଦାର କାଟୁରୁ କପିଳା
ଜାତି ସିନ୍ଧୁ ବକ୍ଷେ ଉତ୍କଳର ଭେଳା
ଓଡ଼ିଆଙ୍କୁ ଦେଖି କହନ୍ତି ସେ ପଳା
ମୁଖାର୍ଜୀ, ଚାଟାର୍ଜୀ ବାନାର୍ଜୀ ଓ ନନ୍ଦ
ଉତ୍କଳକୁ ଏବେ ଦେଉଛନ୍ତି ଛନ୍ଦ ।"

ଏପରିଭାବରେ ସାହିତ୍ୟ ଓ କବିତା ମାଧ୍ୟମରେ ସମ୍ବାଦ ପରିବେଷଣ କରି କବି ଗୋଦାବରୀଶ ଉତ୍କଳ ଜନମାନସରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରି ପାରୁଥିଲେ । ରାଜନୀତିକ ଦିଗ ସମ୍ପର୍କରେ ସେ ତାଙ୍କ କବିତାରେ କଂଗ୍ରେସର ଦୁନ୍ଦବାଦ ଓ ନେତାମାନଙ୍କ ଚରିତ୍ର ଓ ଭୂମିକା ସମ୍ପର୍କରେ ବର୍ଣ୍ଣନା କରି ଲେଖିଥିଲେ ।

ବହ୍ୱାରବାଗରୁ ତୁଳସୀପୁର
କେତେ ସେ ଦୂର
ବହ୍ୱାରବାଗର ଦୀପ ଲିଭିଗଲା
ସେଠି ଧୂପ ଜଳେ ଆଜି
ବାହାପିଆ ବନ୍ଧୁ ଖେଳୁ ଅଛି ପଶା
ଲଗାଇଛି କେତେ ବାଜି "

ଏପରି ପରିହାସ ଛଳରେ ସାହିତ୍ୟ ମାଧ୍ୟମରେ ସେ ବହୁ ସମ୍ବାଦ ପରିବେଷଣ କରିଛନ୍ତି । ବିଶେଷତଃ ତାଙ୍କର, 'ଡାମରକାଉ' ଲେଖାରେ ସାହିତ୍ୟ ଓ ସମ୍ବାଦର ଏକ ଅପୂର୍ବ ମିଳନ ଘଟିଥିଲା । ତାଙ୍କ ମୃତ୍ୟୁର ଏତେବର୍ଷ ପରେ ତାଙ୍କ ଲେଖାଗୁଡ଼ିକର ଅବିକଳ ଶବ୍ଦଯୋଜନା ମୁଁ ଏଠାରେ ଦେଇ ପାରିଛି କି ନାହିଁ ସେ ସମ୍ପର୍କରେ ସାମାନ୍ୟ ସନ୍ଦେହ ରହିଛି । ତଥାପି ତାଙ୍କ ସହିତ ମୋର ଦୀର୍ଘଦିନର ସାମ୍ବାଦିକତା ଓ ସାହିତ୍ୟ କ୍ଷେତ୍ରରେ ଯେଉଁ ସମ୍ପର୍କ ଥିଲା ତାର ପ୍ରଭାବରେ ଯେତିକି ମୋ ସ୍ମୃତିପଟରେ ରହିଯାଇଛି ସେଗୁଡ଼ିକର ଏଠାରେ ଅବତାରଣା କରୁଛି । କେଉଁଠି ବା କିଛି ଏପାଖ ସେପାଖ ହୋଇଯାଇଥିବ । ତଥାପି ଏଠାରେ ମୁଁ ଯେଉଁ ତଥ୍ୟ ଉଦ୍ଧାର କରିଛି ତାହା କବିଙ୍କର ସେ ସମୟର ଲେଖା ରଚନା ଶୈଳୀର ପ୍ରତିବିମ୍ବ ବୋଲି କହିବାରେ ମୋର କିଛି କୁଣ୍ଠା ନାହିଁ ।



# କଟକର ଡାକ ଇତିହାସ

ଶ୍ରୀ ସହଦେବ ସାହୁ

ଦୂରରେ ନିଜର କେହି ଲୋକ ଥିଲେ ଏବଂ ଆମ ସହିତ ତାହାର ସମ୍ପର୍କ ଛିନ୍ନ ହୋଇନଥିଲେ ଆମେ ତାହାଠାରୁ ଖବରାଖବର ପାଇବା ଆଶା କରୁ ଓ ତାଙ୍କୁ ଆମର ଶୁଭାଶୁଭ ଖବର ଜଣାଉ । ଆଗକାଳରେ ମୌଖିକ ବାର୍ତ୍ତା ଭାବରେ ଖବର ଆସୁଥିଲା । ଶହ ଶହ ବର୍ଷତଳେ ସୁଦୂରରେ ଥିବା ଲୋକ ପ୍ରାୟ ସମ୍ପର୍କ ରକ୍ଷା କରିପାରୁ ନଥିଲେ । ଯେତେବେଳେ ଲେଖାଲେଖି ଆରମ୍ଭ ହେଲା, ତାହା କେବଳ ରାଜାରାଜୁଡ଼ାଙ୍କ ଭିତରେ ସୀମିତ ଥିଲା । ଅଧିକନ୍ତୁ, କର୍ମକର୍ମାଣିରେ ଲୋକେ ବେଶି ଦୂରକୁ ଯାଉନଥିଲେ । ଅତିବେଶିରେ ଦିନକ ଭିତରେ ଫେରିବା ଭଳି ଦୂରତା ପର୍ଯ୍ୟନ୍ତ ସେମାନେ ଯାଉଥିଲେ । ଆଗକାଳର ଜନପଦ ବା ଜନବସତି ଭିତରେ ଥିବା ଗୋଷ୍ଠୀ ଭିତରେ ଆତ୍ମ ନିର୍ଭରଶୀଳତା ଓ ସ୍ୱୟଂସମ୍ପୂର୍ଣ୍ଣତା ଏତେ ବେଶି ଥିଲା ଯେ ଜୀବିକା ଅନ୍ୱେଷଣରେ ବାହାରକୁ ଯିବା ଦରକାର ପଡ଼ୁ ନଥିଲା । କଳିଙ୍ଗ ବା ଉତ୍କଳ ଭଳି ପ୍ରାଚୀନ ରାଜ୍ୟ ଏହାର ବ୍ୟତିକ୍ରମ ନଥିଲା । ରାଜ୍ୟବିସ୍ତାର ତଥା ଶତ୍ରୁ ଆକ୍ରମଣର ପ୍ରତିକାର ଲାଗି ସୀମାନ୍ତ ଅଞ୍ଚଳରୁ ଖବର ଆଣିବା, ସୀମାନ୍ତରେ ଥିବା ରାଜପରିବାରର ବୀରମାନଙ୍କଠାକୁ ଖବର ପାଇବା ଲାଗି ବାର୍ତ୍ତାବହ ବ୍ୟବସ୍ଥା ଥିଲା । ଅଗୀଠୁଆ ରାଜାମାନେ ଓ ସେମାନଙ୍କ କର୍ମଚାରୀ ଲିଖିତ ଚିଠି ବଦଳରେ ସାଙ୍କେତିକ ବିନିମୟ କରୁଥିଲେ । ଶୁଭ ବା ଅଶୁଭ ଏବଂ ମୃତ ବା ବିଜୟ ଭଳି କେତେଗୁଡ଼ିଏ ସଙ୍କେତ ସାଙ୍କେତିକ ଦ୍ୱାରା ଜଣାଇ ହେଉଥିଲା । ତେଣୁ ଆଜକାଲି ଅର୍ଥରେ ଡାକ ବ୍ୟବହାର ଆଦୌ ନଥିଲା । ସାମରିକ ଅଭିଯାନର ସଫଳତା ପାଇଁ ରାଜାମହାରାଜା ଓ ସେନାପତିମାନେ ବିଭିନ୍ନ ପ୍ରାନ୍ତ ଓ କେନ୍ଦ୍ର ମଧ୍ୟରେ ରାଜକୀୟ ଡାକଦ୍ୱାରା ସମ୍ପର୍କ ସ୍ଥାପନ କରୁଥିଲେ । ଅଧିକାଂଶ ସମୟରେ ଏହି ସମ୍ପର୍କ ମୌଖିକ ଥିଲା । ରାସ୍ତାଘାଟର ସୁବିଧା ନଥିବାବେଳେ ଏବଂ ଯାତ୍ରା ବିପଦସଙ୍କୁଳ ହେଉଥିଲାବେଳେ ବ୍ୟୟବହୁଳ ବାର୍ତ୍ତାବହ ନିଯୁକ୍ତ କରିବା କେବଳ ରାଜାଙ୍କ ପକ୍ଷରେ ହିଁ ସମ୍ଭବ ଥିଲା । ଶୀଘ୍ର ବାର୍ତ୍ତା ପହଞ୍ଚିବାଲାଗି ଘୋଡ଼ା ସବାର ବ୍ୟବହାର ହେଉଥିଲା । କେବଳ ଯୁଦ୍ଧ ସମୟରେ କିମ୍ବା ରାଜ୍ୟର ଦୂର ଅଞ୍ଚଳରେ କୌଣସି ବିଦ୍ରୋହ ବା ବିପ୍ଲବର ଗୋଇନ୍ଦା ଖବର ନେବାପାଇଁ ରାଜାମାନେ ବାର୍ତ୍ତାବହ ନିଯୁକ୍ତ କରୁଥିଲେ । ଆଜକାଲିର ଡାକସେବା ଭଳି କୌଣସି ସଙ୍ଗଠିତ ଉଦ୍ୟମ ନଥିଲା ।

## ଉତ୍ତର ରାଜାଙ୍କ ଅବଦାନ :

୯୮୯ ଖ୍ରୀଷ୍ଟାବ୍ଦରେ ନୃପେନ୍ଦ୍ର କେଶରୀ କଟକକୁ ରାଜ୍ୟର ରାଜଧାନୀ ରୂପେ ସ୍ଥାପନ କଲାବେଳେ ମଧ୍ୟ ଏହା ପରିଷ୍କାର ଥିଲା । କଟକର ଇତିହାସ ହିଁ ନୃପେନ୍ଦ୍ର କେଶରୀଙ୍କ ରାଜ୍ୟର ଇତିହାସ ଥିଲା । ପଡ଼ୋଶୀ ରାଜ୍ୟଠାରୁ କାଳେ କେଉଁଠି ବିପଦର ସୂଚନା ଥିବ, ନିଜର ଜରଦ ରାଜାମାନେ କାଳେ କେଉଁଠି ବିଦ୍ରୋହ କାର୍ଯ୍ୟ କରୁଥିବେ, ସେ ସବୁ ବିଷୟରେ ଗୋଇନ୍ଦା ଖବର ରଖିବାଲାଗି ରାଜ୍ୟର ଚାରିଆଡ଼େ ନୃପେନ୍ଦ୍ର କେଶରୀ ଗୋଇନ୍ଦାମାନଙ୍କୁ ରଖାଇଥିଲେ । ସେ ସମୟର ସାମରିକ କୌଶଳକୁ ବିଚାରକୁ ନେଇ ନଦୀ ପରିବେଷ୍ଟିତ କଟକକୁ ନୃପେନ୍ଦ୍ର କେଶରୀ ନିଜର ରାଜଧାନୀ ରୂପେ ବାଛି ନେଇଥିଲେ । ତ୍ରିଭୁଜାକାର କଟକ ନଗରର ଦୁଇବାହୁ ମହାନଦୀ ଓ କାଠଯୋଡ଼ିଦ୍ୱାରା ସୁରକ୍ଷିତ ଥିଲାବେଳେ, ତୃତୀୟବାହୁ ଭେଦ କରି ଆସିବା ପାଇଁ ଶତ୍ରୁକୁ ହୁଏତ ମହାନଦୀ କିମ୍ବା କାଠଯୋଡ଼ି ବା ସେମାନଙ୍କର ଶାଖାକୁ ଅତିକ୍ରମ କରିବାକୁ ପଡ଼ିଥାନ୍ତା । ରାଜଧାନୀ ପ୍ରତିଷ୍ଠା ପାଇଁ ୧୦ ମ ଶତାବ୍ଦୀରେ କୌଣସି ରାଜକୀୟ ସ୍ଥାନ ନିରୂପଣ (ସାଇଟ୍ ସିଲେକ୍ସନ) କମିଟି କଟକଠାରୁ ଉପଯୁକ୍ତ ସ୍ଥାନ ପାଇନଥାନ୍ତେ । ଏଭଳି ଏକ ଅଭେଦ୍ୟ ରାଜଧାନୀ ଭିତରେ ରହି ରାଜ୍ୟର ହାଲଚାଲ ଜାଣିବାଲାଗି ନୃପେନ୍ଦ୍ର କେଶରୀ ନିଜର ଗୋଇନ୍ଦାମାନଙ୍କ ଉପରେ ବେଶି ନିର୍ଭର କରୁଥିଲେ । ଏହା ଗୋଇନ୍ଦା ବ୍ୟବସ୍ଥା ପୁରାପୁରି ବ୍ୟକ୍ତିଗତ ଥିଲା । ତେଣୁ ଗୋଇନ୍ଦା ଡାକ ବି ରାଜାଙ୍କ ନିଜସ୍ୱ ଥିଲା ।

ରାଜ୍ୟସାରା ନଦୀ, ନାଳ, ପାହାଡ଼, ପର୍ବତ ଓ ଘଞ୍ଚ ଜଙ୍ଗଲ ବ୍ୟାପିଥିବାରୁ କୌଣସି ବାର୍ତ୍ତାବହ ଏକୁଟିଆ ଯିବା ଉଚିତ ମନେ କରାଯାଉ ନଥିଲା । ବାର୍ତ୍ତାବହ ପର୍ଯ୍ୟଟକ ହିସାବରେ ସାଧାରଣ ନାଗରିକର ପୋଷାକରେ ଆଉ କେତେଜଣଙ୍କ ସହିତ ଯାଉଥିଲା । ଲୋକେ ଯେପରି ସନ୍ଦେହ ନ କରନ୍ତି ଯେ ସେ କୌଣସି ଗୁରୁତ୍ୱପୂର୍ଣ୍ଣ ରାଜକୀୟ କାର୍ଯ୍ୟରେ ଯାଉଛି । ଯେପର୍ଯ୍ୟନ୍ତ ଲିଖିତ ଭାଷା ବ୍ୟବହାର ଆରମ୍ଭ ହୋଇ ନଥିଲା ସେ ପର୍ଯ୍ୟନ୍ତ ପ୍ରାକୃତିକ ପରିବେଶରେ ମିଳୁଥିବା ବିଭିନ୍ନ ସଙ୍କେତ ଓ ଠାରକୁ ବ୍ୟବହାର କରି ବିଭିନ୍ନ ପ୍ରାନ୍ତ ମଧ୍ୟରେ ବା ରାଜା ଓ ରାଜ ପରିବାରର ଲୋକଙ୍କ ମଧ୍ୟରେ ସାମରିକ ଅଭିଯାନ ବିଷୟରେ ବାର୍ତ୍ତା ବିନିମୟ ହେଉଥିଲା ।

ଚୋଡ଼ଗଙ୍ଗଦେବ ତାଙ୍କ ରାଜ୍ୟ ବିସ୍ତାର କରି ମହାନଦୀର ଉତ୍ତରକୁ ମାଡ଼ିଗଲା ବେଳେ ଦେଖିଲେ ଯେ ତାଙ୍କ ରାଜଧାନୀ କଳିଙ୍ଗ ନଗରଠାରୁ ସେ ଖୁବ୍ ଦୂରକୁ ଆସି-ଯାଇଛନ୍ତି । ବଙ୍ଗ ରାଜ୍ୟରୁ ମୁସଲମାନ ଶାସକମାନଙ୍କର ବାରମ୍ବାର ଆକ୍ରମଣର ଭୟ ବି ରହିଛି । ବଙ୍ଗର ମୁସଲମାନ ନବାବମାନଙ୍କ ସମ୍ପର୍କରେ ଓ ସେମାନଙ୍କର ଗତିବିଧି ବିଷୟରେ ଗୋଇନ୍ଦା ଖବର ସଂଗ୍ରହ କରିବା ଦରକାର ହେଉଛି । ତେଣୁ ସେ ୧୧୩୫ ଖ୍ରୀଷ୍ଟାବ୍ଦରେ ତାଙ୍କ ରାଜଧାନୀ କଳିଙ୍ଗ ନଗରରୁ କଟକକୁ ଉଠାଇ ଆଣିଲେ । କଳିଙ୍ଗ ସାମ୍ରାଜ୍ୟର ସ୍ନାୟୁକେନ୍ଦ୍ର ରୂପେ କଟକ ଗଢ଼ି ଉଠିଲା । ଘନ ଜଙ୍ଗଲର ଭୂମିରେ ଘାସ ଓ ତୃଣ ଭିତରେ ଭୟଙ୍କର ବିଷଧର ସରୀସୃପ ଥାଆନ୍ତି । ପାଦକୁ ସେମାନଙ୍କ ଦଂଶନରୁ

ରକ୍ଷା କରିବା ଲାଗି ଓଡ଼ିଆ ଗୋଇନ୍ଦାମାନେ ପ୍ରଥମେ ବାଉଁଶର ପାଦଦଣ୍ଡ ବ୍ୟବହାର କରି ଖୁବ୍ ବେଗରେ ବାର୍ତ୍ତା ନେଆଆଣିବା କରିପାରୁଥିଲେ । ଏହି ପାଦଦଣ୍ଡାରୋହୀଙ୍କଠାରୁ ପରବର୍ତ୍ତୀକାଳରେ ରଣପା ନୃତ୍ୟ ରୂପରେଖ ନେଇଛି । ଆମେ ସ୍ୱଭାବତଃ ଆମ ଦୁଇଗୋଡ଼ି ଜଂଘ ପାଖରେ ଯେଉଁ କୋଣ କରେ ତାହା ହିଁ ଆମର ଦୁଇ ପାଦ ମଧ୍ୟରେ ଦୂରତା ଠିକ୍ କରିଥାଏ । ଏହି କାରଣରୁ ଜଣେ ଡେଙ୍ଗା ଲୋକର ପାଦେ ଜଣେ ଗେଡ଼ା ଲୋକର ପାଦଠାରୁ ବେଶି । ରଣପା ଗୋଇନ୍ଦାମାନେ ବାଉଁଶ ବାଡ଼ି ବ୍ୟବହାର କରି ପାଦକୁ ଆହୁରି ଲମ୍ବା କରିପାରିଲେ । ତେଣୁ ଅଳ୍ପ ସମୟରେ କମ୍ ପରିଶ୍ରମରେ ବେଶି ବାଟ ଯାଉଥିଲେ । ଓଡ଼ିଶା ଓ ରାଜପୁତନରେ ରାଜ୍ୟମାନଙ୍କରେ ଐତିହାସିକ ଉପନ୍ୟାସ-ମାନଙ୍କରେ ରଣପା ଗୋଇନ୍ଦମାନଙ୍କ ବିଷୟ ଉଲ୍ଲେଖ କରାଯାଇଥାଏ । ଯେତେବେଳେ ରାଜାମାନେ ସେନାବାହିନୀରେ ଘୋଡ଼ା ବ୍ୟବହାର ଆରମ୍ଭ କଲେ ଏବଂ ବେଗ ହିଁ ଉତ୍ତମ ଶାସନର ଲକ୍ଷଣ ହୋଇପଡ଼ିଲା, ସେତେବେଳେ ଘୋଡ଼ାସବାର ବାର୍ତ୍ତାବହ ନିଯୁକ୍ତ ହେଲେ । କିନ୍ତୁ ଡାକ ବ୍ୟବସ୍ଥାର କେନ୍ଦ୍ର ହେବା ଲାଗି କଟକ କପିଳେନ୍ଦ୍ର ଦେବଙ୍କ ରାଜତ୍ୱକୁ ଅପେକ୍ଷା କଲା । ୧୪୩୫ ରେ ସିଂହାସନ ଆରୋହଣ କଲାଠାରୁ ୩୮ ବର୍ଷ କାଳ ଯୁଦ୍ଧରତ ରହି କପିଳେନ୍ଦ୍ର ଦେବ କାବେରୀରୁ ଗଙ୍ଗା ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଏତେବଡ଼ ସାମ୍ରାଜ୍ୟର ସଂହତି ରକ୍ଷା କରିବାଲାଗି ଚତୁର୍ଦ୍ଦିଗରେ ଗୋଇନ୍ଦା ବ୍ୟବସ୍ଥା ଚାଲୁ ହୋଇଥିଲା । ଏହି କାରଣରୁ କଟକ ତାଙ୍କ ସାମ୍ରାଜ୍ୟର ଯୋଗାଯୋଗ ବ୍ୟବସ୍ଥାର କେନ୍ଦ୍ର ହୋଇ ପଡ଼ିଥିଲା । ତାଙ୍କର ଉତ୍ତରାଧିକାରୀ ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ମଧ୍ୟ ଏହି ବ୍ୟବସ୍ଥା ଚାଲୁ ରଖିଥିଲେ । କିନ୍ତୁ ଗଜପତି ଶାସନ ସମୟରେ ଦକ୍ଷିଣରେ ସାମରିକ କାର୍ଯ୍ୟକଳାପ ବେଶି ବୃଦ୍ଧି ପାଉଥିବାରୁ ଏବଂ ରାଜବଂଶରେ ଅନ୍ତର୍ଦ୍ୱନ୍ଦ୍ୱ ଲାଗିରହୁଥିବାରୁ ଗୋଇନ୍ଦା ବ୍ୟବସ୍ଥାର ସୁଯୋଗ ଗଜପତିମାନେ ନେଇ ପାରିଲେ ନାହିଁ ।

୧୫୬୮ ରେ ଓଡ଼ିଶାରେ ଆଫଗାନ ଶାସନ ଆରମ୍ଭ ହେଲା । ୭ ବର୍ଷ ପରେ ବଙ୍ଗର ଦାଉଦ୍ ଖାଁ ଆକବରଙ୍କ ଦ୍ୱାରା ପରାଜିତ ହେବାରୁ କଟକ ପ୍ରାନ୍ତରେ ଦିଲ୍ଲୀ ସହିତ ଯୋଗସୂତ୍ର ରକ୍ଷା କରିବାର ଆବଶ୍ୟକତା ଅନୁଭୂତ ହେଲା । ରାସ୍ତା ଘାଟରେ ସରାଇଘର, ସରାଇଘରଠାରେ ଘୋଡ଼ା ସବାରଦ୍ୱାରା ଡାକ ବିନିମୟ ଏବଂ ପରବର୍ତ୍ତୀକାଳରେ ସରାଇ-ଘରକୁ ଡାକ ଚୌକିରେ ପରିଣତ କରିନେବା ଭଳି ଘଟଣା କଟକକୁ ପୂର୍ବ ଉପକୂଳର ତଥା ଉତ୍କଳ ରାଜ୍ୟର ଯୋଗାଯୋଗ କେନ୍ଦ୍ର ଗଢ଼ି ତୋଳିଲା ।

## ପଠାଣ ଓ ମୋଗଲମାନଙ୍କ ଅବଦାନ :

୧୨୯୬ ଖ୍ରୀଷ୍ଟାବ୍ଦରେ ପଠାଣ ରାଜା ଆଲ୍ଲାଉଦ୍ଦିନ ଖିଲ୍‌ଜି ପାଦଚଲା ଓ ଘୋଡ଼ାସବାର ମିଶାମିଶିରେ ଏକ ଡାକ ବ୍ୟବସ୍ଥା ଚାଲୁକରିଥିଲେ । ସାରା ଭାରତର ବିଭିନ୍ନ କୋଣରେ ଥିବା ସାମରିକ ବାହିନୀ ସହିତ ଯୋଗାଯୋଗ ରକ୍ଷା କରିବା ଏହାର ଉଦ୍ଦେଶ୍ୟ

ଥିଲା । ରୋମାନ୍ ସାମ୍ରାଜ୍ୟରେ ଯେଉଁ ଢାଞ୍ଚାରେ ଡାକ ସେବା ଚାଲୁଥିଲା ତାହାର ଅନୁକରଣରେ ମହମ୍ମଦ ବିନ୍ ତୋଗ୍ଲକ ସାରା ଭାରତରେ ଡାକ ସେବାକୁ ସଂଗଠିତ କଲେ । ଏହି ବ୍ୟବସ୍ଥା ଅନୁସାରେ ପ୍ରତ୍ୟେକ ବଡ଼ ବଡ଼ ଗାଁକୁ ଡାକହରକରା ଏବଂ ପ୍ରତି ସାଢ଼େଛଅ କିଲୋମିଟରରେ ଘୋଡ଼ା ସବାରରେ ଡାକ ବିନିମୟର ଚୌକି ରଖାଗଲା । ଘୋଡ଼ାସବାର ଡାକଧରି ଚୌକିରେ ଅପେକ୍ଷା କରୁଥିଲା । ପରବର୍ତ୍ତୀ ଘୋଡ଼ା ସବାର ଡାକ ଆଣି ପହଞ୍ଚିଲାପରେ ତାଠାରୁ ଡାକ ନେଇ ନିଜ ଡାକ ତାକୁ ଦେବା ପର୍ଯ୍ୟନ୍ତ ଅପେକ୍ଷା କରୁଥିଲା । ଏ ବ୍ୟବସ୍ଥା ଏତେ ସୁଚାରୁରୂପେ କାମ କରୁଥିଲା ଯେ ସିନ୍ଧୁ ପ୍ରଦେଶରୁ (ବର୍ତ୍ତମାନର ପାକିସ୍ଥାନ) ଡାକ ୫ ଦିନ ଭିତରେ ଦିଲ୍ଲୀରେ ପହଞ୍ଚିଯାଉଥିଲା । କିନ୍ତୁ ପାଦଚାରୀ (ପର୍ଯ୍ୟଟକ) ମାନେ ଏହି ଦୂରତାକୁ ୫୦ ଦିନ ନେଉଥିଲେ । ୧୫୪୦ ରୁ ୧୫୪୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶେରଶାହ ଡାକ ବ୍ୟବସ୍ଥାର ଆଧୁନିକୀକରଣ କଲେ । ସିନ୍ଧୁରୁ ବଙ୍ଗ ପର୍ଯ୍ୟନ୍ତ ରାସ୍ତାକଡ଼ରେ ୧୭୦୦ ସରାଇ ଘର କରାଗଲା ଏବଂ ପ୍ରତି ତିନି କିଲୋମିଟର ଦୂରତାରେ ଦୁଇଟି ଘୋଡ଼ା ମୁତୟନ କରାଯାଉଥିଲା । ଏମାନେ ସମ୍ରାଟଙ୍କ ଡାକ ନେବା-ଆଣିବା କରୁଥିଲେ । କିନ୍ତୁ ଏହାର କୌଣସି ପ୍ରଭାବ କଟକ ପ୍ରଦେଶରେ ପଡ଼ିନଥିଲା । କାରଣ କଟକ ସେତେବେଳେ ବଙ୍ଗର ପ୍ରଭାବାଧୀନ ଥିଲା । କିନ୍ତୁ ଆକବରଙ୍କ ସିଂହାସନ ଆରୋହଣ ପରେ କଟକରାଜ୍ୟରେ ମଧ୍ୟ ଡାକ ଚୌକି ବ୍ୟବସ୍ଥାର ଉନ୍ନତି କରାଗଲା । ପ୍ରତି ୧୭ କିଲୋମିଟର (ତତ୍କାଳୀନ ୫ କୋଶ) ଦୂରରେ ଡାକ ଚୌକି ବସାଗଲା । ଘୋଡ଼ା ସବାରମାନେ ଡାକ ନେବା ଆଣିବା କରୁଥିଲେ । ପରବର୍ତ୍ତୀ ବ୍ରିଟିଶ୍ ଶାସକମାନେ ଏହି ୫ କୋଶିଆ ଦୂରତାକୁ ବଜାୟ ରଖି ଡାକ ଚୌକିକୁ ଉନ୍ନତ କରି ଡାକ ବଙ୍ଗଳା ତିଆରି କଲେ ।

ଡାକ ଇତିହାସରେ ଉତ୍ତର ଭାରତରେ ଅଭୂତପୂର୍ବ ବିପ୍ଳବ ଘଟିଥିଲାବେଳେ ଓଡ଼ିଶାରେ ଯଥେଷ୍ଟ ଏବଂ ସମୟୋଚିତ ଉନ୍ନତି ଘଟି ନ ଥିଲା । କିନ୍ତୁ ଆକବରଙ୍କ ଅର୍ଥମନ୍ତ୍ରୀ ତୋଡ଼ରମଲ ଜମିଜମା ସର୍ଭେ ଓ ବନ୍ଦୋବସ୍ତ ଆରମ୍ଭ କରିବାକୁ ଯାଇ ଦେଖିଲେ ଯେ ଉପକୂଳବର୍ତ୍ତୀ ଅଞ୍ଚଳକୁ ହେଳା କରିହେବ ନାହିଁ । ସେ ଓଡ଼ିଶାରେ ଦ୍ୱୈତ ଶାସନ ଚାଲୁକଲେ । ଉପକୂଳର ଉର୍ବର ଜମିଜମାଗୁଡ଼ିକୁ ସିଧାସଳଖ ମୋଗଲ ଶାସନର ଅଧୀନରେ ରଖିଲେ ଏବଂ ପାହାଡ଼ିଆ ଅଞ୍ଚଳଗୁଡ଼ିକୁ ଗଡ଼ାଧିକାରୀମାନଙ୍କ କର୍ତ୍ତୃତ୍ୱରେ ରଖିଲେ । ଏହି କାରଣରୁ ଉପକୂଳ ଅଞ୍ଚଳଗୁଡ଼ିକ ମୋଗଲବନ୍ଦୀ ଓ ପଶ୍ଚିମ ପାହାଡ଼ିଆ ଅଞ୍ଚଳକୁ ଗଡ଼ଜାତ କୁହାଗଲା । ଜମିଜମାର ଖଜଣା ପ୍ରକୃତ ଭାବରେ ଆଦାୟ ହେଉଛି କି ନାହିଁ ଜାଣିବାଲାଗି ସେ ଡାକ ବ୍ୟବସ୍ଥା ଚାଲୁକଲେ । ମୋଗଲବନ୍ଦୀର ଭୂମ୍ୟାଧି-କାରୀମାନେ ଡାକହରକରା ଯୋଗାଇଲେ ଏବଂ ଗଡ଼ ମହାଲର ମାଲିକମାନେ ଘୋଡ଼ା-ସବାର ଯୋଗାଇଲେ । ଏଥିରେ ଉଲ୍ଲେଖଯୋଗ୍ୟ ଯେ ଆକବରଙ୍କ ସମୟରେ ଭୂ-ରାଜସ୍ୱ ଆଦାୟ କରୁଥିବା ଲୋକଙ୍କୁ ଜମିଦାର କୁହାଯାଉ ନଥିଲା, ସେମାନେ ଧରମାଧାରୀ କର୍ମଚାରୀ ଥିଲେ । ଏକ ବିଦେଶୀ ଭାଷା କହୁଥିବା ଲୋକଙ୍କୁ ଶାସନ କରିବାଲାଗି ଇଂରେଜମାନେ ସ୍ୱୀୟ ପ୍ରଜା ଓ ସେମାନଙ୍କ ମଧ୍ୟରେ ଗୋଟିଏ ମଧ୍ୟସ୍ଥି ରହିବା ସୁବିଧାଜନକ

ମନେ କଲେ । ଖଜଣା ଆଦାୟକାରୀମାନେ ଏହି ମଧ୍ୟସ୍ଥିର ଭୂମିକା ଭଲଭାବରେ ତୁଲାଇ ପାରୁଥିବାରୁ ରାଜ ଅନୁଗ୍ରହ ଦେଖାଇ ସେମାନଙ୍କୁ ଜମିଦାର ପାହ୍ୟା ଦିଆଗଲା ।

## ବ୍ରିଟିଶ ଶାସନରେ ଡାକ ବ୍ୟବସ୍ଥା :

ଡାକ ବ୍ୟବସ୍ଥା ଯୋଗାଯୋଗର ଉନ୍ନତି ଓ ରାସ୍ତାଘାଟର ସୁବିଧା ଉପରେ ନିର୍ଭର କରେ । ବ୍ୟବସାୟ ବାଣିଜ୍ୟ ଯେତେ ବେଶି ବଢ଼େ ବା ତୀର୍ଥ ଯାତ୍ରୀ ତଥା ପର୍ଯ୍ୟଟକମାନେ ଯେତେ ବେଶି ଯିବା ଆସିବା କରନ୍ତି ତାହା ଉପରେ ରାସ୍ତାଘାଟ ସୁବିଧା କରା ହେବା ନିର୍ଭର କରେ । ୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ପୁରୀକୁ ତୀର୍ଥଯାତ୍ରୀମାନଙ୍କ ସମାଗମ ଯେଉଁ ପ୍ରକାର ବାଣିଜ୍ୟ କାରବାର ବୃଦ୍ଧି କରାଇଥିଲା ତାହା କେବଳ ଖାଦ୍ୟ ଯୋଗାଣ ଓ ରାସ୍ତାକଡ଼ ଓ ଆବାସ ଯୋଗାଣ ମଧ୍ୟରେ ସୀମିତ ରହିଥିଲା । ଏଥିଲାଗି ଡାକ ବ୍ୟବସ୍ଥା ବା ଚିଠି ପତ୍ର ଦେଣ ନେଣ ବ୍ୟବସ୍ଥା ଦରକାର ପଡ଼ି ନଥିଲା । କେବେ କୌଣସି ରାଜ ପରିବାରର ଲୋକ ପୁରୀଧାମକୁ ଆସୁଥିଲେ ତ ସେମାନେ ନିଜ ସାଙ୍ଗରେ ନିଜର ବାର୍ତ୍ତାବହ ବା ଡାକବାହକ ଆଣୁଥିଲେ । ଭାରତରେ ଇଷ୍ଟଇଣ୍ଡିଆ କମ୍ପାନୀ ନିଜର ବାଣିଜ୍ୟ କାରବାରକୁ ସୁଦୃଢ଼ କରିବା ପାଇଁ ବାଣିଜ୍ୟ ସମ୍ପର୍କୀୟ ଚିଠି ପତ୍ର ଯେପରି ସୁରକ୍ଷିତ ଭାବରେ ପହଞ୍ଚେ ସେଥିପ୍ରତି ଧ୍ୟାନ ଦେଲେ । ମଣିଷ ହେଉ ବା ପଶୁ ହେଉ ଯେକୌଣସି ଭାରବାହୀ ଦ୍ୱାରା ବ୍ୟବସାୟର କାଗଜ ପତ୍ର ଯେପରି ସେମାନଙ୍କର ବ୍ୟବସାୟ କେନ୍ଦ୍ର ବମ୍ବେ, କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ସହଜରେ ଓ ନିରାପଦରେ ନେବା ଆଣିବା କରାଯାଇ ପାରେ ତାହାର ବନ୍ଦୋବସ୍ତ କଲେ । ମୋଗଲମାନଙ୍କ ଦ୍ୱାରା ଚାଲୁରହିଥିବା ଡାକ ହରକରା ବ୍ୟବସ୍ଥାକୁ ସେମାନେ ଚାଲୁ ରଖିଲେ । ବରଂ ନିଜ ଅକ୍ତିଆରରେ ଅଧିକ ହରକରା ନିଯୁକ୍ତ କଲେ । ଉପକୂଳ ଅଞ୍ଚଳରେ ଜାହାଜ ଚଳାଚଳ ସୁବିଧା ଯୋଗୁ ଏବଂ ସ୍ଥଳଭାଗରେ ବନ୍ୟଜନ୍ତୁସଂକୁଳ ଅରଣ୍ୟର ପ୍ରତିବନ୍ଧକ ଯୋଗୁ କମ୍ପାନୀ କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ଥିବା ଡାକ ବ୍ୟବସ୍ଥାକୁ ଆପାତତଃ ଓଡ଼ିଶାର ସ୍ଥଳଭାଗ ଉପରେ ନ ନେଇ ବଙ୍ଗୋପସାଗର ବାଟେ ନେଲା । ୧୭୧୨ ଖ୍ରୀଷ୍ଟାବ୍ଦ ବେଳକୁ କମ୍ପାନୀ ମାନ୍ଦ୍ରାଜ ଠାରୁ ଗଞ୍ଜାମରେ ଗୋଟିଏ ଡାକଘର ଖୋଲିଲା । ବାଲେଶ୍ୱରର ବୁଡ଼ାବଳଙ୍ଗ ମୁହାଣରୁ ଜାହାଜରେ କଲିକତାର ଡାକ ଗଞ୍ଜାମରେ ପହଞ୍ଚୁଥିଲା ଓ ସେଠାରୁ ସ୍ଥଳପଥରେ ମାନ୍ଦ୍ରାଜ ଯାଉଥିଲା । ୧୭୬୬ ରେ ହିଁ କଲିକତା ମାନ୍ଦ୍ରାଜ ମଧ୍ୟରେ ଥିବା ଡାକ ବ୍ୟବସ୍ଥା ବାଲେଶ୍ୱରରୁ କଟକ ବାଟ ଦେଇ ଗଞ୍ଜାମ ଗଲା । ସେତେବେଳକୁ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ୯୮ ବର୍ଷ ଧରି ବ୍ୟବସାୟ କାରବାର କରି ସାରିଲାଣି ।

କିନ୍ତୁ ମନେ ରଖିବାକୁ ପଡ଼ିବ ଯେ ସେତେବେଳର ଡାକ ବ୍ୟବସ୍ଥାର କଟକ ମରହଟ୍ଟାଙ୍କ କଟକ ନ ଥିଲା । ଏହା ଥିଲା ମହାନଦୀ ମୁହାଣର ଫଲ୍‌ସ ପଏଣ୍ଟ । ସେଠାରୁ ଡାକ କିଛି କଟକକୁ ଆସୁଥିଲା ବାକି ସବୁ ସମୁଦ୍ରପଥରେ ଗଞ୍ଜାମ ଯାଉଥିଲା ।

ଓ୍ୱାରେନ୍ ହେଷ୍ଟିଙ୍ଗସ୍ ଭାରତର ଗଭର୍ଣ୍ଣର ଜେନେରାଲ ହିସାବରେ ଡାକ ବିଭାଗରେ ଆଧୁନିକୀକରଣ କରି ଓଡ଼ିଶାର ସ୍ଥଳପଥରେ ନିୟମିତ ଡାକ ହରକରା ବ୍ୟବସ୍ଥା ଚଳାଇଲେ । ସେ ଜାଣିଥିଲେ ଯେ ମରହଟ୍ଟା ଓ ମୁସଲମାନଙ୍କ ମଧ୍ୟରେ ଶାନ୍ତି ରକ୍ଷା ପାଇଁ ୧୭୫୧ରେ ଗୋଟିଏ ଚୁକ୍ତି ହୋଇଥିଲା । ବଙ୍ଗ, ବିହାର ଓ ଓଡ଼ିଶା ପାଇଁ ଆଲିବର୍ଦ୍ଦି ଖାଁ ବର୍ଷକୁ ୧୨ ଲକ୍ଷ ସିକ୍କା ଟଙ୍କା ମରହଟ୍ଟାମାନଙ୍କୁ ଚଉଠ ଦେଉଥିଲେ । ସେତେବେଳକୁ ଗଞ୍ଜାମରେ ଇଷ୍ଟ ଇଣ୍ଡିଆ କମ୍ପାନୀର ବାଣିଜ୍ୟ କାରବାର ଜୋରରେ ଚାଲିଥିଲା, ବାଲେଶ୍ୱରରେ ବି ତଦନୁରୂପ କାରବାର ଥିଲା । ହେଷ୍ଟିଙ୍ଗସ୍ ନାଗପୁରର ଭୋନ୍‌ସଲାମାନଙ୍କ ସହିତ କଥାବାର୍ତ୍ତା କରି କିଛି ସୁବିଧା ହାସଲ କଲେ । କୌଣସି ଡାକଘର ନ ଥାଇ ମଧ୍ୟ କଟକ, ମାନ୍ଦ୍ରାଜ ଓ କଲିକତା ମଧ୍ୟରେ ଏକ ମଧ୍ୟବର୍ତ୍ତୀ କେନ୍ଦ୍ର ହେଲା । ୧୭୭୦ରେ ମାନ୍ଦ୍ରାଜ ଓ କଲିକତା ମଧ୍ୟରେ ଏକ ସାପ୍ତାହିକ ସ୍ଥଳପଥ ଡାକ ବ୍ୟବସ୍ଥା ଆରମ୍ଭ ହେଲା । କଲିକତାରେ ଥିବା ପୋଷ୍ଟମାଷ୍ଟର ଜେନେରାଲଙ୍କ ଅଧୀନରେ ୧୭୭୪ରେ ହିଁ ସ୍ଥାୟୀ ଭାବରେ ଡାକ ହରକରା ନିଯୁକ୍ତ କରାଗଲା । ସେତେବେଳେ ୫ଟି ଡାକ ମାର୍ଗ ଥିଲା । (୧) କଲିକତାରୁ ଗଞ୍ଜାମ (୨) କଲିକତାରୁ ପାଟନା (୩) ପାଟନାରୁ ବାରଣସୀ (୪) କଲିକତାରୁ ଢାକା ଓ (୫) ଦିନାଜପୁରରୁ ରାଜମହଲ । ସାଧାରଣ ଡାକ ଛଡ଼ା ଜରୁରି ଡାକ ସେବା ପାଇଁ ଘୋଡ଼ା ସବାର ବ୍ୟବହାର ହେଉଥିଲା । ସେମାନଙ୍କୁ କସିଦ୍ କୁହାଯାଏ ।

ଯାହା କିଛି ଡାକ ବ୍ୟବସ୍ଥା ଥିଲା ତାହା କେବଳ ଶାସକ ଓ ଶାସକବର୍ଗର ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସରକାରୀ ଡାକ ଛଡ଼ା ସରକାରୀ କର୍ମଚାରୀଙ୍କ ଘରୋଇ ଡାକ ଯାଇ ପାରୁ ନଥିଲା । ୧୭୬୭ରେ ପ୍ରଥମ ଲର୍ଡ କ୍ଲାଇବ ହିଁ କମ୍ପାନୀର କର୍ମଚାରୀମାନଙ୍କ ଘରୋଇ ଡାକ ନେବା ଆଣିବା ପାଇଁ କମ୍ପାନୀର ହରକରାମାନଙ୍କୁ ଅନୁମତି ଦେଲେ । ଓ୍ୱାରେନ୍ ହେଷ୍ଟିଙ୍ଗସ୍ କମ୍ପାନୀ ବ୍ୟବସ୍ଥାକୁ ବେସରକାରୀ ଲୋକଙ୍କ ଡାକ ନେବା ଆଣିବା ପାଇଁ ଅନୁମତି ଦେଲେ, ଏଥିଲାଗି ଡାକ ପ୍ରେରକଙ୍କୁ ମାସୁଲ ଦେବାକୁ ପଡୁଥିଲା । ବସ୍ତୁତଃ ୧୭୭୫ ଖ୍ରୀଷ୍ଟାବ୍ଦରୁ ହିଁ ଭାରତରେ ଯେଉଁ ଯେଉଁ ଅଞ୍ଚଳ ଇଷ୍ଟ ଇଣ୍ଡିଆ କମ୍ପାନୀର ଦଖଲକୁ ଆସୁଥିଲା ବା ଯେଉଁଠାରେ ତାର ବାଣିଜ୍ୟ କାରବାର ବଢୁଥିଲା ସେ ସବୁ ଅଞ୍ଚଳକୁ ଡାକ ପରିବହନ ବ୍ୟବସ୍ଥା ଲାଗୁ କରାଯାଉଥିଲା । ସେତେବେଳେ ୧୦୦ ମାଇଲ ଦୂରତା ପାଇଁ ଅଢ଼େଇ ତୋଲା ଓଜନର ଗୋଟିଏ ଚିଠିକୁ ଦୁଇଅଣା ପଡୁଥିଲା । ଏଥିଲାଗି ବଡ଼ ଡାକଘର ବା ଜେନେରାଲ ପୋଷ୍ଟଅଫିସ୍‌ରେ ଦୁଇଅଣା ମୂଲ୍ୟର ତମ୍ବା ଟିକଟ କିଣିବାକୁ ପଡୁଥିଲା । ସେତେବେଳେ ତିଆରି ହୋଇଥିବା ଡାକ ବିଭାଗର ନିୟମ କାନୁନ୍ ବେଶି କିଛି ପରିବର୍ତ୍ତନ ନ ହୋଇ ଆଜି ପର୍ଯ୍ୟନ୍ତ ଚାଲି ଆସିଛି । ବିଶେଷ ପରିବର୍ତ୍ତନ ଦୁଇଟି କ୍ଷେତ୍ରରେ ହୋଇଛି । ଗୋଟିଏ ହେଉଛି ତମ୍ବା ଫଳକ ବଦଳରେ ଡାକ ଟିକଟ ଏବଂ ଅନ୍ୟଟି ହେଉଛି ବଡ଼ ଡାକଘର ବଦଳରେ ଯେକୌଣସି ଡାକଘରେ ଟିକଟ ମିଳି ପାରୁଛି । ଅବଶ୍ୟ ଡାକ ମାସୁଲ ହାର ସମୟାନୁସାରେ ବଦଳିବାରେ ଲାଗିଛି ।

ବ୍ୟବସାୟ ବାଣିଜ୍ୟର ସୁରକ୍ଷା ପାଇଁ ଯେଉଁ ଡାକ ଚଳାଚଳ ଦରକାର ହେଲା, ତାକୁ ତ୍ୱରାନ୍ୱିତ କରିବା ଲାଗି କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ପଡ଼ୁଥିବା ଓଡ଼ିଶାକୁ ନିଜର କରଗତ ଲାଗି ଇଷ୍ଟ ଇଣ୍ଡିଆ କମ୍ପାନୀ ବାଧ୍ୟ ହେଲା । ଓଡ଼ିଶା ମଧ୍ୟରେ ଯାତାୟାତ ବିପଦସଙ୍କୁଳ ଥିଲା । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ନିଜ ଅଧିକାରକୁ ନେବା ଲାଗି ଇଷ୍ଟ ଇଣ୍ଡିଆ କମ୍ପାନୀ ତରଫରୁ ଗଭର୍ଣ୍ଣର ଜେନେରାଲ ୱେଲେସଲି ନାଗପୁରର ରାଜାଙ୍କୁ ପ୍ରସ୍ତାବ ଦେଲେ ଯେ ସେ କିଛି ଇଂରେଜ ସୈନ୍ୟଙ୍କୁ ଓଡ଼ିଶାରେ ସହାୟକ ସୈନ୍ୟ ଭାବରେ ରଖନ୍ତୁ ଏବଂ ସେମାନଙ୍କର ଖୋରାକ ପୋଷାକ ବାବଦରେ ଯାହା ଖର୍ଚ୍ଚ ହେବ ତାହାର ଭରଣା ପାଇଁ ଓଡ଼ିଶାର ଉପକୂଳ ଅଞ୍ଚଳକୁ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଦେଇ ଦିଅନ୍ତୁ । ଏହା ଥିଲା ଡକ୍ଟ୍ରିନ ଅଫ୍ ସବ୍‌ସିଡିଆରୀ ଆଲାଏନ୍ସ । ୱେଲେସଲିଙ୍କ ଏହି ପ୍ରସ୍ତାବ ମୂଳରେ ଗୋଟିଏ ଗୂଢ଼ ଉଦ୍ଦେଶ୍ୟ ଥିଲା ଯେ କଲିକତାର ଇଂରେଜ ଅଞ୍ଚଳ ଓ ମାନ୍ଦ୍ରାଜର ନର୍ଦ୍ଦର୍ନ ସରକାର (ଆଧୁନିକ ଆନ୍ଧ୍ର ପ୍ରଦେଶ) ମଧ୍ୟରେ ଥିବା ଓଡ଼ିଶା ଭଳି ବ୍ୟବଧାନଟି ଦୂର ହୋଇଯାଉ ଏବଂ ଭାରତର ପୂର୍ବ ଉପକୂଳଟି ଇଷ୍ଟ ଇଣ୍ଡିଆ କମ୍ପାନୀର କର୍ତ୍ତୃତ୍ୱକୁ ଆସୁ । ନାଗପୁର ରାଜା ସେକଥାକୁ ମନା କରିଦେଲେ । ଇଷ୍ଟ ଇଣ୍ଡିଆ କମ୍ପାନୀର କୋର୍ଟ ଅଫ୍ ଡାଇରେକ୍ଟର୍ସ ୱେଲେସଲିଙ୍କ ଯୋଜନାକୁ ଅନୁମୋଦନ କଲାରୁ ସେ ମରହଟ୍ଟା ଗୋଷ୍ଠୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ୧୮୦୩ ଅଗଷ୍ଟ ୩ରେ ଇଂରେଜ ସୈନ୍ୟ ଉଭୟ ଉତ୍ତର ଓ ଦକ୍ଷିଣରୁ ଓଡ଼ିଶା ଆକ୍ରମଣ କଲେ । କର୍ଣ୍ଣେଲ କାମ୍ପବେଲ ଓ ପରେ ପରେ ଜେନେରାଲ ହାରକୋର୍ଟ ଗଞ୍ଜାମ ନିକଟ ମନେଉ ଠାରୁ ସୈନ୍ୟବାହିନୀ ଧରି ଆଗେଇଲେ ଏବଂ ପୁରୀ ଓ କଟକକୁ ଅଧିକାର କରିନେଲେ । ମରହଟ୍ଟାଙ୍କ ଶେଷ ଅସ୍ଥାନ କଟକର ବାରବାଟି ଦୁର୍ଗ ଅକ୍ଟୋବର ୧୪ରେ ଇଂରେଜ ଅଧୀନକୁ ଆସିଲା । କର୍ଣ୍ଣେଲ ଫର୍ଗୁସନଙ୍କ ଅଧିନାୟକତ୍ୱରେ ଜଳେଶ୍ୱର ଠାରୁ ଇଂରେଜ ସୈନ୍ୟମାନେ ବାଲେଶ୍ୱର ଆଡ଼କୁ ଆଗେଇଲେ । ଏକ ଗୁପ୍ତ ସୈନ୍ୟବାହିନୀ ୭ଟି ଜାହାଜରେ ସେପ୍ଟେମ୍ବର ୨୧ରେ ବାଲେଶ୍ୱରରେ ଓହ୍ଲାଇଲେ ଓ ଅଚିରେ ବାଲେଶ୍ୱର, ଭଦ୍ରଖ ଓ ଯାଜପୁର ଦଖଲ କରିନେଲେ । ଫଳରେ ଉତ୍ତରରେ ସୁବର୍ଣ୍ଣରେଖା ଠାରୁ ଦକ୍ଷିଣରେ ଚିଲିକା ପର୍ଯ୍ୟନ୍ତ ସମଗ୍ର ଓଡ଼ିଶା ଇଂରେଜ ଶାସନାଧୀନ ହେଲା ଏବଂ କଲିକତା ଓ ମାନ୍ଦ୍ରାଜ ପ୍ରେସିଡେନ୍ସି ମଧ୍ୟରେ ଡାକ ଚଳାଚଳ ଲାଗି ଏକ ଅବିଚ୍ଛିନ୍ନ ସ୍ଥଳପଥ ମିଳିଗଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀର ବୋର୍ଡ ଅଫ୍ ଡାଇରେକ୍ଟର କଟକର ବ୍ୟାପାରକୁ ସୁରୁଖୁରୁରେ ଚଳାଇବା ପାଇଁ ପ୍ରଥମେ ପ୍ରଥମେ ସାମରିକ କର୍ମଚାରୀମାନଙ୍କୁ ମାଜିଷ୍ଟ୍ରେଟ କଲେ । ୧୮୦୩ରେ ସ୍ଥାପିତ ହୋଇଥିବା କଟକ ଡାକଘରର ପ୍ରଥମ ପୋଷ୍ଟମାଷ୍ଟର ହେଲେ ଲେଫ୍‌ଟନାଣ୍ଟ ହେକେଟ୍ ।

ଦୁଇ ବର୍ଷ ଭିତରେ ଶାନ୍ତି ଫେରି ଆସିବାରୁ ଇଷ୍ଟ ଇଣ୍ଡିଆ କମ୍ପାନୀର ଗଭର୍ଣ୍ଣର ଜେନେରାଲ ଇନ୍ କାଉନ୍‌ସିଲ ୧୮୦୫ ଜାନୁୟାରୀ ୫ରେ ଆଦେଶ ଦେଲେ ଯେ ଏଣିକି

ସବୁ ଡାକ ବ୍ୟବସ୍ଥା କଟକର ଉତ୍ତର ଓ ଦକ୍ଷିଣ ଡିଭିଜନର କଲେକ୍ଟରମାନଙ୍କ ହାତକୁ ଦେଇ ଦିଆଯାଉ ।

ସେତେବେଳେ ଡାକ ବ୍ୟବସ୍ଥା କେବଳ ଚିଠି ପତ୍ରରେ ସୀମିତ ନ ଥିଲା । ବିଦେଶୀ କର୍ମଚାରୀ ତଥା ଧନବାନ୍ ଲୋକମାନଙ୍କ (ବିଶେଷତଃ ଇଂରେଜ ବଣିକମାନଙ୍କ) ଯିବା ଆସିବା ପାଇଁ ଯେଉଁ ପାଲଙ୍କି ବା ସବାରି ଦରକାର ହେଉଥିଲା ଏବଂ ସେମାନଙ୍କ ମାଲମତା ବୋହିବା ପାଇଁ ଯେଉଁ ଭାର ବା ବାହୁଙ୍ଗି ବାହକମାନେ ଦରକାର ହେଉଥିଲେ, ସେ ସବୁ ବ୍ୟବସ୍ଥା କମ୍ପାନୀର ଡାକ ବିଭାଗ କରୁଥିଲା । ଭାର ବା ପାଲଙ୍କି ବାହକ ଯୋଗାଇବା ଲାଗି ମାଜିଷ୍ଟ୍ରେଟମାନେ ପରଓ୍ୱାନା ଜାରି କରୁଥିଲେ । ସେମାନଙ୍କ ପାଇଁ ମଜୁରି ହାର ନିର୍ଦ୍ଦିଷ୍ଟ ହୋଇଥିଲା । କଟକରୁ ପୁରୀକୁ ଯିବା ଲାଗି ଗୋଟିଏ ସବାରି, ଜଣେ ମଶାଲ୍‌ଚୀ ଓ ସବାରି ଆଦି ଲାଗି ଆଠଅଣା ପଡୁଥିଲା ।

ସେତେବେଳେ ଡାକ ବ୍ୟବସ୍ଥା ଦୁଇ ପ୍ରକାର ଥିଲା, ଗୋଟିଏ ହେଉଛି ଡିଷ୍ଟ୍ରିକ୍ଟ ପୋଷ୍ଟ ବା ଜିଲ୍ଲା ଡାକ ବ୍ୟବସ୍ଥା; ଏହା ଜରିଆରେ କେବଳ ସରକାରୀ ଡାକ ବା ଚିଠିପତ୍ର ବିନା ମାସୁଲରେ ଯିବା ଆସିବା କରୁଥିଲା । ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଜିଲ୍ଲାର ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ଥାନା ବା ପୋଲିସ କର୍ମଚାରୀଙ୍କ ସହିତ ଯୋଗସୂତ୍ର ରଖୁଥିଲେ । ଡାକବାହକ ଥିଲେ ଚୌକିଦାର, କନେଷ୍ଟବଳ ବା ରାସ୍ତାରେ ପଡୁଥିବା ଜମିଦାରଙ୍କ ଲୋକ ।

## ଡାକ ବିଭାଗର ଅବହେଳାର କାରଣ :

ଦ୍ୱିତୀୟ ଡାକ ବ୍ୟବସ୍ଥାର ନାମ ଥିଲା ଇମ୍ପେରିଆଲ ପୋଷ୍ଟ ବା ସମ୍ରାଟଙ୍କ ଡାକ । ଏହି ବ୍ୟବସ୍ଥାରେ ବଡ ବଡ଼ ସଡ଼କ କଡ଼ର ମୁଖ୍ୟ ଜନବସତିମାନଙ୍କରେ ଡାକଘର ଥିଲା । ଏହି ଡାକଘରମାନଙ୍କ ମଧ୍ୟରେ ଚଳାଚଳ କରୁଥିବା ଡାକ ହରକରାମାନେ କଲିକତାର ପୋଷ୍ଟ ମାଷ୍ଟର ଜେନେରାଲଙ୍କ ନିୟନ୍ତ୍ରଣରେ ଥିଲେ । ଏହି ପ୍ରକାର ଡାକ ଚଳାଚଳ ପାଇଁ ଦାୟୀ ଥିବା କଲେକ୍ଟରମାନେ ଡାକ ଚଳାଚଳ ସମ୍ପର୍କରେ ପୋଷ୍ଟମାଷ୍ଟର ଜେନେରାଲଙ୍କ ଆଦେଶ ମାନୁଥିଲେ । ୧୯୦୬ ପର୍ଯ୍ୟନ୍ତ ଓଡ଼ିଶାରେ ଜିଲ୍ଲା ଡାକ ବ୍ୟବସ୍ଥା ଚାଲୁ ରହିଥିଲା । ଭାରତ ସରକାରଙ୍କ ଡାକ ବ୍ୟବସ୍ଥା କେବଳ କଲିକତା ମାନ୍ଦ୍ରାଜ, କଟକ, ସମ୍ବଲପୁର, ରାୟପୁର, ମେଦିନୀପୁର ଏବଂ ଗଞ୍ଜାମ ଆସ୍କା ରାସ୍ତା-କଡ଼ରେ ସୀମିତ ଥିଲା । ଏହି କାରଣରୁ ଓଡ଼ିଶା ଡାକ ଚଳାଚଳ ଦୃଷ୍ଟିରୁ ବହୁତ ଅନୁନ୍ନତ ଥିଲା । ଡାକ ବ୍ୟବହାର କରିବାର ଆବଶ୍ୟକତା ମଧ୍ୟ ଓଡ଼ିଶାର ଜନ-ସାଧାରଣଙ୍କ ମଧ୍ୟରେ ଅନୁଭୂତ ହେଉ ନ ଥିଲା । ୧୮୬୬ର ନଅଙ୍କ ଦୁର୍ଭିକ୍ଷ ପରେ ବହୁତ ଓଡ଼ିଆ କଲିକତା, ରେଙ୍ଗୁନ ଭଳି ଦୂର ଦୂରାନ୍ତରେ କାମ କରିବାକୁ ବାହାରିଲେ । ଘର ସହିତ ସମ୍ପର୍କ ରଖିବା ଲାଗି, ସେମାନଙ୍କ ପାଇଁ ହିଁ ଡାକ ବ୍ୟବସ୍ଥାର ପ୍ରସାର ଘଟିଲା । ତେଣୁ ଆଧୁନିକ ଡାକ ବ୍ୟବସ୍ଥାର ମୂଳଦୁଆ କଟକ ନଗରରେ ତଥା ଓଡ଼ିଶାରେ ପଡ଼ିଲାବେଳକୁ ୧୯ଶ ଶତାବ୍ଦୀ ସରି ଆସୁଥିଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀ ଦେଖିଲା ଯେ ଜମିଦାରମାନେ ଶାରୀରିକ ସେବା ଯୋଗାଇବା ବଦଳରେ ମଜୁରୀ ବାବଦକୁ କିଛି ପଇସା ଦେଲେ ବେଶି ସୁବିଧା ହେବ । ଡାକ ହରକରା ଭାବରେ କମ୍ପାନୀର ଚାକର କମ୍ପାନୀର ହୁକୁମ ଅନୁଯାୟୀ ଡାକ ଚଳାଚଳ କରିବ । ୧୮୬୨ ର ୮ ଆଇନ (Act-VIII) ଅନୁଯାୟୀ ମାଜିଷ୍ଟ୍ରେଟମାନେ ଭୂ-ରାଜସ୍ୱ ଉପରେ ଡାକ ସେସ୍ ଲଦିଦେଲେ । କଟକ ଜିଲ୍ଲାର ଜମିଦାରମାନେ ଆଉ ଲୋକ ଯୋଗାଇଲେ ନାହିଁ । କେବଳ ସେସ୍ ଦେଲେ । ଅନ୍ୟ ଜିଲ୍ଲାରେ ଜମିଦାରମାନେ ସେସ୍‌ଦେବା ସାଙ୍ଗକୁ ଡାକଚୌକି ବି ରଖିଲେ । ସେମାନଙ୍କ ନିଜ ସରକାରୀ ଡାକ ନେବା ଆଣିବା କରିବା ପାଇଁ ଦରକାର ଥିଲା । ୧୫ ପୋଷ୍ଟ ଅଫିସ ହେଡ଼ରେ ଇମ୍ପେରିଆଲ ରେଭିନ୍ୟୁ ହିସାବରେ ଜମିଦାରୀ ଡାକ ସେସ୍ ଜମା କରାଗଲା । ସେସ୍ ଇମ୍ପେରିଆଲ ପୋଷ୍ଟାଲ ଡିପାର୍ଟମେଣ୍ଟର ଆୟର ଅଂଶ ହୋଇଗଲା । ଏହି ବ୍ୟବସ୍ଥା ୧୯୦୬ ଅପ୍ରେଲ ୧ ତାରିଖରୁ ପୁରାପୁରି ଉଠିଗଲା । ଗଡ଼ଜାତ ଅଞ୍ଚଳରେ କରଦ ରାଜ୍ୟର ରାଜାମାନେ ଗଡ଼ଜାତ ଡାକ ପାଣ୍ଠିକୁ ତଦନୁରୂପ ଦେୟ ଦେଉଥିଲେ । ତାହା ମଧ୍ୟ ୧୯୦୬ ରେ ଉଠିଗଲା । ଗୋଟିଏ କଥାରେ କହିଲେ ୧୯୦୬ ପର୍ଯ୍ୟନ୍ତ ଓଡ଼ିଶାରେ ଆଧୁନିକ ଡାକ ଚଳାଚଳ ବ୍ୟବସ୍ଥାର ମୂଳଦୁଆ ପଡ଼ି ନଥିଲା ।

ବଡ଼ ବଡ଼ ରାସ୍ତା ତଥା ଜଗନ୍ନାଥ ସଡ଼କ ଛଡ଼ା ଅନ୍ୟତ୍ର ଇମ୍ପେରିଆଲ ଡାକ ଯାଉନଥିଲା । ପୁରୀ ଜିଲ୍ଲା ମହାକୁମାର ଆଭ୍ୟନ୍ତରୀଣ ଅଞ୍ଚଳରେ ଥିବା ବିଭିନ୍ନ ପୋଲିସ ତଥା ରାଜସ୍ୱ କର୍ମଚାରୀମାନଙ୍କ ପାଇଁ ଯାଉଥିବା ଡାକ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ଅଧୀନରେ ପରିଚାଳିତ ଡିଷ୍ଟ୍ରିକ୍ଟ ପୋଷ୍ଟଦ୍ୱାରା ଯାଉଥିଲା । ଯେଉଁ ଅଞ୍ଚଳରେ ଇମ୍ପେରିଆଲ କିମ୍ବା ଡିଷ୍ଟ୍ରିକ୍ଟ ଡାକ ନଥିଲା ସେଠି କାର୍ଯ୍ୟରତ ସରକାରୀ ବିଭାଗ ନିଜ ଡାକ ଚଳାଚଳ କରୁଥିଲା । ଯଥା—ଧାମରା ମୁହାଣରୁ ଶୁଳ୍କ ଡିପାର୍ଟମେଣ୍ଟର ଲୋକ କଟକ ପର୍ଯ୍ୟନ୍ତ ଆଣୁଥିଲେ ।

୧୯୦୬ ପର୍ଯ୍ୟନ୍ତ ପାଦଚଲା ହରକରା ହିଁ ଡାକନେବା ଆଣିବା କରୁଥିଲା । ଗାଡ଼ିଘୋଡ଼ା ବା ସାଇକେଲ ବ୍ୟବହାର ହେଉ ନଥିଲା । ବରଂ କାମ କମିଗଲେ (ଯେପରି ଲୁଣମରା କମିଗଲେ) କେତେଗୁଡ଼ିଏ ଡାକ ଚୌକି ଉଠାଇ ନିଆଯାଉଥିଲା । ଡାକ ଦୁଇ ରକମର ଥିଲା । ଗୋଟିଏ ଚିଠିପତ୍ର ନେବା ଆଣିବା ପାଇଁ ଓ ଅନ୍ୟଟି କର୍ମଚାରୀମାନଙ୍କର ଜିନିଷପତ୍ର ତଥା କର୍ମଚାରୀଙ୍କୁ ଆଣିବା ପାଇଁ । ପାଲିଙ୍କି ବା ସରକାରୀ କର୍ମଚାରୀମାନଙ୍କ ଯିବାଆସିବା ପାଇଁ ବ୍ୟବହାର ହେଉଥିଲାବେଳେ ସେମାନଙ୍କ ଜିନିଷପତ୍ର ବାହୁଙ୍ଗି ବା ''ଭାଙ୍ଗି''ରେ ଆସୁଥିଲା । ବାହୁଙ୍ଗି ବା ଭାରର ବାହକ ଏବଂ ପାଲିଙ୍କି ବାହକ ନିଯୁକ୍ତି ପାଇଁ ଯେଉଁ ସରକାରୀ ନିୟମ ଥିଲା, ତହିଁରେ ୧୮୬୪ ମେଁ ୧ ତାରିଖ ପର୍ଯ୍ୟନ୍ତ ଡାକ ବିଭାଗର କର୍ତ୍ତୃତ୍ୱ ଥିଲା । ତାପରେ ଡାକ ବିଭାଗରୁ ଅଲଗା ହୋଇ ମାଜିଷ୍ଟ୍ରେଟମାନଙ୍କ ଅଧୀନକୁ ଚାଲିଗଲା । ଭାର ବା ବାହୁଙ୍ଗୀ ଡାକ ୧୮୮୧ ପର୍ଯ୍ୟନ୍ତ ଡାକ ବିଭାଗ ଅଧୀନରେ ଚାଲୁ ରହିଥିଲା, ତା' ପରଠାରୁ ପାର୍ସଲ ପୋଷ୍ଟ ପ୍ରବର୍ତ୍ତନ କରାଗଲା ।

ଏ ପ୍ରକାର ଡାକ ସେବାରେ ଭାରବାହୀ ମଣିଷ ଥକିଗଲେ ବାଟରେ ବିଶ୍ରାମ ନେବା ଦରକାର । ବେଶି ଦୂର ଥିଲେ ତାଠାରୁ ଆଉ ଜଣେ ନେବା ଦରକାର । ଏହି ବିଶ୍ରାମ ବା ବିନିମୟ ସ୍ଥାନଟିର ନାମ ଥିଲା ଡାକଚୌକି । ସବାରୀରେ ବା ପାଲିଙ୍କି ଡାକରେ ଆସୁଥିବା କର୍ମଚାରୀମାନେ ଯେଉଁଠି ବିଶ୍ରାମ ନେଉଥିଲେ ବା ଯେଉଁଠାରେ ପାଲିଙ୍କି ବା ସବାରୀ ବାହକମାନେ ଅଦଳବଦଳ ହେଉଥିଲେ, ସେ ସ୍ଥାନଟିର ନାମ ଥିଲା ଡାକବଙ୍ଗଳା । ଡାକବଙ୍ଗଳାରେ ସାଧାରଣ କର୍ମଚାରୀମାନେ ରାତି ଯାପନ କରୁଥିଲେ । ପରଦିନ ସକାଳୁ କର୍ମଚାରୀମାନଙ୍କ ସହିତ ସେମାନଙ୍କ ଡାକ ମଧ୍ୟ ନୂତନ ବାହକ-ମାନଙ୍କଦ୍ୱାରା ବୁହା ହେଉଥିଲା । ଏହି ସେବା ବ୍ୟବହାର କରୁଥିବା କର୍ମଚାରୀ, ବ୍ୟବସାୟୀ ତଥା ୟୁରୋପୀୟ ପଥିକମାନେ ଯେଉଁ ଦେୟ ଦେଉଥିଲେ ସେଇ ପଇସାରେ ଡାକ ବଙ୍ଗଳାର ରକ୍ଷଣାବେକ୍ଷଣ କରାଯାଉଥିଲା । ୧୮୩୭ ପରଠାରୁ ପାଲିଙ୍କି ଓ ଘୋଡ଼ା ଡାକ ବେସରକାରୀ ଲୋକମାନେ ବ୍ୟବହାର କରିବାର ସୁବିଧା ପାଉଥିଲେ ଏବଂ ସେମାନଙ୍କଠାରୁ ବାହକ-ମାନଙ୍କର ପୂରା ମଜୁରି ଆଦାୟ କରାଯାଉଥିଲା । ବ୍ୟବହାରକାରୀମାନେ ବେଳେ ବେଳେ ବକ୍‌ସିସ୍ ଦେଉଥିଲେ । ଶୀଘ୍ର ଶୀଘ୍ର ଯିବାପାଇଁ ଅଧିକା ବକ୍‌ସିସ୍ ବି ମିଳୁଥିଲା । ବେଳେବେଳେ ଡାକ ସର୍ଦ୍ଦାରମାନେ ବେସରକାରୀ ପଥିକମାନଙ୍କଠାରୁ କିଛି ଦସ୍ତୁରି ଆଦାୟ କରୁଥିଲେ । ଏ ବ୍ୟବସ୍ଥାରେ ଯାହା ଦୋଷତ୍ରୁଟି ଥାଉ ନା କାହିଁକି ଭବିଷ୍ୟତ ପାଇଁ ଗୁଡ଼ିଏ ଡାକ ବଙ୍ଗଳା ରାସ୍ତା କଡ଼ରେ ତିଆରି ହୋଇ ରହିଗଲା ।

ସେତେବେଳେ ଭାରବାହକ ବା ଭାର୍ଙ୍ଗି ବରଦାର ମାସକୁ ୩ ଟଙ୍କା ୧୨ ଅଣା ପାଉଥିଲା । ଭାର୍ଙ୍ଗି ବରଦାରମାନଙ୍କ ଉପରେ ଯେଉଁ ସର୍ଦ୍ଦାର ବା ଅଡ଼ତ୍‌ଦାର ଥିଲା ସେ ମାସକୁ ୮ ଅଣା ପାଉଥିଲା । ୧୮୩୭ ପରେ ଏହାକୁ ୧୨ ଅଣାକୁ ବଢ଼ାଇ ଦିଆଗଲା । ୧୮୨୯ ସେପ୍‌ଟେମ୍ବର ୨୮ ରେ ବାଲେଶ୍ୱର ପୋଷ୍ଟ ଅଫିସର ପୋଷ୍ଟ ମାଷ୍ଟର କଟକ ଜିଲ୍ଲା କମିଶନରଙ୍କୁ ଡାକ ବିଷୟରେ ଯେଉଁ ଚିଠି ଲେଖିଥିଲେ ସେଥିରୁ ତତ୍କାଳୀନ ସାମାଜିକ ଜୀବନର କିଛି କିଛି ରୂପ ମିଳେ । ତହିଁର କିଛି ଅଂଶ ଓଡ଼ିଆରେ ଉଦ୍ଧୃତ କରି ତଳେ ଦିଆଗଲା ।

"ରପ୍ତାନି ଚିଠି ଛାଡ଼ିଦେଲେ ଧାମରାରୁ କଟକ ଯାଉଥିବା ସବୁ ଚିଠି ପଏଣ୍ଟ ପାମିରାସରେ ଥିବା କର୍ମଚାରୀମାନଙ୍କ ବ୍ୟକ୍ତିଗତ ଚିଠିଥିଲା । ସପ୍ତାହରେ ୨ ଥରରୁ ବେଶି ନୁହେଁ । ପ୍ରତ୍ୟେକ ଚିଠିକୁ ବ୍ୟକ୍ତିବିଶେଷଙ୍କୁ ନ ପଠାଇ ଦୁଇଟି ପାକେଟ କରି ସୁପେରିନ୍-ଟେଣ୍ଡେଣ୍ଟଙ୍କ ନାମରେ ପଠାଇଲେ ଭଲ ହୁଅନ୍ତା । ଧାମରା ଅଡ଼ତ୍‌ଦାର ନାମରେ ପଠାଯାଉଥିବାରୁ ବେଶି ଖର୍ଚ୍ଚ ହେଉଛି । ସଦର ଅଫିସରେ ୩ ଜଣ ଏକ୍‌ସପ୍ରେସ୍ ରନର୍‌ଙ୍କୁ ରଖାଇ ସପ୍ତାହରେ ଦୁଇଥର ଧାମରା ପଠାଇ, ସେଠାରୁ ଡାକ ଆଣି ଏବଂ ସବୁ ଡାକକୁ ଗୋଟିଏ ଲେଖାଏଁ ପାକେଟରେ ଅଣାଇଲେ ବା ଦେଲେ ମାସକୁ ୧୨ ଟଙ୍କାରୁ ବେଶି ଖର୍ଚ୍ଚ ହେବନାହିଁ । ଅଧିକନ୍ତୁ ଧାମରାରେ ଡାକଦେଲାବେଳେ ଗୋଟିଏ ପାକେଟରେ ବିଲଣ ଉପରେ ଦସ୍ତଖତ ଆଣିହେବ । ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ଦସ୍ତଖତ ଆଣିବା ଦରକାର

ପଡ଼ିବ ନାହିଁ । ଯେତେବେଳେ ଧାନ, ଗୁଡ଼ର ରପ୍ତାନି ଉଦ୍ଦେଶ୍ୟରେ ବେଶି ଲୋକଙ୍କ ଚିଠି ଡିସେମ୍ବର, ଜାନୁଆରୀରେ ଆସିବ ସେତେବେଳେ ଧାମରାରେ ଥିବା ଶୁଳ୍କ ଚୌକି (କଷ୍ଟମ ହାଉସ୍) ଏ କାମ ସମ୍ଭାଳି ପାରିବ । ଡେପୁଟି ପୋଷ୍ଟମାଷ୍ଟର କହିଲେ ସେ ଆପତ୍ତି ଉଠାଇ ପାରନ୍ତି, କିନ୍ତୁ କାଲେକ୍ଟର କହିଲେ ଆପତ୍ତି ଉଠାଇବେ ନାହିଁ । ଦିନେ ନା ଦିନେ ତ' ଡାକଘର ଦାୟିତ୍ୱ କଲେକ୍ଟରଙ୍କ ଆସିଷ୍ଟାଣ୍ଟଙ୍କ ହାତକୁ ଯିବ । ତେଣୁ କଷ୍ଟମ ହାଉସ୍ ଦାରୋଗା ଏ ବ୍ୟବସ୍ଥାରେ ଆପତ୍ତି ଉଠାଇବ ନାହିଁ । ନିୟମିତ ଧାମରା ସହିତ ଯୋଗାଯୋଗ ରକ୍ଷା କରିବାପାଇଁ ମୋତେ ମଝିରେ ମଝିରେ ଦୌଡ଼ାଳି (ଏକ୍ସପ୍ରେସ୍ ରନର୍) ପଠାଇବାକୁ ପଡ଼ୁଛି । ଏଣୁ ମୁଁ ଉପରୋକ୍ତ ପ୍ରସ୍ତାବ ଆପଣଙ୍କ ଅନୁମୋଦନ ପାଇଁ ପଠାଉଛି ।

ସେତେବେଳେ କଟକର କମିଶନର ୧୯୬୭ ଏପ୍ରିଲ ୨୦ରେ ୬୦ ନମ୍ବର ଚିଠିରେ ଲେଖିଲେ ଯେ ପାଦଚଲା ହରକରା ଭଲ କାମ କରୁ ନଥିବାରୁ କଲିକତା କଟକ ମଝିରେ ଡାକରେ ହେଳା ହେଉଛି, ତେଣୁ ଘୋଡ଼ା ଗାଡ଼ିର ବ୍ୟବସ୍ଥା କରାଯାଉ, ସେତେବେଳେ ବଙ୍ଗଳାର ପୋଷ୍ଟମାଷ୍ଟର ଜେନେରାଲ ଏଫ୍. ଆର୍. ହଗ୍ ତାଙ୍କର ୧୮୬୯ ମେ ୧୦ ତାରିଖର ୨୧୦ ନଂ ଚିଠିରେ ବଙ୍ଗଳାର ସରକାରଙ୍କ ସଚିବଙ୍କୁ ଜଣାଇଦେଲେ ଯେ କଲିକତା ଓ ମେଦିନୀପୁର ମଧ୍ୟରେ ଘୋଡ଼ାଗାଡ଼ିରେ ଡାକ ନେବା ଆଣିବା ସମ୍ପ୍ରତି ଆରମ୍ଭ ହୋଇଛି । କଲିକତାରୁ ମେଦିନୀପୁରକୁ ଖର୍ଚ୍ଚ ୫୨୧ ଟଙ୍କା ପଡ଼ୁଛି । ଡାକରୁ ତ ଏତିକି ପଇସା ଉଠୁନାହିଁ । ଡାକ ହରକରା ବ୍ୟବସ୍ଥାରେ ମାଇଲକୁ ୩ ଟଙ୍କା ୬ ଅଣା ୧ ପଇସା ଖର୍ଚ୍ଚ ହେଉଥିଲାବେଳେ ଘୋଡ଼ାଗାଡ଼ି ଡାକ ନେଲେ ୧୬ ଟଙ୍କା ୧୨ ଅଣା ୨ ପଇସା ଖର୍ଚ୍ଚ ହେବ । ପୁନଶ୍ଚ ଡାକର ଓଜନ ଏତେ ନୁହେଁ ଯେ ଜଣେ ଲୋକ ନେଇ ପାରିବ ନାହିଁ । ତେଣୁ ଡାକଗାଡ଼ି ଚଳାଇବା ବର୍ତ୍ତମାନ ପରିସ୍ଥିତିରେ ଉଚିତ୍ ନୁହେଁ । କଟକ ପର୍ଯ୍ୟନ୍ତ ଡାକଗାଡ଼ି ଚଳାଇବା ପାଇଁ ଯେଉଁ ଖର୍ଚ୍ଚ ହେବ ସେଥିରେ ଭାରତ ସରକାର ଆପତ୍ତି କରିପାରନ୍ତି । ତେଣୁ, କଲିକତା-ମେଦିନୀପୁର ମଧ୍ୟରେ ଡାକଗାଡ଼ି ବ୍ୟବହାର ନିୟମିତ ହୋଇଗଲା ପରେ କଟକ କଥା ଚିନ୍ତା କରାଯିବ ।

ଏଥିରୁ ମନେ କରିହେବ କିପରି ଓଡ଼ିଶାରେ ଡାକ ଚଳାଚଳ ବ୍ୟବସ୍ଥା ଅନୁନ୍ନତ ଥିଲା । ବସ୍ତୁତଃ ୧୯୦୬ରେ ଜମିଦାରୀ ଡାକସେସ୍ ଉଠିଗଲା ପରେ ଡାକ ବ୍ୟବସ୍ଥା ପ୍ରଦେଶସାରା ସରକାରୀ କଟକଣାକୁ ଆସିଗଲା । ଓଡ଼ିଶାରେ ଘୋଡ଼ାଗାଡ଼ିରେ ଡାକ ନେବା ଆଣିବା କେବେ ସମ୍ଭବ ହେଲାନାହିଁ । କେବଳ ସହର ଡାକ ଘରମାନଙ୍କରେ ସହର ଅଞ୍ଚଳ ପାଇଁ ଡାକ ପିଅନମାନଙ୍କୁ ୧୯୦୬ ପରଠାରୁ ଆସ୍ତେ ଆସ୍ତେ ସାଇକେଲ ଦେବାର ବନ୍ଦୋବସ୍ତ ହେଲା । ବସ୍ତୁତଃ ୧୯୫୪ରେ ଡାକ ବିଭାଗ ପ୍ରଥମ ଡାକଟିକଟ ପ୍ରକାଶନର ଶତାବ୍ଦୀ ପାଳନ ଅବସରରେ ଆମ ଦେଶବ୍ୟାପୀ ଯେଉଁ ନୂଆ ନୂଆ କାର୍ଯ୍ୟକ୍ରମ ହାତକୁ ନେଲେ ସେଇ ଅନୁସାରେ ଗାଁ ଗହଳିରେ ବଡ଼ ବଡ଼ ଡାକଘରର ହରକରା ଓ ପିଅନମାନଙ୍କୁ ସାଇକେଲ ଯୋଗାଇ ଦିଆଗଲା । ସେଇଦିନଠାରୁ ଉସନ୍ଧିତ ଡାକସେବା ଓ ଆଧୁନିକ ଡାକ ବ୍ୟବସ୍ଥା କଟକ ନଗରରୁ ଆରମ୍ଭ ହେଲା । ପରେ ରାଜ୍ୟସାରା ବ୍ୟାପିଲା । କଟକର ପରବର୍ତ୍ତୀ ଡାକ ଇତିହାସ ଓଡ଼ିଶାର ଡାକ ଇତିହାସ ଭିତରେ ମିଶିଗଲା ।

# କଟକରେ ଉତ୍ତର ଓ ଦକ୍ଷିଣ ଭାରତୀୟ

ଶ୍ରୀ ଦୁଃଖିଶ୍ୟାମ ମହାପାତ୍ର

ଓଡ଼ିଶାର ଇତିହାସକୁ ଅନୁଧ୍ୟାନ କଲେ କଟକ ସହରର ଇତିହାସ ଓ ତାର ଭିନ୍ନ ଭିନ୍ନ ପ୍ରାନ୍ତୀୟ ଲୋକମାନଙ୍କର ଆଗମନ ଓ କଟକରେ ବସବାସ ସମ୍ବନ୍ଧରେ କିଞ୍ଚିତ ଧାରଣା କରିହୁଏ ।

୬ଷ୍ଠ ଶତାବ୍ଦୀରେ ରକ୍ତବାହୁଙ୍କର ଓଡ଼ିଶା ଆକ୍ରମଣ ପରେ ୭ମ ଓ ୯ମ ଶତାବ୍ଦୀ ପର୍ଯ୍ୟନ୍ତ ଭୌମକର ବଂଶୀୟ ରାଜାମାନଙ୍କର ଶାସନ ଛତ୍ର ତଳେ ଚାଲିଥିଲା ଓଡ଼ିଶାର ଶାସନ । ସେହି କାଳ ମଧ୍ୟରେ କବୀର, ରାମାନନ୍ଦ, ତୁଳସୀ ଦାସ, ବଲ୍ଲଭାଚାର୍ଯ୍ୟ ଓ ମୀରା ଇତ୍ୟାଦିଙ୍କର ପ୍ରଭାବ । ମହାରାଷ୍ଟ୍ରର ମରାଠୀ ଜ୍ଞାନେଶ୍ୱର, ନାମଦେବ ଓ ତୁକାରାମ ଏବଂ ବଙ୍ଗଳାର ମାଳାଧର ବସୁ, ଚଣ୍ଡୀଦାସ, ଲୋଚନଦାସ ଇତ୍ୟାଦି ଓଡ଼ିଶାର ସଂସ୍କୃତିକୁ ଅନେକାଂଶରେ ପ୍ରଭାବିତ କରିଛନ୍ତି ।

ଭୌମକରବଂଶୀମାନେ ବୌଦ୍ଧଧର୍ମର ପୃଷ୍ଠପୋଷକ ଥିଲେ ଏବଂ ସେମାନଙ୍କ ସମୟରେ କଟକର ଆସପାଶରେ ଅନେକଗୁଡ଼ିଏ ବୌଦ୍ଧମନ୍ଦିର ଓ ଚୈତ୍ୟ ନିର୍ମିତ ହୋଇ ତାର ସ୍ୱକୀୟ ଚିତ୍ରକଳା ଓ ଭାସ୍କର୍ଯ୍ୟଦ୍ୱାରା କଟକର ସଂସ୍କୃତି ଓ ସାହିତ୍ୟକୁ ପ୍ରଭାବିତ କରିଥିଲା । ତତ୍ପୂର୍ବରୁ ଖ୍ରୀ: ପୂ: ୧ମ ଶତାବ୍ଦୀ ସମୟକୁ ଐରବଂଶାବତଂଶ ଖାରବେଳଙ୍କ ଦ୍ୱାରା ଜୈନ ଧର୍ମର ପ୍ରାଣକେନ୍ଦ୍ର ହୋଇ ଉଠିଥିଲା ଉତ୍କଳ ଏବଂ କଟକ ବହୁ ନରପତିଙ୍କର ଶାସନର କେନ୍ଦ୍ରସ୍ଥଳୀ ରୂପେ ଧର୍ମ, କଳା ଓ ସାହିତ୍ୟର ଭିନ୍ନ ରଙ୍ଗରେ ପ୍ଳାବିତ ହୋଇ ସୁଦ୍ଧା ସ୍ୱକୀୟ ମୌଳିକତାକୁ କ୍ଷୁର୍ଣ୍ଣ କରିନଥିଲା ।

୯ମ ଶତାବ୍ଦୀରେ ଆଚାର୍ଯ୍ୟ ଶଙ୍କରଙ୍କର ଉତ୍କଳ ଆଗମନ ଫଳରେ ଅବ୍ରାହ୍ମଣ ଧର୍ମ ଓ ସଂସ୍କୃତିର ଲୀଳା ସଙ୍ଗମ ପୁରୁଷୋତ୍ତମ କ୍ଷେତ୍ରର ଧର୍ମଧାରା ବ୍ରାହ୍ମଣ୍ୟ ଧର୍ମରେ ହୋଇଗଲା ବିଲୀନ । ଚତୁର୍ଦ୍ଦଶ ଶତାବ୍ଦୀରେ ଦିଲ୍ଲୀ ବାଦସାହଙ୍କ ଆକ୍ରମଣ, ଷୋଡ଼ଶରୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ମୁସଲମାନ ଆକ୍ରମଣ ତାପରେ ପ୍ରାୟ ପଚାଶବର୍ଷ ପର୍ଯ୍ୟନ୍ତ ମରହଟ୍ଟା ଶାସନ ଏବଂ ତେଣୁ ଇଂରେଜ ଶାସନର କଳଙ୍କିତ ଶାସନ

ଅଧ୍ୟାପ୍ତ ଯୋଗୁହିଁ କଟକ କାହିଁକି ସମଗ୍ର ଓଡ଼ିଶାରେ ବହୁ ପରିବର୍ତ୍ତନ ଘଟି ତାର ଶିକ୍ଷା, ସଂସ୍କୃତି, ଚିତ୍ରକଳା, ଭାସ୍କର୍ଯ୍ୟ ଇତ୍ୟାଦିକୁ ନୂତନ ରୂପ ଦେଇଛି ।

ଚୋଡ଼ଗଙ୍ଗ ଦେବ ମହେନ୍ଦ୍ରାଚଳରୁ ନିଜର ରାଜଧାନୀ ବାରାଣାସୀ କଟକକୁ ଆଣିଥିଲେ; ଶୈବଧର୍ମ ଛାଡ଼ି ଗ୍ରହଣ କରିଥିଲେ ବୈଷ୍ଣବ ଧର୍ମ, ଦ୍ୱିତୀୟ ଅନଙ୍ଗଭୀମ ଦେବ ନିଜର ରାଜଧାନୀ ବାରାଣାସୀ ନଗରରୁ ଆଣି କଟକରୁ ଶାସନ କରିଥିଲେ ସେହିପରି,

"In the seventh reignal year of Narasingh Deva, there lived a king in Khimundi called Kumar Purusottam Deva of Attreya Gotra who donated a perpetual lamp to the God Kumar Swamin on the eve of his son Indradeva's death"

ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ପାରଳାଖେମୁଣ୍ଡି ସେତେବେଳେ ଆଜିର ଆନ୍ଧ୍ରପ୍ରଦେଶରେ (ପୂର୍ବ ମାଦ୍ରାଜ ପ୍ରଦେଶରେ) ଥିଲା ।

ଏହି ଶାସନର ଇତିହାସ ସୂତ୍ରକୁ ଧରିଲେ କଟକ ସହରକୁ ସର୍ବପ୍ରଥମେ ଆସିଥିବା ଦକ୍ଷିଣ ଭାରତୀୟ ଭାଷାଭାଷୀ ଲୋକମାନଙ୍କ ସମ୍ବନ୍ଧରେ ଯଥେଷ୍ଟ କିଛି ଧାରଣା କରିହୁଏ ।

ଭୌମବଂଶ ଶାସନକାଳରେ ଯେଉଁ ସିଂହଭୂମି, ମାନଭୂମି, ବାରଭୂମି ଓ ଧଳଭୂମି ଆଦି ଓଡ଼ିଶାର ଅଂଶବିଶେଷ ଥିଲା ସେ ସବୁର ସଂସ୍କୃତି ଓଡ଼ିଶା କାହିଁକି କଟକ ସହରରେ ବିଶେଷ ଭାବରେ ପରିଦୃଷ୍ଟ ହୁଏ । ଆଜି କଟକରେ ଯେଉଁ ମର୍ଦ୍ଦଳ, ନାଗରା, ସାହନାଇ, କାହାଳୀ, ଯୋଡ଼ିମହୁରି ଓ ଢୋଲ ଇତ୍ୟାଦିର ବହୁଳ ବ୍ୟବହାର ଦେଖାଯାଏ ତାହା ଉତ୍ତର ଓ ଦକ୍ଷିଣଭାରତୀୟ ବାଦ୍ୟଯନ୍ତ୍ର ସଂସ୍କୃତିର ଅଙ୍ଗ ବିଶେଷ ।

ବାରମ୍ବାର ବିଭିନ୍ନ ପ୍ରାନ୍ତୀୟ ପ୍ରଦେଶରୁ ଆସିଥିବା ନରପତି ଓ ସେମାନଙ୍କର ପାର୍ଷଦ, କର୍ମଚାରୀ, ସେନାବାହିନୀ ଆଦି ଭିତରେ ରାଜଧାନୀ କଟକରେ ଅବସ୍ଥାନ କରିଛନ୍ତି । ସେହିପରି ମରହଟ୍ଟା ଶାସନକାଳରେ (ପଚାଶବର୍ଷ) କଟକରେ କୋର୍ଟ କଚେରୀରେ ପ୍ରଚଳିତ ଭାଷାରେ, ଜମିଜମା ବନ୍ଦୋବସ୍ତ ସମ୍ବନ୍ଧୀୟ ଭାଷାରେ ଏବେ ମଧ୍ୟ ବହୁ ମରାଠୀ ଭାଷା ଓଡ଼ିଆମାନଙ୍କ ଦ୍ୱାରା ବ୍ୟବହୃତ ହୋଇ ଆସୁଛି । ମରହଟ୍ଟା ଶାସକମାନଙ୍କ ଦ୍ୱାରା ନିର୍ମିତ ଦୀର୍ଘ ଅଶ୍ୱଶାଳା ବର୍ତ୍ତମାନ ରାଜ୍ୟ ପୋଲିସବାହିନୀର ବାସଗୃହରେ ପରିଣତ ହୋଇଛି । କଟକର ଗୁଡ଼ିଲଆଗଞ୍ଜ, ରଘୁନାଥଜୀଉ ମନ୍ଦିର, ଅମରେଶ୍ୱର ମନ୍ଦିର ଓ ମସ୍ତରାମ ମଠ ଇତ୍ୟାଦି ମରହଟ୍ଟା ଶାସନର ସ୍ମାରକୀ ହୋଇ ରହିଯାଇଛି । ଆଜି କଟକରେ ଯେଉଁ ମାରୱାଡ଼ି ସମ୍ପ୍ରଦାୟ ବାସ କରୁଛନ୍ତି ସେମାନେ ଗୋପୀନାଥଜୀଉ ମନ୍ଦିର, ସତ୍ୟନାରାୟଣ ମନ୍ଦିର ଓ ରାଧାଗୋବିନ୍ଦଜୀଉ ମନ୍ଦିରକୁ ସେମାନଙ୍କର ପୂଜା ଆରାଧନାର ପବିତ୍ରତମ ପୀଠ ହିସାବରେ ଗ୍ରହଣ କରନ୍ତି ।

ସେହିପରି ଗଙ୍ଗବଂଶ ଶାସକବର୍ଗ ଏବଂ ସୂର୍ଯ୍ୟବଂଶୀ ରାଜତ୍ୱକାଳରେ ବିଶେଷକରି ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କର ଶାସନ କାଳରେ ଉତ୍କଳ ନିଜର

ସାମରିକ କୌଶଳର ଚରମ ଉତ୍କର୍ଷତା ସହିତ ତାର କଳା କୌଶଳ ଓ ନୌବାଣିଜ୍ୟର କୁଶଳତାରେ ଅନନ୍ୟ ସାଧାରଣ ହୋଇ ଉଠିଥିଲା । ନୌବାଣିଜ୍ୟରେ ଉତ୍କଳର ସୌଦାଗର ସାଧବମାନେ ଜାଭା, ସୁମାତ୍ରା, ସିଂହଳ, ବୋର୍ଣ୍ଣିଓ, ଚୀନ ଓ ଜାପାନ ଭଳି ସୁଦୂର ଦ୍ୱୀପପୁଞ୍ଜରେ ନିଜର ପଣ୍ୟଦ୍ରବ୍ୟ ନେଇ ବେପାର ବାଣିଜ୍ୟକରି ନାନା ମୂଲ୍ୟବାନ ବସ୍ତୁ ଧନ ରତ୍ନ ଓ ସ୍ୱର୍ଣ୍ଣ ଇତ୍ୟାଦି ଆଣି ଉତ୍କଳର ଅର୍ଥନୈତିକ ପୃଷ୍ଠଭୂମିକୁ ଅତ୍ୟନ୍ତ ସୁଦୃଢ଼ କରିଥିଲେ । ସେ ସମୟରେ ମଧ୍ୟ ଦକ୍ଷିଣ ଓ ଉତ୍ତର ଦେଶ ବିଦେଶରୁ, ବହୁ ଲୋକ ଆସି ଓଡ଼ିଶାକୁ ନିଜର ବାସସ୍ଥାନ ଭାବରେ ଆଦରି ନେଇଥିଲେ ଏବଂ ଭିନ୍ନ ଦେଶର ସଂସ୍କୃତି ଆମ ରାଜ୍ୟରେ ପ୍ରବେଶ କରିଥିଲା । ଫଳରେ ଶିଳ୍ପକଳା, ସ୍ଥାପତ୍ୟ, ଭାଷା ଚାଲିଚଳଣିରେ ଅନେକଟା ପରିବର୍ତ୍ତନ ଆସିଥିଲା । ନୌବାଣିଜ୍ୟର ଆରମ୍ଭ ହୋଇଥିଲା ବାଲେଶ୍ୱର, କୁଜଙ୍ଗ ଓ ମହାନଦୀ ଦେଇ । ବିଭିନ୍ନ ଶିଳ୍ପକଳାର ନାଚ, ମନ୍ଦିର ନିର୍ମାଣଶୈଳୀ ସଙ୍ଗୀତ, ନୃତ୍ୟ ଉତ୍ତର ଓ ଦକ୍ଷିଣ ଭାରତୀୟ ସଂସ୍କୃତି ଏକ ଦ୍ରାବିଡ଼ ଆର୍ଯ୍ୟ ସମ୍ମିଶ୍ରଣ କହିଲେ ଭଲହେବ ।

ମୁସଲମାନ, ମରହଟ୍ଟା ଓ ବ୍ରିଟିଶ ଆକ୍ରମଣରେ ଆଜିର ଓଡ଼ିଶା ଯେଉଁ ସବୁ ଉତ୍ଥାନ ପତନର ସ୍ତର ଦେଇ ତାର ସନ୍ଧିକ୍ଷଣକୁ ଆଗେଇ ନେଇଥିଲା, ବାଟରେ ଅଟକି ଯାଇଥିଲା, ଓଡ଼ିଆର ନିଜସ୍ୱ ସଂସ୍କୃତିର ପ୍ରଗତି ଧସେଇ ଯାଇଥିଲେ ମଧ୍ୟ ତହିଁରେ ସ୍ଥାପତ୍ୟ ପରିଦୃଷ୍ଟ ହୋଇନାହିଁ । ଲୋକଙ୍କର ଆଖିରେ ଜୋରଜବରଦସ୍ତ ଅନ୍ୟ ଧର୍ମ ଲଦି ଦିଆଯାଇଛି । ଅଜସ୍ର ନିପୀଡ଼ନରେ ଏ ଜାତିର ମେରୁଦଣ୍ଡ ନମନୀୟ ହୋଇ ବଙ୍କ-ହୋଇ ଯାଇଛି, ହେଲେ ଭାଙ୍ଗିନାହିଁ । ଆସିଛି ମୃତ୍ୟୁ, ନାରୀ ନିର୍ଯ୍ୟାତନା, ଲୁଣ୍ଠନ ଅତ୍ୟାଚାର, ଅବାଞ୍ଛିତ ପିତୃତ୍ୱ ଓ ମାତୃତ୍ୱ ତଥାପି ଈଶ୍ୱରବିଶ୍ୱାସୀ ଉତ୍କଳୀୟ ସମସ୍ତ ଯାତନା ଯନ୍ତ୍ରଣାକୁ ନୀରବରେ ସହ୍ୟକରି ଆଶ୍ରିତ କରିଛି ତାର ହୃଦୟ ତାର ପରଂବ୍ରହ୍ମ ଦେବତା ଜଗନ୍ନାଥଙ୍କୁ । ଯାହାଫଳରେ ମୁକ୍ତବାହୁରେ ବିଭିନ୍ନ ସଂସ୍କୃତିକୁ ଗ୍ରହଣ କରିଛି ନିଜସ୍ୱ ମୌଳିକ ସଂସ୍କୃତିର ମହାସାଗରର ଅନ୍ତଃସ୍ରୋତରେ ।

ଭୌମବଂଶ ରାଜତ୍ୱରେ କଟକର ପ୍ରତିଷ୍ଠା ହୋଇଛି, ବହୁ ଭଗ୍ନମନ୍ଦିରାବଶେଷ ଓ ମୂର୍ତ୍ତିର ଭଗ୍ନାବଶେଷ ଦେଖି ତଦାନୀନ୍ତନ ସ୍ଥାପତ୍ୟର, କଳାକୃତିର ନିଚ୍ଛକ ନିଦର୍ଶନ ମିଳେ । ଷୋଡ଼ଶ ଶତାବ୍ଦୀରେ ହିନ୍ଦୁ ରାଜତ୍ୱ ଲୋପ ହୋଇ ଆରମ୍ଭ ହୁଏ ମରହଟ୍ଟାଶାସନ । ସେମାନେ କଟକକୁ ରାଜଧାନୀ କରି ବହୁ ଉନ୍ନତିଲାଗି ପ୍ରଚେଷ୍ଟା କରିଛନ୍ତି ।

କଟକ ସେତେବେଳେ ବ୍ୟାବସାୟିକ କେନ୍ଦ୍ରସ୍ଥଳୀରେ ପରିଣତ ହୋଇଥିଲା । ଓଡ଼ିଆ ଭାଷା ଓ କୋର୍ଟ କଚେରୀରେ ସେହି ଭାଷା କିଭଳିଭାବରେ ବ୍ୟବହୃତ ହୋଇ ଏପର୍ଯ୍ୟନ୍ତ ଚାଲି ଆସିଛି, ତାର ବହୁଳ ଉଦାହରଣ ଆଜି କଟକରେ ଦେଖାଯାଏ ।

## ପ୍ରାନ୍ତୀୟ କଳା କାରିଗରୀର ମିଶ୍ରଣ :

କଟକରେ ଆଜି ଯେଉଁ ମନ୍ଦିରଗୁଡ଼ିକ ଯଥା—ଅମରେଶ୍ୱର ମନ୍ଦିର (ବକ୍ସିବଜାର) ଅନନ୍ତବାସୁଦେବ ମନ୍ଦିର (ଝଞ୍ଜମଠ)— ମରହଟ୍ଟାବଂଶୀୟ ରାଜା ଭୀମପାଲଙ୍କ ଦ୍ୱାରା ନିର୍ମିତ,

ଙ୍କ ଜୀଗଳର କାଳୀ ମନ୍ଦିର, କୁଞ୍ଜବିହାରୀ ମଠ (ଗୁଡ଼ଇଆଗଞ୍ଜ)—ଜାନକି ଘୋଷଲ (ଘୋଷଲବଂଶୀୟ) ମରହଟ୍ଟା ଶାସନକାଳରେ ମଧ୍ୟ ନିର୍ମିତ ହୋଇଥିଲା । ସେହିପରି ଜଗନ୍ନାଥବଲ୍ଲଭର ଜଗନ୍ନାଥ ମନ୍ଦିର ମରହଟ୍ଟା ବ୍ରାହ୍ମଣ ରାଜାରାମ ପଣ୍ଡିତଙ୍କ ଦ୍ୱାରା, ଶ୍ରୀ ନଣ୍ଡା ଦେଉଳ (ସାହେବଜାଦାବଜାର) ଗିରଗିମଠ, ମରହଟ୍ଟାଶାସନ କାଳରେ ନିର୍ମିତ ହୋଇ ପବିତ୍ର ପୀଠ ଭାବରେ ପୂଜିତ । ଚୌଧୁରୀ ବଜାରର ଦିଗମ୍ବର ଜୈନ ମନ୍ଦିର ନାଗରଶୈଳୀରେ ଗଠିତ—ଶିଖମାନଙ୍କଦ୍ୱାରା କାଳିଆବୁଦାର ଗୁରୁଦ୍ୱାର, ରାଣୀହାଟର ଶ୍ରୀ ଶ୍ରୀ ରାଧାମୋହନଜୀଉଙ୍କ ମନ୍ଦିର, ବୃନ୍ଦାବନରୁ ଆସିଥିବା ଭେଙ୍କଟସ୍ୱାମୀଙ୍କ ଦ୍ୱାରା, ହନୁମାନଘାଟର ହନୁମାନ ମନ୍ଦିର, କନୌଜସ୍ଥ ବିହାରୀ ବ୍ରାହ୍ମଣଙ୍କଦ୍ୱାରା କାଳିଗଳିର ଗଣେଶମନ୍ଦିର ବନାରସୀବାବାଙ୍କଦ୍ୱାରା ନିର୍ମିତ ହୋଇଥିଲା ।

ମନ୍ଦିର, ପୁଷ୍କରିଣୀ ନିର୍ମାଣରେ ଦକ୍ଷିଣ ଭାରତୀୟମାନଙ୍କର ଅବଦାନ ମଧ୍ୟ ନ୍ୟୂନ ନୁହେଁ । ଗଙ୍ଗାମନ୍ଦିରର ଗଙ୍ଗାମନ୍ଦିର ଓ ପୁଷ୍କରିଣୀ ତାମିଲମାନଙ୍କ ଦ୍ୱାରା ତୁଳସୀପୁର ମସ୍ତରାମ ମଠ ସପ୍ତଦଶ ଶତାବ୍ଦୀରେ ଦକ୍ଷିଣରୁ ଆସି ଥିବା ଲଙ୍ଗୁଳୀ ସମ୍ପ୍ରଦାୟର ମସ୍ତରାମ-ବାବାଙ୍କଦ୍ୱାରା ଆରମ୍ଭ କରାଯାଇଥିଲା । କଟକର କଳ୍ପା ଗଡ଼ଚଣ୍ଡୀ ଅନଙ୍ଗଭୀମ ଦେବ ଓ ଲଙ୍ଗୁଳା ନରସିଂହ ଦେବଙ୍କ ସମୟରୁ । ଆଜିର ସାକ୍ଷୀଗୋପାଳର ଗୋପାଳ ମୂର୍ତ୍ତି ପୂର୍ବେ କଟକରେ ଗୋପାଳ ମନ୍ଦିରରେ ପୂଜାପାଉଥିଲେ ।

ପୂର୍ବରୁ ଆଲୋଚିତ ହୋଇଛି ଯେ, ଓଡ଼ିଶା ଅନେକ ଦିନ ଧରି ଦକ୍ଷିଣରେ ଆନ୍ଧ୍ର ଓ ମାଦ୍ରାଜ ଏବଂ ଉତ୍ତରରେ ପଶ୍ଚିମବଙ୍ଗ, ବିହାର ଓ ମଧ୍ୟପ୍ରଦେଶ ସହିତ ସମ୍ମିଶ୍ରିତ ହୋଇଥିଲା ଏବଂ ବିଚ୍ଛିନ୍ନ ହେଲାପରେ ମଧ୍ୟ ଅନେକ ଦିନ ଧରି ବଙ୍ଗ, ବିହାର ସହିତ ଓ ପରେ ୧୯୩୬ ମସିହା ପର୍ଯ୍ୟନ୍ତ ବିହାର ସହିତ ଏକତ୍ର ଶାସିତ ହୋଇଆସିଲା । କଟକ ବହୁଦିନଧରି କେନ୍ଦ୍ରସ୍ଥଳୀ ହିସାବରେ ବ୍ୟବସାୟ, ବାଣିଜ୍ୟ ଓ ଶିକ୍ଷାର ପ୍ରାଣକେନ୍ଦ୍ର ହୋଇ ରହିଗଲା । ଅପର ପକ୍ଷରେ ଉତ୍ତରରେ ମେଦିନପୁର ସହିତ ବଙ୍ଗ ଅଞ୍ଚଳରୁ ବ୍ରିଟିଶ୍ ଏକଛତ୍ରାଧିପ ଶାସନର କଠୋର ଶୃଙ୍ଖଳା ଭିତରେ ରହି କଟକରେ ଉତ୍ତର ଭାରତୀୟ ବସବାସ, ବ୍ୟବସାୟ ପ୍ରତିଷ୍ଠାନ କରି ରହିଯିବା ସ୍ୱାଭାବିକ ।

ମରହଟ୍ଟା ପ୍ରଚଳିତ ଅମିଲସ୍, ପଂଶ୍ରିଭସ୍ ଓ କାନୁନଗୋ ପ୍ରଥାରେ ନାମକୁ ମାତ୍ର ପରିବର୍ତ୍ତନ କରି ଇଂରେଜମାନେ ଦ୍ୱିତୀୟ ମରହଟ୍ଟାସମର ପରେ ଆନ୍ତିକ୍ତ ଭୂବନ୍ଦୋବସ୍ତରେ ପରିବର୍ତ୍ତନ ଓ ଆଇନ୍‌କାନୁନ କଡ଼ାକଡ଼ି ଭାବରେ ପାଳିତ ହୁଏ । ଲୋକେ ଖଜଣା ଦେଇନପାରି ବାକି ଖାଉଣା ଦେୟରେ ଉତ୍ପୀଡ଼ିତ ହୋଇଯାଆନ୍ତି । ସ୍ୱଳ୍ପ ସଲମିରେ ୧୮୦୬ରେ ବହୁ ଓଡ଼ିଆ ଜମିଦାରୀ ନିଲାମ ହୋଇଯାଇ ବଙ୍ଗାଳୀ ଜମିଦାରମାନେ ଏଠା ଜମିଦାରୀର ମାଲିକାନା ଜାହିର କରିବା କାରଣରୁ ବହୁ ସମ୍ଭ୍ରାନ୍ତ ଓଡ଼ିଆ ପରିବାର ହୃତସ୍ୱାନ୍ତ ଓ ମୂଳପୋଛ ହୋଇ ଯାଆନ୍ତି । ତାପରେ ଆସେ ଖ୍ରୀ: ଅ: ୧୮୩୫ର ଚିରସ୍ଥାୟୀ ବନ୍ଦୋବସ୍ତ । ସେହିସମୟରୁ କଟକର ସଂସ୍କୃତି ସହିତ ବଙ୍ଗୀୟ ସଂସ୍କୃତି ମିଶିଯାଏ ।

ଅନ୍ୟାନ୍ୟ ଦୁର୍ଦ୍ଦଶା ସହିତ ବ୍ରିଟିଶ୍ ସରକାରଙ୍କ ନିକଟରେ କଟକ ବଙ୍ଗ ଜମିଦାରମାନେ ଓଡ଼ିଶାର ସ୍ୱଚ୍ଛଳ ଅବସ୍ଥାର ମିଥ୍ୟା ରିପୋର୍ଟ ପ୍ରଦାନ କରନ୍ତି । ଓଡ଼ିଶାର ଉନ୍ନତିକଳ୍ପେ କୌଣସି ପଦକ୍ଷେପ ବ୍ରିଟିଶ୍ ସରକାର ନ ନେବା ଫଳରେ ଆସେ ୧୮୬୬ ମସିହାର କରାଳ ଦୁର୍ଭିକ୍ଷ ଓ ହାଅନ୍ନର ଚିତ୍କାର । ମୋଗଲ, ମହାରାଷ୍ଟ୍ର ଓ ମୁସଲମାନ ଶାସନରେ ଯେଉଁସବୁ ପ୍ରଗତିର ଭିତ୍ତିଭୂମି ସୁଦୃଢ଼ କରାଯାଇଥିଲା, ତାହା ଦୋହଲିଯାଏ । ଅତୀତ କଳିଙ୍ଗ ଉପକୂଳର ବହୁବନ୍ଦର ପାଲୁର, ଦନ୍ତପୁର, କଳିଙ୍ଗ ନଗର, ମଦଏନା ପ୍ରଭୃତି ସ୍ୱପ୍ନର ବନ୍ଦର ହୋଇ ରହିଯାଏ । ଲୁଟ ହୋଇଯାଏ ଏ ଜାତିର ସବୁକିଛି । ବହୁପ୍ରଖ୍ୟାତ ଗୌରବର ସ୍ୱାକ୍ଷର ଓ ଜାତିଚକ୍ରର ରକ୍ତଲିପି ବହନ କରି ଯେଉଁ ବାରବାଟୀ ଦୁର୍ଗ ଓ ତାର ଗଡ଼ଖାଇ ଦିନେ ଶତ୍ରୁ ମନରେ ଭୀତି ସଞ୍ଚାର କରୁଥିଲା, ବ୍ରିଟିଶ୍ ଶାସନରେ ତାର ପଥର ସବୁ ଜମିଦାରମାନେ ସ୍ୱଳ୍ପ ମୂଲ୍ୟରେ ନେଇ ଯାଆନ୍ତି ଓ କ୍ୟାଣ୍ଟନ୍‌ମେଣ୍ଟର ପ୍ରାସାଦ ଓ ରାସ୍ତା ନିର୍ମାଣରେ ବ୍ୟବହୃତ ହୋଇଯାଏ । ମୁସଲମାନ ଓ ମୋଗଲ ଶାସନରେ ମନ୍ଦିର ଦେବାଳୟ ଧ୍ୱଂସ କରାଯାଇ ନିର୍ମିତ ହୁଏ ମସଜିଦ୍ । ସ୍ଥାନୀୟଲୋକ-ମାନେ ସାଲୱାର ପଞ୍ଜାବୀ ପିନ୍ଧନ୍ତି ଓ ସିଲକ୍, ପଟ୍ଟବସ୍ତ୍ର ଅତରର ବହୁଳ ପ୍ରଚାର ହୁଏ । ମାତ୍ର ସେ ସମୟରେ ନିର୍ମିତ କଦମରସୁଲ, ପୀରବୋଖାରୀ ପୀଠ ହିନ୍ଦୁ ମୁସଲମାନମାନଙ୍କର ଏକତ୍ର ପୂଜା ଆରାଧନାର ପବିତ୍ର ସ୍ଥଳୀରେ ପରିଣତ ହୋଇଯାଏ । ସବୁ ଧର୍ମକୁ ସମ୍ମାନ ଦେଖାଇବା ହିନ୍ଦୁଧର୍ମାବଲମ୍ବୀମାନଙ୍କର ଏକ ବିଶେଷ ଗୌରବିକ ଲକ୍ଷଣ । ତେଣୁ ମୁସଲମାନୀୟ ଐଶ୍ୱର୍ଯ୍ୟ, ଚିତ୍ରକଳା, ସୂକ୍ଷ୍ମକଳା ଓ ସ୍ଥାପତ୍ୟରେ କଟକ ଗୌରବାନ୍ୱିତ ହୋଇଯାଏ । ଚୌଧୁରୀ ମସଜିଦ୍ ନବାବମାନଙ୍କ ନାମରେ ନାମିତ ହୁଏ ।

ମୁସଲମାନ ମୋଗଲ ଶାସନର ଉତ୍କର୍ଷତାକୁ ପରାନ୍ମୁଖ କରି ଯେଉଁ ବ୍ରିଟିଶ୍ କଳଙ୍କିତ ଶାସନ ଚାଲିଥିଲା, ୧୮୬୬ ମସିହାର ଦୁର୍ଭିକ୍ଷପରେ କେତେଜଣ ଶୁଭକାଙ୍କ୍ଷୀ ବ୍ରିଟିଶ୍ ଅଫିସରଙ୍କର ଉଦ୍ୟମରେ କଟକର ଅନେକ କିଛି ପରିବର୍ତ୍ତନ ହୁଏ । ୧୮୭୦ ମସିହାରେ କଟକ ପୁନର୍ବାର ରାଜଧାନୀ ହୁଏ । ୧୮୬୯ରେ କେନ୍ଦ୍ରାପଡ଼ା କେନାଲ, ୧୮୮୨ ମସିହାରେ ନିର୍ମିତହୁଏ ଯୋବ୍ରା ଲକ୍ ଓ ମାଛଗାଁ କେନାଲ ।

ସେ ଯାହାହେଉନା କାହିଁକି କଟକରେ ମୋଗଲ ଓ ମୁସଲମାନ ରାଜତ୍ୱରେ ହିନ୍ଦୁ ମୁସଲମାନ ଭାବ ସଂସ୍କୃତିର ଅପୂର୍ବ ସମନ୍ୱୟ ଘଟେ । ଅବଶ୍ୟ ଅଳ୍ପ କେତେଜଣ ଅତ୍ୟାଚାରୀ ନବାବଙ୍କ ଘନଘନ ଆକ୍ରମଣ, ମନ୍ଦିର ଦେବାଳୟ ଧ୍ୱଂସ ଓ ମୂର୍ତ୍ତିବିଗ୍ରହ ପୋଡ଼ି ଘଟଣାରୁ ହିନ୍ଦୁର ପୂଜ୍ୟ ଦେବତା ଜଗନ୍ନାଥ ମଧ୍ୟ ବାଦ ଯାଇ ନାହାନ୍ତି । ବହୁ ଭକ୍ତଙ୍କର ଭକ୍ତିପୂତ ଶ୍ରଦ୍ଧା ଓ କଷ୍ଟସହିଷ୍ଣୁ ଆପ୍ରାଣ ଉଦ୍ୟମ ଯୋଗୁଁ ଧ୍ୱଂସ ମୁଖରୁ ଉଦ୍ଧାର ପାଇଯାଇଛନ୍ତି । ମୋଗଲବଂଶୀୟ ଜାହାଙ୍ଗୀର କୁଲିଖାଁ ଓରଫ ଲାଲବେଗ ଓ ବ୍ରାହ୍ମଣବଂଶଜା କନ୍ୟା ଔରଷରୁ ଜନ୍ମଲାଭ କରି ଭକ୍ତ ସାଲବେଗ, ହିନ୍ଦୁଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ପ୍ରତିପାଦନ କରନ୍ତି । ପିତା ତାଙ୍କର ସମ୍ରାଟ୍ ଜାହାଙ୍ଗୀରଙ୍କ ଅଧୀନରେ ବଙ୍ଗଳାର ସୁବାଦାର ଥିଲେ । ସେ ସମୟରୁ କଟକରେ ହିନ୍ଦୀ, ବଙ୍ଗଳା ଓ

ଓଡ଼ିଆ ଭାଷାର ଅପୂର୍ବ ସମନ୍ୱୟ ଘଟିଥିଲା । କଟକ ଓ ଓଡ଼ିଶାର ହିନ୍ଦୁ ମୁସଲମାନ ପ୍ରୀତିର ଅନୋଖୀ ସମ୍ପର୍କକୁ ଲକ୍ଷ୍ୟକରି ଐତିହାସିକ Dr. M. A. Haque କୁହନ୍ତି—

"In the broader context of Indian Socio—Rligious History Orissa presents almost a unique picture of Hindu Muslim unity. In the dark days of Communal Strife which marked the last phase of the British rule Orissa was sighed out as the only religion in India without bloodshed and riot—

## କଟକରେ ଉତ୍ତର ଓ ଦକ୍ଷିଣ ଭାରତୀୟ :

କଟକରେ ଉତ୍ତର ଓ ଦକ୍ଷିଣ ଭାରତୀୟ ଲୋକମାନଙ୍କର ଆଗମନ ଓ ବସତି-ସ୍ଥାପନର ଅଜ୍ଞାତ ଇତିହାସ କୁହେଳିମୟ କିମ୍ବଦନ୍ତୀ ଶୂନ୍ୟ ହେଲେ ହେଁ, ଭୌମକର ବଂଶୀୟ ନରପତିଗଣଙ୍କ ହସ୍ତରେ ଓଡ଼ିଶାର ଶାସନଧାରିତ୍ୱ ରହିବା ସମୟରେ କଟକର କ୍ଷୁଦ୍ର ଆୟତନର ପରିସୀମା ବର୍ଦ୍ଧିତ ହୁଏ ଏବଂ ଅନ୍ତମହାବାରେ ବିସ୍ତାର ଲଭିକରେ ନୌବାଣିଜ୍ୟ । ସେତେବେଳେ ଗମନାଗମନ ପାଇଁ ସ୍ଥଳଭାଗରେ ସୁବିଧା ନଥିଲା ବରଂ ଜଳଭାଗରେ ସହଜ ଓ ସୁଗମ ଥିଲା । ତା'ଛଡ଼ା ଭୌମକରବଂଶୀୟ ରାଜାମାନେ ଓଡ଼ିଶାର ସମଗ୍ର ଉପକୂଳରେ ନିଜ ବାହୁବଳରେ ଆଧିପତ୍ୟ ବିସ୍ତାର କରିପାରିଥିଲେ । ନୌକା ନିର୍ମାଣ କୌଶଳରେ ଓଡ଼ିଶାର କାରିଗର ଥିଲେ ଦକ୍ଷ ଓ ବାଣିଜ୍ୟ ଲାଗି ବିକଶି ଉଠିଥିବା ଅନେକ ସଂଖ୍ୟାର ବନ୍ଦରଗୁଡ଼ିକରେ ନୌକା ନିର୍ମାଣ ଆରମ୍ଭ ହୋଇଥିଲା । ପରିବହନ ଓ ନୌକା ନିର୍ମାଣ ଲାଗି ବିରାଟ ସେନାବାହିନୀ ନିଯୁକ୍ତ କରାଗଲା । ସେହି ସମୟରେ ଦକ୍ଷିଣ ଅଞ୍ଚଳରୁ ବ୍ୟବସାୟ ବାଣିଜ୍ୟ ଓ ଆତ୍ମନିଯୁକ୍ତି ପାଇଁ ଓଡ଼ିଶାର ରାଜଧାନୀ କଟକକୁ ଆସି ବସତି ସ୍ଥାପନ କଲେ ।

ତାମ୍ରଶାସନକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ପ୍ରଥମ ଯଯାତିଙ୍କର ପିତା ଜନ୍ମେଜୟ ଉତ୍କଳର ରାଜାଙ୍କୁ ହତ୍ୟା କରି ପ୍ରଥମେ ଓଡ଼ିଶା ଦଖଲ କଲେ । ଜନ୍ମେଜୟ ଉତ୍ତର ଭାରତରୁ ଆସି ବିଶ୍ୱେଶ୍ୱର ମନ୍ଦିର ନିର୍ମାଣ କଲେ । ତାପରେ ଯଯାତି କନୌଜରୁ ବହୁ ବ୍ରାହ୍ମଣ ଅଣାଇ ପୁରୀ କଟକ ଯାଜପୁର ଇତ୍ୟାଦି ସହର ର ସେମାନଙ୍କୁ ଜାଗିର ଓ ଖଞ୍ଜାଦେଇ ପୂଜା ଆରାଧନା ପାଇଁ ରଖାଇ ଥିଲେ ।

ଚୌଦ୍ୱାର କଟକ, ବାରଣାସୀ କଟକ ଓ ତାପରେ ବାରବାଟୀ କଟକ ସଂସ୍ଥାପିତ ହେବାପରେ ଦକ୍ଷିଣଭାରତରୁ ଗଙ୍ଗବଂଶୀ ରାଜାମାନଙ୍କ ସହିତ ବହୁ ଲୋକ, ପଦସ୍ଥକର୍ମଚାରୀ ସେନାବାହିନୀ ଓ ବ୍ୟବସାୟୀ ଆସି କଟକକୁ ନିଜର ଆବାସସ୍ଥଳୀ ରୂପେ ଗ୍ରହଣ କରନ୍ତି । ସେହି ସମୟରୁ ତେଲଙ୍ଗାବଜାର ଓ ତେଲେଙ୍ଗାପେଣ୍ଠ ଅଞ୍ଚଳର ବିକାଶ ଘଟିଥିଲା । ଗଙ୍ଗବଂଶୀୟ ରାଜା ଓ କର୍ମଚାରୀମାନଙ୍କ ଦ୍ୱାରା ମନ୍ଦିର, ଦେବାଳୟ ଓ ଦେବମୂର୍ତ୍ତିଗୁଡ଼ିକୁ ସୁନା, ରୁପା ଓ ପିତଳ ଦ୍ରବ୍ୟ ଦାନସୂତ୍ରରେ ମିଳିଥିଲା ଏବଂ ସେ ଗୁଡ଼ିକର ନିର୍ମାଣ

କାରିଗରୀରେ ଦକ୍ଷ ଦକ୍ଷିଣ ଭାରତୀୟ କାରିଗର ଓ ବ୍ୟବସାୟୀମାନେ ଆସି କଟକରେ ଅବସ୍ଥାନ କଲେ ।

ପରବର୍ତ୍ତୀକାଳରେ ଏହି ଉତ୍ତର ଓ ଦକ୍ଷିଣ ଭାରତୀୟମାନଙ୍କର ସଂଖ୍ୟା ବୃଦ୍ଧି ହେବାକୁ ଲାଗିଲା ଏବଂ କଟକ ଓଡ଼ିଶାର ବ୍ୟବସାୟର କେନ୍ଦ୍ରବିନ୍ଦୁ ହେବାପରେ ଏଠାରେ ବହୁ ଉତ୍ତର ଓ ଦକ୍ଷିଣ ଭାରତୀୟ ଆସି ସେମାନଙ୍କର ସଂଖ୍ୟାକୁ ବୃଦ୍ଧି କରିବାକୁ ଲାଗିଲେ ।

ଭାରତ ସର୍ବଧର୍ମ ସମନ୍ୱିତ ଏକ ଦେଶ ଓ ବିଭିନ୍ନ ଧର୍ମାବଲମ୍ବୀ ସେମାନଙ୍କର ଧର୍ମାନୁସରଣ, ପୂଜାପଦ୍ଧତି ଓ ପ୍ରାର୍ଥନା ମନ୍ଦିର ନିର୍ମାଣ କରିବାଲାଗି ଆମ ସମ୍ବିଧାନରେ ସୁଯୋଗ ଦିଆଯାଇଛି । ସହନଶୀଳତା, ଆତିଥ୍ୟପରାୟଣତା ଓ ସମ୍ୟ ମୈତ୍ରୀ ଭାବରେ ଭାବାନ୍ୱିତ ଆମ ଜଗନ୍ନାଥ ଧର୍ମ ପୀଠସ୍ଥଳୀ ପୁରୀ ଯେପରି ବହୁ ଧର୍ମର, ସଙ୍ଗମସ୍ଥଳ, ଠିକ୍ ସେହିପରି ପାଖ ଏକହଜାର ବର୍ଷର ପୁରାତନ ଆମର ପ୍ରିୟ କଟକ ନଗରୀ ପ୍ରଦେଶର ବିଭିନ୍ନ ପ୍ରାନ୍ତୀୟ ଲୋକମାନଙ୍କୁ ନିଜ ଅଙ୍କରେ ସ୍ଥାନଦେଇ ମହିମାନ୍ୱିତ ହୋଇ ପାରିଛି । ଭିନ୍ନଭାଷା, ବିଭିନ୍ନକାରିଗରୀ କୁଶଳତା, ଅନେକ ପ୍ରକାରର ମନ୍ଦିର, ମସଜିଦ୍, ଗୀର୍ଜା, ଗୁରୁଦ୍ୱାର ପ୍ରାଙ୍ଗଣରେ ପୂଜିତ ଦେବମୂର୍ତ୍ତି, ଧର୍ମର ପ୍ରଚାର ପ୍ରସାର ଓ ପରିଚର୍ଯ୍ୟାକୁ ନେଇ କଟକ ନିଜର ନିଜସ୍ୱ ଆଦର୍ଶକୁ କରିପାରିଛି ରୁଚିସମ୍ପନ୍ନ ଓ ପରିମାର୍ଜିତ ।

## କଟକରେ ଉତ୍ତର ଓ ଦକ୍ଷିଣ ଭାରତୀୟ ଭାଷାର ପ୍ରଭାବ :

ଏ ସମ୍ବନ୍ଧରେ ଆଲୋଚନା କରିବାକୁ ହେଲେ ଉତ୍ତର ଓ ଦକ୍ଷିଣ ଭାରତୀୟମାନଙ୍କର ଆଗମନର କାଳ, କାରଣ ଓ ସମ୍ବନ୍ଧକୁ ଦୃଷ୍ଟି ସମ୍ମୁଖରେ ରଖି ଅଧୁନାତନ କଟକର ଲୋକ ସଂସ୍କୃତି, ଭାଷା ସଂସ୍କୃତି, ଅଭିଲେଖ ସଂସ୍କୃତି, କାରିଗରୀ ଓ ସ୍ଥାପତ୍ୟ ସଂସ୍କୃତିକୁ ପୁଙ୍ଖାନୁପୁଙ୍ଖ ତର୍ଜମା ଓ ବିଶ୍ଳେଷଣ କରିବା ବାଞ୍ଛନୀୟ ।

୧୮୮୫ ମସିହାରେ କଟକକୁ ରେଳଲାଇନ୍ ଦ୍ୱାରା ସଂଯୁକ୍ତ କରାଯିବା ପରେ କଟକ ବ୍ୟବସାୟର ଏକ ପ୍ରଧାନ କେନ୍ଦ୍ରରୂପେ ପରିଗଣିତ ହେଲା । ଫଳରେ କଚ୍ଛ, ଗୁଜୁରାଟ ଓ ମାରୱାଡ଼ି ଗୋଷ୍ଠୀ ସହିତ ଉତ୍ତର ଓ ଦକ୍ଷିଣ ଭାରତୀୟମାନଙ୍କର ଆଗମନ ଅତି ଦ୍ରୁତ ଓ ବ୍ୟାପକ ହୋଇଗଲା । ଅଧ୍ୟୟନ, ଚାକିରୀ, ବ୍ୟବସାୟ କର୍ମସଂସ୍ଥାନ ପାଇଁ ସେମାନେ ଆସିଛନ୍ତି । ଏମାନଙ୍କ ମଧ୍ୟରେ ଉତ୍ତର ଭାରତୀୟବାସୀ ବ୍ୟବସାୟୀ ଓ ତାଙ୍କରେ ସାହାଯ୍ୟ କରୁଥିବା ଖଲାସୀ, ଦରୱାନ ଓ କାରିଗର ଶ୍ରେଣୀର । ଦକ୍ଷିଣ ଭାରତୀୟମାନଙ୍କ ମଧ୍ୟରେ ସେହିପରି ଚାକିରିଆ, ବ୍ୟବସାୟୀ, ଦରଜି, ସେଲୁନବାଲା, ଝାଡୁଦାର, ରିକ୍ସା ଚାଳକ, ମୋଚି, ପାନ ଦୋକାନୀ ଓ କାରଣୀଶ୍ରେଣୀୟ ଲୋକେ ଆସି ରହିଛନ୍ତି ।

କଟକରେ ଉତ୍ତର ଓ ଦକ୍ଷିଣ ଭାରତୀୟ ଭାଷା ଏପରି ଭାବରେ ମିଶିଯାଇଛି ଯେ ଲୋକପ୍ରଚଳିତ ଭାଷାରେ ସେଗୁଡ଼ିକର ବ୍ୟାପକ ପ୍ରଚାର ପରିଲକ୍ଷିତ ହୁଏ । ପୂର୍ବ ପ୍ରସଙ୍ଗରେ କହିଛି ଦ୍ରାବିଡ଼ ଓ ଆର୍ଯ୍ୟ ସଂସ୍କୃତିର ଏକ ସମ୍ମିଳିତ ସ୍ୱରଧ୍ୱନି ହୋଇଛି

କଟକ । କାରଣ ଜଗନ୍ନାଥଧାମକୁ ଯେଉଁ ସବୁ ଧର୍ମସ୍ରୋତର ମନ୍ଦାକିନୀଧାରା ପ୍ରବାହିତ ହୋଇ ମହା ସମୁଦ୍ର ସ୍ୱରୂପୀ ଜଗନ୍ନାଥ ସଂସ୍କୃତିରେ ନିମଜ୍ଜିତ ହୋଇ ଏକାକାର ହୋଇ ଯାଇଛି, ସେଗୁଡ଼ିକ ଓଡ଼ିଶାର ରାଜଧାନୀ କଟକନଗରୀ ଦେଇ ଜଳପଥ ଓ ସ୍ଥଳପଥ ମାଧ୍ୟମରେ ହିଁ ଆସିଛନ୍ତି ଯେଉଁ ପ୍ରାଚୀନ ଯୁଗରୁ । କଟକ ସେସବୁର ପାନ୍ଥଶାଳା ଓ ରହଣିସ୍ଥଳ । ସୁତରାଂ ତାର ପ୍ରଭାବରେ କଟକର ସଂସ୍କୃତି ଯେଉଁ ଭିନ୍ନ ରଙ୍ଗ ଗ୍ରହଣ କରିଛି, ତଦ୍ଦ୍ୱାରା ଆସିଛି ତାର ସ୍ୱାତନ୍ତ୍ର୍ୟ । ଭାଷାରେ ଆର୍ଯ୍ୟ ଦ୍ରାବିଡ଼ ସହିତ ରହିଛି ଆଦିମ ମଣିଷର ଅପସଂସ୍କୃତୀୟ ଭାଷା । ସେସବୁ ଶରସ୍ଥାୟୀ, ଅସ୍ଥାୟୀ, ଉତ୍ତର ଓ ଦକ୍ଷିଣ ଭାରତୀୟ ଲୋକମୁଖର ଭାଷା ହୋଇଯାଇଛି ସମୟାନୁକ୍ରମେ, ଲମ୍ବିଯାଇଛି ହଜାର ବର୍ଷ ପୂର୍ବର ପ୍ରାଚୀନତା ଠାରୁ ଅଦ୍ୟାବଧି ପର୍ଯ୍ୟନ୍ତ ଗୋଟିଏ କମ୍ବୁକମାକାର ଭାବରେ । ତହିଁରେ ଅଛି ଆରବୀ, ପାରସୀ ମୁସଲମାନୀୟ, ମୋଗଲ, ଖ୍ରୀଷ୍ଟିୟାନ, ଇଂରେଜୀ ଠାରୁ ଆସାମୀ, ବଙ୍ଗଳା, ତେଲୁଗୁ, ତାମିଲ, ଭୋଜପୁରୀ, ମରାଠୀ, ଗୁଜୁରାଟୀ, ନେପାଳୀ ସହିତ ଶୁଦ୍ଧ ସଂସ୍କୃତ, ଓଡ଼ିଆ ଓ ଉପାନ୍ତର ଭାଷା, ଆଦିବାସୀ ଖଣ୍ଡ ବିଖଣ୍ଡିତ ଭାଷା ।

କଟକ ପାଇଁ ସେ ସବୁର ସମ୍ମିଶ୍ରଣ ଗୋଟାଏ ସାଗର ସଙ୍ଗମର ଶୁଦ୍ଧପୂତ ଅବଗାହନସ୍ଥଳୀ ବୋଲି ମୋର ଅଭିମତ । ଆଦିକବି ସାରଳା ଦାସଙ୍କର ମହାଭାରତ; ବ୍ୟାସକବି ଫକୀରମୋହନଙ୍କର ରଚନାବଳୀକୁ ଅନୁଧ୍ୟାନ କଲେ ତଦାନୀନ୍ତନ ସାମାଜିକ ଭାଷାର ଅନେକଟା ହିଗ ବେଶ୍ କିଛିଟା ସ୍ପଷ୍ଟ ହୋଇଯାଏ ।

ମୈଥିଳୀ ଭାଷାର ଅଟେ (ଅଛି), ଉଛବ, କଟକା (କଟକ), ଓଝା, ଗୈରା, ଟଙ୍କା, ମାକ, ବଟୁଆ, ହାଥି, ହୋଏ, ବଡ଼ାଲ, ଚୂନ, ଖେତର ଅନ, ହରଦି (ହଳଦୀ), ପ୍ରହର (ପ୍ରହରୀ) ହଜାର ଇତ୍ୟାଦି ଶବ୍ଦ; ଉତ୍ତର ଭାରତୀୟ—କୁଦ, ରହନି, ବଳବତା, ଗାଡ଼ି, ବେଗି, ଫଗାର—ତାମିଲଭାଷା—ଅରସି, ମାକେଇ, ଆଗାଡ଼ୁ, କୁଡ଼ଇ (କୋଡ଼ିବା) ଟୋପୁ, ଇତ୍ୟାଦି ତେଲୁଗୁ—ପେଟି, ନାଳୁ, ଛେଦ, ପାରକା, ମାଠ, ପାଣ୍ଡେଇ ଶଲଗ, ମହାପ୍ରୋଂ, ମଥା, ଗିନ, କଦଳ, ରଙ୍ଗ, କାଦ, ଆଟୁ, ମେଖ, ଡ଼ିବ, ମାଳ, ପୁସି, ଘଣ, ବଲ୍, ଚନା, ମାଚ, କୁମୁଟି, ଡ଼େଙ୍ଗ, ସଲହା ଓ କାତ ଇତ୍ୟାଦି ଓଡ଼ିଆ ଭାଷାରେ ମିଶିଯାଇଛି । ସେହିପରି କେତେକ କର୍ଣ୍ଣାଟକୀ, କେରଳୀ ଭାଷା ଓଡ଼ିଆ ଭାଷାରେ ମିଶିଯାଇଛି ତାମିଲ-ଆରସା, ମାକେଇ, ପଲ୍, ସିରୁ, ଟୋପର ଇତ୍ୟାଦି ମାଲୟାଲମ-କାକ, କୋଲି, ମୀନ, ଦୋସା, ଇଡ଼ଲି, କାଞ୍ଚ, ଗୁରୁ, ଚଟି ଇତ୍ୟାଦି ଊନବିଂଶ ଶତାବ୍ଦୀର ଆଦ୍ୟପାଦ ପର୍ଯ୍ୟନ୍ତ ଯେଉଁ ଭାଷା ବ୍ୟବହୃତ ହେଉଥିଲା ତାହା ଓଡ଼ିଆ ଭାଷାର ପ୍ରକୃତ ସ୍ୱରୂପ ନୁହେଁ । ଓଡ଼ିଆଭାଷୀ ଅଞ୍ଚଳ ବକ୍ଷିପ୍ତରୂପେ ତେଲୁଗୁଭାଷୀ, ହିନ୍ଦୀ ଓ ବଙ୍ଗଭାଷୀ ଅଞ୍ଚଳ ସହିତ ହୋଇପଡ଼ିଥିଲା ସଂଶ୍ଳିଷ୍ଟ । ମୁସଲମାନ ଓ ମରହଟ୍ଟା ଶାସନରେ ରାଜକୀୟ ଭାଷା ଥିଲା ପାର୍ଶି । ତା'ପରେ ଆରମ୍ଭହୁଏ ବ୍ରିଟିଶ୍‌ଶାସନ ଏବଂ ଇଂରେଜଭାଷାକୁ କଚେରୀ ଭାଷାରେ ବ୍ୟବହାର କଲେ ମଧ୍ୟ ଦେଶୀୟଭାଷାର ଉନ୍ନତିକଳ୍ପେ କୌଣସି ପଦକ୍ଷେପ ନିଆ-ଯାଇନାହିଁ । ଅପର ପକ୍ଷରେ ବଙ୍ଗୀୟ ଭାଷାକୁ ଜୋର ଜବରଦସ୍ତ ଭାବରେ ଲଦି ଦେବାର

ହୀନ ଚନ୍ଦ୍ରାନ୍ତ କରିଗଲେ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷାର ଅର୍ଥ ବ୍ୟାଖ୍ୟାକରି ଯେଉଁସବୁ ବିଷୟବସ୍ତୁର ରଚନା କରାଯାଇଥିଲା ତାହା ଫକୀର ମୋହନଙ୍କର ଆତ୍ମଚରିତ ଅଧ୍ୟୟନ କଲେ ହୃଦୟଙ୍ଗମ ହେବ । ଆଦିଯୁଗରେ ସିଦ୍ଧଯୋଗୀମାନେ ବୌଦ୍ଧଙ୍କର ତାନ୍ତ୍ରିକ ସାହିତ୍ୟ ଜଗତରେ ଥିଲେ ସୁପ୍ରତିଷ୍ଠିତ । ସେମାନଙ୍କର ପ୍ରଚାର ସମୟ ଖ୍ରୀ: ଅ: ୬୦୦ରୁ ୧୧୦୦ ବିଭିନ୍ନ ଭାରତୀୟ ଅଞ୍ଚଳ ଆସାମ, ବଙ୍ଗଳା ଓ ଓଡ଼ିଶା ସେମାନଙ୍କର ଜନ୍ମସ୍ଥଳୀ ଥିଲେ ମଧ୍ୟ ଓଡ଼ିଶାରେ ଅଧିକାଂଶଙ୍କର ଜନ୍ମସ୍ଥାନ ଥିଲା । ଅଷ୍ଟମ-ନବମ ଶତାବ୍ଦୀ ବୌଦ୍ଧ ଓ ଶୈବ ଧର୍ମର ସନ୍ଧି ସମୟ ଥିଲା ।

ଭୌମକରବଂଶୀୟ ତ୍ରିଭୁବନ ମହାଦେବୀଙ୍କ ସମୟରୁ ସେମାନେ ପ୍ରଥମେ ବୈଷ୍ଣବ ଓ ପରେ ଶୈବ ହେଲେ । ଓଡ଼ିଶାରେ ରତ୍ନଗିରି, ସୁରଭଗିରି, ରତ୍ନଗିରିରେ ଯେଉଁ ବୌଦ୍ଧବିହାରମାନ ରଚିତ ହୋଇ ଶିକ୍ଷା ସଂସ୍କୃତିର ପ୍ରାଣକେନ୍ଦ୍ର ରୂପେ ଥିଲା ତାହା ଲୋପ ହୋଇ ଆସିଲା ଏବଂ ସୋମବଂଶୀୟ ରାଜାମାନେ ପଶ୍ଚିମ ଦିଗରୁ ଓଡ଼ିଶାକୁ ଆକ୍ରମଣ କରି କଙ୍ଗୋଦ ପର୍ଯ୍ୟନ୍ତ ବ୍ୟାପିଗଲେ । ଏହି ସମୟରେ କଟକର ଶୈବମନ୍ଦିର ଗୁଡ଼ିକର ନିର୍ମାଣ ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ।

ଏହା ଆଲୋଚନା କରିବାର ଅର୍ଥ ଓଡ଼ିଶାରେ ବୌଦ୍ଧଧର୍ମରୁ ଯେଉଁ ଶାଖା ମହାଯାନ, ବଜ୍ରଯାନ ଓ ସହଜଯାନର ଉଦ୍ଭବ ହୋଇଥିଲା, ତତ୍କାଳୀନ ବୌଦ୍ଧଗାନ ଓ ଦୋହାରେ ଅଜସ୍ର ଉତ୍ତରଭାରତୀୟ ଭାଷା ପରିଲକ୍ଷିତ ହୁଏ ଏବଂ କଟକର ଭାଷାତତ୍ତ୍ୱର ତାହା ମଧ୍ୟ ଥିଲା ଏକ ପୃଷ୍ଠଭୂମି । ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରୁ ଚଉରାଶିଜଣ ମାତ୍ର ସିଦ୍ଧକବି ଥିଲେ, ସେମାନେ ଓଡ଼ିଶାରେ ଜନ୍ମଲାଭ କରିଥିଲେ ମଧ୍ୟ ଅଧିକାଂଶ ଆସାମ ଓ ଉତ୍ତର ମେଦିନୀପୁର ସିଂହଭୂମି ଅଞ୍ଚଳର ଥିଲେ । ଶୈବଧର୍ମର ଚରମ ଉତ୍କର୍ଷତା ପରେ ଅଧିକାଂଶ ସିଦ୍ଧାଚାର୍ଯ୍ୟ ପରିସ୍ଥିତି ଗୁପାରେ ବିହାର, ଆସାମ, ଉତ୍ତରବଙ୍ଗ, ନେପାଳ ଓ ତିବ୍ବତ ଅଞ୍ଚଳକୁ ଚାଲିଯାଇଥିଲେ । କାହ୍ନୁପା ବିହାରର, ଶାନ୍ତିପା ମଗଧରାଜାଙ୍କର ସେନାଧ୍ୟକ୍ଷଥିଲେ । ଦୋହା ଓ ଚର୍ଯ୍ୟାପଦଗୁଡ଼ିକରେ ପ୍ରାଚୀନ ଆସାମୀ, ପ୍ରାଚୀନ ମୈଥିଳୀ, ମାଗଧୀ ଓ ପ୍ରାଚୀନ ବଙ୍ଗଳା ଭାଷାର ବହୁଳ ବ୍ୟବହାର ଦୃଷ୍ଟିଗୋଚର ହୁଏ । ବୌଦ୍ଧ ସିଦ୍ଧସାଧକଗଣଙ୍କର ଭାଷା ଯାହାକି ଉତ୍ତର ଭାରତ ତିବତୀୟ ସିଦ୍ଧସାଧକଗଣଙ୍କ ଦ୍ୱାରା ଆଗତ ତାହାଁରୁ ଆମେହେ ବୁଝୁଁହେ, ଦକ୍ଷିଣ ଭାରତୀୟ ଭାଷାର ପ୍ରଭାବ କଟକରେ ଓଡ଼ିଆ ଭାଷା ଉପରେ ସେତେଟା ପ୍ରଭାବ ପକାଇ ପାରିନଥିଲେ ମଧ୍ୟ ସଙ୍ଗୀତ ନୃତ୍ୟ ଓ ସ୍ଥାପତ୍ୟ ଉପରେ ଯଥେଷ୍ଟ ଭାବରେ ପ୍ରଭାବ ବିସ୍ତାର କରିଥିଲା । ଏହାର ପ୍ରଭାବ ପୂର୍ଣ୍ଣମାନାରେ ଓଡ଼ିଆ ସାହିତ୍ୟ ସଂସ୍କୃତି ଉପରେ କିପରି ଭାବରେ ପଡ଼ିଛି ତାହା ସାରଳା ରଚନାବଳୀରେ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ପ୍ରକାଶିତ ।

## ସାମାଜିକ ଚଳଣି :

କଟକରେ ମୁସଲମାନ ସଭ୍ୟତାର ପ୍ରଳୟ ଦ୍ୱାର ପଞ୍ଜାବୀ ଯେପରି ଭାବରେ ମୁସଲମାନ ଓ ମରଠୀ ପରିବାର ମଧ୍ୟରେ ପ୍ରଚଳିତ ହୋଇ ଆସୁଛି ତାହା କ୍ରମଶଃ ସ୍କୁଲ,

କଲେଜର ଓଡ଼ିଆ ଘରର ତରୁଣୀମାନଙ୍କ ମଧ୍ୟରେ ଅତ୍ୟନ୍ତ ଆଦର ଲାଭ କରିଛି । ସେହିପରି ଜଲବି, ହାଲୁଆ, ଗୁଝି, କୁରମା, ପଲଉ, ଶିରଡ଼, ଦହିବରା, କଚୋଡ଼ି, ସେଲ, ଗୁଲୁଗୁଲା, ଆଳୁପରଠା ଇତ୍ୟାଦି ଖାଦ୍ୟଦ୍ରବ୍ୟ ଉତ୍ତର ଭାରତ ଏବଂ ଦୋସା, ଇଡ଼ୁଲି, ଚଟ୍ଣି, ସମ୍ବର, ରସମ, ବରା, ପକୋଡ଼ି, ପିଆଜି, ଇଡ଼ଲି ଦୋସା ଇତ୍ୟାଦି ଦକ୍ଷିଣଭାରତୀୟ ଖାଦ୍ୟର ଆଦର ଓଡ଼ିଆମାନଙ୍କର ରୁଚିକୁ ବେଶ୍ ତୀକ୍ଷ୍ଣ ଓ ବ୍ୟାପକ କରି ଦେଇଛି ।

ମୁସଲମାନ, ଶିଖ, ଖ୍ରୀଷ୍ଟିୟାନ୍, ଜୈନ, କେରଳୀ, ତାମିଲ, ମାରୱାଡ଼ି ଦେବଦେବୀ ପୂଜା, ପାର୍ବଣ ପାଳନ ବିଧି ପ୍ରଭାବିତ କରିଛି ଓଡ଼ିଶାବାସୀଙ୍କୁ । ଗୀର୍ଜା, ମନ୍ଦିର, ମସଜିଦ ଗୁରୁଦ୍ୱାର, ଜୈନ, ଶିବ, ଶାକ୍ତ, ମଠମେଳା ଭିନ୍ନ ଧର୍ମାବଲମ୍ବୀମାନଙ୍କ ଲାଗି ଉଦ୍ଦିଷ୍ଟ ଥିଲେ ମଧ୍ୟ ସର୍ବଧର୍ମ ସମନ୍ୱୟର ଚିରଶାଶ୍ୱତ ନିର୍ଯ୍ୟାସ ନେଇ ସବୁଧର୍ମାବଲମ୍ବୀ ସମବେତ କଣ୍ଠରେ ଈଶ୍ୱର ପ୍ରାର୍ଥନା କରନ୍ତି, ପର୍ବ ପାଳନ୍ତି । ଶବ ଯାତ୍ରାରେ ସଭିଏଁ ଭାଗ ନିଅନ୍ତି ଏବଂ ପୂଜାପର୍ବରେ ଅମ୍ଳାନ ଭ୍ରାତୃତ୍ୱ ବନ୍ଧନର ଯେଉଁ ସମ୍ବେଦନଶୀଳତା ପ୍ରତିଟି ବ୍ୟକ୍ତି ଓ ଗୋଷ୍ଠୀ ମଧ୍ୟରେ ଦେଖାଯାଏ, ତାହା ଯୁଗାକାଙ୍‌କ୍ଷୀତ ଶୁଭସଙ୍କେତର ସ୍ମାରକୀ ନୁହେଁ କି ?

ମାନସଚନ୍ଦ୍ର ମହାମହିମ ପ୍ରତାପରୁଦ୍ରଙ୍କ ରାଜତ୍ୱର ସେଇ ସରସ୍ୱତୀ ବିଳାସର କେଇପଂକ୍ତି—

"ମହାନଦୀ ଜଳମଧ୍ୟ ମଧ୍ୟଶୀନାଂ ଅମର ନନ୍ଦପରନ୍ତି
ବିମ୍ବାମିବ ଭୂକାନ୍ତା କଟକ' କଟକ ନଗରୀଂ—"

ଆମର ଗୁରୁବାରପୂଜା, ସୃଷ୍ଟିସ୍ଥିତି ପ୍ରଳୟର ଶିବ ନଟରାଜ, ନୃସିଂହ ଏ ସମସ୍ତ ଦକ୍ଷିଣର ସଂସ୍କୃତି । ସେହିପରି ନାଗପୂଜା, ନାଗଲ ଚତୁର୍ଥୀ ତେଲଗୁ ଓ କର୍ଣ୍ଣାଟକର ପୂଜା; ବେଦଉପନିଷଦର ପର୍ବପର୍ବାଣି ଉତ୍ତରଭାରତୀୟ, ଶକ୍ତିପୂଜା ଉତ୍କଳ ବା ଓଡ଼ିଶା ସହିତ ଆହାମୀ ସଂସ୍କୃତିର ଏକ ଅପୂର୍ବ ସଂଯୋଗ । ବିସ୍ମୃତଲୀଙ୍ଗ ସଂସ୍କୃତିର ମହାମିଳନସ୍ଥଳୀ ଏଇ କଟକ ନଗରୀ ।

ସମୟର କରାଳସ୍ରୋତ । ଭୟଙ୍କର ତାର ସ୍ୱରୂପ । ତାର ବର୍ଣ୍ଣ ରଙ୍ଗରେ ଯେଉଁ ରୂପବୈଭବ ରହିଛି, ତାର ଗର୍ଭରେ ଧାରଣ କରିଛି ଅଧନାତନ ସହଜଯାନର କାମାତୁର ବୀଭତ୍ସତା, ସିଦ୍ଧସାଧକମାନଙ୍କର ବିପରୀତମୁଖୀ ଧର୍ମଧ୍ୱଜାର ପ୍ରସ୍ତର, ଗୁମ୍ଫାଏ ନୂତନତା, ଆସିଛି ଉତ୍ତର ଓ ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଭାରତରୁ ଯେମିତି ବୈଷ୍ଣବ ଧର୍ମଯାଜକଙ୍କର ଗୋଟାଏ ବ୍ୟଭିଚାରର ମହାମାରୀ ସାରା ଓଡ଼ିଶାକୁ କବଳିତ ଗ୍ରାସ କରିଥିଲା । ସୁରା, ବ୍ରାଉନସୁଗାର, ଆଧୁନିକ ସଭ୍ୟ କଟକବାସିନ୍ଦାଙ୍କୁ ଅହଂମନ୍ୟତାର ଶରଘାତରେ ବ୍ୟଥିତ ରକ୍ତାକ୍ତ କରିଚାଲିଛି । ନିରୀହ ଶିଶୁ ତାର ପ୍ରଭାବରେ ଉଗ୍ର, ସ୍ୱେଚ୍ଛାଚାରୀ ବିଶୃଙ୍ଖଳିତ ହୋଇ ଅସାମାଜିକ କର୍ମରେ ଆଜି ଲିପ୍ତ । ଉତ୍ତର ଓ ପଶ୍ଚିମାଞ୍ଚଳେ ଶାକାହାରୀ ଗୁଡ଼ ନିର୍ଲିପ୍ତ ଓ ମୁକ୍ତ ଭାବରେ ଆଜି ନିଶାଗ୍ରସ୍ତ ଓ ମାଂସାହାରୀ । ଦକ୍ଷିଣ ବାସିନ୍ଦା ଦାରିଦ୍ର୍ୟର କଷାଘାତରେ କୁତ୍ସିତ ଆଚରଣ କରିବାକୁ ପଶ୍ଚାଦପଦ ନୁହନ୍ତି । ତଥାପି ବହୁ ପ୍ରତିକୂଳ

ବାତାବରଣରେ ଘନ ଘନ ଧୂପଗୁଚ୍ଛ ଦ୍ୱାରା ସନ୍ତୁଳିତ ହୋଇ ଆମର ଅପାଶୋରା କଟକ ନଜର ପ୍ରାଚୀନ ବୈଭବର ସ୍ମୃତି ସ୍ମାରକୀ ସ୍ୱୀୟ ଗୌରବର ବାର୍ତ୍ତାବହ ଭାବରେ ରହିଛି । ଧଉଳଗିରି, ପୁଷ୍ପଗିରି, ଉଦୟଗିରି ଓ ରତ୍ନଗିରିର ପ୍ରତ୍ନତାତ୍ତ୍ୱିକ ଖନନ ବାରବାଟୀ ଦୁର୍ଗର ଖନନ ଓ ଦୁବୃତନ ସଭ୍ୟ ଭବ୍ୟ ଗୌରବବିଭୂଷିତ ଅଞ୍ଚଳ କଟକର ପୃଷ୍ଠାଓଲଟି ଯାଉଛି ଜନଚକ୍ଷୁ ସମ୍ମୁଖରେ ।

ବ୍ରଜନାଥ ବଡ଼ଜେନାଙ୍କର ସମର ତରଙ୍ଗ, ଗୁଣ୍ଡିଚା ବିଜେ, ସାରଳା ଦାସଙ୍କର ମହାଭାରତ, ଫକୀରମୋହନଙ୍କର ରଚନାବଳୀର ଅଜସ୍ର ଆରବୀ, ପାର୍ସିଭାଷାର ବ୍ୟବହାର, ପ୍ରାଚୀନତମ ମାଦଳାପାଞ୍ଜିର ଇତିହାସ, ସାଲବେଗଙ୍କର ରଚନାର ଯାବନିକ ଭାଷା ପ୍ରୟୋଗ, କବିସୂର୍ଯ୍ୟଙ୍କର ସ୍ୱର ସଙ୍ଗୀତ ଓ ସାଙ୍ଗୀତିକତା ରକ୍ଷା କରିବାଲାଗି ପାରସିକ ଭାଷାର ବ୍ୟବହାର, ଏବେ ମଧ୍ୟ କଟକ ନଗରୀର ସାରସ୍ୱତ ସମାରୋହ ତାହାଁକୁ ନନ୍ଦନ ରେଡ଼ିଓ ଟେଲିଭିଜନ୍ ମାଧ୍ୟମରେ ପ୍ରଚୁରିତ । ଯାହାର ସ୍ଫୁରଣ, ପ୍ରସାର ସମଗ୍ର ଓଡ଼ିଶାର ପ୍ରତିଟି ନିକ୍ୱଣକୁ ଭାବବିଭୋର, ରୂପକଳ୍ପ ସମ୍ମୋହନରେ ଆନନ୍ଦ ପ୍ରଦାନ କରେ । ଆଜି ରେଡ଼ିଓ ଓ ଟେଲିଭିଜନ ସଂସ୍ଥାରେ ବହୁ ଯନ୍ତ୍ରୀ, ଯନ୍ତ୍ର ସଙ୍ଗୀତଜ୍ଞ କର୍ମନିଯୁକ୍ତ ଉତ୍ତର ଓ ଦକ୍ଷିଣ ଭାରତୀୟ ହିସାବରେ କୁଶଳକଳାକାର ହିସାବରେ ସ୍ୱୀକୃତ । ଶିକ୍ଷା, ସ୍ୱାସ୍ଥ୍ୟ, ନୃତ୍ୟ, ସଙ୍ଗୀତ, କଳା, କାରିଗରି, ବ୍ୟବସାୟ ପ୍ରତ୍ୟେକ ସ୍ତରରେ ସେମାନଙ୍କର ଦକ୍ଷତା ଓଡ଼ିଆ ମାନଙ୍କଠାରୁ ନ୍ୟୂନତର ନୁହେ ।

କେରଳର ସେବିକା ଧାତ୍ରୀର ଚକ୍ଷୁରେ ସମ୍ବେଦନଶୀଳତା ଓ ସହିଷ୍ଣୁତା, ତେଲଗୁ, ତାମିଲ, ମାଳାୟାଳୀ, କର୍ଣ୍ଣାଟକୀ, କଟକ ବାସିନ୍ଦାର ସରକାରୀ ଦପ୍ତରର କାର୍ଯ୍ୟଦକ୍ଷତା, ଉତ୍ତର ଭାରତୀୟ, ନୃତ୍ୟ, ସଙ୍ଗୀତ ନିଖୁଣ କାରିଗରୀ କୌଶଳର ଜୀବନ୍ତ ରୂପାୟନ ସବୁକିଛି କଟକୀ । ବସ୍ତ୍ରଠାରୁ ଆରମ୍ଭ କରି ଧାତୁଦ୍ରବ୍ୟ, ମୂଲ୍ୟବାନ ଦ୍ରବ୍ୟ ପର୍ଯ୍ୟନ୍ତ, ଚାଉଳ, ଡାଲି ଠାରୁ ଲଙ୍କା, ପିଆଜ, ତେଲ, ହଳଦୀ, ମାଛ, ମାଂସ, ଅଣ୍ଡା ସବୁତ ଆସେ କଟକକୁ ପୁଣି ଉତ୍ତର ଓ ଦକ୍ଷିଣ ଭାରତରୁ । ଏଣୁ କଟକରେ ତେଲଙ୍ଗା ବଜାର, ବଙ୍ଗାଳୀ ସାହି, ମାରୱାଡ଼ୀ ପଟି, ଫିରିଙ୍ଗ ବଜାର ଇତ୍ୟାଦି ଦେଖିଲେ ମନେହୁଏ—ଏ ସହର ଏକ ସର୍ବଧର୍ମର ସହର, ଏ ସହରରେ ଗୁଜରାଟୀ, ଶିଖ, ତେଲଗୁ, ତାମିଲ, ମାରୱାଡ଼ୀ, ବଙ୍ଗାଳି ଭାଇ ଭାଇ ଭଳି ଚଳନ୍ତି । ମାରୱାଡ଼ୀ ସମ୍ପ୍ରଦାୟର ବିବାହ ଶୋଭାଯାତ୍ରା, ଶିଖମାନଙ୍କର ଧର୍ମୀୟ ଶୋଭାଯାତ୍ରା, ମୁସଲମାନ-ମାନଙ୍କର ଶୃଙ୍ଖଳିତ ପ୍ରାର୍ଥନା ସୂଚାଇ ଦିଏ ଯେ ଏ ସହରର ଐତିହ୍ୟ ଅଛି, ପରମ୍ପରା ଅଛି, ଜୀବନଧାରାରେ ସ୍ୱାତନ୍ତ୍ର୍ୟ ଏବଂ ବୈଚିତ୍ର୍ୟ ମଧ୍ୟ ରହିଛି ।

# କଟକର ଭୌଗୋଳିକ ଅବସ୍ଥିତି

ଡଃ ପ୍ରହ୍ଲାଦ ଚରଣ ମହାନ୍ତି

ଗୋଟିଏ ସ୍ଥାନର ଭୌଗୋଳିକ ଅବସ୍ଥିତି ଓ ପାରିପାର୍ଶ୍ୱିକ ପରିସ୍ଥିତି ତାର ସାମାଜିକ, ଅର୍ଥନୈତିକ ଗୁରୁତ୍ୱକୁ ନିୟନ୍ତ୍ରଣ କରିଥାଏ । ଏହାର ବହୁ ଦୃଷ୍ଟାନ୍ତ ବିଶ୍ୱ ଇତିହାସରେ ଦେଖିବାକୁ ମିଳେ । ଭାରତ ତଥା ଓଡ଼ିଶାର ଏପରି ବହୁ ସ୍ଥାନ ଅଛି ଯେଉଁ ଗୁଡ଼ିକ ଗୋଟିଏ ଗୋଟିଏ ଅଞ୍ଚଳର ଏପରିକି ସମଗ୍ର ଦେଶର ଅଭ୍ୟୁଦୟ ବା ବିପର୍ଯ୍ୟୟର କାରଣ ହୋଇ ଆସିଛି । ଏଠାରେ କଳିଙ୍ଗ ସାମ୍ରାଜ୍ୟର ପାଲୁର, ତାମ୍ରଲିପ୍ତି, ପିପିଲି କୋଶାମ୍ବ (ବାଲେଶ୍ୱର) ବନ୍ଦର ବାଲେଶ୍ୱର, କୋଣାଗର (କୋଣାର୍କ) ଦନ୍ତପୁର, କଣ୍ଟକର୍ଦ୍ଧମ (କଟକ), ପଲୁର (ଜଳେଶ୍ୱର) ପ୍ରଭୃତି ବନ୍ଦରଭିତ୍ତିକ ସ୍ଥାନଗୁଡ଼ିକ ଉତ୍କଳୀୟ ନୌବାଣିଜ୍ୟରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରି ଓଡ଼ିଶାର ଐଶ୍ୱର୍ଯ୍ୟ ବୃଦ୍ଧି ନିମନ୍ତେ ଉଦ୍ୟମ କରି ଆସିଥିଲେ । ଏକଦା ବାଲେଶ୍ୱରର ବନ୍ଦର ବିଶ୍ୱର ବାଣିଜ୍ୟ ବ୍ୟବସାୟକୁ ନିୟନ୍ତ୍ରଣ କରୁଥିଲା ବୋଲି ଇତିହାସ ଓ ଭୂଗୋଳର ବିଦେଶୀ ଲେଖକମାନେ ଉଲ୍ଲେଖ କରିଯାଇଛନ୍ତି ।

କଟକ ସହରର ଅବସ୍ଥିତି, ଓଡ଼ିଶାର ଐତିହାସିକ ଓ ଭୌଗୋଳିକ ପରିପ୍ରେକ୍ଷୀରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ସୃଷ୍ଟି କରିଆସିଛି । ଗୋଟିଏ ସ୍ଥାନର ଭୌଗୋଳିକ ଅବସ୍ଥିତି ସେ ସ୍ଥାନର ଓ ତା ଚତୁଃପାର୍ଶ୍ୱସ୍ଥ ଅଞ୍ଚଳର ବା ଦେଶର ଐତିହାସିକ, ସାମାଜିକ ଓ ଆର୍ଥିକ ସ୍ଥିତିକୁ କିପରି ନିୟନ୍ତ୍ରଣ କରେ କଟକ ସହର ହେଉଛି ତାହାର ଉଜ୍ଜଳ ଦୃଷ୍ଟାନ୍ତ । ୨୦.୨୯ ଡିଗ୍ରୀ ଉତ୍ତର ଅକ୍ଷାଂଶ ଓ ୮୫.୫୦ ଡିଗ୍ରୀ ପୂର୍ବ ଦ୍ରାଘିମାର ମିଳନ ବିନ୍ଦୁରେ କଟକ ସହରର ଅବସ୍ଥିତି ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ତାହାଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଦୁଇଟି ନଦୀର ସଙ୍ଗମ ସ୍ଥଳରେ ଏହାର ଅବସ୍ଥିତି । କଟକ ପରିପ୍ରେକ୍ଷୀରେ ଏହି ସଙ୍ଗମ-ସ୍ଥଳୀର ଅନ୍ୟ ଏକ ବୈଶିଷ୍ଟ୍ୟ ଅଛି । ଭାରତର ଯେତେ ସହର ଦୁଇଟି ନଦୀର ସଙ୍ଗମ ସ୍ଥଳୀରେ ଅବସ୍ଥିତ ହୋଇଛନ୍ତି, ସେଗୁଡ଼ିକ ପ୍ରାୟ ନଦୀ ଓ ଉପନଦୀର ମିଳନସ୍ଥଳୀ । ମାତ୍ର କଟକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ନଦୀ ଓ ଶାଖାନଦୀ ମିଳନ ସ୍ଥଳୀରେ ଏହା ଅବସ୍ଥିତ । ଏଥିପାଇଁ ପରମାନନ୍ଦ ଆଚାର୍ଯ୍ୟ

ଯଥାର୍ଥରେ କହିଛନ୍ତି, "ଦୁଇଟି ନଦୀର ତ୍ରିକୋଣଭୂମିର କୋଣ ଉପରେ କଟକ ନଗରର ଅବସ୍ଥିତି ଯୋଗୁ କଟକର ଭୌଗୋଳିକ ଅବସ୍ଥିତି ଭାରତବର୍ଷରେ ଅଦ୍ୱିତୀୟ ।"

୧୩ଶ ଶତାବ୍ଦୀରେ ଭାରତରେ ମୁସଲମାନ ଆଧିପତ୍ୟ କ୍ରମେ ବିସ୍ତାରଲାଭ କରୁଥିବାରୁ ରାଜଧାନୀ ପାଇଁ ମନୁଷ୍ୟକୃତ ପରିବେଷ୍ଟନୀ ଅପେକ୍ଷା ନୈସର୍ଗିକ ପରିବେଷ୍ଟନୀ ଅଧିକ ନିରାପଦ ଭାବି ଅନଙ୍ଗଭୀମଦେବ କଟକକୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ସୁତରାଂ ଏହି ଭୌଗୋଳିକ ଅବସ୍ଥିତି ଯୋଗୁ ସମ୍ବଲପୁର ଠାରୁ ସମୁଦ୍ର ପର୍ଯ୍ୟନ୍ତ ମହାନଦୀର ଉପକୂଳବର୍ତ୍ତୀ ଅଞ୍ଚଳର ବ୍ୟବସାୟ, ବାଣିଜ୍ୟ, ସାମାଜିକ ବ୍ୟବସ୍ଥା ଓ ସାଂସ୍କୃତିକ ବନ୍ଧନର ଏକ ବଳିଷ୍ଠ କେନ୍ଦ୍ର ରୂପେ କାର୍ଯ୍ୟକରି ଓଡ଼ିଶାର ଅଭିବୃଦ୍ଧିରେ କଟକ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି ।

କଟକ ସହରର ଉତ୍ତରରେ ମହାନଦୀ ଓ ଦକ୍ଷିଣରେ ମହାନଦୀର ପ୍ରଥମ ଶାଖାନଦୀ କାଠଯୋଡ଼ିଦ୍ୱାରା ପରିବେଷ୍ଟିତ । ଏହାର ଆୟତନ ପ୍ରାୟ ଷୋହଳ ବର୍ଗ-ମାଇଲ୍ ହେବ । କଟକ ସହରକୁ ଗୋଟିଏ ତ୍ରିଭୁଜ ରୂପେ କଳ୍ପନା କଲେ ଏହାର ଦୁଇଟିବାହୁ ହେବ ମହାନଦୀ ଓ କାଠଯୋଡ଼ି ଏବଂ ତାହାର ଭୂମି ହେବ ଦକ୍ଷିଣ-ପୂର୍ବ ରେଳପଥ ।

୧୯୬୦ ମସିହା ସମୟକୁ ରେଳପଥ ପୂର୍ବ ପାର୍ଶ୍ୱରେ ଓ.ଏମ୍.ପି., ଗଉଡ଼ଆଗଞ୍ଜ ଥାନା, ପି.ଜି. ହଷ୍ଟେଲ ଓ ନାମକୁ ମାତ୍ର ନୂଆବଜାର ଥିଲା । ମାତ୍ର ପାରାଦ୍ୱୀପ ବନ୍ଦର ନିର୍ମାଣ ଓ ଜାତୀୟ କବି ବୀରକିଶୋର କଲେଜର ପ୍ରତିଷ୍ଠା ପରେ ଏ ଅଞ୍ଚଳର ଅଭୂତପୂର୍ବ ବିକାଶ ଘଟି ମହାନଦୀ ବିହାର ନାମକ ଏକ ଉନ୍ନତ ନିବାସସ୍ଥଳୀ କେବଳ ସୃଷ୍ଟି କରିନାହିଁ କଟକ ସହରର ସୀମା ସରହଦକୁ ବହୁଗୁଣରେ ସମ୍ପ୍ରସାରିତ କରିଛି । ମହାନଦୀର ଶାଖା କାଠଯୋଡ଼ି, କୁଆଖାଇ, ଉପନଦୀ ତେଲ, ଅଙ୍ଗ, ବାଘ ଇତ୍ୟାଦି ଯୋଗୁ କଟକ, ପୁରୀ ସହିତ ଜଳପଥରେ ସମ୍ବଲପୁର, ସୋନପୁର, ଦଶପଲ୍ଲା, ନରସିଂହପୁର, ବଡ଼ମ୍ବା ଇତ୍ୟାଦି ପୂର୍ବତନ ଗଡ଼ଜାତ ରାଜ୍ୟର ସମ୍ପର୍କ ସ୍ଥାପିତ ହୋଇପାରିଥିଲା । ପୁନଶ୍ଚ ମହାନଦୀ ଓ କାଠଯୋଡ଼ି କଟକ ଭୂ-ଭାଗକୁ ପରିବେଷ୍ଟନ କରି ଏକ ପ୍ରାକୃତିକ ପରିଖା ରୂପେ କାର୍ଯ୍ୟ କରୁଥିବାରୁ ଏହାକୁ ଉତ୍କଳର ଗଜପତି ରାଜାମାନେ ନିରାପଦ ତଥା ଆଦର୍ଶ ସ୍ଥାନ ମନେକରି ପ୍ରାୟ ଏକହଜାର ବର୍ଷ ପୂର୍ବେ ଏଠାରେ ରାଜଧାନୀ ସ୍ଥାପନ କରିଛନ୍ତି ।

ଭାରତର ପୂର୍ବ ଉପକୂଳରେ ଉତ୍ତରରୁ ଦକ୍ଷିଣକୁ ଅଥବା ଦକ୍ଷିଣରୁ ଉତ୍ତରକୁ ଯିବାକୁ ହେଲେ ବହୁ ପ୍ରାଚୀନକାଳରୁ କଟକ ଥିଲା ରାଜପଥ ନିମନ୍ତେ ଉତ୍କୃଷ୍ଟ ପ୍ରବେଶ ଦ୍ୱାର । କଟକର ପଶ୍ଚିମ ପାର୍ଶ୍ୱରେ ଯେପରି ଦୁର୍ଭେଦ୍ୟ ପର୍ବତମାଳା ପୂର୍ବରେ ସେହିପରି ଅଗମ୍ୟ ନଦୀବହୁଳ ତ୍ରିକୋଣଭୂମି । କଟକର ଏହି ନୈସର୍ଗିକ ପରିବେଶଜନିତ ସାମରିକ ଗୁରୁତ୍ୱ ଯୋଗୁ ଯୁଗେ ଯୁଗେ ଏହା କଳିଙ୍ଗ ତଥା ଉତ୍କଳର ଗଜପତି ସମ୍ରାଟମାନଙ୍କୁ ଆକୃଷ୍ଟ କରି ଆସିଛି ।

ଐତିହାସିକ ସ୍ୱର୍ଗତ ଘନଶ୍ୟାମ ଦାସଙ୍କ ମତରେ କଟକରେ ପ୍ରଥମେ ସୈନ୍ୟ ଛାଉଣି ଥିଲା, ପରେ ତାହା ରାଜଧାନୀରେ ପରିଣତ ହେଲା । ବାରଣ ଓ ଅସୀ ନାମକ ଦୁଇଟି ନଦୀ ମଧ୍ୟରେ ବାରାଣାସୀ ଅବସ୍ଥିତ ଥିବା ପରି କଟକ ଅବସ୍ଥିତ ଥିବାରୁ ଏହାକୁ ବାରଣାସୀ-କଟକ ନାମରେ ଅଭିହିତ କରାଯାଇଥିଲା । ବିଶାଳ ଉତ୍କଳ ସାମ୍ରାଜ୍ୟର ରାଜଧାନୀ କଟକର ନିରାପତ୍ତା ପାଇଁ ଯାଜପୁର, ଛତିଆ, ଚୌଦ୍ୱାର, ବାରଙ୍ଗ ନିକଟବର୍ତ୍ତୀ ସାରଙ୍ଗଗଡ଼, ଚନ୍ଦକା ନିକଟବର୍ତ୍ତୀ ଗ୍ରେଙ୍ଗଗଡ଼ ଇତ୍ୟାଦି ନିର୍ମାଣ କରାଯାଇଥିଲା । କାରଣ କଳ୍ପନା ଥିଲା କଟକ ଆକ୍ରମିତ ହେଲେ ଜଳ ଓ ସ୍ଥଳପଥରେ ଉପରୋକ୍ତ ଦୁର୍ଗଗୁଡ଼ିକୁ ପଳାଇଯାଇ ହେବ ।

ଏକ ନଦୀମାତୃକା ସହର ରୂପେ କଟକର ଖ୍ୟାତି ଥିଲେ ମଧ୍ୟ ଏହାର ନୈସର୍ଗିକ ପରିବେଶ ଏହାକୁ ଅନବଦ୍ୟ ସୌନ୍ଦର୍ଯ୍ୟରେ ବିମଣ୍ଡିତ କରିଛି । ଦକ୍ଷିଣ, ପଶ୍ଚିମ ଓ ଉତ୍ତର ପାର୍ଶ୍ୱରେ ଦୂର ଚକ୍ରବାଳରେ ଶ୍ୟାମଳ ପର୍ବତମାଳା କଟକର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଅପାଶୋରି ବିଭବରେ ପରିଣତ କରିଛି । ଆଜି ମଧ୍ୟ ବିଭିନ୍ନ ବୃକ୍ଷ, ପୁଷ୍ପ-ଉଦ୍ୟାନ କଟକକୁ ଏକ ଉପବନ ଆଶ୍ରିତ ନିବାସ ସ୍ଥଳରେ ପରିଣତ କରିଛି । ପ୍ରାୟ ପାଞ୍ଚଶହ ବର୍ଷତଳେ କଟକ ବିଭିନ୍ନ ଫୁଲ, ଫଳ, ଗଛ ଧାରଣ କରି ଏହାକୁ ସାଧାରଣ ସହରର ଊର୍ଦ୍ଧ୍ୱରେ ସ୍ଥାପିତ କରିଥିଲା । ସିରଜ୍-ଇ-ଫିରୋଜସାହି ବର୍ଣ୍ଣନାରୁ ଜଣାଯାଏ କଟକରେ ସୁନ୍ଦର ଉଦ୍ୟାନ, କମଳା, ନଡ଼ିଆ ଗଛ, ଡାଳିମ୍ବ ଗଛ ପ୍ରଚୁର ପରିମାଣରେ ଥିଲା । ଓଡ଼ିଶାର ଗଜପତି ପ୍ରତାପରୁଦ୍ରଦେବଙ୍କ ଦ୍ୱାରା ସଙ୍କଳିତ "ସରସ୍ୱତୀ ବିଳାସମ୍" ନାମକ ଗ୍ରନ୍ଥରେ କଟକ ନଗରୀକୁ "ଭୂକାନ୍ତ କଟକମ୍ କଟକ ନଗରୀମ୍" ଅର୍ଥାତ "ପୃଥ୍ୱୀଦେବୀଙ୍କ ମେଖଳା" ବୋଲି ବର୍ଣ୍ଣନା କରାଯାଇଛି । ମହାନଦୀ ଓ କାଠଯୋଡ଼ି ନଦୀ-ଦୁଇଟି କେବଳ ସହରର ଭୂଭାଗକୁ ଜଳସିକ୍ତ ଓ ଉର୍ବର କରୁନାହାନ୍ତି ଅଥବା ବାୟୁ-ମଣ୍ଡଳକୁ ସମଶୀତୋଷ୍ଣ କରୁନାହାନ୍ତି-ସହରର ସାମଗ୍ରିକ ରୂପକୁ ସୁଷମାମଣ୍ଡିତ କରୁଛନ୍ତି । ଓଡ଼ିଶାର ବହୁ ପ୍ରତିଷ୍ଠିତ କବି ମହାନଦୀର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ଆତ୍ମହରା ହୋଇଛନ୍ତି । ରାଧାନାଥଙ୍କ ଭାଷାରେ—

"ମଞ୍ଜରମା-କାଞ୍ଚନମା-ସ୍ନାତେ ପୂତା
କାଞ୍ଚନମା- ବେଣୀ-ପ୍ରଭ-ବେଣୀଯୁତା,
ବୃକ୍ଷଦ୍‌ବନ୍ତୀ ରୂପେ ଜର୍ଜର ମୁଖର
ସୈକତିନୀ ରୂପେ ମାନନଗମ୍ଭୀର ।
ଠାବେ ଠାବେ ଦ୍ୱୀପ-ଶୈଳ-ପାଦଦଣ୍ଡୀ
ଗୁଞ୍ଜେ ବକ୍ଷ ଯାର ହୋଇଅଛି ମଣ୍ଡି
ପ୍ରବାହ ବିହାର-ଅରଣ୍ୟ-ଦଣ୍ଡୀର
ମନ୍ଦ୍ର ଚନ୍ଦ୍ରାକିତ ଯାର ନୀଳ ନୀର
ଅଗ୍ରେ ସେହି ନଦୀ ବହୁଅଛି ରଙ୍ଗେ
ଏ ରଙ୍ଗ ନିରେଖି ତରଙ୍ଗ ଭ୍ରୂଭଙ୍ଗେ ।"

ଭୁବନେଶ୍ୱର ଆଡୁ ଆସୁଥିବା ରେଳ ବା ବସ୍‌ଯାତ୍ରୀ ରାତିରେ କଟକର ଦୃଶ୍ୟ ଦେଖି ଆତ୍ମହରା ହୋଇଉଠେ । ଦୃଷ୍ଟିଭ ଆଲୋକମାଳାର ସୁଦୀର୍ଘ ପଂକ୍ତି ଓ କାଠଯୋଡ଼ି ଜଳରେ ତାର ଉଜ୍ଜ୍ୱଳ ପ୍ରତିବିମ୍ବନ, ନିରନ୍ଧ୍ର ତମିସ୍ରାର ପୃଷ୍ଠଭୂମିରେ ଅବଗୁଣ୍ଠନବତୀ ରମଣୀର ସୁବର୍ଣ୍ଣମେଖଳା ପରି ପ୍ରତୀୟମାନ ହୁଏ ।

ଅଷ୍ଟମ ଶତାବ୍ଦୀ ପୂର୍ବରୁ କଟକର ରାଜନୈତିକ ଓ ସାମାଜିକ ଗୁରୁତ୍ୱ ସମ୍ପର୍କରେ କୌଣସି ତଥ୍ୟ ମିଳେ ନାହିଁ । ଖ୍ରୀ ୧୦୦୬ରେ ମର୍କତକେଶରୀ ମହାନଦୀର ବନ୍ୟା ଦାଉରୁ କଟକକୁ ରକ୍ଷା କରିବା ପାଇଁ ଏକ ପଥର ବନ୍ଧ ନିର୍ମାଣ କରିଥିଲେ । ଘୋଡ଼ାଘାଟୁ ପରି ଦିଶୁଥିବା ପଥରବନ୍ଧ କାଠଯୋଡ଼ିର ବାମ ପାର୍ଶ୍ୱରେ ଖାନ୍‌ନଗରଠାରୁ ଆରମ୍ଭ ହୋଇ ପଶ୍ଚିମ ଦିଗକୁ ଗତି କରି ଚହଟା ପର୍ଯ୍ୟନ୍ତ ଓ ସେଠାରୁ ପୁନଶ୍ଚ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଯୋବ୍ରାଘାଟ ପର୍ଯ୍ୟନ୍ତ ଲମ୍ବିଛି । ଉତ୍କଳର ହୃତ୍‌ପିଣ୍ଡ କଟକ ସହରର ସାମରିକ ତଥା ପ୍ରାକୃତିକ ନିରାପତ୍ତା ଯେ ଏକାନ୍ତ ଅପରିହାର୍ଯ୍ୟ ତାହା ତତ୍କାଳୀନ ସମ୍ରାଟମାନେ ଉପଲବ୍ଧି କରିଥିଲେ । କେବଳ ଖ୍ରୀ ୧୮୩୦ରୁ ଖ୍ରୀ ୧୯୨୭ ମଧ୍ୟରେ କଟକରେ ୨୮ଥର ବନ୍ୟା ହୋଇଥିଲା । ଖ୍ରୀ ୧୮୬୬ର ନଅଙ୍କ ଦୁର୍ଭିକ୍ଷ ସମୟରେ ମହାନଦୀର ବନ୍ୟାଜଳ କଟକରେ ୬୪୨ ବର୍ଗ କିଲୋମିଟରର ଚାଷଜମିକୁ ୩ ଦିନରୁ ୬୦ ଦିନ ପର୍ଯ୍ୟନ୍ତ ପ୍ଲାବିତ କରି ରଖିଥିଲା । ଏଥିରୁ ମହାନଦୀ-କାଠଯୋଡ଼ି ପରିବେଷ୍ଟିତ କଟକର ଅସହାୟତା ବେଶ ଅନୁମେୟ । ନ'ଅଙ୍କ ଦୁର୍ଭିକ୍ଷ ସମୟରେ ବନ୍ୟା ଯୋଗୁଁ କଟକ ବାହାର ଦୁନିଆରୁ ବିଚ୍ଛିନ୍ନ ହୋଇ ପଡ଼ିବାରୁ ଓ ବନ୍ୟାଜନିତ ମରୁଡ଼ି ଅବସ୍ଥା ସୃଷ୍ଟି ହେବାରୁ ସଂଯୋଗ ସ୍ଥାପନ ନିମନ୍ତେ ଓ ଜଳସେଚନ ନିମନ୍ତେ କେନ୍ଦ୍ରାପଡ଼ା କେନାଲ, ତାଳଦଣ୍ଡା କେନାଲ, ଯୋବ୍ରା ଆନିକଟ, ବିରୂପା ଆନିକଟ ପ୍ରଭୃତି ନିର୍ମିତ ହୋଇଥିଲା । ୬୩୪୯ ଫୁଟ ଦୀର୍ଘ ଏହି ଯୋବ୍ରା ଆନିକଟ ଆଜି ଆଉ ନାହିଁ । ଏହି ଆନିକଟର ଅଳ୍ପ ଦୂରରେ ମହାନଦୀର ନିମ୍ନ ଶଯ୍ୟାରେ ଯାତାୟାତ ପଥ ସମନ୍ୱିତ ଏକ ଆଧୁନିକ ଆନିକଟ ନିର୍ମିତ ହୋଇ ଜଳ-ଭଣ୍ଡାରର ଆୟତନକୁ ବୃଦ୍ଧି କରାଯାଇଛି । ଫଳରେ କଟକ ସହରକୁ ଜଳଯୋଗାଣ କେନାଲ ମାଧ୍ୟମରେ ଅଧିକ ଜଳବଣ୍ଟନ, ଚୌଦ୍ୱାର-କଟକର ଦୂରତା ସଙ୍କୋଚନ ଇତ୍ୟାଦି ସମ୍ଭବ ହୋଇପାରିଛି ।

ଗତ ପ୍ରାୟ ଦଶବର୍ଷ ମଧ୍ୟରେ କେନ୍ଦ୍ର ସରକାର, ଓଡ଼ିଶା ସରକାର ଓ କଟକ ପୌରସଂସ୍ଥା ଆନୁକୂଲ୍ୟରେ କଟକ ରାସ୍ତା, ପୋଲ, ଷ୍ଟେସନ, ବସଷ୍ଟାଣ୍ଡ, ପାର୍କ, ବସ୍ତି ପ୍ରଭୃତିର ବିପୁଳ ବିକାଶ ଘଟିଛି । କଟକ ସହର ମଧ୍ୟରେ ଯାଇଥିବା ପାଞ୍ଚ ନମ୍ବର ଜାତୀୟ ରାଜପଥକୁ ଚାରି ସରଣୀ ବିଶିଷ୍ଟ କରାଯିବା ସଙ୍ଗେ ସଙ୍ଗେ କେତେକ ଛକ ସାଗରେ ଟ୍ରାଫିକ୍ ଆଇଲାଣ୍ଡ କରାଯାଇ ଯାତାୟାତକୁ ସୁଗମ କରାଯାଇ ପାରିଛି । କଟକ-ରେଳଷ୍ଟେସନ୍ ନିକଟବର୍ତ୍ତୀ ଲେଭଲ୍ କ୍ରସିଂ ଉପରେ ଓଭରବ୍ରିଜ ନିର୍ମାଣ କରାଯାଇ କଟକର ମୁଖ୍ୟ ସହର ସହିତ ଗୌରୀଶଙ୍କର ପାର୍କ, ନୂଆବଜାର, ମହାନଦୀ ବିହାର ପ୍ରଭୃତିକୁ ସ୍ଥାୟୀଭାବେ ସଂଯୋଗ କରାଯାଇ ପାରିଛି । କାଠଯୋଡ଼ି ଓ ମହାନଦୀ କୂଳେ କୂଳେ ନିର୍ମିତ ହୋଇଥିବା ରିଙ୍ଗରୋଡ଼

ସହରବାସୀଙ୍କ ଗମନାଗମନ, ଯାନବାହନ ଯାତାୟାତରେ ସମସ୍ୟାକୁ ବହୁ ପରିମାଣରେ ସମାଧାନ କରି ପାରିଛି । ଗତ କେତେ ବର୍ଷର ଉଲ୍ଲେଖଯୋଗ୍ୟ ଘଟଣା ହେଉଛି କଟକ ସହର ପାର୍ଶ୍ୱବର୍ତ୍ତୀ କେତେକ ପତିତ ଜମିକୁ ଉଦ୍ଧାର କରି ନୂତନ ନିବାସ-ସ୍ଥଳୀ ସୃଷ୍ଟି କରିବା । ଏକଦା ଅଗ୍ରାଂଟ୍ରେସ୍ଟ, ଅଗମ୍ୟ, ମହାନଦୀ ବିହାର, ବିଡାନାସୀ ଇତ୍ୟାଦି କେତେକ ଅଞ୍ଚଳ ନର୍ଦ୍ଦମାକ୍ତ-ଅସ୍ୱାସ୍ଥ୍ୟକର ଅବସ୍ଥାରୁ ମୁକ୍ତ ହୋଇ ସୁରମ୍ୟ ଆବାସିକ ଅଟ୍ଟାଳିକା ବହନ କରି ସହରର ସ୍ଥାନାଭାବ ସମସ୍ୟା ଦୂର କରିବାରେ ସହାୟକ ହୋଇଛି । ମହାନଦୀ, କାଠଯୋଡ଼ି ନଦୀ ଉପରେ ସେତୁ ନିର୍ମାଣ, ପାଞ୍ଚ ନମ୍ବର ଜାତୀୟ ରାଜପଥର ସମ୍ପ୍ରସାରଣ ଯୋଗୁଁ କଟକ ସହରକୁ ଏବଂ କଟକରୁ ଅନ୍ୟାନ୍ୟ ସ୍ଥାନକୁ ଯାତ୍ରୀ ଓ ଯାନବାହନର ସରବରାହ ବିପୁଳ ପରିମାଣରେ ବୃଦ୍ଧି ପାଇଛି । ଓଡ଼ିଶାର ରାଜଧାନୀ କଟକରୁ ଭୁବନେଶ୍ୱର ସ୍ଥାନାନ୍ତରିତ ହୋଇଯାଇଥିଲେ ମଧ୍ୟ ହାଇକୋର୍ଟ, ମୁଖ୍ୟ ଚିକିତ୍ସାଳୟ, ବୋର୍ଡ଼ ଅଫ୍ ରେଭିନ୍ୟୁ, ଆକାଶବାଣୀ, ଦୂରଦର୍ଶନ ପରି କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ଏପର୍ଯ୍ୟନ୍ତ କଟକରେ ଅବସ୍ଥାପିତ ଥିବାରୁ ବାସ୍ତବ କ୍ଷେତ୍ରରେ, କଟକ ଓ ଭୁବନେଶ୍ୱର ଯାମଳ ସହର ରୂପେ ପରିଗଣିତ ହେଉଛି ।

ବର୍ତ୍ତମାନ କଟକ-ଭୁବନେଶ୍ୱର ମଧ୍ୟରେ ପ୍ରତ୍ୟହ ଯାତାୟାତ କରୁଥିବା ଯାନବାହନର ସଂଖ୍ୟାକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଲକ୍ଷ୍ୟ କରିହେବ ଏ ଦୁଇଟି ସହର କିପରି ପରସ୍ପର ଉପରେ ନିବିଡ଼ ଭାବରେ ନିର୍ଭରଶୀଳ ।

ସହସ୍ରାଧିକ ବର୍ଷବ୍ୟାପୀ କାଳର ବକ୍ଷରେ ମାତ୍ର ସାତଟି ଗ୍ରାମକୁ ନେଇ ସୃଷ୍ଟି ହୋଇଥିବା କଟକର ଭୌଗୋଳିକ ତଥା ବହୁ ଐତିହାସିକ କୀର୍ତ୍ତି ଦ୍ୱାରା ସ୍ୱନାମଧନ୍ୟ ହୋଇ ଉଠିଛି । କାଠଯୋଡ଼ି ପଥରବନ୍ଧ, ବାରବାଟି ଦୁର୍ଗ ନବତଳ ପ୍ରାସାଦ, ଦୁର୍ଗ ମଧ୍ୟସ୍ଥ ଜଗନ୍ନାଥ ମନ୍ଦିର, କଟକ ଚଣ୍ଡୀ ସମେତ ବହୁ ଦେବଦେବୀ ମନ୍ଦିର, ମଠ, ଜୈନ ବୌଦ୍ଧପୀଠ, କଦମ୍-ଇ-ରସୁଲ, ଜୁମା ମସ୍‌ଜିଦ, ଗୀର୍ଜା, ଗୁରୁଦ୍ୱାର, ରେଭେନ୍‌ସା ମହାବିଦ୍ୟାଳୟ, ମେଡ଼ିକାଲ୍ କଲେଜ, ଶୈଳବାଳା ମହିଳା ମହାବିଦ୍ୟାଳୟ, ଷ୍ଟୁଆର୍ଟ-ଖ୍ରୀଷ୍ଟ, ମହାବିଦ୍ୟାଳୟ, କଲିଜିଏଟ୍ ସ୍କୁଲ, ହାଇକୋର୍ଟ, ଆକାଶବାଣୀ, ବାରବାଟୀ ଷ୍ଟାଡ଼ିୟମ୍, ଦୂରଦର୍ଶନ, ନେହେରୁ ଇନ୍‌ଡୋର୍ ଷ୍ଟାଡ଼ିୟମ, ଜାତୀୟ ରାଜପଥ, ରେଳଷ୍ଟେସନ, ଲିଙ୍କରୋଡ଼, ରିଙ୍ଗରୋଡ଼, ପୁରାତନ ଓ ନୂତନ ଯୋଡ଼ା ଆଣିକଟ, ତାଳଦଣ୍ଡା କେନାଲ, ମହାନଦୀ-କାଠଯୋଡ଼ିସେତୁ, ଓଭରବ୍ରିଜ୍-ବାଦାମବାଡ଼ି-ବସଷ୍ଟାଣ୍ଡ ପାରାଦ୍ୱୀପ ରେଳପଥ, ବହୁ ନାଟ୍ୟ-ରଙ୍ଗମଞ୍ଚ, ଏକାଧିକ ପ୍ରେକ୍ଷାଳୟ ସମ୍ବାଦପତ୍ର-ପୁସ୍ତକ ପ୍ରକାଶନର ବହୁ ସଂସ୍ଥା ଇତ୍ୟାଦି । ବହୁ କୀର୍ତ୍ତି କାଳବକ୍ଷରେ ଲୀନ ହୋଇଯାଇଛି ।

ଗତ ୧୧ । ୨ । ୯୨ ତାରିଖ ସମ୍ବାଦପତ୍ରରୁ ପ୍ରକାଶ ଯେ ବାରବାଟୀ-ଦୁର୍ଗର ଶେଷ ପର୍ଯ୍ୟାୟ ଖନନରୁ ଖ୍ରୀ ୧୨୩୦ ମସିହାର ଏକ ଭଙ୍ଗା ମନ୍ଦିର ଆବିଷ୍କୃତ ହେବା ପରେ କଟକର ଇତିହାସ ଏକ ଭିନ୍ନ ରୂପ ଗ୍ରହଣ କରିଛି । ଓଡ଼ିଆ ପାଇକର ବୀରତ୍ୱ ଓ ସମଗ୍ର

ଭାରତରେ ଉତ୍କଳ ଗଜପତିଙ୍କ ଅସପନ୍ନ ସାମରିକ ପ୍ରତିଷ୍ଠାର ପ୍ରତୀକ ରୂପେ ବାରବାଟୀ ଦୁର୍ଗ ଯୁଗେ ଯୁଗେ ଗୌରବ ଅର୍ଜନ କରି ଆସିଛି । କୃପାସିନ୍ଧୁ ମିଶ୍ର "ବାରବାଟୀ" ଦୁର୍ଗ ଗ୍ରନ୍ଥରେ ଯଥାର୍ଥରେ ଲେଖିଛନ୍ତି "ପ୍ରଚଣ୍ଡ ଆଫଗାନ ଶକ୍ତି ବିଂଶତାଧିକ ବର୍ଷ ପର୍ଯ୍ୟନ୍ତ କେତେ ଆକ୍ରମଣ କରି କେତେ ସୈନ୍ୟ ସାମନ୍ତ, ଅର୍ଥ ନଷ୍ଟ କରି ପରିଶେଷରେ ଓଡ଼ିଆଙ୍କ ସମ୍ମୁଖରେ ନତମସ୍ତକ ହୋଇଥିଲେ ।" ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ "ଭାରତ ଭ୍ରମଣ" ଗ୍ରନ୍ଥରେ ଲେଖିଛନ୍ତି "ସେତେବେଳେ ଏମାନେ (ଓଡ଼ିଆମାନେ) ବୀରତ୍ୱରେ ଓ ଧୀରତ୍ୱରେ, ଶୌର୍ଯ୍ୟରେ-ବୀର୍ଯ୍ୟରେ ଏପରିକି ଶିଳ୍ପ ନୈପୁଣ୍ୟରେ ମଧ୍ୟ ଭାରତର ଅନ୍ୟାନ୍ୟ ଦେଶର ଅଧିବାସୀଗଣଙ୍କ ଅପେକ୍ଷା ଶ୍ରେଷ୍ଠ ଥିଲେ । "ଏତଦ୍‌ବ୍ୟତୀତ ଶିକ୍ଷା, ସଂସ୍କୃତି-ଶିଳ୍ପ କ୍ଷେତ୍ରରେ କଟକର ଗୌରବମୟ ଅବଦାନ ରହିଛି । କଟକର ସୁନାରୁପାର ତାରକସୀ କାମ, ସମଗ୍ର ବିଶ୍ୱରେ ଓଡ଼ିଶାକୁ ଏକ ଅପ୍ରତିଦ୍ୱନ୍ଦ୍ୱୀ ଆସନରେ ପ୍ରତିଷ୍ଠିତ କରାଇପାରିଛି । ସେହିପରି ଏକଦା ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଟେନେରି ନାମକ ଯୋତାକାରଖାନା ବିଶ୍ୱବଜାରରେ ଖ୍ୟାତି ଅର୍ଜନ କରିଥିଲା ଏବଂ ଚମଡ଼ା ଶିଳ୍ପରେ ଓଡ଼ିଆ କାରିଗର ନୈପୁଣ୍ୟ ଓ ନିଷ୍ଠା ପ୍ରଦର୍ଶନ କରିଥିଲେ ।

ପ୍ରକୃତିର ଅଲୌକିକ ବୈଚିତ୍ର୍ୟ ଈଶ୍ୱରଦତ୍ତ ଭୌଗୋଳିକ ଅବସ୍ଥିତି, ସହସ୍ରାଧିକ ବର୍ଷର ସାମରିକ ପ୍ରତିପତ୍ତି, ବିଶ୍ୱର ବିଭିନ୍ନ ଧର୍ମର ଶାନ୍ତ ସ୍ନିଗ୍ଧ ସମନ୍ୱୟ ଭଳି ପ୍ରଭୃତିର ଗୌରବମୟ ଗୁଣ ବହନ କରିଥିବା କଟକ ପରି ଏକ ପ୍ରାଚୀନ ସହର ଭାରତ କିମ୍ବା ବିଶ୍ୱଇତିହାସରେ ମିଳିବା ଦୁଷ୍କର ।



# କଟକର ଶିଳାଲେଖ

ଡଃ କୁଞ୍ଜବିହାରୀ ତ୍ରିପାଠୀ

କଟକନଗର ୯୧୪ ଖ୍ରୀ:ଅ:ରେ ତଥାକଥିତ କେଶରୀବଂଶର ରାଜା ନୃପକେଶରୀଙ୍କ ଦ୍ୱାରା ସ୍ଥାପିତ ହୋଇଥିବାର କଥିତ ହୋଇଅଛି ? ଐତିହାସିକଙ୍କ ମତରେ କେଶରୀବଂଶ ହେଉଛି ସୋମବଂଶ । ସୋମବଂଶ ପରେ ଗଙ୍ଗବଂଶୀୟ ରାଜାମାନେ ୧୧୩୫ ଖ୍ରୀ:ଅ: ଠାରୁ ୧୪୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଙ୍ଗବଂଶ ପରେ ସୂର୍ଯ୍ୟବଂଶୀୟ ନୃପତିମାନେ ୧୪୩୫ ଖ୍ରୀ:ଅ: ଠାରୁ ଖ୍ରୀ:ଅ: ୧୫୪୦ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ୧୫୪୦ ଖ୍ରୀ:ଅ: ଠାରୁ ୧୫୬୮ରେ ମୁକୁନ୍ଦଦେବଙ୍କ ରାଜତ୍ୱ ଶେଷସୁଦ୍ଧା ମନ୍ତ୍ରୀ (ସେନାପତି) ପ୍ରଭୃତି ପ୍ରମୁଖଙ୍କ ରାଜପଦବୀ ଗ୍ରହଣ ଓ ରାଜତ୍ୱ ହେଲା । ଏହାପରେ ଓଡ଼ିଶା ରାଜ୍ୟରେ ଅନ୍ତର୍ବିବାଦର ଫଳ ସ୍ୱରୂପ ୧୬ଶ ଶତାବ୍ଦୀର ଶେଷଭାଗ ଠାରୁ ମୁସଲମାନପ୍ରଧାନ ରାଜତ୍ୱ ପ୍ରବର୍ତ୍ତିତ ହୋଇ ୧୭୫୧ ଖ୍ରୀ: ଅ: ପର୍ଯ୍ୟନ୍ତ ରହିଲା । ତହୁଁ ମରହଟ୍ଟା ଶାସନ ପ୍ରବର୍ତ୍ତିତ ହୋଇ ୧୮୦୩ ଖ୍ରୀ:ଅ:ରେ ବ୍ରିଟିଶ ଶାସନ ପ୍ରବର୍ତ୍ତିତ ହେଲା । ବ୍ରିଟିଶ ରାଜତ୍ୱ ଶେଷସୁଦ୍ଧା କଟକ ନଗର ଓଡ଼ିଶାର ରାଜଧାନୀ ହୋଇ ରହିଥିଲା ।

ଉଲ୍ଲିଖିତ ବଂଶସମୂହର ବହୁ ଶିଳାଲେଖ ଓ ତାମ୍ରଶାସନ ଓଡ଼ିଶାରେ ଏବଂ ଭାରତବର୍ଷର ସମଗ୍ର ପୂର୍ବ ଉପକୂଳର ସଂସ୍କୃତ, ଓଡ଼ିଆ, ତେଲୁଗୁ, ତାମିଲ, ଏବଂ କନ୍ନାଡ଼ୀ ଭାଷାରେ ଆବିଷ୍କୃତ ହୋଇଅଛି । କଟକ ନଗରୀର ଉଲ୍ଲେଖ ଏବଂ ଏହାର ଶ୍ରୀନଅର (ବାରବାଟୀ)ର ଉଲ୍ଲେଖ ପୂର୍ବୋକ୍ତ ଖୋଦିତ ଲେଖାଗୁଡ଼ିକରେ ମିଳୁଅଛି । କଟକରେ ମୁସଲମାନ ରାଜତ୍ୱର ଶିଳାଲେଖ ପ୍ରାଚୀନ ମସଜିଦଗୁଡ଼ିକରେ ଯେପରି ବହୁ-ସଂଖ୍ୟାରେ ମିଳୁଅଛି, ହିନ୍ଦୁ ମନ୍ଦିରଗୁଡ଼ିକରେ ସେପରି ସଂଖ୍ୟାରେ ମିଳୁ ନାହିଁ । ଏହାର କାରଣ ହିନ୍ଦୁ ମନ୍ଦିର ନିର୍ମାଣକାରୀମାନେ ମନ୍ଦିରଗାତରେ ନିଜର ନାମ ଲେଖି ପରିଚୟ ଦେବାରେ ବିମୁଖ ଥିଲେ । ଦ୍ୱିତୀୟତଃ ପ୍ରାଚୀନ ହିନ୍ଦୁ ମନ୍ଦିର (ବାରବାଟୀର ଶ୍ରୀଜଗନ୍ନାଥ ମନ୍ଦିର ସମେତ) ନଷ୍ଟହୋଇ ଯାଇଅଛି ।

ବର୍ତ୍ତମାନ କଟକରେ କେତେକ ପ୍ରାଚୀନ ଲେଖ ସମ୍ବଳିତ ମୂର୍ତ୍ତି ଦେଖିବାକୁ ମିଳେ । ଯାହା ଅନ୍ୟ ପ୍ରାଚୀନ ପୀଠରୁ ଆନୀତ ହୋଇଥିବାର ଜଣାଯାଏ । ରେଭେନ୍‌ସା

କଲେଜର ପଶ୍ଚିମ ପ୍ରାଚୀର ଓ କଲେଜଛକ ଦକ୍ଷିଣକୁ ଯେଉଁ ସଡ଼କ ଅଛି ତାହା ପୂର୍ବତନ ପିଲଗ୍ରୀମ ରୋଡ଼ର ଅଂଶବିଶେଷ ବୋଲି ବୋଧହୁଏ । ସେହି ରୋଡ଼ ବା ସଡ଼କକୁ ଲଗି ଗୋଟିଏ ଅର୍ବାଚୀନ ତୋରଣ । ତା'ର ମଧ୍ୟଦେଇ ପଶ୍ଚିମକୁ ଗଲେ ଗୋଟିଏ କ୍ଷୁଦ୍ର ମନ୍ଦିର ଦେଖାଯାଏ । ଏହି ମନ୍ଦିର ଅଧିଷ୍ଠାତ୍ରୀଦେବୀ ଲୋକମୁଖରେ 'ଖୋଳ-ପୁଅ ମା' ନାମରେ କଥିତ । ଏହା ପ୍ରଧାନତଃ କଟକର ତେଲୁଗୁ ଅଧିବାସୀଙ୍କ ପୂଜିତ ଠାକୁରାଣୀ । ଏହି ଠାକୁରାଣୀ ପ୍ରାୟ ଶହେବର୍ଷ ପୂର୍ବେ ଓ. ଏମ୍. ପି. ଛକ ନିକଟରୁ ଏଠାକୁ ସ୍ଥାନାନ୍ତରିତ ହୋଇଛନ୍ତି । ଖୋଳ-ପୁଅ-ମା ନାମଟି ତେଲୁଗୁ 'ସାରଲଅମ୍ମା' ଶବ୍ଦର କରପ୍ସନ (Corruption) ହୋଇଥାଇପାରେ । [ସାଲୁ (Collu) Mi. Success, Good result proper treatmant. friendly relation) P. 1245. V A S. Dictionry] ଏହି ଠାକୁରାଣୀଙ୍କ ମନ୍ଦିର ଦ୍ୱାରଦେଶରେ ଦୁଇଟି ପ୍ରସ୍ତର ନିର୍ମିତ ବୌଦ୍ଧମୂର୍ତ୍ତି ସ୍ଥାପନା ହୋଇଛି । ବୌଦ୍ଧମୂର୍ତ୍ତି ଦୁଇଟିରୁ ଗୋଟିଏ ଦଣ୍ଡାୟମାନ । ଗୋଟିଏ ପଦ୍ମାସନରେ ଉପବିଷ୍ଟ । ଦଣ୍ଡାୟମାନ ବୌଦ୍ଧମୂର୍ତ୍ତିଟିର ଶୀର୍ଷ ଉପରେ ବୌଦ୍ଧଧର୍ମ ଧାରଣୀ ଖୋଦିତ ହୋଇଛି ଯଥା—

ଯେ ଧର୍ମା ହେତୁପ୍ରଭବା ହେତୁଂ ତେଷାଂ ତଥାଗତୋ ହ୍ୟବଦତ୍
ତେଷାଞ୍ଚ ଯୋ ନିରୋଧ ଏବଂ ବାଦୀ ମହାଶ୍ରମଣଃ ॥

"ଯେଉଁ ଧର୍ମଗୁଡ଼ିକ କାରଣରୁ ଜାତ ଅର୍ଥାତ୍ ଯେଉଁ ଯେଉଁ ଧର୍ମଗୁଡ଼ିକର କାରଣ ଥାଏ, ତଥାଗତ ଅର୍ଥାତ୍ ବୁଦ୍ଧ ସେଗୁଡ଼ିକର କାରଣ ହିଁ କହିଛନ୍ତି ଏବଂ ସେମାନଙ୍କୁ କିପରି ନିରୁଦ୍ଧ କରାଯାଏ ତାହା ମଧ୍ୟ କହିଛନ୍ତି ।" ଏହା ହେଉଛି ମହାଶ୍ରମଣ ଅର୍ଥାତ୍ ବୁଦ୍ଧଙ୍କ ବଚନ (ଧର୍ମା—ଦ୍ରବ୍ୟସମୂହ ବା ଅବସ୍ଥାସମୂହ things or condition)

ଏହି ପ୍ରସ୍ତର ମୂର୍ତ୍ତିର ପଶ୍ଚାଦଭାଗରେ ପ୍ରାୟ ୯ମ ଶତାବ୍ଦୀର ୨୮ ଧାଡ଼ି ଖୋଦିତ ହୋଇଅଛି । ୯ମ ଶତାବ୍ଦୀର ସୂକ୍ଷ୍ମକୋଣୀ ଲିପିରେ । କିନ୍ତୁ ଚୂନଲେପବଶତଃ ତାହା ପଢ଼ା ହୋଇ ପାରୁନାହିଁ ।

ଉପବିଷ୍ଟ ନା ଆସୀନ ବୌଦ୍ଧମୂର୍ତ୍ତିଟିରେ କେବଳ ଉଲ୍ଲିଖିତ ଧାରଣୀ ଖୋଦିତ ହୋଇଅଛି । ଡଃ ସାହୁଙ୍କ ମତରେ ପ୍ରଥମ ମୂର୍ତ୍ତିଟି ହେଉଛି ଜଟାମୁକୁଟ ଲୋକେଶ୍ୱର ଏବଂ ଦ୍ୱିତୀୟ ମୂର୍ତ୍ତିଟି ହେଉଛି ଧ୍ୟାନୀବୁଦ୍ଧ ଅମିତାଭ । *

---

* ଦଣ୍ଡାୟମାନ ବୌଦ୍ଧମୂର୍ତ୍ତିଟି ହେଉଛି ଅବଲୋକିତେଶ୍ୱର ମୂର୍ତ୍ତି । ପଦ୍ମାସନରେ ଉପବିଷ୍ଟ ମୂର୍ତ୍ତିଟି ହେଉଛି ଧ୍ୟାନୀ ବୁଦ୍ଧମୂର୍ତ୍ତି—ପୃ ୧୮୯ । Buddhism in Orissa Dr. N· K. Sahu, Utkal Univ. Publication. ଚଣ୍ଡୀମୂର୍ତ୍ତି ପାଇଁ ଦେଖ ? Page 220, Dr. Sahu·

ବଣିଆ ସାହ୍ଣ ଦେବପୀଠରେ (ପୂର୍ବଦିଗରୁ ବଣିଆସାହି ପ୍ରବେଶିଲେ, ବାମ ପାହାନ୍ତରେ ଥିବା) ଗୋଟିଏ ବୌଦ୍ଧମୂର୍ତ୍ତି ସୁରକ୍ଷିତ । ତହିଁରେ କେବଳ ଉଲ୍ଲିଖିତ ଧାରଣୀଟି ଖୋଦିତ । ଏହି ମୂର୍ତ୍ତିଟି ହେଉଛି 'ଚୁଣ୍ଡାମୂର୍ତ୍ତି' । ଏହାର ଦକ୍ଷିଣରେ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ।

ଅନ୍ୟ ଗୋଟିଏ ବୌଦ୍ଧମୂର୍ତ୍ତି ତୁଳସୀପୁର ବରଗଛ ତଳେ ସଂରକ୍ଷିତ । ଏହା ଗୋଟିଏ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି । (P. 216 ibid)

ରେଭେନ୍‌ସା କଲେଜ ଅଫିସର ନିକଟବର୍ତ୍ତୀ କୁଳବୃଦ୍ଧ ମଧୁସୂଦନଙ୍କ ପ୍ରତିମୂର୍ତ୍ତିକୁ ଲାଗି ଗୋଟିଏ ଦଣ୍ଡାୟମାନ ପ୍ରାଚୀନ ପ୍ରସ୍ତର ମୂର୍ତ୍ତି ଖୋଦିତ ହୋଇଛି ଏକ ପ୍ରୋଥିତ ସ୍ତମ୍ଭରେ । ଏହି ମୂର୍ତ୍ତିର ଶୀର୍ଷସ୍ଥଳରେ ଗୋଟିଏ କ୍ଷୁଦ୍ର ଶିଳାଲେଖ ତିନିଗୋଟି ପଂକ୍ତିରେ ଖୋଦିତ । ଶିଳାଲେଖଟି ସଂସ୍କୃତ ଭାଷାରେ ଖୋଦିତ । ଲିପିଟି ପ୍ରାୟ ଖ୍ରୀ: ଅ: ନବମ ଶତାବ୍ଦୀର । ଦଣ୍ଡାୟମାନ ମୂର୍ତ୍ତିଟି ଉପରେ ଛତ୍ର । ଏହାର ପାଦଦେଶରେ ଖୋଦିତ ନାଗମୂର୍ତ୍ତି ଉତ୍ତୋଳନ କରନ୍ତି । ଦଣ୍ଡାୟ ମୂର୍ତ୍ତିଟି ବଂଖାଲ ଜାତିର ସୈନିକ ବା ସେନାନାୟକ । ସେ ଶତ୍ରୁର କାଳ ବା ଯମ ସଦୃଶ । ତୁମେ ତାଙ୍କୁ ଭୟ କର ନାହିଁ (ମା ଭୈଷୀ) ବୋଲି ଲିଖିତ (ଉତ୍କୀର୍ଣ୍ଣ) ହୋଇଛି । 'ବଂଖାଲ' ନାମକ ଓଡ଼ିଶାର ଆଦିବାସୀ ସମ୍ପ୍ରଦାୟ ବିଶେଷ । ଏହି ମୂର୍ତ୍ତିଟି କେଉଁଠାରୁ ରେଭେନ୍‌ସା କଲେଜ ପରିସରକୁ ଆସିଛି ତାହା ନିର୍ଦ୍ଦିଷ୍ଟ ଭାବରେ କହିବା କଷ୍ଟକର । ବହୁବର୍ଷ ପୂର୍ବେ ଏ ଶିଳାଲେଖ ସମ୍ବନ୍ଧରେ ମୁଁ ଗୋଟିଏ ପ୍ରବନ୍ଧ ପ୍ରକାଶ କରିଥିଲି ।

ପ୍ରାୟ ଖ୍ରୀ: ଅ: ୧୫୬୮ ରୁ ୧୭୫୧ ଖ୍ରୀ: ଅ: ପର୍ଯ୍ୟନ୍ତ ଓଡ଼ିଶା ଇତିହାସରେ ମୁସଲମାନ ଶାସନ ସମୟ । କଟକ ନିକଟସ୍ଥ ବିଦ୍ୟାଧରପୁରର ବାମ୍ଫିରେ ଦ୍ୱୈଭାଷିକ (ପାର୍ଶି -ଓଡ଼ିଆ) ଶିଳାଲେଖ ଖ୍ରୀ: ଅ: ୧୭୨୪ ଠାରୁ ଖ୍ରୀ: ଅ: ୧୭୩୪ ମଧ୍ୟରେ ଖୋଦିତ । ତଦାନିନ୍ତନ କଟକ ଶାସକ ବକ୍‌ସି ମହମଦ ତକୀ ଏ ବାମ୍ଫି ଖୋଳାଇଥିଲେ -ଓ ପାର୍ଶି-ଓଡ଼ିଆ ଶିଳାଲେଖଟି ଉତ୍କୀର୍ଣ୍ଣ କରାଇଥିଲେ ଓଡ଼ିଆ ଅଂଶ । ଯଥା :

"ଶ୍ରୀ ପୁରୁଷୋତ୍ତମଦେବ ମହାରାଜାଙ୍କର ବିଜ (ଜେ) ଶୁଭରାଜ (ଜ୍ୟେ) ସମସ୍ତ ୧୨ ଅଙ୍କ ସ୍ରାହ୍ଣ ଶୁକଳ (text-ସୁକଳ) ଦୁ ୨ ଆ (=ଦୁଖଆ) ରଥଯାତ୍ରା ଶୁକ୍ରବାରେ ବହୁତ ଲୋକ ଧର୍ମ ନିମିତ୍ତେ କୋଦାଣ୍ଡା ବ ୩୬ ଷୟୁ (text-ବିସୟୁ)ରେ ଷାଦା (=ଦ୍ୟା) ଧରପୁର ଏ ବାପୀ ଗଢ଼ାଇଲେ ବକସୀ ମହମଦ ତକୀ ।" ❋

❋ କେଦାରନାଥଙ୍କ ମତେ ରାମଚନ୍ଦ୍ରଦେବ ଖ୍ରୀ: ଅ: ୧୭୨୭ ରୁ ଖ୍ରୀ: ଅ: ୧୭୩୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମହମଦ ତକୀ ଖ୍ରୀ: ଅ: ୧୭୨୪ ରୁ ଖ୍ରୀ: ଅ: ୧୭୩୪ ପର୍ଯ୍ୟନ୍ତ ଶାସନ କରିଥିଲେ । (ପୃ ୨୩୩ ଓଡ଼ିଶା ଇତିହାସ—ଡଃ ମହତାବ) । ୮ ଡଃ ବଂଶୀଧର ମହାନ୍ତି ମୋ ସଙ୍ଗେ ଯାଇ ଏହି ଶିଳାଲେଖ ପ୍ରତି ମୋର ଦୃଷ୍ଟି ଆକର୍ଷଣ କରିଥିଲେ ।

ପ୍ରାଧ୍ୟାପକ ଡଃ ସତ୍ୟାନନ୍ଦ ମହାନ୍ତି କେତେକବର୍ଷ ପୂର୍ବେ ପ୍ରାପ୍ତ ଦେଉଁପୁରେ ପାର୍ଶ୍ଵ ଗୋଟିଏ ସୁନ୍ଦର ଦଣ୍ଡାୟମାନ ପିତ୍ତଳମୂର୍ତ୍ତି ପ୍ରତି ମୋ ଦୃଷ୍ଟି ଆକର୍ଷଣ କରିଥିଲେ । ମୂର୍ତ୍ତିଟିର ପାଦତଳେ ଗୋଟିଏ କ୍ଷୁଦ୍ର ଲେଖ ପ୍ରାଚୀନ ଲିପିରେ ଖୋଦିତ ହୋଇଥିଲା । ଏ ଲିପିକୁ ସୂକ୍ଷ୍ମକୋଣୀ (acute angled) କୁହାଯାଇପାରେ (୭ମ ଖ୍ରୀ: ଅ:, ୧୧ଖ୍ରୀ: ଅ: ମଧ୍ୟବର୍ତ୍ତୀ) ।

କଟକର କଦମ-ଇ-ରସୁଲରେ କଟକର ପ୍ରଧାନ ମସଲମ କବରଖାନା ବିଦ୍ୟମାନ । ସେଠାରେ (ନବାବ୍) ତକି ଖାଁଙ୍କର କବର ଅଛି । କବରର ଉପରିସ୍ଥ ଲିପିରୁ ଜଣାଯାଏ ୧୭୩୪ ଖ୍ରୀ: ଅ: ରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଓଡ଼ିଶାର ମସ୍‌ଲିମ ଶାସନ କାଳର ବହୁ ଖୋଦିତ ଲେଖ ମସ୍‌ଜିଦ୍‌, କବରଖାନା ଦୁର୍ଗ ଏବଂ ନବାବଙ୍କ ବାସଭବନରେ ଦେଖିବାକୁ ମିଳେ । ବର୍ତ୍ତମାନ ବଜାର ମସ୍‌ଜିଦ, ମସଲମ୍‌ ସୌଧ (ମନୁମେଣ୍ଟ) ମଧ୍ୟରେ ସର୍ବଶ୍ରେଷ୍ଠ ଜମା ମସ୍‌ଜିଦ୍‌ । ଶ୍ରେଷ୍ଠ ମସ୍‌ଲିମ କବର କ୍ଷେତ୍ର କଦମ-ଇ-ରସୁଲ, ବାରବାଟୀ ଦୁର୍ଗ ସାହି ମସ୍‌ଜିଦ, ମସଲମ ଶାସକମାନଙ୍କ ନିବାସସ୍ଥଳ ହୋଇଥିବା ଲାଲ୍‌ବାଗରେ କବରଗୁଡ଼ିକରେ ପାର୍ଶି ଭାଷାରେ ବହୁଲେଖ ଦେଖାଯାଏ । ଓଡ଼ିଆ ବଜାର, ଶେଖ୍‌ ବଜାର, ମହମ୍ମଦିଆ ବଜାର ପ୍ରଭୃତି ସ୍ଥାନରେ ମସ୍‌ଜିଦମାନଙ୍କରେ ମଧ୍ୟ ଖୋଦିତ ଲେଖ ଅନୁସନ୍ଧେୟ । ✲

କଦମ-ଇ-ରସୁଲରେ ମିଳୁଥିବା ଖୋଦିତଲେଖ ମଧ୍ୟରୁ ନର୍ଓ୍ଵାବ ସୁଜାଉଦ୍ଦିନ ଖାଁଙ୍କ ଦ୍ଵାରା ୧୭୧୮ ଖ୍ରୀ: ଅ: ରେ ନିର୍ମିତ ମସ୍‌ଜିଦର ପାର୍ଶି ଲେଖଟିର ଅନୁବାଦ ତଳେ ଦିଆଗଲା—

୧ । ସୁଜା ହେଉଛନ୍ତି ଈଶ୍ୱର ଦୂତଙ୍କ ଦ୍ଵାରା ପ୍ରଚାରିତ ଧର୍ମର ଭକ୍ତ । ସେ ଏହି ସୌଧକୁ ଗଢ଼ିଛନ୍ତି । ଈଶ୍ୱର ଦୂତଙ୍କ ଭକ୍ତମାନଙ୍କ ହୃଦୟ ପରି ଏହା ଉଜ୍ଜଳ ।

୨ । ହେ ଈଶ୍ୱର ! ଏହି ଜଗତରେ ତାଙ୍କର ଶ୍ରୀ ଶାଶ୍ୱତ ହେଉ । ମହମ୍ମଦ, ଆଲି ଏବଂ ବାତୁଲ (ଫତିମା)ଙ୍କ ଆଶୀର୍ବାଦ ସହିତ ।

୩ । ଭକ୍ତମାନଙ୍କ ଅହର୍ନିଶ ପ୍ରାର୍ଥନା ସକାଶେ ଏହି ଧର୍ମକ୍ଷେତ୍ରରେ ସେ ମଧ୍ୟ ଗୋଟିଏ ମସ୍‌ଜିଦ ତୋଳାଇଛନ୍ତି ।

୪ । ସ୍ୱର୍ଗରୁ ମୋ ମନରେ ଗୀତାଂଶ ଅବତରଣ କରୁ ଯାହାକୁ ଉପଯୋଗ କରି ଏହି ମସ୍‌ଜିଦର ଭିତ୍ତି ସ୍ଥାପନରେ ମୁଁ ଅଙ୍କସୂଚକ ଅକ୍ଷରସମୂହ ବ୍ୟବହାର କରି ପାରିବି । ଏଥିଲାଗି ମୋର ଚିନ୍ତା ।

---

✲ ଦ୍ରଷ୍ଟବ୍ୟ Monuments of Muslim rule at Cuttack by Altaf Hussain, ଅଧ୍ୟାପକ ରେଭେନ୍‌ସା କଲେଜ, କଟକ ।
Orissa Historical Re:earch Joranal, Vol. XI 1962, No· 1.

୫ । ଏହି ସମୟରେ 'ହଜରତ୍' ଶବ୍ଦରୁ ଶୀର୍ଷ ବାଦଦେବା ସକାଶେ ମୋଟେ ସ୍ୱର୍ଗ-ବାସିକଲେ ।

୬ । 'କଦମ-ଇ-ରସୁଲ୍' ଈଶ୍ୱର ଦୂତଙ୍କ ପାଦଦେଶରେ ଏହି ମହାନ୍ ମସ୍‌ଜିଦର ଭିତ୍ତି ସ୍ଥାପିତ ହେଲା ୧୧୩୦ ହିଜ୍ରି ( = ୧୭୧୮ ଖ୍ରୀ: ଅ:) ।

ଇସ୍‌ଲାମଶାସନ ପରେ ଓଡ଼ିଶାରେ ମରହଟ୍ଟାଶାସନ ୧୭୫୧ ଠାରୁ ୧୮୦୩ ପର୍ଯ୍ୟନ୍ତ ବସ୍ତୃତ ଥିଲା । ଉକ୍ତସମୟରେ ଦୁଇଗୋଟି ପାର୍ଶୀଖୋଦିତଲେଖ କଦମ୍-ଇ-ରସୁଲରେ ଦେଖିବାକୁ ମିଳେ । ଓ. ଏମ୍. ପି. ଛକ ନିକଟରେ ଗମ୍ବୁଜବିଶିଷ୍ଟ ଏକମହଲା ଘରଗୁଡ଼ିକ ମରହଟ୍ଟା ରାଜତ୍ୱକାଳୀନ ହେଲେ ମଧ୍ୟ ସେଥିରେ କୌଣସି ଶିଳାଲେଖ ଥିବାର ଜଣାଯାଏ ନାହିଁ । ଖ୍ରୀ:ଅ: ୧୮୦୩ ଠାରୁ ୧୯୪୭ ଖ୍ରୀ:ଅ: ପର୍ଯ୍ୟନ୍ତ ଓଡ଼ିଶା ଇଂରେଜ ଶାସନାଧୀନ ଥିଲା । ଏହି ସମୟରେ ଜୋବ୍ରାସ୍ଥିତ ଆନିକଟ ନିର୍ମାଣ, କେନାଲ ଖନନ, କଟକରେ କେତେକ ସରକାରୀ ସୌଧ, ଶାସକଙ୍କ ବାସଭବନ, ଚିକିତ୍ସାଳୟ, ବିଦ୍ୟାମନ୍ଦିର ପ୍ରଭୃତି ନିର୍ମିତ ହୋଇଥିଲେ ମଧ୍ୟ ସ୍ମାରକ ଶିଳାଲେଖ ଦୃଷ୍ଟି ଆକର୍ଷଣ କରେ ନାହିଁ ।

ସଂସ୍କାର ସମୟରେ କଣ୍ଡପୟବର୍ଷଂଲେ ଗଙ୍ଗାମନ୍ଦିର ଉପକଣ୍ଠସ୍ଥ ଜଳାଶୟର ଏକ ସୁନ୍ଦର ଖୋଦିତ ଶିଳାଲେଖ ମିଳିଥିଲା । ଏଥିରେ ଏହି ପୁଷ୍କରିଣୀଟିର ଖନନରେ ଯେଉଁମାନେ ଅର୍ଥଦାନ କରିଥିଲେ ସେମାନଙ୍କ ନାମ ଓ ଅର୍ଥର ପରିମାଣ ଖୋଦିତ ହୋଇଅଛି । ରେଭେନ୍‌ସାକଲେଜ ପୋର୍ଟିକୋ କାନ୍ଥରେ ଖଚିତ ହୋଇଥିବା ସ୍ମାରକ ଶିଳାଫଳକ ଅନ୍ତେବାସୀ ଓ ଅଧ୍ୟାପକବର୍ଗଙ୍କ କେବଳ ଦୃଷ୍ଟି ଆକର୍ଷଣ କରେ ।

କଟକସହରର ମଧ୍ୟଭାଗରେ ଏବଂ ପ୍ରାନ୍ତଭାଗରେ ଥିବା କବର କ୍ଷେତ୍ରସ୍ଥ ବା ଶ୍ମଶାନସ୍ଥ ସ୍ମାରକ ଶିଳାଲେଖ ମଧ୍ୟରେ ଗୋରାକବରସ୍ଥ ଶିଳାଲେଖ ଦର୍ଶକଙ୍କ ଦୃଷ୍ଟି ଓ ହୃଦୟ ଆକର୍ଷଣ କରେ ।

ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର, କୁଳବୃଦ୍ଧ ମଧୁସୂଦନ, ଗଜପତି କୃଷ୍ଣଚନ୍ଦ୍ର, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ଉତ୍କଳମଣି ଗୋପବନ୍ଧୁ ପ୍ରବର ସ୍ୱାଧୀନତାସଂଗ୍ରାମୀ ସୁଭାଷଚନ୍ଦ୍ର, ମାଜିଷ୍ଟ୍ରେଟପଦତ୍ୟାଗୀ ଚଉଧୁରୀ ଗୋପବନ୍ଧୁ, କବିବର ରାଧାନାଥ, ଭକ୍ତକବି ମଧୁସୂଦନ ପ୍ରଭୃତିଙ୍କ ପ୍ରତିମୂର୍ତ୍ତି କଟକର ବିଭିନ୍ନ ସ୍ଥାନ ପରିମଣ୍ଡିତ କରୁଥିଲେ ମଧ୍ୟ ସେମାନଙ୍କ ସମ୍ବନ୍ଧରେ ବସ୍ତୃତ ଶିଳାଲେଖର ଅଭାବ ଦେଖାଯାଏ । ରେଭେନ୍‌ସା କଲେଜ ପୋର୍ଟିକୋରେ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ବଦାନ୍ୟତାର ପ୍ରତୀକ ଗୋଟିଏ ବସ୍ତୃତ ମାର୍ବଲ ଶିଳାଲେଖ ସଂଲଗ୍ନ ହୋଇଥିବାର ନୟନଗୋଚର ହୁଏ ।

କଟକରେ ମହାନଦୀ ଶଯ୍ୟାରେ ଆନିକଟ ନିର୍ମାଣ ସମୟର ଏବଂ ନିର୍ମାତା ଇଞ୍ଜିନିୟରଙ୍କ ଜ୍ଞାନପ୍ରବୃତ୍ତିର ଜ୍ଞାପକ ଶିଳାଲେଖ ଆଉ ଆନିକଟ ଠାରେ ଦେଖାଯାଉ-ନାହିଁ । ଏହି ଆନିକଟ ଓ ଏଥିରୁ ଉଦ୍‌ଭୂତ କେନାଲ ୧୮୬୬ ଖ୍ରୀ:ଅ:ରେ ଇଞ୍ଜିନିୟର ସର୍ ଆର୍ଥର କଟନଙ୍କ ଦ୍ୱାରା ନିର୍ମିତ ଓ ଉଦ୍‌ଘାଟିତ ହୋଇଥିଲା ।

ଏହି ପରିସ୍ଥିତିରେ କଟକର ଗୋରାକବରରେ ସୁରକ୍ଷିତ କେତେକ ସମାଧିଫଳକର ଶିଳାଲେଖ ସ୍ୱର୍ଗତ ବ୍ୟକ୍ତିଙ୍କ ସମ୍ବନ୍ଧରେ ବିବରଣୀ ପ୍ରଦାନ କରେ ।

ପ୍ରାଚୀର ଦେଖ ଏ ପୁଣ୍ୟକ୍ଷେତ୍ରେ ବାଳକ-କିଶୋର-ଯୁବା
ବୃଦ୍ଧ, ବାଳିକା-ତରୁଣୀ-ବୃଦ୍ଧା ସ୍ମାରକ ଫଳକ ଉଭା ॥
ଯେ ଫଳକ ପଢ଼ି ଥରେ
ଅଶ୍ରୁ-ଅର୍ଘ୍ୟ-ଅର୍ପଣେ କ୍ଷଣେ ନମିବା କି ଯୋଡ଼-କରେ ॥ ୧ ॥

ଓଡ଼ିଆ-ବଙ୍ଗଳା-ନାଗରୀ-ଦ୍ରାବିଡ଼-ରୋମକଲିପି-ଫଳକ
ଆରବଦେଶର ଲିପି ବିଭୂଷିତ ସୁସ୍ମୃତି ଦିଶେ ଚୈତ୍ୟକ ।
ତହିଁ ମଧ୍ୟେ ଦିଶେ ଝଳି
ବହୁ ସୁଧୀଙ୍କର ଜୀବନାଲେଖ୍ୟ ପ୍ରାଣ ଯେ ଦେଲେକ ବଳି ॥ ୨ ॥

ବାପୁଜିଙ୍କ ବହୁ ପୂର୍ବରୁ ଯେହୁ ବିଦେଶୀ-ବର୍ଜନ-ଯାଗେ
ଆକର୍ଷିଲ ଦୃଷ୍ଟି, ଲଭିଲ ତୁଷ୍ଟି ମନ୍ତ୍ରୀ-ପଦ-ପରିତ୍ୟାଗେ
ସ୍ୱାଧୀନତା-ଅଗ୍ରଦୂତ
କୁଳବୃଦ୍ଧ ସେହି ମଧୁସୂଦନଙ୍କ କୀର୍ତ୍ତି ଗାଇ ହେବା ପୂତ ॥ ୩ ॥

ଅମୃତମୟ ବାର୍ତ୍ତା ପ୍ରଚାର କରି, ପ୍ରେମ-ଅବତାର
ଯିଶୁ-ଉପଦେଶ ସମୃଦ୍ଧ କଲା ବାଙ୍ମୟ ଓଡ଼ିଶାର
ଅଭିଧାନ ଯା'ର ଖ୍ୟାତ
ମହାଭାଗବତ ସୁଟନ୍ (Sutton) ବିଶପ ତାଙ୍କ ପାଦେ ହେବା ନତ ॥ ୪ ॥

ଜନ୍ମଭୂମିର ରକ୍ଷାଲାଗି ଯେ ଜୀବନକୁ ଜଳାଞ୍ଜଳି
ଦେଇଣ ହାଉଆ-ଜାହାଜ-ଗୁଳିରେ ଯୁଦ୍ଧେ ପଡ଼ିଲେକ ଟଳି
ସମାଧିରେ ଏଠି ରହି
ଅକାଳେ ମରଣମୁଖେ ପଡ଼ି ସେହୁ ହୋଇଛି ମରଣଜୟୀ ॥ ୫ ॥

ଇତ୍ୟାଦି

ସ୍ଥୂଳତଃ ମୁସଲମାନ-ଶାସନକାଳୀନ ଶିଳାଲେଖ କଟକରେ ସଂଖ୍ୟାଭୂୟିଷ୍ଠ ବୋଲି ମନେ ହୁଏ ।



# କଟକ ଜେଲ

ଶ୍ରୀ ପୃଥ୍ୱୀରାଜ ପଟ୍ଟନାୟକ

ଆବର୍ତ୍ତନର ଚଲାପଥରେ ଗୃଲୁ ଗୃଲୁ ମଣିଷ ଦିନେ ଜ୍ଞାନାଲୋକର ସନ୍ଧାନ ପାଇଲା । ସମୟକ୍ରମେ ସେ ପଶୁଠାରୁ ପୃଥକ୍ ରହି, ନିଜକୁ ସଭ୍ୟ ବୋଲି ଘୋଷଣା କଲା । ବୁଝିଲା—ନ୍ୟାୟ କ'ଣ, ଅନ୍ୟାୟ କ'ଣ ? ଶୃଙ୍ଖଳିତ ଜୀବନଯାପନ ପାଇଁ ଗଢ଼ିଲା ବିଭିନ୍ନ ଆଇନ୍‌କାନୁନ । ଦଳ ଭିତରେ ଥିବା ବଳଶାଳୀ ଲୋକ ହେଲା ଦଳପତି ବା ରାଜା । ନିୟମ କାନୁନ୍‌ର ତଦାରଖ କରିବା ପାଇଁ ରଖାହେଲା ପୁଲିସ ବା କଟୁଆଳ । କୌଣସି ବ୍ୟକ୍ତିବିଶେଷ ବା ଦଳ ଏହି ଧରାବନ୍ଧା ନିୟମ କାନୁନ୍‌ର ଖିଲାପ କଲେ ରାଜାର ଆଦେଶରେ କଟୁଆଳ ତାଙ୍କୁ ବାନ୍ଧିଆଣି ଉପସ୍ଥାପନ କରୁଥିଲା—ରାଜାର ଆଗରେ । ରାଜା ତା'ର ବିଚାର କରି ଦେଖୁଥିଲା—ସେ ଦୋଷୀ ବା ନିର୍ଦ୍ଦୋଷ ? ନିର୍ଦ୍ଦୋଷ ହୋଇଥିଲେ ମୁକ୍ତ ଦିଆଯାଉଥିଲା ନହେଲେ ଦୋଷ ଅନୁସାରେ ଦିଆଯାଉଥିଲା ମୃତ୍ୟୁଦଣ୍ଡ ବା ଅର୍ଥଦଣ୍ଡ । କାଳକ୍ରମେ ଅନୁଭବ କରାଗଲା ଯେ କୌଣସି ଲୋକକୁ ନିଜର ପରିବାର ଠାରୁ ବାଛିନ୍ଦ କରି ନିଭୃତ ଘରେ ବନ୍ଦ କରି ରଖିବା ମଧ୍ୟ କିଛି କମ୍ ବଡ଼ ଦଣ୍ଡ ନୁହେଁ । ସେଥିପାଇଁ କୋଳାହଳ ଠାରୁ ଦୂରରେ ସେମାନଙ୍କ ପାଇଁ ଗୃହ ତିଆରି ହେଲା ଏବଂ ଦୋଷୀ ସାବ୍ୟସ୍ତ ଲୋକମାନଙ୍କୁ ସେମାନଙ୍କ ପରିବାର ଓ ସମାଜ ଠାରୁ ବାଛିନ୍ଦକରି ସେଠାରେ ଜଗୁଆଳ ଭିତରେ ରଖାହେଲା । ପରବର୍ତ୍ତୀ କାଳରେ ତାହାର ନାମ ରଖାଗଲା ବନ୍ଦୀଶାଳା ବା ଜେଲ୍ ।

ଆଗ କାଳରେ ରାଜାରାଜୁଡ଼ା ସମୟରେ ଅପରାଧୀ ସଂଖ୍ୟା କମ୍ ଥିବାରୁ ଏବଂ ନ୍ୟାୟାଧୀଶଙ୍କର ମୁଖନିଃସୃତ ଦଣ୍ଡାଦେଶ ଶେଷ ନିଷ୍ପତ୍ତି ହେଉଥିବାରୁ ଜେଲରେ କେବଳ ଦୋଷୀ ସାବ୍ୟସ୍ତ ହୋଇ ସାରିଥିବା ଅପରାଧୀ ମାନେହିଁ ରହୁଥିଲେ । କିନ୍ତୁ ଆଜିର ଗଣତନ୍ତ୍ରବାଦୀ ସମାଜରେ କାହାର ସର୍ବଭୌମ ଅଧିକାର ନଥିବାରୁ ବିଚାର କରାଯାଇ ଶେଷ ନିଷ୍ପତ୍ତି ହେବାକୁ ଅନେକ ସମୟ ଲାଗୁଛି । ତେଣୁ ଆଜିକାଲି ବିଚାରାଧୀନ ବନ୍ଦୀମାନେ ମଧ୍ୟ ଜେଲରେ ରହୁଛନ୍ତି । ହିସାବରୁ ଦେଖାଯାଉଛି ଆଜି କାଲି ଜେଲ୍‌-ମାନଙ୍କରେ ସମାଜଦ୍ରୋହୀ ବନ୍ଦୀଙ୍କ ଅପେକ୍ଷା ରାଜନୈତିକ ବନ୍ଦୀଙ୍କ ସଂଖ୍ୟା ବଢ଼ି ବଢ଼ି

ଗଲାଛି । ଓଡିଶାର ଅନେକ ଗୁଡ଼ାଏ ଜେଲ ମଧ୍ୟରୁ କଟକ ଜେଲ ଗୋଟିଏ ହୋଇଥିଲେ ମଧ୍ୟ ଓଡ଼ିଶାର ଏହା ଏକମାତ୍ର କେନ୍ଦ୍ରୀୟ ଜେଲ । ଆଜିକାଲି "କଟକଜେଲ"ର ରୂପରେଖ ୧୮୦୩ ମସିହାର ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶା ଅଧିକାର କଲପରେ ରୂପ ନେଇଥିଲା, ଇଂରେଜମାନେ ଆଜିକାର କଟକ, ପୁରୀ, ବାଲେଶ୍ୱର ଜିଲ୍ଲାକୁ ଅଧିକାର କରି ଏହାକୁ ବେଙ୍ଗଲ ବିହାର ପ୍ରେସିଡେନସି ସହିତ ସାମିଲ କରି କଲିକତାରେ ଅବସ୍ଥାନ କରୁଥିବା ଜଣେ ଗର୍ଭର୍ଣ୍ଣର ଜେନେରାଲଙ୍କ ଦ୍ୱାରା ଶାସନ କଲେ । ସେତେବେଳେ ଉଚ୍ଚସ୍ତରର ଅପରାଧୀମାନଙ୍କୁ ମିଲେଟାରୀ ହେପାଜତରେ ବାରବାଟି ଦୁର୍ଗ ଭିତରେ ରଖାଯାଇଥିଲା ଏବଂ ସାଧାରଣ କଇଦୀଙ୍କୁ (ଚୋର, ଡକାୟତ ଇତ୍ୟାଦି) କଚେରୀ ଓ ଲାଲବାଗ ଥାନା ମଝିରେ ଛୋଟ ଛୋଟ ଘରେ ରଖାଯାଉଥିଲା ମାତ୍ର ପରେ ଅନୁଭବ କରାଗଲା ଯେ ଅପରାଧୀମାନେ ବିଭିନ୍ନ ଯାଗାରେ ରହୁଥିବାରୁ ଏମାନଙ୍କର ରକ୍ଷଣା ବେକ୍ଷଣ ପାଇଁ ଅଧିକ ଖର୍ଚ୍ଚ ହେଉଛି । ତେଣୁ ସବୁ ଅପରାଧୀଙ୍କୁ ଗୋଟିଏ ଜାଗାରେ ରଖିବା ପାଇଁ ଜେଲର ଶୁଭ ଦିଆଗଲେ ୧୮୬୪ ମସିହାରେ । ହେଲେ ଏହାର କାମ ଶେଷ ହୋଇ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ ହେଲା ୧୮୮୧ ମସିହା ଫେବୃୟାରି ମାସରେ ।

ସେତେବେଳେ କଇଦୀମାନେ ଜଣେ ଜେଲରଙ୍କ ତତ୍ତ୍ୱାବଧାନରେ ରହୁଥିଲେ ଏବଂ ମାଜିଷ୍ଟ୍ରେଟ ଓ ସିଭିଲ ସର୍ଜନ ସପ୍ତାହରେ ଥରଟିଏ ଆସି କଇଦୀମାନଙ୍କର ସ୍ୱାସ୍ଥ୍ୟ ଓ ଭଲ ମନ୍ଦ ବୁଝି ଯାଉଥିଲେ । କଇଦୀମାନେ ସେମାନଙ୍କର ଦୈନନ୍ଦିନ ଖର୍ଚ୍ଚ ପାଇଁ ସ୍ତର ଅନୁଯାୟୀ ୨ ପଇସାରୁ ୩ ପଇସା ନେଇ ଜେଲ ଷ୍ଟୋରରୁ ଜିନିଷ ଖରିଦ କରି ଆଣୁଥିଲେ । ଏହାଛଡ଼ା ପ୍ରତ୍ୟେକ କଇଦିଙ୍କୁ ବର୍ଷକୁ ୨ଟି ଧୋତି, ୧ଟି କମଳ, ୨ଟି ଗୁଦୁରି, ୨ଟି ପଗଡ଼ି ଓ ଗୋଟିଏ ନଡ଼ା ପୁରାଯାଇଥିବା ତକିଆ ଦିଆଯାଉଥିଲା । ଏ ସମସ୍ତର ହାରାହାରି ଦାମ ୩ଟଙ୍କା ପଡ଼ୁଥିଲା ।

ସଜାଭୋଗୁଥିବା କଇଦୀମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । ଯେଉଁ-ମାନେ ବାହାରକୁ ଯାଇ ବାହାରେ ରାସ୍ତାକାମ କରୁଥିଲେ ସେମାନେ ଗୋଡ଼ରେ କଡ଼ା ପିନ୍ଧୁଥିଲେ । ରାତିରେ ସେମାନେ ଶୋଇଲାବେଳେ ସେଇ ଗୋଡ଼ କଡ଼ା ଭିତରେ ଗୋଟିଏ ଜଞ୍ଜିର ପୂରାଇ ସମସ୍ତଙ୍କୁ ଏକାଠି ଗୁନ୍ଥି ଦିଆଯାଉଥିଲା । ସକାଳେ ସେମାନଙ୍କ ଚେନ୍‌କୁ ଖୋଲି ପୁଲିସ ଜଗୁଆଳି ଭିତରେ କାମକୁ ନିଆଯାଉଥିଲା । ଆଉ ଦଳେ ରହୁଥିଲେ ଜେଲ ଭିତରେ କାମ କରିବାକୁ । ସେମାନେ ଜେଲ ଭିତରେ ରହି ଅଖା, ମଶିଣା, ବାସକେଟ ଆଦି ବୁଣୁଥିଲେ । ବାହାରେ ରାସ୍ତା କାମରେ ଲାଗିଥିବା ଲୋକମାନଙ୍କୁ ସେପରି ଖଟାଇବାର ଆଭିମୁଖ୍ୟ ଥିଲା ଦଣ୍ଡଦେବା । କିନ୍ତୁ ଯେଉଁମାନେ ଜେଲ ଭିତରେ ରହି Private Labourer ହିସାବରେ କାମ କରୁଥିଲେ ସେମାନଙ୍କୁ ସେପରି ଖଟାଇବାର ଆଭିମୁଖ୍ୟ ଥିଲା ସେମାନଙ୍କର ଚରିତ୍ରିକ ପରିବର୍ତ୍ତନ ଆଣିବା ।

୧୮୭୫ ମସିହାରେ ପ୍ରଥମଥର ପାଇଁ ଜେଲରେ ତିଆରି ହେଉଥିବା ଜିନିଷପତ୍ର ଯଥା ଗୋଲାପଜଳ, ଜଡ଼ାତେଲ, ଧୋତି, ଗାମୁଛା ଇତ୍ୟାଦି ବିକ୍ରୟ ପାଇଁ ନୋଟିସ

ବୋର୍ଡରେ ବନ୍ଧାଯାଇ ଦିଆ ଯାଉଥିଲା । ସର୍ବସାଧାରଣ କଣ୍ଠୁଥିଲେ ମଧ୍ୟ ୧୮୭୭ ମସିହାରେ ଜେଲରୁ ବାହାରୁଥିବା କାଗଜକୁ ଇଂଲଣ୍ଡ ପଠାଯାଇଥିଲା । ଏହି କାଗଜ ଏତେ ଉନ୍ନତ ଧରଣର ହୋଇଥିଲା ଯେ ସେଠାକାର ଗୋଟିଏ କାଗଜ ଦୋକାନୀ ସମସ୍ତ କାଗଜ କଣି ନେବାପାଇଁ ଅର୍ଡର ଦେଇଥିଲା ।

୨୨ ଜାନୁୟାରୀ ୧୮୫୭ ରେ F. J. Mount ଜେଲ ପରିଦର୍ଶନରେ ଆସିଥିଲେ । ରିପୋର୍ଟ ଅନୁଯାୟୀ କଟକ ଜେଲର ଚତୁର୍ପାର୍ଶ୍ୱରେ ଉଚ୍ଚା ଉଚ୍ଚା ଘର ରହିଥିବାରୁ ଏଠାରେ ମୁକ୍ତ ବାୟୁ ଚଳାଚଳ କରିବାରେ ବହୁତ ଅସୁବିଧା ହେଉଥିଲା । ସେତେବେଳେ ଜେଲରେ ଥିଲା ୧୩ଟି ଓ୍ୱାର୍ଡ ଓ କଇଦୀ ଥିଲେ ୩୩୪ । ମହିଳା ଓ୍ୱାର୍ଡ ନଥିଲା । ମଝିରେ ଚାରି ଚତୁଃପାର୍ଶ୍ୱରେ ଥିଲା ପୁରୁଷମାନଙ୍କର ଓ୍ୱାର୍ଡ । ୩୩୪ ଜଣ କଇଦୀମାନଙ୍କ ଭିତରୁ ସଶ୍ରମ କାରାଦଣ୍ଡ ପାଇଥିବା କଇଦୀ ଥିଲେ ୨୯୩ ଜଣ, ଅଶ୍ରମ କାରାଦଣ୍ଡ ପାଇଥିବା ବନ୍ଦୀ ଥିଲେ ୧୭ ଜଣ, ବିଚାରାଧୀନ ୨୦ ଜଣ ଏବଂ ଶାରୀରିକ ଅକ୍ଷମ ୪ ଜଣ ଓ ରାଜନୈତିକ ବନ୍ଦୀ ଥିଲେ ୧ ଜଣ । ଏହି ୩୩୫ ବନ୍ଦୀମାନଙ୍କ ଭିତରୁ ୭୦ ଜଣ ପାଣ, ୭୮ ଜଣ ଚଷା, ୪୯ ଜଣ କଣ୍ଡରା, ୨୭ ଜଣ ମସ୍ତା, ୧୭ ଜଣ ବ୍ରାହ୍ମଣ, ୧୭ ଜଣ ମୁସଲମାନ, ୧୩ ଜଣ ମହାନ୍ତି, ୧୪ ଜଣ ସଉରା ଓ ୧୦ ଜଣ ମେହେନ୍ତର ଥିଲେ ।

ସଶ୍ରମ ଦଣ୍ଡ ପାଇଥିବା ୨୯୩ ଜଣ କଇଦୀମାନେ ଜେଲରେ ଥିବା ୧୩ଟି ଓ୍ୱାର୍ଡରୁ ୧ରୁ୭ ଓ ୧୦ ନମ୍ବର ଓ୍ୱାର୍ଡରେ ରହୁଥିଲେ । ସେମାନଙ୍କ ମଧ୍ୟରୁ ୧୪୭ ଜଣଙ୍କୁ ରାସ୍ତା ତିଆରି କାମରେ, ୨୨ ଜଣଙ୍କୁ ଜେଲ ସଫା କରିବା କାମରେ, ୩୩ ଜଣଙ୍କୁ କାଗଜ ତିଆରି କାମରେ, ୩୨ ଜଣଙ୍କୁ ସୂତାକଟା କାମରେ, ୨୦ ଜଣଙ୍କୁ ହସପିଟାଲ କାମରେ, ୯ ଜଣଙ୍କୁ ଲୁଗାବୁଣା କାମରେ, ୨ ଜଣଙ୍କୁ ଲୁଗାସଫା କାମରେ, ୨ ଜଣଙ୍କୁ ବାଳକଟା କାମରେ, ୪ ଜଣଙ୍କୁ ପାଇଖାନା ସଫା କାମରେ, ୧୦ ଜଣଙ୍କୁ ଲାଇନ ତିଆରି କରିବାରେ ନିଯୁକ୍ତ କରାଯାଇଥିବା ବେଳେ ୩ ଜଣଙ୍କୁ ସ୍ୱାସ୍ଥ୍ୟଗତ କାରଣରୁ କାମରୁ ବାଦ ଦିଆଯାଇଥିଲା । ଏଇଠାରେ ସେତେବେଳର I. G. ଙ୍କର ମନ୍ତବ୍ୟ ଉଲ୍ଲେଖନୀୟ । ସେ ମନ୍ତବ୍ୟ ଦେଇଥିଲେ ଯେ ଜେଲବାହାରେ ରାସ୍ତା ତିଆରି କାମରେ ବେଶିଭାଗ ଲୋକ କାମ କରୁଛନ୍ତି । ରାସ୍ତା ତିଆରିରେ ଏତେ ଲୋକଙ୍କୁ ନ ଲଗାଇ ବେଶିଭାଗ ବରଂ ଜେଲ ଭିତରେ ରହି ଲାଭଦାୟକ ଜିନିଷମାନ ଉତ୍ପାଦନ କରିବା ଉଚିତ୍ । ଯଦି କୌଣସି କାମରେ ଲାଭ ନ ହେଉଛି ତାହାହେଲେ ଜେଲରେ ବର୍ଷକ ପାଇଁ ଦରକାର ହେଉଥିବା ଲୁଗାପଟା ବୁଣିବା ଉଚିତ୍ । ଆହୁରି ମଧ୍ୟ ଜେଲରେ ଜାଗାର ଅଭାବପାଇଁ ଦୁଃଖ କରି କହିଥିଲେ ଜାଗା ଅଭାବରୁ ଏଠାରେ ବଗିଚା କାମ ହୋଇ ପାରୁନାହିଁ ଯାହା ଫଳରେ ସମ୍ବଲପୁର ଅଞ୍ଚଳରୁ ଆସିଥିବା ଜଙ୍ଗଲି କଇଦୀମାନେ ଜେଲ ଭିତରେ ହେଉଥିବା କାମରେ ଲିପ୍ତ ରହି ଅଧିକରେ ମରିଯାଉଛନ୍ତି ।

ଜେଲର ଅନ୍ୟ ଓ୍ୱାର୍ଡ ମାନଙ୍କ ମଧ୍ୟରୁ ଅଶ୍ରମ କାରାଦଣ୍ଡ ଭୋଗୁଥିବା ୧୭ ଜଣ ରହୁଥିଲେ ୮ ନମ୍ବର ଓ୍ୱାର୍ଡରେ । ୭ ନମ୍ବର ଓ୍ୱାର୍ଡରେ ରହୁଥିଲେ ବିଚାରାଧୀନ ଥିବା

୨୦ ଜଣ । ୧୧ ନମ୍ବର ଓ୍ୱାର୍ଡ଼ରେ ରହୁଥିଲେ ମହିଳା କଇଦୀମାନେ । ୧୨ ନମ୍ବର ଓ୍ୱାର୍ଡ଼ ଉଦ୍ଦିଷ୍ଟ ଥିଲା ରାଜକୀୟ କଇଦୀମାନଙ୍କ ପାଇଁ । ଏଠି ଉଲ୍ଲେଖନୀୟ ଯେ ସେତେବେଳେ ବାଙ୍କି ରାଜା ବନ୍ଦୀ ସ୍ୱଭାବରେ ଏହି ଓ୍ୱାର୍ଡ଼ରେ ରହୁଥିଲେ । ତାଙ୍କର ସେବା କାର୍ଯ୍ୟ ପାଇଁ ତାଙ୍କ ନଜର ଅନେକ ଲୋକ ନିଯୁକ୍ତ ଥିଲେ । ତେଣୁ ତାଙ୍କୁ ଆଲିପୁର ଜେଲକୁ ପଠାଇବା ପାଇଁ ସୁପାରଶ କରାଯାଇଥିଲା । ୯ ନମ୍ବର ଓ୍ୱାର୍ଡ଼ ଥିଲା କଣ୍ଡେମଣ୍ଡ ସେଲ ଓ ୧୩ ନମ୍ବର ଓ୍ୱାର୍ଡ଼ଟି ଡାକ୍ତରଖାନା ରୂପେ ବ୍ୟବହାର ହେଉଥିଲା ।

ସେତେବେଳେ ଜେଲର କାର୍ଯ୍ୟକର୍ତ୍ତାମାନେ ବନ୍ଦୀମାନଙ୍କ ସ୍ୱାସ୍ଥ୍ୟପ୍ରତି ବିଶେଷ ନଜର ଦେଉନଥିଲେ । ଖାଦ୍ୟର ମାନ ମଧ୍ୟ ବହୁତ ନିମ୍ନଧରଣର ଥିଲା । ତେଣୁ ବନ୍ଦୀମାନେ ପ୍ରାୟତଃ ଟି. ବି. ଓ କଲେରା ପ୍ରଭୃତି ସଂକ୍ରାମକ ରୋଗଦ୍ୱାରା ଆକ୍ରାନ୍ତ ହୋଇ ମରୁଥିଲେ । ୧୮୭୦ ମସିହାରେ ଏପରି ଅବସ୍ଥା ହୋଇଥିଲା ଯେ ୧୩ ରୁ ୧୪ ଜଣ କଇଦୀ କଲେରାରେ ଆକ୍ରାନ୍ତ ହୋଇ ରହିଲେ । ସଙ୍ଗେ ସଙ୍ଗେ ସେମାନଙ୍କୁ ଗୁଡ଼ିଆଗଞ୍ଜ ଅଞ୍ଚଳରେ ତମ୍ବୁ ପକାଇ ଅଲଗା ଅଲଗା ରଖାଗଲା, ପରେ ଯାଇ କଲେରା ଆୟତ୍ତକୁ ଆସିଲା ।

୧୯୧୨ ମସିହା ପର୍ଯ୍ୟନ୍ତ କଟକ, ପୁରୀ, ବାଲେଶ୍ୱର ବା ଓଡ଼ିଶା, ବେଙ୍ଗଲ, ବିହାର ଗୋଟିଏ ପ୍ରଦେଶ ହୋଇ ରହିଥିଲା । ୧୯୧୬ ମସିହାରେ ବିହାର, ଓଡ଼ିଶା ଗୋଟିଏ ପ୍ରଦେଶ ହୋଇ ରହିଲା, ବେଙ୍ଗଲ ଅଲଗା ପ୍ରଦେଶ ହୋଇ ରହିଲା, ହେଲେ କଇଦୀ ମାନଙ୍କର ଅବସ୍ଥାରେ କିଛି ପରିବର୍ତ୍ତନ ହେଲାନାହିଁ ।

୧୯୩୬ ମସିହା ଅପ୍ରେଲ ୧ ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ରାଜ୍ୟରୂପେ ପରି-ଗଣିତ ହେଲା । ସେତେବେଳେ କଟକଜେଲକୁ କେନ୍ଦ୍ରଜେଲ ଆଖ୍ୟା ଦିଆଗଲା । ଏଠି ଯାବଜ୍ଜୀବନ ଜେଲ ଦଣ୍ଡ ଭୋଗୁଥିବା କଇଦୀମାନେ ଓ ବେଶି ବର୍ଷ ଦଣ୍ଡ ପାଇଥିବା କଇଦୀମାନେ ରହିଲେ । ସେତେବେଳର କଂଗ୍ରେସ ସରକାର ବନ୍ଦୀମାନଙ୍କର ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଲେ । ସେମାନଙ୍କର ନୈତିକ ପରିବର୍ତ୍ତନ ପାଇଁ ନୀତିଶିକ୍ଷା ଦିଆଗଲା । ଖାଦ୍ୟ ପେୟର ମାନ ଉନ୍ନତତର ହେଲା ଏବଂ ସବୁଠାରୁ କଷ୍ଟଦାୟକ ଘଣାକୁ ଉଠାଇ ଦିଆଗଲା ।

ସହରର ଅଶାନ୍ତ, କୋଳାହଳମୟ ବାତାବରଣଠାରୁ ଦୂରେଇ ରଖିବା ପାଇଁ ଏହି କଟକ ଜେଲକୁ ବର୍ତ୍ତମାନ ଚୌଦ୍ୱାରକୁ ସ୍ଥାନାନ୍ତରିତ କରାଯାଇଛି । ବର୍ତ୍ତମାନ କଟକ ମଧ୍ୟସ୍ଥ ସେହି ପୁରୁଣା ଜେଲକୁ ଭାଙ୍ଗି ସେଠାରେ ଗୋଟିଏ ଆଧୁନିକ ମାର୍କେଟ କମ୍ପଲେକ୍ସ ତିଆରି କରିବାର ଯୋଜନା ରହିଛି ।

●

# ଇଂରାଜୀ ଭାଷା ଓ ସାହିତ୍ୟକୁ କଟକର ଅବଦାନ

ଡକ୍ଟର ବିଜୟାନନ୍ଦ ସିଂହ

ଓଡ଼ିଶାର ଏକ ପ୍ରାଚୀନ ନଗର କଟକ । କଟକର ସଂସ୍କୃତି, ଐତିହ୍ୟ ସମଗ୍ର ଉତ୍କଳର ସାମାଜିକ, ସାଂସ୍କୃତିକ ପରମ୍ପରାକୁ ସମୃଦ୍ଧ କରିଛି । ସାମ୍ପ୍ରତିକ କାଳରେ କଟକ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ ଏକ ଅଗ୍ରଗଣ୍ୟ ସହର ଭାବରେ ଖ୍ୟାତି ଅର୍ଜନ କରିଛି । କଟକ ସହରର ଅବଦାନ ଧର୍ମ, ସଂସ୍କୃତି, ରାଜନୀତି, ସମାଜନୀତି, ଭାଷା ଓ ସାହିତ୍ୟ ପାଇଁ ଅବିସ୍ମରଣୀୟ । ପୃଥିବୀର ବହୁ ମହାନ୍ ସଭ୍ୟତାର ସୃଷ୍ଟି ନଦୀ ଅବବାହିକାରେ—ଠିକ୍ ସେହିପରି କଟକ ସହରର ସଭ୍ୟତା ସେହି ନଦୀ ଅବବାହିକାରୁ ସୃଷ୍ଟି ହୋଇଛି ।

ଇଂରାଜୀଭାଷା, ସାହିତ୍ୟ ପୃଥିବୀର ଶ୍ରେଷ୍ଠ ଭାଷା ଓ ସାହିତ୍ୟ । କେବଳ ଓଡ଼ିଆ ଭାଷା ଓ ସାହିତ୍ୟ କାହିଁକି ବହୁ ଭାଷା ଏପରିକି ଆନ୍ତର୍ଜାତିକ ଭାଷା ଇଂରାଜୀ ସାହିତ୍ୟକୁ କଟକର ଦାନ ମଧ୍ୟ ଅତୁଳନୀୟ । କଟକର ଅବଦାନ ଆଜି ସବୁଦିଗକୁ, ସବୁ ବିଭବକୁ ସ୍ପର୍ଶ କରିଛି । ଜାତୀୟ ଅଗ୍ରଗତି, ଆନ୍ତର୍ଜାତିକ ସମ୍ପର୍କ ପ୍ରତିଷ୍ଠା କ୍ଷେତ୍ରରେ ଇଂରାଜୀଭାଷାର ଭୂମିକା ଏକାନ୍ତ ଅପରିହାର୍ଯ୍ୟ । ଏହି ଦୃଷ୍ଟିକୋଣରୁ କଟକ ଇଂରାଜୀ ଭାଷା ମାଧ୍ୟମରେ ଆନ୍ତର୍ଜାତିକ ସମ୍ପର୍କ ସ୍ଥାପନ କରିପାରିଛି । ଭାଷା ଭାବର ବାହକ । ବହୁ ବରପୁତ୍ରଙ୍କ ସାଧନା ତଥା ଜନ୍ମ, କର୍ମଭୂମି କଟକ ।

ଏହି କଟକ ମାଟିର କୃତୀ ସନ୍ତାନମାନଙ୍କ ଉଦ୍ୟମଦ୍ୱାରା ଇଂରାଜୀଭାଷା, ସାହିତ୍ୟ ବିକଶିତ ହୋଇଛି । ଏହି ପ୍ରସଙ୍ଗ ଆଲୋଚନା କଲା ସମୟରେ ଇଂରେଜମାନଙ୍କ ଓଡ଼ିଶା ଆଗମନ ଏବଂ ଓଡ଼ିଶା ଇତିହାସ ଆମ ସମ୍ମୁଖକୁ ଆସେ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଏହି ବର୍ଷ ମଧ୍ୟ ଇଂରେଜମାନଙ୍କ ଦ୍ୱାରା କଟକ ଅଧିକୃତ ହେଲା । କଟକ ତତ୍କାଳୀନ ଉତ୍କଳର ପ୍ରାଣକେନ୍ଦ୍ର ଥିଲା ।

ତେଣୁ ଇଂରେଜମାନଙ୍କ ପ୍ରଥମ ଦୃଷ୍ଟି ଆକର୍ଷଣ କରିଥିଲା କଟକ । କଟକରେ ଇଂରେଜ ସାହେବମାନେ ରହିବା ଏବଂ ସେମାନଙ୍କଦ୍ୱାରା ଶାସନ ବ୍ୟବସ୍ଥା ନିୟନ୍ତ୍ରିତ

ହେବା ଫଳରେ ଇଂରେଜୀଭାଷାର ପ୍ରଭାବ ଦେଶ୍ ଅନୁଭୂତ ହେଲା । ମିଶନାରୀମାନଙ୍କର କାର୍ଯ୍ୟାବଳୀ, ସେମାନଙ୍କର ଚଳଚଳନର ଧାରା ଇଂରେଜ ଭାଷାର ପ୍ରସାରରେ ସାହାଯ୍ୟ କଲା । ଇଂରେଜମାନେ ଶିକ୍ଷା ପ୍ରତିଷ୍ଠାନ କରିବାକୁ ଯାଇ ଇଂରେଜ ଶିକ୍ଷା ପ୍ରଦାନ କରିବା ବ୍ୟବସ୍ଥା କରିଦେଇ ଥିଲେ । ୧୮୨୩ ରେ ବାପ୍‌ଟିଷ୍ଟ ପାଦ୍ରୀମାନେ କଟକରେ ଗୋଟିଏ ଆଙ୍ଗ୍ଲୋଭର୍ଣ୍ଣାକୁଲର ସ୍କୁଲ ବସାଇଲେ ।

୧୮୪୧ରେ କଟକରେ ଥିବା ଗୋଟିଏ ଇଂଲିଶ ସ୍କୁଲକୁ ସରକାର ହାତକୁ ନେଲେ ଏବଂ ତାହା ୧୮୫୧ ରେ କଟକ ଜିଲ୍ଲାସ୍କୁଲ ନାମରେ ନାମିତ ହେଲା । ଶିକ୍ଷାର ବିକାଶ ପାଇଁ ଇଂରେଜ ସରକାର କଟକ ଜିଲ୍ଲା ସ୍କୁଲରେ ୧୮୬୮ରେ ଦୁଇଟି କଲେଜ ଶ୍ରେଣୀ ଖୋଲି ୧୮୭୮ରେ ତାହା ସମ୍ପୂର୍ଣ୍ଣ କଲେ । ରେଭେନ୍‌ସା କଲେଜ ଏହି କ୍ଷେତ୍ରରେ ଏକ ଉଲ୍ଲେଖନୀୟ ପଦକ୍ଷେପ । ୧୮୮୧ ସାଲରେ କାଥୋଲିକ ମିଶନ ତରଫରୁ କଟକରେ ଗୋଟିଏ କନ୍‌ଭେଣ୍ଟ ସ୍କୁଲ ଖୋଲିଲା । ଏହାର କିଛିକାଳ ପରେ ବାପ୍‌ଟିଷ୍ଟ ମିଶନ ପ୍ରୋଟେଷ୍ଟାଣ୍ଟ ୟୁରୋପୀୟ ସ୍କୁଲ ଏବଂ ଷ୍ଟୁଆର୍ଟ ସ୍କୁଲ ସ୍ଥାପିତ ହେଲା । ପରବର୍ତ୍ତୀ କାଳରେ ଖ୍ରୀଷ୍ଟ କଲିଜିଏଟ୍ ସ୍କୁଲ ବକ୍‌ଲେ ବାଳିକା ହାଇସ୍କୁଲ, ଥମ୍‌ସନ୍ ସିଟିସ୍କୁଲ, ମିଶନ ଏଲ. ପି. ସ୍କୁଲ, ସନାତନଲକ୍ଷ୍ମୀ ବାଳିକା ହାଇସ୍କୁଲ, ଖ୍ରୀଷ୍ଟ କଲେଜ, ଷ୍ଟୁଆର୍ଟ କଲେଜ, ରେଭେନ୍‌ସା ବାଳିକାସ୍କୁଲ, କେମ୍ବ୍ରିଜ୍, କନ୍‌ଭେଣ୍ଟ ସ୍କୁଲ ଆଦି କଟକ ସହରରେ ପ୍ରତିଷ୍ଠିତ ହେବା ଫଳରେ ଇଂରେଜୀ ଭାଷା ଓ ସାହିତ୍ୟର ଅଗ୍ରଗତିରେ ସହାୟକ ହେଲା ।

କଟକର ଇଂରାଜୀ ଭାଷା ଓ ସାହିତ୍ୟକୁ ଅବଦାନ ସମ୍ପର୍କରେ ଆଲୋଚନାକୁ ଚାରୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ପ୍ରଥମତଃ କଟକକୁ ଜନ୍ମ ଓ କର୍ମଭୂମିଭାବରେ ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କ ଉଦ୍ୟମ ଫଳରେ ଇଂରାଜୀ ଭାଷା ସାହିତ୍ୟ ଋଦ୍ଧିମନ୍ତ ହୋଇଛି । ଦ୍ୱିତୀୟତଃ କଟକରେ ଜନ୍ମଲାଭ କରିଥିବା କିମ୍ବା ଏକଦା କର୍ମସ୍ଥଳୀ ଭାବେ ଗ୍ରହଣ କରିଥିବା ବ୍ୟକ୍ତି କଟକଠାରୁ ବହୁଦୂରରେ ରହି ମଧ୍ୟ ଇଂରାଜୀ ସାହିତ୍ୟକୁ ମହିମାମଣ୍ଡିତ କରିଛନ୍ତି । ତୃତୀୟତଃ କଟକର ପ୍ରତିଷ୍ଠିତ ପ୍ରକାଶକମାନଙ୍କ ଉଦ୍ୟମଦ୍ୱାରା ଇଂରାଜୀଭାଷା ସର୍ବାଙ୍ଗସୁନ୍ଦର ହୋଇଛି । ଚତୁର୍ଥତଃ କଟକ ମାଟିରୁ ବହୁ ଇଂରାଜୀ ପତ୍ର/ପତ୍ରିକା, ଦୈନିକ ସମ୍ବାଦପତ୍ର ଜନ୍ମଲାଭ କରି ଏହି ସାହିତ୍ୟର ଅଗ୍ରଗତିକୁ ତ୍ୱରାନ୍ୱିତ କରିଛି ।

## କଟକ ନଗରର ସ୍ରଷ୍ଟାଗଣ—

କଟକ ମାଟିରେ ଜନ୍ମ ହୋଇଥିବା ଏବଂ କେହି କେହି ପରବର୍ତ୍ତୀ ପର୍ଯ୍ୟାୟରେ କଟକକୁ ନିଜ ସାଧନାର କେନ୍ଦ୍ର ବା କର୍ମଭୂମି ରୂପେ ଗ୍ରହଣ କରିଥିବା ସ୍ରଷ୍ଟାଙ୍କ ସୃଷ୍ଟିରେ ଇଂରାଜୀ ସାହିତ୍ୟ ପୁଷ୍କଳ ହୋଇଛି । କେହି କେହି ସ୍ରଷ୍ଟା କଟକକୁ ଏକଦା କର୍ମସ୍ଥଳୀ ଭାବେ ଗ୍ରହଣ କରି ଜୀବନର ବହୁ ସମୟ କଟାଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ କଟକଠାରୁ ବହୁଦୂରରେ ରହି ଇଂରାଜୀ ସାହିତ୍ୟ ଅଭିବୃଦ୍ଧିରେ ସହାୟକ ହୋଇଛନ୍ତି ।

ସେମାନେ ଯଦିଓ କେତେକର ପାଶ୍ଚାତ୍ୟବାନ ପରିବେଶରେ ଜୀବନ ବିତାଉଛନ୍ତି ତଥାପି ସେମାନଙ୍କ ହୃଦୟ ପ୍ରସାରିତ ହୋଇଛି ବିଶ୍ୱ ଆଡ଼କୁ ।

ଏହି ମାଟିର ବାର୍ତ୍ତାକୁ ବିଶ୍ୱଦରବାରରେ ପହଞ୍ଚାଇବା ପାଇଁ ସେମାନେ ଗଭୀର ପ୍ରୟାସ କରନ୍ତି—ସେଥିପାଇଁ ସେମାନେ ହୃଦୟର କଥାକୁ ପ୍ରକାଶ କରନ୍ତି ଇଂରାଜୀ ଭାଷା ମାଧ୍ୟମରେ ।

ସ୍ୱାଧୀନତା ସଂଗ୍ରାମର ମହାନ୍ ଯୋଦ୍ଧା, ରାଷ୍ଟ୍ରନାୟକ, ପ୍ରବୀଣ ସାହିତ୍ୟିକ, ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ରାଜନୀତିକ ଜୀବନର ବହୁ ଝଡ଼ ଝଞ୍ଜା ସତ୍ତ୍ୱେ ସାହିତ୍ୟ ସୃଷ୍ଟି ପାଇଁ ତାଙ୍କ ହୃଦୟ ଉଦ୍‌ବେଳିତ ହୋଇଛି । ଓଡ଼ିଆ ସାହିତ୍ୟରେ ସେ ଐତିହାସିକ ସଫଳତା ଲାଭ କରିଥିଲେ ମଧ୍ୟ ତାଙ୍କ ରଚିତ "ହିଷ୍ଟ୍ରି ଅଫ୍ ଓଡ଼ିଶା" "ଦି ବିଗିନିଙ୍ଗ୍ ଅଫ୍ ଦି ଏଣ୍ଡ" "ଗାନ୍ଧି ଦି ପଲିଟିକାଲ ଲିଡ଼ର" "ଭ୍ରାଇଲ ସର୍ଭିଙ୍ଗ୍ ମାଇଁ ଲେମନ" ପୁସ୍ତକ ଇଂରାଜୀ ସାହିତ୍ୟକୁ ସମୃଦ୍ଧିଶାଳୀ କରାଇଛି ।

ଓଡ଼ିଆ ସାହିତ୍ୟରେ ଡକ୍ଟର ମାୟାଧର ମାନସିଂହଙ୍କ ପ୍ରତିଷ୍ଠା ଓ ପ୍ରଭାବ ସ୍ୱତନ୍ତ୍ର । ଜଣେ ରୋମାଣ୍ଟିକ କବିଭାବରେ ସେ ମଧ୍ୟ ସୁପରିଚିତ । କେବଳ କବି ଭାବରେ ନୁହେଁ, ଜଣେ ବିଶିଷ୍ଟ ନାଟ୍ୟକାର, ସମାଲୋଚକ, ଔପନ୍ୟାସିକ, ଅନୁବାଦକ ଏବଂ ବିଶିଷ୍ଟ ଇଂରାଜୀ ସାହିତ୍ୟର ଲେଖକ ଭାବରେ ତାଙ୍କର ପ୍ରସିଦ୍ଧି ସୁବିଦିତ । ଡକ୍ଟର ମାନସିଂହ ସାହିତ୍ୟର ଇତିହାସକୁ ଇଂରାଜୀ ଭାଷାରେ "ହିଷ୍ଟ୍ରି ଅଫ୍ ଓଡ଼ିଆ ଲିଟରେଚର" ନାମରେ ରଚନା କରି ଶ୍ରଦ୍ଧାଭାଜନ ହୋଇଛନ୍ତି । ଇଂରାଜୀ ଭାଷାରେ ତାଙ୍କର ଅନ୍ୟ ସୃଷ୍ଟିଗୁଡ଼ିକ ହେଲା—"ଦି ସାଗା ଅଫ୍ ଦି ଲ୍ୟାଣ୍ଡ ଅଫ୍ ଜଗନ୍ନାଥ", "କାଳିଦାସ ଏଣ୍ଡ ସେକ୍‌ସପିୟର "ରିପ୍‌ଲସ୍ ଅଫ୍ ଦି ମହାନଦୀ ସିଟିଜେନ ଏଜୁକେଶନ", "ଡ୍ରିମ୍‌ସ୍ ଇନ୍ ଏଜୁକେଶନ" "ଫକୀର ମୋହନ ସେନାପତି, ମେକର ଅଫ୍ ଇଣ୍ଡିଆନ ଲିଟେରେଚର ।"

ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଜୀବନର ଏକପ୍ରିୟ ସ୍ଥାନ କଟକ । ଡକ୍ଟର ଦାଶ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ କବି, ଗବେଷକ, ସମାଲୋଚକ ରୂପେ ପରିଚିତ । ସେହିପରି ଇଂରାଜୀ ସାହିତ୍ୟର ଜଣେ ସଫଳ ସ୍ରଷ୍ଟା । "ଏ ଷ୍ଟଡ଼ି ଅଫ୍ ଓରିଶାନ ଫୋକ୍ ଲୋର୍" ଏବଂ "ଫୋକ୍ ଲୋର୍ ଅଫ୍ ଓଡ଼ିଶା" ପୁସ୍ତକ ଡକ୍ଟର ଦାଶଙ୍କ କୃତିତ୍ୱର ପରିଚୟ ପ୍ରଦାନ କରେ ।

ପ୍ରଗତିବାଦୀ କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ ଯୁଗଚେତନାର ଏକ ବଳିଷ୍ଠ ବାର୍ତ୍ତାବହ । ଡକ୍ଟର ରାଉତରାୟ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥିତଯଶା କବି ଓ ସ୍ରଷ୍ଟା । ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟଙ୍କ ଇଂରାଜୀ ସାହିତ୍ୟକୁ ଦାନ ଅତୁଳନୀୟ । ଅତ୍ୟାଚାର, ଶୋଷଣ, ପରାଧୀନତା ବିରୋଧରେ ଢେଙ୍କାନାଳ ଜିଲ୍ଲାର ଗୋଟିଏ ନାଉରିଆ ବାଳକ ଯେଉଁ ପ୍ରତିବାଦ ସ୍ୱର ଉତ୍ତୋଳନ କରି ଶହୀଦ ହୋଇଛି—ସେହି ଭାବବସ୍ତୁକୁ

ମାଧ୍ୟମ କରି 'ବାଜଗଉଡ଼' କବିତା ଶ୍ରୀଯୁକ୍ତ ରାଉତରାୟ ରଚନା କରିଛନ୍ତି । ଯାହାଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ "ଦି ବୋଟ୍ ମ୍ୟାନ୍ ଏଣ୍ଡ ଅଦର ପୋଏମ୍ସ" ନାମରେ ପ୍ରକାଶିତ ହୋଇଛି । ସେହିପରି ସଚ୍ଚି ରାଉତରାୟଙ୍କ ପ୍ରଗତିବାଦୀ ଗଳ୍ପ ସମୂହକୁ କେନ୍ଦ୍ର କରି "ସର୍ଟ୍ ଷ୍ଟୋରି ଅଫ୍ ସଚ୍ଚି ରାଉତରାୟ" ପ୍ରକାଶିତ ହୋଇଛି ।

ଓଡ଼ିଶାର ବରପୁତ୍ର ଶ୍ରୀଯୁକ୍ତ ମନୋଜ ଦାସ ଇଂରାଜୀ ସାହିତ୍ୟରେ ଲେଖନୀ ଚାଳନା କରି ଭାରତ ଏବଂ ଭାରତ ବାହାରେ ଓ ଦେଶବିଦେଶରେ ବେଶ ଖ୍ୟାତି ଅର୍ଜନ କରିଛନ୍ତି । 'ଦି ହେରିଟେଜ' ନାମକ ସମ୍ଭ୍ରାନ୍ତ ଇଂରାଜୀ ପତ୍ରିକା ସମ୍ପାଦନା କରି ନିଜ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ପରିଚୟ ସେ ପ୍ରଦାନ କରିଛନ୍ତି । "ମ୍ୟାନ୍ ହୁ ଲିଫ୍ଟେଡ୍ ଦି ମାଉଣ୍ଟେନ" ଏବଂ "ଫେବ୍ଲସ୍ ଏଣ୍ଡ୍ ଫାଣ୍ଟାସାଇଜ ଫର ଆଡଲ୍ଟ୍ସ" ପୁସ୍ତକ ପ୍ରଭୃତି ମନୋଜ ଦାସଙ୍କ ପ୍ରତିଭାର ପରିଚୟ ଦିଏ ।

ସୁରେନ୍ଦ୍ର ମହାନ୍ତି ଜଣେ ପ୍ରଖ୍ୟାତ ଗାଳ୍ପିକ, ଔପନ୍ୟାସିକ, ସମାଲୋଚକ ଭାବରେ ବହୁ ସମ୍ମାନର ଅଧିକାରୀ । ଓଡ଼ିଆ ସାହିତ୍ୟରେ ସେ ବହୁ ପରୀକ୍ଷା ନିରୀକ୍ଷା କରି ଗୌରବ ଅର୍ଜନ କରିଛନ୍ତି । ଇଂରାଜୀ ସାହିତ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିବାର ଜଣାଯାଏ । ଓଡ଼ିଆ ଜାତିର କର୍ଣ୍ଣଧାର ମଧୁସୂଦନ ଦାସଙ୍କ ବ୍ୟକ୍ତିତ୍ୱ ଥିଲା ବିଶାଳ । ଆଦର୍ଶ, ନିଷ୍ଠା, ଦେଶସେବାରେ ମଧୁବାବୁଙ୍କ ପ୍ରତିଭା ପ୍ରତିଷ୍ଠିତ ହୋଇଥିଲା । ମଧୁସୂଦନ ଦାସ ଯେ କି ମିଷ୍ଟର ଦାସ ନାମରେ ପରିଚିତ ଥିଲେ ତାଙ୍କର କୃତି ଓ କୀର୍ତ୍ତିକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇବା ପାଇଁ ସୁରେନ୍ଦ୍ର ମହାନ୍ତି ଉଦ୍ୟମ କରି ଇଂରାଜୀରେ 'ମଧୁସୂଦନ ଦାସ' ବହିଟି ରଚନା କରିଛନ୍ତି । ଯାହା ନ୍ୟାସନାଲ ବୁକ୍ ଟ୍ରଷ୍ଟଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ଓଡ଼ିଆ ଧର୍ମ, ସଂସ୍କୃତି, ଜାତୀୟତାର ପ୍ରତୀକ ଜଗନ୍ନାଥଙ୍କୁ କେନ୍ଦ୍ର କରି ସେ ପୁଣି ଲେଖିଛନ୍ତି ଲର୍ଡ଼ ଜଗନ୍ନାଥ ।

ଚିତ୍ତରଞ୍ଜନ ଦାସ ଜଣେ ବିଶିଷ୍ଟ ଗଦ୍ୟ ଲେଖକ ଓ ସାହିତ୍ୟ ସମାଲୋଚକ ରୂପେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଇଂରାଜୀ ସାହିତ୍ୟକୁ ତାଙ୍କର ଯଥୋଚିତ ଦାନ ଏଠାରେ ସ୍ମରଣୀୟ ।

"ଷ୍ଟଡ଼ିଜ୍ ଇନ୍ ଦି ମିଡ଼ିଏଭାଲ ଲିଟରେଚର ଏଣ୍ଡ ରିଲିଜିଏନ ଅଫ୍ ଓଡ଼ିଶା ।" ତାଙ୍କର ଏକ ଉଚ୍ଚକୋଟୀର ଆଲୋଚନା ପୁସ୍ତକ ।

ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ସର୍ବଭାରତୀୟ ସ୍ତରରେ ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଓ ଗବେଷକ ରୂପେ ପରିଚିତ । ଓଡ଼ିଶାର ଶିଳାଲିପି, ପ୍ରାଚୀନ ଅଭିଲେଖ ଏବଂ ଓଡ଼ିଆ ଭାଷା ସାହିତ୍ୟକୁ ଆନ୍ତର୍ଜାତିକ ସ୍ତରରେ ପରିଚିତ କରାଇବା ପାଇଁ ସେ ରଚନା କରିଛନ୍ତି ଅନେକ ପୁସ୍ତକ । "ଇଭୋଲସନ ଅଫ୍ ଓଡ଼ିଆ ଲାଙ୍ଗୁଏଜ୍ ଏଣ୍ଡ୍ ସ୍କ୍ରିପ୍ଟ" ପୁସ୍ତକଟି ଡଃ ତ୍ରିପାଠୀଙ୍କ ଗବେଷଣାତ୍ମକ ସନ୍ଦର୍ଭ ଡଃ ତ୍ରିପାଠୀଙ୍କ ଲିଖିତ 'କଣ୍ଟ୍ରିବ୍ୟୁସନ ଅଫ୍ ଓଡ଼ିଶା ଟୁ ସାନ୍ସକ୍ରିଟ୍ ଲିଟରେଚର' ଏବଂ 'ଏ ବ୍ରିଫ ହିଷ୍ଟ୍ରି ଅଫ୍ ଓଡ଼ିଆ

ଲିଟରେଚର" ଏବଂ "ବାଣପୁର ଇନ୍‌ସ୍କ୍ରିପସନ୍ ଅଫ୍ ଇନ୍ଦ୍ରରଥ" ପୁସ୍ତକ ଇଂରାଜୀ ଭାଷା ଓ ସାହିତ୍ୟର ଅମୂଲ୍ୟ ପୁସ୍ତକ ।

ବାରବାଟୀ ଦୁର୍ଗ ସମ୍ପର୍କରେ ଐତିହାସିକ, ପ୍ରଫେସର ପ୍ରଭାତ ମୁଖାର୍ଜୀଙ୍କ "ହିଷ୍ଟ୍ରି ଅଫ୍ ବାରବାଟୀ ଫୋର୍ଟ" ପ୍ରଫେସର ଜି. ଏମ୍. ଦାସଙ୍କ "ହିଷ୍ଟ୍ରି ଅଫ୍ କଟକ" ଏବଂ ପ୍ରଫେସର ଆଲତାଫ୍ ହୁସେନଙ୍କ କଟକରେ ମୁସଲମାନ କୀର୍ତ୍ତି ସମ୍ପର୍କୀୟ ଲେଖା, ଡଃ ଅତୁଲ ଚନ୍ଦ୍ର ପ୍ରଧାନଙ୍କ "ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରମାନଙ୍କ ସମୟରେ କଟକ" ଲେଖା ଇଂରାଜୀ ଭାଷା ସାହିତ୍ୟର ପାଠକମାନଙ୍କୁ କଟକ ଇତିହାସ ସମ୍ପର୍କରେ ସ୍ଥୂଳ ଆଭାସ ପ୍ରଦାନ କରିଥାଏ ।

ଇଂରାଜୀ ଭାଷା ସାହିତ୍ୟରେ ଜୟନ୍ତ ମହାପାତ୍ରଙ୍କ ପ୍ରତିଷ୍ଠା ଓ ପ୍ରଭାବ ଏକ ସ୍ୱୀକାର୍ଯ୍ୟ ସ୍ୱତନ୍ତ୍ର ମହିମାରେ ମଣ୍ଡିତ । ଇଂରାଜୀ ସାହିତ୍ୟର ସେ ଏକ ବସ୍ତୁ । ଇଂରାଜୀ ଭାଷା, ସାହିତ୍ୟକୁ ତାଙ୍କର ଅବଦାନ ଅତୁଳନୀୟ । ତାଙ୍କର କୃତି ପାଇଁ ସେ ଆଜି ଆନ୍ତର୍ଜାତିକ ସ୍ତରରେ ବେଶ୍ ସମ୍ମାନିତ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏହି ପ୍ରସିଦ୍ଧ ଇଂରେଜୀ ଭାଷା, ସାହିତ୍ୟର ସ୍ରଷ୍ଟା ଜନ୍ମଗ୍ରହଣ କରନ୍ତି ଓଡ଼ିଶାର ପ୍ରାଚୀନ ସହର କଟକରେ ଅକ୍ଟୋବର ୨୨ ତାରିଖ ୧୯୨୮ ମସିହାରେ । ପଦାର୍ଥବିଜ୍ଞାନ ପ୍ରାଧ୍ୟାପକ ତଥା ଜଣେ ବୈଜ୍ଞାନିକ ଭାବରେ ତାଙ୍କର ସୁନାମ ସୁବିଦିତ । ସେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରନ୍ତି ୧୯୪୯ ମସିହାରେ ଦୈନିକ "ଦି ଇଷ୍ଟର୍ଣ୍ଣ ଟାଇମସ୍"ର ସହ-ସମ୍ପାଦକ ଭାବରେ । ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ ବିଶ୍ୱସାହିତ୍ୟର ଅମରକୃତି । ଭାରତ ମଧ୍ୟରେ ଓ ଭାରତ ବାହାରେ ବହୁ ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ଦ୍ୱାରା ତାହା ପ୍ରକାଶ ଲାଭକରି ପାଠକ/ ପାଠିକାଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଅଛି ।

ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ର ପୁଣି ଆଗ୍ରହ ପ୍ରକାଶ କରିଛନ୍ତି ତାଙ୍କ ଜନ୍ମମାଟି ଓଡ଼ିଶାର ପ୍ରତିଷ୍ଠିତ କବିମାନଙ୍କର କବିତାକୁ ଆନ୍ତର୍ଜାତିକ ସ୍ତରରେ ଉତ୍ଥାପିତ କରିବା ପାଇଁ । ସେଥିପାଇଁ ସେ ଓଡ଼ିଆ କବିତାଗୁଡ଼ିକୁ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି । ସୁନାମଧନ୍ୟ କବି ଅଧ୍ୟାପକ ଶ୍ରୀଯୁକ୍ତ ସୌଭାଗ୍ୟ କୁମାର ମିଶ୍ରଙ୍କ କବିତାଗୁଡ଼ିକୁ କବି ମହାପାତ୍ର 'କାଉଣ୍ଟର ମେଜରସ', କବି ଯଦୁନାଥ ଦାଶ ମହାପାତ୍ରଙ୍କ କବିତାଗୁଡ଼ିକୁ "ଉଇଙ୍ଗ୍‌ସ ଅଫ୍ ଦି ପାଷ୍ଟ" ଏବଂ କବି ସୀତାକାନ୍ତ ମହାପାତ୍ରଙ୍କ ଓଡ଼ିଆ କବିତା ଗୁଡ଼ିକୁ ନେଇ "ସଙ୍ଗ୍ ଅଫ୍ କୁବୁଜା ଏଣ୍ଡ ଅଦର ପୋଏମ୍" ନାମରେ ଅନୂଦିତ କରାଇ ଉଚ୍ଚ ପ୍ରଂଶସା ଲାଭ କରିବାରେ ସମର୍ଥ ହୋଇଛନ୍ତି । ପୁସ୍ତକ ରଚନା ବା କବି ଭାବରେ କେବଳ ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ରଙ୍କ ଖ୍ୟାତି ପରିବ୍ୟାପ୍ତ ହୋଇ ନାହିଁ ତାହା ପୁଣି ବିସ୍ତାରିତ ହୋଇଛି ସମ୍ପାଦନା କ୍ଷେତ୍ରକୁ । ବିଭିନ୍ନ ପତ୍ରିକା ସମ୍ପାଦନା ବ୍ୟତୀତ ତାଙ୍କର ବହୁ ମୌଳିକ ସମାଲୋଚନା, ଆଲୋଚନା, ପ୍ରବନ୍ଧ ପୃଥିବୀର ବହୁ ପ୍ରଖ୍ୟାତ ପତ୍ରିକା ମଣ୍ଡନ କରିଛି ।

ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କବି ଜୟନ୍ତ ମହାପାତ୍ରଙ୍କ ସମ୍ପର୍କରେ ବହୁ ବିଶିଷ୍ଟ ସମାଲୋଚକ, ଆଲୋଚକମାନେ ଉଚ୍ଚକୋଟୀର ମତାମତ ପ୍ରଦାନ କରିଛନ୍ତି । ସାମ୍ପ୍ରତିକ କାଳରେ ଇଂରାଜୀ ସାହିତ୍ୟରେ ଜୟନ୍ତ ମହାପାତ୍ରଙ୍କ କବିତା ଅନନ୍ୟ ସାଧାରଣ ।

ଆମର ଗୌରବ ଜୟନ୍ତ ମହାପାତ୍ରଙ୍କ ସୃଷ୍ଟି କେବଳ ଆଲୋଚିତ ହୋଇଛି ତାହା ନୁହେଁ ଆନ୍ତର୍ଜାତିକ ସମ୍ମାନ ଓ ସ୍ୱୀକୃତି ପାଇବାରେ ସେ ହେଉଛନ୍ତି ଜଣେ ପ୍ରମୁଖ ଓଡ଼ିଆ ଏବଂ ଜଣେ ଭାରତୀୟ ଇଂରାଜୀ କବି । କେନ୍ଦ୍ର ସାହିତ୍ୟ ଏକାଡେମୀ (Sahitya Akademi), (National Akademy of Letters)ଙ୍କ ଦ୍ୱାରା 'ରିଲେସନ୍‌ସିପ୍' ପୁସ୍ତକ ପାଇଁ ସମ୍ମାନିତ ହେବା ସହ ମଧ୍ୟ ପୁରସ୍କୃତ ହୋଇଛନ୍ତି । ଏହା ବ୍ୟତୀତ ଲଣ୍ଡନର ଇଣ୍ଟରନ୍ୟାସନାଲ "ହୁଜ୍ ହୁ" ଇନ୍ ପୋଏଟ୍ରି ପାଇଁ, ୧୯୭୦ ମସିହାରେ, Jacob Glatstein Memorial Award—୧୯୭୫ ରେ, କଲ୍‌ଚରାଲ ଆଓ୍ୱାର୍ଡ ଭିଜିଟର, ଅଷ୍ଟ୍ରେଲିଆ, ୧୯୭୮ରେ, ଜାପାନ୍ ଫାଉଣ୍ଡେସନ୍ ଭିଜିଟର ଆଓ୍ୱାର୍ଡ, ଜାପାନ ୧୯୮୦ରେ ଏବଂ ସୋଭିଏତ ରୁଷ, ଇଟାଲି, ସିଙ୍ଗାପୁର, କୁଆଲାଲମ୍ପୁର, ପଶ୍ଚିମ ଜର୍ମାନୀ, ଇଂଲଣ୍ଡ ପ୍ରଭୃତି ଦେଶର ବିଭିନ୍ନ ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ପକ୍ଷରୁ ଶ୍ରୀଯୁକ୍ତ ମହାପାତ୍ର ସମ୍ମାନିତ ହେବା ସହ ଭିଜିଟିଙ୍ଗ୍ ରାଇଟର୍ ଭାବେ ଯୋଗଦାନ କରିଛନ୍ତି । ଶ୍ରୀଯୁକ୍ତ ମହାପାତ୍ର ପୁଣି ସ୍ୱରଚିତ କବିତା ପାଠ ପାଇଁ ପୃଥିବୀର ବିଭିନ୍ନ ଦେଶକୁ ଯାତ୍ରା କରି ସୁନାମ ଅର୍ଜନ କରିଛନ୍ତି । ବାସ୍ତବିକ ବହୁ ସିଦ୍ଧିର ଅଧିକାରୀ ଜୟନ୍ତ ମହାପାତ୍ର କେବଳ କଟକର ନୁହଁନ୍ତି ଓଡ଼ିଶା ସର୍ବୋପରି ଭାରତବର୍ଷର ଗର୍ବ ଓ ଗୌରବର ଅଧିକାରୀ ।

ଶ୍ରୀଯୁକ୍ତ ପ୍ରଫୁଲ୍ଲ ମହାନ୍ତି ସାମ୍ପ୍ରତିକ ଇଂରାଜୀ ସାହିତ୍ୟରେ ବହୁ ଚର୍ଚ୍ଚିତ ନାମ କଟକରେ ବହୁ ବର୍ଷଧରି ଜୀବନ ବିତାଇବାପରେ ବର୍ତ୍ତମାନ ସେ ଲଣ୍ଡନ ସହରରେ ଅବସ୍ଥାନ କରୁଛନ୍ତି । ସେ ଏକାଧାରରେ ଲେଖକ ଓ ସ୍ଥପତି ଏବଂ ଶିଳ୍ପୀ । ଏବେବି କଟକ ସହ ତାଙ୍କର ସମ୍ପର୍କ ନିବିଡ଼ । ତାଙ୍କ ରଚିତ "ମାଇଁ ଭିଲେଜ ମାଇଁ ଲାଇଫ୍, (My Village, My Life) ବହୁ ଆଲୋଚିତ ଲୋକପ୍ରିୟ ପୁସ୍ତକ । ସେହିପରି "ଚେଞ୍ଜିଙ୍ଗ୍ ଲାଇଫ୍, ଚେଞ୍ଜିଙ୍ଗ୍ ଟାଇମ୍ (Changing life, chinging Time) ଥ୍ରୋ ଦି ବ୍ରାଉନ୍ ଆଇଜ୍ (Through the Brown Eies) ଏବଂ "ଓଡ଼ିଶା ଫୋକ୍ ଟେଲସ୍ ଫ୍ରମ ଓଡ଼ିଶା ଫୋକ୍ ଟକ୍" (Orissa folk tales from Orissa folk talk) ପୁସ୍ତକ ଆନ୍ତର୍ଜାତିକ ସ୍ତରରେ ବେଶ୍ ଆଦୃତ ହୋଇଛି ।

ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହିଷ୍ଟୋରିକାଲ ଷ୍ଟଡିଜ କଲିକତା ପକ୍ଷରୁ "ଡିକ୍‌ସନାରୀ ଅଫ୍ ନେସ୍‌ନାଲ ବାଇଓଗ୍ରାଫି ପୁସ୍ତକ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଏନ୍. ଆର୍. ରାଏଙ୍କ ବଳିଷ୍ଠ ସମ୍ପାଦନାରେ ୧୯୮୬ ମସିହାରେ ପ୍ରକାଶ ପାଇଛି । ଭାରତବର୍ଷର କଳା, ସାହିତ୍ୟ, ରାଜନୀତି, ସମାଜସେବା, ସଙ୍ଗୀତ, ସଂସ୍କୃତି, କ୍ଷେତ୍ରରେ ପାରଦର୍ଶିତା ହାସଲ କରିଥିବା ବ୍ୟକ୍ତି ଏବଂ ସ୍ୱାଧୀନତା ସଂଗ୍ରାମୀ, ଦେଶଭକ୍ତମାନଙ୍କର ଜୀବନୀ ଓ କାର୍ଯ୍ୟାବଳୀ

ଏହି ପୁସ୍ତକରେ ସଂକଳିତ ହୋଇଛି । ଉକ୍ତର ଡ଼. ଜି. ରାଯ୍ ଶତ୍ରୁର ରେଭେନ୍‌ସା କଲେଜ, କଟକଙ୍କ ଦ୍ୱାରା "କଳାକାର ଜଗନ୍ ଦାସ", ପ୍ରଫେସର ଡଃ ଗୋପାଳ ଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ରଚିତ "ଲେଖକ ଇଞ୍ଜିନିୟର ଭୁବନେଶ୍ୱର ବେହେରା, ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସୃଷ୍ଟି "ନାଟ୍ୟକାର ଗୋପାଳ ଛୋଟରାୟ ଓ ମନସ୍ୱୀ ନୀଳକଣ୍ଠ ଦାସ" ଶ୍ରୀଯୁକ୍ତ ବେଣୁଧର ପ୍ରଧାନଙ୍କ ରଚିତ "ହରିହର ଦାଶ", ଶ୍ରୀଯୁକ୍ତ କେ. ସି. ଜେନାଙ୍କ "ଶିକ୍ଷାବିତ୍ ବାମାଚରଣ ଦାସ ଓ ବିଧୁଭୂଷଣ ଦାସଙ୍କ ସମ୍ପର୍କରେ ମୂଲ୍ୟବାନ ଲେଖା ଡିକ୍‌ସନାରୀ ଅଫ୍ ନେସ୍‌ନାଲ ବାଇଓଗ୍ରାଫି, (Dictionary of National Biograpy Supplement) ରେ ସ୍ଥାନ ପାଇଛି । ଅଧ୍ୟାପକ ଡକ୍ଟର ବିଜୟାନନ୍ଦ ସିଂହଙ୍କ ଲିଖିତ 'ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ନାଟ୍ୟକାର ମନୋରଞ୍ଜନ ଦାସ, ସାହିତ୍ୟିକ ସୂର୍ଯ୍ୟନାରାୟଣ ଦାସ, ଅଭିନେତା, ନର୍ତ୍ତକ ଧୀରେନ୍ଦ୍ରନାଥ ବିଶ୍ୱାଳ, କବି ହରିପ୍ରିୟା ଦେବୀଙ୍କ ସମ୍ପର୍କରେ ତଥ୍ୟମୂଳକ ଲେଖା ଏହି "ଡିକ୍‌ସିନାରୀ ଅଫ୍ ନେସ୍‌ନାଲ ବାଇଓଗ୍ରାଫି"ରେ ପ୍ରକାଶ ପାଇଛି ।

ସାରଳା ସାହିତ୍ୟ ସଂସଦ, କଟକ ଓଡ଼ିଶାର ଏକ ବଳିଷ୍ଠ ସାରସ୍ୱତ ସଙ୍ଗଠନ । ମାଟିର ମହାକବି ସାରଳା ଦାସଙ୍କ ସ୍ମୃତିକୁ ଉଜ୍ଜୀବିତ ତଥା ସୁରକ୍ଷିତ କରିବାରେ ଏହି ସଂସଦ ଐତିହାସିକ ଭୂମିକା ଗ୍ରହଣ କରିଛି । ସାରଳା ଦାସଙ୍କ ମହାଭାରତ ଭାରତୀୟ ସାହିତ୍ୟର ଏକ ଅମ୍ଳାନ ସୃଷ୍ଟି । ଏହି ଗ୍ରନ୍ଥରେ ଉତ୍କଳୀୟ ଜନଜୀବନ ଓ ସଂସ୍କୃତିର ବିଶେଷତ୍ୱମାନ ଲିପିବଦ୍ଧ ହୋଇଛି । ଏହି ଗ୍ରନ୍ଥର ରଚୟିତା ସାରଳାଦାସଙ୍କ କୃତି ରାଜିକୁ ବିଶ୍ୱସାହିତ୍ୟରେ ପରିଚିତ କରାଇବା ପାଇଁ ଏହି ଅନୁଷ୍ଠାନର ଉଦ୍ୟମ ସର୍ବାଗ୍ରେ ସ୍ୱାଗତଯୋଗ୍ୟ । ଏହି ସାହିତ୍ୟ ସଂସଦ ଉଦ୍ୟମରେ ସାରଳା ଦାସଙ୍କ ମହାଭାରତର ମୌଳିକ କାହାଣୀଗୁଡ଼ିକୁ ଓଡ଼ିଶାର ବିଭିନ୍ନ ଲେଖକମାନେ ଗଦ୍ୟରୂପ ପ୍ରଦାନ କରିଛନ୍ତି । ଏହି ଗଦ୍ୟରୂପକୁ ପ୍ରଫେସର ପ୍ରଫୁଲ୍ଲକୁମାର ମହାନ୍ତି ଇଂରାଜୀ ଭାଷାରେ ଅନୂଦିତ କରିଛନ୍ତି । ସାରଳା ମହାଭାରତର ଏହି କାହାଣୀ, ଆଖ୍ୟାନ, ଉପାଖ୍ୟାନଗୁଡ଼ିକ "ଷ୍ଟୋରିଜ ଫ୍ରମ ସାରଳା ମହାଭାରତ" (Stories from Sarala Mahabharat) ନାମରେ ନୂଆଦିଲ୍ଲୀସ୍ଥ ବିକାଶ ପବ୍ଲିଶିଂ ହାଉସ୍‌ଦ୍ୱାରା ୧୯୮୯ ମସିହାରେ ଲୋକଲୋଚନକୁ ଆସି-ସାରିଛି । ଏହି ପୁସ୍ତକରେ ଚବିଶିଟି ଗଳ୍ପ ସ୍ଥାନ ପାଇବା ସହିତ ସାରଳା ମହାଭାରତ ସମ୍ପର୍କରେ ଏକ ସୁବିସ୍ତୃତ ମୁଖବନ୍ଧ ପୁସ୍ତକର ଶୋଭାବର୍ଦ୍ଧନ କରିଛି ।

ପ୍ରଫେସର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ଗବେଷଣା ସନ୍ଦର୍ଭ "ଦି କନଷ୍ଟିଚ୍ୟୁସନ ଅଫ ଇଣ୍ଡିଆ-ଏ କମ୍ପାରିଟିଭ୍ ଷ୍ଟଡ଼ି—(The Constitution of India—A Comparative study") ଏବଂ ବରିଷ୍ଠ ଅର୍ଥନୀତିଜ୍ଞ, ଶିକ୍ଷାବିତ୍ ଡକ୍ଟର ସଦାଶିବ ମିଶ୍ରଙ୍କ "ଦି ଇକୋନମିକ ସର୍ଭେ ଅଫ୍ ଓଡ଼ିଶା" (The Economic Survey of Orissa, II Volumes,) ପ୍ରକାଶିତ ହୋଇ ଆଦର ଲାଭ କରିଛି । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପର୍କରେ ଅଧ୍ୟାପକ ଶ୍ରୀଯୁକ୍ତ ନରସିଂହ ସାହୁଙ୍କ ଦ୍ୱାରା ଲିଖିତ—"ଲକ୍ଷ୍ମୀ ନାରାୟଣ ସାହୁ

ଟେର୍ଗିଲିଙ୍ଗ୍ ରିଭୁ୍ୟଲଟ୍" (Laxminarayan Sahoo—Gurglingrivulte.) ଏକ ସ୍ମାରକୀ ଗ୍ରନ୍ଥ । କବି ମୁରାରି ମୋହନ ଜେନାଙ୍କ ରଚିତ କାବ୍ୟ "ଓଡ଼ ଅନ୍ ଲେବର (Ode on Labour) ୧୯୭୮ ମସିହାରେ ପ୍ରକାଶିତ ହୋଇଛି । ସାଧାରଣ କବି ସଂଗଠକ ଶ୍ରୀଯୁକ୍ତ ମୁରାରି ମୋହନ ଜେନାଙ୍କ ଜୀବନୀ ଓ କର୍ମକୁ ଆଧାର କରି 'ମୁରାରି ଜେନା —ଲେବର ପୋଏଟ୍ ଅଫ୍ ଓଡ଼ିଶା (Murari Jena—A Rebel Poet of Orissa) ଶ୍ରୀଯୁକ୍ତ ଦୁର୍ଗାଚରଣ କୁଅଁର ଏବଂ ଏମ୍. ଏ ବାରିଙ୍କ ମିଳିତ ସମ୍ପାଦନାରେ ଆତ୍ମ ପ୍ରକାଶ କରିଛି । ରବିନାରାୟଣ ମହାପାତ୍ରଙ୍କ "ଗୋପବନ୍ଧୁ ଇନ୍ ଲେଜିସ୍‌ଲେଚର" (Gopabndhu in Legislature) "ଡେମୋକ୍ରାଟିକ୍ କମ୍ୟୁନିଜିମ୍" ଦୁଇଟି ସ୍ମରଣୀୟ ପୁସ୍ତକ ।

ପଦ୍ମାଳୟା ଦାଶ ଅମୃତ ବଜାର ପତ୍ରିକାରେ "ରାଉଣ୍ଡ ଅପ୍"ରେ ବହୁ ସାର୍ଥକ୍ ଆଲୋଚନାମାନ କରିଛନ୍ତି ।

ବହୁ କବି ଲେଖକ ସମ୍ପ୍ରତି ଇଂରାଜୀ ସାହିତ୍ୟରେ ନିରବଚ୍ଛିନ୍ନ ଲେଖନୀ ଚାଳନା କରି ପାଠକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇ ପାରିଛନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ବିଷ୍ଣୁରାଜ ପଟେଲ, ବିଭୂ ପାଡ଼ୀ, ମହମ୍ମଦ ସକିଲ, ଏମ୍. ଏ. ବାରି, ଡକ୍ଟର ସଦାନନ୍ଦ ମିଶ୍ର, ଫ୍ରିରୁଜାବାଇଟ୍, ଅଲେଖ ମଲ୍ଲିକ, ଏସ୍. ଏସ୍. ପାଢ଼ୀ, ଚିନ୍ମୟ ଜେନା, ଅର୍ଦ୍ଧେନ୍ଦୁ ମୋହନ ଦେ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ମହାନଗରୀର ପ୍ରକାଶକକୁଳ :

ସାହିତ୍ୟର ଅଭିବୃଦ୍ଧିରେ ପ୍ରକାଶକମାନଙ୍କର ଗୁରୁଦାୟିତ୍ୱ ରହିଛି । ମହାନଗର କଟକ ସାହିତ୍ୟ ସଂସ୍କୃତିର କ୍ରୋଡ଼ଘର । ପ୍ରକାଶକମାନଙ୍କର ପ୍ରକାଶନ ସଂସ୍ଥା ଏଠାରେ କେବଳ ସ୍ଥାପିତ ହୋଇଛି ତାହା ନୁହେଁ; ପୁସ୍ତକ ପ୍ରକାଶନ କ୍ଷେତ୍ରରେ ଏହି ଅନୁଷ୍ଠାନ ସବୁ ବେଶ୍ ସାଫଲ୍ୟ ଅର୍ଜନ କରିଛି । ପ୍ରକାଶନକୁ ସେମାନେ ସାହିତ୍ୟର ସେବା ଭାବରେ ଗ୍ରହଣ କରିଛନ୍ତି । ନୂତନ ଲେଖକ-ଲେଖିକାମାନଙ୍କୁ ଲୋକଲୋଚନକୁ ଆଣିବା ସଙ୍ଗେ ସଙ୍ଗେ ବହୁ ଉପାଦେୟ ପୁସ୍ତକ ପ୍ରକାଶକରି ଜାତି ଓ ଦେଶ ପ୍ରତି ସେମାନେ ଯଥାର୍ଥ କର୍ତ୍ତବ୍ୟ ସଂପାଦନ କରିଛନ୍ତି । ଆମ ଦେଶ ତଥା, ସାହିତ୍ୟ, ସଂସ୍କୃତିର ଅନେକ ଅଜ୍ଞାତ ଅଧ୍ୟାୟକୁ ପୁସ୍ତକମାନଙ୍କରେ ପ୍ରକାଶ କରିବାରେ ପ୍ରକାଶକମାନଙ୍କ ଚେଷ୍ଟା ଅଭିନବ । ଓଡ଼ିଆ ଭାଷା, ସାହିତ୍ୟର ଅନେକ ପୁସ୍ତକ କଟକର ପ୍ରକାଶକମାନେ ପ୍ରକାଶିତ କରିଥିଲେ ମଧ୍ୟ ଅନ୍ୟାନ୍ୟ ଭାଷାରେ ପୁସ୍ତକ ପ୍ରକାଶ କରିବା ସେମାନଙ୍କର ଅନ୍ୟତମ ଲକ୍ଷ୍ୟ । ଇଂରାଜୀ ଭାଷାରେ ଅନେକ ପୁସ୍ତକ ପ୍ରକାଶ କରି ଏହି ଐତିହ୍ୟପୂର୍ଣ୍ଣ ସହରର ପ୍ରକାଶକମାନେ ସେମାନଙ୍କର ପ୍ରତିଷ୍ଠା ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ କରି ପାରିଛନ୍ତି ।

'ବିଦ୍ୟାପୁରୀ' ବାଲୁବଜାର, କଟକ ଏକ ସୁପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା । ଏହି ସଂସ୍ଥା ଅନେକ ଇଂରାଜୀ ଭାଷାରେ ପୁସ୍ତକ ପ୍ରକାଶନ କରିଛନ୍ତି । ବିଶିଷ୍ଟ ଐତିହାସିକ

ପ୍ରଫେସର ଡକ୍ଟର ମନ୍ମଥ ନା ଦା ଙ୍କ ପ୍ରଣୀତ "ସାଇଡ୍ ଲାଇଟ୍ସ୍ ଅନ୍ ହିଷ୍ଟ୍ରି, ଏଣ୍ଡ-କଲ୍‌ଚର ଅଫ ଓଡ଼ିଶା" (Sidelights on History and Culture of Orissa), "ଦ ଏଣ୍ଡ ଅଫ୍ ଦ ବ୍ରିଟିଶ୍—ଇଣ୍ଡିଆନ ଏମ୍ପାୟାର ପଲିଟିକ୍ସ୍ ଅଫ୍ ଡିଭାଇଡ୍ ଏଣ୍ଡ କୁଇଟ୍ (The End of the British—Indian Empire politics of divide and quit), "ଦ ଆବୋଡ୍ ଅଫ୍ ବ୍ଲିସ୍" (The Abode of Bliss), ଐତିହାସିକ ଏର୍. କୁଲ୍‌କେ, ଜ· ଏନ୍. ଦାସ ମନ୍ମଥନାଥ ଦାସ, କରୁଣାସାଗର ବେହେରାଙ୍କ ମିଳିତ ଉଦ୍ୟମରେ "ଓଡ଼ିଶା ବିବ୍ଲିଗ୍ରାଫି" (Orissa Bibiliography) ପୁସ୍ତକ ବନ୍ଧୁ 'ବିଦ୍ୟାପୁରୀ' ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିଛନ୍ତି । ପ୍ରଫେସର କି. ସି. ପଟ୍ଟନାୟକଙ୍କ "ଦ ଫାମିନ ଏଣ୍ଡ ସମ୍ ଆସ୍‌ପେକ୍ଟସ୍ ଅଫ୍ ଦ ବ୍ରିଟିଶ୍ ଇକୋନମିକ ପଲିସି ଇନ୍ ଓଡ଼ିଶା ୧୮୬୬-୧୯୦୯ (The Famine and some Aspects of the British Economic Policy in Orissa—1866-1909) ଡକ୍ଟର ବିଦ୍ୟାଧର ମିଶ୍ର, ଡକ୍ଟର ଦେବେନ୍ଦ୍ର ମିଶ୍ର, ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କ ମିଳିତ ସଂପାଦନାରେ ସମୃଦ୍ଧ "ଇକୋନମିକ ଡେଭଲପ୍‌ମେଣ୍ଟ ଇନ୍ ଓଡ଼ିଶା" (Economic Development in Orissa) ଶ୍ରୀ ଶୁଭକାନ୍ତ ବେହେରାଙ୍କ ଦ ପଲିଟିକ୍ସ୍ ଅଫ୍ ଡିଜାରମାମେଣ୍ଟ ୧୯୧୯, ସୁବାସ ପାଣିଙ୍କ ରଚିତ "ଓଡ଼ିଶା ହର୍ ମନୁମେଣ୍ଟସ୍ ଏଣ୍ଡ ଦେଆର ଟେଲ୍‌ସ୍" ସିଦ୍ଧାର୍ଥ ଦାସଙ୍କ ଲିଖିତ "ଦ ଆକ୍‌ସିଡେଣ୍ଟ ଏଣ୍ଡ ସେଭେନ୍ ସର୍ଟ୍ ଷ୍ଟୋରିଜ୍" ପୁସ୍ତକ ଏହି ଅନୁଷ୍ଠାନ ଉଦ୍ୟମରେ ଲୋକଲୋଚନକୁ ଆସି ପାରିଛି ।

ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ—୨ ଓଡ଼ିଶାର ଏକ ସ୍ୱନାମଧନ୍ୟ ପୁସ୍ତକ ପ୍ରକାଶନ ସଂସ୍ଥା । ଏହି ଅନୁଷ୍ଠାନ ବହୁ ନୂତନ ପ୍ରତିଭାକୁ ଆଲୋକକୁ ଆଣିବାରେ ଅଗ୍ରଣୀ କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ଡକ୍ଟର ସୌଭାଗ୍ୟ କୁମାର ମିଶ୍ରଙ୍କ ସମ୍ପାଦିତ "ଏ ସ୍ଲାଇସ ଅଫ୍ ଲାଇଫ୍ ବର୍ଣ୍ଣାଡ୍ ମାଲାମଡ୍" (A SLICE OF LIFE Bernard Malamud) ଓ ସୁମିତ କୁମାର ମିଶ୍ରଙ୍କ "ଉଇ ଫଲ ଉଇଥ୍ ଫ୍ଲାଓ୍ୟାରସ୍ (We Fall with Flowers) ଡକ୍ଟର ଏସ୍.କେ· ମିଶ୍ରଙ୍କ 'ଦ ଆଇଡ଼ିଆ ଅଫ୍ ହିରୋଇଜମ୍' (The Idea of Herosim) ପୁସ୍ତକ ଆଦି ପ୍ରକାଶ କରି ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ଶ୍ରୀ ସହଦେବ ପ୍ରଧାନ ବହୁ ସମ୍ମାନର ଅଧିକାରୀ ହୋଇ ପାରିଛନ୍ତି ।

'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର', କଟକର ଅନ୍ୟ ଏକ ସୁପରିଚିତ ପ୍ରକାଶନ ସଂସ୍ଥା । ଏହି ସଂସ୍ଥା ବହୁ ଗୁରୁତ୍ୱପୂର୍ଣ୍ଣ ଉପାଦେୟ ପୁସ୍ତକ ପ୍ରକାଶନ କରିଛନ୍ତି । ନୁର ମିଶ୍ରଙ୍କ 'ଏ ପ୍ଲଟ ଅଫ ଲ୍ୟାଣ୍ଡ' (A Plot of Land), ରଶ୍ମି ରାୟଙ୍କ ରଚିତ 'ଶ୍ରୀ ଜଗନ୍ନାଥ ପୁରୀ' (Sri Jagannath Puri), ଡକ୍ଟର କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ

ଗ୍ଲିମ୍ପସ୍ ଅନ୍ ଆର୍ଟ ଏଣ୍ଡ ଲିଟରେଚର ଓଡ଼ିଶା (Glimps on Arts and Litterature Orissa), ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କ 'ଦ ସୋରୋ ଅଫ୍ ଯଶୋଦା' (The Sorrow of Yoshoda), Wittgenstein, ଏବଂ ପ୍ରିନ୍‌ସିପୁଲ ଇନ୍ କନ୍‌ଟେମ୍ପୋରେରି ମୋରାଲ ଫିଲୋସଫି, (Principle in Contemporary Moral Philosophy) ଶ୍ରୀ ଏସ୍. ସାହୁ, ଡକ୍ଟର ଏମ୍.ଏସ ପଣ୍ଡାଙ୍କ ସାଇଲସ ମାରନର (Silas Marner) ଶ୍ରୀ ଜେ.କେ ନାୟକ ଓ ଡକ୍ଟର ଏସ୍. ପଣ୍ଡାଙ୍କ 'ଲାଇଟ ଏଭର ଲାଷ୍ଟିଙ୍ଗ (Light Everlasting), ବି. ରଙ୍ଗନାଥନଙ୍କ 'ଦ ହିଷ୍ଟୋରିକାଲ ନଭେଲ ଇନ୍ ଓଡ଼ିଆ । ଡକ୍ଟର ଗଣେଶ୍ୱର ମିଶ୍ରଙ୍କ ଲିଖିତ 'ଟୁଓ୍ୱାର୍ଡସ୍ ଗ୍ରେଟର ନଲେଜ୍' ଗ୍ରନ୍ଥ ସବୁକୁ ପ୍ରକାଶ କରି 'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର' ଇଂରାଜୀ ସାହିତ୍ୟର ବିକାଶରେ ସହାୟକ ହୋଇଛନ୍ତି ।

'ଦ ପୁନର୍ଭବ' କଟକର ଏକ ସାମାଜିକ, ସାଂସ୍କୃତିକ ଅନୁଷ୍ଠାନ । ବିଶ୍ୱକୁ ଚିହ୍ନିବାରେ, ଜାଣିବାରେ 'ଦ ପୁନର୍ଭବ'ର କାର୍ଯ୍ୟ ସର୍ବାଗ୍ରେ ସ୍ୱାଗତଯୋଗ୍ୟ । ବିଶ୍ୱକୁ ଏକ ପରିବାରରେ ପରିଣତ କରିବା ପାଇଁ ଏହାର କର୍ମକର୍ତ୍ତାମାନଙ୍କ ଯୋଜନା ବାସ୍ତବିକ ପ୍ରଶଂସାଯୋଗ୍ୟ । ବହୁ କାର୍ଯ୍ୟ କରିବା ସହିତ ପୁସ୍ତକ ପ୍ରକାଶନ ଏହି ଅନୁଷ୍ଠାନର ଏକ ମୁଖ୍ୟ ଉଦ୍ଦେଶ୍ୟ । ବର୍ଷ ବର୍ଷ ଧରି ବହୁ ଆନ୍ତର୍ଜାତିକ ସ୍ତରୀୟ ସେମିନାର, ଆଲୋଚନା-ଚକ୍ରମାନ ଏହି ଅନୁଷ୍ଠାନ କରିଛି । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ସବୁ ପୁସ୍ତକ ଆକାରରେ ଉନ୍ମୋଚିତ ହୋଇଛି । ଏହି ପୁସ୍ତକ ରାଜି କେବଳ ଭାରତୀୟମାନଙ୍କ ପାଇଁ ନୁହେଁ ସମଗ୍ର ପୃଥିବୀବାସୀଙ୍କ ପାଇଁ ବହୁ ମୂଲ୍ୟବାନ ଗ୍ରନ୍ଥ । ବହୁ ଅନାଲୋଚିତ ଦିଗକୁ ଆଲୋଚିତ କରାଇ ତାହାକୁ ପୁଣି ପୁସ୍ତକ ଆକାରରେ ମୁଦ୍ରଣ କରାଇବାରେ ଏହି ଅନୁଷ୍ଠାନ ଏକ ପବିତ୍ର ଦାୟିତ୍ୱ ବହନ କରିଛି । 'ବୁଦ୍ଧିଜିମ ଏଣ୍ଡ ଜୈନିଜିମ' 'ଗ୍ରୀକ୍ କଲଚର' 'ଇଣ୍ଡିଆ-ଜର୍ମାନି', 'ଇଣ୍ଡୋ-ଜର୍ମାନ କଲଚରାଲ ରିଲେସନସ' 'ଗାନ୍ଧୀ ଏଣ୍ଡ ମଡର୍ଣ୍ଣ ଟାଇମ୍ସ', 'ହ୍ୱାଟ ଇଜ୍ ରଙ୍ଗ ଉଇଥ୍ ଆଓ୍ୱାର ଏଡୁକେସନ-ସର୍ଚ୍ଚ ଫର୍ ଆନ ଅଲ୍‌ଟରନେଟିଭ', 'ସୋସାଇଟି ଇନ ଟ୍ରାନ୍‌ଜିସନ—ଅଲଟରନେଟିଭ୍ସ ଫର ଦ ଫ୍ୟୁଚର', 'କମ୍ପାରେଟିଭ ରିଲିଜିଏନ-ଚ୍ୟାଲେଞ୍ଜସ୍ ଅଫ୍ ଦ ପ୍ରେଜେଣ୍ଟ', 'ଏନ୍‌ଭାଇରନ୍‌ମେଣ୍ଟ ଏଣ୍ଡ ଟୋଣ୍ଟିଫାଷ୍ଟ ସେଞ୍ଚୁରୀ', ଫୋକ୍‌ଲୋରସ୍ ଅଫ ମ୍ୟାନ କାଇଣ୍ଡ ଏବଂ କଟକ-ଓ୍ୱାନ ଥାଉଜେଣ୍ଡ ଇଅର (କଟକ ସହସ୍ର ବାର୍ଷିକ କମିଟି) (Cuttack One Thousand Years) ଭଳି ବହୁ ତଥ୍ୟ ସମ୍ବଳିତ, ଉପାଦେୟ, ଗବେଷଣାତ୍ମକ ପୁସ୍ତକ 'ପୁନର୍ଭବ' ଆନୁକୂଲ୍ୟରେ ଇନ୍‌ଷ୍ଟିଚ୍ୟୁଟ ଅଫ ଓରିଏଣ୍ଟାଲ ଏଣ୍ଡ ଓଡ଼ିଶାନ ଷ୍ଟଡିଜ୍ ପକ୍ଷରୁ ପ୍ରକାଶିତ ହୋଇ ଇଂରାଜୀ ସାହିତ୍ୟରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରି ପାରିଛି । 'ଦ ମଲଟିଭର୍ସ' ଭଳି ଏକ ଉନ୍ନତ ମାନର ପତ୍ରିକା ମଧ୍ୟ ଏହି ଅନୁଷ୍ଠାନ ପ୍ରକାଶ କରିଥାଆନ୍ତି ।

## ସହସ୍ର ବାର୍ଷିକୀ ନଗରୀର ପତ୍ର/ପତ୍ରିକା :

ପତ୍ରପତ୍ରିକା/ସମ୍ବାଦପତ୍ର ଭାଷା ଓ ସାହିତ୍ୟର ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ହଜାର ବର୍ଷର ପୁରୁଣା କଟକ ନଗରୀରୁ ଅନେକ ପତ୍ର/ପତ୍ରିକା ଇଂରାଜୀ ଭାଷାରେ ପ୍ରକାଶିତ ହୋଇ ଇଂରାଜୀ ସାହିତ୍ୟର ଅଗ୍ରଗତିରେ ସହଯୋଗ କରିଛି । ଊନବିଂଶ ଶତାବ୍ଦୀରେ କଟକରୁ ପ୍ରଥମେ ଦୁଇଟି ଇଂରାଜୀ ପତ୍ରିକା ଜନ୍ମଲାଭ କରିଥିଲା । ୧୮୮୬ ସାଲରେ 'ଓଡ଼ିଶା ଷ୍ଟୁଡେଣ୍ଟସ୍' (Orissa Students) ଆତ୍ମପ୍ରକାଶ କଲା ଓ ୧୮୮୮ରେ "ଓଡ଼ିଶା ପାଟ୍ରିୟଟ" (Orissa Patriot) ପ୍ରକାଶିତ ହେଲା । ଲକ୍ଷ୍ମୀନାରାୟଣ ସାହୁଙ୍କ ଉଦ୍ୟମ କ୍ରମେ ୧୯୨୨ ସାଲରେ ସାପ୍ତାହିକ "ଷ୍ଟାର ଅଫ୍ ଉତ୍କଳ" (Star of Utkal) ଏବଂ ୧୯୩୯ରେ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ 'ଜର୍ନାଲ ଅଫ୍ ଦି ଓଡ଼ିଶା, ଏକାଡେମୀ' (Journal of the Orissa Acidemy) ନୂତନ ସ୍ରଷ୍ଟାଙ୍କୁ ପ୍ରେରଣା ଯୋଗାଇଥିଲା । ୧୯୪୪ ରେ ଓଡ଼ିଶା ରିଭ୍ୟୁ (Orissa Review), ୧୯୪୬ ରେ ବାପ୍ଟିଷ୍ଟ ମିଶନାରୀ ରିଭ୍ୟୁ (Baptist Missonary Review) ଏବଂ ରେଭେନ୍ସା କଲେଜର ପ୍ରଫେସର ବି. ଭି. ଜନ୍ଙ୍କ ସମ୍ପାଦନାରେ ମାସିକ ଇଂରାଜୀ ପତ୍ରିକା "(ଦି ହୁଇଲ୍)" (The Wheel) ପ୍ରକାଶିତ ହୋଇଛି । ୧୯୪୭ରେ "ମାଇଁ ଷ୍ଟ୍ରଗଲ ଫର ଏରା ଓ "ପ୍ରୋଗ୍ରେସ" ଓ ୧୯୪୮ ରେ "କଟକ କମର୍ସିଆଲ୍ ଗାଇଡ୍ ଏବଂ ୧୯୪୯ ସାଲରେ ଆଇନ୍ ଓ ବିଭିନ୍ନ ବିଚାର ବିଭାଗର ତଥ୍ୟ ସମ୍ବାଦକୁ ନେଇ "ଓଡ଼ିଶା ଲ' ଟାଇମସ" ପ୍ରକାଶ ଲାଭକଲା । ୧୯୫୦ ମସିହାରେ "ଗେମ୍ସ୍ ଏଣ୍ଡ ସ୍ପୋର୍ଟସ" ୧୯୫୨ ମସିହାରେ "ଓଡ଼ିଶା ହିଷ୍ଟୋରିକାଲ୍ ରିସର୍ଚ୍ଚ ଜର୍ନାଲ ୧୯୫୪ରେ ବାରବାଟୀ ଷ୍ଟାଡ଼ିୟମ ୧୯୫୬ରେ "ଦି ହିନ୍ଦୁସ୍ଥାନ" ପ୍ରକାଶିତ ହୋଇ ଇଂରାଜୀ ସାହିତ୍ୟର ପାଠକମାନଙ୍କୁ ପ୍ରୋତ୍ସାହନ ଯୋଗାଇଛି ।

୧୯୫୭ ମସିହାରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ଶିକ୍ଷା ସମ୍ପର୍କୀୟ ବିଷୟକୁ ମାଧ୍ୟମ କରି "ଓଡ଼ିଶା ଏଡୁକେଶନ ମେଗାଜିନ୍" (Orissa Education Magazine) ଏବଂ ୧୯୫୮ ରେ "ଦି ଷ୍ଟୁଡେଣ୍ଟ" (The Student) ଆତ୍ମପ୍ରକାଶ କରିଥିଲା । ସୁରେନ୍ଦ୍ର ମହାନ୍ତିଙ୍କ ସମ୍ପାଦନାରେ 'ଦି ଜନତା' (The Janata) ପାକ୍ଷିକ ପତ୍ରିକା ପ୍ରକାଶିତ ହୋଇଥିଲା । ଏହି ସହରରେ ସ୍ୱାଧୀନତା ପୂର୍ବରୁ ଭୁବନ ମୋହନ ପଟ୍ଟନାୟକଙ୍କ ବଳିଷ୍ଠ ସମ୍ପାଦନାରେ 'ପ୍ରୋଗେସ' (Progress) ପତ୍ର ପତ୍ରିକା ଇତିହାସରେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ମଧୁ ମହାନ୍ତିଙ୍କ ଉଦ୍ୟମରେ "ଦି ଅବ୍ଜରଭର" (The Obsevver) ସାପ୍ତାହିକ "ଦି ରିଜନ୍" (The Reason) ଶ୍ରୀ ଆର୍. କେ. ପଟ୍ଟନାୟକଙ୍କ ସମ୍ପାଦନାରେ "ସ୍କ୍ରୁଟିନି" (Scrutiny), ସୁଶିଲକୁମାର ପଟ୍ଟନାୟକଙ୍କ "ଦି ଚାରିଅଟ୍" (The Chariot) "ରିକ୍ରୁଟବେଲ୍ସ" ଉଦୟନାଥ ଷଡ଼ଙ୍ଗୀଙ୍କ ପ୍ରଚେଷ୍ଟାରେ ଓ ସାହିତ୍ୟିକ ରବିନାରାୟଣ ମହାପାତ୍ରଙ୍କ ସମ୍ପାଦନାରେ ମାସିକ "ଆଲ୍ଫା" (ALFA), କଟକର ବିଶିଷ୍ଟ ପ୍ରକାଶକ ନବକିଶୋର ମହାପାତ୍ରଙ୍କ ପୃଷ୍ଠପୋଷକତାରେ ଜାନକୀବଲ୍ଲଭ

ମହାନ୍ତିଙ୍କ ସମ୍ପାଦନାରେ "ନିମ୍" ପ୍ରଫୁଲ୍ଲକୁମାର ଜଗଦେବଙ୍କ ସମ୍ପାଦନାରେ ମହାନଦୀ ରିଭ୍ୟୁ ପ୍ରକାଶିତ ହୋଇ ଗଳ୍ପ, କବିତା, ଆଲୋଚନା, ବିଭିନ୍ନ ଫିଚର ସୃଷ୍ଟି କରି ଇଂରାଜୀ ସାହିତ୍ୟକୁ ବିମଣ୍ଡିତ କରିଛନ୍ତି ।

ସ୍ୱାଧୀନତା ପରେ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଆ ଭାଷା, ସଂସ୍କୃତିର ସମୃଦ୍ଧି ପାଇଁ କେବଳ ମନପ୍ରାଣ ଢାଳି ଦେଇଥିଲେ ତାହା ନୁହେଁ ସେ ମଧ୍ୟ ଇଂରେଜୀ ସାହିତ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କରିଥିଲେ । ତାଙ୍କ ପ୍ରତିଷ୍ଠିତ "ପ୍ରଜାତନ୍ତ୍ର ପ୍ରଚାର ସମିତି" ଆନୁକୂଲ୍ୟରେ ୧୯୪୯ ସାଲରେ "ଦି ଇଷ୍ଟର୍ଣ୍ଣ ଟାଇମ୍ସ" ସାପ୍ତାହିକୀ ପରେ ଦୈନିକ ଭାବେ ଆତ୍ମପ୍ରକାଶ କଲା । ସେହିପରି ଆର୍. ପି. ଶାସ୍ତ୍ରୀଙ୍କ ଐକାନ୍ତିକ ନିଷ୍ଠାରେ ସମ୍ବାଦପତ୍ର "ଓରିଶା ଟାଇମ୍ସ" କଟକ ସହରରେ ଜନ୍ମ ଲାଭ କରିଥିଲା । ନବକିଶୋର ମହାପାତ୍ରଙ୍କ ବ୍ୟକ୍ତିଗତ ଚେଷ୍ଟାରେ ଦୈନିକ ସମ୍ବାଦପତ୍ର "ଦି ନ୍ୟୁଜ ଅଫ୍ ଦି ଓ୍ୱାର୍ଲ୍ଡ" ପ୍ରକାଶିତ ହୋଇ ସମ୍ବାଦପତ୍ର ଇତିହାସରେ ନବଦିଗନ୍ତ ସୃଷ୍ଟି କଲା ।

ହଜାର ବର୍ଷର 'କଟକ ନଗର' ଇଂରାଜୀ ଭାଷା, ସାହିତ୍ୟର ଅଭିବୃଦ୍ଧିରେ ଯେଉଁ ଉଦ୍ୟମ କରିଛି—ତାହା ଇତିହାସ ଓ ଗବେଷଣାର ବିଷୟବସ୍ତୁ ।



# ଓଡ଼ିଆ ଜ୍ଞାନକୋଷ ଓ ନଗେନ୍ଦ୍ର କଟକ

ପଣ୍ଡିତ ଶ୍ରୀରାମକୃଷ୍ଣ ପତି (ଗୁରଣ)

ଗୋଟିଏ ଗ୍ରନ୍ଥରେ କୋଟିଏ ଭାବନାକୁ ଗୁମ୍ଫିତ କରିବା ଉଦ୍ୟମରୁ ଜ୍ଞାନକୋଷର ଜନ୍ମ । ଅଜସ୍ର ସ୍ରଷ୍ଟା ତାଙ୍କର ବହୁ ଆୟାସଲବ୍ଧ ଜ୍ଞାନ ରାଶିକୁ ବିକ୍ଷିପ୍ତ ଭାବରେ ଅସଂଖ୍ୟ ଗ୍ରନ୍ଥ ମଧ୍ୟରେ ଲିପିବଦ୍ଧ କରି ଯାଇଅଛନ୍ତି । ସେ ସମସ୍ତ ଗ୍ରନ୍ଥକୁ ଜଣେ ଅଧ୍ୟୟନ କରିବା ଆଦୌ ସମ୍ଭବ ନୁହେଁ । ସେ ସବୁର ସାରାଂଶକୁ ଏକତ୍ର କରିଦେଇଆସାଇ ସାଧାରଣ-ବ୍ୟକ୍ତିକୁ ତା'ର ଜୀବନକାଳ ମଧ୍ୟରେ 'ବିନ୍ଦୁ ଭିତରେ ସିନ୍ଧୁ'କୁ ଜାଣିବାର ଅବସର ଦେବା ମଧ୍ୟ ଏପରି ଜ୍ଞାନକୋଷଗୁଡ଼ିକର ସୃଷ୍ଟିର ଉଦ୍ଦେଶ୍ୟ ।

'ନହି ସର୍ବଃ ସର୍ବଂ ବେତ୍ତି' ଅର୍ଥାତ୍ ସମସ୍ତେ ସବୁକଥା ଜାଣନ୍ତି ନାହିଁ । ଜାଣିବା ମଧ୍ୟ ସମ୍ଭବ ନୁହେଁ । ବିଜ୍ଞାନ, ସାହିତ୍ୟ, ଇତିହାସ, ରାଜନୀତି, ସମାଜନୀତିଠାରୁ ଆରମ୍ଭ-କରି ଦରକୋଣରେ ଘଟଣା ସାଙ୍ଗକୁ କ୍ଷୁଦ୍ରାତିକ୍ଷୁଦ୍ର ଜ୍ଞାତବ୍ୟ ତଥ୍ୟକୁ ଏକତ୍ର କରିବା ଫଳରେ ମଣିଷର ସୀମିତ ଆୟୁମଧ୍ୟରେ ଜଣେ ସବୁକଥା ଜାଣିବା ସୁଯୋଗ ପାଇପାରିବ ଏବଂ ପରିବର୍ତ୍ତନଶୀଳ ଆଧୁନିକ ବିଶ୍ୱବିଷୟରେ ଜଣଙ୍କ ଦୃଷ୍ଟି ବ୍ୟାପକ ହେବ—ଏଇ ଉଦ୍ଦେଶ୍ୟରେ ସର୍ବପ୍ରଥମେ ପାଶ୍ଚାତ୍ୟ ଜଗତରେ ସୃଷ୍ଟି ହେଲା 'ଇନ୍‌ସାଇକ୍ଲୋ ପିଡ଼ିଆ ବ୍ରିଟାନିକା ।' ବହୁ ଲେଖକଙ୍କ ବହୁ ଶ୍ରମ ଓ ସାଧନା ଫଳରେ ଏହା ସମ୍ଭବ ହୋଇ-ପାରିଥିଲା । କ୍ରମେ ଏପରି ଉଦ୍ୟମ ଭାରତୀୟ ଭାଷାଗୁଡ଼ିକରେ ଆରମ୍ଭ ହେବା ସହ ଓଡ଼ିଆ ଭାଷାରେ ମଧ୍ୟ ଏକକ ଉଦ୍ୟମରେ ଜ୍ଞାନକୋଷ ସଂକଳନର ସୂତ୍ରପାତ ହେଲା । କଟକକୁ କେନ୍ଦ୍ର କରି ସୃଷ୍ଟି ଉଦ୍‌ଯୋଗ ପର୍ବର ଇତିବୃତ୍ତ ସଂକ୍ଷେପରେ ଏଠାରେ ଉପସ୍ଥାପିତ କରିବା ଏ କ୍ଷୁଦ୍ର ପ୍ରବନ୍ଧର ଅଭିପ୍ରାୟ ।

କୋଷ ଓ ଜ୍ଞାନକୋଷ ଉଭୟର ରୂପ ଭିନ୍ନ ଓ ଉଦ୍ଦେଶ୍ୟ ଭିନ୍ନ । କୋଷ ମନର ଭାବନାକୁ ରୂପ ଦେବାପାଇଁ ସମୁଚିତ ଶବ୍ଦସନ୍ଧାନ ବେଳେ ଯେପରି କବିକୁ ସାହାଯ୍ୟ କରେ ସେପରି ପାଠକକୁ କବିର ବକ୍ତବ୍ୟ ଓ କବିତାର ମର୍ମାର୍ଥ ବୋଧ ପାଇଁ ସହାୟକ ହୁଏ । ସ୍ରଷ୍ଟା ଓ ସହୃଦୟ ମଧ୍ୟରେ କୋଷଗ୍ରନ୍ଥ ମଧ୍ୟସ୍ଥତାର ଦାୟିତ୍ୱ ତୁଲାଏ । ଏହି କୋଷଗ୍ରନ୍ଥରେ ଶବ୍ଦର ଆଭିଧାନିକ ଅର୍ଥ ସହ ତାର ମୂଳରୂପ, ବ୍ୟୁତ୍ପତ୍ତିକୁ ଦୃଷ୍ଟି

ଦିଆଯାଏ । ଶବ୍ଦଟିର ପ୍ରୟୋଗ ପାଇଁ ବିଭିନ୍ନ କବିଙ୍କ ଉକ୍ତି ଉଦ୍ଧାର କରି ଦେଖାଇ ଦିଆଯାଏ । ଏହି କୋଷଗୁଡ଼ିକ ସମାନାର୍ଥକ ଶବ୍ଦକୋଷ, ନାନାର୍ଥକ ଶବ୍ଦକୋଷ । ଏକାକ୍ଷର କୋଷ, ଦ୍ୱିରୂପକୋଷ, ତ୍ରିକାଣ୍ଡକୋଷ, କିମ୍ବା ବିପରୀତାର୍ଥବୋଧିନୀ ପ୍ରଭୃତି ନାମରେ ନାମିତ ହୋଇପାରନ୍ତି । ସଂସ୍କୃତଭାଷାରେ ଯାସ୍କଙ୍କଠାରୁ ଏହି କୋଷ ପ୍ରଣୟନ କାର୍ଯ୍ୟ ଆରମ୍ଭ ହୋଇ ସବୁ ପ୍ରାନ୍ତୀୟଭାଷାରେ ଅଦ୍ୟାବଧି କୋଷସମ୍ପାଦନ କାର୍ଯ୍ୟ ଚାଲୁରହିଛି । ବୈଦିକକୋଷ, ରାମାୟଣ କୋଷ, ମହାଭାରତ କୋଷ, ବୈଦ୍ୟକ କୋଷ, ପୁରାଣ କୋଷ; ସାହିତ୍ୟକ କୋଷ, ଧର୍ମଶାସ୍ତ୍ର କୋଷ ପ୍ରଭୃତି ସ୍ୱତନ୍ତ୍ର କୋଷଗ୍ରନ୍ଥ ଗୁଡ଼ିକ ତଦ୍‌ବିଷୟକ କୋଷ ଓ ଜ୍ଞାନକୋଷର ମାନ୍ୟତା ପାଇଥାନ୍ତି । ଓଡ଼ିଆ ଭାଷାରେ ମଧ୍ୟ ବିଧିବଦ୍ଧଭାବରେ ୧୮୪୨ ଠାରୁ କୋଷପ୍ରଣୟନ ଉଦ୍ୟମର ଶୁଭାରମ୍ଭ ହୋଇ ଗତ ଦେଢ଼ଶହବର୍ଷ ମଧ୍ୟରେ ପ୍ରାୟ ତିରିଶରୁ ଅଧିକ କୋଷ ପ୍ରସ୍ତୁତ ହୋଇପାରିଛି । ଏଥିମଧ୍ୟରୁ ବହୁ କୋଷ କଟକରେ ସମ୍ପାଦିତ ଅଥବା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି ।

ଜ୍ଞାନକୋଷଗୁଡ଼ିକ କୋଷଗ୍ରନ୍ଥର ଆଙ୍ଗିକ ଓ ଅନୁକ୍ରମକୁ ଗ୍ରହଣ କରି ସେଥିରେ ଜ୍ଞାନର ଭଣ୍ଡାରକୁ ବିଭିନ୍ନ ଖଣ୍ଡ, ପ୍ରକରଣ ଓ ପର୍ଯ୍ୟାୟରେ ସୁଶୃଙ୍ଖଳିତ ଭାବରେ ବିନ୍ୟସ୍ତ କରିଥାନ୍ତି । ଗୋଟିଏ ଶବ୍ଦର ପରିଚୟବେଳେ ମୂଳରୂପ; ପ୍ରୟୋଗ, ଇତିହାସ, ଆଦୃତ ଗ୍ରନ୍ଥର ସୂଚନା, ପ୍ରାଚୀନ ଓ ଆଧୁନିକ ମତର ସମନ୍ୱୟ ତଥା ଆବଶ୍ୟକ ଫଟଚିତ୍ର ଦେଇ ପ୍ରାମାଣିକ କରନ୍ତି । ଉପସ୍ଥାପନା ଯୋଗୁଁ କୋଷ ଜ୍ଞାନଗର୍ଭିତ ହେଉଥିବାରୁ ଜ୍ଞାନକୋଷ ଭାବରେ କଥିତ ହୁଅନ୍ତି । ସଂସ୍କୃତଭାଷାରେ ତାରାନାଥ ତର୍କବାଚସ୍ପତିଙ୍କ 'ବାଚସ୍ପତ୍ୟ', ରାଧାକାନ୍ତଦେବଙ୍କ ଶବ୍ଦକଳ୍ପଦ୍ରୁମ ହିନ୍ଦୀଭାଷାର ଶବ୍ଦସାଗର, ବଙ୍ଗଳାଭାଷାର ନଗେନ୍ଦ୍ର ବସୁ ସମ୍ପାଦିତ ବିଶ୍ୱକୋଷ, ମହାରାଷ୍ଟ୍ରୀୟ ଜ୍ଞାନକୋଷ, ତେଲୁଗୁ ଜ୍ଞାନକୋଷ; ସିଦ୍ଧେଶ୍ୱର ଶାସ୍ତ୍ରୀ ସମ୍ପାଦିତ ପ୍ରାଚୀନ ଭାରତୀୟ ଚରିତକୋଷ; ମଧ୍ୟଭାରତୀୟ ଚରିତକୋଷ ଓ ଆଧୁନିକ ଭାରତୀୟ ଚରିତକୋଷ ପ୍ରଭୃତି ସ୍ମରଣୀୟ ଜ୍ଞାନକୋଷ ଭାବରେ ବିଜ୍ଞ ପାଠକମଣ୍ଡଳୀଙ୍କ ପ୍ରିୟ ହୋଇ ପାରିଛି ।

ଓଡ଼ିଶାର ରାଜଧାନୀଭାବେ ନଗରେ କଟକ ଓଡ଼ିଶା ଭାଷାଚର୍ଚ୍ଚାର କେନ୍ଦ୍ରସ୍ଥଳୀ ରୂପେ ପରିଣତ ହୋଇଥିବା ଯୋଗୁଁ ଊନବିଂଶ ଶତାବ୍ଦୀରୁ ଅଦ୍ୟାପି ଜ୍ଞାନକୋଷ ପ୍ରଣୟନ କାର୍ଯ୍ୟ କେବଳ କଟକ ନଗରରେ ରୂପରେଖ ପ୍ରସ୍ତୁତ ହୋଇଛି ଓ ଆତ୍ମପ୍ରକାଶ କରିବା ସେଠାରୁ ସମ୍ଭବ ହୋଇପାରିଛି । ତଥ୍ୟ ଆହରଣରେ ଉପଯୋଗ କରି ଊନବିଂଶ ଶତାବ୍ଦୀରେ କଟକ ଅରୁଣୋଦୟ ପ୍ରେସ୍‌ରୁ ପ୍ରକାଶିତ ଡେପୁଟି କଲେକ୍ଟର ଲାଲ ମାଧବଙ୍କର 'ବିବିଧ ସଂଗ୍ରହ' ଓଡ଼ିଆ ଭାଷାର ପ୍ରଥମ ଜ୍ଞାନକୋଷ ମର୍ଯ୍ୟାଦା ପାଇଥାଏ । ଏଥିରେ ଶ୍ରୀମାନ ଲାଲ ଆପଣାର ସୂକ୍ଷ୍ମ ବୁଦ୍ଧି ଓ ଅଧ୍ୟବସାୟକୁ ବିନିଯୋଗ କରିଛନ୍ତି ।

ଏ ଦିଗରେ ପରବର୍ତ୍ତୀ ଉଦ୍ୟମ କରିଛନ୍ତି "ଚନ୍ଦ୍ରକୋଷ ବା ବୃହତ୍ ବିବିଧ ସଂଗ୍ରହ"ର ପ୍ରଣେତା ଭଗିରଥୀ ମହାପାତ୍ର ୪୨୪ ପୃଷ୍ଠା ବିଶିଷ୍ଟ ଏହି ଗ୍ରନ୍ଥ କଟକ

ଅନୁତେଣାଦୟ ପ୍ରେସ୍‌ରୁ ୧୯୩୫ରେ ପ୍ରକାଶ ପାଇଛି । ଏଥିରେ ପ୍ରାର୍ଥନା-ବ୍ରହ୍ମସୂତ୍ର-ଧର୍ମ-ଭାଷା-ପଣ୍ଡିତ ଲକ୍ଷଣ-(ଆସନ ପ୍ରାଣାମ ପ୍ରଭୃତି ସଂପର୍କରେ ପରିଚୟ ଦିଆଯାଇ ପୃଥିବୀ ଏବଂ ବିଭିନ୍ନ ଦେଶର ଶାସନତନ୍ତ୍ର, ଭାରତବର୍ଷ-ଉତ୍କଳ ଦେଶର ବିଭିନ୍ନ ଦିଗ ସୂଚିତ ହୋଇଛି । କେତେକ ସଂକ୍ଷିପ୍ତ ଜୀବନୀ ଭାରତର ଜ୍ଞାତବ୍ୟ କଥା—ପୃଥିବୀର ଭୌଗୋଳିକ ଅଭିଧାନ—ଭାରତୀୟ ନେତା ଓ ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ପରିଚୟ—ମହାପୁରୁଷମାନଙ୍କର ଜୀବନୀ—ଜ୍ଞାନ ମଞ୍ଜରୀ—ପୌରାଣିକ ଉପାଖ୍ୟାନ—ଦୋହାବଳୀ ପ୍ରଭୃତି ବିଭାଗରେ ବହୁ ତଥ୍ୟ ପ୍ରଦାନ କରାଯାଇଛି । ଏକ ହଜାର ପୃଷ୍ଠା କରି ୭ ଖଣ୍ଡର ପାଣ୍ଡୁଲିପି ପ୍ରସ୍ତୁତ ହୋଇଥିଲେ ମଧ୍ୟ ୧ମ ଖଣ୍ଡର ପ୍ରଥମ ଭାଗ ମାତ୍ର ପ୍ରକାଶିତ ହୋଇପାରିଛି ।

ଏକ ସମୟରେ ତଥ୍ୟ ସଂଗ୍ରହ କାର୍ଯ୍ୟ ଚାଲିଥିଲେ ମଧ୍ୟ ଏହା ପରବର୍ଷ ଅର୍ଥାତ୍ ୧୯୩୬ରେ ୯୧୨ ପୃଷ୍ଠା ବିଶିଷ୍ଟ ଲାଲ ନଗେନ୍ଦ୍ର କୁମାର ରାୟ ପ୍ରଣୀତ "ବିବିଧ ସାର ସଂଗ୍ରହ ଏବଂ ସଂକ୍ଷେପ ଉତ୍କଳ ଡାଇରେକ୍ଟରୀ" କଟକର ମନମୋହନ ପ୍ରେସ୍‌ରୁ ପ୍ରକାଶିତ ହୋଇଛି । ଏହା ମଧ୍ୟ ସଂକଳକଙ୍କ ଉଦ୍ୟମର ଏକ ଚତୁର୍ଥାଂଶ ମାତ୍ର । ଅର୍ଥାତ୍ ପ୍ରସ୍ତାବିତ ଚାରିଖଣ୍ଡରୁ ଖଣ୍ଡେମାତ୍ର ପ୍ରକାଶ ପାଇବା ସୌଭାଗ୍ୟ ପାଇଛି । ୧୯୨୫-୩୬ ଏଗାର ବର୍ଷ ଧରି ସଂକଳନ କଲିକତାର ଇମ୍ପେରିଆଲ ଲାଇବ୍ରେରୀରୁ ଓ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଉପାଦାନ ସଂଗ୍ରହ କରିବା ଏବଂ ୭୪ ଖଣ୍ଡ ଇଂରାଜୀ ପୁସ୍ତକ ଓ ରିପୋର୍ଟ, ୨୮ ଖଣ୍ଡ ଓଡ଼ିଆ ପୁସ୍ତକ, ୭ଖଣ୍ଡ ଓଡ଼ିଆ ଓ ୩ଖଣ୍ଡ ବଙ୍ଗଳା ପତ୍ରିକା, ୭ ଖଣ୍ଡ ଓଡ଼ିଆ ସମ୍ବାଦପତ୍ର, ୭ଖଣ୍ଡ ବଙ୍ଗଳା ଗ୍ରନ୍ଥକୁ ବିଶେଷ ଅନୁଧାନ କରିଥିଲେ ମଧ୍ୟ ବହୁ ପତ୍ରପତ୍ରିକାର ସାହାଯ୍ୟ ନେଇଥିବା ସୂଚନା ଦିଆଯାଇଛି ।

ଲାଲ ନଗେନ୍ଦ୍ର ରାୟଙ୍କ ଜ୍ଞାନକୋଷରେ ସୃଷ୍ଟି ଜଗତ୍-ସୌର ଜଗତ, ଭୂଗୋଳ-ପୃଥିବୀର ବିଭିନ୍ନ ରାଜ୍ୟ ଓ କ୍ଷୁଦ୍ରତମ ସ୍ୱାଧୀନ ରାଜ୍ୟ, ଦେଶାନ୍ତର ଓ ଦ୍ରାଘିମାନ୍ତର ୨୫୭ ପୃଷ୍ଠା ପର୍ଯ୍ୟନ୍ତ, ଭାରତବର୍ଷର ବିଭିନ୍ନ ସ୍ଥାନର ରାଜା—ପ୍ରାଚୀନ ଭୂଷଣ-କବି-ଇତିହାସପ୍ରସିଦ୍ଧ ବ୍ୟକ୍ତି-ସାଧକ-ସଭାସମିତି-ପ୍ରସିଦ୍ଧି ବ୍ୟକ୍ତି ଓ ନେତା ପ୍ରଭୃତି ବିଷୟରେ ୫୭୪ ପୃଷ୍ଠା ପର୍ଯ୍ୟନ୍ତ ଏବଂ ୫୭୫-୯୦୪ ପୃଷ୍ଠା ପର୍ଯ୍ୟନ୍ତ କଳିଙ୍ଗ ପରିଚୟ-ଦେଶୀୟ ରାଜ୍ୟ-ନୂତନ ପ୍ରଦେଶ-ପ୍ରଧାନ ନଗରୀ—ତୀର୍ଥ ଓ ପ୍ରସିଦ୍ଧ ସ୍ଥାନ—ପୁରୀର ଦ୍ରଷ୍ଟବ୍ୟ ସ୍ଥାନ—ମଠବାଡ଼ି—ଶିକ୍ଷାକ୍ଷେତ୍ର-ଖେଳ କୌତୁକ-ବିବିଧ ଜ୍ଞାତବ୍ୟ ବିଷୟ-ଚୟନିକା ତତ୍ତ୍ୱଜ୍ଞାନ-(ଆଇନ୍) ଅଦାଲତ ପ୍ରଭୃତି ଉତ୍କଳର ବିଷୟ ସ୍ଥାନ ପାଇଛି । ଶବ୍ଦାନୁକ୍ରମ ତଥା ପରିଶିଷ୍ଟକୁ ନେଲେ ଏହା ସହସ୍ରାଧିକ ପୃଷ୍ଠାର ଗ୍ରନ୍ଥ ହୋଇଛି । 'ରତ୍ନକୋଷ'ର ସଂକଳକ ଭାଗିରଥୀ ମହାପାତ୍ର, ନଗେନ୍ଦ୍ର ରାୟଙ୍କଠାରୁ ବହୁ ତଥ୍ୟ ନେଇଥିବା ଏବଂ ତାଙ୍କର ଗ୍ରନ୍ଥରେ ବହୁ ତଥ୍ୟଗତ ତ୍ରୁଟି ରହିଥିବା କଥା ବିବିଧ ସାର ସଂଗ୍ରହ ମୁଖବନ୍ଧରେ ଦୃଷ୍ଟାନ୍ତ ସହ ପ୍ରଦାନ କରାଯାଇଛି ।

ରତ୍ନକୋଷ ଏବଂ ବିବିଧ ସାରସଂଗ୍ରହ ଏ ଦୁଇଟି ଗ୍ରନ୍ଥର ପ୍ରକାଶନ ମଧ୍ୟରେ ଆପଣାର ଓଜଲିତ ବ୍ୟବସାୟରେ ଡୋରିବାନ୍ଧି ଦେଇ ଓଡ଼ିଆ-ଭାଷା କୋଣାର୍କ

କଟକ ଠାରେ ଚଢ଼ି ଗୁଲ୍‌ଥିଲେ ମରବଣିଲ୍ଲୀ ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ସାହିତ୍ୟ ବିଶାରଦ । ୧୯୩୧ରେ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ପ୍ରଥମଖଣ୍ଡକୁ ଓଡ଼ିଶାବାସୀଙ୍କୁ ଉପହାର ଦେଇ ସେ କହିଲେ—"ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଓଡ଼ିଆ ଜାତିର କୋଠ ସମ୍ପତ୍ତି, ମୁଁ ଉତ୍କଳମାତାର ଏକ ନଗଣ୍ୟ ଓ ଅଧମ ପୁତ୍ର ।"

ଏହି ନଗଣ୍ୟ ପୁତ୍ର ୧୯୧୩-୨୭ ଏହି ପନ୍ଦର ବର୍ଷ ମଧ୍ୟରେ ତଥ୍ୟ ସଂଗ୍ରହ ଓ ପାଣ୍ଡୁଲିପି କାମ ଶେଷ କରିଥିଲେ ଏବଂ ଗ୍ରନ୍ଥ ସମାପ୍ତି ୧୯୪୦ ପର୍ଯ୍ୟନ୍ତ ଜୀବନର ୨୭ବର୍ଷ ଆୟୁଷ କେବଳ ଏହି ଗ୍ରନ୍ଥ ପାଇଁ ପୂର୍ଣ୍ଣ ବିନିଯୋଗ କରିଥିଲେ ।

କଟକ ଉତ୍କଳ ସାହିତ୍ୟ ପ୍ରେସରୁ ବିଶ୍ୱନାଥ କରଙ୍କ ଦ୍ୱାରା ମୁଦ୍ରିତ ଏକଲକ୍ଷ ପଞ୍ଚାଅଶି ଶବ୍ଦ ସମ୍ବଳିତ ପ୍ରାୟ ଦଶହଜାର ପୃଷ୍ଠାର ଏହି ସାତଖଣ୍ଡିଆ ଭାଷାକୋଷର ପ୍ରଥମଖଣ୍ଡ 'ଅ ଠାରୁ ଔ' ବର୍ଣ୍ଣ ପର୍ଯ୍ୟନ୍ତ ଶବ୍ଦକୁ ନେଇ ୧୧୯୩ ପୃଷ୍ଠାରେ ୧୯୩୧ ସେପ୍ଟେମ୍ବର ମାସରେ ପ୍ରକାଶ ପାଇଥିଲା । ୨ୟ ଖଣ୍ଡ 'କ-ଙ' ପର୍ଯ୍ୟନ୍ତ, ପୃଷ୍ଠା ୧୧୯୪-୨୪୬୨ରେ ୧୯୩୨ ଅଗଷ୍ଟରେ; ୩ୟ ଖଣ୍ଡ 'ଚ' ଠାରୁ 'ଥ' ବର୍ଣ୍ଣ ପର୍ଯ୍ୟନ୍ତ ପୃଷ୍ଠା ୨୪୬୩-୩୬୨୪ରେ ୧୯୩୩ର ମଇ ମାସରେ, ୪ର୍ଥ ଖଣ୍ଡ 'ଦ' ଠାରୁ 'ପ' ବର୍ଣ୍ଣ ପର୍ଯ୍ୟନ୍ତ ପୃଷ୍ଠା ୩୬୨୫ ରୁ ୫୧୯୬ରେ ଜନ୍ ୧୯୩୪ରେ, ୫ମ ଖଣ୍ଡ 'ଫ' ଠାରୁ 'ମ' ପର୍ଯ୍ୟନ୍ତ ପୃଷ୍ଠା ୫୧୯୭ରୁ ୬୨୪୨ର ୧୯୩୬ ମାର୍ଚ୍ଚରେ, ୬ଷ୍ଠ ଖଣ୍ଡ 'ଯ' ଠାରୁ 'ଷ' ବର୍ଣ୍ଣ ପର୍ଯ୍ୟନ୍ତ ପୃଷ୍ଠା ୬୨୪୩ରୁ ୭୯୦୩ ର ୧୯୩୬ ଜୁନ୍‌ରେ ଓ ସପ୍ତମ ଖଣ୍ଡ 'ସ' ଠାରୁ 'ହ' ପର୍ଯ୍ୟନ୍ତ ୯୨୭୮ ପୃଷ୍ଠା ସଂପୂର୍ଣ୍ଣ ହୋଇ ୧୯୪୦ର ସେପ୍ଟେମ୍ବର ମାସରେ ପ୍ରକାଶ ପାଇଥିଲା ।

ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ମାନ୍ୟବର ସାର୍ ଜନ୍ ଅଷ୍ଟିନ୍ ହବାକ୍ ସାହେବ ଥିଲେ ଏ କ୍ଷେତ୍ରରେ ଗୋପାଳ ପ୍ରହରାଜଙ୍କର ସର୍ବପ୍ରଥମ ପ୍ରେରଣାଦାତା । ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ପ୍ରହରାଜ ଓଡ଼ିଶାର ବହୁ ରାଜା ମହାରାଜାଙ୍କଠାରୁ ଆର୍ଥିକ ପ୍ରୋତ୍ସାହନ ପାଇଥିଲେ । ଯାହା ଫଳରେ ତାଙ୍କର ଗ୍ରନ୍ଥ ସମ୍ପୂର୍ଣ୍ଣ ହେବା ସମ୍ଭବ ହୋଇ ପାରିଥିଲା । ଏଥିରେ ଓଡ଼ିଶାର ତତ୍କାଳୀନ ବହୁ ପଣ୍ଡିତ ଲେଖକ ତାଙ୍କର ସହଯୋଗୀ ଥିଲେ । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' କୋଷ ଓ ଜ୍ଞାନକୋଷର କାର୍ଯ୍ୟ କରିଥିବା ହେତୁ ଓଡ଼ିଆ ବିଜ୍ଞ ପାଠକର ସର୍ବାଧିକ ପ୍ରିୟ ଅଟେ । ଏଥିରେ ଗୋଟିଏ ଶବ୍ଦର ଏକାଧିକ ଭାଷାର ପ୍ରୟୋଗ, ଅର୍ଥବ୍ୟୁତ୍ପତ୍ତି, କବିଙ୍କ ସମ୍ପୃକ୍ତ ଶବ୍ଦଯୁକ୍ତ ପଂକ୍ତି ଉଦ୍ଧାର, ସ୍ଥାନ ବା ପାତ୍ରର ଚରିତ ବର୍ଣ୍ଣନା ତଥା ବିଶଦ ପରିଚୟ ପ୍ରଦାନ ହେତୁ କୋଷ ହୋଇ ମଧ୍ୟ ଏହା ପୂର୍ଣ୍ଣକୋଷ ବା ଜ୍ଞାନକୋଷର ମର୍ଯ୍ୟାଦା ପାଇପାରିଛି । ଗ୍ରନ୍ଥର ପୃଥୁଳତା ଦେଖି ଓଡ଼ିଶାର 'ନଆଁ ଖୁଣ୍ଟା' ଏହାକୁ 'ପାଳକୋଷ' କହି ଚଟୁଳତା ପ୍ରକାଶ କରିଥିଲେ ମଧ୍ୟ ଦେଶର ସ୍ୱାଧୀନତା ପୂର୍ବରୁ ଏପରି ଗ୍ରନ୍ଥର କଳ୍ପନା ଓ ପ୍ରସ୍ତୁତି ଥିଲା ଦୁଃସାହସିକ ପଦକ୍ଷେପ । ଆଜି ଓଡ଼ିଆ ଭାଷାର କୋଷପ୍ରଣୟନ ଇତିହାସରେ ଏହା ବିସ୍ମୟକର ଓ ଦୁଃସାଧ୍ୟ ବୋଲି ମଧ୍ୟ ପ୍ରମାଣିତ କରୁଛି ।

୧୯୫୧ରେ ପ୍ରଥମେ ପ୍ରକାଶିତ ଅକ୍ଷୟକୁମାର ଚକ୍ରବର୍ତ୍ତୀଙ୍କ 'ବିବିଧ ସାର ସଂଗ୍ରହ'ର ନୂତନ ପରିମାର୍ଜିତ ସଂସ୍କରଣ ୧୯୫୮ ରେ କଟକ ଟ୍ରେଡ଼ିଂକମ୍ପାନୀ ଦ୍ୱାରା

ହରନାଥ ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇବା ଏକ ବିଶେଷ ଘଟଣା । ଚକ୍ରବର୍ତ୍ତୀଙ୍କ ସଂକଳିତ ଖଣ୍ଡିକିଆ ଜ୍ଞାନକୋଷ ଆଠଟି ଭାଗରେ ବିଭକ୍ତ । ଏହାର ପ୍ରଥମ ଭାଗରେ ସୃଷ୍ଟିତତ୍ତ୍ୱ-ବେଦ-ଉପନିଷଦ୍-ଦର୍ଶନ-ଗୀତା-ପୁରାଣ-ଧର୍ମ ଓ ତନ୍ତ୍ରାଦି ବିଷୟ, ୨ୟ ଭାଗରେ ବିଭିନ୍ନ ଧର୍ମର ଆଶ୍ଚର୍ଯ୍ୟ, ୩ୟ ଭାଗରେ ଜ୍ୟୋତିଷତତ୍ତ୍ୱ, ୪ର୍ଥ ଭାଗରେ ଚିକିତ୍ସାବିଜ୍ଞାନ, ୫ମ ଭାଗରେ ପେଟେଣ୍ଟ ଔଷଧାବଳୀ ଶିଳ୍ପବିଧାନ-ବିବିଧ ପାକପ୍ରଣାଳୀ, ୬ଷ୍ଠ ଭାଗରେ ଜଗତ୍‌ସମ୍ବନ୍ଧୀୟ ଜ୍ଞାତବ୍ୟ ବିଷୟ, ୭ମ ଭାଗରେ ପୃଥିବୀର ରାଜ୍ୟମାନଙ୍କର ସଂକ୍ଷିପ୍ତ ବିବରଣୀ, ୮ମ ଭାଗରେ ଭାରତବର୍ଷ ଓ ଓଡ଼ିଶାର ବିଭିନ୍ନ ବିଷୟ ସହ ମନୀଷୀମାନଙ୍କ ଜୀବନୀ ସ୍ଥାନ ପାଇଛି ।

କଟକ ସାରସ୍ୱତ ସାହିତ୍ୟ ମନ୍ଦିର ପ୍ରକାଶିତ ଏବଂ ବାଳକୃଷ୍ଣ କରଙ୍କ ଦ୍ୱାରା ସମ୍ପାଦିତ 'ଶିଶୁ ସଙ୍ଗୀନ' ଜ୍ଞାନକୋଷ କ୍ଷେତ୍ରରେ ନୂତନତାର ବାର୍ତ୍ତାବହ । ପୂର୍ବ ଜ୍ଞାନକୋଷଗୁଡ଼ିକ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଥିଲାବେଳେ 'ଶିଶୁସଙ୍ଗୀନ' ଶିଶୁଜ୍ଞାନ-କୋଷର ଅଭାବ ପୂରଣ କରିଥିଲା । ପ୍ରଥମଖଣ୍ଡ ଭାବେ ୧୯୫୭ରେ ପ୍ରକାଶିତ ବିଚିତ୍ର ବିଶ୍ୱ ପୂର୍ବରୁ ବିଚିତ୍ର ଜୀବଜଗତ ଓ ବିଚିତ୍ର ଇତିହାସ ପ୍ରକାଶ ପାଇଥିଲା । ମୋଟ ୮ଖଣ୍ଡ ମଧ୍ୟରୁ ପ୍ରକାଶିତ ଏ ତିନିଖଣ୍ଡକୁ ବାଦ୍‌ଦେଲେ ବିଚିତ୍ର ବିଜ୍ଞାନ, ବିଚିତ୍ର ଉଦ୍ଭାବନ, ବିଚିତ୍ରଦେଶ ଓ ବିଚିତ୍ର ଶିଳ୍ପ ପ୍ରକାଶ ପାଇଥିଲେ ଓଡ଼ିଆ ଶିଶୁ ଜ୍ଞାନକୋଷ ପୂର୍ଣ୍ଣାଙ୍ଗ ହୋଇ ପାରିଥାନ୍ତା । କିନ୍ତୁ ତାହା ନାନା କାରଣରୁ ସମ୍ଭବ ହେଲା ନାହିଁ । ପରବର୍ତ୍ତୀ ସମୟରେ ଶିଶୁ ସାହିତ୍ୟିକ ଏବଂ 'ସଂସାର' ପତ୍ରିକାର ସମ୍ପାଦକ ଶ୍ରୀ ରାମକୃଷ୍ଣ ନନ୍ଦ 'ବିଶ୍ୱ-ପରିଚୟ' ନାମକ ଏକ ଜ୍ଞାନକୋଷ ପ୍ରକାଶ କରି ଶିଶୁ-ଜ୍ଞାନ-ସାହିତ୍ୟକୁ ପୁଷ୍ଟ କରିଥିଲେ ।

ଲାଲ ମାଧବଙ୍କଠାରୁ ଏପର୍ଯ୍ୟନ୍ତ ପ୍ରକାଶିତ ଜ୍ଞାନକୋଷ ଥିଲା କୌଣସି ନା କୌଣସି ଦିଗରୁ ଅପୂର୍ଣ୍ଣ । ତେଣୁ ପରିପୂର୍ଣ୍ଣ ଏକ ବାସ୍ତବ ଜ୍ଞାନକୋଷ ପ୍ରସ୍ତୁତ କରି ଓଡ଼ିଆ ଭାଷାର ମହତ୍ତ୍ୱ ପ୍ରତିପାଦନ କରିବା ସ୍ୱପ୍ନ ଦେଖିଥିଲେ ସୁଲେଖକ ଓ ସ୍ୱାଧୀନତା ସଂଗ୍ରାମୀ ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ ବ୍ରହ୍ମପୁର ଜେଲ ଜୀବନରେ, ୧୯୫୨ରେ । ଜେଲ୍ ମଧ୍ୟରେ ଏହାର ପରିକଳ୍ପନା ଓ ରୂପରେଖ ଆରମ୍ଭ ହୋଇଥିଲେ ମଧ୍ୟ ବିଧିବଦ୍ଧଭାବେ କାମ ହେଲା ୧୯୫୪ରେ ବାରବାଟୀ ଷ୍ଟାଡ଼ିୟମର ଏକ କୋଠରୀରେ । ୧୯୬୧ରେ ପ୍ରଥମଖଣ୍ଡ ପ୍ରକାଶ ପାଇବା ପରେ ତାଙ୍କର ସ୍ୱପ୍ନ ପହଞ୍ଚିଲା ଅଗଣିତ ଓଡ଼ିଆ ପାଠକ ପାଖରେ । କ୍ରମେ ସ୍ୱପ୍ନ ସାର୍ଥକ ହେବା ଆଶା ଦେଖାଦେଲା । ୭୫ ଖଣ୍ଡରେ ପ୍ରକାଶ ପାଇବାକୁ ଥିବା 'ଜ୍ଞାନମଣ୍ଡଳ'ର ପ୍ରାୟ ୪୪ଖଣ୍ଡ ଅଦ୍ୟାବଧି ପ୍ରକାଶ ପାଇପାଇଛି ଏବଂ ଅନ୍ୟ ଖଣ୍ଡଗୁଡ଼ିକ ଶୀଘ୍ର ପ୍ରକାଶ ହେବାକୁ ଯାଉଛି ।

ଦୀର୍ଘଦିନର ଏକନିଷ୍ଠ ସାଧନା ଓ ଅଧ୍ୟବସାୟ ତଥା ଏକକ ଉଦ୍ୟମରେ ରଚିତ ଏହି ମହାନ୍ କାର୍ଯ୍ୟ ସ୍ରଷ୍ଟା ବିନୋଦ କାନୁନ୍‌ଗୋଙ୍କ ୧୯୯୦ରେ ଦେହାନ୍ତ ପରେ ମଧ୍ୟ ପୂର୍ଣ୍ଣ ହେବା ଆଶା ଓଡ଼ିଆ ପାଠକ ମନରେ ରହିଛି । ତିରିଶି ହଜାର ଫାଇଲ୍ ମଧ୍ୟରେ କାନୁନ୍‌ଗୋଙ୍କ ପରିକଳ୍ପିତ ଜ୍ଞାନମଣ୍ଡଳ ଓ ଦିନକୁ ଖଣ୍ଡରେ ୩୭୫ ଖଣ୍ଡ ସହ ପ୍ରାୟ

ପାଞ୍ଚଶହ କ୍ଷୁଦ୍ର ପୁସ୍ତକର ପାଣ୍ଡୁଲିପି ବୈଜ୍ଞାନିକ ଢଙ୍ଗରେ ସଜ୍ଜିତ ଥିବାରୁ, ଏହାର କାର୍ଯ୍ୟ ସମ୍ପୂର୍ଣ୍ଣ ହେବାରେ ସହାୟକ ହେବ ।

ନିରଳସ ସାଧକ ବିନୋଦ କାନୁନ୍‌ଗୋଙ୍କ 'ଜ୍ଞାନମଣ୍ଡଳ' ଯଥାର୍ଥରେ ଜ୍ଞାନକୋଷ ପଦବାଚ୍ୟ । 'ଇନ୍‌ସାଇକ୍ଲୋ ପିଡ଼ିଆ'ର ଅର୍ଥାନୁସାରେ ଏନ୍-ଭିତରେ, ସାଇକ୍ଲୋ-ଚକ୍ର, ପିଡ଼ିଆ-ଜ୍ଞାନ ଅର୍ଥାତ୍ ଚକ୍ରଭିତରେ ଜ୍ଞାନ ବା ଜ୍ଞାନଚକ୍ରକୁ ଠିକ ମାନିଁଚ କରି 'ଜ୍ଞାନମଣ୍ଡଳ' ନାମ ସେ ରଖିଥିଲେ । ନାମ ଓ କାମରେ ସେ ପ୍ରକୃତ 'ଇନ୍ ସାଇକ୍ଲୋ ପିଡ଼ିଆ'ର ରୂପ ଦେଇ ତଥ୍ୟପୂର୍ଣ୍ଣ କରିଛନ୍ତି । ଅକାରାଦି କ୍ରମରେ ବିଭିନ୍ନ ବିଷୟର ସୁଲଳିତ ଭାଷା ଓ ରୁଚିକର ଶୈଳୀରେ ବର୍ଣ୍ଣନା ସାଧାରଣ ପାଠକକୁ ମଧ୍ୟ ଆକର୍ଷିତ କରିବାରେ ସମର୍ଥ ହୋଇଛି ।

ଏକକ ଉଦ୍ୟମରେ ଏପରି କାର୍ଯ୍ୟ ଅସମ୍ଭବ, ଓଡ଼ିଆ ଭାଷାରେ ବିଜ୍ଞାନର ସକଳ ବିଭାଗର ଭାବ ପରିସ୍ଫୁଟନ ଦୁଃସାଧ୍ୟ ପ୍ରଭୃତି ନାସ୍ତିବାଚକ ମତକୁ ଖଣ୍ଡନ କରି ସେ ଯେଉଁ ଦୁଇଟି ମନ୍ତବ୍ୟ ଦେଇଥିଲେ ତାହା ହିଁ ତାଙ୍କ ଉପରେ ଆମର ଶେଷ ମନ୍ତବ୍ୟ । ସେ କହିଥିଲେ—(କ) "ଅନ୍ଧାର ଅନ୍ଧାର ବୋଲି ପାଟି କରିବା ଅପେକ୍ଷା ଦୀପଟିଏ ଜାଳି ଦେଲେ ଟିକିଏ ଆଲୁଅ ତ ହେବ । ମୁଁ ଖାଲି ଦୀପଟିଏ ଜାଳିଦେଇଛି ।" (ଖ)— "ଦେଉଳକୁ ଯିବା ପାଇଁ ମୁଁ ସବୁଠାରୁ ତଳ ପାହାଚଟିଏ ତିଆରି କରିଦେଇଛି । ତାରି ଉପରେ ଠିଆ ହୋଇ କାରିଗରମାନେ ଅନ୍ୟ ପାହାଚଗୁଡ଼ିକୁ ତିଆରି କରିବେ ।" ବାସ୍ତବିକ ଜ୍ଞାନର ଖାଲି ଦୀପଟିଏ ସେ ଜାଳି ଦେଇଛନ୍ତି ଏବଂ ଗନ୍ତବ୍ୟ ପଥରେ ଇଷ୍ଟଦର୍ଶନର ସର୍ବପ୍ରଥମ ସୋପାନଟିକୁ ସେ ଗଢ଼ିଦେଇ ଅନ୍ୟ ଦାୟିତ୍ୱ ଭାବୀ ନୂତନ ଶିଳ୍ପୀଙ୍କ ଉପରେ ଛାଡ଼ି ଦେଇଛନ୍ତି । ଜ୍ଞାନମଣ୍ଡଳକୁ ଆଦର୍ଶକରି ଓଡ଼ିଆଭାଷାକୁ ବିଶ୍ୱଦରବାରରେ ପହଞ୍ଚାଇବା ଓ ବିଶ୍ୱର ଏକ ମହତ୍ କାର୍ଯ୍ୟଧାରାକୁ ଓଡ଼ିଆଭାଷାରେ ପରିକଳ୍ପନା କରିବା ଏ ଦୁଇଟି ଲକ୍ଷ୍ୟର ଦିଗ ସେ ସବୁଦିନ ପାଇଁ ଉନ୍ମୋଚନ କରିଛନ୍ତି ।

କଟକ କୁ କେନ୍ଦ୍ର କରି କଳ୍ପିତ ଏବଂ ପ୍ରକାଶିତ ଓଡ଼ିଆ ଜ୍ଞାନକୋଷର ପରମ୍ପରାରେ ଡଃ ମାନସିଂହଙ୍କ ଉଦ୍ୟମ ସହ ଉତ୍କଳ ବିଶ୍ୱବିଦ୍ୟାଳୟର ୧୯୬୩-୬୫ ମଧ୍ୟରେ ୪ ଖଣ୍ଡରେ ପ୍ରକାଶିତ ଏବଂ କଟକର ପ୍ରଜାତନ୍ତ୍ର ପ୍ରେସ୍ ଓ ଗୋସ୍ୱାମୀ ପ୍ରେସ୍‌ରେ ମୁଦ୍ରିତ 'ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ'କୁ ମଧ୍ୟ ସ୍ମରଣ କରିବା ଅପ୍ରାସଙ୍ଗିକ ହେବ ନାହିଁ ।

କଟକ ନଗର ଭିନ୍ନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଆଜି ଅତ୍ୟାଧୁନିକ ପ୍ରକାଶନ-ଶିଳ୍ପ ଅଦ୍ଭୁତ ଓ ପ୍ରତିଷ୍ଠିତ ଥିଲେ ମଧ୍ୟ କଟକର ଅତୀତ ପାଇଁ ଆମେ ଗର୍ବ କଲାପରି ଅତୀତର ଶବ୍ଦ କୋଷ ଓ ଜ୍ଞାନକୋଷ ପ୍ରଣୟନ ଦିଗରେ ନଗର କଟକର ମହତ୍ତ୍ୱକୁ ଭବିଷ୍ୟନାଗରିକ ନିଶ୍ଚୟ ଉପଲବ୍‌ଧି କରିବେ । ଆଗାମୀ ଭବିଷ୍ୟତ ପାଇଁ ଅତୀତର କଟକ ହେବ ସଂସ୍କୃତି-ସାହିତ୍ୟ-କୋଷ-ଜ୍ଞାନକୋଷ ପାଇଁ ଉଦ୍‌ଯୋଗପର୍ବର ପ୍ରଥମ ଭିତ୍ତିଭୂମି । ଓଡ଼ିଆ ଜ୍ଞାନକୋଷର ଏନ୍‌ଡ଼ିଶାନ । ଭବିଷ୍ୟତରେ ଜ୍ଞାନର ସ୍ଫୁରଣ ହେତୁ ଅଧିକରୁ ଅଧିକ ସୁସମୃଦ୍ଧ ଓ ଉନ୍ନତ ହେବ ଓଡ଼ିଆ ଭାଷା ସାହିତ୍ୟ, ରଚିତ ହେବ କୋଷ ଓ ଜ୍ଞାନକୋଷ କିନ୍ତୁ ଆଗାମୀ ବନ୍ଧୁଦିନ ପାଇଁ ଏଥିପାଇଁ ମନରେ ଆସିବ ଡାକ, ନଗର କଟକ !



# 'ଜ୍ଞାନମଣ୍ଡଳ'ର ଜନ୍ମ କାହାଣୀ

**ଶ୍ରୀ ପାବକ କାନୁନ୍‌ଗୋ**

ଯେତେବେଳେ ନିଶ୍ଚିତ ଭାବରେ ସ୍ୱୀକୃତ ହୋଇଗଲା ଯେ ମାନବ ଜ୍ଞାନର ପ୍ରତ୍ୟେକ ବିଭାଗ ଅନ୍ୟ ବିଭାଗଗୁଡ଼ିକ ସହିତ ଅଳ୍ପ ବହୁତେ ସମ୍ପୃକ୍ତ ଓ ଗୋଟିକୁ ସମ୍ପୂର୍ଣ୍ଣ ରୂପେ ବାଦ ଦେଇ ଅନ୍ୟଟି ବିଷୟରେ ବିଜ୍ଞାନସମ୍ମତ ପ୍ରଣାଳୀରେ ଆଲୋଚନା କରାଯାଇ ପାରିବ ନାହିଁ, ସେତେବେଳେ ଅନୁଭବ କରାଗଲା ଯେ ଗୋଟିଏ ପୁସ୍ତକର କଳେବରରେ ଜ୍ଞାନର ପ୍ରତ୍ୟେକ ବିଭାଗର ପରିଚୟ ଗୁଣା ଅଧିକେ ରହିବା ଅତି ମାତ୍ରାରେ ଆବଶ୍ୟକ । ସେହି ଅନୁଭବରୁ ଜନ୍ମନେଲା ଏନ୍‌ସାଇକ୍ଲୋପିଡ଼ିଆ ବା ଜ୍ଞାନ-ମଣ୍ଡଳ । ଗତ କେତେହଜାର ବର୍ଷ ଭିତରେ ପୃଥିବୀର ବହୁ ସାଧକ, ମୁନି, ଋଷି, ବିଜ୍ଞାନୀ, ଦାର୍ଶନିକ, ପଣ୍ଡିତ, କବି, ଲେଖକ ଓ ରାଜନୀତିଜ୍ଞ ପ୍ରଭୃତି ଏହି ମନୁଷ୍ୟ ସମାଜ ପାଇଁ ଯାହା ସବୁ କରିଯାଇଛନ୍ତି ବା ଯେଉଁ ଅମୂଲ୍ୟ ଦାନ ଦେଇଯାଇଛନ୍ତି ତାର ଗୋଟାଏ ମୋଟାମୋଟି ଧାରଣା ଏହି ଗ୍ରନ୍ଥରୁ ମିଳିପିବ । ମନୁଷ୍ୟ ଜାତିର ଚିନ୍ତାଧାରା, ବିବେକବାଣୀ, ଜ୍ଞାନ, ଅନୁଭୂତି ଓ ସାଂସ୍କୃତିକ ସାଧନାର କ୍ରମପରିଣତି, ଭ୍ରାନ୍ତି ଓ ପ୍ରଗତିର ଇତିହାସ ଏହି ବିଶ୍ୱକୋଷ ବା ଜ୍ଞାନମଣ୍ଡଳରୁ ମିଳିଥାଏ । ଏନ୍‌ସାଇକ୍ଲୋପିଡ଼ିଆର ଅର୍ଥ ହେଲା 'ଶିକ୍ଷା ବା ଜ୍ଞାନର ଚକ୍ର ବା ମଣ୍ଡଳ ଭିତରେ ।' ଏଭଳି ନାମକରଣର ସାର୍ଥକତା ଏଇଥିପାଇଁ ଯେ କେବଳ ଗୋଟିଏ ପୁସ୍ତକରୁ ଆମେ ପାଇପିବୁ ମନୁଷ୍ୟ ଜ୍ଞାନର କ୍ରମବିକାଶର ପରିଚୟ ।

ଏହା କହିବା ଅନାବଶ୍ୟକ ଯେ କୌଣସି ସଭ୍ୟ ଜାତିର ଭାଷା ବିଶ୍ୱକୋଷ ଶୂନ୍ୟ ହୋଇ ରହିବା ଉଚିତ ନୁହେଁ । ଜ୍ଞାନର ପୀଠ ଉପରେ ହିଁ ଗୋଟିଏ ଜାତି ଗୌରବ ସହକାରେ ଠିଆ ହୋଇ ରହିପାରେ । ମାନବ ଜ୍ଞାନର ସବୁପ୍ରଦେଶକୁ ପ୍ରତିବିମ୍ବିତ କରି ଗୋଟିଏ ସୁଲିଖିତ ପ୍ରାମାଣିକ ଏନ୍‌ସାଇକ୍ଲୋପିଡ଼ିଆ ଜାତି ପକ୍ଷରେ ଏହିପରି ଏକ ଜ୍ଞାନପୀଠ । ତେଣୁ ମଣିଷର ଏହି ଜ୍ଞାନପିପାସା ତୃପ୍ତ କରିବା ପାଇଁ ମାନବ ଜ୍ଞାନର ପ୍ରତ୍ୟେକ ବିଭାଗର ପରିଚୟ ଦେଲାଭଳି ଏକ ଜ୍ଞାନମଣ୍ଡଳ ବା ଏନ୍‌ସାଇକ୍ଲୋପିଡ଼ିଆ ସେଟ୍ ପ୍ରଣୟନ କରିବା ପ୍ରତ୍ୟେକ ଦେଶର ଜାତୀୟ କର୍ତ୍ତବ୍ୟ ହୋଇପଡ଼ିଛି । ନିଜର ଜ୍ଞାନମଣ୍ଡଳ ଅଛି ବୋଲି ଯେଉଁ ଭାଷା ପ୍ରମାଣ କରିପାରେ ନାହିଁ ତାହା ପାଇଁ ପୃଥିବୀର ସାହିତ୍ୟ ଦରବାରରେ ସ୍ୱତନ୍ତ୍ର ସମ୍ମାନଜନକ ଆସନ ଆଶା କରିହେବ ନାହିଁ ।

ଆଧୁନିକ ଏନ୍‌ସାଇକ୍ଲୋପିଡ଼ିଆର ଜନ୍ମ ପ୍ରାୟ ଦୁଇଶହ ବର୍ଷ ତଳେ ହୋଇଥିଲା । ଭାଷା ତଥା ସାହିତ୍ୟ ଇତିହାସରେ ଦୁଇଶହ ବର୍ଷଟା ସେଭଳି କିଛି ଦୀର୍ଘକାଳ ନୁହେଁ । କିନ୍ତୁ ମନୁଷ୍ୟର ଚିନ୍ତାରାଜ୍ୟରେ ଏହି ଧରଣର ପୁସ୍ତକ ଗୋଟାଏ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଛି । ଏହାଠାରୁ ପଣ୍ଡିତମାନେ କ'ଣ ଆଶା ରଖୁଛନ୍ତି ତାହାର ସୂଚନା ମିଳିବ ଏଚ୍. ଜି. ୱେଲ୍‌ସଙ୍କ ମତରୁ । ସେ ଲେଖିଛନ୍ତି—"ଏନ୍‌ସାଇକ୍ଲୋପିଡ଼ିଆ ବହିଗୁଡ଼ିକ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଥିବ । ପାଠକ ସେଥିଭିତରୁ ଯେତେବେଳେ ଇଚ୍ଛା କରିବେ ସହଜରେ ପାଇଯିବେ ଜ୍ଞାନର ସମସ୍ତ ବିଭାଗର ନିର୍ଭୁଲ ତଥ୍ୟ । ମାନବ ସମାଜର ତଥା ପୃଥିବୀର ଇତିହାସ ଓ ବିଶ୍ୱବ୍ରହ୍ମାଣ୍ଡ ଜ୍ଞାନ ତାଙ୍କୁ ମିଳିଯିବ ସେ ବୁଝିଲା ଭଳି ଭାଷାରେ । ସେଥିରେ ଯାହା ଲେଖାଯାଇଥିବ ତାକୁ ବୁଝିବା ପାଇଁ ପାଠକଙ୍କୁ ଯେପରି ଗୁଡ଼ାଏ ମାନସିକ କସରତ କରିବାକୁ ପଡ଼ିବ ନାହିଁ । ଦୁନିଆର ଶ୍ରେଷ୍ଠ ମନୀଷୀମାନେ କିଭଳି ଚିନ୍ତା କରୁଛନ୍ତି ତାହା ସେ ଜାଣିପାରିବେ ସେହି ପୁସ୍ତକରୁ । ପୃଥିବୀର ବହୁ ବୁଦ୍ଧିଜୀବୀଙ୍କର ଏହି ବିଶ୍ୱ ଏନ୍‌ସାଇକ୍ଲୋପିଡ଼ିଆକୁ କିଛି ନା କିଛି ଦାନ ଥିବ । ଏହା ହୋଇଥିବ ଗୋଟିଏ ଜୀବନ୍ତ ପୁସ୍ତକ । ଏହାର ବୃଦ୍ଧି ଚାଲିଥିବ । ପୃଥିବୀର ଭାବୁକମାନେ ସେମାନଙ୍କର ଜ୍ଞାନଜଳ ସିଞ୍ଚି ଏହି ବର୍ଦ୍ଧିଷ୍ଣୁ ଜ୍ଞାନବୃକ୍ଷକୁ ବଞ୍ଚାଇ ରଖିଥିବେ । ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଓ ଗବେଷଣା କେନ୍ଦ୍ର ଏହା ପାଇଁ ଖାଦ୍ୟ ଯୋଗାଇ ଦେଉଥିବେ । ଏଇଟି ହେବ ପୃଥିବୀର ଓ ମାନବ ସଂସ୍କୃତିର ଶ୍ରେଷ୍ଠ ପୁରାଣ । ଏପରି ପୁସ୍ତକଟି ସମଗ୍ର ପୃଥିବୀକୁ ଗୋଟିଏ ମାନସିକ ତଥା ବୌଦ୍ଧିକ ରଜ୍ଜୁରେ ବାନ୍ଧି ଦେଇଥିବେ ।"

ଯେକୌଣସି ଉନ୍ନତ ଭାଷାରେ ତିନିପ୍ରକାରର ଏନ୍‌ସାଇକ୍ଲୋପିଡ଼ିଆ ରହିବା ଉଚିତ । ଗୋଟିଏ ହେବ—ଯେଉଁମାନେ ଭଲ ପଢ଼ାଶୁଣା କରିଛନ୍ତି ସେହିମାନଙ୍କୁ ସବୁ ବିଷୟରେ ଜଣାଇବା ପାଇଁ । ତାକୁ କୁହାଯାଏ ରେଫରେନ୍‌ସ ଏନ୍‌ସାଇକ୍ଲୋପିଡ଼ିଆ । ବିଶେଷଜ୍ଞମାନେ ହିଁ ତାକୁ ଲେଖନ୍ତି । ଦ୍ୱିତୀୟ ପ୍ରକାରଟିକୁ କୁହାଯାଏ ଶିଶୁ ବା କିଶୋର ଜ୍ଞାନମଣ୍ଡଳ ବା ଚିଲ୍‌ଡ୍ରେନ୍‌ସ ଏନ୍‌ସାଇକ୍ଲୋପିଡ଼ିଆ । ଏଥିରେ ପିଲାମାନେ ବୁଝିଲା ଭାଷାରେ କେତେଗୁଡ଼ିଏ କଥା ଦିଆଯାଇଥାଏ । ଆଉ ଗୋଟିଏ ହେଉଛି ଜନସାଧାରଣଙ୍କ ଉଦ୍ଦେଶ୍ୟରେ । ସେଇଟିକୁ 'ଜନପ୍ରିୟ', 'ସୁଖପାଠ୍ୟ' ବା 'ସହଜବୋଧ'—ଯେକୌଣସି ନାମ ଦିଆଯାଇପାରେ । ଇଂରାଜୀରେ କୁହାଯାଏ 'ପପୁଲାର୍ ଏନ୍‌ସାଇକ୍ଲୋପିଡ଼ିଆ ।' ଏଇଟି ବିଷୟରେ ଲକ୍ଷ ଲକ୍ଷ ଲୋକ ଆଗ୍ରହୀ ହେବା ସ୍ୱାଭାବିକ ।

ଯେଉଁ ସମୟରେ ପୃଥିବୀର ସବୁ ଉନ୍ନତ ଦେଶରେ ବିଶ୍ୱକୋଷ ସବୁ ରଚିତ ହୋଇଛି ସେହି ସମୟରେ ଭାରତ ଥିଲା ପରାଧୀନ । ଇଂରେଜ ସରକାର ଏ ଦେଶରେ କୌଣସି ଭାରତୀୟ ଭାଷାରେ ବିଶ୍ୱକୋଷ ପ୍ରଣୟନ ଦିଗରେ ମନ ବଳାଇଲେ ନାହିଁ କି ଯେଉଁମାନେ ଉଦ୍ୟମ ଆରମ୍ଭ କଲେ ସେମାନଙ୍କୁ କୌଣସି ପ୍ରକାର ପ୍ରୋତ୍ସାହନ ମଧ୍ୟ ମିଳିଲା ନାହିଁ । ସେତେବେଳେ ଭାରତରେ ଇଂରାଜୀ ପଢ଼ୁଆ ଲୋକଙ୍କ ଭିତରେ ଗୋଟାଏ ଧାରଣା ଏକପ୍ରକାର ବଦ୍ଧମୂଳ ହୋଇଗଲାଣି ଯେ କୌଣସି ଭାରତୀୟ ଭାଷାରେ ବିଜ୍ଞାନ

ସମ୍ପର୍କୀୟ ଭାବ ପ୍ରକାଶ କରିବା ସହଜ ନୁହେଁ । କେବଳ ସେତିକି ନୁହେଁ, ଅର୍ଥନୀତି, ସମାଜନୀତି ଭଳି ଅଣବିଜ୍ଞାନ ବିଷୟରେ ମଧ୍ୟ ଭାରତୀୟ ଭାଷାରେ ଲେଖିହେବ ନାହିଁ ।

ଊନବିଂଶ ଶତାବ୍ଦୀ ଶେଷ ହୋଇ ଆସିଲା ବେଳକୁ ନଗେନ୍ଦ୍ରନାଥ ବସୁ ଏ ଦିଗରେ ଉଦ୍ୟମ ଆରମ୍ଭ କଲେ । ବଙ୍ଗଳା ଭାଷାରେ ବିଶ୍ୱକୋଷ ୨୨ ଖଣ୍ଡରେ ୧୯୧୧ରେ ପ୍ରକାଶିତ ହେଲା । ଏହି ସେଟ୍‌ଟି ପରେ ହିନ୍ଦୀରେ ଅନୁଦିତ ହେଲା । ୧୯୧୮ରେ ପଣ୍ଡିତ ଗୋପବନ୍ଧୁ ଅତି ଦୁଃଖଭରା ଭାଷାରେ ଲେଖିଥିଲେ ଯେ, ଗୋଟିଏ ବିଶ୍ୱକୋଷ ଯେଉଁ ଭାଷାରେ ପ୍ରକାଶିତ ହୋଇ ନପାରୁଛି ସେହି ଭାଷା ପୃଥିବୀର ଭାଷା-ଦରବାରରେ ଉପଯୁକ୍ତ ସ୍ଥାନ ପାଇବା ପାଇଁ ଦାବୀ କରିପାରିବ ନାହିଁ । ସେହିକଥା ଅନୁଭବ କରି ବଙ୍ଗାଳୀମାନେ ବିଶ୍ୱକୋଷ ରଚନା କରିସାରିଲେଣି । କିନ୍ତୁ ଓଡ଼ିଆ ଭାଷାରେ ଏଭଳି ଏକ ପୁସ୍ତକ ଯେ; ପ୍ରକାଶ ପାଇବ ଏ ସ୍ୱପ୍ନ କିଏ ବା କାହିଁକି ଦେଖିବ ? ତାଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା ମାସିକ ସତ୍ୟବାଦୀ ପତ୍ରିକାର ଆଲୋଚନା ବିଭାଗରେ (୧୩୨୫-୨୬ ସାଲ) ସେ ଲେଖିଥିଲେ—ପ୍ରତିଭାଶାଳୀ ସାଧନ ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିଭଳି ଯୁଗାନ୍ତର ଘଟାଇଥାନ୍ତି । ସେପରି ମହାପୁରୁଷଙ୍କ ଚାରିପାଖେ କେତେଗୁଡ଼ିଏ ସହଯୋଗୀ ସ୍ୱତଃ ଆସି ମିଳିଯାନ୍ତି । ଏକ ଅଭିନବ ଚିନ୍ତା ଓ କର୍ମର ସ୍ରୋତ ସର୍ବତ୍ର ପ୍ରବାହିତ ହୁଏ ।

ପଞ୍ଚସଖାଙ୍କ ଅଭ୍ୟୁଦୟ ବେଳେ ଓଡ଼ିଶାରେ ଏପରି ପ୍ରବାହ ଥରେ ଦେଖା ଦେଇଥିଲା । ମାତ୍ର ଏପରି ଯୁଗ ସବୁ ଜାତିର ଭାଗ୍ୟରେ ସହଜରେ ଆସେ ନାହିଁ । ପ୍ରତିଭାର ବିକାଶ ସାଧାରଣତଃ ସବୁବେଳେ ସର୍ବତ୍ର ଘଟେ ନାହିଁ । ଅଧିକ ଭାଗ କାର୍ଯ୍ୟ ପୃଥିବୀର ସବୁ କ୍ଷେତ୍ରରେ ଅଧ୍ୟବସାୟ, ସହଯୋଗିତା ଏବଂ ନୈଷ୍ଠିକତା ପ୍ରଭାବରେ ହୋଇଥାଏ । ଏ ଉପାଦାନ ମଧ୍ୟ ଓଡ଼ିଶାରେ ଏକାନ୍ତ ଅଭାବ । ଓଡ଼ିଶାରେ ଧନ ସଙ୍ଗରେ ବିଦ୍ୟାର ଯୋଗ ନାହିଁ । ପୁଣି ଧନୀ ଓ ଜ୍ଞାନୀମାନଙ୍କର ନିଜ ମଧ୍ୟରେ ସହଯୋଗିତା ନାହିଁ । ଏନ୍‌ସାଇକ୍ଲୋପିଡ଼ିଆ ଭଳି କାର୍ଯ୍ୟ ଭିନ୍ନ ଭିନ୍ନ ଦେଶରେ ସାହିତ୍ୟ ରାଜ୍ୟରେ ସମ୍ପାଦିତ ହେଉଛି । ଆମ୍ଭମାନଙ୍କ ଆଖିଆଗରେ ବଙ୍ଗ ଦେଶରେ ବିଶ୍ୱକୋଷ ସଙ୍କଳିତ ହୋଇଅଛି । କିନ୍ତୁ ନିକଟ ଭବିଷ୍ୟତରେ ସେଭଳି ଗୋଟିଏ କାର୍ଯ୍ୟ ସ୍ୱପ୍ନରେ ମଧ୍ୟ ଆଶା କରାଯାଇ ପାରେ କି ?

ସମଗ୍ର ଭାରତରେ ଏକ ସମୟରେ ଯେଉଁ ଉଦ୍ୟମ ଆରମ୍ଭ ହେଲା ତାହାର ଅଂଶବିଶେଷ ଭାବରେ ଓଡ଼ିଆ ଭାଷାରେ ଗୋଟିଏ ବିଶ୍ୱକୋଷ ପ୍ରଣୟନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାୟିତ୍ୱ ଦିଆଯାଇଥିଲା । କେତେକ ଅପରିହାର୍ଯ୍ୟ କାରଣରୁ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ପ୍ରକାଶିତ ହୋଇପାରିଲା ନାହିଁ । କିନ୍ତୁ ଯେଉଁମାନେ ଏ ଦିଗରେ ଉଦ୍ୟମ କରୁଥିଲେ ସେମାନେ ୩୨୦୦ ପୃଷ୍ଠାରେ ଗୋଟିଏ ସଂକ୍ଷିପ୍ତ ବିଶ୍ୱକୋଷ ଚାରିଖଣ୍ଡରେ ପ୍ରକାଶ କରିଦେଲେ । ପ୍ରଥମ ଖଣ୍ଡଟି ପ୍ରକାଶ ପାଇଥିଲା ୧୯୬୨ରେ । ଏହାର ନାମ

ଲେଖାଯାଇଥିଲା ଜ୍ଞାନକୋଷ । ଶ୍ରୀ ରାମକୃଷ୍ଣ ନନ୍ଦ ଏକକ ପ୍ରଚେଷ୍ଟାରେ ଗୋଟିଏ ଭଲ୍ୟୁମରେ ସଂକ୍ଷିପ୍ତ ବିଶ୍ୱକୋଷ ପ୍ରକାଶ କରି ତାହାର ନାମ ରଖିଛନ୍ତି ବିଶ୍ୱ ପରିଚୟ ।

## 'ଜ୍ଞାନମଣ୍ଡଳ'ର ଜନ୍ମ :

ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ, ଦେଶସେବୀ, ଗାନ୍ଧିବାଦୀ ଓ ଶିଶୁ ସାହିତ୍ୟିକ ଶ୍ରୀ ବିନୋଦ କାନୁନ୍‌ଗୋ ୧୯୫୪ ଜାନୁୟାରୀ ପନ୍ଦର ଦିନ ସ୍ଥିର କଲେ ଓଡ଼ିଆ ଭାଷାରେ ଗୋଟିଏ ପପୁଲାର ବା ସୁଖପାଠ୍ୟ ଏନ୍‌ସାଇକ୍ଲୋପିଡ଼ିଆ ପ୍ରଣୟନ ପାଇଁ । ସେ ଏହାର ନାମ ରଖିଲେ ଜ୍ଞାନମଣ୍ଡଳ । ଏନ୍‌ସାଇକ୍ଲୋପିଡ଼ିଆ ବୋଲି ଯେଉଁ ଶବ୍ଦ ଅଛି ତାହା ତିନୋଟି ଗ୍ରୀକ୍‌ଶବ୍ଦକୁ ନେଇ ଗଠିତ । 'ଏନ୍'ର ଅର୍ଥ ହେଲା ଭିତରେ, 'ସାଇକ୍ଲୋ' ଶବ୍ଦର ଅର୍ଥ ସାର୍କଲ ବା ବୃତ୍ତ ଏବଂ ପିଡ଼ିଆ' ଶବ୍ଦର ଅର୍ଥ ଶିକ୍ଷା ବା ଜ୍ଞାନ । ତେଣୁ ଏନ୍‌ସାଇକ୍ଲୋପିଡ଼ିଆର ଅର୍ଥ ହେଲା ଜ୍ଞାନର ବୃତ୍ତ ବା ଚକ୍ର । ଶ୍ରୀ କାନୁନ୍‌ଗୋ ଅନୁଭବ କଲେ ଯେ ଏନ୍‌ସାଇକ୍ଲୋପିଡ଼ିଆକୁ 'ବିଶ୍ୱକୋଷ' ବୋଲି ଅନୁବାଦ ନକରି ଜ୍ଞାନମଣ୍ଡଳ କହିବା ଅଧିକ ଠିକ୍ ହେବ । ୧୯୬୦ ଡିସେମ୍ବର ୨ ତାରିଖ ଦିନ ପ୍ରଥମ ଖଣ୍ଡ ଜ୍ଞାନ-ମଣ୍ଡଳକୁ ଉଦ୍‌ଘାଟନ କଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ।

୧୯୪୨ରେ ଭାରତ ଛାଡ଼ ଆନ୍ଦୋଳନ ବେଳେ ବ୍ରହ୍ମପୁର ଜେଲରେ ବନ୍ଦୀ ଜୀବନ କଟାଉଥିଲା ବେଳେ ଓଡ଼ିଆ ଭାଷାରେ ଗୋଟିଏ ସେଟ୍ ସୁଖପାଠ୍ୟ ବିଶ୍ୱକୋଷ ରଚନା କରିବାର ପରିକଳ୍ପନା ଶ୍ରୀ କାନୁନଗୋ କରିଥିଲେ । ଏ ଦିଗରେ ଜେଲ ଭିତରୁହିଁ ସେ ପ୍ରସ୍ତୁତି ଆରମ୍ଭ କରିଦେଇଥିଲେ । ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଛି । କାଗଜ ମିଳୁନାହିଁ । ବିନୋଦ ବାବୁ ଗୋଟିଏ ଅଭିନବ ଉପାୟ ବାହାରକଲେ । ତାଙ୍କ ସହିତ କେତେଜଣ ବିଧାନସଭାର ସଭ୍ୟ ସହବନ୍ଦୀ ଥାଆନ୍ତି । ନିୟମ ଅନୁସାରେ ବିଧାନସଭାରେ ଗୃହୀତ ବିଜେଟ କାଗଜପତ୍ର ସେମାନଙ୍କ ପାଖକୁ ଆସୁଥାଏ । ସେମାନଙ୍କଠାରୁ ସେଗୁଡ଼ିକ ସଂଗ୍ରହ କରି ଶ୍ରୀ କାନୁନ୍‌ଗୋ ଦୁଇ ଲାଇନ ମଝିରେ ଥିବା ସ୍ଥାନରେ ଅତି ଛୋଟ ଛୋଟ ଅକ୍ଷରରେ ନୋଟ କରିଗଲେ । ତାହାହିଁ ହେଲା ଜ୍ଞାନମଣ୍ଡଳର ଆରମ୍ଭ । ଆଜି ମଧ୍ୟ ଜ୍ଞାନମଣ୍ଡଳ ତଥ୍ୟ କେନ୍ଦ୍ରରେ ଜେଲ ଭିତରେ ଲେଖା ହୋଇଥିବା ସେହି ଶହ ଶହ ପୃଷ୍ଠା ସଂରକ୍ଷିତ ହୋଇ ରହିଛି ।

ଜ୍ଞାନମଣ୍ଡଳ ଭଳି ଏକ ଦୁଃସାଧ୍ୟ ସାହିତ୍ୟିକ ପ୍ରଚେଷ୍ଟା ଯେ ଜଣେ ଲୋକ ସଫଳତାର ସହ କରିପାରିବେ ସେ ବିଷୟରେ ବହୁଲୋକଙ୍କର ସନ୍ଦେହ ଥାଏ । ଶ୍ରୀ କାନୁନ୍‌ଗୋ ତାଙ୍କ ଜ୍ଞାନ-ସାଧନାର ଇତିହାସ ପୁସ୍ତକ "ପାଠ ପଢ଼େ ପଢ଼େ ଅପାଠୁଆ"ରେ ଲେଖିଛନ୍ତି—"ସେତେବେଳକୁ ଓଡ଼ିଶାର ପାଠକମାନେ ଏହି ଧରଣର ବହି ସହିତ ସେଭଳି କିଛି ପରିଚିତ ହୋଇନଥାନ୍ତି । ବ୍ରିଟାନିକା ସେଟ୍‌ଟିକୁ ଅଳ୍ପ ସଂଖ୍ୟକ ଶିକ୍ଷିତ ଲୋକେ ଦେଖିଥାନ୍ତି । ସମଗ୍ର ଓଡ଼ିଶାରେ ସେ ବହି ସେଟ୍‌ଟି ପଚିଶ ତିରିଶ ଜଣଙ୍କ ପାଖରେ ଥାଏ କି ନାହିଁ ସନ୍ଦେହ । ଥିଲେ ମଧ୍ୟ ପଢ଼ିଥାନ୍ତି ଅଳ୍ପ ସଂଖ୍ୟକ

ଲୋକ । ତେଣୁ ସେମାନଙ୍କୁ ପ୍ରଥମେ ବୁଝାଇବାକୁ ପଡ଼ିବ ବିଶ୍ୱକୋଷ ବୋଇଲେ କଅଣ ବୁଝାଏ । ମୁଁ ଶେଷରେ ଏହି କଥା ଖେଳେଇଲି । ଶେଷକୁ ସାହସ କରି ଲେଖିଦେଲି—"ମୁଁ ମନୁଷ୍ୟ, ଅନ୍ୟପ୍ରାଣୀମାନଙ୍କ ତୁଳନାରେ ମୋର ଗୋଟିଏ ଉନ୍ନତ ମସ୍ତିଷ୍କ ଅଛି । ତେଣୁ ଜଗତର ଯେକୌଣସି କଥା ଜାଣିବା ପାଇଁ ମୋର ଇଚ୍ଛା ହେବ । ମୁଁ ସହଜରେ ଜାଣିବି ଓ ଜାଣିବାର ସୁଯୋଗ ପାଇବି । ମୁଁ ମନୁଷ୍ୟ ହୋଇଥିବାରୁ ଜ୍ଞାନ ହାସଲ କରିବାଟା ମୋର ଜନ୍ମଗତ ଅଧିକାର । ସେ ଅଧିକାରରୁ ମୋତେ କେହିହେଲେ ବଞ୍ଚିତ କରିପାରିବେ ନାହିଁ ।" × × ×

ଏହିଭଳି ଗୋଟିଏ ସେଟ୍ ପୁସ୍ତକ ପ୍ରକାଶ ପାଇଁ ଆବଶ୍ୟକ ଲୋକବଳ ସାଙ୍ଗକୁ ଅର୍ଥବଳ । ଏହାର ଅଭାବରୁ ଓଡ଼ିଶାରେ ଓଡ଼ିଆ ଭାଷାରେ ଗୋଟିଏ ସେଟ୍ ବିଶ୍ୱକୋଷ ପ୍ରକାଶ ପାଉନାହିଁ । କିନ୍ତୁ ଆମ ଭାଷା କଣ ଏଭଳି ପଛରେ ପଡ଼ିରହିଥିବ ? ଏଭଳି ପୁସ୍ତକର ଅଧିକାଂଶ ଆମ ଭାଷା ହେବ ନାହିଁ ? ଏହି ପ୍ରଶ୍ନ ଯେତେବେଳେ ମୋ ମନ ଭିତରେ ଉଠିଛି ମୁଁ ବ୍ୟଥିତ ହୋଇ ଉଠିଛି । ବିଜ୍ଞାନର ଏ ଯୁଗରେ ଅସମ୍ଭବ କ'ଣ ? ମନୁଷ୍ୟ ଯେତେବେଳେ ଚନ୍ଦ୍ରରେ ପହଞ୍ଚିବା ପାଇଁ ଉଦ୍ୟମ କରୁଛି ଆମ ଓଡ଼ିଶାର ସେହି ମନୁଷ୍ୟ ଏହି 'ସାମାନ୍ୟ' କାର୍ଯ୍ୟଟି କରିପାରିବ ନାହିଁ ? ନିଷ୍ପତ୍ତି ହେବା ଉଚିତ ବୋଲି ଧରିନେଇ ୧୯୫୪ରେ ଗୋଟିଏ ଯୋଜନା କଲି । ଆଜିର ଏହି ପ୍ରଥମ ଖଣ୍ଡିକ ସେହି ଉଦ୍ୟମର ଫଳ ।"

ଜ୍ଞାନମଣ୍ଡଳ ପ୍ରକାଶ ପାଇଲା ପରେ ଓଡ଼ିଆ ଭାଷା ସାହିତ୍ୟ ରାଜ୍ୟରେ ଗୋଟିଏ ଆଲୋଡ଼ନ ଦେଖାଦେଲା । ମାନବ ଜ୍ଞାନର ସମସ୍ତ ବିଭାଗର ସାର କଥାକୁ ଏଭଳି ସରଳ, ସହଜ ଭାବରେ ଯେ ପରିବେଷଣ କରାଯାଇପାରେ ତାହା ସମସ୍ତଙ୍କୁ ବିସ୍ମିତ କରିଦେଲା । ଓଡ଼ିଶାର ବୁଦ୍ଧିଜୀବୀ ଓ ସମ୍ବାଦପତ୍ର ତଥା ପତ୍ରପତ୍ରିକା ଏଭଳି ଉଦ୍ୟମର ଭୂୟସୀ ପ୍ରଶଂସା କଲେ । 'ଝଙ୍କାର' ସମ୍ପାଦକୀୟରେ ଲେଖିଥିଲା—"ଏହି ଜ୍ଞାନ-ମଣ୍ଡଳରେ ମନୁଷ୍ୟର ସାଂସ୍କୃତିକ ଚିନ୍ତା ଉପରେ ସହଜସାଧ୍ୟ ଭାଷାରେ ଲିପିବଦ୍ଧ ହୋଇଛି ତାହା ଯେକୌଣସି ବିବେକୀ ଓ ଅନୁସନ୍ଧିତ୍ସୁ ପାଠକ ଅନାୟାସରେ ହୃଦୟଙ୍ଗମ କରି-ପାରିବେ । ପ୍ରଥମ ଖଣ୍ଡରେ ନିହିତ 'ଅଙ୍କ', 'ଅଗ୍ନି', 'ଅକ୍ଟୋପସ୍', 'ଅଜଗର' ଓ ଦ୍ୱିତୀୟ ଖଣ୍ଡରେ ନିହିତ 'ଅଜନ୍ତା', 'ଅଟୋମେଶନ' ଓ 'ଅତିକାୟ ସରୀସୃପ' ଆଦି କେତୋଟି ଅଧ୍ୟାୟ ପଢ଼ିଲେ ପାଠକ ନିଜର ପରିତୃପ୍ତି ସହିତ ବିନୋଦ ବାବୁଙ୍କର ଶୈଳୀ, ସାଧନା ଓ ବ୍ୟକ୍ତିତ୍ୱ ସହିତ ସହଜରେ ପରିଚିତ ହୋଇପାରିବେ । ××× ଆମର ବିଶ୍ୱାସ ତାଙ୍କର ବ୍ୟକ୍ତିତ୍ୱ ଓ ସାଧନାଦ୍ୱାରା ଏହା ସମ୍ପନ୍ନ ହୋଇ ପାରିବ ଓ ଏ କାର୍ଯ୍ୟ ପାଇଁ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ସେ ଅବିସ୍ମରଣୀୟ ହୋଇ ରହିବେ । ଏଥିପାଇଁ ସେ ଯେ ଓଡ଼ିଆ ଜାତିର ଗ୍ରାହକତା, ପୃଷ୍ଠପୋଷକତା ଓ ଶୁଭେଚ୍ଛା ଲାଭ କରିବେ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । × × ବିଶ୍ୱଜ୍ଞାନ ସହିତ ଆତ୍ମଜ୍ଞାନର ଅଧିକାଂଶ

ହେବାକୁ ହେଲେ ଜ୍ଞାନମଣ୍ଡଳ ଭଳି ଗ୍ରନ୍ଥର ଅଧ୍ୟୟନ ଏକାନ୍ତ ଆବଶ୍ୟକ ଓ ଅପରିହାର୍ଯ୍ୟ । (୧୯୭୨ ଏପ୍ରିଲ ସଂଖ୍ୟା) ।''

ଜ୍ଞାନମଣ୍ଡଳର ପ୍ରଧାନ ବିଶେଷତ୍ୱ ହେଲା ସାଧାରଣ ଲୋକ ବୁଝିପାରିଲା ଭଳି ଭାଷାରେ ଏହା ରଚିତ ହୋଇଛି । ଏହା ଏକ ସୁଖପାଠ୍ୟ ବିଶ୍ୱକୋଷ ହୋଇଥିବାରୁ ପ୍ରତ୍ୟେକ ବିଷୟକୁ ସାଧାରଣ ପାଠକ ଯେପରି ସହଜରେ ବୁଝିପାରିବେ ସେଥିପାଇଁ ଦୃଷ୍ଟି ଦିଆଯାଇଛି । ସରଳ ଭାଷା, ସାବଲୀଳ ବର୍ଣ୍ଣନାଶୈଳୀ ଓ ଶହ ଶହ ଚିତ୍ର, ଅତି ଜଟିଳ ବୈଜ୍ଞାନିକ ତଥ୍ୟକୁ ମଧ୍ୟ ବୋଧଗମ୍ୟ କରିଥୋଇଛି । ବିଷୟ ଗୁଡ଼ିକର ନିର୍ବାଚନ ତଥା ପରିବେଷଣ ଶୈଳୀ ନିଖୁଣ ହୋଇଥିବାରୁ ସାଧାରଣ ପାଠକ ପାଇଁ ଏହା ଏକ ଜ୍ଞାନ ଭଣ୍ଡାରର ସଦୃଶ୍ୟ କାମ କରୁଛି । ମାନବ ଜ୍ଞାନର ପ୍ରତ୍ୟେକ ବିଭାଗ ସମ୍ପର୍କୀୟ ପ୍ରବନ୍ଧ ଓଡ଼ିଆ ପାଠକମାନଙ୍କ ପାଇଁ ଏ ବିଶ୍ୱ ସହିତ ପରିଚିତ ହେବା ଦିଗରେ ଜ୍ଞାନମଣ୍ଡଳ ଅପୂର୍ବ ସୁଯୋଗ ଆଣିଦେଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତୀୟ ପ୍ରାନ୍ତୀୟ ଭାଷାମାନଙ୍କ ମଧ୍ୟରେ ଏକ ସୁସମ୍ପାଦିତ ବିଶ୍ୱକୋଷ ଭାବରେ ଜ୍ଞାନମଣ୍ଡଳ ସ୍ୱୀକୃତି ଲାଭ କରିଛି ।

ଗୋଟିଏ ସେଟ୍ ଏନ୍‌ସାଇକ୍ଲୋପିଡ଼ିଆର ସମ୍ପାଦନ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଉଦ୍ୟମରେ ହେବା ଭାରତରେ କାହିଁକି, ସମଗ୍ର ପୃଥିବୀରେ ବିରଳ । ତେଣୁ ଏଥିପାଇଁ ଶ୍ରୀଯୁକ୍ତ କାନୁନ୍‌ଗୋ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତି ଭିତରେ ଗତି କରି ଖଣ୍ଡିଏ ପରେ ଖଣ୍ଡିଏ ଜ୍ଞାନମଣ୍ଡଳ ପ୍ରକାଶ କରି ଗଲେ । ଘୋର ଆର୍ଥିକ ଅନାଟନ ତାଙ୍କୁ ଏହି କାର୍ଯ୍ୟରୁ ବିରତ କରିପାରିଲା ନାହିଁ । ସେ ଶତକଡ଼ା ୧୬° ହାର ସୁଧରେ କାବୁଲୀଙ୍କ ଠାରୁ ମଧ୍ୟ ଋଣ କଲେ ।

ଜ୍ଞାନମଣ୍ଡଳର ସମ୍ପାଦନା ପାଇଁ ଶ୍ରୀ କାନୁନଗୋ ଯେଉଁ ତଥ୍ୟକେନ୍ଦ୍ର ପ୍ରତିଷ୍ଠା କଲେ ତାହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ମାନବ ଜ୍ଞାନର ପ୍ରତ୍ୟେକ ଗୁରୁତ୍ୱ-ପୂର୍ଣ୍ଣ ବିଭାଗ ଉପରେ ଅତି ମୂଲ୍ୟବାନ ତଥ୍ୟ ସବୁକୁ ସେ ୧୯୫୪ ରୁ ସଂଗ୍ରହ କରି ଆସୁଥିଲେ । କ୍ରମେ ସେହିସବୁ ତଥ୍ୟ ପ୍ରାୟ ୩° ହଜାର ଫାଇଲରେ ସୁରକ୍ଷିତ ହୋଇ ରହିଲା । ଯେକୌଣସି ବିଷୟରେ ଜଣେ କିଛି ଜାଣିବାକୁ ଚାହିଁଲେ ସେହି ଫାଇଲର ଆଶ୍ରୟ ନେଲା । ହଜାର ହଜାର ଚିତ୍ର ମଧ୍ୟ ସେଥିରେ ରହିଲା । ଏହାକୁ ଭିତ୍ତିଭୂମି କରି ଶ୍ରୀ କାନୁନଗୋ ପ୍ରତିଷ୍ଠା କଲେ ଜାତୀୟ ବିଶ୍ୱକୋଷ କେନ୍ଦ୍ର । ଭୁବନେଶ୍ୱରରେ ପ୍ରତିଷ୍ଠିତ ଏହି କେନ୍ଦ୍ର ୧୯୯୨ ଶେଷ ସୁଦ୍ଧା ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇଯିବ । ଭାରତର ବିଭିନ୍ନ ଭାଷାରେ ପ୍ରକାଶିତ ବିଶ୍ୱକୋଷ ଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିବା ହେଉଛି ଏହାର ମୁଖ୍ୟ କାର୍ଯ୍ୟ । ଏକ କେନ୍ଦ୍ରୀୟ ତଥ୍ୟ କେନ୍ଦ୍ର ପ୍ରତିଷ୍ଠା କରି ସବୁ ବିଶ୍ୱକୋଷ କେନ୍ଦ୍ରକୁ ଏହା ଆବଶ୍ୟକୀୟ ସମ୍ପାଦକୀୟ ଉପାଦାନ ଯୋଗାଇଦେବ ।

ଦେଶରେ ଏକ ବିଶ୍ୱକୋଷ ଆନ୍ଦୋଳନ ଗଢ଼ି ତୋଳିବାରେ ଏହି କେନ୍ଦ୍ର ବିଶେଷ ସହାୟକ ହେବ ।

ଭାରତ ସରକାର କାନୁନଗୋଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିଥିଲେ । ତାଙ୍କ ଜୀବନ ଓ ସାଧନାକୁ ଭିତ୍ତିକରି ୧୪ଟି ଯାକ ଭାରତୀୟ ଭାଷାରେ ଗୋଟିଏ ଗୋଟିଏ ପ୍ରାମାଣିକ ଚଳଚ୍ଚିତ୍ର (ଡକ୍ୟୁମେଣ୍ଟାରୀ ଫିଲ୍ମ) ନିର୍ମାଣ କରି କେନ୍ଦ୍ର ସରକାର ସାରା ଦେଶରେ ପ୍ରଦର୍ଶିତ କରାଇଥିଲେ । ଦୂରଦର୍ଶନ ଜାତୀୟ କାର୍ଯ୍ୟକ୍ରମରେ ତାଙ୍କ ଉପରେ ଗୋଟିଏ କାର୍ଯ୍ୟକ୍ରମ ଏକାଧିକବାର ପ୍ରସାରିତ ହୋଇଛି । ଭାରତର ସବୁ ପ୍ରସିଦ୍ଧ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ତାଙ୍କୁ ଗଣତାନ୍ତ୍ରିକରଣ କରିବା ଦିଗରେ କାନୁନଗୋଙ୍କର ନିରବଚ୍ଛିନ୍ନ ସାଧନା ସମ୍ପର୍କରେ ସମ୍ୟକ ଆଲୋଚନା କରାଯାଇଛି ଓ ଯାଉଛି । ୧୯୮୮ରେ ତାଙ୍କ ସଭାପତିତ୍ୱରେ ଭୁବନେଶ୍ୱରଠାରେ ଜାତୀୟ ବିଶ୍ୱକୋଷ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଆଧୁନିକ ବିଶ୍ୱକୋଷ ସମ୍ପାଦନାର ବିଭିନ୍ନ ଦିଗ ବିଷୟରେ ବିଶ୍ୱକୋଷ ରଚୟିତାମାନେ ଏହି ସମ୍ମିଳନୀରେ ଆଲୋଚନା କରିଥିଲେ ।



# ଗଡ଼ଗଡ଼ିଆ ଘାଟ

ଶ୍ରୀ ମୃତ୍ୟୁଞ୍ଜୟ ନାୟକ

ପୃଥିବୀର ପ୍ରାଚୀନ ଇତିହାସ ସାକ୍ଷ୍ୟ ଦିଏ ଯେ ନଦୀ ଉପତ୍ୟକାରେ ସମୃଦ୍ଧ ସଭ୍ୟତା ଓ ସହର ଗଢ଼ି ଉଠିଥିଲା । ନୀଳନଦୀ କୂଳରେ ମିଶର ସଭ୍ୟତା, ଟାଇଗ୍ରୀସ ଓ ୟୁଫ୍ରେଟିସ୍ ନଦୀ କୂଳରେ ମେସୋପୋଟାମିଆ ସଭ୍ୟତା, ସିନ୍ଧୁ ଓ ରାବୀ ନଦୀ କୂଳରେ ସିନ୍ଧୁ ସଭ୍ୟତା, ହୋୟାଙ୍ଗହୋ ଓ ୟାଙ୍ଗସିକିଆଙ୍ଗ ନଦୀ କୂଳରେ ଚୀନ ସଭ୍ୟତା ପ୍ରତିଷ୍ଠିତ ହୋଇଥିଲା । ସେହିପରି ଟେମସ୍ ନଦୀକୂଳରେ ଲଣ୍ଡନ, ଟାଇବର ନଦୀକୂଳରେ ରୋମ, ଗଙ୍ଗାନଦୀ କୂଳରେ ବାରାଣସୀ, ଏଲାହାବାଦ, କଲିକତା ଓ ପାଟଣା ସହର ମୁଣ୍ଡଟେକି ସଦର୍ପରେ ଦଣ୍ଡାୟମାନ ।

ଓଡ଼ିଶାର ସର୍ବବୃହତ ନଦୀ ମହାନଦୀ କୂଳରେ ପ୍ରାଚୀନ ସମୃଦ୍ଧିଶାଳୀ କଟକ ନଗର, ବାରବାଟୀ ଦୁର୍ଗ ଓ ଗଡଗଡ଼ିଆ ଘାଟ ସ୍ଥାପିତ ହୋଇଅଛି । ମାଦଳାପାଞ୍ଜି, ଜନଶ୍ରୁତି ଓ କମ୍ବଦନ୍ତୀକୁ ଆଶ୍ରୟ କରି ଇଂରେଜୀ ଐତିହାସିକ ଆଣ୍ଡ୍ରିଉ ଷ୍ଟାର୍ଲିଂ ତାଙ୍କ 'An Account of Orissa Proper or Cuttack' ପୁସ୍ତକରେ ଲେଖିଛନ୍ତି ସୋମବଂଶୀ ନୃପ କେଶରୀ ବା ଯଯାତି ମହାଶିବ ଗୁପ୍ତ ୯୮୯ ଖ୍ରୀଷ୍ଟାବ୍ଦରେ କଟକ ନଗରି ସ୍ଥାପନ କରିଥିଲେ ।

ବନ୍ୟାବପ୍ଳାବିତରୁ ସୁରକ୍ଷାଲାଗି ମର୍କତକେଶରୀ ବା ଭୀମରଥ ଦ୍ୱିତୀୟ ମହାଭବଗୁପ୍ତ ୧୦୦୬ ଖ୍ରୀଷ୍ଟାବ୍ଦରେ କାଠଯୋଡ଼ି ପଥରବନ୍ଧ ଓ ମହାନଦୀର ଧାରେ ଧାରେ ବନ୍ଧନିର୍ମାଣ ପୂର୍ବକ ବହୁ ନଦୀଘାଟ ନିର୍ମାଣ କରିଥିଲେ । ମାତ୍ର ପ୍ରସିଦ୍ଧ ଗଙ୍ଗବଂଶ ରାଜୁତିରେ ଅର୍ଥାତ୍ ୧୧୧୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବ ଓଡ଼ିଶା ଅଧିକାର କରି ବିଡ଼ାନାସୀଠାରେ 'ଅଭିନବ ବାରଣାସୀ କଟକ' ରାଜଧାନୀ ସ୍ଥାପନ କରିଥିଲେ । ଏହି ବଂଶର ବୀରପୁଙ୍ଗବ ତୃତୀୟ ଅନଙ୍ଗଭୀମଦେବ ୧୨୨୯ ଖ୍ରୀଷ୍ଟାବ୍ଦରେ ଐତିହାସିକ ବାରବାଟୀ ଦୁର୍ଗ ସ୍ଥାପନ କରିଥିବା କଥା ଇତିହାସ ପ୍ରମାଣ ଦିଏ ।

ଏକ ପ୍ରସିଦ୍ଧ ସହର, ରାଜଧାନୀ ଓ ବାଣିଜ୍ୟ କେନ୍ଦ୍ର ଭାବେ କଟକ କେଶରୀ, ଗଙ୍ଗ, ସୂର୍ଯ୍ୟ, ଭୋଇ, ମୁସଲମାନ, ମରହଟ୍ଟା, ମୋଗଲ ଓ ଇଂରେଜଶାସନ ପର୍ଯ୍ୟନ୍ତ ବିଖ୍ୟାତ

ଥିଲା । ବିଶେଷ ଭାବେ ୭ମ ଶତାବ୍ଦୀର ଶୈଳୋଦ୍ଭବ ବଂଶୀ ରାଜତ୍ୱଠାରୁ ୧୪ ଶତାବ୍ଦୀ ସୂର୍ଯ୍ୟବଂଶୀ ରାଜତ୍ୱ ପର୍ଯ୍ୟନ୍ତ ଉତ୍କଳୀୟ ବ୍ୟବସାୟ ଓ ବାଣିଜ୍ୟ ନଦୀ ଓ ସମୁଦ୍ର ମଧ୍ୟଦେଇ ସୁଦୂର ଶ୍ୟାମ, ସିଂହଳ, ଜାଭା, ବାଲି, ବୋର୍ଣ୍ଣିଓ, ବର୍ମା, ଚୀନ, ମିଶର ଏପରିକି ଆଫ୍ରିକା ମହାଦେଶର ମାଡାଗାସ୍କର ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ପଡ଼ିଥିଲା । ଟି. ମଟ୍ଟୋଙ୍କ ବର୍ଣ୍ଣନାରୁ ଜଣାଯାଏ ମରହଟ୍ଟା ରାଜତ୍ୱ କାଳରେ (ଖ୍ରୀ. ୧୭୫୧-୧୮୦୩) କଟକ ଏକ ବାଣିଜ୍ୟକେନ୍ଦ୍ର ଭାବେ ପ୍ରସିଦ୍ଧ ଲାଭକରିଥିଲା ।

କାଠଯୋଡ଼ି ନଦୀର ପଥରବନ୍ଧ କୂଳେ କୂଳେ ହାଇମୁଣ୍ଡି, ଚହଟା, ଦୋବନ୍ଧା, ହରିହର, କଟେଶ୍ୱ, ହନୁମାନ, ଗଣେଶ, ହାତୀଗଡ଼ା, ଦେବୀଗଡ଼ା ଓ ପୃଷ୍ପଘାଟ ତଥା ଖାନନଗର ଘାଟ ସ୍ଥାପିତ ହୋଇ ଅଛି । ସେହିପରି ମହାନଦୀର କୂଳେ କୂଳେ ଚହଟା, ଫାଶିହଆବର, କରମଙ୍ଗା, ମାଡାମଠ ଓ ଯୋବ୍ରା ଘାଟ ରହିଅଛି । କେବଳ ଯେ ସହରର ସୁରକ୍ଷା, ସ୍ନାନାଦି ନିତ୍ୟକର୍ମ ପାଇଁ ବନ୍ଧଘାଟଗୁଡ଼ିକ ଗଠିତ ତାହା ନୁହେଁ ବ୍ୟବସାୟ ବାଣିଜ୍ୟ ନିମିତ୍ତ ତଥା ଉଭୟ ପାର୍ଶ୍ୱର ଯୋଗସୂତ୍ର ରକ୍ଷାକାରୀ ସ୍ଥଳରୂପେ ଘାଟଗୁଡ଼ିକ କାର୍ଯ୍ୟ କରୁଥିଲା ।

ଯେପରି କାଠଯୋଡ଼ିରେ ଥିବା ପୁଷ୍ପଘାଟ ରାସ୍ତାଟି କଟକରୁ ପୁରୀ ପର୍ଯ୍ୟନ୍ତ ଯିବା ପାଇଁ ଖରାଦିନିଆ ରାସ୍ତାର କାର୍ଯ୍ୟ ତୁଲାଉଥିଲା, ସେହିପରି ଗଡ଼ଗଡ଼ିଆ ଘାଟ ତଥା ଯୋବ୍ରାଘାଟ କଟକରୁ ଚଉଦ୍ୱାର ତଥା ଉତ୍ତରାଞ୍ଚଳର ସଂଯୋଗ ଘଟାଥିଲା । ବିଶେଷ କରି ପୁରାତନ ରାଜଧାନୀ ଚଉଦ୍ୱାର ଓ ବାରବାଟୀ ଦୁର୍ଗର ପ୍ରଧାନ ଜଳପଥର ସଂଯୋଗସୂତ୍ର ଥିଲା ଗଡ଼ଗଡ଼ିଆ ଘାଟ । ସାଧାରଣତଃ ଯେଉଁଠାରେ ରାଜା ମହାରାଜାମାନଙ୍କର ରାଜଧାନୀ ସ୍ଥାପିତହୁଏ ତାହାର ସନ୍ନିକଟରେ ପ୍ରଶସ୍ତ ପ୍ରାଙ୍ଗଣ, ଗମନାଗମନର ସୁଗମପଥ, ଦେବାଳୟ ଓ ଠାକୁରାଣୀମନ୍ଦିର ଦେଖିବାକୁ ମିଳିଥାଏ ।

ଗଡ଼ଗଡ଼ିଆ ଘାଟ ସମ୍ବନ୍ଧରେ ଇତିହାସ ନୀରବ ଥିଲେ ସୁଦ୍ଧା କିମ୍ବଦନ୍ତୀ ତଥା ଜନଶ୍ରୁତି ଏବଂ ବର୍ତ୍ତମାନ ଗଡ଼ଗଡ଼େଶ୍ୱର ମନ୍ଦିରର ମୁଖ୍ୟ ପୂଜକ ବୟୋବୃଦ୍ଧ କୃଷ୍ଣମୋହନ ପଣ୍ଡା ଓରଫ ମହନ୍ତ ପଣ୍ଡାଙ୍କ ସହ ସାକ୍ଷାତକାର ବିବରଣୀରୁ ଏହି ଘାଟ ସମ୍ବନ୍ଧରେ ସଂକ୍ଷିପ୍ତ ଆଭାସ ପ୍ରଦାନ କରୁଅଛି ।

ସାଧାରଣତଃ ଶିବ ବା ମହାଦେବ ସ୍ୱୟଂଭବ ବ୍ୟକ୍ତିବିଶେଷଙ୍କ ଦ୍ୱାରା ସ୍ଥାପିତ ହୋଇଥାନ୍ତି । ପୂର୍ବେ ନଦୀପଠା ସମେତ ଗଡ଼ଗଡ଼ିଆ ଅଞ୍ଚଳ ଘଞ୍ଚ ଭୁତିପ୍ରାଣୀ ଜଙ୍ଗଲରେ ପରିପୂର୍ଣ୍ଣ ଶ୍ୱାପଦ ଶଙ୍କୁଳ ସ୍ଥାନ ବିଶେଷ ଥିଲା । ଏଠାରେ ଭୁଇଁ ବରକୋଳି ଓ କଣ୍ଟେଇ ଜଙ୍ଗଲ ସହ ପାନପରିବା ପ୍ରଚୁର ପରିମାଣରେ ଚାଷ ହେଉଥିଲା । ଏହି ଗଡ଼ଗଡ଼ିଆ ନଦୀଘାଟରୁ ବୃହତ ଘାଟଡଙ୍ଗା ସାହାଯ୍ୟରେ ବିଭିନ୍ନ ପଣ୍ୟଦ୍ରବ୍ୟ କଟକ ସହରରୁ ପାରାଦ୍ୱୀପ ବାଟଦେଇ ଅନ୍ୟାନ୍ୟ ଦୂର ସ୍ଥାନକୁ ଓ ବିଦେଶରୁ ମହାମୂଲ୍ୟ ଜିନିଷ କଟକକୁ

ଆମଦାନୀ ଓ ରପ୍ତାନୀ ହେଉଥିଲା । ଗ୍ରେଟ ଗ୍ରେଟ ଡଙ୍ଗା ସାହାଯ୍ୟରେ ଯାତ୍ରୀମାନେ ନଦୀପାର ହେଉଥିଲେ ।

ବର୍ତ୍ତମାନ କାଳର କରାଳଗର୍ଭରେ ଓ ପ୍ରାକୃତିକ ବିପର୍ଯ୍ୟୟ ଫଳରେ ଗଡ଼ଗଡ଼ିଆ ଘାଟ ଏକ ସ୍ମୃତିର ସ୍ମାରକୀ ମାତ୍ର । ଭବିଷ୍ୟତବଂଶଧର ନଦୀଠାରୁ ଦୂରରେ ଥିବା ଏହି ବାଲୁକାପୂର୍ଣ୍ଣ ଅଞ୍ଚଳକୁ ଅବଲୋକନ କଲେ ଏହା ଯେ ଦିନେ ଉତ୍କଳ ନୌବାଣିଜ୍ୟର ଏକ ପ୍ରସିଦ୍ଧ ନଦୀଘାଟ ଥିଲା କେବେ ବିଶ୍ୱାସ କରି ପାରିବେ ନାହିଁ । ନନ୍ଦ ଓ ମୌର୍ଯ୍ୟବଂଶୀ ସମ୍ରାଟମାନେ କଳିଙ୍ଗ ଆକ୍ରମଣ କାଳରେ ଏହି ନଦୀଘାଟ ଦେଇ ପାର-ଉତ୍ତର ହୋଇଥିବା ସମ୍ଭବ ବୋଲି ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ ବିଶ୍ୱାସ କରନ୍ତି । କଳିଙ୍ଗସମ୍ରାଟ ବୀର ମହାମେଘ ବାହନ ଐର ଖାରବେଳ ନନ୍ଦବଂଶର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଏହି ଘାଟ ବାଟଦେଇ ମହାନଦୀ ପାରି ହୋଇ ମଗଧ ଗମନ କରିଥିଲେ ।

'ଏପି ଗ୍ରାଫିକା ଇଣ୍ଡିକା' ଗ୍ରନ୍ଥରେ ସନ୍ନିବେଶିତ ଥିବା ଅନଙ୍ଗ ଭୀମଦେବଙ୍କ ନାଗରୀ ଗ୍ରାମ ଶିଳା ଲେଖରୁ ଜଣା ଯାଏ ଏହି ଘାଟ ନିକଟରେ ଚନ୍ଦ୍ରେଶ୍ୱର ଓ ବିଶ୍ୱେଶ୍ୱର ନାମକ ଦୁଇଟି ଶିବଲିଙ୍ଗ ଥିଲେ । ଏହ୍ଲାବାଦର କାଶୀବିଶ୍ୱନାଥଙ୍କ ପ୍ରସିଦ୍ଧି ଅନୁସରଣ ଅଭିନବ ବାରଣାସୀ କଟକ ଠାରେ ଥିବା ଶିବଲିଙ୍ଗ ନାମ ବିଶ୍ୱେଶ୍ୱର ଦିଆଯିବା କିଛି ବିଚିତ୍ର ନୁହେଁ, ମର୍କତ କେଶରୀଙ୍କ ପୂର୍ବରୁ ଅବସ୍ଥାପିତ ହୋଇଥିବା ଏହି ଗ୍ରେଟ ଶିବମନ୍ଦିର ଓ ବେଢ଼ାର—କେତେକାଂଶ ତଥା ପାଟକ ବନ୍ଧ ମଧ୍ୟରେ ପ୍ରୋଥିତ ଅବସ୍ଥାରେ ରହିଅଛି ।

ଲୌକିକ ବିଶ୍ୱାସର କୌଣସି ସୁଦୃଶ୍ୟ ମସୃଣ ପ୍ରସ୍ତର ଖଣ୍ଡ ଗଡ଼-ଗଡ଼ ଏହିଠାରେ ରହି ଯାଇଥିବା କଥା ଠିକ୍ ନୁହେଁ । କିମ୍ବା ୧୫୧୦-ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟ ନଦୀ ବନ୍ଧ ଉପରୁ ଗଡ଼ ଗଡ଼ ଓହ୍ଲାଇ ଆସି ବର୍ତ୍ତମାନ ସ୍ଥାନିତ ହୋଇଥିବା ପାଦ ପଥର ପରେ ପଦାର୍ପଣ କରିଥିଲେ କଥାଟି ମଧ୍ୟ ଭ୍ରମ ପ୍ରମାଦ ପୂର୍ଣ୍ଣ । କିନ୍ତୁ ଜଣାଯାଏ ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ କୁମାର ପୂର୍ଣ୍ଣିମା ଦିନ ଗଡ଼ଗଡ଼ିଆ ଘାଟଠାରେ ପଦାର୍ପଣ ପୂର୍ବକ ସ୍ନାନ କରି ବାରବାଟୀ ଦୁର୍ଗ ମଧ୍ୟରେ ଗଜପତି ପୁରୁଷୋତ୍ତମଙ୍କ ଦ୍ୱାରା ଅବସ୍ଥାପିତ ସାକ୍ଷୀ-ଗୋପାଳ ମୂର୍ତ୍ତି ଦର୍ଶନ କରିଥିଲେ । କିମ୍ବଦନ୍ତୀରୁ ଜଣାଯାଏ ପ୍ରତାପରୁଦ୍ରଙ୍କ ସମାଧି ଉପରେ ଚୈତନ୍ୟଙ୍କ ପାଦଚିହ୍ନ ଅଙ୍କିତ ।

ଏହି ଲୋକଙ୍କ ବର୍ଣ୍ଣିତ ଜଣାଯାଏ ଧାର୍ମିକ ଗଜପତି ରାଜା ପ୍ରତାପ ରୁଦ୍ରଦେବ ବାରବାଟୀ ଦୁର୍ଗରେ ଅବସ୍ଥାନ କାଳରେ ଦୁର୍ଗ ବା ଗଡ଼ ରକ୍ଷକ ଗଡ଼ ଈଶ୍ୱର ଅପଭ୍ରଂଶରେ ନାମକରଣ ହୋଇଛି—ଗଡ଼ ଗଡ଼େଶ୍ୱରଙ୍କୁ ସ୍ଥାପନ କରିଥିଲେ । ଛତିଶ ଗଡ଼ଜାତର ରାଜାମାନେ ଗଜପତିଙ୍କୁ ସମ୍ମାନ ଜଣାଇବାକୁ ପ୍ରତିବର୍ଷ ଆସିବାବେଳେ ଏହି ଗଡ଼ ଗଡ଼େଶ୍ୱର ମହାଦେବଙ୍କ ନିକଟରେ ପୂଜା ଆରାଧନା କରିଥାନ୍ତି । ତେଣୁ ଈଶ୍ୱରଙ୍କ ନାମାନୁସାରେ ଘାଟର ନାମ ମଧ୍ୟ ଗଡ଼ଗଡ଼ିଆ ଘାଟ ହୋଇଥିବା ଅଧିକ ଯୁକ୍ତି ସଙ୍ଗତ ମନେହୁଏ ।

ଗଡ଼ଗଡ଼ିଆ ଘାଟ ତାହାର ଧାର୍ମିକ, ବାଣିଜ୍ୟ ଓ ସାଂସ୍କୃତିକ କାରଣରୁ ପ୍ରସିଦ୍ଧି ଲାଭ କରିଥିବା କଥା ସନ୍ଥକବି ଅଚ୍ୟୁତାନନ୍ଦ ତାଙ୍କ 'ଅମର କୁମର' ପୁସ୍ତକରେ ଲେଖିଛନ୍ତି—

ଗଡ଼ଗଡ଼ିଆ ମହାଦେବ । ମେଦିନ ବାହାର ହୋଇବ

× × ×

ବୁଲି ଦେଖ ଗଡ଼ଗଡ଼ିଆ ବେଢ଼ା । ଦେଉଳ ଉପରେ ଦେଉଳଗଢ଼ା ।

ପାଲିକାରମାନେ ମଧ୍ୟ ଆନନ୍ଦ ମନରେ ଗାଇଥାନ୍ତି—

ଧନ୍ୟ ସେ ଗଡ଼ଗଡ଼ିଆ । ତା'ର ଶକତି ବଡ଼ ବଢ଼ିଆ ।

**ବାଲିଯାତ୍ରା :**

ବାଲିଯାତ୍ରା ପ୍ରତ୍ୟେକ ଉତ୍କଳୀୟଙ୍କର ଏକ ସ୍ମରଣୀୟ ଦିବସ । ଏହି ଦିନଟିର କଥା ସ୍ମରଣ କଲାବେଳେ ପ୍ରତ୍ୟେକ ଭାବୁକ, ରସିକ ଓ ଦେଶପ୍ରେମୀର ଚିନ୍ତାଧାରା ବହୁ ସୁଦୂର ଅତୀତକୁ ଫେରିଯାଏ । ଆଖି ଆଗରେ ଭାସିଯାଏ ଅତୀତ ଉତ୍କଳର ବୈଭବ, ଗୌରବ, ଐରଭ, ନୌବାଣିଜ୍ୟ ଓ ସାଂସ୍କୃତିକ ଐତିହ୍ୟ ସମୂହ । ସୁଜଳା ସୁଫଳା ଅରଣ୍ୟ—କୁନ୍ତଳା କାର୍ତ୍ତିକରଶ୍ମି ଉତ୍କଳ ଜନନୀର ବିକଚ ଶତଦଳ ମୁଖଟି ଭାବୁକର କଳ୍ପନା ନେତ୍ରରେ ଭାସିଯାଏ ।

ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ଦିନ ଇତିହାସପ୍ରସିଦ୍ଧ କଟକ ନଗରୀର ଉପକଣ୍ଠରେ ପ୍ରବାହିତ ପୁଣ୍ୟତୋୟା ମହାନଦୀ କୂଳରେ ଗଡ଼ଗଡ଼େଶ୍ୱର ମହାଦେବଙ୍କ ଆସ୍ଥାନସ୍ଥଳୀ ନିକଟସ୍ଥ ପ୍ରଶସ୍ତ ସିକତା ଭୂମିରେ ବାଲିଯାତ୍ରା ଉତ୍ସବଟି ମହା ସମାରୋହରେ ଯୁଗ ଯୁଗ ଧରି ପାଳିତ ହୋଇ ଆସୁଅଛି । ନଦୀ-ମାଳିନୀ ଓଡ଼ିଶାରେ ଅନ୍ୟତ୍ର ବାଲୁକା କୁଦ ବା ନଦୀ ପଠାରେ ଯାତ୍ରା ଅନୁଷ୍ଠିତ ହେଉଥିଲେ ହେଁ କଟକର ବାଲିଯାତ୍ରା ପରି ସେଗୁଡ଼ିକ ପ୍ରସିଦ୍ଧ ନୁହନ୍ତି । କଟକ ଜିଲ୍ଲାର ବାଲିକୁଦା ସନ୍ନିକଟ ଅଳକା ନଦୀର ଗର୍ଭରେ ଫାଲ୍‌ଗୁନ ମାସରେ ଦୋଳମିଳନ 'ଉତ୍ସବ ବାଲିଯାତ' ବୋଲି ଖ୍ୟାତ ହୋଇଥିଲେହେଁ ଆଞ୍ଚଳିକ ଗୁରୁତ୍ୱ ବ୍ୟତୀତ ଏହା ସର୍ବବିଦିତ ହୋଇ ପାରିନାହିଁ ।

କଟକର ବାଲିଯାତ୍ରା ଶ୍ରୀକ୍ଷେତ୍ରର ରଥଯାତ୍ରା, ଚନ୍ଦନଯାତ୍ରା, ଦୋଳଯାତ୍ରା, ଝୁଲଣ ଯାତ୍ରା ପରି ଶାସ୍ତ୍ରୀୟ ଯାତ୍ରା ନୁହେଁ, ଏହି ପବିତ୍ର ତିଥିରେ କଟକ ବ୍ୟତୀତ ଏହି ଯାତ୍ରା ଅନ୍ୟତ୍ର ପାଳିତ ହୁଏ ନାହିଁ । କିନ୍ତୁ ସ୍ମରଣୀୟ ଦିବସଟି ସୁଦୂର ଅତୀତର ଦୁଇଟି ମଧୁମୟ ସ୍ମୃତିକୁ ବହନ କରି ଆଜି ପ୍ରତ୍ୟେକ ଓଡ଼ିଆର ହୃଦକନ୍ଦରକୁ ଆହ୍ଲାଦିତ ଓ ଉନ୍ମାଦିତ କରି ଆସୁଅଛି । ସେ ଦୁଇଟି ହେଉଛି ଅତୀତ ଉତ୍କଳର ସାଧବ ପୁଅ ଓ ସାହସୀ ନାବିକଗଣ ଓଡ଼ିଶାର ନୌବାଣିଜ୍ୟକୁ ସୁଦୂର ସିଂହଳ, ବ୍ରହ୍ମଦେଶ, କାମ୍ବୋଡ଼ିଆ, ମାଳୟ, ଜାଭା, ବାଲି, ବୋର୍ଣ୍ଣିଓ, ସୁମାତ୍ରା ଓ ପାରସ୍ୟ ଉପକୂଳ ପର୍ଯ୍ୟନ୍ତ ପ୍ରସାରିତ କରାଇ ପାରିଥିଲେ ।

ଅନ୍ୟ ଗୋଟିଏ ଘଟଣା ହେଲା ୧୫୧୦ ଖ୍ରୀଷ୍ଟାବ୍ଦରେ ଲୀଳାମୟ ଶ୍ରୀଚୈତନ୍ୟ ପ୍ରଥମେ ମହାନଦୀର ଏହି ବାଲୁକା ପୀଠରେ ପଦାର୍ପଣ କରିଥିଲେ । ସେହି ସମୟରେ, ବାରବାଟୀ ଦୁର୍ଗରେ ରାଜୁତି କରୁଥିଲେ ଗଜପତି ପ୍ରତାପରୁଦ୍ର ଦେବ । କାଞ୍ଚି ଅଭିଯାନର ଫଳଶ୍ରୁତି ସ୍ୱରୂପ ଉତ୍କଳର ଗଜପତି ପୁରୁଷୋତ୍ତମ ଦେବ କାଞ୍ଚି ରାଜା ଶାଳ୍ୱ ନରସିଂହ ଦେବଙ୍କ ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ପଦ୍ମାବତୀ, କାଞ୍ଚିର ଦେବତା ଗଣନାଥ ଓ ଗୋପୀନାଥଙ୍କୁ ସ୍ୱଦେଶକୁ ନେଇ ଆସିଥିଲେ । ଅଦ୍ୟାପି ସତ୍ୟବାଦୀର ବକୁଳ କୁଞ୍ଜରେ ପୂଜିତ ହେଉଥିବା ସାକ୍ଷୀଗୋପାଳ ମୂର୍ତ୍ତି ବାରବାଟୀ କିଲ୍ଲାରେ ଏକଦା ବନ୍ଦୀ ଥିଲେ । ପ୍ରସିଦ୍ଧ ବୈଷ୍ଣବ ଶାସ୍ତ୍ର 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି, ଚୈତନ୍ୟ ଦେବ ପ୍ରଥମେ ଆସି ଏହି ମୂର୍ତ୍ତିକୁ ପୂଜା କରିଥିଲେ ।

ସେ କିଛିକାଳ କଟକର ଜଗନ୍ନାଥ ବଲ୍ଲଭ ଠାରେ ଅବସ୍ଥାନ କରି ପୁରୀଧାମକୁ ଯାତ୍ରା କରିଥିଲେ । ଉତ୍କଳର ନୌବାଣିଜ୍ୟ ତଥା ଚୈତନ୍ୟ ଦେବଙ୍କ ଆଗମନ ସ୍ମୃତିକୁ ମନେ ପକାଇ ଦେଉଥିବାରୁ ଏହି ବାଲିଯାତ୍ରାଟି ଅତୀତ ଓଡ଼ିଶାର ଗୌରବର ମୂକସାକ୍ଷୀ ହୋଇ ପାରିଅଛି ।

ନୌବାଣିଜ୍ୟ ଦିଗଟିକୁ ବିଚାର କଲେ ଜଣାଯାଏ ଇତିହାସପ୍ରସିଦ୍ଧ ଉତ୍କଳ ଜାତି ଏକଦା ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ ନିଜର ଉପନିବେଶ ସ୍ଥାପନ କରିଥିଲା । ଅଦ୍ୟାପି ପୂର୍ବ ଭୂଭାଗର ଦ୍ୱୀପପୁଞ୍ଜରେ ବାସକରୁଥିବା 'କ୍ଲିଙ୍ଗ' ଜାତି ପ୍ରାଚୀନ କଳିଙ୍ଗର ବଂଶଧର ବୋଲି ଐତିହାସିକମାନେ ସ୍ୱୀକାର କରୁଛନ୍ତି । ମହାମେଘବାହନ ଐରଖାରବେଳଙ୍କ ରାଜତ୍ୱରେ କଳିଙ୍ଗର ବାଣିଜ୍ୟ ବ୍ୟବସାୟ ପାରସ୍ୟ ଉପକୂଳରେ ପ୍ରତିଷ୍ଠିତ ଥିଲା ବୋଲି ଐତିହାସିକ ଜୟସ୍ୱାଲ ପ୍ରମାଣ ଦେଇଛନ୍ତି ।

ସିଂହଳର, ଶିଳାଲେଖ ଓ କିମ୍ବଦନ୍ତୀରୁ ପ୍ରମାଣ ମିଳେ କଳିଙ୍ଗର ରାଜବଂଶ ପ୍ରଥମେ ସେଠାରେ ରାଜୁତି କରୁଥିଲେ । ବୋରବୁଦର ଠାରେ ଥିବା ଅନିନ୍ଦ୍ୟ ଶିଳ୍ପକଳା ପୃଥିବୀ ପ୍ରସିଦ୍ଧ ବୌଦ୍ଧସ୍ତୂପ କଳିଙ୍ଗର ପ୍ରସିଦ୍ଧ ଶୈଳେନ୍ଦ୍ର ବଂଶ ଦ୍ୱାରା ନିର୍ମିତ ହୋଇଥିଲା । କଳିଙ୍ଗର ନୌବାଣିଜ୍ୟ ସ୍ମୃତିକୁ ବହନ କରି ସିଂହଳ ବା ଲଙ୍କାରୁ ଆନୀତ ଲଙ୍କାମରିଚ ଓ ବିଦେଶରୁ ବୋଇତ ଦ୍ୱାରା ଆନିତ କଖାରୁ ଓ ବୋଇତାଳୁ ନାମଗୁଡ଼ିକ ଏବେ ମଧ୍ୟ ଓଡ଼ିଶାରେ ପ୍ରଚଳିତ ।

ଭୁବନେଶ୍ୱରର ପ୍ରସିଦ୍ଧ ବୋଇତାଳ ମନ୍ଦିରର ଶୀର୍ଷ ଭାଗଟି ବୋଇତ ଢାଞ୍ଚାରେ ନିର୍ମିତ । କେବଳ ଇତିହାସ ବା ସ୍ଥାପତ୍ୟ କଳା ନୁହେଁ ଓଡ଼ିଶାର ପର୍ବପର୍ବାଣି ଓ ସାହିତ୍ୟରେ ନୌବାଣିଜ୍ୟର ସ୍ମୃତି ଏବେବି ଜାଗରୁକ ହୋଇ ରହିଅଛି । ଖୁଦୁରୁକୁଣୀ ଓଷାର ତଅପୋଇ କାହାଣୀ ଓ କଳାବତୀ ଉପାଖ୍ୟାନ ସେହି ଅତୀତ ସ୍ମୃତିକୁ ବହନ କରି ଚାଲିଛନ୍ତି ।

କେବଳ କିମ୍ବଦନ୍ତୀ ଓ ଲୋକୋକ୍ତିକୁ ଆଶ୍ରୟ କରି ବାଲିଯାତ୍ରାକୁ ଅତୀତ ନୌବାଣିଜ୍ୟର ସ୍ମାରକୀ ବୋଲି ଗ୍ରହଣ କରିଯିବା ଉଚିତ ହେବନାହିଁ । କାରଣ ସ୍ୱରୂପ

ପ୍ରାଚୀନ ଉତ୍କଳର ତାମ୍ରଲିପ୍ତି, ଧାମରା, ନନ୍ଦାଗଡ, ନର୍ଭୀକଦମ୍ବ, ଆର୍ଦ୍ରକ, ଚେଲିତାଳ (କୋଣାର୍କ), ପୁରୀ, ପାଲୁର, ଗଞ୍ଜାମ, ଗୋପାଳପୁର ପ୍ରଭୃତି ନୌପୀଠଗୁଡ଼ିକ ଥିବାବେଳେ କେବଳ କଟକଠାରେ ଏହି ଯାତ୍ରାଟି ଅନୁଷ୍ଠିତ ହେଉଛି କାହିଁକି ? ଓଡ଼ିଶାର ଅନ୍ୟାନ୍ୟ ନଦୀ ମୁହାଣ ଓ ନଦୀ ଘାଟଠାରେ ଏହା ପ୍ରଚଳିତ ହୁଏ ନାହିଁ କାହିଁକି ? ଭାରତର ପ୍ରସିଦ୍ଧ ବନ୍ଦରଗୁଡ଼ିକରେ ନୌବାଣିଜ୍ୟ ସ୍ମୃତିକୁ ବହନ କରି କାହିଁକି ଏ ରୂପ ପୂଜା ପ୍ରଚଳିତ ହୋଇନାହିଁ ।

ସଂସ୍କୃତ ସାହିତ୍ୟରେ ଜାଭା, ବୋର୍ଣ୍ଣିଓ, ସୁମାତ୍ରା, ବାଲିର ଯଥାକ୍ରମେ ଯବଦ୍ୱୀପ, ବରୁଣଦ୍ୱୀପ, ସ୍ୱର୍ଣ୍ଣଦ୍ୱୀପ ଓ ବଳିଦ୍ୱୀପ ରୂପେ ବିଦିତ । ଗଡ଼ଗଡ଼ିଆ ଘାଟଠାରେ ଅନୁଷ୍ଠିତ ହେଉଥିବା ବାଲିଯାତ୍ରା ପ୍ରାଚୀନ ଉତ୍କଳୀୟମାନଙ୍କର ବଳିଦ୍ୱୀପଯାତ୍ରାର ସ୍ମାରକୀକୁ ବହନ କରି ଅନୁଷ୍ଠିତ ହୋଇଥିଲେ, ଏହା ବାଲିଯାତ୍ରା ନାମକରଣ ବହନ ନ କରି ବଳିଯାତ୍ରା ହୋଇଥାନ୍ତା । ସ୍ଥାନର ଗୁରୁତ୍ୱ ଭେଦରେ ଓଡ଼ିଶାରେ ଅନ୍ୟତ୍ର ବଣଯାତ୍ରା, ତୋଷାଯାତ୍ରା, ନଗରଯାତ୍ରା ପ୍ରଭୃତି ପ୍ରଚଳିତ ଥିବାପରି ମହାନଦୀର ବାଲୁକା ଶଯ୍ୟାରେ ଏହି ଯାତ୍ରାଟି ଅନୁଷ୍ଠିତ ହେଉଥିବାରୁ ଏହାର ନାମ ବାଲିଯାତ୍ରା ହୋଇଅଛି ।

କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ବର୍ଷାକାଳର ସମାପ୍ତି ଘଟି ଜଳଯାତ୍ରା ପାଇଁ ଜଳପଥ ସୁଗମ ହୋଇଥାଏ । ଏହି ପବିତ୍ର ଦିବସଟିରେ କଳିଙ୍ଗର ସାଧବ ପୁଅମାନେ ପାଲଟଣା ବୋଇତରେ ଆମ ଦେଶର ସୂକ୍ଷ୍ମ ପଟ୍ଟବସ୍ତ୍ର, କାଠ ପଥରର କାରୁକାର୍ଯ୍ୟ, ବିଭିନ୍ନ ବନଜାତ ଦ୍ରବ୍ୟ, ହୀରାଖଣ୍ଡର ପ୍ରସିଦ୍ଧ ହୀରା ପ୍ରଭୃତି ନେଇ ବିଦେଶ ଗମନ କରୁଥିଲେ । ଦକ୍ଷିଣ, ମାଛ ଅନୁକୂଳ କରି ଯାତ୍ରା କରୁଥିବା ଯୋଗୁଁ ଏହି ଦିବସଟି ଅତ୍ୟନ୍ତ ସ୍ମରଣୀୟ ଥିଲା । ବିଦେଶରୁ ହୀରା, ନୀଳା, ମୋତି, ମାଣିକ, ଲବଙ୍ଗ ପ୍ରଭୃତି ମସଲାଜାତୀୟ ଦ୍ରବ୍ୟ ତଥା ଅଜସ୍ର ସମ୍ପତ୍ତି ଧରି କଳିଙ୍ଗର ସାଧବ ପୁଅମାନେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିଲେ ।

ଅତୀତ ଗୌରବକୁ ସ୍ମରଣ କରିବା ଲାଗି ପୁଣ୍ୟ କାର୍ତ୍ତିକ ପୂର୍ଣ୍ଣିମାର ପ୍ରଭାତରେ ନଦୀ ପୁଷ୍କରିଣୀରେ ଆମ୍ଭେମାନେ କଦଳୀ ପଟୁକା ବା କାଗଜର ନୌକା ଭସାଇ ଅତୀତର ସ୍ମୃତିକୁ ରୋମନ୍ଥନ କରୁଛୁ ମାତ୍ର । ଏହି ନୌକା ଭସାଣୀ ପ୍ରଥା ଭାରତର ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏନାହିଁ ।

"ଆ କା ମା ଭୈ ଗୁଆ ପାନ ଥୋଇ

ଗୁଆ ପାନ ତକ ତୋର । ମାସକ ଧରମ ମୋର" ଉଚ୍ଚାରଣପୂର୍ବକ ଆବାଳ ବୃଦ୍ଧ ବନିତା ନୌକା ଭସାଣି ଉତ୍ସବକୁ ପ୍ରଦୀପ ପ୍ରଜ୍ୱଳନ କରି ଓ ବାଣ ଫୁଟାଇ ମହାସମାରୋହରେ ପାଳନ କରିଥାନ୍ତି । କେବଳ ଧର୍ମ ଦୋହାଇ ଦେଇ ଅତୀତ ସ୍ମୃତିକୁ ଏଥିରେ ମନେ ପକାଇବା ବ୍ୟତୀତ ନୌବାଣିଜ୍ୟର କୌଣସି କାର୍ଯ୍ୟବିଧି ପାଳିତ ହୁଏ ନାହିଁ । ଏହି ସ୍ମୃତିକୁ ଦେଶପ୍ରେମୀ ଓଡ଼ିଆଙ୍କ ହୃଦୟରେ ବପନ କରିବା ପାଇଁ ଆମର ଲୋକପ୍ରିୟ ସରକାର ମହାନଦୀ ଉପକୂଳ ଏବଂ ପାରାଦ୍ୱୀପ ବନ୍ଦରଠାରେ 'ବୋଇତ ବନ୍ଦାଣ' ଉତ୍ସବ ପାଳନ କରିଥାନ୍ତି ।

ମଧୁର ପ୍ରେମଲୀଳାର ପ୍ରଚାରକ ଶ୍ରୀ ଚୈତନ୍ୟଙ୍କର ପବିତ୍ର ଲୀଳାଭୂମି ଉତ୍କଳ ଆଗମନର ସ୍ମୃତିକୁ ବହନ କରି ବାଲିଯାତ୍ରାଟି ପ୍ରଚଳିତ ଥିବା ଅଧିକ ଯୁକ୍ତିସମ୍ମତ । ବୈଷ୍ଣବୀୟ ପ୍ରେମମୈତ୍ରୀ ଧାରାରେ ଓ ଲୀଳାମୟ ଶ୍ରୀ ଚୈତନ୍ୟଙ୍କର ପବିତ୍ର ପଦସ୍ପର୍ଶରେ ଦିନେ ଓଡ଼ିଶାର ରାଜନ୍ୟବର୍ଗଠାରୁ ଆରମ୍ଭ କରି କୁଟୀରବାସୀ ପର୍ଯ୍ୟନ୍ତ ପ୍ରତ୍ୟେକ ଧର୍ମର ଉଦ୍‌କୂଳ ପ୍ଳାବନରେ ପ୍ଳାବିତ ହୋଇ ଉଠିଥିଲେ ।

ଗଡ଼ଗଡ଼େଶ୍ୱର ଏକ ପ୍ରସିଦ୍ଧ ଶୈବପୀଠ ହେଲେ ହେଁ ଅଦ୍ୟାବଧି ସେହି ପବିତ୍ର ଦିବସଟିର ପ୍ରତ୍ୟୁଷରୁ ରାଧାକୃଷ୍ଣପ୍ରେମୀ ବୟାଳିଶ ସଂକୀର୍ତ୍ତନ ମଣ୍ଡଳୀ ଭଜନ, କୀର୍ତ୍ତନ ଓ ନୃତ୍ୟ କରିଥାଆନ୍ତି । ତେଣୁ ଏହି ଦିବସଟି ଶ୍ରୀ ଚୈତନ୍ୟଙ୍କ ପାଇଁ ସ୍ମରଣୀୟ । ଏହି କାର୍ତ୍ତିକ ପୂର୍ଣ୍ଣିମା ପବିତ୍ର ଦିବସଟି ଆମ୍ଭ ପିତୃପୁରୁଷମାନଙ୍କୁ ସ୍ମରଣ କରିବା ଲାଗି ଏକ ପବିତ୍ର ଅବକାଶ ।

ବାଲିଯାତ୍ରାର ପ୍ରାରମ୍ଭ କାଳରେ ଏହା ଏକଦିନ ମାତ୍ର ପାଳିତ ହେଉଥିଲା । ମାତ୍ର ଆଜିକାଲି ଏହା ଚାରିପାଞ୍ଚ ଦିନ କିମ୍ବା ତଦୁର୍ଦ୍ଧ୍ୱ ଦିନ ପାଳନ କରାଯାଉଅଛି । ଆଧୁନିକ ବିଜ୍ଞାନର କାରିଗରୀ କୌଶଳ, ଆଲୋକସଜ୍ଜା, ମେଢ଼ ନିର୍ମାଣ ଦ୍ୱାରା ବାଲିଯାତ୍ରାଟିକୁ ରମଣୀୟ ଓ ଶୋଭାମଣ୍ଡିତ କରାଯାଉଛି । ଚନ୍ଦ୍ରାକାରରେ ସଜ୍ଜିତ ଏବଂ ଆଲୋକମାଳା ବିଭୂଷିତ ଏହି ଯାତ୍ରାଟି ରାତ୍ରକାଳରେ ଅତ୍ୟନ୍ତ ରମଣୀୟ ହୋଇଥାଏ ।

ସରକାରୀ ତଥା ବେସରକାରୀ ପ୍ରଚାର ମଣ୍ଡପ, ଷ୍ଟେସନାରୀ ଦୋକାନ, ସର୍କସ, ଚିଡ଼ିଆଖାନା ସାଙ୍ଗକୁ କଟକ ପ୍ରସିଦ୍ଧ ତାରକସି କାମ, କାଠ କାମର ଦୋକାନ, ଘରକରଣା ସାମଗ୍ରୀ ପ୍ରଚୁର ପରିମାଣରେ ଗଚ୍ଛିତ ହୋଇଥାଏ । ଏଥିସହିତ କଟକର ବିଖ୍ୟାତ ଠୁଙ୍କାପୁରୀ-ଛେନା ତରକାରୀ, ଦହିବରା-ଆଳୁଦମ ଓ ଗୁପଚୁପ୍ ଅଧିକ ଆକର୍ଷଣୀୟ ହୋଇଥିବାରୁ ଦର୍ଶକମଣ୍ଡଳୀର ସ୍ପୃହା ମେଣ୍ଟାଇ ଥାଏ । ଲୋକାରଣ୍ୟର କୋଳାହଳ, ଡାକବାଜଯନ୍ତ୍ରର ମନ୍ଦ୍ର ଝଙ୍କାର ସହିତ ସମତାଳ ଦେଇ ଜମିଥିବା ସଙ୍ଗୀତ ଆସର ଅଧିକ ଉପଭୋଗ୍ୟ ହୋଇଯାଏ । ଏହା କଟକ ତଥା ତତ୍‌ସନ୍ନିହିତ ଅଞ୍ଚଳବାସୀଙ୍କର ଏକ, ଆମୋଦପ୍ରମୋଦ ସ୍ଥଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରସିଦ୍ଧ ଗଡ଼ଗଡ଼େଶ୍ୱର ଦେବଦର୍ଶନ ଜନିତ ପୁଣ୍ୟ ଅର୍ଜନ ସଙ୍ଗେ ସଙ୍ଗେ କାର୍ତ୍ତିକେଶ୍ୱର ମେଢ଼ ଯାତ୍ରାର ଶୋଭା ଦର୍ଶନରେ ପଥଚାରୀଗଣ ଭାବବିହ୍ୱଳ ହୋଇଯାନ୍ତି । ସର୍ବଶେଷରେ ବାଲିଯାତ୍ରାଟି ଆଜିକାଲିର ପରିବର୍ତ୍ତିତ ସମାଜ ବ୍ୟବସ୍ଥାରେ ଯାହାକିଛି ରୂପ ପରିଗ୍ରହ କରିଯାଉ ପଛକେ ଅତୀତ ଉତ୍କଳର ଦୁଇ ମଧୁର ସ୍ମୃତିକୁ ବହନ କରି ଆସିଥିବାରୁ ଆମ୍ଭମାନଙ୍କର ଏକାନ୍ତ ସ୍ମରଣୀୟ ।

●

# କଟକ ଷ୍ଟେସନ

ଶ୍ରୀ ସୁରେନ୍ଦ୍ର ନାଥ ନାୟକ

୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ମେରୁଦଣ୍ଡ ଦୋହଲାଇ ଦେଲା । ଓଡ଼ିଶାର ଏକ ତୃତୀୟାଂଶ ଲୋକଙ୍କର ଅକାଳ ବିୟୋଗ ହେବା ସଙ୍ଗେ ସଙ୍ଗେ କେବଳ ପୁରୀ ଜିଲ୍ଲାରୁ ଶତକଡ଼ା ପଚାଶଭାଗ ଲୋକ ଅନାହାରରେ ମୃତ୍ୟୁବରଣ କଲେ । ଏଭଳି ଦୁର୍ବିପାକ ଯେତିକି ଦୈବକୃତ ତା'ଠାରୁ ଅଧିକ ଥିଲା ମନୁଷ୍ୟକୃତ ।

ଏ ମହାପାପର ପ୍ରାୟଶ୍ଚିତ୍ତ କରିବା ପାଇଁ ଇଂରେଜ ସରକାର ପରେ ତତ୍ପରତା ପ୍ରକାଶ କରିଥିଲେ । ଯାହାଫଳରେ ଓଡ଼ିଶାରେ ନବଯୁଗର ଅଭ୍ୟୁତ୍ଥାନ ହେଲା । ଯୋବ୍ରାଠାରେ ମହାନଦୀ ଉପରେ ଆନିକଟ ନିର୍ମିତ ହୋଇ କେନାଲ୍ ସାହାଯ୍ୟରେ ଜଳସେଚନ ହେଲା । ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ ରେଭେନ୍ସା କଲେଜ, ମେଡ଼ିକାଲ ସ୍କୁଲ୍, ଇଞ୍ଜିନିୟରିଂ ସ୍କୁଲ୍ ପ୍ରଭୃତି ସ୍ଥାପିତ ହେଲା । ରାସ୍ତାଘାଟର ଉନ୍ନତି ହେଲା ।

କିନ୍ତୁ ସବୁଠାରୁ ବଡ଼ କଥା, ଓଡ଼ିଶାରେ ରେଳପଥର ପ୍ରସାର ଘଟିଲା । ଫଳତଃ ଗମନାଗମନର ସୁବିଧା ହେବା ସଙ୍ଗେ ସଙ୍ଗେ ବାଣିଜ୍ୟ ବ୍ୟବସାୟର ପ୍ରସାର ଘଟିଲା ଓ ଭାରତର ଅନ୍ୟାନ୍ୟ ଅଞ୍ଚଳ ସହ ଓଡ଼ିଶାର ସଂଯୋଗ ସ୍ଥାପିତ ହେଲା ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ତଦାନନ୍ତନ ବେଙ୍ଗଲ-ନାଗପୁର ରେଲ୍ କମ୍ପାନୀ ଖଡ଼ଗପୁରଠାରୁ ପୂର୍ବ ଉପକୂଳ ମଧ୍ୟଦେଇ ଦକ୍ଷିଣକୁ ଯିବାପାଇଁ ରେଲ୍‌ପଥ ତିଆରି କଲେ । ଏହି ସମୟରେ ଇଷ୍ଟ୍‌କୋଷ୍ଟ୍ ରେଲ୍‌ପଥ ନାମରେ ଅନ୍ୟ କମ୍ପାନୀ ଆନ୍ଧ୍ର (ସେତେବେଳର ମାନ୍ଦ୍ରାଜ ପ୍ରେସିଡେନ୍‌ସି) ପ୍ରଦେଶର ଭିଶାଖାପାଟଣା ଠାରୁ ବାରଙ୍ଗ ପର୍ଯ୍ୟନ୍ତ ରେଲ୍‌ପଥ ତିଆରିକଲେ ।

ସେତେବେଳେ କଲିକତା ଭାରତର ରାଜଧାନୀ । ମାନ୍ଦ୍ରାଜ ଏକ ପ୍ରଧାନ ବାଣିଜ୍ୟ-କେନ୍ଦ୍ର । ଦକ୍ଷିଣଭାରତରେ ଶାସନଗତ ସୁବିଧା ନିମିତ୍ତ କଲିକତାରୁ ମାନ୍ଦ୍ରାଜକୁ ରେଳପଥ

ସମ୍ପ୍ରସାରିତ ହେଲା । ଏଣୁ ବିରୂପା, ମହାନଦୀ, କାଠଯୋଡ଼ି ଓ କୁଆଖାଇ ପ୍ରଭୃତି ନଦୀ ଉପରେ ପୋଲ ବ୍ୟୟସାଧ୍ୟ ହେଲେ ମଧ୍ୟ ବି· ଏନ· ଆର୍ (ବେଙ୍ଗଲ ନାଗପୁର ରେଲଓ୍ୱେ) ଏହା ତିଆରି କରିବାକୁ ବାଧ୍ୟହେଲା ଓ କଟକ ବାଟଦେଇ ରେଳରାସ୍ତା ପଡ଼ିଲା । କଟକ ଓଡ଼ିଶାର ଏକ ପ୍ରଧାନ ରେଳଷ୍ଟେସନ ରୂପେ ବିବେଚିତ ହେଲା ।

ରେଳପଥ ତିଆରି ହେବାପରେ କଟକର ଗୁରୁତ୍ୱ ବହୁତ ବଢ଼ିଗଲା । ପଶ୍ଚିମରୁ ବହୁ ମାରଓ୍ୱାଡ଼ି ଓ ଗୁଜୁରାଟୀ ଲୋକମାନେ ଆସି ଏଠାରେ ବ୍ୟବସାୟ ଆରମ୍ଭ କଲେ । ରେଲ୍‌ଓ୍ୱେଠାରୁ ଜମିଲିଜ୍ ନେଇ ମାଲଗୋଦାମ ଅଞ୍ଚଳ ଗଠିତ ହେଲା ଏବଂ ଏହା ବର୍ତ୍ତମାନ ଉପକୂଳବର୍ତ୍ତୀ ଓଡ଼ିଶାର ପ୍ରଧାନ ବାଣିଜ୍ୟ-କେନ୍ଦ୍ର ।

କଟକ ରେଳଷ୍ଟେସନର ପରିସୀମା ଉତ୍ତରରେ ଆଉଟର୍ ସିଗ୍‌ନାଲ୍‌ଠାରୁ ଅର୍ଥାତ୍ ମହାନଦୀ ପୋଲଠାରୁ ଦକ୍ଷିଣରେ ଆଉଟର୍ ସିଗ୍‌ନାଲ୍ ଅର୍ଥାତ୍ ତାଳଦଣ୍ଡା କେନାଲ ପର୍ଯ୍ୟନ୍ତ ବିସ୍ତୃତ । ପୂର୍ବରେ ପାଞ୍ଚନମ୍ବର ଜାତୀୟ ରାଜପଥଠାରୁ ପଶ୍ଚିମରେ ରେଭେନ୍‌ସା କଲେଜ ପର୍ଯ୍ୟନ୍ତ ଏହା ପରିବ୍ୟାପ୍ତ ।

ରେଲ୍‌ଓ୍ୱେ ଷ୍ଟେସନର ଉଭୟ ପାର୍ଶ୍ୱରେ ରେଳକର୍ମଚାରୀଙ୍କର ପାଞ୍ଚଟି କଲୋନୀ ରହିଛି । ମୋଟ ୧୫୭୭ ଜଣ କର୍ମଚାରୀ ଏଥିରେ କାର୍ଯ୍ୟରତ । ଟ୍ରେନ ଯାତାୟାତ ପାଇଁ ବିଭିନ୍ନ ବିଭାଗ ରହିଛି—ଅପରେଟିଂ, କମର୍ସିଆଲ୍, ମେକାନିକାଲ୍ ଇଞ୍ଜିନିୟରିଂ, ସିଭିଲ୍ ଇଞ୍ଜିନିୟରିଂ, ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂ, ସିଗ୍‌ନାଲ୍, ଟେଲିକମ୍ୟୁନିକେସନ୍ ଇଞ୍ଜିନିୟରିଂ, ରେଲ୍‌ଓ୍ୱେ ପ୍ରୋଟେକ୍‌ସନ୍ ଫୋର୍ସ, ଡାକ୍ତରୀ ବିଭାଗ, ଲୋକସମ୍ପର୍କ ବିଭାଗ, ଏକାଉଣ୍ଟ୍‌ସ ବିଭାଗ, ପର୍ସୋନେଲ୍ ଓ ଶିକ୍ଷାବିଭାଗ । ଏହିସବୁ ବିଭାଗର କର୍ମଚାରୀମାନଙ୍କ ମିଳିତ ଚେଷ୍ଟାରେ କଟକ ରେଳବିଭାଗ କର୍ମମୁଖର ।

ଷ୍ଟେସନରେ ତିନୋଟି ପ୍ଲାଟ୍‌ଫର୍ମ ଅଛି । ୧୦ଟି ଲାଇନ୍ ବିଶିଷ୍ଟ ଏକ ୟାର୍ଡ୍ ମଧ୍ୟ ଅଛି ଏହା ଏକ ଜଙ୍କ୍‌ସନ୍ । ପାରାଦୀପକୁ ଏହିଠାରୁ ଶାଖା ରେଲ୍‌ଲାଇନ୍ ଯାଇଛି ।

ଷ୍ଟେସନରେ ଯାତ୍ରୀମାନଙ୍କ ସୁବିଧାପାଇଁ ଦୁଇଟି ପ୍ରଥମଶ୍ରେଣୀ ବିଶ୍ରାମାଗାର (ପୁରୁଷ ଓ ସ୍ତ୍ରୀ), ଗୋଟିଏ ଦ୍ୱିତୀୟ ଶ୍ରେଣୀ ବିଶ୍ରାମାଗାର, ଗୋଟିଏ ଶୀତତାପ ନିୟନ୍ତ୍ରିତ ବିଶ୍ରାମାଳୟ ଓ ଦୁଇଟି ସାଧାରଣ (Non A·C.) ବିଶ୍ରାମାଳୟ ଅଛି । ଏଠାରେ ଏକ ଆରାମଦାୟକ ଉର୍ମିଟାରୀ ଅଛି । ଏଥିରେ ୨୮ଟି ଶଯ୍ୟା ଅଛି ।

ଡାକବାକ୍ସ ଯନ୍ତ୍ର ସାହାଯ୍ୟରେ ଗାଡ଼ିର ଯିବା-ଆସିବା ସମୟ ଓ ଅନ୍ୟାନ୍ୟ ଜ୍ଞାତବ୍ୟ ତଥ୍ୟ ପ୍ରଚାର କରାଯାଏ । ଜଣେ ଷ୍ଟେସନ ଅଧୀକ୍ଷକ ଷ୍ଟେସନର ତତ୍ତ୍ୱାବଧାରକ ରୂପେ ରହିଛନ୍ତି ।

ପ୍ରତିଦିନ ଏହି ଷ୍ଟେସନ ମଧ୍ୟଦେଇ ୭ ଯୋଡ଼ା ଏକ୍ସପ୍ରେସ୍ ଗାଡ଼ି ଓ ପାଞ୍ଚଯୋଡ଼ା (UP-Down) ପାସେଞ୍ଜର୍‌ଗାଡ଼ି ଯାତାୟାତ କରେ । ଏଠାରୁ ଦିଲ୍ଲୀ-ତ୍ରିଭେନ୍ଦ୍ରମ୍-ବାଙ୍ଗାଲୋର, ମାନ୍ଦ୍ରାଜ, କଲିକତା, ଗୌହାଟୀ, ପାଟଣା, ଲକ୍ଷ୍ନୌ, ହାଇଦରାବାଦ ପ୍ରଭୃତି ଦୂରଦୂରାନ୍ତ ସହରକୁ ସିଧାସଳଖ ଗାଡ଼ି ଚାଲେ । ବମ୍ବେ ଓ ଅହମଦାବାଦକୁ ମଧ୍ୟ ଭୁବନେଶ୍ୱରଦେଇ ରେଳଗାଡ଼ି ଯାତାୟାତ କରେ ।

କଟକଷ୍ଟେସନ ପୂର୍ବତଟରେଳର ଏକ ବିଶିଷ୍ଟ ଷ୍ଟେସନ । ଏହାର ପ୍ଲାଟ୍‌ଫର୍ମର ଲମ୍ବ ୪୭୯ ମିଟର । ଷ୍ଟେସନର ଦୈନିକ ଆୟ ପ୍ରାୟ ଅଢ଼େଇଲକ୍ଷ ଟଙ୍କା ଓ ପ୍ରାୟ ତିନିହଜାର ଯାତ୍ରୀ ଦୈନିକ ଏଠାରୁ ଯାତାୟାତ କରନ୍ତି । ବିଭିନ୍ନ ଷ୍ଟେସନକୁ ଟିକେଟ୍ କିଣିବାକୁ ଭିନ୍ନ ଭିନ୍ନ ଟିକେଟ୍ ଝରକା ଦିନ-ରାତି ଖୋଲାଥାଏ । ଯାତ୍ରୀମାନଙ୍କ ଖାଦ୍ୟପେୟର ବ୍ୟବସ୍ଥା ପାଇଁ କ୍ୟାଟରିଂ ସଂସ୍ଥା ରହିଛି ।

ପ୍ଲାଟଫର୍ମ ଉପରେ ତିନୋଟି ପୁସ୍ତକ ଓ ପତ୍ର-ପତ୍ରିକା ଦୋକାନ ଅଛି । ଭାରତର ବିଭିନ୍ନ ଭାଷାର ପତ୍ର-ପତ୍ରିକା ଏଠାରେ ମିଳେ ।

ଏକ ବୃହତ୍ ପାର୍ଶଲ ଗୋଦାମ ଦିନ-ରାତି କାର୍ଯ୍ୟରତ । କଟକରେ ପ୍ରକାଶିତ ସମସ୍ତ ଦୈନିକ ଓ ମାସିକ ପତ୍ର-ପତ୍ରିକା ଏହି ପାର୍ଶଲ ଅଫିସ ମାଧ୍ୟମରେ ବାହାରକୁ ପଠାଯାଏ । ମାଛ, ପାନ, ଚମଡ଼ା ଓ ଅନ୍ୟାନ୍ୟ ଜିନିଷ ଏହି ପାର୍ଶଲ ଅଫିସ ଜରିଆରେ ବିଭିନ୍ନ ଷ୍ଟେସନକୁ ରପ୍ତାନି କରାଯାଏ ଓ ବିଭିନ୍ନ ଆବଶ୍ୟକୀୟ ଜିନିଷ ଏହି ଷ୍ଟେସନ ଜରିଆରେ କଟକ ସହରକୁ ଆସେ ।

ରେଳରେ ଯିବାପାଇଁ ସିଟ୍ ତଥା ବର୍ଥ ରିଜର୍ଭେସନ କରିବାପାଇଁ ଏକ ସ୍ୱତନ୍ତ୍ର ଶୀତତାପନିୟନ୍ତ୍ରିତ ରିଜର୍ଭେସନ୍ ଅଫିସ ଅଛି । ଏଠାରେ ଭାରତର ଯେକୌଣସି ଷ୍ଟେସନକୁ କମ୍ପ୍ୟୁଟର୍ ମାଧ୍ୟମରେ ସ୍ଥାନ ସଂରକ୍ଷଣ କରାଯାଏ ।

କଟକ ଷ୍ଟେସନରେ ଥିବା ରେଲୱେ ଡାକସେବା ସଂସ୍ଥା ଦ୍ୱାରା ଚିଠିପତ୍ର ଓ ପାର୍ଶଲ ଇତ୍ୟାଦି ଦୂରସ୍ଥାନକୁ ପଠାଯାଏ ଓ ବାହାରୁ ଆସେ ।

ରେଲୱେ ସମ୍ପତ୍ତିର ରକ୍ଷଣାବେକ୍ଷଣ ନିମିତ୍ତ ଏକ ସ୍ୱତନ୍ତ୍ର ରେଳ ସୁରକ୍ଷା ଦଳ କାର୍ଯ୍ୟରତ ଅଛନ୍ତି ।

କଟକ ମାଲଗୋଦାମ (ଗୁଡ୍‌ସ୍‌ସେଡ୍) ସମଗ୍ର ଦକ୍ଷିଣପୂର୍ବ ରେଳପଥରେ ଦ୍ୱିତୀୟ ବୃହତ୍ତମ ଅଟେ । ଏଠାରେ ଦୈନିକ ଶହଶହ ୱାଗନ ଖାଲସ ଓ ବୋଝାଇ କରାଯାଏ ।

ଇଞ୍ଜିନର ମରାମତି ଓ ରକ୍ଷଣାବେକ୍ଷଣ ପାଇଁ ଜଣେ ଲୋକୋଫୋରମ୍ୟାନ୍ ଓ କେତେକ ଷ୍ଟାଫ୍ ରହିଛନ୍ତି । ସେହିଭଳି ମାଲଡବା ଓ ଯାତ୍ରୀଡବାର ମରାମତି ଓ ରକ୍ଷଣାବେକ୍ଷଣ ପାଇଁ ଜଣେ ୱାଗନ୍‌ଫୋର୍‌ମ୍ୟାନ୍ ଓ ଷ୍ଟାଫ୍ ରହିଛନ୍ତି । ଇଲେକ୍ଟ୍ରି

ବିଭାଗର ତତ୍ତ୍ୱାବଧାନ ପାଇଁ ଜଣେ ଫୋରମ୍ୟାନ୍ ଓ କେତେକ କର୍ମଚାରୀ ଅଛନ୍ତି । ଟେଲିଫୋନ୍ ବିଭାଗରେ ଜଣେ T.C.I. (ଟେଲିକମ୍ୟୁନିକେସନ୍ ଇନ୍‌ସପେକ୍ଟର) ଓ ସହକାରୀମାନେ କର୍ମରତ ।

ସିଗ୍ନାଲବିଭାଗ ରେଲୱେର ଏକ ପ୍ରଧାନ ସଂସ୍ଥା । ସିଗ୍ନାଲ୍‌ର ସଙ୍କେତପାଇ ଡ୍ରାଇଭର୍ ଗାଡ଼ି ଚଳାନ୍ତି । ଏହି ସଂସ୍ଥା ସିଗନାଲ ଇନସ୍‌ପେକ୍ଟର୍ ଓ ତାଙ୍କ ସହକାରୀମାନଙ୍କ ଦ୍ୱାରା ପରିଚାଳିତ ।

ରେଲୱେ କଲୋନୀରେ ଏକ ଡାକ୍ତରଖାନା ଅଛି । ଏଥିରେ ଜଣେ ଡାକ୍ତର, ଜଣେ ଫାର୍ମାସିଷ୍ଟ, ଜଣେ ନର୍ସ, ଜଣେ ଡ୍ରେସର୍ ଓ ଅନ୍ୟାନ୍ୟ ଚତୁର୍ଥଶ୍ରେଣୀ କର୍ମଚାରୀ-ମାନେ କାର୍ଯ୍ୟକରନ୍ତି ଜଣେ ସ୍ୱାସ୍ଥ୍ୟ ପରିଦର୍ଶକ (Health Inspector) ଙ୍କ ଅଧୀନରେ ସଫାଇବାଲା, ମ୍ୟାଲେରିଆଷ୍ଟାଫ୍ ଓ ଜଣେ Vaccinator ରହି ରେଲ କଲୋନୀର ସ୍ୱାସ୍ଥ୍ୟ ତଥା ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଅନ୍ତି ।

ଏହି କଲୋନୀରେ ଚାରିଟି ପ୍ରାଇମେରୀ ସ୍କୁଲ (ଦୁଇଟି ଓଡ଼ିଆ, ଗୋଟିଏ ବଙ୍ଗଳା, ଗୋଟିଏ ତେଲେଗୁ) ଗୋଟିଏ ଏମ୍. ଇ. ସ୍କୁଲ ଓ ଗୋଟିଏ ହାଇସ୍କୁଲ ରହିଛି ।

ଜଣେ ଲୋକସମ୍ପର୍କ ଅଧିକାରୀଙ୍କ ଅଧୀନରେ ଏକ ଲୋକସମ୍ପର୍କ ଅଫିସ କାର୍ଯ୍ୟକରେ ।

ପ୍ଲାଟଫର୍ମରେ ଓଡ଼ିଶା ସରକାରଙ୍କ ତରଫରୁ ଯାତ୍ରୀମାନଙ୍କ ସୁବିଧା ପାଇଁ ଏକ ପର୍ଯ୍ୟଟନ ଅଫିସ ରହିଛି ।

ଗୋଟିଏ ଇନଷ୍ଟିଚ୍ୟୁଟ୍ (କ୍ଲବଘର) କର୍ମଚାରୀମାନଙ୍କ ପାଇଁ ଅଛି । ଏଥିରେ ଗୋଟିଏ ପାଠାଗାର ଓ ପେଣ୍ଡାଲ ମଧ୍ୟ ଅଛି । ଏଠାରେ ସଭା, ସମିତି ଅନୁଷ୍ଠିତ ହୁଏ । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଯଥା—ଭଞ୍ଜ ଜୟନ୍ତୀ, ରବୀନ୍ଦ୍ର ଜୟନ୍ତୀ, ଉତ୍କଳଦିବସ ଏଠାରେ ଅନୁଷ୍ଠିତ ହୁଏ । କର୍ମଚାରୀମାନଙ୍କୁ ରାଷ୍ଟ୍ରଭାଷା ଶିକ୍ଷାଦେବା ପାଇଁ ହିନ୍ଦୀ ଲାଇବ୍ରେରୀ ରହିଛି ।

ଶାନ୍ତି, ଶୃଙ୍ଖଳା ରକ୍ଷାକରିବା ପ୍ରାଦେଶିକ ସରକାରଙ୍କର କାର୍ଯ୍ୟ ହୋଇଥିବାରୁ ଏଠାରେ ଓଡ଼ିଶା ସରକାରଙ୍କର ଏକ ଡି. ଆଇ. ଜି. ଅଫିସ, ଏକ ଏସ. ପି. ଅଫିସ ଓ ଗୋଟିଏ ଥାନା ଅଛି ।

ରେଳକର୍ମଚାରୀଙ୍କ ମଧ୍ୟରେ ବିଭିନ୍ନ ସଙ୍ଗଠନ ରହିଅଛି । ଦୁଇଟିଟ୍ରେଡ୍-ଇଉନିୟନର ପାଞ୍ଚଟି ଶାଖା ଏଠାରେ କାର୍ଯ୍ୟକରେ । ସର୍ବଭାରତୀୟ ସ୍ତରରେ ଏହି ଦୁଇଟି ଟ୍ରେଡ୍‌ଇଉନିୟନ ହେଲା—ରେଲୱେ ମେନ୍‌ସ କଂଗ୍ରେସ ଓ ରେଲୱେ ମେନ୍‌ସ ଇଉନିୟନ ।

ମହିଳା ସମିତି ତରଫରୁ "ଗାୟତ୍ରୀ-କଳାମନ୍ଦିର" ନାମରେ ଏକ ନୃତ୍ୟ ଓ ସଙ୍ଗୀତ ବିଦ୍ୟାଳୟ କଟକ ରେଲୱେ କଲୋନୀରେ ସ୍ଥାପିତ ହୋଇଛି ଏବଂ ଗୋଟିଏ ଆର୍ଟ ସ୍କୁଲ ମଧ୍ୟ ଚାଲୁଅଛି ।

ରେଳ କର୍ମଚାରୀଙ୍କ ପିଲାମାନଙ୍କ ଶିକ୍ଷାର ସୁବିଧାପାଇଁ ଦୁଇଗୋଟି ହଷ୍ଟେଲ (ଗୋଟିଏ ପୁଅମାନଙ୍କ ପାଇଁ ଓ ଅନ୍ୟଟି ଝିଅମାନଙ୍କ ପାଇଁ) ଏଠାରେ ପ୍ରତିଷ୍ଠିତ ହୋଇଅଛି ।

ସୁଲଭ ମୂଲ୍ୟରେ ଜିନିଷପତ୍ର ଯୋଗାଇବାକୁ ରେଲୱେ କଲୋନୀରେ ଏକ ସମବାୟ ଖାଉଟି ଭଣ୍ଡାର କାର୍ଯ୍ୟ କରୁଅଛି ।

କୋଠାବାଡ଼ି, ରାସ୍ତାଘାଟ, ଜଳଯୋଗାଣ ପ୍ରଭୃତି ଦାୟିତ୍ୱରେ ଜଣେ ମୁଖ୍ୟ ଇଞ୍ଜିନିୟରିଂ ନିରୀକ୍ଷକ ରହିଛନ୍ତି କଟକ ୟାର୍ଡ଼ ଓ ଆଖପାଖ ଅଞ୍ଚଳର ରେଲ୍‌ରାସ୍ତା ରକ୍ଷଣାବେକ୍ଷଣ ଦାୟିତ୍ୱ ଜଣେ ମୁଖ୍ୟ ରେଳପଥ ନିରୀକ୍ଷକଙ୍କ ଦାୟିତ୍ୱରେ ରହିଥାଏ ।

ରେଳପଥରେ ଥିବା ପୋଲଗୁଡ଼ିକର ସୁରକ୍ଷା ପାଇଁ ମଧ୍ୟ ଜଣେ ପୋଲ ନିରୀକ୍ଷକ ଅଛନ୍ତି ।

ଗୋଟିଏ ଓ୍ୱାର୍କସପ୍ ଓ ଗୋଟିଏ ମିଲରାଇଟ ସଂସ୍ଥା ଏଠାରେ ରହିଅଛି । ରେଲୱେର ବିଭିନ୍ନ ଯାନ୍ତ୍ରିକ ସରଞ୍ଜାମ ତଥା ଟ୍ରକ୍ ଜିପ୍ ପ୍ରଭୃତି ଏଠାରେ ମରାମତି ହୁଏ ।

ଓଡ଼ିଶାରେ ରେଳପଥର ଉନ୍ନତିକୁ ଅଧିକ କ୍ଷିପ୍ର କରିବାକୁ କଟକରେ ଗୋଟିଏ ମୁଖ୍ୟ ଇଞ୍ଜିନିୟର ଅଫିସ ସ୍ଥାପନ କରାଯାଇଅଛି ।

ସମ୍ବଲପୁର, ତାଳଚେର ରେଳପଥ ନିର୍ମାଣ ତଥା ଅନ୍ୟାନ୍ୟ ଅନେକ ଉନ୍ନତିକର କାର୍ଯ୍ୟ ହାତକୁ ନିଆଯାଇଅଛି । ଭବିଷ୍ୟତରେ ଆହୁରି ଅଧିକ ନୂତନ କାମ ଆରମ୍ଭ ହେବାକୁ ଯୋଜନା କରା ଯାଇଅଛି ଏବଂ ଏ ସବୁର ମୂଳପୀଠ କଟକ ହିଁ ରହିବ ।



# ମହାନଦୀ ବିରୂପା ବ୍ୟାରେଜ୍

**ଇଂ ପ୍ରଭାତ କୁମାର ନନ୍ଦ**

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଇଷ୍ଟ ଇଣ୍ଡିଆ କେନାଲ କମ୍ପାନୀ ଦ୍ୱାରା ମହାନଦୀ, ବ୍ରାହ୍ମଣୀ, ବୈତରଣୀ ନଦୀର ତ୍ରିକୋଣ ଭୂମି ଅଞ୍ଚଳରେ ଜଳ ସେଚନ ଓ ନୌ ପରିବହନ ପାଇଁ କେନାଲମାନ ନିର୍ମିତ ହୋଇଥିଲା । ଏଥି ନିମନ୍ତେ ୧୮୬୪ ମସିହା ଠାରୁ ୧୮୭୦ ମସିହା ମଧ୍ୟରେ ମହାନଦୀ, କାଠଯୋଡ଼ି, ବିରୂପା ବ୍ରାହ୍ମଣୀ ଓ ବୈତରଣୀ ନଦୀ ମାନଙ୍କରେ ଆନିକଟ ସବୁ ନିର୍ମାଣ କରାଯାଇଥିଲା । ମହାନଦୀ, ବିରୂପା ଆନିକଟ ଓ ଏଥିରୁ ବାହାରିଥିବା କେନାଲ ଦୀର୍ଘ ୧୨୦ ବର୍ଷ ଧରି କଟକ ଜିଲ୍ଲାର ସମୃଦ୍ଧିର କାରଣ ହୋଇ ରହି ଆସିଛି ।

ହୀରାକୁଦ ବନ୍ଧ ନିର୍ମାଣର ପରବର୍ତ୍ତୀ କାଳର ସଂପ୍ରସାରଣ ଯୋଜନା ଦ୍ୱାରା ଆନିକଟର ଲୌହ କବାଟ ଗୁଡ଼ିକର ଉଚ୍ଚତା ବୃଦ୍ଧି ପାଇଥିବାରୁ ପୁରୁଣା ଆନିକଟଗୁଡ଼ିକ ଉପରେ ଜଳ ଚାପ ବୃଦ୍ଧି ପାଇ କ୍ଷୟର କାରଣ ଗୁଡ଼ିକୁ ତ୍ୱରାନ୍ୱିତ କରିବାରେ ସହାୟକ ହେଲା । ଏହି ଜରାଜୀର୍ଣ୍ଣ ଆନିକଟ ଦୁଇଟି ଯେକୌଣସି ସମୟରେ ଭାଙ୍ଗି ଯାଇ କଟକ ଜିଲ୍ଲାର ଶସ୍ୟ ଭଣ୍ଡାର, ଓଡ଼ିଶାର କେନାଲ ଅଞ୍ଚଳରେ ୧୮୬୭ ମସିହା ନଅଙ୍କ ଦୁର୍ଭିକ୍ଷର ପୁନରାବୃତ୍ତି ହେବାର ସମ୍ଭାବନା ଦେଖାଦେଲା ଏବଂ ଏହା ଫଳରେ ଓଡ଼ିଶାର ଅର୍ଥ-ନୈତିକସ୍ଥିତି ବିପର୍ଯ୍ୟସ୍ତ ହୋଇ ପଡ଼ିବାର ଆଶଙ୍କା କରାଗଲା । ଆନିକଟ ଦୁଇଟିର ରକ୍ଷଣା ବେକ୍ଷଣରେ ପ୍ରତିବର୍ଷ ବହୁ ଅଧିକ ଅର୍ଥ ବ୍ୟୟର ଆବଶ୍ୟକତାକୁ ଏଡ଼ାଇ ଦେଇ ହେଲା ନାହିଁ । ଆହୁରି ମଧ୍ୟ ଆନିକଟଗୁଡ଼ିକର ପୁରୁଣା କାଳିଆ ଲୌହ କବାଟଗୁଡ଼ିକ ବନ୍ୟା ସମୟରେ ଓ ଜଳସେଚନ ପାଇଁ ଜଳ ଯୋଗାଣ ସମୟରେ ଆବଶ୍ୟକତା ଅନୁସାରେ କାର୍ଯ୍ୟ କଲେ ନାହିଁ । ସରକାର ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି ପ୍ରଥମ ପର୍ଯ୍ୟାୟରେ ମହାନଦୀ ଓ ବିରୂପା ନଦୀରେ ଦୁଇଟି ବ୍ୟାରେଜ ନିର୍ମାଣ କରିବାର ଯୋଜନା କଲେ ।

୧୯୭୮ ମସିହାରେ ସରକାର କେନ୍ଦ୍ର ଜଳ ଆୟୋଗର ଅଧ୍ୟକ୍ଷଙ୍କ ନେତୃତ୍ୱରେ ମହାନଦୀ ଓ ବିରୂପା ନଦୀ ଦ୍ୱୟରେ ବ୍ୟାରେଜ ନିର୍ମାଣ କରିବା ନିମନ୍ତେ ପରାମର୍ଶ ଦେବାପାଇଁ

ଏକ ଉଚ୍ଚ ବୈଜ୍ଞାନିକ କମିଟି ଗଠନ କଲେ । ଏହି କମିଟି ସମସ୍ତ ବିକଳ୍ପ ଏବଂ ସମ୍ଭାବନାର ପୁଙ୍ଖାନୁପୁଙ୍ଖ ତଦନ୍ତ କରି ବ୍ୟାରେଜ୍ ନିର୍ମାଣର ସ୍ଥାନ ନିରୂପଣ କଲେ ଏବଂ ଏହାର ତୁରନ୍ତ ନିର୍ମାଣ ପାଇଁ ସରକାରଙ୍କୁ ସୁପାରିଶ କଲେ । ଆନିକଟର ନିମ୍ନ ଦେଶରେ ଥିବା ରେଳ ଏବଂ ସଡ଼କ ପୋଲର କୌଣସି କ୍ଷତି ନ ହେବା ଦୃଷ୍ଟିରେ ରଖି ମହାନଦୀ ବ୍ୟାରେଜର ଦୈର୍ଘ୍ୟ ପୁରାତନ ଆନିକଟର ଦୈର୍ଘ୍ୟ ସହ ସମାନ ରଖିବା ପାଇଁ ଏବଂ ବିରୂପା ନଦୀର ବ୍ୟାରେଜର ଦୈର୍ଘ୍ୟ ଯଥେଷ୍ଟ କମାଇ ଦେଇ ୧୮୦ ମିଟର ରଖିବାପାଇଁ ବୃତ୍ତାନ୍ତ ନିଷ୍ପତ୍ତି ନିଆଗଲା । ତଦନୁଯାୟୀ ମହାନଦୀରେ ସେକେଣ୍ଡ୍ ପ୍ରତି ୧୫,୩୦୦ ଘନ ମିଟର ଏବଂ ବିରୂପା ନଦୀରେ ବିପରୀତ ରୂପେ ସେକେଣ୍ଡ ପ୍ରତି ମାତ୍ର ୨,୩୬୦ ଘନ ମିଟର ସର୍ବୋଚ୍ଚ ବନ୍ୟା ଜଳ ନିଷ୍କାସିତ ହୋଇ ପାରିବା ଭଳି ବ୍ୟାରେଜମାନ ପରିକଳ୍ପନା କରାଗଲା ।

ବ୍ୟାରେଜ ଦୁଇଟିର ବ୍ୟାବହାରିକ ପରୀକ୍ଷା ନିମନ୍ତେ ପୁନାରେ ଖଡ଼ଗ୍‌ୱାସ୍‌ଲା ସ୍ଥିତ କେନ୍ଦ୍ରୀୟ ଜଳ ବିଦ୍ୟୁତ ଗବେଷଣାଗାରକୁ ଦାୟିତ୍ୱ ଦିଆଗଲା ଏବଂ ଗବେଷଣା ଲବ୍ଧ ଜ୍ଞାନରୁ ବ୍ୟାରେଜ୍‌ର ବିଭିନ୍ନ ଅଂଶ ଓ ଗିଅରଗୁଡ଼ିକର ଅଭିକଳ୍ପନ ଏବଂ ନକ୍‌ସାଙ୍କନ ପାଇଁ କେନ୍ଦ୍ର ଜଳ ଆୟୋଗ ଦାୟିତ୍ୱ ବହନ କଲେ । ୧୯୬୮ ମସିହାରେ ତତ୍‌କାଳୀନ ରାଷ୍ଟ୍ରପତି ଏହି ଅଭିନବ ପ୍ରକଳ୍ପର ଶିଳାନ୍ୟାସ କରିଥିଲେ । ନିର୍ମାଣ ପାଇଁ ଆବଶ୍ୟକ ହେଉଥିବା ପର୍ଯ୍ୟାପ୍ତ ଅର୍ଥ ଯୋଗାଇ ଦେବାପାଇଁ ସରକାର ବିଶ୍ୱବ୍ୟାଙ୍କର ଋଣ ସାହାଯ୍ୟ ଲୋଡ଼ିଲେ । ବିଶ୍ୱବ୍ୟାଙ୍କ ରାଜ୍ୟର ଅର୍ଥନୈତିକ ସ୍ଥିତିର ଦୃଢ଼ୀକରଣ ନିମନ୍ତେ ବ୍ୟାରେଜ ଦୁଇଟିର ବ୍ୟୟ ଭରଣା କରିବାକୁ ସମ୍ମତି ଦେଲେ । ୧୯୮୦-୮୧ ବର୍ଷରେ ବ୍ୟାରେଜର ପ୍ରାଥମିକ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ଏକଶହ ଊଣେଇଶ କୋଟି ଅଠଷଠି ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ବ୍ୟାରେଜ ଦ୍ୱୟର କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଲା ।

ମହାନଦୀ ବ୍ୟାରେଜ, ଅବସ୍ଥିତ ପୁରାତନ ଆନିକଟର ମାତ୍ର ୭୦ ମିଟର ନିମ୍ନରେ ନିର୍ମାଣ କରାଯାଇଥିଲେ ହେଁ ବିରୂପା ବ୍ୟାରେଜ ପୁରାତନ ଆନିକଟଠାରୁ ୩୦୦ ମିଟର ଦୂରରେ ଅବସ୍ଥାପିତ ହୋଇଅଛି । ମହାନଦୀ ବ୍ୟାରଜର ଉଭୟ ପାର୍ଶ୍ୱରେ ତାଳଦଣ୍ଡା ଏବଂ କେନ୍ଦ୍ରାପଡ଼ା କେନାଲ ଦ୍ୱୟର ଶୀର୍ଷ ନିୟାମକ ବା ହେଡ୍ ରେଗୁଲେଟର୍‌ମାନ ନୂତନ ଭାବେ ନିର୍ମିତ ହୋଇଅଛି । ପୂର୍ବରୁ କେନ୍ଦ୍ରାପଡ଼ା କେନାଲ ବିରୂପା ଦକ୍ଷିଣ ପାର୍ଶ୍ୱରେ ନିମପୁର ଗ୍ରାମ ମଧ୍ୟ ଦେଇ ଗୋଟିଏ ସଂଯୋଗକାରୀ କେନାଲ କରାଯାଇ ଏହାକୁ କିଛି ଦୂରରେ କେନ୍ଦ୍ରାପଡ଼ା କେନାଲ ସହିତ ସଂଯୋଗ କରାଯାଇଛି । ମହାନଦୀ ବ୍ୟାରେଜରେ ୪୫ ଗୋଟି ଫୁକାର ରହିବା ସଙ୍ଗେ ସଙ୍ଗେ ଏହା ଉପରେ ଗୋଟିଏ ପ୍ରଶସ୍ତ ସଡ଼କ ପୋଲ ମଧ୍ୟ ନିର୍ମାଣ କରାଯାଇଅଛି । ଏହି ପୋଲ ଏବଂ ବିରୂପା ବ୍ୟାରେଜର ନୂତନ ପୋଲ ଦ୍ୱାରା କଟକ ସହର ଓ ଚୌଦ୍ୱାର ଶିଳ୍ପନଗରୀ ମଧ୍ୟରେ ଯୋଗାଯୋଗ ସହଜ ଓ କ୍ଷିପ୍ରତର ହୋଇ ପାରିଛି । ବିରୂପା ନଦୀର ବାମ ପାର୍ଶ୍ୱରେ ହାଇଲେଭଲ

କେନାଲର ଶୀର୍ଷ ନିୟାମକ ମଧ୍ୟ ନୂତନ ଭାବେ ନିର୍ମାଣ କରାଯାଇଛି । ଏହି ବ୍ୟାରେଜ ଦୁଇଟିରେ ଆଧୁନିକ ନିର୍ମାଣ ଜ୍ଞାନର କୌଶଳ ପ୍ରୟୋଗ କରାଯାଇଛି । ଯୋଗ୍ରାସ୍ଥିତ କଣ୍ଟ୍ରୋଲ ଟାୱାରରୁ ଉଭୟ ମହାନଦୀ ଓ ବିରୂପା ବ୍ୟାରେଜ ଦ୍ୱୟର ବିଶାଳକାୟ ଲୌହ କବାଟଗୁଡ଼ିକୁ କଂପ୍ୟୁଟର ଦ୍ୱାରା ନିୟନ୍ତ୍ରଣ କରିବାର ବ୍ୟବସ୍ଥା କରାଯାଇଛି । ବନ୍ୟା ଜଳ ପ୍ରବାହର ଗତି ପଥକୁ ନିୟନ୍ତ୍ରିତ କରିବା ପାଇଁ ପ୍ରଦର୍ଶକ ବନ୍ଧମାନ ଉଭୟ ବ୍ୟାରେଜର ତଳେ ଏବଂ ଉପରେ ନିର୍ମିତ ହୋଇଅଛି । କେନାଲକୁ ପଟୁ ପ୍ରବାହ ଓ ନିକଟରେ ପଠାଗଠନ ନିରୋଧ ପାଇଁ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଦୁଇଟି ଦୀର୍ଘ ସ୍ପର୍ ନିର୍ମାଣ କରାଯାଇଛି ।

ଏହି ପରିକଳ୍ପନା ନିର୍ମାଣରେ ୩,୮୭, ୫୦୦ ଘନ ମିଟର କଂକ୍ରିଟ୍, ୨୫, ୯୦୦ ଟନ୍ ଇସ୍ପାତ ଛଡ଼ ଏବଂ ଫାଟକ ଗୁଡ଼ିକ ପାଇଁ ୮,୦୦୦ ଟନ୍ ଇସ୍ପାତ ଗୃଦର ବ୍ୟବହୃତ ହୋଇଅଛି । କଂକ୍ରିଟ୍ କାମପାଇଁ ପ୍ରାୟ ୨୨ ଲକ୍ଷ ବସ୍ତା ସିମେଣ୍ଟ ବ୍ୟବହୃତ ହୋଇଅଛି । ୧୯୯୧ ମସିହା ଜୁନ୍ ମାସ ସୁଦ୍ଧା ନିର୍ମାଣ କାର୍ଯ୍ୟ ଶେଷ କରାଯାଇଅଛି । ଏହି ଯୋଜନାଟିର ନିର୍ମାଣ କାର୍ଯ୍ୟରେ ପ୍ରାୟ ୨୪୦ ଜଣ ବୈଷୟିକ, ୫୦୦ ଜଣ ଅଣ-ବୈଷୟିକ ଓ ୫୦୦ ଜଣ କୁଶଳୀ ଶ୍ରମିକ ନିଯୁକ୍ତ ହୋଇଥିଲେ । ଏତଦ୍‌ବ୍ୟତୀତ ଦେଶ ଓ ପ୍ରଦେଶ ବାହାରର ପରାମର୍ଶଦାତାଙ୍କଠାରୁ ସାହାଯ୍ୟ ଲୋଡ଼ା ଯାଇଥିଲା ।

କିଛିବର୍ଷ ପରେ ହୁଏତ ବର୍ତ୍ତମାନ ଅଭିନବ ଜ୍ଞାନ କୌଶଳରେ ନିର୍ମିତ ଏହି ବ୍ୟାରେଜ ଦ୍ୱୟ ପୁରୁଣା ହୋଇଯିବ କିନ୍ତୁ ଏହା ଯେ ନିଶ୍ଚିତଭାବେ ବହୁ ପୁରାତନ ମହାନଦୀ ତ୍ରିକୋଣଭୂମି ଜଳସେଚନ ଯୋଜନାକୁ ଜୀବନ୍ତ ଓ ଅଧିକ କାର୍ଯ୍ୟକ୍ଷମ କରି-ପାରିଛି ଏଥିରେ ସନ୍ଦେହ ନାହିଁ । ବ୍ୟାରେଜ ଦୁଇଟିକୁ ଦେଖିଲେ ମନେପଡ଼େ ବର୍ତ୍ତମାନ ନଦୀଗର୍ଭରେ ବୁଡ଼ି ରହିଥିବା ଭଙ୍ଗାରୁଜା ପୁରୁଣା ଆନିକଟ କଥା ଯାହାକୁ କି ଜଣେ ବ୍ରିଟିଶ ଇଞ୍ଜିନିୟର୍ ସାର୍ ଆର୍ଥର କଟନ୍ ୧୦୦ ରୁ ଊର୍ଦ୍ଧ୍ୱ ବର୍ଷ ତଳେ କଟକ ଜିଲ୍ଲାର କୃଷ ଜମିଗୁଡ଼ିକୁ ଜଳସେଚନ ସୁବିଧା ଦେବାପାଇଁ ପ୍ରଥମ ପରିକଳ୍ପନା କରି ରୂପାୟିତ କରିଥିଲେ କାର୍ଯ୍ୟରେ ।

୧୯୭୮ ମସିହାଠାରୁ ୧୯୮୯ ପର୍ଯ୍ୟନ୍ତ ଯାହାଙ୍କର ଅକ୍ଳାନ୍ତ ଉଦ୍ୟମରେ ଏହି ବ୍ୟାରେଜର କାର୍ଯ୍ୟ ପ୍ରାୟ ୯୦ ଭାଗ ଶେଷ ହୋଇ ପାରିଥିଲା, ସେ ଥିଲେ ମହାନଦୀ, ବିରୂପା ବ୍ୟାରେଜର ଚିଫ୍‌ଇଞ୍ଜିନିୟର ସ୍ୱର୍ଗତ ମୁକୁନ୍ଦ ପ୍ରସାଦ ମହାପାତ୍ର । ଏହି ବିରାଟ କାର୍ଯ୍ୟକୁ ନିଜ ତତ୍ତ୍ୱାବଧାନରେ ସୁନ୍ଦରରୂପେ ତୁଲାଇ ପାରିଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ହେବା ପୂର୍ବରୁ ଉତ୍କଳ ବାସୀଙ୍କଠାରୁ ଚିରଦିନ ପାଇଁ ୧୯୮୯ ମସିହାରେ ବିଦାୟନେଲେ । ହେଲେ ତାଙ୍କର ଏ କୃତି ଅବିସ୍ମରଣୀୟ ହୋଇ ରହିବ ସମସ୍ତଙ୍କ ମାନସ ପଟରେ । ସେଇ ଦକ୍ଷ ଇଞ୍ଜିନିୟର ଆମ ପାଖରେ ନଥିଲେ ମଧ୍ୟ ମହାନଦୀ ବିରୂପା ବ୍ୟାରେଜର ପ୍ରତିସ୍ତମ୍ଭ ତାଙ୍କର ଗୁଣଗାରିମା ସ୍ତୁତିଗାନ କରୁଥିବ ।



# କଟକର ରିଂ ବନ୍ଧ

ଇଂ. ଅକ୍ଷୟ ଚନ୍ଦ୍ର ରାୟ

ପ୍ରାଗ୍ ଐତିହାସିକ ମଣିଷ ଜଙ୍ଗଲ ଛାଡ଼ିଲା । ଜଙ୍ଗଲ ଓ ନଦୀ ମଧ୍ୟରେ ଟିକିଏ ଉର୍ବର ଜମି ଦେଖି ପ୍ରଥମ ବସତି ଥାପିଲା । ନଦୀ ଉପକୂଳରେ ଗଢ଼ି ଉଠିଲା ମାନବ ଜାତିର ଭାଷା, ସଂସ୍କୃତି ବାଣିଜ୍ୟ ଏବଂ ବିଜ୍ଞାନର କେନ୍ଦ୍ରସ୍ଥଳ, କେତେକେତେ ଉନ୍ନତ ସହର ।

ନଦୀ ଯେପରି ତାର ଅନନ୍ତ ଯାତ୍ରାପଥରେ କ୍ରମଶଃ ଗଭୀର ଓ ପ୍ରଶସ୍ତ ହୁଏ, ନଦୀକୁ ଆଶ୍ରା କରିଥିବା ଉପକୂଳବର୍ତ୍ତୀ ମାନବ ଗୋଷ୍ଠୀଟି ସେହିପରି କ୍ରମଶଃ ଅଭିଜ୍ଞତାରେ, ଜ୍ଞାନରେ, ବିଜ୍ଞାନରେ ବ୍ୟାପକ ଏବଂ ସମୃଦ୍ଧ ହେବାରେ ଲାଗିଲା । ଅତୀତର ଇତିହାସ ସହ ନୂତନ ପୃଷ୍ଠା ଯୋଗ କରି ଚାଲିଲା ମାନବ ଜାତିର ପ୍ରତିଟି ବଂଶଧର ।

ପୂର୍ବଭାରତର ପ୍ରଧାନ ନଦୀ "ମହାନଦୀ"ର ଉପକୂଳରେ କେଜାଣି କେତେ-ହଜାର ବର୍ଷ ତଳେ କେତେକେତେ ଜନପଦ ଗଢ଼ିଉଠିଥିବ ନଷ୍ଟ ହିନ୍ନ ହୋଇଥିବ ତାର ଲିଖିତ ଇତିହାସ ନାହିଁ । ଜନପଦ ବଢ଼ିବଢ଼ି ଗଢ଼ି ଉଠିଥିବ ମହାନ ଏକ ସହର "ବାରଣାସୀ କଟକ ।"

ମଧ୍ୟ ପ୍ରଦେଶର ବସ୍ତର ଜିଲ୍ଲାରୁ ମହାନଦୀର ଯାତ୍ରାରମ୍ଭ । ଆଠଶହ କିଲୋମିଟର ପରେ ନରାଜଠାରେ ମହାନଦୀ କେଜାଣି କି ମହାନ ଆକାଂକ୍ଷା ପୋଷଣ କରି ନିଜକୁ କରିଦେଲା ଦୁଇଭାଗ । ଦକ୍ଷିଣ ପଟେ ବହିଗଲା ମହାନଦୀର ପ୍ରଥମ ଶାଖାନଦୀ କାଠଯୋଡ଼ି । ମହାନଦୀ-କାଠଯୋଡ଼ିର ଗୋଜିଆ ବିଭକ୍ତ ସ୍ଥଳ 'ନାସୀ' ନାମିତ ହେଲା 'ବାରାନାସୀ'ରେ ।

ଭୌମକର ବା ଭୂୟାଂ, ବଂଶର ରାଜତ୍ୱ ଅନ୍ତେ ଦଶମ ଶତାବ୍ଦୀରୁ ଦ୍ୱାଦଶଶତାବ୍ଦୀ ଭିତରେ ଦୁଇଶହ ବର୍ଷଧରି ସୋମବଂଶୀ ରାଜାମାନେ ଓଡ଼ିଶାର ଭାଗ୍ୟଧରିହେଲେ । ଏହି ବଂଶକୁ ଅନେକ ଐତିହାସିକ କେଶରୀବଂଶ ବୋଲି କହନ୍ତି ।

ଇତିହାସର ପୃଷ୍ଠାକହେ ସୋମବଂଶର କେଶରୀମାନେ କୀର୍ତ୍ତିମାନ ଥିଲେ । ସେଇ ବଂଶର ରାଜାମାନେ ପୁରୀର ବିଶ୍ୱପ୍ରସିଦ୍ଧ ଜଗନ୍ନାଥ ମନ୍ଦିରର ପୁନର୍ନିର୍ମାଣ କରିଥିଲେ ଏବଂ

ଭୁବନେଶ୍ୱରର ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ । ସୋମବଂଶୀୟ କେଶରୀମାନଙ୍କ ଭିତରେ ନୃପ କେଶରୀ ଆଜି କଟକବାସୀଙ୍କର ପ୍ରାତଃ ସ୍ମରଣୀୟ । ନୃପ କେଶରୀ ୯୮୯ ଖ୍ରୀଷ୍ଟାବ୍ଦରେ ମହାନଦୀ କାଠଯୋଡ଼ିର ଉଦ୍ଭର ତ୍ରିକୋଣଭୂମିରେ ପ୍ରତିଷ୍ଠା କଲେ କଟକ ସହର । ପରେ ତୃତୀୟ ଅନଙ୍ଗଭୀମଦେବ (୧୨୧୧-୧୨୩୮ ଖ୍ରୀଷ୍ଟାବ୍ଦ)ରେ ପ୍ରତିଷ୍ଠା କଲେ ବାରବାଟୀ ଦୁର୍ଗ । ଅନଙ୍ଗଭୀମଦେବଙ୍କ ପରବର୍ତ୍ତୀ ଗଙ୍ଗବଂଶୀୟ ନୃପତିମାନେ ବାରାଣସୀ କଟକରେ ରାଜଧାନୀ ସ୍ଥାପନକରି ଅବସ୍ଥାନ କଲେ । ସହରର ନୂତନ ନାମକରଣ ହେଲା ଅଭିନବ ବାରାଣସୀ କଟକ ।

କପିଳେନ୍ଦ୍ର ଦେବ ଓଡ଼ିଶାର ସିଂହାସନ ଲାଭ କରିବା ସମୟରେ କଟକ ସହର ଏକ ସମୃଦ୍ଧ-ସୁଶୋଭିତ ସହରରେ ପରିଣତ ହୋଇ ସାରିଥିଲା ବୋଲି କେତେକ ତାମ୍ର ଶାସନରୁ ଜଣାପଡ଼େ । ଏହି ସୁନ୍ଦର-ସମୃଦ୍ଧ କଟକ ସହରର ପ୍ରଲୋଭନରେ ଟାଣିହୋଇ ଆସିଛନ୍ତି ମୋଗଲ, ଆଫଗାନ, ମରହଟ୍ଟା ଏବଂ ସର୍ବଶେଷରେ ଇଂରେଜମାନେ ।

କିନ୍ତୁ ଯେଉଁ ନଦୀ ନିଜକୁ ଦୁଇଭାଗ କରି କଟକ ସହର ପାଇଁ ସୃଷ୍ଟି କରିଥିଲା ତ୍ରିକୋଣ ମାଟି ସେଇ ପୁଣି କଟକ ସହର ପ୍ରତି ବିପଦ ହୋଇ ଠିଆହେଲା । ହଠାତ୍ ବର୍ଷା କାଳରେ ମହାନଦୀ ଏବଂ କାଠଯୋଡ଼ି ଅତର୍କିତ ଭାବେ କୂଳ ଅତିକ୍ରମି କଟକର ଘରଦ୍ୱାରକୁ ଭସାଇ ନେଲା । ବର୍ଷ ନୁହେଁ ପ୍ରତିବର୍ଷ—କେତେ କେତେ କଟକବାସୀ ମହାନଦୀର ପ୍ରଳୟଙ୍କରୀ ବନ୍ୟାର ଶିକାର ହୋଇଥିବେ ତାହା ମାଦଳାପାଞ୍ଜି ବା ଇତିହାସ ଖୋଜାଇଲେ ମିଳିବ ନାହିଁ । ମଣିଷର ଲହୁ, ଲୁହ, ସ୍ୱେଦ ମହାନଦୀର ବନ୍ୟା-ଜଳରେ ମିଶିଗଲା । ନମେ ମହାନଦୀର କାଉସାହିକୁ ମଣିଷ ବୁଝି ପାରିଲା । ନଦୀସହ ଲଢ଼ିବାକୁ ସେ ବୁଦ୍ଧି ପାଞ୍ଚିଲା । କେତେ କେତେ ଉପାୟ କରିଥିବେ କଟକବାସୀ—ପୁଣି କେଶରୀ ରାଜାମାନେ ।

ଅବଶେଷରେ ତତ୍କାଳୀନ ରାଜା ନୃପ ମର୍କତକେଶରୀ ମହାନଦୀ-କାଠଯୋଡ଼ି ଧାରେ ଧାରେ ପଥରବନ୍ଧ ନିର୍ମାଣ କରାଇଲେ । ଶୁଣାଯାଏ ରାଜଧାନୀ କଟକ ସହରକୁ ବନ୍ୟାବାଢ଼ିରୁ ରକ୍ଷା କରିବା ପାଇଁ ବାଇମୁଣ୍ଡି ନାମକ ଜଣେ କଟକବାସିନ୍ଦା ବୁଦ୍ଧି ପଥରବନ୍ଧ ନିର୍ମାଣର ପ୍ରସ୍ତାବ ମର୍କତକେଶରୀଙ୍କୁ ଦେଇଥିଲେ । ଆଜି ମଧ୍ୟ ଲୋକ ମୁଖରେ ପ୍ରଚଳିତ ଅଛି 'କଟକ ଚିନ୍ତା ବାଇବାମୁଣ୍ଡିକି" କଟକ ସହରର ଜଣେ ସାଧାରଣ ବାସିନ୍ଦା ବାଇମୁଣ୍ଡିର ଏ ବିଜ୍ଞାନସମ୍ମତ ଚିନ୍ତାକୁ ଯଦି ଓଡ଼ିଶା ନୃପତି ସମ୍ମାନ ଦେଇନଥାନ୍ତେ ତେବେ ଆଜି କଟକ ସହରର ରୂପରେଖ କ'ଣ ହୋଇଥାନ୍ତା କିଏ ଜାଣେ ?

ପୁରାତନ ପଥରବନ୍ଧ କାଠଯୋଡ଼ିର ବାମପାର୍ଶ୍ୱରେ ଚଢ଼ିଆ ଠାରୁ ସତୀଚଉରା, ହରହର ଘାଟ, ଗଣେଶ ଘାଟ, ପୁରୀଘାଟ ଦେଇ ଖାନନଗର ପର୍ଯ୍ୟନ୍ତ ଓ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଚଢ଼ିଆ ଘାଟଠାରୁ ଗଡ଼ଗଡ଼ିଆ ଘାଟ ମାଛମଠ ହୋଇ ଯୋବ୍ରା ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଏହି ପଥରବନ୍ଧ ସ୍ଥଳବିଶେଷରେ ୩ ମିଟରରୁ ୬ ମିଟର ପର୍ଯ୍ୟନ୍ତ ଉଚ୍ଚଥିଲା ଓ ଏହାର ଚଉଡ଼ା ୧୨୦ ମିଟରରୁ ୧୬୦ ମିଟର ମଧ୍ୟରେ ଥିଲା । ଏହା ମାଙ୍କଡ଼ା ପଥର ଓ ସ୍ଥାନେ ସ୍ଥାନେ Hard Stone ଦ୍ୱାରା ନିର୍ମାଣ କରାଯାଇଥିଲା । ଏହି ପଥରବନ୍ଧରେ ବନ୍ୟାଜଳକୁ ନଦୀ ମଧ୍ୟକୁ ପ୍ରବାହିତ କରାଇବା ପାଇଁ ସ୍ଥାନେ ସ୍ଥାନେ ବୁରୁଜ ନିର୍ମାଣ କରାଯାଇଥିଲା । ବନ୍ଧର କାରୁକାର୍ଯ୍ୟ ଆଧୁନିକ ବୈଷୟିକ ନିର୍ମାଣ କୌଶଳଠାରୁ କୌଣସି ଗୁଣରେ ନ୍ୟୁନ ନଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ୧୮୫୫ ଖ୍ରୀଷ୍ଟାବ୍ଦରେ ମହାନଦୀରେ ଆସିଥିଲା ନାହିଁ ନଥିବା ବନ୍ୟା । କଲିକତାରୁ କ୍ୟାପ୍ଟେନ ଜନ୍ ହ୍ୟାରିସ୍ ଆସିଲେ ଏହି ବନ୍ଧର କ୍ଷତିଗ୍ରସ୍ତ ସ୍ଥାନମାନଙ୍କ ମରାମତି କରାଇବା ପାଇଁ । ଭଗ୍ନ ବାରବାଟି ଦୁର୍ଗ ମଧ୍ୟରୁ ପଥରମାନ ନେଇ ବନ୍ଧମରାମତି କରାଇଥିଲେ । ଦୁର୍ଗ ମଧ୍ୟରେ ପଡ଼ିଥିବା ଅନେକ ଭଗ୍ନ ପଥରଖଣ୍ଡମାନ ମଧ୍ୟ ବନ୍ଧ ମରାମତି କାର୍ଯ୍ୟରେ ବ୍ୟବହାର କରାଯାଇଥିଲା ।

ଏହି ବନ୍ଧଦ୍ୱାରା କଟକ ସହର ବନ୍ୟା ଦାଉରୁ ରକ୍ଷା ପାଉଥିଲା । ସମୟ କ୍ରମେ ତାଳଦଣ୍ଡା କେନାଲ, ଦକ୍ଷିଣ ପୂର୍ବ ରେଳପଥ ଓ ଜାତୀୟ ରାଜପଥ ଆଦି ନିର୍ମାଣ ହେବାରୁ ଏହି ବନ୍ଧ ଉଭୟ କାଠଯୋଡ଼ି ଓ ମହାନଦୀ ପଟେ ବର୍ଦ୍ଧିତ ହୋଇଅଛି ।

ମହାନଦୀର ତ୍ରିକୋଣଭୂମି ଅଞ୍ଚଳରେ ବନ୍ୟାର ପ୍ରକୋପକୁ ହ୍ରାସକରିବା ପାଇଁ ହୀରାକୁଦ ବହୁମୁଖୀ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ କରାଗଲା । (୧୯୫୦-୬୧) ଏହା ଦ୍ୱାରା ତ୍ରିକୋଣଭୂମି ଅଞ୍ଚଳରେ ବନ୍ୟା ନିୟନ୍ତ୍ରଣ କରାଯାଇ ପାରିଲା ସତ, ମାତ୍ର ହୀରାକୁଦର ନିମ୍ନ ଅଞ୍ଚଳରୁ ପ୍ରବାହିତ ବନ୍ୟାଜଳ ମହାନଦୀରେ କରାଳ ବନ୍ୟା ସୃଷ୍ଟିକରି ୧୯୮୦ ଓ ୧୯୮୨ ମସିହାରେ ତ୍ରିକୋଣଭୂମି ଅଞ୍ଚଳରେ ପ୍ରଭୁତ କ୍ଷତି ସାଧନକଲା । ନରାଜଠାରେ ମହାନଦୀର ଜଳପ୍ରଭାବ ଅଞ୍ଚଳ ପ୍ରାୟ ୧, ୩୨୦, ୮୫ ବର୍ଗ କିଲୋମିଟର ହୋଇଥିବା ବେଳେ ହୀରାକୁଦ ବନ୍ଧର ନିମ୍ନ ଅଞ୍ଚଳର ଜଳପ୍ରବାହ ଅଞ୍ଚଳ ପ୍ରାୟ ୫୧, ୧୭୫ ବର୍ଗ କିଲୋମିଟର ଅଟେ । ଏହି ନିମ୍ନ ଭାଗର ଜଳପ୍ରବାହ ଅଞ୍ଚଳ ଉପରେ କୌଣସି ପ୍ରକାର ନଦୀବନ୍ଧ ଯୋଜନା ନ ଥିବାରୁ ଅତ୍ୟଧିକ ବର୍ଷାହେଲେ ଏହି ବନ୍ୟାଜଳ ତ୍ରିକୋଣଭୂମି ଅଞ୍ଚଳରେ ହଠାତ୍ ବୃଦ୍ଧି ପାଇ ବିଶେଷ କ୍ଷତି କରିଥାଏ ।

ଶହ ଶହ ବର୍ଷର ପୁରାତନ ପଥର ବନ୍ଧ ମଧ୍ୟ ଏହି ବନ୍ୟାର ପ୍ରକୋପରେ ବହୁ ସ୍ଥାନରେ କ୍ଷତିଗ୍ରସ୍ତ ହୋଇଥିଲା । କାଠଯୋଡ଼ିର ଗଡ଼ଗଡ଼ିଆ ଘାଟ, ଶିଶୁଭବନ, କଲେକ୍ଟୋରିଏଟ, ସନ୍‌ସାଇନ ପଡ଼ିଆ, ପୁରୀଘାଟ, ରାଜାବଗିଚା ଓ ଖାନନଗର ଆଦି ସ୍ଥାନମାନଙ୍କରେ ଝରପଡ଼ ଆତଙ୍କ ସୃଷ୍ଟି କରିଥିଲା । ସେହିପରି ମହାନଦୀ ପଟେ, ଗୋରା କବର, ଗଡ଼ଗଡ଼ିଆ, ମାଛାମଠ ଓ ଯୋବ୍ରା ଆଦି ସ୍ଥାନମାନଙ୍କରେ ବିପଦ ସୃଷ୍ଟି ହୋଇଥିଲା । ଏପରିକି ୧୯୮୨ ରେ ଜିଲ୍ଲା ପ୍ରଶାସନ ଓ ଜଳସେଚନ ବିଭାଗ ତରଫରୁ ସମଗ୍ର ସହରକୁ ବିପଦାପନ୍ନ ବୋଲି ଘୋଷଣା କରାଯାଇ ଲୋକମାନଙ୍କୁ ନିରାପଦ ସ୍ଥାନମାନଙ୍କରେ ଆଶ୍ରୟ ନେବାକୁ ପରାମର୍ଶ ଦିଆଯାଇଥିଲା ।

ବନ୍ଧଗୁଡ଼ିକର ଦୁର୍ବଳ ସ୍ଥାନମାନଙ୍କରେ ନିରାପତ୍ତା ରକ୍ଷା କରିବା ପାଇଁ ସରକାରୀ କର୍ମଚାରୀ, ପୋଲିସ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସ୍ଥାନମାନଙ୍କୁ ଦିନରାତି ଜଗି ରହିଥିଲେ। ୧୯୮୦ ମସିହାରେ ନରାଜଠାରେ ସର୍ବୋଚ୍ଚ ବନ୍ୟା ଜଳର ପରିମାଣ ୩୫,୭୨୪ ଘନମିଟର (୧୨,୬୭,୬୭୯ ଘନଫୁଟ) ହୋଇଥିବାସ୍ଥଳେ ୧୯୮୨ ମସିହାରେ ଏହା ୪୪୭୪୩ ଘନମିଟର (୧୫,୮୦,୦୩୧) ଘନଫୁଟ ହୋଇଥିବାର ରେକର୍ଡ କରାଯାଇଛି। ଉକ୍ତ ବନ୍ୟା ଫଳରେ ତଳ ଅଞ୍ଚଳରେ ବହୁ ସ୍ଥାନରେ ଘାଇମାନ ହୋଇ ବହୁ ଧନ ଜୀବନର କ୍ଷତି ଘଟାଇଥିଲା। ତଳ ଅଞ୍ଚଳରେ ଘାଇ ହୋଇଯିବାରୁ ନଦୀର ବନ୍ୟାଜଳ ପତନ ହ୍ରାସ ପାଇଥିଲା ଓ କଟକ ସହର ରକ୍ଷା ପାଇଯାଇଥିଲା। ୧୯୮୨ ବନ୍ୟା ସମୟରେ ୩୧।୮।୮୨ ଦିନ ଫାଶିଦିଆ ବରଗଛଠାରୁ ଗଡ଼େଶ୍ୱର ମନ୍ଦିର ପର୍ଯ୍ୟନ୍ତ ବନ୍ୟାଜଳ ନଦୀବନ୍ଧ ଅତିକ୍ରମ କରି ଗଡ଼ଖାଇ ମଧ୍ୟରେ ପ୍ରବେଶ କରିଥିଲା। ଯଦି ନିମ୍ନ ଅଞ୍ଚଳରେ ଘାଇମାନ ସୃଷ୍ଟି ହୋଇ ନଥାନ୍ତା ତେବେ ଆଉ କେତେ ଘଣ୍ଟା ପରେ ବନ୍ୟାଜଳ କଟକ ସହର ମଧ୍ୟଦେଇ ପ୍ରବାହିତ ହୋଇ ସହରକୁ ବନ୍ୟାପ୍ଳାବିତ କରିଥାନ୍ତା ଓ ପ୍ରଭୂତ କ୍ଷତି ସାଧନ କରିଥାନ୍ତା। ଏହା ଲେଖକର ପ୍ରତ୍ୟକ୍ଷ ଅନୁଭୂତି।

କଟକ ସହର ହେଉଛି ଓଡ଼ିଶାର ସାଂସ୍କୃତିକ ଓ ବ୍ୟାବସାୟିକ ପ୍ରାଣକେନ୍ଦ୍ର। ୧୯୫୦ ମସିହା ପର୍ଯ୍ୟନ୍ତ ଏହା ଓଡ଼ିଶାର ରାଜଧାନୀ ଥିଲା। ଏତଦ୍‌ବ୍ୟତୀତ ଏଠାରେ ହାଇକୋର୍ଟ, ଶିଶୁଭବନ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, ରେଭେନ୍‌ସା କଲେଜ, ଆକାଶବାଣୀ, ଦୂରଦର୍ଶନ କେନ୍ଦ୍ର ଆଦି ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରତିଷ୍ଠାନ ଅବସ୍ଥିତ। ଏସବୁକୁ ବିଚାରକୁ ନେଇ ୧୬।୧୨।୮୦ରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଏବଂ ତାଙ୍କ ସରକାର କଟକ ନଗର ଚତୁଃପାର୍ଶ୍ୱରେ ରିଂ ବନ୍ଧ ନିର୍ମାଣ କରିବାର ନିଷ୍ପତ୍ତି ନେଲେ। ବୈଷୟିକ ପରାମର୍ଶଦାତା କମିଟିର ସୁପାରିଶ ଅନୁସାରେ ଏହି ବନ୍ଧକୁ ନରାଜଠାରେ ୪୨,୪୭୫ ଘନମିଟର (୧୫ ଲକ୍ଷ ଘନଫୁଟ) ବନ୍ୟା ଜଳର ଜଳପତନଠାରୁ ଦୁଇମିଟର ଉଚ୍ଚ କରିବାର ସ୍ଥିର କରାଗଲା। ଏହି କାର୍ଯ୍ୟ ପୁନେଠାରେ ଥିବା କେନ୍ଦ୍ରୀୟ ଜଳବିଦ୍ୟୁତ ରିସର୍ଚ୍ଚ ଷ୍ଟେସନଠାରେ ମଡେଲ ଷ୍ଟଡ଼ି ଦ୍ୱାରା ନିର୍ଦ୍ଧାରିତ କରାଯାଇଥିଲା। ଆହୁରି ମଧ୍ୟ ସ୍ଥିର କରାଗଲା ଯେ, ଏହି ବନ୍ଧକୁ ମହାନଦୀ ପଟେ ଚହଟା ଠାରୁ ନରାଜ ପର୍ଯ୍ୟନ୍ତ ଓ କାଠଯୋଡ଼ି ପଟେ ହରିହରଘାଟଠାରୁ ନରାଜ ପର୍ଯ୍ୟନ୍ତ ବର୍ଦ୍ଧିତ କରାଯିବ, ଯାହା ଫଳରେ ଏହା ମଧ୍ୟରେ ଥିବା ପ୍ରାୟ ୧୦୦୦ ହେକ୍ଟର ଜମିକୁ ଉନ୍ନତ କରାଯାଇ କଟକ ସହରର ସୀମାବୃଦ୍ଧି କରାଯିବ। ଏତଦ୍ ବ୍ୟତୀତ କଟକ ନଗରର କ୍ରମ ବର୍ଦ୍ଧମାନ ଯାନବାହନ ଓ ଲୋକସଂଖ୍ୟାକୁ ବିଚାରକୁ ନେଇ ସ୍ଥିର କରାଗଲା ଯେ, ରିଂ ରୋଡ଼କୁ ୭.୭୦ ମିଟର ଚଉଡ଼ାର ଦୁଇଟି ଲେନରେ ନିର୍ମାଣ କରାଯିବ ଯାହାଫଳରେ ସହର ମଧ୍ୟରୁ ଯାନବାହନର ଗମନାଗମନ ହ୍ରାସ ପାଇବ ଓ ଲୋକେ ସୁବିଧାରେ ରିଂ ରୋଡ଼ରେ ଯାତାୟାତ କରିପାରିବେ।

ମହାନଦୀ ପଟେ ଗୋରାକବର ଓ ଗଡ଼ଗଡ଼ିଆଠାରୁ ମାଛାମଠ ପର୍ଯ୍ୟନ୍ତ ଓ କାଠଯୋଡ଼ିପଟେ ଶିଶୁଭବନ କଲେକ୍ଟରଏଟ ଓ ଖାନନଗର ଆଦି ସ୍ଥାନମାନଙ୍କରେ

ରିଂରୋଡ଼ ପାଇଁ ଆବଶ୍ୟକ ସ୍ଥାନ ନଥିବାରୁ ଏହି ସ୍ଥାନମାନଙ୍କରେ ରିଂ ରୋଡ଼କୁ ନଦୀଶଯ୍ୟା ମଧ୍ୟରେ ନିଆ ଯାଇଅଛି । ଉପରୋକ୍ତ ସମସ୍ତ ଅନୁସନ୍ଧାନ କାର୍ଯ୍ୟ ମହାନଦୀ ଦକ୍ଷିଣ ଡିଭିଜନର ନିର୍ବାହୀ ଯନ୍ତ୍ରୀଙ୍କ ଦ୍ୱାରା କରାଯାଇ ଆବଶ୍ୟକୀୟ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କିନ୍ତୁ କାର୍ଯ୍ୟର ପରିବ୍ୟାପ୍ତି ଓ ସମୟସୀମାକୁ ଦୃଷ୍ଟିରେ ରଖି ଜଳସେଚନ ବିଭାଗ ତରଫରୁ ଜାନୁୟାରୀ ୧୯୮୩ ମସିହାରେ କଟକଠାରେ "କଟକ ଜଳସେଚନ ଡିଭିଜନ" ନାମକ ଏକ ସ୍ୱତନ୍ତ୍ର ଡିଭିଜନ ଖୋଲାଯାଇ ଏହି କାର୍ଯ୍ୟ ତାଙ୍କୁ ନ୍ୟସ୍ତ କରାଯାଇଥିଲା । ରିଂ ରୋଡ଼ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପରେ ୧୯୯୦ ମସିହା ଅଗଷ୍ଟ ମାସରେ ଏହା ପୁନର୍ବାର ମହାନଦୀ ଦକ୍ଷିଣ ଡିଭିଜନ ସହିତ ମିଶି ଯାଇଛି ।

୧୯୮୩ ମସିହା ଠାରୁ ୧୯୯୦ ମସିହା ମଧ୍ୟରେ ଉକ୍ତ ରିଂ ରୋଡ଼ର ନିର୍ମାଣ କାର୍ଯ୍ୟ ଶେଷ ହୋଇଅଛି । ଏହା କାଠଯୋଡ଼ି ପଟେ ଚହଟା ଠାରୁ ପ୍ରେସ ଛକ ପର୍ଯ୍ୟନ୍ତ ୮.୫୦ କିଲୋମିଟର ଲମ୍ବ ଓ ମହାନଦୀ ପଟେ ଚଟାଣ ଠାରୁ ଗଣ୍ଡରପୁର ପର୍ଯ୍ୟନ୍ତ ୮.୭୦ କିଲୋମିଟର ଲମ୍ବ ଅଟେ । ଏତଦ୍‌ବ୍ୟତୀତ ବାଲିନାଶୀ ରିଂ ବନ୍ଧ (କାଠଯୋଡ଼ି ପଟେ ନଗରଠାରୁ ହରହର ଘାଟ ପର୍ଯ୍ୟନ୍ତ ୮.୭୦ କିଲୋମିଟର ଓ ମହାନଦୀ ପଟେ ନଗରଠାରୁ ଚହଟା ପର୍ଯ୍ୟନ୍ତ ୭.୫୦ କିଲୋମିଟର ଲମ୍ବ) ନିର୍ମାଣ କାର୍ଯ୍ୟ ମଧ୍ୟ କରାଯାଇଛି । ଏଥିସହିତ କେନ୍ଦ୍ରସରକାରଙ୍କ ଉର୍ଦ୍ଧ୍ୱ ପୁରାତନ ମହାନଦୀ ଓ କାଠଯୋଡ଼ି ଆନିକଟ ବଦଳରେ ବିଶ୍ୱ ବ୍ୟାଙ୍କର ସହାୟତାରେ ଦୁଇଟି ନୂତନ ବ୍ୟାରେଜ ନିର୍ମାଣ କରାଯାଇ ତ୍ରିକୋଣଭୂମି ଅଞ୍ଚଳର ଜଳସେଚନ ବ୍ୟବସ୍ଥାକୁ ଅଧିକ ନିର୍ଭର ଯୋଗ୍ୟ କରାଯାଇ ପାରିଛି ।

ଏହି ରିଂ ରୋଡ଼କୁ ବିଭିନ୍ନ ମୁଖ୍ୟ ସ୍ଥାନମାନଙ୍କରେ ସହରର ମୂଳରାସ୍ତା ସହିତ ସଂଯୋଗ କରାଯାଇଅଛି । ପଥଚାରୀଙ୍କ ଯିବାଆସିବା ପାଇଁ ଉଭୟ ପାର୍ଶ୍ୱରେ ପାଦଚଲା ରାସ୍ତା (ଫୁଟ୍‌ପାଥ୍) ମାନ କରାଯାଇ ଅଛି । ଉଭୟ ରାସ୍ତାର ମଧ୍ୟ ଭାଗରେ ସ୍ଥାନେ ସ୍ଥାନେ ବୃକ୍ଷ ରୋପଣ କରାଯାଇଅଛି । ଏହି କାର୍ଯ୍ୟପାଇଁ ମୋଟ୍ ୧୨୯୯.୭୩ ଲକ୍ଷ ଟଙ୍କା ବ୍ୟୟ କରା-ଯାଇଅଛି ଓ ବାଲିନାଶୀ ରିଂ ବନ୍ଧପାଇଁ ମୋଟ ୨୪୮.୮୮ ଲକ୍ଷ ଟଙ୍କା ବ୍ୟୟ କରାଯାଇ ଅଛି । ବର୍ତ୍ତମାନ ବାଲିନାଶୀ ରିଂ ମଧ୍ୟବର୍ତ୍ତୀ ଅଞ୍ଚଳର ଉନ୍ନୟନ କାର୍ଯ୍ୟ କଟକ ସହର ଉନ୍ନୟନ (କଟକ ଡେଭେଲପମେଣ୍ଟ ଅଥରିଟି)"ଙ୍କ ଉପରେ ନ୍ୟସ୍ତ ଅଛି ଓ ପର୍ଯ୍ୟାୟ କ୍ରମେ ଏହାର ଉନ୍ନତି ସାଧିତ ହେଉଅଛି । ଏତଦ୍ ବ୍ୟତିତ ମହାନଦୀରେ ଥିବା ପଠାମାନଙ୍କର ଉନ୍ନତି ପାଇଁ ଯୋଜନା ପ୍ରସ୍ତୁତ କରାଯିବାର କାର୍ଯ୍ୟକ୍ରମ ରହିଅଛି ।

ବର୍ତ୍ତମାନ ରିଂ ରୋଡ୍ ନିର୍ମାଣ ଶେଷ ହେଲାପରେ ଯନ୍ତ୍ରୀର ମୁଖ୍ୟ କାର୍ଯ୍ୟ ପ୍ରାୟଶେଷ ହୋଇଛି । ଗମନା ଗମନରେ ସୁବିଧା ହୋଇଛି କଟକ, ନଗରର କଳେବର ବୃଦ୍ଧି ପାଇଛି; କିନ୍ତୁ ପରିତାପର ବିଷୟ, ରିଂ ବନ୍ଧ ପାର୍ଶ୍ୱରେ ଥିବା ସରକାରୀ ଜମିକୁ ଶତାଧିକ ସ୍ଥାନରେ ଜବର ଦଖଲ କରାଯାଉଛି । ଏହା ଫଳରେ ରିଂ ରୋଡ଼ର ମରାମତି, ରକ୍ଷଣା ବେକ୍ଷଣ ବାଧାପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟ ହାନି ମଧ୍ୟ ହେଉଛି ।

ସମୁଦ୍ର ପୋଡ ସେତୁବନ୍ଧ ନିର୍ମାଣ ହୋଇଥିଲା ସୀତାଙ୍କୁ ରାବଣ କବଳରୁ ରକ୍ଷା କରିବା ପାଇଁ । ନଦୀ ପୋଡ ରିଂ ବନ୍ଧ ନିର୍ମିତ ହୋଇଛି ଅଗଣିତ ମଣିଷଙ୍କୁ ବନ୍ୟା କବଳରୁ ଉଦ୍ଧାର କରିବା ପାଇଁ । ଏହା ୧୯୮୧ ବନ୍ୟାରେ ପ୍ରମାଣିତ ହୋଇଯାଇଛି । ବନ୍ଧ ନିର୍ମାଣର ଉଦ୍ଦେଶ୍ୟ ସବୁକାଳେ ମହତ୍ତ୍ୱ । ରିଂ ବନ୍ଧର ନିର୍ମାଣରେ ଅଗଣିତ ମଣିଷର ଅବଦାନ ରହିଛି । ତାର ରକ୍ଷଣା ବେକ୍ଷଣ ଦାୟିତ୍ୱ ମଧ୍ୟ ଅଗଣିତ ମଣିଷର । କଟକ ରିଂ ବନ୍ଧ ବିପନ୍ନ ହେଲେ କଟକ ସହର ବିପନ୍ନ ହେବ । କଟକ ସହର ସମସ୍ତଙ୍କର । ତେଣୁ ରିଂ ବନ୍ଧର ସୁରକ୍ଷା ପ୍ରତି ସମସ୍ତଙ୍କର ଧ୍ୟାନ ରହିବା ଆବଶ୍ୟକ ।

"କଟକ ଚନ୍ଦ୍ରା ବାଇ ମୁଣ୍ଡି କି" ରିଂ ବନ୍ଧ ଚନ୍ଦ୍ରା କାହାକୁ ? ଆମ ସମସ୍ତଙ୍କୁ । ଯୁଗେ ଯୁଗେ ବାଇମୁଣ୍ଡିମାନେ ଜନ୍ମଲାଭ କରିଥାନ୍ତି । ସମାଜ ଓ ସଂସ୍କୃତିର ରକ୍ଷାକର୍ତ୍ତା ହେଇମାନେ, ଯେଉଁମାନଙ୍କ ଆଗରେ ସୁଦୂର ଭବିଷ୍ୟତ ପଡ଼ିଛି । ସେମାନେ ବାଇମୁଣ୍ଡିର ବଂଶଧର । ସତ୍ୟ ଚଉରାଠୁ ଶିଶୁ ଭବନ ପଛଦେଇ ଯାଇଥିବା ରିଂ ବନ୍ଧକୁ ବାଇମୁଣ୍ଡି ମାର୍ଗ" ନାମରେ ନାମିତ କରାଯାଇଅଛି । କେବଳ ଚେତାଇ ଦେବାପାଇଁ ଯେ ମାନବ ଜାତିର ଇତିହାସରେ ବାଇମୁଣ୍ଡିମାନେ ଲିଖିତ ଅକ୍ଷରରେ ରହନ୍ତୁ ବା ନରହନ୍ତୁ ଜନ ଶ୍ରୁତିରେ ଜୀଇ ରହନ୍ତୁ । ଅତଏବ ଆଜିର ଏବଂ ଆଗାମୀ କାଲିର ବାଇମୁଣ୍ଡିମାନଙ୍କୁ କଟକ ସହରର ଶତ ପ୍ରଣାମ ।



# କଟକର ଘାଟ

ଶ୍ରୀ ବସନ୍ତ କୁମାର ସାହୁ

ଭାରତ ଭଳି ଓଡ଼ିଶା ମଧ୍ୟ ଏକ ନଦୀ ମାତୃକାର ରାଜ୍ୟ । ନଦୀନଦୀକୁ ନେଇ ସଭ୍ୟତା । ଏଣୁ ଆମ ଦୃଷ୍ଟିକୁ ଆସେ ଟେମସ୍ ନଦୀ କୂଳର ଲଣ୍ଡନ ନଗରୀ, ଟାଇବର ନଦୀକୂଳର ରୋମ ନଗରୀ, ଗଙ୍ଗା ନଦୀ କୂଳରେ ବାରଣାଶୀ, ଏଲ୍‌ହାବାଦ୍, ପାଟନା, ଯମୁନା ନଦୀ କୂଳରେ ଦିଲ୍ଲୀ ନଗରୀ ଇତ୍ୟାଦି । ବହୁ ପ୍ରାଚୀନ ନୀଳନଦୀ କୂଳର ମିଶର ସଭ୍ୟତା, ସିନ୍ଧୁ ନଦୀ କୂଳର ସିନ୍ଧୁ ସଭ୍ୟତା, ହ୍ୱାଂ ସିକ୍ୟାଂ ନଦୀ ତଟର ପ୍ରାଚୀନ ଚୀନ୍ ସଭ୍ୟତା ବହୁ ଭାବରେ ଆମର ଦୃଷ୍ଟି ଆକର୍ଷଣ କରିଥାଏ ।

ପ୍ରତ୍ନ ସୁନାବ୍ୟା ଏବଂ ଜୀବନ୍ତ ନଦୀ କୂଳରେ ବିକାଶ ଲାଭ କରିଥିବା ପ୍ରାଚୀନ ସଭ୍ୟତା ଠାରୁ ଆରମ୍ଭ କରି ଏଯାବତ୍ ଯେଉଁସବୁ ମାନବୀୟ ସଭ୍ୟତା ସୃଷ୍ଟି ହୋଇ ପାରିଛି ତାହା ମୂଳରେ ବହୁ ଭୌଗଳିକ ତଥ୍ୟ ନିହିତ । ପ୍ରାଚୀନ କାଳରେ ନିବିଡ଼ ଅରଣ୍ୟାନୀ, ଶ୍ୱାପଦ ସଙ୍କୁଳ ଦୁର୍ଗମ ଗିରିପଥ ଅତିକ୍ରମ କରି ବିଭିନ୍ନ ନୂତନ ସ୍ଥାନକୁ ଯିବା ସହଜସାଧ୍ୟ ନଥିଲା । ଏଣୁ ବହୁ ମାତ୍ରାରେ ଚିରସ୍ରୋତା ନଦୀର ଜଳପଥ ହିଁ ଗମନା ଗମନ ପାଇଁ ଏକ ବିଶିଷ୍ଟ ମାଧ୍ୟମ ଥିଲା । ନଦୀତଟ ଦେଇ କିମ୍ବା ବିଭିନ୍ନ ଜଳପଥ ଦେଇ ମଣିଷ ବିଭିନ୍ନ ସ୍ଥାନକୁ ଯିବା ପାଇଁ ଯାତାୟାତର ବ୍ୟବସ୍ଥାକୁ ସୁଗମ କରି ପାରିଥିଲା । ବର୍ତ୍ତମାନର ଉଡ଼ାଜାହାଜ ଅବତରଣ କେନ୍ଦ୍ର, ବିଭିନ୍ନ ବନ୍ଦର ସମୂହ ଭଳି ଅନେକ ନଦୀର ତଟ ଦେଶରେ ସୁ ବିସ୍ତୃତ ଘାଟ ନିର୍ମାଣ କରାଯାଇଥିଲା । ସେହି ସବୁ ଘାଟର ଅନତିଦୂରରେ ଛୋଟ ବଡ଼ ଡଙ୍ଗା, ପୋତ ଇତ୍ୟାଦି ଆଶ୍ରୟ ନେଉଥିଲେ । କାଳକ୍ରମେ ଗୋଟିଏ ନଦୀର ଘାଟ ନିକଟରେ ଛୋଟ ଛୋଟ ବଜାର ବାଣିଜ୍ୟ କେନ୍ଦ୍ର ଗଢ଼ିଉଠି, ପରବର୍ତ୍ତୀ କାଳରେ ସେହି ସ୍ଥାନମାନଙ୍କରେ ଛୋଟରୁ ବଡ଼ ସହର ଏବଂ ନଗର ଇତ୍ୟାଦିର ବିକାଶ ହୋଇଥିଲା । ଉଦାହରଣ ସ୍ୱରୂପ କଲିକତା, ଢାକା ତଦୁପରି ମହାନଦୀ ଏବଂ କାଠଯୋଡ଼ି ନଦୀ ଦ୍ୱୟର ଅନ୍ତର୍ବର୍ତ୍ତୀ ସ୍ଥାନ ତଥା ତଟ ଦେଶରେ କଟକ ସହର ବିକାଶ ଲାଭ କରିଥିଲା ।

ଆଜିକାର କଟକ ନଗରୀର ଅବସ୍ଥିତି ଏବଂ ସ୍ଥାୟୀତ୍ୱ ସମ୍ଭବ ହୋଇ ପାରିଛି କେଶରୀ ବଂଶର ନୃପତି ମର୍କତ କେଶରୀଙ୍କ ବିଶିଷ୍ଟ ସ୍ଥପତି ବାଇମୁଣ୍ଡିଙ୍କ ଦୂରଦୃଷ୍ଟି

ଯୋଗୁଁ । କାରଣ ତାଙ୍କର ବୁଦ୍ଧିମତା ଯୋଗୁଁ ସୁଢ଼ୋର କାଠଯୋଡ଼ି ନଦୀ କୂଳରେ ପଥର ବନ୍ଧର ଢେର ଯୋଗୁଁ ଅପ୍ରତ୍ୟାଶିତ ବନ୍ୟା ଦୁର୍ବିପାକରୁ କଟକ ନଗରକୁ ୨ ଶହ ବର୍ଷ ଧରି ରକ୍ଷା କରାଯାଇ ପାରିଥିବାରୁ ଆଜି ଏହା ବିକାଶ ଲାଭ କରିବା ପାଇଁ ସମ୍ଭବପର ହୋଇ ପାରିଛି ।

ମହାନଦୀ ଏବଂ ମହାନଦୀର ଶାଖା ନଦୀ କାଠଯୋଡ଼ିର ମଧ୍ୟବର୍ତ୍ତୀ ସ୍ଥାନରେ କଟକ ନଗରର ଅବସ୍ଥିତ ହୋଇଥିବା ଯୋଗୁଁ କାଳକ୍ରମେ ମହାନଦୀ ତୀରରେ ଏବଂ କାଠଯୋଡ଼ି ନଦୀ କୂଳରେ ଅନେକ ଘାଟ ନିର୍ମିତ ହୋଇଅଛି । ଅଧିକନ୍ତୁ ମହାନଦୀ କୂଳସ୍ଥ ବାରବାଟୀ ଦୁର୍ଗ ନିକଟସ୍ଥ ଗଡଗଡ଼ିଆ ଘାଟ, ଯୋବ୍ରା ଘାଟ, ଏବଂ କାଠଯୋଡ଼ିର ପୁଷ୍ପଘାଟର ବିଶେଷତ୍ୱ ଅନେକ ଦୃଷ୍ଟିରୁ ପ୍ରଣିଧାନ ଯୋଗ୍ୟ ।

## ଯୋବ୍ରା ଘାଟ :

ବର୍ତ୍ତମାନ ମହାନଦୀ କୂଳସ୍ଥ ଯୋବ୍ରା ଆନିକଟର ନିମ୍ନ ଭାଗରେ ଏହା ନିର୍ମିତ । ବିଶେଷ କରି କଟକ ନଗରୀକୁ ମହାନଦୀର ବନ୍ୟା ପ୍ରକୋପରୁ ରକ୍ଷା କରିବା ନିମିତ୍ତ ଏବଂ କଟକର ନିମ୍ନ ଅଞ୍ଚଳମାନଙ୍କରେ ଜଳସେଚନର ସଦୁପଯୋଗ ନିମିତ୍ତ ଯୋବ୍ରା ଆନିକଟରୁ ତାଳଦଣ୍ଡା କେନାଲର ସୃଷ୍ଟି । ଇଂରେଜ ସରକାର ଅମଳର ଏହା ଏକ ଅମ୍ଳାନ ସୃଷ୍ଟି । ପୁରାତନ ଆନିକଟ ସ୍ଥାନରେ ବର୍ତ୍ତମାନ ବିଶ୍ୱବ୍ୟାଙ୍କର ଆର୍ଥିକ ସହାୟତାରେ ନୂତନ ଆନିକଟ ନିର୍ମିତ ହୋଇଅଛି । ଯାହା ପୁରାତନ ଅପେକ୍ଷା ସୁଉଚ୍ଚ । ବିଶେଷତଃ ସଉରା ଏବଂ ଓରାଁ ଉପଭାଷାରୁ ଯୋବ୍ରା ପଦର ସୃଷ୍ଟି । ଏହି ଭାଷାରେ ଯୋବ୍ରାର ଅର୍ଥ ସନ୍ତସନ୍ତିଆ ଅଞ୍ଚଳ । ଆଶା କରାଯାଏ ଯୋବ୍ରା ଆନିକଟ ନିର୍ମାଣ ଏବଂ ତାଳଦଣ୍ଡା କେନାଲ ଖନନ ପୂର୍ବରୁ ନିଶ୍ଚିତ ଭାବେ ମହାନଦୀର ଏହି ଅଞ୍ଚଳ ସନ୍ତସନ୍ତିଆ ଥିଲା । ବର୍ତ୍ତମାନ ଯୋବ୍ରାଘାଟ ନିକଟବର୍ତ୍ତୀ ବହୁ ସାହିବସ୍ତି ଅଞ୍ଚଳର ବାସିନ୍ଦାମାନଙ୍କର ଏକ ବୃହତ୍ ସ୍ନାନାଗାରର ପାଦଦେଶ କହିଲେ ଅତ୍ୟୁକ୍ତି ହୋଇ ନ ପାରେ ।

## କାଳିଆ ବୋଦା ବା କୁରୁକ୍ଷେତ୍ର ଘାଟ :

ଯୋବ୍ରାଘାଟ ପରେ ପରେ ମହାନଦୀର ସାମାନ୍ୟ ନିମ୍ନଅଞ୍ଚଳରେ କାଳିଆବୋଦା ଶ୍ମଶାନକୁ ଲାଗି ଏହି ଘାଟ । ବିଶେଷତଃ ଶବଦାହ ପରେ ସ୍ନାନତର୍ପଣ ଆଦି ଏହି ଘାଟରେ ସମାହିତ ହୋଇଥାଏ । ବହୁ ପୁରାତନ କାଳରୁ ବହୁବାବାଜୀମାନେ ଏଠାରେ ବସବାସ କରି ରହିଆସୁଥିଲେ । ଏହାକୁ କୁରୁକ୍ଷେତ୍ର ନାମରେ ମଧ୍ୟ ନାମିତ କରାଯାଇଥାଏ ।

## ମାଡାମଠ ଘାଟ :

ମହାନଦୀର ସାମାନ୍ୟ ଉପର ମୁଣ୍ଡକୁ ଇଞ୍ଜିନିୟରିଂ ସ୍କୁଲ ଏବଂ ଭିଜିଲାନ୍ସ ନିର୍ଦ୍ଦେଶାଳୟ ଦପ୍ତରର ପଶ୍ଚାତ ଭାଗରେ ଏହି ଘାଟ । ଏହା ଉପରେ ବକ୍ସିବଜାର ମଙ୍ଗଳାବାଗ, ମହିମା ସାହି, ଇଞ୍ଜିନିୟରିଂ ସ୍କୁଲ ଏବଂ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ

ଅଞ୍ଚଳର ବାସିନ୍ଦାମାନେ ବେଶ୍ ନିର୍ଭରଶୀଳ । ଏକଦା ରିଂରୋଡ଼ ନିର୍ମାଣ ପୂର୍ବରୁ ଏଠାରେ ଏକ ବଡ଼ ଗଣ୍ଡ ଥିଲା ।

**କରମଲା ମଠ ଘାଟ :**

କ୍ୟାଣ୍ଟନମେଣ୍ଟ ରାସ୍ତାର ମଧ୍ୟ ଭାଗ ଅଞ୍ଚଳ ଏବଂ କରମଲା ମଠର ପଶ୍ଚାତ ଭାଗରେ ମହାନଦୀ କୂଳର ଏହା ଏକ ଛୋଟିଆ ଘାଟ ।

**ଗଡ଼ଗଡ଼ିଆ ଘାଟ :**

ପୂଣ୍ୟତୋୟା ମହାନଦୀ କୂଳରେ ପୁରାତନ ବାରବାଟୀ ଦୁର୍ଗ ନିକଟରେ ଗଡଗଡ଼େଶ୍ୱରଙ୍କ ପାଦଦେଶରେ ଏହି ଘାଟ ଅବସ୍ଥିତ । ବହୁ ପ୍ରାଚୀନ, ସାମାଜିକ ଐତିହ୍ୟରେ ଏହା ସ୍ୱୟଂ ସମ୍ପୂର୍ଣ୍ଣ । ସପ୍ତମ ଶତାବ୍ଦୀରୁ ୧୦୦୦ ଶତାବ୍ଦୀ ଯାଏ ପ୍ରାଚୀନ ଉତ୍କଳର ଓଡ଼ିଆ ପୁଅ ବଣିକ ସାଜ ନୌକା ବାହି ଦେଉଥିଲେ ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବର୍ମା, ଚୀନ ଅଭିମୁଖେ । ସେ ଦେଶରେ ବ୍ୟବସାୟ କରି ଧନରତ୍ନରେ ପୋତ ଭର୍ତ୍ତି କରି ଫେରୁଥିଲେ ସେ । ସେହିମାନଙ୍କର ପବିତ୍ର ସ୍ମୃତିରେ ଆଜି ମଧ୍ୟ ଗଡ଼ଗଡ଼ିଆ ଘାଟରେ ଓଡ଼ିଆ ପୁଅର ଦାୟାଦମାନେ କଦଳୀ ପଟୁକାରେ ଡଙ୍ଗା ଭସାଇ 'ଆ-କା-ମା-ବୈ' ଗୀତଗାଇ ପବିତ୍ର କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ବାଲିଯାତ୍ରା ପାଳି ଆସୁଛନ୍ତି । ଏହି ଘାଟ ମୂଳରେ ଗଡ଼ଗଡ଼େଶ୍ୱର, ରାମମନ୍ଦିର, ବିଷ୍ଣୁ ମନ୍ଦିର ଆଦି ପ୍ରତିଷ୍ଠିତ ।

ଅନେକଙ୍କ ମତରେ ଏକଦା ଇଂରେଜମାନେ ମହାନଦୀର ଅପରପାର୍ଶ୍ୱରୁ ଗଡ଼ଗଡ଼ିଆ ଘାଟଦେଇ କଟକଠାରେ ପ୍ରବେଶ କରିଥିଲେ । କାରଣ ଏହି ସନ୍ନିକଟବର୍ତ୍ତୀ ସ୍ଥାନରେ ସେନାଗୁଉଣି ବା କ୍ୟାଣ୍ଟନମେଣ୍ଟ ଥିଲା । ଯେଉଁ ନାମରେ କ୍ୟାଣ୍ଟନମେଣ୍ଟ ରୋଡ଼ ଆଜି ମଧ୍ୟ ସୁବିଦିତ । ଏତଦ୍‌ବ୍ୟତୀତ କ୍ୟାଣ୍ଟନମେଣ୍ଟ ରୋଡ଼ରେ ଏକ ପୁରାତନ ପ୍ରୋଟେଷ୍ଟାଣ୍ଟ ଗୀର୍ଜା ମଧ୍ୟ ଅବସ୍ଥିତ ।

**ଫାଶିଦିଆ ବର (ଚଦାଜନ ଘାଟ) :**

ମହାନଦୀ କୂଳ । ତୁଳସୀପୁର ସନ୍ନିକଟ । କଥିତ ଅଛି ବହୁ ବୁଦୁବୁଦୁକିଆ ଜଙ୍ଗଲରେ ପରିପୂର୍ଣ୍ଣଥିଲା । ଅପର ପାର୍ଶ୍ୱରେ ଥିଲା ଛୋଟିଆ ପଠା ମହାନଦୀ ଗର୍ଭରେ । ଏହି ବୁଦୁବୁଦୁକିଆ ଅରମାରେ ଥିଲା ପ୍ରକାଣ୍ଡ ବରଗଛଟିଏ । ଆଜି ମଧ୍ୟ ଅଛି ସେ ଶାଖା ପ୍ରଶାଖା ବିସ୍ତାରିତ କରି । ମହାନଦୀର ଅପରପାର୍ଶ୍ୱ ବିଶେଷତଃ ଚଷାପଡ଼ା ଗୋଡ଼ପାଟଣା, ଉଦ୍ଧସାହି, କଣ୍ଡିଡ଼ି, ସର୍ବୋପରି ଚଉଦ୍ୱାର ଇତ୍ୟାଦି ଅଞ୍ଚଳରୁ ଲୋକେ ଆସନ୍ତି ଏବଂ ପାରିହୁଅନ୍ତି ଏଇ ଘାଟ ଦେଇ । ସନ୍ଧ୍ୟା ହେଲେ କଥା ଶେଷ । ରାତି କଥା ନକହିଲେ ଭଲ । ଆସୁଥିବା ଯାତ୍ରୀମାନଙ୍କୁ ସମୟେ ସମୟେ ଚୋର ଡକାୟତଙ୍କ ସାମନାସାମନି ହେବାକୁ ପଡ଼ୁଥିଲା । ପରିଣତି ଥିଲା ଲୁଣ୍ଠିତ ହୋଇ ବରଗଛ ଡାଳରେ ଡାଳରେ ଫାଶି ପାଇବା । ଆଜି ସେ ଅବସ୍ଥା ନାହିଁ । ଫାଶିଦିଆ ବର ଆଜି କିମ୍ବଦନ୍ତୀ ।

ଅଳ୍ପ କିଛିବର୍ଷ ପୂର୍ବରୁ ସେହି ପାଖରେ ନିର୍ମିତ ହୋଇଛି ସ୍ୱାମୀ ଶିବାନନ୍ଦଙ୍କ ଆଶ୍ରମ, ପ୍ରାର୍ଥନା ଓ ଉପାସନା ମନ୍ଦିର ଏବଂ ସର୍ବୋପରି ଏକ ଦାତବ୍ୟ ଚିକିତ୍ସାଳୟ । ଆଜି ସମୟ ସହ ବଦଳିଛି ପରିସ୍ଥିତି । ନିକଟରେ ଓଡ଼ିଶା ସରକାର ସୃଷ୍ଟି କରିଛନ୍ତି ମୃଗସାର, ହରିଣମାନଙ୍କୁ ନେଇ ଏକ ପ୍ରାକୃତିକ ପଶୁଶାଳା । ଘାଟ-ରେ ଲୋକଙ୍କ ଭିଡ଼ । ଅନ୍ୟ ଏକ ବିଶେଷ ଆକର୍ଷଣ ଏହି ହରିଣ ପାର୍କ, ଯାଖରେ ବୋହି ଯାଉଛି ମହାନଦୀ ଶାନ୍ତହୋଇ । ବହୁ ବିସ୍ତାରିତ ରଂଗେଉ, ଉଜ୍ଜଳ ନୟନ ବର୍ଣର ଆଲୋକରେ ଏ ଅଞ୍ଚଳ ସୁଶୋଭିତ ।

## ଚହଟା ଘାଟ :

ଏ ଘାଟଟି ଶିବାନନ୍ଦ ଘାଟର ପ୍ରାୟ ୧ କିଲୋମିଟର ଉପରକୁ ମହାନଦୀ କୂଳରେ । ନିକଟରେ ବିରାଜିତ ଚହଟେଶ୍ୱର । ଏ ଘାଟଟି ବିଶେଷତଃ ମହାନଦୀ ଅପର ପାର୍ଶ୍ୱର ଗାଁ କଖଡ଼, ଚଷାପଡ଼ା, ଧବଳେଶ୍ୱର ଇତ୍ୟାଦି ଗ୍ରାମବାସୀଙ୍କ ଦ୍ୱାରା ବହୁଳ ଭାବେ ବ୍ୟବହୃତ ହୋଇଥାଏ । ପ୍ରାୟ ପ୍ରତ୍ୟହ ଧବଳେଶ୍ୱରଙ୍କ ଦର୍ଶନ ପାଇଁ ମଧ୍ୟ ଭିଡ଼ ଜମେ । ଏହା ବ୍ୟତୀତ ଅନ୍ୟ ଅନେକ ଛୋଟ ଛୋଟ ଘାଟ ମଧ୍ୟ ମହାନଦୀ ଏଇଠି କୂଳରେ ପରିଦୃଷ୍ଟ ହୋଇଥାଏ ।

ମହାନଦୀ ବ୍ୟତିରେକ କାଠଯୋଡ଼ି କୂଳରେ ଅନେକ ଗୁଡ଼ିଏ ଘାଟ ଅବସ୍ଥିତ । ତନ୍ମଧ୍ୟରୁ ପୁରୀଘାଟର ବୈଶିଷ୍ଟ୍ୟ ସର୍ବାଧିକ ।

## ପୁରୀଘାଟ :

କାଠଯୋଡ଼ି ନଦୀ କୂଳରେ ଅବସ୍ଥିତ ଏହା ଏକ ପ୍ରାଚୀନ ଘାଟ । ବହୁଦୃଷ୍ଟିରୁ ଏହାର ମହତ୍ତ୍ୱ ସ୍ୱତନ୍ତ୍ର । ଅନେକ ଏହାକୁ କଟକର ପ୍ରବେଶଦ୍ୱାର ମଧ୍ୟ କହିଥାନ୍ତି । କାଠଯୋଡ଼ି ଏବଂ କୁଆଖାଇ ନଦୀବନ୍ଧ ରାସ୍ତା ନ ହେବା ପୂର୍ବରୁ କଟକ ଜିଲ୍ଲାର ବିଭିନ୍ନ ସ୍ଥାନରୁ, ଢେଙ୍କାନାଳ, ବାଲେଶ୍ୱର ତଥା ଓଡ଼ିଶା ଏବଂ ଓଡ଼ିଶା ବାହାରର ଅନ୍ୟ ପ୍ରାନ୍ତରୁ ସାଧାରଣ ଲୋକେ ଏବଂ ବହୁ ତୀର୍ଥଯାତ୍ରୀ ଡଙ୍ଗା ଦ୍ୱାରା କାଠଯୋଡ଼ି ଅପର-ପାର୍ଶ୍ୱରୁ ଏହି ଘାଟଦେଇ ପାରହୋଇ କଟକରେ ପ୍ରବେଶ କରି ଭୁବନେଶ୍ୱର ଏବଂ ପୁରୀ ଇତ୍ୟାଦି ତୀର୍ଥସ୍ଥାନକୁ ଗମନ କରୁଥିଲେ । ଏହି ଘାଟର ଦେବୀଗଡ଼ା ଠାରେ ବିଭିନ୍ନ ପର୍ବପର୍ବାଣୀରେ ଓ ଶରତ ଋତୁରେ ଦେବୀ ଦୁର୍ଗାଙ୍କ ବିସର୍ଜନ, ଗଣେଶ, ସରସ୍ୱତୀ, କାର୍ତ୍ତିକେୟ, ଭାଲୁକୁଣୀ ଇତ୍ୟାଦି ମେଢ଼ ବିସର୍ଜନ ହୋଇଥାଏ । ଭସାଣୀ ସମୟର ସେ ଦୃଶ୍ୟ ଅତ୍ୟନ୍ତ ଭାବୋଦ୍ଦୀପକ । ଏଯାବତ୍ ଏଇ ଘାଟରେ ମଧ୍ୟ ଅନେକ ଲୋକ ପାରହୋଥାନ୍ତି । ପୁରୀଘାଟ ଷ୍ଟେସନର ପ୍ରସିଦ୍ଧି ଏବେ ମଧ୍ୟ ସାମାଜିକ ଚଳଣିରେ ସୁସ୍ପଷ୍ଟ ।

**ଗଣେଶଘାଟ :**

ପୂର୍ବଘାଟର ଅନତିଦୂରରେ କାଠଯୋଡ଼ି କୂଳରେ ଏଇ ଘାଟ ଅବସ୍ଥିତ । ଏଇ ଘାଟ ନିକଟରେ ଗୋଟିଏ ଗଣେଶ ମନ୍ଦିର ବିରାଜିତ । ବାଖରାବାଦ, ଫିରିଙ୍ଗିବଜାର ଇତ୍ୟାଦି ସାହିର ବାସିନ୍ଦାମାନେ ଏଇ ଘାଟ ଉପରେ ନିର୍ଭରଶୀଳ ।

**ଖାନନଗର ଘାଟ :**

ଖାନନଗର କାଳୀମନ୍ଦିର ନିକଟସ୍ଥ କାଠଯୋଡ଼ି ନଦୀକୂଳରେ ଏହା ଏକ ମହତ୍ତ୍ୱ-ପୂର୍ଣ୍ଣ ଘାଟ । ଖାନନଗର ଶ୍ମଶାନରେ ଦାହ ପରେ ନଦୀରେ ସ୍ନାନତର୍ପଣ ଆଦି ପାଇଁ ବହୁଲୋକ ଏହି ଘାଟକୁ ବ୍ୟବହାର କରିଥାନ୍ତି । ଖାନନଗର ସାହି ନିକଟରେ ଏହା ପରେ ପରେ ଆଉ ଦୁଇତିନୋଟି ଘାଟ ମଧ୍ୟ ପରିଦୃଷ୍ଟ ହୁଏ ।

ଏହା ବ୍ୟତୀତ ମଧୁପାଟଣା ଅଞ୍ଚଳରେ ପଞ୍ଚମୁଖୀ ହନୁମାନଙ୍କ ନିକଟରେ ଗୋଟିଏ ଶ୍ରେଷ୍ଠ ଘାଟ, ଏହା ପରେ ପରେ ବିଶ୍ୱାଳିଶମଉଜା ଘାଟ (ଅବଶ୍ୟ କାଠଯୋଡ଼ି ନଦୀ ଉପରେ ବହୁ ପ୍ରତୀକ୍ଷିତ ନଦୀବନ୍ଧ ରାସ୍ତା ନିର୍ମାଣ ପରେ ଏହାର ଆବଶ୍ୟକତା କମି ଯାଇଛି) ଏବଂ ହାତୀଚଉରା ନିକଟରେ ଉଗରପଡ଼ା ଘାଟ ଇତ୍ୟାଦି କାଠଯୋଡ଼ି ନଦୀ-କୂଳରେ ଅବସ୍ଥିତ । ଯେଉଁଦିନ ପର୍ଯ୍ୟନ୍ତ ମହାନଦୀ ଏବଂ କାଠଯୋଡ଼ି ଥିବ ସେ ପର୍ଯ୍ୟନ୍ତ ଏପରି ଘାଟ ଗୁଡ଼ିକର ମହତ୍ତ୍ୱ ରହିଥିବ ।



# ଗୁରୁଦ୍ୱାର ଗୁରୁନାନକ ଦାତକ୍ ସାଚ୍ଚକ

ଡଃ ବୀଣାପାଣି ସିଂହ

ମାନବ ସଭ୍ୟତାର ଆରମ୍ଭ କାଳରୁ ଗୋଷ୍ଠୀ ଜୀବନ ଭିତ୍ତିରେ ବହୁ ଆଚରଣ ବିଧି ସୃଷ୍ଟି ହେବାକୁ ଲଗିଲା । ସେହି ଆଚରଣ ବିଧି ଗୁଡ଼ିକର ଲକ୍ଷ୍ୟ ହେଲା ସୁସଂହତ, ମାର୍ଜିତ ଓ ସୁନ୍ଦର ସାମାଜିକ ଜୀବନ ଗଠନ । ସେହି ଆଚରଣ ବିଧିମାନ ହିଁ ଧର୍ମ ଭାବରେ ନାମିତ । ମଣିଷ ଅନେକ ସମୟରେ ଅନୁଭବ କରିଛି ଯେ, ପ୍ରକୃତିର ଅନ୍ତରାଳରେ ଗୋଟିଏ ଅଦୃଶ୍ୟ ଶକ୍ତିର ଇଙ୍ଗିତ ସବୁ ସମୟରେ କାମ କରୁଅଛି । ସେହି ଅଦୃଶ୍ୟ ଶକ୍ତିକୁ ନିଜନିଜର ଚିନ୍ତାଶକ୍ତି ତଥା କଳ୍ପନାବଳରେ ଭିନ୍ନ ଭିନ୍ନ ରୂପରେ ରୂପଦାନ କରାଯାଉଛି ଏବଂ କାଳକ୍ରମେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିବାକୁ ମଣିଷ ବାଧ ହୋଇଛି । ଏହି ସ୍ୱୀକୃତିର ପନ୍ଥା ସମାଜରେ ଭିନ୍ନ ଭିନ୍ନ ସାଧକଙ୍କ କ୍ଷେତ୍ରରେ ଭିନ୍ନଭାବରେ ଦେଖାଦେଉଛି ଏବଂ ଧର୍ମ ପଶ୍ଚାପ୍ରେକ୍ଷୀରେ ଉପାସନା କ୍ଷେତ୍ରର ମଧ୍ୟ ଭିନ୍ନତା ସୃଷ୍ଟି ହେଉଛି । ଯଦିଓ ଈଶ୍ୱର ଏକ ଏବଂ ସର୍ବତ୍ର ପରିବ୍ୟାପ୍ତ ତଥାପି ହିନ୍ଦୁମାନେ ତାଙ୍କର ଅମୃତସ୍ପର୍ଶ ପାଆନ୍ତି ମନ୍ଦିରରେ, ମୁସଲମାନମାନେ ମସ୍‌ଜିଦ୍‌ରେ, ଖ୍ରୀଷ୍ଟିୟାନମାନେ ଚର୍ଚ୍ଚରେ ଓ ଶିଖମାନେ ଗୁରୁଦ୍ୱାରରେ ।

ଗୁରୁନାନକ ଶିଖଧର୍ମର ପ୍ରବର୍ତ୍ତକ ଓ ପ୍ରଥମଗୁରୁ । ସମଗ୍ର ଶିଖ ସମ୍ପ୍ରଦାୟ ତାଙ୍କୁ ଆଦିଗୁରୁ ତଥା ପରମାତ୍ମାଙ୍କ ଅବତାର ରୂପେ ଗ୍ରହଣ କରନ୍ତି । "ଶିଖ" ଶବ୍ଦ ଶିଷ୍ୟ ଶବ୍ଦର ଅପଭ୍ରଂଶ ରୂପ । ଗୁରୁନାନକଙ୍କ ଶିଷ୍ୟଗଣ କାଳକ୍ରମେ "ଶିଖ" ନାମରେ ପରିଚିତ ହେଲେ ।

ଗୁରୁନାନକଙ୍କ ଜନ୍ମ ୧୪୬୯ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୫ ତାରିଖ କାର୍ତ୍ତିକ ପୂର୍ଣ୍ଣିମାଦିନ ତଲବଣ୍ଡି ଗ୍ରାମରେ । ଉକ୍ତ ଗ୍ରାମର ପ୍ରଚଳିତ ନାମ ନାନକାନା ସାହେବ । ବର୍ତ୍ତମାନ ତାହା ପାକିସ୍ଥାନ ଅନ୍ତର୍ଗତ । ତାଙ୍କ ପିତାଙ୍କ ନାମ କାଲୁରାମ, ମାତାଙ୍କ ନାମ ତ୍ରିପ୍ତା । ଏକ ବୈଦିକ ବଂଶରେ ତାଙ୍କର ଜନ୍ମ । ନାନକଙ୍କର ଏକମାତ୍ର ଭଉଣୀ ଥିଲେ ନାନକୀ । ପିତା କାଲୁରାମ ସେ ଅଞ୍ଚଳରେ ଜଣେ ସୁପ୍ରସିଦ୍ଧ ବ୍ୟବସାୟୀ ଥିଲେ । ତାଙ୍କର ଇଚ୍ଛାଥିଲା ପୁଅ ତାଙ୍କର ବଡ଼ ହେଲେ ବ୍ୟବସାୟ କ୍ଷେତ୍ରରେ ତାଙ୍କଠୁ ବଳିଯିବ ।

କିନ୍ତୁ ଭଗବାନଙ୍କ ଲାଗିଥିଲା ଭିନ୍ନପ୍ରକାର । ନାନକ ପିଲାଦିନରୁ ଭଗବତ୍ ବିଶ୍ୱାସୀ ଥିଲେ । ସେହି ସମୟରୁ ସାଧୁସନ୍ଥଙ୍କ ପ୍ରତି ତାଙ୍କ ମନରେ ଅନୁକୂଳ ମନୋଭାବ ପରିଲକ୍ଷିତ ହୋଇଥିଲା । ସାଂସାରିକ ସୁଖବୋଧ ତାଙ୍କୁ ତୁଚ୍ଛ ମନେ ହୋଇଥିଲା ।

ପିତା ନିରାଶ ହୋଇ ନାନକଙ୍କୁ ସୁଲତାନପୁର ନାମକ ସ୍ଥାନକୁ ପଠାଇ ଦେଲେ । ବର୍ତ୍ତମାନ ତାହା ପାକିସ୍ଥାନ ଅନ୍ତର୍ଭୁକ୍ତ କପୁରଥାଲା ଗ୍ରାମର ଏକ ବିଶିଷ୍ଟ ପଡ଼ା । ସେଠାରେ ନାନକ ତତ୍କାଳୀନ ନବାବଙ୍କର ଏକ ମୋଦି ବା ଖାଦ୍ୟସାମଗ୍ରୀ ବିକ୍ରୟକେନ୍ଦ୍ରରେ ପ୍ରାୟ ତେରବର୍ଷ କାଳ ନିଯୁକ୍ତ ହୋଇ ରହିଲେ । ସେହି ସମୟରେ ୧୪୯୮ ଖ୍ରୀ:ରେ "ବଇ" ନଦୀରେ ସ୍ନାନ କରୁଥିବା ସମୟରେ ନାନକଙ୍କୁ ଆତ୍ମଜ୍ୟୋତିର ଆଭାସ ପ୍ରାପ୍ତ ହେଲା ଏବଂ ତାଙ୍କ ଅନ୍ତରରେ 'ଗୁରୁତ୍ୱ' ପ୍ରକାଶ ପାଇଲା ।

ସେହି ମୁହୂର୍ତ୍ତରୁ ନାନକ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଅର୍ଥାତ୍ ଭଗବାନଙ୍କ ନାମ-ସନ୍ଦେଶ ମାନବସମାଜର ପ୍ରତ୍ୟେକ ବ୍ୟକ୍ତିଙ୍କ ନିକଟରେ ପହଞ୍ଚାଇବା ପାଇଁ ଏବଂ ଧର୍ମକୁ ପ୍ରତିଷ୍ଠିତ କରାଇବା ଉଦ୍ଦେଶ୍ୟରେ ଦେଶଦେଶାନ୍ତର ଭ୍ରମଣ କରିବାରେ ଲାଗିଲେ ।

ଉପନିଷଦର ଏକେଶ୍ୱରବାଦ ନାନକଙ୍କୁ ଅଧିକ ପରିମାଣରେ ପ୍ରଭାବିତ କରିଥିଲା । ସେ ବିଶ୍ୱାସ କରୁଥିଲେ ଯେ ସବୁଧର୍ମର ଉଦ୍ଦେଶ୍ୟ ଏକ-ଈଶ୍ୱରପ୍ରାପ୍ତି··· । ବିଭିନ୍ନଧର୍ମ ଭିତରେ ଥିବା ବିଭେଦ ବିରୋଧରେ ସେ ଶିକ୍ଷା ଦେଉଥିଲେ । ତାଙ୍କ ମତରେ ଧ୍ୟାନରେ ବସିବା କିମ୍ବା ବିଦେଶ ଭ୍ରମଣ କରିବା ମାଧ୍ୟମରେ ଜଣେ ଧାର୍ମିକ ହୋଇ ପାରେନା, ଏପରିକି ତୀର୍ଥସ୍ଥାନମାନଙ୍କରେ ଶୁଦ୍ଧସ୍ନାନମାନଙ୍କରେ ମଧ୍ୟ ଧର୍ମ ସୃଷ୍ଟି ହୋଇ ପାରେନା । "ମନ ନିର୍ମଳ ଥିଲେ ଗଡ଼ିଆ ଗଙ୍ଗା" ପରି ମଣିଷର ମୁକ୍ତି ତା'ର ଆଭ୍ୟନ୍ତରୀଣ ପବିତ୍ରତା ଉପରେ, ତା'ର ସୁକର୍ମ ଉପରେ ନିର୍ଭର କରେ । ଧର୍ମ ସମ୍ବଳିତ ଦର୍ଶନତତ୍ତ୍ୱ ମଣିଷକୁ ଈଶ୍ୱରଙ୍କ ନିକଟବର୍ତ୍ତୀ କରାଇ ପାରେନି ବରଂ ଭକ୍ତିଭାବ, ସମସ୍ତଙ୍କ ପ୍ରତି ସ୍ନେହ, ମାନସିକ ପବିତ୍ରତା ମାଧ୍ୟମରେ ଏହା ସମ୍ଭବ ହୋଇପାରେ ।·· ···ନାନକ ଥିଲେ ସମସ୍ତ ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱରେ··· । ହିନ୍ଦୁ ଧର୍ମ ଓ ଇସଲାମ୍ ଧର୍ମରେ ଥିବା ବିଭିନ୍ନ କୁସଂସ୍କାରକୁ ସେ ଦୂରେଇ ଦେବାକୁ ଚେଷ୍ଟା କରିଥିଲେ ।

ଷୋଡ଼ଶ ଶତାବ୍ଦୀରେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳରେ ଗୁରୁନାନକ ତାଙ୍କର ଦୁଇଶିଷ୍ୟ ବାଲା ଓ ମର୍ଦ୍ଦାନାଙ୍କ ସହ ପଞ୍ଚନଦ ଅଞ୍ଚଳରୁ ଆସି କଟକରେ ପଦାର୍ପଣ କରିଥିଲେ । ନାନକଙ୍କର କଟକରେ ସ୍ୱଳ୍ପ ରହଣି ସମୟରେ ଲୋକମୁଖରେ କେତେକ ଗଳ୍ପ ଶୁଣାଯାଏ ।

ପ୍ରାୟ ପାଞ୍ଚଶହ ବର୍ଷ ତଳର କଥା । ନାନକ ମହାନଦୀ ପାରହୋଇ ନଈକୂଳରେ ଥିବା ମହାତ୍ମା କାଳିଆପଣ୍ଡିତଙ୍କ ଆଶ୍ରମରେ ଆସି ପହଞ୍ଚିଲେ । କିନ୍ତୁ ମହାତ୍ମା କାଳିଆଙ୍କ ପାଖରେ ଆଶ୍ରୟ ନପାଇ ବାଲା, ମର୍ଦ୍ଦାନାଙ୍କ ସହ ବୁଲିବାକୁ ଲାଗିଲେ । କଟକର ପୁରୁଣା

ଗୁରୁଦ୍ୱାର (କାଳିଆବୁଢ଼ା) ନିକଟରେ ମହାନଦୀ ତୀରରେ ଜଣେ ସନ୍ଥ ଆଶ୍ରମଟିଏ କରି ରହୁଥିଲେ । ସେ ନାନକଙ୍କୁ ବହୁତ ଆଦର ସମ୍ମାନ କଲେ ଓ ତାଙ୍କ ଆଶ୍ରମରେ କିଛିଦିନ ଅବସ୍ଥାନ କରିବାକୁ ଅନୁରୋଧ କଲେ । ସନ୍ଥଙ୍କ ସହ ନାନକଙ୍କର ଜ୍ଞାନଚର୍ଚ୍ଚା ହେଲା । ନାନକଙ୍କ ପ୍ରବଚନ ଶୁଣିବାକୁ ଜନସମାଗମ ଦିନୁଦିନ ବୃଦ୍ଧିପାଇବାକୁ ଲାଗିଲା । ଏବକାର ଗୌଡ଼ଦ୍ୱାରରେ ସେତେବେଳେ ରାଜାବରାଡ଼ ରାଜୁତି କରୁଥାନ୍ତି, ସେ ଆସି ନାନକଙ୍କୁ ଦର୍ଶନକଲେ, ପ୍ରବଚନ ଶୁଣି ମୁଗ୍ଧ ହେଲେ ଓ ଆଶ୍ରମ ସଂଲଗ୍ନ ୨୦ ଏକର ଜମି ଦାନ କଲେ । କାଳକ୍ରମେ ନଈ ଖାଇଯାଇ ଅର୍ଦ୍ଧାଧିକ ଜମି ନଈରେ ମିଶିଗଲା । ନାନକଙ୍କ ପ୍ରଶଂସା ଶୁଣି ମହାତ୍ମା କାଳିଆ ଈର୍ଷାନ୍ୱିତ ହେଲେ ।···ତାଙ୍କୁ ଘଉଡ଼େଇ ଦେବାକୁ ବୁଦ୍ଧି ପାଞ୍ଚିଲେ । ତାଙ୍କର ଦୁଇଜଣ ଶିଷ୍ୟଙ୍କୁ ଡାକି ଗୋଟିଏ ସାହାଡ଼ାଡାଙ୍ଗ ଯାଦୁମନ୍ତ୍ର କରିଦେଲେ, କହିଲେ ନାନକଙ୍କ ଦେହରେ କୌଶଳରେ ଏ ଡାଙ୍ଗ ଛୁଆଁଇଦେଲେ ସେ ମୂକ ହୋଇଯିବେ, ତାଙ୍କ ତୁଣ୍ଡ ଖୋଲିବ ନାହିଁ । ଉକ୍ତ ଶିଷ୍ୟ ଦୁଇଜଣ ଆସି ନାନକଙ୍କଠାରୁ ପ୍ରବଚନ ଶୁଣିଲେ ।

ପ୍ରବଚନ ସରିଲରୁ ଉପସ୍ଥିତ ଶିଷ୍ୟମାନେ ଫେରିଗଲେ । ଉକ୍ତ ଶିଷ୍ୟ ଦ୍ୱୟ ମଧ୍ୟ ଫେରିଯିବାକୁ ବସିଲେ···ତହୁଁ ନାନକ ସେମାନଙ୍କୁ କହିଲେ—ମହାତ୍ମାଜୀ ! ମୋ ପାଇଁ ତୁମମାନଙ୍କ ହାତରେ କ'ଣ ପଠାଇଛନ୍ତି ଦିଅ । ଶିଷ୍ୟ ଦୁଇଜଣ ପ୍ରବଚନ ଶୁଣି ଏତେ ମୁଗ୍ଧ ହୋଇ ଯାଇଥିଲେ ଯେ ସାହାଡ଼ାଡାଙ୍ଗ କଥା ପୂରାପୂରି ପାସୋରି ଯାଇଥିଲେ । ନାନକଜୀ ସେ ଡାଙ୍ଗଟିକୁ ଛୁଇଁ କହିଲେ ମହାତ୍ମାଜୀ ଏଇ-ଚିଜଟି ମୋ' ପାଇଁ ପଠାଇଛନ୍ତି । ଡାଙ୍ଗଟି ସେମାନଙ୍କଠାରୁ ନେଇ ଦାନ୍ତକାଠି ମାପରେ କାଠିଟିଏ ତହିଁରୁ ଭାଙ୍ଗି ଦାନ୍ତ ଘଷିଲେ । ସିଆଡ଼େ ମହାତ୍ମା କାଳିଆ ଧ୍ୟାନବଳରେ ଜାଣିଲେ ଯେ ତାଙ୍କ ଯାଦୁମନ୍ତ୍ର ନାନକଙ୍କୁ କାବୁ କଲା ନାହିଁ । ତହୁଁ ସେ ନଦୀରେ, ପାଞ୍ଚହାତ ଉଚ୍ଚର ବନ୍ୟା ସୃଷ୍ଟି କଲେ । ହଠାତ୍ ବନ୍ୟାର ପ୍ରକୋପ ଦେଖି ଉପସ୍ଥିତ ଶିଷ୍ୟବୃନ୍ଦ ଭୟଭୀତ ହୋଇ ନାନକଙ୍କ ପାଖରେ ଗୁହାରି କଲେ । ନାନକ ଦାନ୍ତକାଠିରେ ଦାନ୍ତ ଘଷୁ ଘଷୁ ବନ୍ୟାଆଡ଼େ ଟିକେ ଚାହିଁଦେଲେ । ଚାହୁଁ ଚାହୁଁ ବନ୍ୟାଜଳ କୁଆଡ଼େ ଉଭେଇଗଲା । ନାନକ ଦାନ୍ତ ଘଷିସାରି ସେଇ ସ୍ଥାନରେ ସାହାଡ଼ା ଦାନ୍ତକାଠିଟି ପୋତି ଦେଇଥିଲେ । ସେଇଥିରୁ ଗୋଟିଏ ବିରାଟ ଦ୍ରୁମ ବଢ଼ି ଉଠିଲା ଓ ସେଠାରେ ଦାତନ୍ ସାହେବ ଗୁରୁଦ୍ୱାର ନିର୍ମିତ ହେଲା ।

ଅନ୍ୟ କେତେକଙ୍କ ମତରେ ଆନୁମାନିକ ୧୫୦୮/୧୦ ଖ୍ରୀ:ରେ ନାନକ ଭଦ୍ରକରୁ ଦୁଇଜଣ ଶିଷ୍ୟଙ୍କ ସହ କଟକ ଆସି ମହାନଦୀ କୂଳରେ ଅବସ୍ଥାନ କଲେ । ନାନକ ଶିଷ୍ୟଙ୍କ ସହ କୀର୍ତ୍ତନ କରୁଥିଲାବେଳେ ରାଜା ପ୍ରତାପରୁଦ୍ରଦେବ ତାଙ୍କ ଦର୍ଶନ କଲେ । ଟିକିରିର ରାଜା ମଧ୍ୟ ସେତେବେଳେ ପ୍ରାର୍ଥନାସଭାରେ ଉପସ୍ଥିତ ଥିଲେ । ଜୋବ୍ରାରେ ସେତେବେଳେ କାଳିଆପଣ୍ଡିତ ରହୁଥା'ନ୍ତି । ସେ ଆସି ନାନକଙ୍କର ସେବାପୂଜା କଲେ ଓ କୀର୍ତ୍ତନରେ ଯୋଗଦେଲେ । ସେହି ସମୟରେ ଚୈତନ୍ୟଙ୍କର

ନାନକଙ୍କ ସହ ଭେଟ ହେଲା । ଚୈତନ୍ୟ ନାନକଙ୍କୁ ଅନୁରୋଧ କଲେ—ଆପଣ ଏଠାକୁ ଆସିଥିଲେ ବୋଲି କିଛି ସନ୍ତକ (Simbal) ରଖିଯା'ନ୍ତୁ···। ନାନକ ସାହାଡ଼ା ଦାନ୍ତ-କାଠରେ ଦାନ୍ତଘଷିଲା ପରେ ଦାନ୍ତକାଠିଟି ନଈକୂଳରେ ପୋତିଦେଲେ ଓ ଶିଷ୍ୟଙ୍କ ସହ ପୁରୀ ଅଭିମୁଖେ ଯାତ୍ରା କଲେ । ସେ ଦିନରୁ ସେହି ସାହାଡ଼ା ଦାନ୍ତକାଠି କ୍ରମେ ବଡ଼ ସାହାଡ଼ା ଗଛଟିଏ ହେଲା ଓ ସେଠାରେ ଦାତନ୍ ସାହେବ ଗୁରୁଦ୍ୱାର ନିର୍ମାଣ କରାଗଲା । କାଳିଆ ପଣ୍ଡିତଙ୍କ ଠାରୁ ଆରମ୍ଭ କରି ପରବର୍ତ୍ତୀ ସମୟରେ ସମସ୍ତ ମହନ୍ତମାନେ ଦାତନ୍ ସାହେବଙ୍କର ତତ୍ତ୍ୱ ନେଲେ ।···କେତେକଙ୍କ ମତରେ କାଳିଆ ପଣ୍ଡିତଙ୍କ ନାମାନୁସାରେ ସ୍ଥାନଟିର ନାମ "କାଳିଆବୁଦା" ରଖାଯାଇଛି, ଅନ୍ୟ କେତେକଙ୍କ ମତରେ ନାନକଙ୍କ ପିତା କାଲୁରାମଙ୍କ ନାମାନୁସାରେ ସ୍ଥାନଟି ନାମ "କାଳିଆବୁଦା" ହୋଇଛି ।

ଶିଖ ସମ୍ପ୍ରଦାୟର ବାବା କରତାର ସିଂହଙ୍କ ତତ୍ତ୍ୱାବଧାନରେ ୧୯୩୨ ମସିହାରେ ଶିଖ ଭାଇମାନଙ୍କୁ ନେଇ ଏକ କମିଟି ଗଠନ କରାଗଲା । କମିଟିର ସଭ୍ୟମାନଙ୍କ ସହଯୋଗରେ ଦାତନ୍ ସାହେବ ଗୁରୁଦ୍ୱାର ନିର୍ମାଣକାର୍ଯ୍ୟ ଆରମ୍ଭ କରାଗଲା ଓ ୧୯୩୫ ମସିହାରେ ଏହା ଶେଷ ହେଲା । କଟକରେ ଶିଖ ସମ୍ପ୍ରଦାୟର ସମ୍ପ୍ରସାରଣ ଫଳରେ ଏକ ବଡ଼ ଗୁରୁଦ୍ୱାରର ଆବଶ୍ୟକତା ଅନୁଭୂତ ହେଲା ଓ ଆଜିର ଗୁରୁଦ୍ୱାର ଗୁରୁ-ନାନକ ଦାତନ୍ ସାହେବ ପୁରୁଣା ଗୁରୁଦ୍ୱାରର ନୂତନ ରୂପ । ପୁରୁଣା ଗୁରୁଦ୍ୱାରଟି ଗୁରୁନାନକ ପବ୍ଲିକ୍ ସ୍କୁଲରେ ପରିଣତ ହୋଇଛି । ସେଦିନ ନାନକ ପୋତି ଦେଇଥିବା ସେହି ସାହାଡ଼ା ଦାନ୍ତକାଠିଟି କ୍ରମେ ଏକ ବିରାଟ ସାହାଡ଼ାଗଛ ହେଲା ଓ ଶିଖ ସମ୍ପ୍ରଦାୟଙ୍କ ଦ୍ୱାରା "ଦାତନ୍‌ସାହେବ" ରୂପେ ଖ୍ୟାତିଲାଭ କଲା । ଡଃ ପ୍ରାଣକୃଷ୍ଣ ପରିଜା ଉକ୍ତ ଗଛର ଗଣ୍ଡିକୁ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା କରି ଜାଣିପାରିଥିଲେ ଯେ ଗଛଟି ଆନୁମାନିକ ପାଞ୍ଚଶହ ବର୍ଷ ତଳର ।

ଦାତନ୍ ସାହେବ ନିକଟରେ ଏବେ ଶିବଙ୍କ ଶକ୍ତି, ତ୍ରିଶୂଳ, ବାସୁଆବଳଦ, ନନ୍ଦୀ, ଭୃକୁଟୀ ଓ ତୁଳସୀ ଗଛ ଶୋଭା ପାଉଛି । କାର୍ତ୍ତିକ ପୂର୍ଣ୍ଣିମୀରେ ଏଠାରେ ଏକ ବିରାଟ ସମାବେଶ ହୁଏ । ହିନ୍ଦୁମାନେ ଡଙ୍ଗା ଭସେଇବାକୁ ଆସି ଗଛମୂଳରେ ଥିବା ମହାଦେବଙ୍କୁ ଦର୍ଶନ କରନ୍ତି । କାର୍ତ୍ତିକ ପୂର୍ଣ୍ଣିମୀ ଗୁରୁନାନକଙ୍କର ଜନ୍ମୋତ୍ସବ ହେତୁ ଶିଖମାନେ ଏଠାରେ ଭଜନ, କୀର୍ତ୍ତନ କରନ୍ତି ।

କଟକର ଉତ୍ତରପୂର୍ବ ପ୍ରବେଶ ଦ୍ୱାରର ପଶ୍ଚିମ ପାର୍ଶ୍ୱରେ ଗୁରୁଦ୍ୱାର ଅବସ୍ଥିତ । ଗୁରୁନାନକ ଦାନ୍ତଘଷି ସନ୍ତକ ରଖିଯାଇଥିବାରୁ ତାଙ୍କ ନାମାନୁସାରେ ଏହାର ନାମ-କରଣ କରାଯାଇଛି । ଏହା କଟକର ଏକମାତ୍ର ଗୁରୁଦ୍ୱାର । ଗୁରୁଦ୍ୱାରର ବାମପଟରେ ୮୦ ଫୁଟ ଉଚ୍ଚତା ବିଶିଷ୍ଟ 'ନିଶାନ ସାହେବ" ଦେଖିବାକୁ ମିଳେ । ସାମନାରେ ଫୁଲ ବଗିଚାର ସୁନ୍ଦର ପରିବେଶ । ପାଦଧୋଇ ତଳକୁ ବାଇଶିଟି ପାହାଚ ଅତିକ୍ରମ କରିଗଲେ

ବରାଟ ସୁଦୃଶ୍ୟ ଉପାସନାକକ୍ଷ ଦୃଷ୍ଟିପଥକୁ ଆସେ । ପାଲକ ସାହେବ ଉପରେ ଶିଖ-ମାନଙ୍କର "ଆଦିଗ୍ରନ୍ଥ" ବା "ଗୁରୁଗ୍ରନ୍ଥସାହେବ" ବିଦ୍ୟମାନ । ଏଥିରେ ଗୁରୁନାନକ-ଦେବଙ୍କର ପ୍ରାୟ ୧୦୦୦ ପଦ ବା ଭଜନ ଓ ଶ୍ଳୋକ ବା ଦୋହା ୧୯ ରାଗ ସମ୍ବଳିତ ହୋଇ ସଙ୍କଳିତ ହୋଇଛି । ରାଗ ମଧ୍ୟରେ ଜପୁ, ଆଶା, ସିଦ୍ଧଗୋଷ୍ଠୀ, ବାରମାସ, ମହ୍ଲାର ଆଦି ଅନ୍ୟତମ । ଅଧିକାଂଶ ଭଜନ ପରମାତ୍ମାଠାରେ ଭକ୍ତି ନିବେଦନ ଓ ଆତ୍ମସମର୍ପଣଭାବ ବହନ କରେ । କେତେକ ଭଜନରେ ଗୁରୁନାନକ ଶିଷ୍ଟାଚାର ଓ ଆତ୍ମଶୁଦ୍ଧି ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଗୁରୁଙ୍କ କୃପା ଓ ଦିଗ୍‌ଦର୍ଶନ, ଉଭୟ ଭଗବତ୍ ଉପଲବ୍ଧି ଓ ଆଧ୍ୟାତ୍ମିକ ପ୍ରଗତି ପାଇଁ ଅପରିହାର୍ଯ୍ୟ ବୋଲି ଦର୍ଶାଇଛନ୍ତି । ଗୁରୁ-ବିମୁଖ ବ୍ୟକ୍ତିର ଏ ଦିଗରେ ସଫଳତା ଲାଭ କରିବା ଅସମ୍ଭବ ବୋଲି ଘୋଷଣା କରିଛନ୍ତି ।

ମୂଳମନ୍ତ୍ର ରୂପେ ଘୋଷିତ ବାଣୀରେ ଗୁରୁନାନକ ଦେବ ଦର୍ଶାଇଛନ୍ତି ଯେ, ପ୍ରଭୁର ନାମ ଜପ ଓ ଯଶଗୁଣଗାନ ତାଙ୍କୁ ଉପଲବ୍ଧି କରିବା ଦିଗରେ ସବୁଠାରୁ ଫଳପ୍ରଦ ଉପାୟ ।

"ଗୁନ ଗୋବିନ୍ଦ ଗାଇଓ ନହୀ ଜନମୁ ଅକାରଥ କୀନ,
କହୁ ନାନକ ହରି ଭଜୁ ମନା ଜିହ୍ବ ବିଧି ଜଲକୌ ମୀନ ।
ବିଖିଅନ ସିଓ କାହେ ରଚିଓ ନିମଖ ନ ହୋହି ଉଦାସ,
କହୁ ନାନକ ହରି ଭଜୁ ମନା ପରୈ ନ ଜମକି ଫାଶ ।"

ଗୁରୁଦ୍ୱାରକୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତ ବ୍ୟକ୍ତି ଯାଇପାରନ୍ତି । କିନ୍ତୁ ଶିଖ ବିନା ଅନ୍ୟ ଜାତିର ଲୋକମାନେ ଗଲେ ପୁରୁଷମାନେ ମୁଣ୍ଡରେ ରୁମାଲ ଗୁଡ଼େଇ ଓ ସ୍ତ୍ରୀ ଲୋକମାନେ ମୁଣ୍ଡରେ ଆବରଣ ଦେଇ ଯିବା ବିଧି । ପ୍ରଣାମ କରିବା ପରେ ଉପାସନା କକ୍ଷରେ ବସିଥିବା ଅବସରରେ ସମସ୍ତଙ୍କୁ ପ୍ରସାଦ ଦିଆଯାଏ ଓ ଆଞ୍ଜୁଳରେ ସମସ୍ତେ ପ୍ରସାଦ ଗ୍ରହଣ କରନ୍ତି । ଦେଶୀ ଘିଅ, ଅଟା, ଚିନିର ସୁମିଷ୍ଟ 'କଡ଼ା' ପ୍ରସାଦ ବେଶ୍ ତୃପ୍ତିଦାୟକ ।

ଗୁରୁଦ୍ୱାରରେ ଗୁରୁନାନକ ଓ ଗୁରୁଗୋବିନ୍ଦ ସିଂହଙ୍କ ଫଟୋ ରହିଛି । ପ୍ରତି ରବିବାର ଏଠାରେ ଭକ୍ତମାନଙ୍କର ସୁସମାବେଶ ହୁଏ । ସକାଳ ଭଜନ, କୀର୍ତ୍ତନ ପରେ ସମସ୍ତେ ଚପାତି, ଡାଲି, ସବ୍‌ଜି, ଖିରି, ପୁରି, ପରଟା ଇତ୍ୟାଦି ଖାଇଥା'ନ୍ତି ।

ଶିଖମାନଙ୍କର ପ୍ରଧାନ ପର୍ବ ସ୍ୱଭାବରେ ବୈଶାଖ, ଏପ୍ରିଲ୍ ୧୩, ଗୁରୁ ଅର୍ଜୁନ ଦେବଙ୍କ ଶହୀଦୋତ୍ସବ (ଜୁନ), ଗୁରୁନାନକଙ୍କ ଜନ୍ମଜୟନ୍ତୀ (କାର୍ତ୍ତିକ ପୂର୍ଣ୍ଣିମା), ଗୁରୁ

ଗୋବିନ୍ଦ ସିଂହଙ୍କ ଜୟନ୍ତୀ (ଡିସେମ୍ବର) ଓ ତେଗ୍ ବାହାଦୁରଜୀଙ୍କ ଶ୍ରାଦ୍ଧୋତ୍ସବ (ନଭେମ୍ବର)ରେ ପାଳନ କରାଯାଏ । ଏହି ଦିନ ।ନଙ୍କରେ କୀର୍ତ୍ତନ, ଭଜନ ହୁଏ । ବିଭିନ୍ନ ସ୍ଥାନରୁ ଜ୍ଞାନୀମାନେ ଆସି ପ୍ରବଚନ ଦେଇଥା'ନ୍ତି । ଶିଖ ଧର୍ମାବଲମ୍ବୀ ଲୋକମାନଙ୍କର ବିବାହ ଗୁରୁଦ୍ୱାରରେ ସମ୍ପନ୍ନ ହୋଇଥାଏ । ଗୁରୁଦ୍ୱାରରେ ଦୂରଦୂରାନ୍ତର ଅତିଥି ଅଭ୍ୟାଗତଙ୍କ ଲାଗି ଅତିଥିପରାୟଣତା ଆଦର୍ଶ ଏବଂ ପରମ ପ୍ରଶଂସାଯୋଗ୍ୟ ।

କଟକର ଦାତନ୍ ସାହେବ ଗୁରୁଦ୍ୱାରର ପ୍ରବେଶଦ୍ୱାର ସମସ୍ତଙ୍କ ପାଇଁ ଖୋଲା··· ଏହି ଗୁରୁଦ୍ୱାରର ପ୍ରସାଦ ଥରେ ପାଇଲେ, ଚପାତି, ଡାଲି, ସବ୍‌ଜିର ସ୍ୱାଦ ଥରେ ଚାଖିଲେ ମନ ରହିଯାଏ ଆଉ ଥରକ ପାଇଁ । ଗୁରୁନାନକଙ୍କ ଫଟୋକୁ ଚାହିଁଲେ ମନେହୁଏ ସତେଯେମିତି ସେ ଅଭୟବାଣୀ ଶୁଣାଇ କହୁଛନ୍ତି—

—ସବୁ ମଣିଷ ଏକ ।

—ସବୁ ଧର୍ମ ଏକ ।

—ଯା'ର ମୂଳତତ୍ତ୍ୱ କେବଳ ଈଶ୍ୱର ପ୍ରାପ୍ତି ।



# କଟକରେ ମହିମା ଧର୍ମ

ଶ୍ରୀ ଘନଶ୍ୟାମ ପାଣି

ସାଧୁ ସନ୍ଥର ଦେଶ ଭାରତବର୍ଷ । ପୁଣ୍ୟଭୂମି ଭାରତବର୍ଷ, ତା' ଭିତରେ ଜଗନ୍ନାଥର ଧାମ । ସର୍ବଧର୍ମର ସମନ୍ୱୟ ପୀଠ ଏଇ ଉତ୍କଳରେ । ପଲ୍ଲୀ ଗାଁ ଠାରୁ ଆରମ୍ଭ କରି ସହର, ନଗର ପର୍ଯ୍ୟନ୍ତ ଲମ୍ବି ଯାଇଥିବା ଅଙ୍କାବଙ୍କା ରାସ୍ତାରେ ଅନେକ ସମୟରେ ଦୃଷ୍ଟି ଗୋଚର ହୁଅନ୍ତି ଏକ ପ୍ରକାର ସାଧୁ ଯେଉଁମାନଙ୍କର ମୁଣ୍ଡରେ ଶୋଭା ପାଉଥାଏ ଜଟାର ଭାର, ଅଣ୍ଟାରେ ଗେରୁଆ ବସ୍ତ୍ରର କୌପୀନ, ମୁକୁଳା କାନ୍ଧରେ ପଡ଼ିଥାଏ ଗେରୁଆ ବସ୍ତ୍ର, ଖାଲି ପାଦ, କାଖତଳେ ଝୁଲୁଥାଏ ଏକ ଝୁଲିମଣି ଏବଂ ହାତରେ ଥାଏ ତାଳ ପତ୍ରର ଗୋଲ୍ ଛତା । ଏହା ସହିତ ଅହରହ ମୁହଁରେ ଉଚ୍ଚାରିତ ହେଉଥାଏ "ମହିମା ଅଲେଖ ଶରଣଂ" । ଏମାନଙ୍କୁ ଏଭଳି ରୂପରେ ଦେଖିବା ପରେ ମନରେ ସ୍ୱତଃ ପ୍ରଶ୍ନ ଉଠେ, "ଏମାନେ କିଏ ?" କେଉଁ ସମ୍ପ୍ରଦାୟର ? କେଉଁ ଧର୍ମର ସାଧୁ ?? ଏ ଧର୍ମର ସଂଜ୍ଞା, ସୃଷ୍ଟି ରହସ୍ୟ କଣ ??? ଏମିତି ଅନେକ ପ୍ରଶ୍ନବାଚୀ ।

ଏମାନେ ମହିମାଧର୍ମୀ । ଏହି ମହିମା ଧର୍ମର ସୃଷ୍ଟି ସ୍ଥଳ ହେଉଛି ଓଡ଼ିଶା, ଯେଉଁଠାରେ କେଉଁ ଅନାଦି କାଳରୁ ଜଗନ୍ନାଥ ଧର୍ମର ମହିମା ପ୍ରକଟିତ, ପ୍ରଚ୍ଛରିତ ଏବଂ ପ୍ରସାରିତ ଏବଂ ଅନ୍ୟ ଭାବରେ କହିବାକୁ ଗଲେ ଶୈବ, ଶାକ୍ତ, ଗାଣପତ୍ୟ, ଜୈନ, ବୌଦ୍ଧ, ଖ୍ରୀଷ୍ଟିଆନ, ଇସ୍‌ଲାମ ଧର୍ମର ସମନ୍ୱୟ ଘଟି ଓଡ଼ିଶା ମାଟିର ମହତ୍ତ୍ୱକୁ ବୃଦ୍ଧି କରିଛି ନାନା ଭାବରେ, ନାନା ରଙ୍ଗରେ । ସେଇ ପବିତ୍ର ମାଟିରୁ ଉଦ୍‌ଭବ ଅନ୍ୟଏକ ନୂତନ ଧର୍ମ ଯାହା ମହିମାଧର୍ମ ନାମରେ କଥିତ । ଆଜି କେବଳ ଓଡ଼ିଶା ନୁହେଁ ମାତ୍ର ୧୬୬ ବର୍ଷ ଭିତରେ ବଙ୍ଗ, ବିହାର, ଆସାମ, ଆନ୍ଧ୍ର, ଗୁଜୁରାଟ, ମାନ୍ଦ୍ରାଜ, ଉତ୍ତର ପ୍ରଦେଶ ସର୍ବୋପରି ଜର୍ମାନ, ଜାପାନ, ଆମେରିକା ପ୍ରଭୃତି ଦେଶର ଧର୍ମପ୍ରେମୀମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛି ।

ଏଇ ପରିପ୍ରେକ୍ଷୀରେ କଟକ, ଯାହା ଓଡ଼ିଶାର ପ୍ରାଣକେନ୍ଦ୍ର । କଳା, ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ, ରାଜନୀତି, ସ୍ୱାସ୍ଥ୍ୟର ପୀଠସ୍ଥଳ ରୂପେ ଦେଶ ଜାତି ଓ ଆନ୍ତ-

।ଡି ୍ର ସବୁ ଦୃଷ୍ଟିରୁ ସଂଯୋଗ ସ୍ଥାପନ କରିଛି, ସେହି କଟକ ସହର ଭିତରେ ମହିମା ଧର୍ମ କିପରି କ୍ରମେ ବାହୁ ବିସ୍ତାର କରି ନିଜର ଆସ୍ଥାନକୁ ଦୃଢ଼ କରିପାରିଛି ତା ଉଲ୍ଲେଖ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ଉତ୍କଳ ଦେବଭୂମି, ପବିତ୍ର ଭୂମି, ଧର୍ମଭୂମି, ପୁରୁଷୋତ୍ତମ କ୍ଷେତ୍ର ଜଗନ୍ନାଥଙ୍କ ଧାମ, ଯେଉଁଠି ସକଳ ଧର୍ମ, ଦର୍ଶନ ଓ ତୀର୍ଥର ସମନ୍ୱୟ ଘଟିଛି । ବିଶ୍ୱନିୟନ୍ତା, ପରମପିତା ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ସବୁ ଧର୍ମ ନିଜର ମୌଳିକତ୍ୱ ହଜାଇ ବିଲୀନ ହୋଇଛି । ପ୍ରତ୍ୟେକ ଧର୍ମର ଧର୍ମପ୍ରଚାରକ, ଅବତାରୀ ଯଥା ରାମ, କୃଷ୍ଣ, ବୁଦ୍ଧ, ମହାବୀର, ରାମାନୁଜ, ଶଙ୍କର, ନାନକ, କବୀର, ଶ୍ରୀଚୈତନ୍ୟ ପ୍ରଭୃତି ଏ ଉତ୍କଳ ମାଟିରେ ତାଙ୍କର ସମସ୍ତ ଲୀଳା ଖେଳା କରି ଯାଇଛନ୍ତି । ଏଠାରେ ଯୁଗ ଯୁଗ କାଳ କାଳ ଧରି ଧର୍ମର ମହାସ୍ରୋତ ପ୍ରବାହିତ । ଗାଁ ଗଣ୍ଡା, ସହର ବଜାର, ଘରଦ୍ୱାର, ମନ୍ଦିର, ଗୀର୍ଜା, ମସଜିଦ୍ ଯେଉଁଠାରେ ଦେଖିବ ସେଇଠି କୌଣସି ନା କୌଣସି ଧର୍ମର ପ୍ରତୀକ ତ୍ରିଶୂଳ, କ୍ରୁଶ, ବାନା, ପତାକା, ଚକ୍ର, ଚନ୍ଦ୍ର, ସୂର୍ଯ୍ୟ ଦେଖିବାକୁ ମିଳେ । ଏଇ ଆମର କଟକ ସହର, ହଜାର ବର୍ଷର କଟକ ସହର । ମାନବିକତାର ମହାମନ୍ତ୍ର ସାମ୍ୟ, ମୈତ୍ରୀ, ପ୍ରୀତିର ଜୟଗୀତ ଉଦ୍‌ଘୋଷଣ କରୁଛି । ନାନା ଜାତି, ନାନା ଧର୍ମ, ନାନା ସଂପ୍ରଦାୟ, ନାନା ଭାଷା ନାନା ବର୍ଣ୍ଣର ସମ୍ମିଶ୍ରଣରେ ସମୃଦ୍ଧ, ନାନା ସାହିତ୍ୟ, କଳା, ସଂସ୍କୃତିର ପୀଠସ୍ଥଳୀ ହିନ୍ଦୁ, ଜୈନ, ବୌଦ୍ଧ, ଖ୍ରୀଷ୍ଟିଆନ, ପାର୍ଶୀ, ଇସଲାମ, ଶୈବ, ଶାକ୍ତ, ଗାଣପତ୍ୟ ଧର୍ମର ମହାପ୍ଲାବନ ଘଟିଛି । ସେଇଠି ମଧ୍ୟ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମହିମା ସ୍ୱାମୀଙ୍କ ପ୍ରବର୍ତ୍ତିତ ମହିମାଧର୍ମ ପ୍ରବେଶ କଲା । କେବଳ ସେତିକି ନୁହେଁ ଦେଶର ଗୋଟାଏ ସଙ୍କଟସନ୍ଧି ମୁହୂର୍ତ୍ତରେ ମହିମାଧର୍ମ କଟକର ସ୍ଥାୟୀ ବାସିନ୍ଦା ଗରିବଠାରୁ ଧନୀ, ଅସବର୍ଣ୍ଣ ଠାରୁ ସବର୍ଣ୍ଣ ପର୍ଯ୍ୟନ୍ତ ପ୍ରତ୍ୟେକ ଶ୍ରେଣୀର ଲୋକଙ୍କୁ ଉଦାର ମାନବିକତା ପୂର୍ଣ୍ଣ ଏହି ଧର୍ମ ସ୍ପର୍ଶ କଲା; ଆଲୋକ ଦେଲା ପବିତ୍ର କଲା । ଅଧିକାଂଶ ଲୋକ ଏହି ଧର୍ମରେ ଦୀକ୍ଷିତ ହେବା ପାଇଁ ଆଗେଇ ଆସିଲେ । ଆଧୁନିକ ବୈଷୟିକତା ପୂର୍ଣ୍ଣ ବିଜ୍ଞାନ ଜଗତରେ ଏହି ଧର୍ମ ଏହି ମାଟିରେ ଜନ୍ମ ଲଭିକରି ନାନା ଘାତ, ପ୍ରତିଘାତ, ଉତ୍ଥାନ, ପତନ ବିରୋଧ ମଧ୍ୟରେ ଗତି କରି ଥକି ପଡ଼ିନାହିଁ । ବ୍ରାହ୍ମଣମାନଙ୍କର ଅବିଚାର ଅତ୍ୟାଚାର ସତ୍ତ୍ୱେ ଏ ଧର୍ମ ବିଲୀନ ହୋଇନାହିଁ କାଳ ବକ୍ଷରେ । ବରଂ ନିଜର ମହିମାରେ, ମହାନତାରେ, ଉଦାରତାରେ, ନୂତନତାରେ ଉଦ୍ଭାସିତ ହୋଇ ସବୁଧର୍ମ ଭିତରେ ଅନ୍ୟ ଏକ ସ୍ୱତନ୍ତ୍ର ଧର୍ମ ଭାବରେ ମର୍ଯ୍ୟାଦା ଲଭି କରି ତାର ଶାଖା ପ୍ରଶାଖା ମେଲି ଏକ ବିରାଟ ବଟ ବୃକ୍ଷରେ ପରିଣତ ହୋଇଛି । ତାରି କୋଳକୁ ଟାଣି ଆଣିଛି ଅଗଣିତ ଭକ୍ତମାନଙ୍କୁ ଏବଂ ଧର୍ମାଶ୍ରୟ ଦେଇ ଦେଖାଇଛି ମୁକ୍ତିର ପଥ । କଟକ ଠାରୁ କଳାହାଣ୍ଡି, ଯୋରନ୍ଦା ଠାରୁ ଜର୍ମାନ ପର୍ଯ୍ୟନ୍ତ ବ୍ୟାପ୍ତ ଏହି ମହିମା ଧର୍ମ ବିଶ୍ୱର ପ୍ରତ୍ୟେକ ବ୍ୟସ୍ତ, ବିବ୍ରତ, ବିଚଳିତ ମଣିଷକୁ ଶୁଣାଇଛି ଏକ ମହାମନ୍ତ୍ର, ଯାହା ବିଶ୍ୱପାଇଁ, ପ୍ରତ୍ୟେକ ଧର୍ମାବଲମ୍ବୀଙ୍କ ପାଇଁ ସମ୍ପୂର୍ଣ୍ଣ ଆଶ୍ଚର୍ଯ୍ୟ ଓ ନୂତନ ।

ସେଇ ମହାମନ୍ତ୍ର ହେଲା —

"ପ୍ରାଣୀଙ୍କ ଆରେତ ଦୁଃଖ ଅପରମିତ
　　　　　　　　ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
　　　　　　　　ଜଗତ ଉଦ୍ଧାର ହେଉ ।"

ଏ ଭଳି ବାଙ୍ମୟ ଦାର୍ଶନିକତାପୂର୍ଣ୍ଣ ମହାନତତ୍ତ୍ୱ ପୃଥିବୀର ଆଉ କେଉଁ ଧର୍ମ ସାହିତ୍ୟରେ ବର୍ଣ୍ଣିତ । ଯେଉଁ ଧର୍ମରେ ଜାତି, ଧର୍ମ ଶ୍ରେଷ୍ଠବଡ଼, ସବର୍ଣ୍ଣ ଅସବର୍ଣ୍ଣର ଭେଦ ନାହିଁ । ଜଗତର ମଙ୍ଗଳ ପାଇଁ, ସମଗ୍ର ବିଶ୍ୱର ହିତ ପାଇଁ ନିଜକୁ ତ୍ୟାଗ କରିବାର ମହାନ ଗମ୍ଭୀର ତତ୍ତ୍ୱ ବଖାନ କରେ, ସରଳ ଶାନ୍ତ, ନିରହଙ୍କାର; ଆଗ୍ରହ ନଷ୍ଟ ଜୀବନ ଯାପନ ପାଇଁ ସ୍ପଷ୍ଟ ଇଙ୍ଗିତ ଦିଏ । ବେଦବାଣୀ, "ବିଶ୍ୱଜନହିତାୟ" ଏବଂ "ବସୁଧୈବ-କୁଟୁମ୍ବକମ୍"ର ମାନବବାଦୀ ତତ୍ତ୍ୱର ପୁନଃ ଉଦ୍‌ଘୋଷଣ କରେ, ସେହି ସତ୍ୟମହିମା ଧର୍ମ ବା ଅଲେଖ ଧର୍ମ ଆଜି ସମାଜରେ ସୁପ୍ରତିଷ୍ଠିତ ଓ ସୁବ୍ୟବସ୍ଥିତ ।

## ପୃଷ୍ଠଭୂମି :

ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଓ ଊନବିଂଶ ଶତାବ୍ଦୀର ପ୍ରାରମ୍ଭକାଳରେ ଭାରତ ମାଟିରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧର୍ମାଦର୍ଶରେ ଦେଖାଦେଇଥିଲା ଏକ ବିରାଟ ସଂଘର୍ଷ । ଏଠାରେ ବ୍ରାହ୍ମଣମାନଙ୍କର ଏକଚାଟିଆ ଧର୍ମବ୍ୟବସାୟ, ଜାତି ଜାତି ମଧ୍ୟରେ ବିଭେଦ ଏବଂ ତୁମୁଳ ସଂଗ୍ରାମ ଲାଗି ରହିଥିଲା । ସାଧାରଣ ଜନତା ଦେବାଦେବୀ ପୂଜା ଯଜ୍ଞ ଉପବାସରେ ମଜ୍ଜି ରହି ଭୁଲି ଯାଇଥିଲେ ଏକ ଏବଂ ଅଦ୍ୱିତୀୟ ଈଶ୍ୱରଙ୍କର ଉପାସନାକୁ । ସେତେବେଳେ ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ବୈଷ୍ଣବ ଧର୍ମର ସହଜ, ସରଳ ପ୍ରେମଭକ୍ତିର ପ୍ରବାହ ଓଡ଼ିଶା ମାଟିରେ ମହାପ୍ଲାବନ ସୃଷ୍ଟି କରିଥିଲା ଏବଂ କେତେକ ପରିମାଣରେ ସାମାଜିକ ଜୀବନକୁ କଳୁଷିତ କରୁଥିଲା । ଠିକ୍ ଏତିକବେଳେ ଖ୍ରୀଷ୍ଟିଆନ ମିଶନାରୀମାନଙ୍କର ଚତୁରତାପୂର୍ଣ୍ଣ ଧର୍ମ ପ୍ରଚାରର ଶିକାର ହୋଇ ଓଡ଼ିଶା ମାଟିର ଅଗଣିତ ଗରିବ, ଅଜ୍ଞ ଆଦିବାସୀ, ହରିଜନ, ଯେଉଁମାନେ ବ୍ରାହ୍ମଣମାନଙ୍କ ଦ୍ୱାରା ଉପେକ୍ଷିତ, ଘୃଣିତ, ଲାଞ୍ଛିତ, ଅପମାନିତ ହେଉଥିଲେ, ସେମାନେ ସ୍ୱଧର୍ମ ପରିତ୍ୟାଗ କରି ବିଧର୍ମୀ ହେଉଥିଲେ । ଏଠି ଦୀର୍ଘ ଦିନର ପରାଧୀନତା, ବ୍ରାହ୍ମଣମାନଙ୍କର ଧର୍ମରେ ଯଥେଚ୍ଛାଚାରିତା ଜାତି ଜାତି ମଧ୍ୟରେ ସଂଘର୍ଷ, ଦ୍ୱନ୍ଦ୍ୱ, କୁସଂସ୍କାର ଭିତରେ ସମାଜ ଉବୁଟୁବୁ, ମଣିଷ ପାଖରେ ମଣିଷ ନିର୍ଯ୍ୟାତିତ ଅତ୍ୟାଚାରିତ, ଧର୍ମ ନାମରେ ଠକାମି, ଭଣ୍ଡାମି, ସାମାଜିକ ଜୀବନ ଅସ୍ତବ୍ୟସ୍ତ, ବିକୃତ ଆଧ୍ୟାତ୍ମିକ ଜଗତ ବିଭ୍ରାଟପୂର୍ଣ୍ଣ, ଠିକ୍ ଏମିତି ଗୋଟାଏ ଚରମଦୁର୍ଦ୍ଦିନ ମୁହୂର୍ତ୍ତରେ ଆର୍ତ୍ତପୀଡ଼ିତମାନଙ୍କୁ ମୁକ୍ତିବାର୍ତ୍ତା ଦେଇ, ଶୁଭଶଙ୍ଖ ବଜାଇ ଓଡ଼ିଶା ମାଟିରେ ପୁରୁଷୋତ୍ତମ ଧାମରେ ଆବିର୍ଭୂତ ହେଲେ ପ୍ରବୁଦ୍ଧ ମହିମା ସ୍ୱାମୀ ।

## ମହିମାସ୍ୱାମୀଙ୍କ ପ୍ରକାଶ :

ଗୀତା କହେ,

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହଂ
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ, ସମ୍ଭବାମି ଯୁଗେ ଯୁଗେ ।"

ଏ ପୃଥିବୀ ପୃଷ୍ଠରେ ଯେତେବେଳେ ସତ୍ୟଧର୍ମର ବିନାଶ ହୁଏ ଏବଂ ଅନ୍ୟାୟ, ଅଧର୍ମ ବଢ଼ିଯାଏ, ସେତେବେଳେ ଧର୍ମର ରକ୍ଷା ପାଇଁ ସ୍ୱୟଂଭଗବାନ ଅବତାର ଗ୍ରହଣ କରିଥାନ୍ତି ।

ଏ ଦେଶରେ ସନାତନ ଧର୍ମର କ୍ଷୟ ହୋଇ ଯେତେବେଳେ ସମାଜର ଧର୍ମଧାରା, ଆଦର୍ଶ ଭାଙ୍ଗିରୁଜି ଭୁଷୁଡ଼ି ପଡ଼ୁଥିଲା, ଗରିବ, ନିରୀହ ଆଦିବାସୀ ହରିଜନ ଅମୃତ ସନ୍ତାନ ଅସ୍ପୃଶ୍ୟତାର ଶିକାର ହୋଇ ଘୃଣିତ ହେଉଥିଲେ, ପାଷାଣ୍ଡମାନଙ୍କର ଅତ୍ୟାଚାରରେ ସାଧୁ, ସନ୍ଥ, ଧାର୍ମିକମାନେ ଆତଙ୍କିତ ହେଉଥିଲେ, ସେଇ ଅମାନ୍ଧକାର ଘଡ଼ସନ୍ଧି ମୁହୂର୍ତ୍ତରେ ଆଲୋକ ବର୍ତ୍ତିକା ଜାଳି ଗୁରୁମହିମା ସ୍ୱାମୀ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହେଲେ । ପ୍ରଥମ ଅବସ୍ଥାରେ ପ୍ରବୁଦ୍ଧ ସ୍ୱାମୀ, ଶୂନ୍ୟ, ଶୂନ୍ୟ, ମହାଶୂନ୍ୟରୁ କ୍ଷରିତ ହୋଇ ପ୍ରକାଶିତ ହେଲେ ମର୍ତ୍ତ୍ୟସ୍ୱର୍ଗ ହିମାଳୟରେ । ସେଠାରେ ସେ କରିଥିବା ଖେଳାଲୀଳା ସମ୍ବନ୍ଧରେ ବିଶେଷ କିଛି ଜଣାଯାଏ ନାହିଁ । ମାତ୍ର ଦୀର୍ଘ ଦିନରୁ ଅପେକ୍ଷାରତ ମୁନି, ଋଷି, ସାଧୁସନ୍ଥମାନଙ୍କୁ ଦର୍ଶନ ଦେଇ ନିର୍ଦ୍ଦେଶ ଦେଲେ ଯେ, ଭାରତବର୍ଷର ଦକ୍ଷିଣପୂର୍ବରେ ଥିବା ଉତ୍କଳ ଧାମରେ ସତ୍ୟ ସନାତନ ମହିମା ଧର୍ମ ପ୍ରଚାର କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ । ଏହାପରେ ଗୁପ୍ତ ପ୍ରବୁଦ୍ଧ ମହିମାସ୍ୱାମୀ ଅଜଣାଭାବରେ ସତ୍ୟ ସନାତନ ମହିମାଧର୍ମ ପ୍ରଚାର କରିବା ପାଇଁ, ଜଗନ୍ନାଥ ଧାମ, ପୁରୁଷୋତ୍ତମ କ୍ଷେତ୍ରରେ ଆବିର୍ଭୂତ ହେଲେ ୧୮୨୬ ଖ୍ରୀଷ୍ଟାବ୍ଦରେ । ବଡ଼ ଠାକୁରଙ୍କ ବଡ଼ଦାଣ୍ଡ ପବିତ୍ର ଧୂଳିରେ ଆତଯାତ ହେଉଥିବାରୁ ଏବଂ ତାଙ୍କର ଧୂଳି ଧୂସରିତ ଜଟା ସୁଶୋଭିତ ମସ୍ତକ, କଟିର ଗେରୁଆ କୌପିନ ଦେଖି ସାଧାରଣ ଜଣେ ଧୂଳିଆ ବାବାର ଆଖ୍ୟା ଦେଇଥିଲେ । ଏଠାରେ ସେ ଜଳପାନ କରି ବଞ୍ଚୁଥିଲେ ବୋଲି ଲୋକମାନେ ତାଙ୍କୁ ଜଳାହାରୀ ବାବା ବୋଲି କହୁଥିଲେ । ପଣ୍ଡିତମାନଙ୍କର ପୀଠସ୍ଥଳି, ପୁରୀମନ୍ଦିରର ମୁକ୍ତି ମଣ୍ଡପରେ ଉପସ୍ଥିତ ହୋଇ ଆଦିବ୍ରହ୍ମ, ନିରାକାର, ନିର୍ଗୁଣଙ୍କ ସମ୍ପର୍କରେ ନିଜର ଅକାଟ୍ୟ ମତ ପ୍ରଦାନ କରି ମୁକ୍ତିମଣ୍ଡପ ପଣ୍ଡିତବର୍ଗଙ୍କର ଗର୍ବକୁ ଖଣ୍ଡନ କରିଥିଲେ । ଏହାପରେ ସେ ପୁରୀ ପରିତ୍ୟାଗ କରି ଫେରି ଆସିଥିଲେ, ଖଣ୍ଡଗିରି, ଉଦୟଗିରି, ଧଉଳଗିରିକୁ । ସେଠାରେ ସେ ୧୨ ବର୍ଷ କାଳ ଆତ୍ମଯୋଗ ସମାଧିରେ ଥିଲେ । ଯୋଗେଶ୍ୱର ମହିମା-ସ୍ୱାମୀଙ୍କର ଜନ୍ମଜାତକ ସମ୍ପର୍କରେ ମହିମା ଇତିହାସ ସମ୍ପୂର୍ଣ୍ଣ ନୀରବ । ମହିମାଧର୍ମ ଇତିହାସର ପ୍ରତିପାଦକ ବିଶ୍ୱନାଥ ବାବା ଅତ୍ୟଧିକ ଭକ୍ତିପ୍ରାଣତାର ପରିଚୟ ଦେବାକୁ

ଯାଇ ତାଙ୍କୁ ଅଲେଖ ନିରଞ୍ଜନ, ଅନାଦି, ଅନନ୍ତ, ନିରାକାର, ଅଣାକାର ଭାବରେ ଅଭିହିତ କରିଛନ୍ତି । ତାଙ୍କ କହିବା ଅନୁସାରେ ଅଲେଖ ସ୍ୱାମୀଙ୍କର ମହିମାକୁ ବ୍ୟକ୍ତ କରି ହୁଏନା । ସେ ମହିମା ପୁରୁଷଙ୍କର ରୂପନାହିଁ, ତାଙ୍କୁ ଦର୍ଶନ କରି ହୁଏନା, ସେ ମହାଶୂନ୍ୟ, ଶୂନ୍ୟଦେହୀ, ଲେଖାଦ୍ୱାରା ତାଙ୍କର ମହିମା ବର୍ଣ୍ଣନା କରାଯାଇ ପାରିବ ନାହିଁ । ସେ ଅନାମିକ, ତାଙ୍କର ନାମ ନାହିଁ, ସେ ନିରାକାର ତାଙ୍କର ଆକାର ନାହିଁ, ତାଙ୍କର ବର୍ଣ୍ଣ ନାହିଁ, ସେ ଅବର୍ଣ୍ଣ୍ୟ, ସେ ଅଦୃଶ୍ୟ, ସାଧାରଣ ଦୃଷ୍ଟିରେ ଦୃଶ୍ୟ ନୁହନ୍ତି, ସେ ଶବ୍ଦହୀନ ତାଙ୍କର ବେଦନାହିଁ, ସେ ତ୍ରିଗୁଣାତୀତ,—କାଳାତୀତ—ଜ୍ଞାନାତୀତ—ସେ ପାଦହୀନ, କିନ୍ତୁ ଚାଲିପାରନ୍ତି, ସେ ଚକ୍ଷୁହୀନ, କିନ୍ତୁ ଦେଖିପାରନ୍ତି, ସେ କର୍ଣ୍ଣହୀନ, କିନ୍ତୁ ଶ୍ରବଣ କରି ପାରନ୍ତି, ପୁଣି ସେ ହସ୍ତହୀନ, କିନ୍ତୁ ଗ୍ରହଣ କରି ପାରନ୍ତି—ସବୁଥାଇ କିଛି ନ ଥାଏ, କିଛି ନଥାଇ ସବୁଥାଏ । ସେହି ସର୍ବଶକ୍ତିର ଆଧାର ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ଢେଙ୍କାନାଳସ୍ଥ ଯୋରନ୍ଦାକୁ ଆଗମନ କଲେ ।

## ମହିମାଧର୍ମର ପ୍ରଚାର ଓ ପ୍ରସାର :

ମହିମା ଧର୍ମର ସ୍ଥାପନ କରିବା ପାଇଁ ଯୋଗେଶ୍ୱର ମହିମାସ୍ୱାମୀ ଛଦ୍ମଭାବରେ ଉତ୍କଳ ଭୂମିରେ ଅବତୀର୍ଣ୍ଣ ହୋଇଥିଲେ । ସେତେବେଳର ସମାଜରେ ବୈଷ୍ଣବ ଧର୍ମର ସହଜିଆ ପରକୀୟା ତତ୍ତ୍ୱ ଅତ୍ୟନ୍ତ ଜଘନ୍ୟ ପରମ୍ପରା ସୃଷ୍ଟି କରିଥିଲି । ପିତୁଳା ପୂଜା ନାମରେ ଅଲେଖ, ଅଣାକାର, ଅଦ୍ୱିତୀୟ ବ୍ରହ୍ମଙ୍କ ପ୍ରତି ଯେଉଁ ଉଦାସୀନତା ପ୍ରକାଶ ପାଇଥିଲି ତା' ବିରୁଦ୍ଧରେ ମହିମାଧର୍ମ ଯୁଦ୍ଧ ଘୋଷଣା କଲି ।

ଯେଉଁ ଗିରିଜନ, ହରିଜନ, ଆଦିବାସୀ ନିମ୍ନ ଜାତି ବୋଲାଉଥିବା ଲୋକମାନେ ଦେବାଦେବୀ ଧରି ମନ୍ଦିରରେ ପ୍ରବେଶ କରି ପାରୁ ନ ଥିଲେ, ପୂଜା ପାର୍ବଣ ଓ ଯଜ୍ଞରେ ଅଂଶ ଗ୍ରହଣ କରିବାରୁ ବଞ୍ଚିତ ହେଉଥିଲେ, ଉଚ୍ଚବର୍ଣ୍ଣ ବୋଲାଉଥିବା ବ୍ରାହ୍ମଣମାନଙ୍କ ଦ୍ୱାରା ଲାଞ୍ଛିତ, ଘୃଣିତ, ଅପମାନିତ ହେଉଥିଲେ, ସେଇମାନେ ଧର୍ମପରାଧୀନତାର ଶୃଙ୍ଖଳକାଟି ମହିମା ଧର୍ମରେ ଦୀକ୍ଷିତ ହେବାକୁ ଆଗେଇ ଆସିଲେ । ପ୍ରଥମେ ସେହି ଅସହାୟ, ଆର୍ତ୍ତ ନିପୀଡ଼ିତ, ଆହତ ଆତ୍ମାର ମୁକ୍ତି ପାଇଁ ମହିମାସ୍ୱାମୀ ହସ୍ତପ୍ରସାରଣପୂର୍ବକ ଆଶ୍ରୟ ପ୍ରଦାନ କଲେ ଏବଂ ସତ୍ୟମହିମା ଧର୍ମର ମୌଳିକତତ୍ତ୍ୱ "ବ୍ରହ୍ମପ୍ରାପ୍ତି"ର ପଥ ବତାଇ ଦେଲେ ।

ଖଣ୍ଡଗିରି, ଉଦୟଗିରି, ଧଉଳଗିରିରେ ବାରବର୍ଷକାଳ ଜଳାହାରରେ ରହି ଶେଷରେ ପ୍ରବୁଦ୍ଧ ମହିମା ସ୍ୱାମୀ ୧୮୩୮ ମସିହାରେ କଟକରେ ପହଞ୍ଚିଲେ । ସେଠାରେ ଭକ୍ତମାନଙ୍କୁ ଦର୍ଶନ ଦେଇ ନିଜର ଅପୂର୍ବ ଖେଳା ଲୀଳା ପ୍ରଦର୍ଶନ କରିଥିଲେ । ଏହା ଫଳରେ ଅନେକ ଭକ୍ତ ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

ଏହାପରେ ମହିମା ସ୍ୱାମୀ ଢେଙ୍କାନାଳ ନିକଟସ୍ଥ କପିଳାସର ସୁରମ୍ୟ ଗିରି-କନ୍ଦରକୁ ଫେରି ଆସିଥିଲେ । ସେଠାରେ ସେ କୁମ୍ଭୀ ବଲ୍‌କଲ ପରିଧାନ ପୂର୍ବକ ଆତ୍ମଯୋଗ

ସମାଧିରେ ରହିଲେ । ଏହି ଆତ୍ମଯୋଗ ସମାଧି କାଳରେ ମହିମାସ୍ୱାମୀ କେବଳ ଫଳାହାର କରୁଥିଲେ । ଫଳାହାରୀ ମହିମା ସ୍ୱାମୀ ବାରବର୍ଷ ପରେ ଏହି କପିଳାସ ପୀଠରେ ଜଗନ୍ନାଥ ନାମକ ଜଣେ ବ୍ରହ୍ମଚାରୀଙ୍କୁ ମହିମାଧର୍ମରେ ଦୀକ୍ଷିତ କରି, ମହିମା ଧର୍ମର ନୀତି, ନିୟମ, ଆଚାର, ବିଚାର, ଶୃଙ୍ଖଳା, ତତ୍ତ୍ୱ ସବୁକିଛି ଉପଦେଶ ଦେଇଥିଲେ ।

ସେଇ ବ୍ରହ୍ମଚାରୀ ଜଗନ୍ନାଥ ଗୋବିନ୍ଦ ବାବା ନାମରେ ପରିଚିତ ହେଲେ । ସେ ହିଁ ଆଦିସିଦ୍ଧ ବାବା ନାମରେ ପରିଚିତ । ମହିମାଧର୍ମର ସେ ହେଉଛନ୍ତି ଆଦି ଅବଧୂତ, ଆଦିଭକ୍ତ, ପରମ ସନ୍ନ୍ୟାସୀ ଯିଏ ମହିମା ସ୍ୱାମୀଙ୍କଠାରୁ ସିଧାସଳଖ ବଳକଳ ବାନା ଗ୍ରହଣ କରିଥିଲେ ।

ଆଦିସିଦ୍ଧ ଗୋବିନ୍ଦ ବାବା ଦୀକ୍ଷା ଗ୍ରହଣ କରିବା ପରେ ମହିମା ସ୍ୱାମୀଙ୍କ ନିର୍ଦ୍ଦେଶ କ୍ରମେ ଧର୍ମ ପ୍ରଚାର ଲାଗି ପଶ୍ଚିମ ଦିଗକୁ ଯାତ୍ରା କଲେ । ରେଢ଼ାଖୋଲ, ସୋନପୁର, ବୌଦ୍ଧ ଅଞ୍ଚଳରେ ବିଭିନ୍ନ ଗ୍ରାମ ବୁଲି ମହିମାଧର୍ମର ପ୍ରଚାର କରିବାକୁ ଲାଗିଲେ । ଗୋବିନ୍ଦ-ବାବା ନିଜର ଅଲୌକିକ ଜ୍ଞାନର ପରିଚୟ ଦେଇ ଅଗଣିତ ଭକ୍ତମାନଙ୍କର ପ୍ରିୟଭାଜନ ହୋଇ ପାରିଥିଲେ ।

ଗୋବିନ୍ଦ ବାବା ବଲଶିଙ୍ଗା ଗ୍ରାମରେ ଥିବା ସମୟରେ ପ୍ରଭୁ ମହିମାସ୍ୱାମୀ ହଠାତ୍ ସେଠାରେ ଉପସ୍ଥିତ ହୋଇ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥିଲେ । ଗୋବିନ୍ଦ ବାବାଙ୍କୁ ସାଥିରେ ଆଣି ମହିମାସ୍ୱାମୀ ରେଢ଼ାଖୋଲ ଅଞ୍ଚଳରେ ଥିବା ଗ୍ରାମଡିହାରେ ପହଞ୍ଚି ଆଜନ୍ମ ଅନ୍ଧ ଭୀମ ଭୋଇଙ୍କୁ ଦର୍ଶନ ଦେଇ ମହିମା ଧର୍ମର ଜ୍ଞାନ ଭକ୍ତି ସମ୍ପର୍କରେ ଯଥାବିଧି ଉପଦେଶ ପ୍ରଦାନପୂର୍ବକ ଶିଷ୍ୟ ଭାବରେ ଗ୍ରହଣ କରିଥିଲେ । ମହିମାସ୍ୱାମୀଙ୍କର ସ୍ପର୍ଶ ପାଇବା ପରେ ଭୀମ ଭୋଇଙ୍କ ଠାରେ ଦିବ୍ୟଜ୍ଞାନ ପ୍ରକାଶ ପାଇଥିଲା ଏବଂ ସେ ପ୍ରଭୁଙ୍କ ଆଦେଶ କ୍ରମେ ମହିମା ସ୍ୱାମୀଙ୍କ ମହିମା ବିଷୟରେ ଶହି ଶହି ଭଜନ ଜଣାଣ ଲେଖିବାକୁ ଲାଗିଲେ । ଏହି ଲେଖିବା କାର୍ଯ୍ୟରେ ହରି ପଣ୍ଡା ଓ ବାସୁଦେବ ପଣ୍ଡା ପ୍ରମୁଖ କେତେକ ବ୍ୟକ୍ତି ସାହାଯ୍ୟ କରୁଥିଲେ ।

ସତ୍ୟମହିମା ଧର୍ମର ଆଦିକବି ଭୀମ ଭୋଇଙ୍କ ରଚିତ ରସାଳ ଭକ୍ତିପୂର୍ଣ୍ଣ ମହିମା ସଙ୍ଗୀତ ସ୍ୱରରେ ମୂର୍ଚ୍ଛନା ଗାଁ ଗଣ୍ଡା, ବାଟଘାଟ, ଚାରିଆଡ଼େ ପ୍ରତିଧ୍ୱନିତ ହେଲା । ଗିନି, ଖଞ୍ଜଣୀର ତାଳ ସହିତ ମହିମା ଭଜନଗୁଡ଼ିକ ଓଡ଼ିଶାର ପୁରପଲ୍ଲୀରେ ମୁଖରିତ ହେଲା ଏବଂ ହଜାର ହଜାର ଭକ୍ତ ନୂତନ ସୃଷ୍ଟି ମହିମାଧର୍ମ ପ୍ରତି ଆକୃଷ୍ଟ ହୋଇ ଦୀକ୍ଷିତ ହେଲେ । ଭୀମ ଭୋଇଙ୍କ ରଚିତ ପୁସ୍ତକ "ସ୍ତୁତି ଚିନ୍ତାମଣି" ଭଜନମାଳା, ବ୍ରହ୍ମନିରୂପଣ-ଗୀତା, "ଶ୍ରୁତିନିଷେଧ ଗୀତା" 'ଅଷ୍ଟକ ବିହାରୀ ଗୀତା, ଚଉତିଶା ଗ୍ରନ୍ଥମାଳା' ଆଦି ଅନ୍ତଗୀତା ପ୍ରଭୃତି ପୁସ୍ତକମାନ ଭକ୍ତମାନଙ୍କ ମଧ୍ୟରେ ପ୍ରଚାରିତ ହୋଇ ବିଶେଷ ଭାବରେ ସମାଦୃତ ହେଲା । ଭକ୍ତକବି ଭୀମଭୋଇଙ୍କ ଲେଖାଦ୍ୱାରା ସତ୍ୟ ମହିମା ଧର୍ମ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଅଧିକ ପ୍ରଚାରିତ ଓ ପ୍ରସାରିତ ହେଲା ।

ମହିମା ସ୍ୱାମୀ ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ଅନେକ ଅଲୌକିକ କ୍ରିୟା କଳାପ ଦେଖାଇଛନ୍ତି ସବୁକଥା ବର୍ଣ୍ଣନା କରିବା ସମ୍ଭବ ନ ହେଲେ ମଧ୍ୟ କେତେକ ଯଥା ଅନ୍ଧକୁ ଚକ୍ଷୁଦାନ, ମୃତକୁ ଜୀବନଦାନ ଦେବା, ଜଳ ଉପରେ ଗମନ, ଶୂନ୍ୟରେ ଠିଆହେବା, ବନ୍ୟାଜଳ ହଟାଇ ଦେବା, ବନ୍ଧ୍ୟାଗାଈଠାରେ ଦୁଗ୍ଧ ସଞ୍ଚାର କରିବା, ଆଜନ୍ମ ରୋଗୀକୁ ରୋଗମୁକ୍ତ କରିବା, କୁଷ୍ଠରୋଗୀକୁ ଆରୋଗ୍ୟ କରିବା, ବସନ୍ତିକା ରୋଗ ହଟାଇ ଦେବା, ମଞ୍ଜି ପୋତି ଫଳ କରାଇବା, କାୟା ପରିବର୍ତ୍ତନ କରିବା, ଏକ ସ୍ଥାନରେ ଥାଇ ଅନ୍ୟ ସ୍ଥାନରେ ଦେଖା ଦେବା, ଏମିତି ଅନେକ ଅଲୌକିକ କାର୍ଯ୍ୟ କରି ସମାଜର ବହୁ ଶ୍ରେଣୀର ଲୋକଙ୍କୁ ନିଜସ୍ୱ ମହିମାର ନିଦର୍ଶନ ଦ୍ୱାରା ଆକୃଷ୍ଟ କରି ପାରୁଥିଲେ । ଅନେକ ଭକ୍ତ ତାଙ୍କ ମହିମାରେ ଅଭିଭୂତ ହୋଇ ଘରଦ୍ୱାର ଛାଡ଼ି ମହିମା ଧର୍ମରେ ଦୀକ୍ଷିତ ହୋଇଥିଲେ । ଯେଉଁମାନେ ଘରଦ୍ୱାର ପରିତ୍ୟାଗ କରି ଚାଲି ଆସୁଥିଲେ ସେମାନେ ଆଶ୍ରମ ପନ୍ଥା ଗ୍ରହଣ କରି ସନ୍ନ୍ୟାସ ଜୀବନ ଯାପନ କରୁଥିଲେ । ଯେଉଁମାନେ ଗୃହାଭିତରେ ରହି ସେ ଧର୍ମ ପ୍ରତି ଆକୃଷ୍ଟ ହୋଇ ଦୀକ୍ଷିତ ହେଉଥିଲେ ସେମାନେ ଗୃହସ୍ଥା ପନ୍ଥୀ ବୋଲାଉ ଥିଲେ ।

ମହିମାସ୍ୱାମୀ ନିଜର ଜୀବ ଦଶାରେ ପ୍ରଥମେ ୯୨ ଜଣଙ୍କୁ ଦୀକ୍ଷିତ କରାଇ ସେହି ମାନଙ୍କ ମାଧ୍ୟମରେ ଓଡ଼ିଶାର ପୁରପଲ୍ଲୀରେ ଏ ଧର୍ମକୁ ପରିବ୍ୟାପ୍ତ କରିଦେଲେ । ଧର୍ମ ପ୍ରଚାର କାଳରେ ଜାତି, ବର୍ଣ୍ଣ, ଧର୍ମ, ଭାଷା ସବୁ ଶ୍ରେଣୀର ଲୋକ ଏହି ଧର୍ମ ଗ୍ରହଣ କରିବା ପାଇଁ ସୁବିଧା ଥିଲା । ବିଶେଷ କରି ନିମ୍ନ ଶ୍ରେଣୀର ଲୋକମାନେ ଅଧିକ ଆଗ୍ରହରେ ଏହି ଧର୍ମରେ ଦୀକ୍ଷିତ ହେଉଥିଲେ । ଉଚ୍ଚ ବର୍ଣ୍ଣର ଅନେକ ଲୋକ ଏହି ଉଦାର ଧର୍ମର ମହତ୍ତ୍ୱ ନ ବୁଝି ତାର ବିରୋଧ କରୁଥିଲେ ଏବଂ ଏହି ଧର୍ମ ପ୍ରଚାରକମାନଙ୍କୁ ଲାଞ୍ଛିତ ଅପମାନିତ କରିବା ପାଇଁ ଭୁଲୁ ନଥିଲେ । ଏହି ଧର୍ମର ପ୍ରଚାର ଓ ପ୍ରଭାବ ଏତେ ଅଧିକ ବ୍ୟାପ୍ତ ଥିଲା ଯେ, ଅନେକ ସାଧାରଣ ଲୋକ ଏ ଧର୍ମର ରୀତି ନୀତି ଆଚାର, ଅଭ୍ୟାସ ଦେଖି ବିଚଳିତ ମଧ୍ୟ ହେଉଥିଲେ । ଯୁଗ ଯୁଗ ଧରି ସମାଜରେ ଚାଲିଆସୁଥିବା ବୈଷ୍ଣବ, ଜୈନ, ବୌଦ୍ଧ, ଶୈବ ଧର୍ମଧାରାଠାରୁ ଏହା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ତେଣୁ କେତେକ ଲୋକ ବିଶ୍ୱାସ କରୁଥିଲେ ଯେ ଏହା ଏକ ଧର୍ମବିରୋଧୀ, ପରମ୍ପରାବିରୋଧୀ ଧର୍ମ ଯାହା ଜାତିକୁଳ ବୁଡ଼ାଇବା ସଙ୍ଗେ ସଙ୍ଗେ ସମାଜକୁ ବିକୃତ, ବିକଳାଙ୍ଗ କରିବାରେ ସହାୟକ ହେବ । ଶୁଣାଯାଏ ଧର୍ମପ୍ରତି ବିରୋଧ ମନୋଭାବ ପୋଷଣ କରି, ଅସହିଷ୍ଣୁ ହୋଇ ଅନେକ ଲୋକ କହୁଥିଲେ—

"କୁଆଡ଼ୁ ଆସିଲେ କୁମ୍ଭୀ ପଟିଆ
ହିନ୍ଦୁ ପୁରୁଷଙ୍କୁ କଲେ ବାଇୟା ।"

ବାସ୍ତବରେ ଏହା ସତ୍ୟ । ମହିମାସ୍ୱାମୀଙ୍କର ଏହି ଧର୍ମ ସମଗ୍ର ଗଡ଼ଜାତ ଅଞ୍ଚଳ ଢେଙ୍କାନାଳ, ଅନୁଗୁଳ, ବୌଦ, ସୋନପୁର, ସମ୍ବଲପୁର, ହିନ୍ଦୋଳ, ଆଠଗଡ଼, ବଡ଼ମ୍ବା, ଦଶପଲ୍ଲା, ଖଣ୍ଡପଡ଼ା, ନୟାଗଡ଼ ଏବଂ ମୋଗଲବନ୍ଦୀ ଅଞ୍ଚଳ ଯଥା ସାଲେପୁର,

କେନ୍ଦ୍ରାପଡ଼ା, ଜଗତସିଂହପୁର ଅଞ୍ଚଳରେ ଆନ୍ଦୋଳନ ସୃଷ୍ଟି କଲା । ପ୍ରଥମ ଶ୍ରେଣୀର ସିଦ୍ଧ ଆଶ୍ରମ ପନ୍ଥାର ସନ୍ନ୍ୟାସୀମାନେ ଗାଁଗଣ୍ଡାକୁ ଫେରି ଯାଇ ନିଷ୍ଠାର ସହିତ ଏହି ଧର୍ମ ପ୍ରଚାର କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ଗାଁଗଣ୍ଡାରେ ଧୂନିଘର ନିର୍ମିତ ହୋଇଥିଲା । ମହିମା ସ୍ୱାମୀଙ୍କ ଉଦ୍ଦେଶ୍ୟରେ ଲିଖିତ ବହୁ ଭଜନ ସ୍ତୋତ୍ର ଭକ୍ତମାନଙ୍କର କଣ୍ଠରେ ନିନାଦିତ ହୋଇ ଆବାଳ ବୃଦ୍ଧ ବନିତାଙ୍କୁ ଏହି ଧର୍ମ ପ୍ରତି ଆକୃଷ୍ଟ କଲା । ଗୃହସ୍ଥମାନେ ଗୈରିକ ବସ୍ତ୍ର କୌପିନ ପିନ୍ଧି ନିତ୍ୟ ଅଭ୍ୟାସପୂର୍ବକ 'ମହିମା ଅଲେଖ ଶରଣ' କହି ସମାଜରେ ଏକ ସ୍ୱତନ୍ତ୍ର ଧର୍ମାବଲମ୍ବୀ ଭାବରେ ଦଣ୍ଡାୟମାନ ହେଲେ ।

ଊନବିଂଶ ଶତାବ୍ଦୀର ଶେଷପାଦ ମଧ୍ୟରେ ଏହି ଧର୍ମ ସମଗ୍ର ଓଡ଼ିଶାର ପୁର-ପଲ୍ଲୀରେ ବ୍ୟାପ୍ତ ହୋଇ ସାରିଥିଲା । ନିଜେ ମହିମା ସ୍ୱାମୀ ଗାଁଗଣ୍ଡା ବୁଲି ଆର୍ତ୍ତଜନତାର ଦୁଃଖ କଷ୍ଟକୁ ମୋଚନ କରି ଧର୍ମ ପ୍ରଚାର ଚଳାଇଥାନ୍ତି । କେବଳ ମଫସଲ ଗାଁର ମୂର୍ଖ, ଅପଣ୍ଡିତ, ଦରିଦ୍ର, ନିମ୍ନ ଶ୍ରେଣୀର ଲୋକଙ୍କ ପାଖରେ ସେ ପହଞ୍ଚି ନଥିଲେ, ସେତେବେଳର କଟକ ସହର ଯେଉଁଠି ମୋଗଲ ମରହଟ୍ଟା ରାଜତ୍ୱର ଚିହ୍ନ ଲିଭିନାହିଁ, ଇଂରେଜ ରାଜତ୍ୱର ପ୍ରବାହ ପରାକାଷ୍ଠା ପ୍ରକାଶିତ ହେବାରେ ଲାଗିଛି ସେଠାରେ ସେ ପହଞ୍ଚିଥିଲେ ୧୮୩୮ ମସିହାରେ । (ସ: ମ: ଇ: ପୃ—୬) ଏବଂ ଏଠାରେ ଭକ୍ତମାନଙ୍କୁ ଦର୍ଶନ ଦେଇ ସେ ନିଜର ମହିମାପୂ ଖେଳାଲୀଳା କରିଥିଲେ । ଏହାପରେ ମଧ୍ୟ ମହିମା ସ୍ୱାମୀ ନିଜର ପଞ୍ଚଶିଷ୍ୟ, ପ୍ରଥମ ଶିଷ୍ୟ ସିଦ୍ଧ ଗୋବିନ୍ଦ ବାବାଙ୍କୁ ନେଇ କଟକ ସହର ଆସିଥିଲେ । ଏହା ବୋଧହୁଏ ମହିମା ସ୍ୱାମୀଙ୍କର କଟକ ଆସିବା ଦ୍ୱିତୀୟଥର । ଦ୍ୱିତୀୟବାର ସେ କଟକର ବାଲୁବଜାର ନିବାସୀ ଭକ୍ତ ଖଳପାଙ୍କ ଗୃହନିକଟରେ ଥିବା ଭକ୍ତ ଗୋକୁଳାନନ୍ଦଙ୍କର ବାସ ଭବନରେ ଗୋଟିଏ ଦିନ ପାଇଁ ରହିଥିଲେ । ନିଜର ଧର୍ମ ପ୍ରଚାର କରି କଟକର କଳୁଷିତ ମାଟିକୁ ପବିତ୍ର କରିଥିଲେ । (ସ: ମ: ଇ: ପୃ-୬୨) ଏବଂ ଅନେକ ଲୋକ ତାଙ୍କର ଅଲୌକିକ ସାଧନା ଦେଖି ଏହି ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ଆଜିର ପ୍ରତିଷ୍ଠିତ ଗୃହଦୀପ ଚୌକ ଟୁଙ୍ଗୀ ଯାହା ମହିମାଧର୍ମ ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଏକ ପ୍ରଧାନ ପୀଠରେ ପରିଣତ ହୋଇଛି ସେହି ପବିତ୍ର ପୀଠ ଟୁଙ୍ଗୀକୁ ଅଲେଖ ମହିମାସ୍ୱାମୀ ଆସିଥିଲେ ବୋଲି ସାଧୁମାନେ ମତବ୍ୟକ୍ତ କରନ୍ତି ।

## କଟକର ମହିମାଶ୍ରମ ସମୂହ :

୧—ଗୃହଦୀପଚୌକ ଟୁଙ୍ଗୀ—କଟକସ୍ଥ ଗୃହଦୀପଚୌକ ଟୁଙ୍ଗୀ ଯାହା ଆଜି ମହିମା ଧର୍ମର ଏକ ପ୍ରଧାନ ପୀଠ ଭାବରେ ପରିଗଣିତ ସେଠାରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ କେତେକ ସ୍ଥାନୀୟ ଭକ୍ତମାନଙ୍କର ପ୍ରଚେଷ୍ଟାରେ ଟୁଙ୍ଗୀଘର ପ୍ରତିଷ୍ଠିତ ହୋଇଥିଲା । ଏଠାରେ ଟୁଙ୍ଗୀ ନିର୍ମାଣ ପାଇଁ ଶ୍ରୀ ନିତ୍ୟାନନ୍ଦ ଦାସ ନାମକ ଜଣେ ମହିମା ଧର୍ମର ଭକ୍ତ ଜମି ପ୍ରଦାନ କରିଥିଲେ । ତାହାର ପ୍ରମାଣ ନିମ୍ନ ଲେଖାରୁ ମିଳେ—

'In pursuance of this Sidha Gangadhar Baba of this Ist line in the order arranged to receive during 1910 a plot

of land donated by devotee Nityananda Das of Chandini chauk measuring Ac. 0·12 decimils"

ସେହି ସମୟର ସ୍ଥାନୀୟ ଲୋକମାନଙ୍କର ସାହାଯ୍ୟ, ସହାନୁଭୂତିରେ ଯେଉଁଠାରେ ଏକ ଅସ୍ଥାୟୀ ଟୁଙ୍ଗୀ ନିର୍ମାଣ କରାଯାଇଥିଲା । ମହିମା ଧର୍ମକୁ ଲୋକମାନଙ୍କ ନିକଟରେ ପହଞ୍ଚାଇବା ପାଇଁ ପ୍ରବଳ ଉଦ୍ୟମ ହେଉଥାଏ । ବ୍ୟସ୍ତ ବହୁଳ କଟକ ସହରର ଯାନ୍ତ୍ରିକ ବସ୍ତିର ଅନେକ ଧର୍ମାନୁରାଗୀ ବ୍ୟକ୍ତି ସେଠାରେ ରୁଣ୍ଡ ହୋଇ ମହିମାଧର୍ମ ପ୍ରତି ନିଜର ଅନୁରାଗ ପ୍ରଦର୍ଶନ କରୁଥାନ୍ତି, ଏପରି ଏହି ଧର୍ମର ଲୋକପ୍ରିୟତା ଦେଖି କେତେକ ମହିମାଧର୍ମ ବିଦ୍ୱେଷୀ, ଖଳ ପ୍ରକୃତିର ଲୋକ ୧୯୩୪ ମସିହାରେ ଚାନ୍ଦିନୀଚୌକିରେ ଥିବା ଚାଳ ନିର୍ମିତ ଟୁଙ୍ଗୀ ଘରକୁ ପୋଡ଼ିଦେଲେ ।

ଏହି ଦାରୁଣ ଦୁଃଖଦ ଅବସ୍ଥାରେ ମହିମା ସଂପ୍ରଦାୟର ଭକ୍ତମାନେ ଭାଙ୍ଗି ପଡ଼ି ନଥିଲେ ବରଂ ଅଧିକ ଆଗ୍ରହରେ ମହିମାଧର୍ମକୁ ଅଧିକ ବ୍ୟାପକ ରୂପ ଦେବାକୁ ଆଗେଇ ଆସିଲେ । ପରମ ସନ୍ନ୍ୟାସୀ ନରହରି ଦାସ ବାବା ମହିମା ଧର୍ମ ପାଇଁ, ମହିମା ସ୍ୱାମୀଙ୍କ ପାଇଁ, ଜଗତର ମଙ୍ଗଳ ପାଇଁ କଷ୍ଟ ସ୍ୱୀକାରପୂର୍ବକ ଆଗ୍ରାହାଟକୁ ଯାଇ କାଠ ବାଉଁଶ ଆଣି ଚାନ୍ଦିନୀଚୌକିରେ ଠୁଳ କଲେ । ସ୍ଥାନୀୟ ଅଧିବାସୀମାନେ ସେମାନଙ୍କର ପ୍ରଭୂତ ସାହାଯ୍ୟ ଦେଇ ପୁନଃ ମହିମା ଟୁଙ୍ଗୀ ନିର୍ମାଣ କଲେ । ଏହାପରେ ଚାନ୍ଦିନୀଚୌକି ଟୁଙ୍ଗୀ ଆଉ ପଛକୁ ଫେରି ଚାହିଁନି—ସେ ଆଗେଇ ଚାଲିଛି ।

ଏହାପରେ ମହିମା ଧର୍ମର ଏହି ଟୁଙ୍ଗୀର ଦାୟିତ୍ୱ ବହନ କଲେ ବିଶ୍ୱନାଥ ବାବା—ଯାହାଙ୍କ ଉପରେ ପ୍ରବୁଦ୍ଧ ମହିମାସ୍ୱାମୀଙ୍କର ଆଶୀର୍ବାଦ ପ୍ରଚ୍ଛନ୍ନ ଭାବରେ ରହିଛି ।

ମହାନ ବିଶ୍ୱନାଥ ବାବା ଉକ୍ତ ଧର୍ମର ସାଧକ, ପ୍ରତିପାଦକ, ଦିଗ୍ ଦର୍ଶକ, ଧ୍ରୁବତାରା ସଦୃଶ । କଟକ ସହରକୁ ସେ ବାରମ୍ବାର ପରିକ୍ରମା କରିଛନ୍ତି । କଟକଭଳି ଗୋଟିଏ ଆଧୁନିକ ସହର, ଯେଉଁଠି ଜ୍ଞାନର ବର୍ତ୍ତିକା ଜଳୁଛି, ଆଲୋଚନା ସମାଲୋଚନା, ପରମ୍ପରା, ସତ୍ୟ, ବିଶ୍ୱାସର ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ଧର୍ମ ଧର୍ମ ମଧ୍ୟରେ ନିତିପ୍ରତି ସଂଘର୍ଷ ଚାଲିଛି । ସେଠାରେ ସେ ମହିମା ଧର୍ମକୁ ବ୍ୟାପ୍ତ, ପରିବ୍ୟାପ୍ତ କରିବାରେ ସମ୍ପୂର୍ଣ୍ଣ ସଫଳ ହୋଇଛନ୍ତି । ଜ୍ଞାନୀ, ଅଜ୍ଞାନ, ବଳବାନ ଧନୀ ଗରିବ ପ୍ରତ୍ୟେକ ପାଖରେ ଏହି ଧର୍ମକୁ ସେ ପହଞ୍ଚାଇ ପାରିଛନ୍ତି । ହିଂସା, ଈର୍ଷା, ଦ୍ୱେଷ, ଅହଂ ବର୍ଜିତ ଅନେକ ଭକ୍ତ ମହିମା ଧର୍ମର ବେଶ ବିନ୍ୟାସ ନେଇ ଏହି ସହର ବଜାର ମଧ୍ୟରେ ଆତଯାତ ହୁଅନ୍ତି । ସନ୍ଧ୍ୟା ସକାଳରେ ସହସ୍ର ସହସ୍ର ମହିମା ଦୀକ୍ଷିତ ଭକ୍ତମାନଙ୍କର କଣ୍ଠରୁ "ମହିମା ଅଲେଖ ଶରଣଂ" ଧ୍ୱନି ନିର୍ଗତ ହୋଇ ଗଗନ ପବନ ମୁଖରିତ କରେ ।

ସିଦ୍ଧ ସାଧୁ ବିଶ୍ୱନାଥ ବାବାଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ଚାନ୍ଦିନୀଚୌକି ଟୁଙ୍ଗୀ କରିବା ପାଇଁ କଟକର ବନମାଳୀ ମହାରଣା (ନିମସାହି), ବାସୁ ହାଲଦାର,

(ଖଟବିନସାହି) ଧର୍ମସାହୁ (ଦରଘା ବଜାର) ଧୋବେଇ ବେହେରା, ମନ୍ଦର ବେହେରା, (ଦୋଳମୁଣ୍ଡି) ପୂର୍ଣ୍ଣ ମହାପାତ୍ର (ହାଇକୋର୍ଟ) ଅନାଦି ବେହେରା, (କାଫଲା ବଜାର) ବାଞ୍ଛାନିଧି ସେଠୀ (ମାନସିଂ ପାଟଣା) ଗନ୍ଧର୍ବ ଓଝା, (ଶଗଡ଼ିଆ ସାହି) ଗୋବିନ୍ଦ ସାହୁ, (ସେକ୍ ବଜାର) ପ୍ରଭୃତି ଅନେକ ମହିମା ଧର୍ମାବଲମ୍ବୀ ଭକ୍ତମାନେ ପ୍ରଦାନ କରିଥିଲେ । ଏମାନଙ୍କ ଯଥାର୍ଥ ସାହାଯ୍ୟକୁ ନେଇ ଗୃଦ୍ଧମାରଚୌକିର ମହିମା ଟୁଙ୍ଗୀ ଆଜି ପରିପୁଷ୍ଟ ଓ ପରିବର୍ଦ୍ଧିତ ।

ପରବର୍ତ୍ତୀ ସମୟରେ ବିଶ୍ୱନାଥ ବାବାଙ୍କର ଆଶୀର୍ବାଦରୁ ଗୃଦ୍ଧମାରଚୌକି ମହିମା ଟୁଙ୍ଗୀ ଅଧିକ ପ୍ରସାରିତ ହେଲା ଏବଂ ସହସ୍ର ସଂଖ୍ୟାରେ ମହିମାଶ୍ରୟୀ ଭକ୍ତମାନଙ୍କୁ ଆଶ୍ରୟ ଦେବାପାଇଁ ସକ୍ଷମ ହୋଇପାରିଲା । ଏହି ସମୟରେ ଏହି ଟୁଙ୍ଗୀର ଉନ୍ନତି ପାଇଁ ଯେଉଁମାନେ ଆଗେଇ ଆସିଥିଲେ ସେମାନେ ହେଲେ ସର୍ବଶ୍ରୀ ବିଦ୍ୟାଧର ସାହୁ (ଅଲସା ବଜାର), ଅନ୍ତେଳବିହାରୀ ଭୂୟାଁ (ତେଲେଙ୍ଗା ବଜାର), ରାଧାକୃଷ୍ଣ ପଟ୍ଟନାୟକ (ଖଟବିନ ସାହି) ବୈରାଗୀ ସାହୁ (ସଞ୍ଚାରଡ଼ିରା) ଗୋବିନ୍ଦ ମା (ମାନସିଂହ ପାଟଣା) । ସେମାନଙ୍କର ମହତ ଦାନ ପାଇଁ ଆଜି ସେମାନେ ମହିମାଧର୍ମାବଲମ୍ବୀମାନଙ୍କ ନିକଟରେ ଧନ୍ୟବାଦର ପାତ୍ର ।

ମହିମାଧର୍ମାବଲମ୍ବୀ ମାନଙ୍କ ପାଇଁ ଯୋରନ୍ଦା ଗାଦି, ପ୍ରଧାନ ପୀଠ ଓ ତୀର୍ଥସ୍ଥଳ ହୋଇଥିଲେ ମଧ୍ୟ ମହିମା ଧର୍ମର ପ୍ରସାର, ପ୍ରଚାର ବିକାଶ ଓ ପ୍ରକାଶ କ୍ଷେତ୍ରରେ ଗୃଦ୍ଧମା-ରଚୌକି ଟୁଙ୍ଗୀ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଗୃଦ୍ଧମାରଚୌକିର ପବିତ୍ର ଟୁଙ୍ଗୀକୁ ବାଦ୍ ଦେଲେ ମହିମା ଧର୍ମ, ସାହିତ୍ୟ, ମତ, ଆଦର୍ଶ ତତ୍ତ୍ୱ, ଦର୍ଶନ, ଚିନ୍ତା କରିବା ସମ୍ଭବ ନୁହେଁ । ମହିମା ଧର୍ମର ବିକାଶ ପାଇଁ ଗୃଦ୍ଧମାରଚୌକି ଟୁଙ୍ଗୀର ଦାନ ଅତୁଳନୀୟ ।

ବିଶ୍ୱନାଥ ବାବାଙ୍କର ପ୍ରଗାଢ଼ ଇଚ୍ଛା ଓ ଉଦ୍ୟମ ଫଳରେ ୧୯୬୩ ମସିହାରେ ଏକ ପକ୍କାଗୃହ ନିର୍ମାଣ କରାଯାଇ ପାରିଛି । ଏହି ପକ୍କା ଘର ନିର୍ମାଣ ପାଇଁ ମହିମା ଧର୍ମର ଜଣେ ଭକ୍ତ ନରସିଂହ ଦାସ ମୋହନ୍ତଙ୍କର ଦାନ ଉଲ୍ଲେଖଯୋଗ୍ୟ । ଉକ୍ତ ଆଶ୍ରମରେ ୧୯୬୮ ମସିହାରେ କଟକ (ଅଲସା ବଜାର) ନିବାସୀ ଧର୍ମଗ୍ରନ୍ଥ ଷ୍ଟୋରର ସ୍ୱତ୍ତ୍ୱାଧିକାରୀ ମହିମା ଧର୍ମର ଅନ୍ୟତମ ଭକ୍ତ ବିଦ୍ୟାଧର ସାହୁ ଅଲେଖ ଟୁଙ୍ଗୀ ନିର୍ମାଣ କରି ଧନ୍ୟବାଦର ପାତ୍ର ହୋଇଛନ୍ତି । ଅଗଣିତ ଭକ୍ତମାନଙ୍କର ଶ୍ରଦ୍ଧା ଦାନରେ ଅନ୍ୟ ଦୁଇଟି ପକ୍କା ଗୃହ ୧୯୮୭ ମସିହାରେ ନିର୍ମିତ ହୋଇଛି । କେବଳ ଏତିକି ନୁହେଁ ଗୃଦ୍ଧମାରଚୌକି ମହିମାଶ୍ରମର କଳେବର ବୃଦ୍ଧି ହେବାରେ ଲାଗିଛି । ନିକଟ ଅତୀତ ପ୍ରଚେଷ୍ଟା ଫଳରେ ମହିମାଧର୍ମର ଏକ ଉନ୍ନତ ପାଠାଗାର ପ୍ରତିଷ୍ଠିତ ହୋଇ ମହିମା ଧର୍ମ ପ୍ରେମୀମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛି ।

ଏକଦା ମହିମା ଧର୍ମର ଆଦି ପଦଧ୍ୱନି ଅନୁରଣିତ ହୋଇଥିଲା ଗୃଦ୍ଧମାରଚୌକିର ପ୍ରଥମ ନିର୍ମିତ ଅଲେଖ ଟୁଙ୍ଗୀରେ । ସେଇ ମଧୁର ଧ୍ୱନି ଆଜି ପ୍ରତିଧ୍ୱନିତ ହେଉଛି କଟକ ସହରର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ । ଭକ୍ତମାନଙ୍କର ସଂଖ୍ୟା ବୃଦ୍ଧି ପାଇଛି ଅସମ୍ଭବ ଭାବରେ । ଅଗଣିତ ଭକ୍ତ, ସାଧୁ, ସନ୍ଥ ସାମିଲ ହୋଇଛନ୍ତି ସେହି ମହାତ୍ମ୍ୟରେ ।

## ଖଟ୍ବିନସାହି ଟୁଙ୍ଗୀ :

ଏହାପରେ ଆଉ ଏକ ଅଲେଖ ଟୁଙ୍ଗୀ ପ୍ରତିଷ୍ଠିତ ହୋଇଛି ଖଟବିନ ସାହିରେ । ନିର୍ମାଣ ସମୟ ୧୯୬୭ ମସିହା । ଟୁଙ୍ଗୀ ପାଇଁ ଜମିଦାନ କରିଥିଲେ ମାଧବ ହାଲଦାର । ଏ କ୍ଷେତ୍ରରେ ଭକ୍ତ ଅନନ୍ତ ମହାରଣା ଓ ବାସୁଦେବ ମହାରଣାଙ୍କର ଦାନ ଚିର ଅବିସ୍ମରଣୀୟ । ସେଇ ସ୍ଥାନରେ ୧୯୮୪ ମସିହାରେ ଗଢ଼ି ଉଠିଛି ଏକ ସୁଦୃଶ୍ୟ ଆଧୁନିକ କୋଠା । ଏଥିପାଇଁ ମହିମା ଧର୍ମର ଭକ୍ତମାନଙ୍କର ଦାନ ଉଲ୍ଲେଖଯୋଗ୍ୟ ।

ବିନ୍ଦୁ ବିନ୍ଦୁ ହୋଇ ସିନ୍ଧୁ ସୃଷ୍ଟି ହେଲା ପରି ଗୋଟିକ ପରେ ଗୋଟିଏ ମହିମା ଟୁଙ୍ଗୀ କଟକ ସହରର ବୁକୁ ଉପରେ ମୂଣ୍ଡଟେକି ଜୟଗାନ କଲା ପ୍ରବୁଦ୍ଧ ମହିମାସ୍ୱାମୀଙ୍କର ରମାଳ ଭଜନ ସାଥିରେ ଗିନି ଖଞ୍ଜଣୀର ବାଦନ ସାଧାରଣ ମଣିଷକୁ ଅଣଆୟତ୍ତ କଲା । ଖଟିଖିଆ ମେହନତି ମଣିଷ ପରି ସନ୍ନ୍ୟାସୀ ଓ ଅପରି ସନ୍ନ୍ୟାସୀମାନଙ୍କର ସରଳ ତତ୍ତ୍ୱ ସମ୍ବଳିତ ମିଷ୍ଟ ଉପଦେଶ ଶୁଣି ଜୀବନର ଅନ୍ତିମ ଅଭିଳାଷ ଶାନ୍ତି ଓ ମୁକ୍ତି ପାଇଁ ମହିମା ଧର୍ମରେ ଦୀକ୍ଷିତ ହେଲେ ଏବଂ ସାହି ବସ୍ତିମାନଙ୍କରେ ମହିମା ଟୁଙ୍ଗୀମାନ ସ୍ଥାପନ କଲେ ।

## କାଫଲାବଜାର ଟୁଙ୍ଗୀ :

ଏହାପରେ ପରେ କାଫଲା ବଜାରରେ ୧୯୬୮ ମସିହାରେ ଏକ ମହିମା ଟୁଙ୍ଗୀ ସ୍ଥାପିତ ହେଲା । ଏହି ଟୁଙ୍ଗୀ ପାଇଁ ଅନାଦି ବେହେରା ଏବଂ ବଟକୃଷ୍ଣ ସେଠୀ ପ୍ରଭୃତି ଭକ୍ତମାନେ ୨୦ ଡେସିମିଲ ପରିମିତ ଜମି ଦାନ କଲେ । ପୂର୍ବରୁ ସ୍ଥାପିତ ମହିମା ଟୁଙ୍ଗୀ ଏବେ ଉନ୍ନତ ଟୁଙ୍ଗୀରେ ପରିଣତ ହୋଇଛି । ସାଧାରଣ ମହିମା ଭକ୍ତ ଓ ବଦାନ୍ୟ ବ୍ୟକ୍ତିମାନଙ୍କ ଅକୁଣ୍ଠ ସାହାଯ୍ୟରେ ୧୯୯୦ ମସିହାରେ ପ୍ରତିଷ୍ଠିତ ହୋଇଛି ଏକ ସ୍ଥାୟୀ ପକ୍କା ଆଶ୍ରମ । ନିତ୍ୟପ୍ରତି ଭକ୍ତମାନେ ଏଠାରେ ରୁଣ୍ଡ ହୋଇ ମହିମା ଧର୍ମ ସମ୍ପର୍କରେ ଆଲୋଚନା କରନ୍ତି ।

## ବଡ଼ାନାସୀ ମହିମାଶ୍ରମ :

କଟକର ବଡ଼ାନାସୀ ଅଞ୍ଚଳରେ ପ୍ରାୟ ୪ ଗୋଟି ମହିମା ଆଶ୍ରମ ଦେଖିବାକୁ ମିଳେ । ପ୍ରାୟ ୧୯୨୫ରେ ପୁରାତନ ବଡ଼ାନାସୀ ମୂଳ ମହିମା-ଶ୍ରମ ସ୍ଥାପିତ ହୁଏ । ସିଦ୍ଧ ବିଶ୍ୱନାଥ ବାବାଙ୍କ ପ୍ରେରଣା କ୍ରମେ ଭଜମନ ପ୍ରଧାନ, ଡମ୍ବରୁଧର ସାମଲ, ପୁରୁଷୋତ୍ତମ ଦଳେଇ (ଆଠଗଡ଼) ଲକ୍ଷ୍ମୀନାରାୟଣ ସାହୁ (ଚଉଦ୍ୱାର) ଖାଡୁ ବେହେରା (ବଡ଼ାନାସୀ) ପ୍ରଭୃତି ଗୃହସ୍ଥ ଭକ୍ତମାନଙ୍କର ସାହାଯ୍ୟରେ ବଡ଼ାନାସୀ ଆଶ୍ରମ ପ୍ରତିଷ୍ଠିତ ହେଲା । ପରବର୍ତ୍ତୀ ସମୟରେ ପ୍ରାୟ ୧୯୭୦ ମସିହା ଠାରୁ ଏହି ସ୍ଥାନରେ ଏକ ଟିଣ ଛପର ଗୃହରେ ମହିମାଶ୍ରମ କାର୍ଯ୍ୟ ଚାଲୁ ରହିଛି । ଏହି ଗୃହ ନିର୍ମାଣ କରିବା ପାଇଁ ସ୍ଥାନୀୟ ଭକ୍ତ ବାବାଜୀ ବେହେରା, ପୂର୍ଣ୍ଣଚନ୍ଦ୍ର ମୁଦୁଲୀ, ଶରତ ମହାରଣାଙ୍କର ଅର୍ଥଦାନ ଉଲ୍ଲେଖଯୋଗ୍ୟ । ମହିମା ଧର୍ମର ପ୍ରଚାର ଓ ପ୍ରସାର ପାଇଁ ସେମାନଙ୍କର ସାହାଯ୍ୟ ବେଶ୍ ପ୍ରଶଂସନୀୟ ବୋଲି ଜଣେ ବାବାଙ୍କର ମତ ।

## ଚହଟାଘାଟ ମହିମାଶ୍ରମ :

ମହିମା ଧର୍ମ ଦର୍ଶନର ଶ୍ରେଷ୍ଠ ପ୍ରବକ୍ତା ସିଦ୍ଧ ବିଶ୍ୱନାଥ ବାବାଙ୍କର ପ୍ରେରଣାରେ ଚହଟାଘାଟରେ ୧୯୮୫-୮୬ ଠାରୁ ଏକ ମହିମାଶ୍ରମ ପ୍ରତିଷ୍ଠିତ ହୋଇଛି । ଏହି ଆଶ୍ରମ ପାଇଁ ମହିମାଭକ୍ତ ବାଙ୍କାଣି ବେହେରା ୮ ଡେସିମିଲ ପରିମିତ ଜମି ଦାନ କରିଛନ୍ତି । ଏହି ଆଶ୍ରମକୁ ଅଧିକ ସରସ ସୁନ୍ଦର କରିବା ପାଇଁ ଅନ୍ୟଜଣେ ଭକ୍ତ କାର୍ତ୍ତିକ ଚନ୍ଦ୍ର ବେହେରା ମଧ୍ୟ ପ୍ରାୟ ୧୨ ଗୁଣ୍ଠ ଜମି ଦାନ କରିଛନ୍ତି । ଏହି ଚହଟା ଘାଟ ମହିମାଶ୍ରମ ଏ ଅଞ୍ଚଳରେ ମହିମା ଧର୍ମ ପ୍ରେମୀମାନଙ୍କର ଏକ ପ୍ରଧାନ ପୀଠ ଭାବରେ ପରିଗଣିତ ହୋଇଛି ।

## ନୂଆବଜାର ମହିମାଶ୍ରମ :

କଟକର ଦକ୍ଷିଣ ପୂର୍ବାଞ୍ଚଳରେ ଏହା ହେଉଛି ଏକ ଜଣାଶୁଣା ମହିମାଶ୍ରମ । ମହିମାନଗରୀ ନାମରେ ନାମିତ । ୨୪ ଡେସିମିଲ ପରିମିତ ଜମି ଉପରେ ଏହି ଆଶ୍ରମ ପ୍ରତିଷ୍ଠିତ । ଏହି ଜମିକୁ ଦାନ କରିଥିଲେ ଭକ୍ତ ପୂର୍ଣ୍ଣଚନ୍ଦ୍ର ମହାରଣା ଏବଂ କୃଷ୍ଣଚନ୍ଦ୍ର ମହାରଣା । ଏହି ମହିମାଶ୍ରମର ଟୁଙ୍ଗୀ, ରନ୍ଧନଶାଳା, ଭଜନାଳୟ, ଅମୂଣିଆଁ ମଣ୍ଡପ, ଧୂନିମଣ୍ଡପ, ଧର୍ମଶାଳା ଆଦି ନିର୍ମିତ ହୋଇ ମହିମାଭକ୍ତମାନଙ୍କ ଦ୍ୱାରା ବ୍ୟବହୃତ ହେଉଛି । ୧୯୫୨ ମସିହାରେ ପ୍ରତିଷ୍ଠିତ ଏହି ଆଶ୍ରମକୁ ପ୍ରତିଷ୍ଠା କରାଇବାରେ ଅବଧୂତ ପରିବ୍ରାଜ୍ୟାସୀ ଭକ୍ତଚରଣ ବାବାଙ୍କର ଉଦ୍ୟମ ଅବିସ୍ମରଣୀୟ । ଏହି ଆଶ୍ରମ ପରିଚାଳନା କ୍ଷେତ୍ରରେ ବ୍ରହ୍ମାବଧୂତ ଅନାଦିଚରଣ ବାବା, ବ୍ରହ୍ମାବଧୂତ ଶ୍ରୀଚରଣ ବାବା, ଅବଧୂତ କରୁଣାକର ବାବା, ଓ ଅବଧୂତ ଗୁରୁଚରଣ ବାବାଙ୍କର ପ୍ରଚେଷ୍ଟା ଅଭିନନ୍ଦନୀୟ ।

ଏଠାରେ ପ୍ରତି ଶୁକ୍ଳ ଚତୁର୍ଦ୍ଦଶୀରେ ମହିମାସ୍ୱାମୀଙ୍କ ଉଦ୍ଦେଶ୍ୟରେ ଅଗଣିତ ଭକ୍ତମାନେ ରୁଣ୍ଡହୋଇ ଘୃତବର୍ତ୍ତି ଜଳାନ୍ତି । ସନ୍ଧ୍ୟା ସକାଳେ ଭଜନ ଜଣାଣ କରି ଅପୂର୍ବ ଆନନ୍ଦରେ ପର୍ବ ପାଳନ କରନ୍ତି । ଆହୁରି ମଧ୍ୟ ପ୍ରତିବର୍ଷ ମାଘ ମାସ ଶୁକ୍ଳ-ଦଶମୀ ଦିନ ପୂର୍ବାଞ୍ଚଳର ହଜାର ହଜାର ଭକ୍ତ ଏଠାରେ ଉପସ୍ଥିତ ହୋଇ ଘୃତବର୍ତ୍ତି ଜଳାଇ ମହିମା ସ୍ୱାମୀଙ୍କର ବାଲ୍ୟଲୀଳା ପାଳନ କରି ପରଦିନ ଏଠାରୁ ଯୋରନ୍ଦା ଗୁରୁପୀଠର ବାର୍ଷିକ ମେଳାରେ ଯୋଗଦାନ କରିବା ପାଇଁ ଯାତ୍ରା କରନ୍ତି ।

## ଖାନନଗର ଆଶ୍ରମ :

ସମସ୍ତ ସହରର ତାଳଦେଇ ମହିମା ଆଶ୍ରମ ସବୁ ପ୍ରତିଷ୍ଠିତ ହେବାରେ ଲାଗିଛି । ଗୋଟିଏ ପରେ ଗୋଟିଏ ବଢ଼ି ଚାଲିଛି । ୧୯୪୭ ମସିହାରେ ଆଉଏକ ମହିମା ଆଶ୍ରମ ପ୍ରତିଷ୍ଠିତ ହେଲା ଖାନନଗର ଅଞ୍ଚଳରେ । ଖାନନଗର ମହିମାଶ୍ରମ ପ୍ରତିଷ୍ଠା କରିବା ଦିଗରେ ପରିବ୍ରାଜ୍ୟାସୀ ମନୁଦାସ ବାବାଙ୍କର ଅବଦାନ ଅତୀବ ସ୍ମରଣୀୟ । ବର୍ତ୍ତମାନ ସେହି ଆଶ୍ରମ ପରିଚାଳନା କରୁଛନ୍ତି ନିରାକାର ବାବା । ନିତ୍ୟପ୍ରତି ସେଠାରେ ମଧ୍ୟ ମହିମା ଭକ୍ତଙ୍କର ସମାଗମ ହୁଏ । ଏହି ମହିମାଶ୍ରମ ପ୍ରତିଷ୍ଠା ଓ ଉନ୍ନତି ଦିଗରେ ଦୁର୍ଯ୍ୟୋଧନ ସାହୁ, ସାନମା', ବଡ଼ମା', ରବୀନ୍ଦ୍ର ସାହୁ, କୁନାବେହେରା, ମାର୍କଣ୍ଡଦାସଙ୍କର ଅବଦାନ ଉଲ୍ଲେଖଯୋଗ୍ୟ ।

## ଜୋବ୍ରା ମହିମା ଅଲେଖ ଆଶ୍ରମ :

ଠିକ୍ ଜୋବ୍ରା ଆନିକଟରେ ତଳକୁ ଅଳ୍ପ କିଛି ଦୂରରେ ମହାନଦୀ କୂଳରେ ଜୋବ୍ରା, ମହିମା ଅଲେଖ ଆଶ୍ରମ ୧୯୬୪ ଠାରୁ ପ୍ରତିଷ୍ଠିତ ହୋଇଛି । ସାଧୁ ଭିକାରି ଦାସ ଏହି ଆଶ୍ରମ ପ୍ରତିଷ୍ଠା କରିଛନ୍ତି । ଜୋବ୍ରା ଅଞ୍ଚଳରେ ବାବାଙ୍କର ଅନେକ ଶିଷ୍ୟଙ୍କର ଦାନରେ ଏଠାରେ ଏକ ପକାଟୁଙ୍ଗୀ ନିର୍ମିତ ହୋଇଛି । ବାବାଙ୍କର ଅଗଣିତ ଭକ୍ତମାନେ ପ୍ରତ୍ୟେକ ଦିନ ଏଠାରେ ରୁଣ୍ଡ ହୋଇ ଘୃତବର୍ତ୍ତି ଜଳାନ୍ତି ଓ ଦୈନିକ ଭଜନ ଜଣାଣ କରି ମାନସିକ ଶାନ୍ତି ଲଭ କରନ୍ତି । ବର୍ତ୍ତମାନ ଭିକାରି ଦାସ ବାବାଙ୍କର ବୟସ ୬୫-୭୦ ହେବ ।

## ବାଦାମବାଡ଼ି ମହିମାଶ୍ରମ :

୧୯୭୦ ମସିହାରେ ଏଠାରେ ଏକ ନୂତନ ମହିମାଶ୍ରମ ସିଦ୍ଧ ବିଶ୍ୱନାଥ ବାବାଙ୍କର ପ୍ରେରଣାରେ ପ୍ରତିଷ୍ଠିତ ହୋଇଛି । ଏହି ଆଶ୍ରମ ପରିଚାଳନା କରୁଛନ୍ତି ସାଧୁ ଦୟାନିଧି ଦାସ ।

## ମାଛୁଆ ବଜାର ମହିମାଶ୍ରମ :

ପ୍ରାୟ ଷାଠିଏ ଦଶକରେ ମାଛୁଆ ବଜାର ଅଞ୍ଚଳରେ ମାଛୁଆ ବଜାର ମହିମାଶ୍ରମ ପ୍ରତିଷ୍ଠିତ ହୋଇଛି । ଏହି ଆଶ୍ରମ ପ୍ରତିଷ୍ଠା କ୍ଷେତ୍ରରେ ଅଦ୍ୱୈତ୍ୟ ଦାସ ବାବାଙ୍କର ଭୂମିକା ଉଲ୍ଲେଖନୀୟ ।

## ନୂଆ କଟକ ମହିମାଶ୍ରମ :

ଏଠାରେ ଏକ ମହିମାଶ୍ରମ ଅସ୍ଥାୟୀ ଭାବରେ ଗଢ଼ିଉଠିଛି । ସ୍ଥାୟୀ ଗୃହ ନିର୍ମାଣ ପାଇଁ ସ୍ଥାନ ନିରୁପିତ ହୋଇଛି ।

## ଦରଜୀ ସାହି ମହିମାଶ୍ରମ :

୧୯୮୮ ମସିହାରେ ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସାହାଯ୍ୟ ସହାନୁଭୂତି କ୍ରମେ ଦରଜୀ ସାହିଠାରେ ୧୬ ଡେସିମିଲ ଜମି ସରକାରଙ୍କ ଠାରୁ ଲିଜ୍ ମିଳିଛି । ୧୯୮୯ ମସିହାରେ ବହୁ ବଦାନ୍ୟ ଧର୍ମପ୍ରାଣ ବ୍ୟକ୍ତିଙ୍କର ଦାନରେ ଗୋଟିଏ ସ୍ଥାୟୀ ଗୃହ ନିର୍ମିତ ହୋଇ ମହିମା ଆଶ୍ରମର କାର୍ଯ୍ୟ ଚାଲିଛି । ଏଥିପାଇଁ ସମାଜ ସମ୍ପାଦକ ଡଃ ରାଧାନାଥ ରଥ, ପୂର୍ବତନ ବିଚାରପତି ହରିହର ମହାପାତ୍ର ଓ ପୂର୍ବତନ କୁଳପତି ଡଃ ସଦାଶିବ ମିଶ୍ରଙ୍କର ଐକାନ୍ତିକ ପ୍ରଚେଷ୍ଟା ଅବିସ୍ମରଣୀୟ । ମହିମାଧର୍ମର ପ୍ରଚାର ଓ ପ୍ରସାର ଦିଗରେ ସେମାନଙ୍କର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଏଭଳିଭାବରେ କଟକ ସହରରେ ମୁଣ୍ଡ ଟେକି ଉଠିଥିବା ବହୁ ମହିମା ଆଶ୍ରମ ଓ ଟୁଙ୍ଗୀ ମହିମାଧର୍ମର ଆଦର୍ଶ ଓ ଆଚାର, ପ୍ରଚାର ପୂର୍ବକ ସମାଜରେ ଶାନ୍ତି, ଶୃଙ୍ଖଳା ରକ୍ଷା କରିବାରେ ସକ୍ଷମ ହୋଇ ପାରିଛନ୍ତି । କଟକ ସହରର ଏତେ ଗୁଡ଼ାଏ ଆଶ୍ରମ ଓ ଟୁଙ୍ଗୀ ପ୍ରତିଷ୍ଠା ଲଭ କଲାପରେ କଟକ ସହରର ପିଲା, ଯୁବକ, ବୃଦ୍ଧ, ସ୍ତ୍ରୀ, ପୁରୁଷ,

ଧନୀ, ଗରିବ, ଡାକ୍ତର, ଇଞ୍ଜିନିୟର, ଶିକ୍ଷକ, ଛାତ୍ର, ଓକିଲ, ବ୍ୟବସାୟୀ, ଜ୍ଞାନୀ, ଅଜ୍ଞାନୀ, ମଜଦୁର, ଗୃହକର୍ମରେ ଥିବା ନଥିବା ହଜାର ହଜାର ଲୋକ ମହିମାଧର୍ମରେ ଅନୁପ୍ରାଣିତ ହେବା ପାଇଁ ସୁଯୋଗ ଲାଭ କରି ଆସିଛନ୍ତି । ଏହା ସେମାନଙ୍କ ପାଇଁ ପରମ ସୁଖ ଓ ଶାନ୍ତିର କାରଣ ଏବଂ ପ୍ରବୁଦ୍ଧ ମହିମା ସ୍ୱାମୀଙ୍କର ଆଶୀର୍ବାଦ ସ୍ୱରୂପ କାମ କରୁଛି । ତେବେ ସମ୍ପ୍ରତି କଟକ ସହରରେ ମହିମା ଧର୍ମରେ ଦୀକ୍ଷିତ ହୋଇଥିବା ଭକ୍ତଙ୍କର ସଂଖ୍ୟା କେତେ ତା କହିବା କଷ୍ଟକର ।

ମହିମାଧର୍ମ ଇତିହାସରୁ ଜଣାଯାଏ ଯେ, ଏକଦା ସେଇ ପନ୍ଥାର ଅନ୍ୟତମ ସିଦ୍ଧ ସନ୍ଥ ନୃସିଂହ ବାବା, ନିରପରାଧ, ନିର୍ଦ୍ଦୋଷ, ହୋଇଥିଲେ ମଧ୍ୟ ସାନ ଅଚ୍ୟୁତା ନନ୍ଦ ବାବାଙ୍କ ପାଗଳାମୀ ଯୋଗୁ ନରହତ୍ୟା ମାମଲାରେ ଅଭିଯୁକ୍ତ ହୋଇ କଟକ ଜେଲକୁ ଆସିଥିଲେ । କଟକ ଜେଲରେ ଥାଇ ମଧ୍ୟ ସେ ଦେଶର ଦୋଷୀ, ଚୋର, ଡକାୟତମାନଙ୍କୁ ସଦ୍‌ଶିକ୍ଷାଦେଇ ସତ୍ୟମାର୍ଗକୁ ଆଣିବାକୁ ଚେଷ୍ଟା କରିଥିଲେ । ଊନବିଂଶ ଶତାବ୍ଦୀର ଶେଷ ପାଦର କଥା । ଏହାର ସାକ୍ଷ୍ୟ ଦେବ କଟକ ଜେଲ ।

୧୯୨୭ ମସିହା ପର୍ଯ୍ୟନ୍ତ ମହିମାଧର୍ମ ଉପରେ ଧାରାବାହିକ ତଥ୍ୟପୂର୍ଣ୍ଣ କୌଣସି ପ୍ରାମାଣିକ ଗ୍ରନ୍ଥ ରଚିତ ହୋଇ ନଥିଲା । ଯାହା ଥିଲା, ସବୁକିଛି ଭଜନ ଓ ଜଣାଣ ରୂପରେ । ଏହି ଜଣାଣ ଭଜନଗୁଡ଼ିକ ବିଶେଷ ଭାବରେ ଭୀମଭୋଇ, ଜୟକୃଷ୍ଣ ବାବା, ନାରାୟଣ ବାବାଙ୍କ ଦ୍ୱାରା ରଚିତ ହୋଇଥିଲା । ମହିମା ଧର୍ମର ଧର୍ମଧାରା ଇତିହାସ ପୁସ୍ତକ ଲେଖିବା ପାଇଁ ପ୍ରଥମେ କଟକର ଗୃହସମାଲୋଚକ ଢ଼ଙ୍ଗରେ ଆଲୋଚନା କରାଯାଇଥିଲା । ଏଥିପାଇଁ ଏହି ପନ୍ଥାର ବୟୋଜ୍ୟେଷ୍ଠ ପରମ ଜ୍ଞାନୀ, ତତ୍ତ୍ୱଜ୍ଞ, ସିଦ୍ଧ ସନ୍ଥ ଶରଣ ପଞ୍ଜର ବାବା ମହିମା ଧର୍ମର ପ୍ରତିପାଦକ ଗ୍ରନ୍ଥ ଲେଖିବା ପାଇଁ ବିଶ୍ୱନାଥ ବାବାଙ୍କୁ ଆଦେଶ ଦେଇଥିଲେ । ଏହି ପୁସ୍ତକ ରଚନା କ୍ଷେତ୍ରରେ ଅନନ୍ତଚରଣ ବାବା, ପିତାମ୍ବର ବାବା, କେଶବଚନ୍ଦ୍ର ଦାସ ବାବାଙ୍କର ମହନୀୟ ଅବଦାନ ରହିଛି । ଓଡ଼ିଆ ଧର୍ମ ସାହିତ୍ୟ, ସଂସ୍କୃତିର ପ୍ରାଣକେନ୍ଦ୍ର କଟକ ମହିମାଧର୍ମର ସନ୍ଥମାନଙ୍କୁ ମହିମା ଧର୍ମ ସମ୍ପର୍କରେ ପୁସ୍ତକ ରଚନା କରିବାରେ ଯଥାର୍ଥ ପ୍ରେରଣା ଯୋଗାଇଥିବା କହିବା ବାହୁଲ୍ୟମାତ୍ର । ଏହା କେତେଦୂର ସତ୍ୟ ଏବଂ ବାସ୍ତବ ତାହା ନିମ୍ନରୁ ଜଣାଯାଏ ।

ଓଡ଼ିଶା ମାଟିରେ ନିଜସ୍ୱ ଏହି ମହିମା ଧର୍ମର ସାରବସ୍ତୁ ସର୍ବସାଧାରଣଙ୍କର ହୃଦ୍‌ବୋଧ ପାଇଁ ପ୍ରଥମେ କଟକର ଉତ୍କଳ ସାହିତ୍ୟ ସମାଜ ତରଫରୁ ତା ୯।୧୧।୧୯୩୪ ମସିହାରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ସଭାର ଆୟୋଜନ କରାଯାଇଥିଲା । ଏହି ସଭାରେ ଗୋପାଳ ଚନ୍ଦ୍ର ପ୍ରହରାଜ ଅଧ୍ୟକ୍ଷତା କରିଥିଲେ । ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଭଳି ବହୁ ଗଣ୍ୟମାନ୍ୟ ବୁଦ୍ଧିଜୀବୀ ଅଂଶ ଗ୍ରହଣ କରି ଆନନ୍ଦ ଲାଭ କରିବା ସଙ୍ଗେ ସଙ୍ଗେ ଏହି ନୂତନ ପ୍ରତିଷ୍ଠିତ ଧର୍ମ ପ୍ରତି ଅନୁରାଗ ପ୍ରଦର୍ଶନ କରିଥିଲେ ।

ତା ୨୫ । ୧୨ । ୧୯୩୪ ମସିହାରେ କଟକରେ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଗୃହରେ ବହୁ ବୁଦ୍ଧିଜୀବୀ ଏକତ୍ରିତ ହୋଇ ସତ୍ୟ ମହିମାଧର୍ମ ସମାଲୋଚନା ସମିତି ନାମକ ଏକ ଅନୁଷ୍ଠାନ ଗଢ଼ିଥିଲେ । ୧୯୩୫ ମସିହାରେ ସତ୍ୟ ମହିମାଧର୍ମ ଗ୍ରନ୍ଥକୋଷ ସମିତି ମଧ୍ୟ ଏହି କଟକ ସହରରେ ପ୍ରତିଷ୍ଠିତ ହୋଇଥିଲା ।

୧୯୪୬ ମସିହା ନଭେମ୍ବର ମାସ ୨ ତାରିଖରେ କଟକ ଟାଉନହଲ ଠାରେ ମହିମାଧର୍ମ ସମ୍ପର୍କରେ ଆଲୋଚନା ପାଇଁ ଏକ ବିରାଟ ସଭାର ଆୟୋଜନ କରାଯାଇଥିଲା । ଏହି ସଭାରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଅଧ୍ୟକ୍ଷତା କରିଥିଲେ ଏବଂ ତତ୍କାଳୀନ ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଆଇନମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, କବି ବଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତି ସମ୍ମାନିତ ଅତିଥିଭାବେ ଯୋଗଦାନ କରି ମହିମାଧର୍ମ ମହତ୍ତ୍ୱକୁ ବୁଝି ଅନ୍ୟମାନଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲେ ।

ସତ୍ୟ ମହିମାଧର୍ମର ମହାନତ୍ତ୍ୱ ପ୍ରତିପାଦନ ଦିଗରେ କଟକରେ ଅବସ୍ଥାପିତ ବହୁ ଜ୍ଞାନୀ, ସାହିତ୍ୟିକ, କବି, ଶିକ୍ଷାବିତ୍, ଦାର୍ଶନିକ, ସମାଲୋଚକ, ବୁଦ୍ଧିଜୀବୀମାନଙ୍କର ଦାନ ଅତୁଳନୀୟ । ସେମାନଙ୍କ ମଧ୍ୟରେ ଯେଉଁମାନେ ସ୍ମରଣୀୟ, ସେମାନେ ହେଲେ ସର୍ବଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ, ସଚ୍ଚିଦାନନ୍ଦ ନାରାୟଣ ରାୟ, ଲକ୍ଷ୍ମୀନାରାୟଣ ସାହୁ, ବଛନ୍ଦ ଚରଣ ପଟ୍ଟନାୟକ, ବ୍ରଜକିଶୋର ଦାସ, ଘନଶ୍ୟାମ ଦାସ, ଶଶୀଭୂଷଣ ରାୟ, ନବକୃଷ୍ଣ ଚୌଧୁରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଡଃ ପ୍ରାଣକୃଷ୍ଣ ପରିଜା, ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ମାୟାଧର ମାନସିଂହ, ବିନୋଦ କାନୁନ୍‌ଗୋ, କୁଞ୍ଜବିହାରୀ ତ୍ରିପାଠୀ, ବୈଦ୍ୟନାଥ, ପ୍ରଭାତ କୁମାର ମୁଖାର୍ଜୀ । ନିଜର ଶକ୍ତି ଅନୁଯାୟୀ କଟକରେ ବାସ କରୁଥିବା ଉପର ଲିଖିତ ସମସ୍ତ ମହାପ୍ରାଣ ବୁଦ୍ଧିଜୀବୀମାନେ ମହିମାଧର୍ମର ଶ୍ରୀବୃଦ୍ଧି ପାଇଁ ଯଥାସାଧ୍ୟ ସାହାଯ୍ୟ ସହାନୁଭୂତି ପ୍ରଦର୍ଶନ କରିଛନ୍ତି । ସତ୍ୟ ମହିମା ଧର୍ମକୁ ଅଧିକ ଲୋକମୁଖୀ ଓ ଲୋକପ୍ରିୟ କରିବାପାଇଁ ପୁସ୍ତକ ପ୍ରକାଶନର ଆବଶ୍ୟକତା ଯେତେବେଳେ ଅନୁଭୂତ ହେଲା ସେତେବେଳେ କଟକରେ ସ୍ଥାପିତ ବିଭିନ୍ନ ମୁଦ୍ରଣାଳୟର ସାହାଯ୍ୟ ନେବାକୁ ହୋଇଛି । ଏ ଦୃଷ୍ଟିରୁ କଟକରେ ଥିବା ମୁଦ୍ରଣାଳୟମାନଙ୍କର ଦାନ କମ୍ ନୁହେଁ ।

ଯେଉଁ କଟକ ସହର ପୃଥିବୀର ଯାବତୀୟ ଧର୍ମକର୍ମର ଲୀଳାଭୂଇଁ, ସେଇ ମାଟିର, ସେଇ ସ୍ଥାନରେ ଓଡ଼ିଶା ମାଟିର ନିଜସ୍ୱ, ନୂତନ ମହିମାଧର୍ମ ଆଜି ସ୍ୱତନ୍ତ୍ର ମର୍ଯ୍ୟାଦା, ପାଇବାର ଅଧିକାର ଲାଭ କରିଛି ଏବଂ ହଜାର ହଜାର ଭକ୍ତଙ୍କର ହୃଦୟରେ ସେହି ନୂତନ ଧର୍ମ ପ୍ରତି ଅନାବିଳ ସ୍ନେହ, ପ୍ରୀତି, ମମତା, ଅନୁରାଗ ଜାତ ହୋଇଛି । ମହିମାଧର୍ମ ନିଜର ନୀତି, ନିୟମ, ଅଙ୍ଗର ବିଗ୍ରହରେ ସ୍ୱାତନ୍ତ୍ର୍ୟ ପ୍ରତିପାଦନପୂର୍ବକ ଏକ ପ୍ରତିଷ୍ଠିତ ଧର୍ମରେ ପରିଣତ ହୋଇଛି କହିବା ବାହୁଲ୍ୟମାତ୍ର ।

ଏହି ଧର୍ମର ସ୍ୱାତନ୍ତ୍ର୍ୟକୁ ପ୍ରତିପାଦନ କରିବାକୁ ଯାଇ ସିଦ୍ଧାନ୍ତରତ୍ନ ଗୋପାଳ ଚନ୍ଦ୍ର ପ୍ରହରାଜ କହନ୍ତି ଯେ, "ଉକ୍ତ ଧର୍ମ ବୌଦ୍ଧଧର୍ମ ନୁହେଁ ବା ଜୈନ ଧର୍ମ ନୁହେଁ।" ଏହି ମତକୁ ସମର୍ଥନ କରି ବୈଜ୍ଞାନିକ ଡଃ ପ୍ରାଣକୃଷ୍ଣ ପରିଜା କୁହନ୍ତି, "Mahima dharma is distinct and different from Budhism and arose as a revolt against pristhood." ବାସ୍ତବରେ ଏହା ସତ୍ୟ ।

ମହିମା ଧର୍ମକୁ ବୌଦ୍ଧ ବା ଜୈନ ଧର୍ମର ଅଂଶ ବିଶେଷ କହିବା ଉଚିତ ହେବ ନାହିଁ । ବୌଦ୍ଧ, ଜୈନ, ହିନ୍ଦୁ, ଖ୍ରୀଷ୍ଟ, ଇସ୍‌ଲାମ ଯେକୌଣସି ଧର୍ମ ହେଉ ସବୁ ଧର୍ମରେ ସେଇ ଗୋଟିଏ ଅନ୍ତଃସ୍ୱର ଥାଏ ଯେ, ଯିଏ ଈଶ୍ୱର ସିଏ ସତ୍ୟ, ସତ୍ୟ ହିଁ ଧର୍ମ । ମଣିଷର ସୁଖ, ଶାନ୍ତି, ମୁକ୍ତି କାମନା କରିବା ପ୍ରତ୍ୟେକ ଧର୍ମର ମୌଳିକ ନୀତି । ପ୍ରତ୍ୟେକ ଧର୍ମ ପ୍ରତିଷ୍ଠାତାମାନଙ୍କର ଆଭିମୁଖ୍ୟ ଭିନ୍ନ ନୁହେଁ । କିନ୍ତୁ ମଣିଷର ମୁକ୍ତି ପାଇଁ, ଈଶ୍ୱରପ୍ରାପ୍ତି ପାଇଁ ନିଜର ଉପଲବ୍ଧ ଜ୍ଞାନ ବଳରେ ଭିନ୍ନ ଭିନ୍ନ ମାର୍ଗ ଦେଖାଇଥାନ୍ତି । ପୂର୍ବ ପ୍ରତିଷ୍ଠିତ ଧର୍ମଦ୍ୱାରା ପ୍ରଭାବିତ ବା ପ୍ରଣୋଦିତ ଏ ଭଳି କହି ଗୋଟାଏ ଧର୍ମକୁ ନ୍ୟୂନ ମନେ କରିବା ଜଣେ ସମାଲୋଚକ ବା ଧର୍ମ ଜିଜ୍ଞାସୁର କାର୍ଯ୍ୟ ନୁହେଁ ।

ଏ ଦୃଷ୍ଟିରୁ ଆଜି ବିଚାର୍ଯ୍ୟ ଯେ, ମହିମାଧର୍ମ କୌଣସି ଧର୍ମର ଅଂଶ ବିଶେଷ ନୁହେଁ ବା କୌଣସି ଧର୍ମର ପ୍ରଭାବରେ ସୃଷ୍ଟି ନୁହେଁ । ମୌଳିକ ନୀତି ଦୃଷ୍ଟିରୁ ଏହାର ସ୍ୱାତନ୍ତ୍ର୍ୟକୁ ଅସ୍ୱୀକାର କରାଯାଇ ପାରେନା । ଭାବରେ, ଭକ୍ତିରେ, ପ୍ରେମରେ, ନିତିନିୟମରେ ଏହା ସ୍ୱୟଂ ସମ୍ପୂର୍ଣ୍ଣ । ଓଡ଼ିଶା ମାଟିରେ ସୃଷ୍ଟି ଏହି ସ୍ୱୟଂ ସମ୍ପୂର୍ଣ୍ଣ ସତ୍ୟ ମହିମା ଧର୍ମ ପ୍ରତିଷ୍ଠା କ୍ଷେତ୍ରରେ ବହୁ ବାଧାବିଘ୍ନ ସୃଷ୍ଟି ହୋଇଛି । ସାଧୁସନ୍ଥମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରାଯାଇଛି, ସବୁ ସତ୍ତ୍ୱେ ବଣ ପାହାଡ଼ ଘେରା ଅନ୍ଧାରି ମୂଳକ ଢେଙ୍କାନାଳରେ ପ୍ରବର୍ତ୍ତିତ ଏହି ଧର୍ମ ସେଇ ଅନ୍ଧାର ଭିତରେ ହଜି ନ ଯାଇ ଦବି ନ ଯାଇ ନିଜସ୍ୱ ଗୁଣରେ ବାହୁମେଲାଇ ସ୍ପର୍ଶ କଲା ବାହ୍ୟଜଗତର ଆଲୋକ । କ୍ରମେ କ୍ରମେ ଓଡ଼ିଶା ମାଟିର ସୀମା ସରହଦ ଟପି ଆନ୍ଧ୍ର, ପଶ୍ଚିମବଙ୍ଗ, ବିହାର, ଗୁଜୁରାଟ, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ, ଜର୍ମାନ, ଜାପାନ, ଆମେରିକା ପ୍ରଭୃତି ଦେଶରେ ପହଞ୍ଚି ନିଜର ଆଦର୍ଶକୁ ପ୍ରତିପାଦନ କରିପାରିଛି ।

ଏହି ଧର୍ମକୁ ବିଶ୍ୱବ୍ୟାପୀ କରିବାରେ ଯାହାଙ୍କର ଦାନ ଅସୀମ ସେ ହେଉଛନ୍ତି ବ୍ରହ୍ମଙ୍କ ସିଦ୍ଧସାଧୁ ଅବଧୂତ ବିଶ୍ୱନାଥ ବାବା । ଯେଉଁ ଧର୍ମରେ ଜାତି ଅଜାତିର ଭେଦ ନାହିଁ, ସ୍ତ୍ରୀ ପୁରୁଷ, ଉଚ୍ଚ ନୀଚର ବିଚାର ନାହିଁ, ଯେଉଁ ଧର୍ମ ତ୍ୟାଗର ମନ୍ତ୍ର ଶିଖାଏ । କର୍ମ, ଜ୍ଞାନ, ଭକ୍ତି ତତ୍ତ୍ୱର ସମନ୍ୱୟ ରକ୍ଷା କରେ, ଈଶ୍ୱର ପ୍ରାପ୍ତି ପାଇଁ 'ମୁଁ' ଅହଂଭାବର

ବିନାଶ ପାଇଁ ଉପଦେଶ ଦିଏ, ନିଷ୍କାମ ଭକ୍ତି ଦ୍ୱାରା ପରମାତ୍ମାଙ୍କ ସହିତ ମିଳିତ ହେବାର ଉପାୟ ଉଦ୍‌ଘୋଷଣକରେ, ସତ୍ୟ, ନ୍ୟାୟ, ଧର୍ମ ପଥରେ ଚାଲିବା ପାଇଁ ସତତ ନିର୍ଦ୍ଦେଶ ଦିଏ । କାମ, କ୍ରୋଧ, ଲୋଭ, ମୋହଠାରୁ ଦୂରରେ ରହିବା ପାଇଁ ସତର୍କ କରିଦିଏ, ସେହି ମାନବିକତା ପୂର୍ଣ୍ଣ ଉଦାର ସତ୍ୟ ମହିମା ଧର୍ମ ବିଶ୍ୱ ପ୍ରତିଷ୍ଠିତ ଧର୍ମ-ମାନଙ୍କ ସହିତ ସମକକ୍ଷ ହେବାର ଆଶାପୋଷଣ ନ କଲେ ମଧ ବିଂଶ ଶତାବ୍ଦୀର ଦୁଃଖ, ଆର୍ତ୍ତ, ନିପୀଡ଼ିତ ମାନବର ମୁକ୍ତିପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରେ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ ଏହି ସତ୍ୟ ମହିମାଧର୍ମ ଓ ସତ୍ୟ ସନାତନ ହିନ୍ଦୁଧର୍ମର ଏକ ନୂତନ ସଂସ୍କରଣ କହିବା କିଛି ଅପ୍ରାସଙ୍ଗିକ ହେବ ନାହିଁ ।

ଯେଉଁ କାରଣରୁ ଯେଉଁମାନଙ୍କ ପାଇଁ ପ୍ରବୁଦ୍ଧ ମହିମା ସ୍ୱାମୀ ଉତ୍କଳରେ ଆବିର୍ଭୂତ ହୋଇ ଏହି ମହିମା ଧର୍ମକୁ ସୃଷ୍ଟି କରିଗଲେ ଆଜ ଏହି ଧର୍ମ ତାଙ୍କର ମହିମାରୁ ଦେଶ ବିଦେଶରେ ପହଞ୍ଚି ତାଙ୍କରି ଇଚ୍ଛାକୁ ପୂର୍ଣ୍ଣ କରିଛି ।



# ଉତ୍କଳ ସାହିତ୍ୟ ସମାଜ

**ଜଷ୍ଟିସ୍ ନବକୁମାର ଦାସ**

ଉତ୍କଳ ସାହିତ୍ୟ ସମାଜ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଶ୍ରେଷ୍ଠ ଓ ପ୍ରାଚୀନ ଅନୁଷ୍ଠାନ । ଏହି ଅନୁଷ୍ଠାନର ପ୍ରେରଣାରେ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଅନେକ ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନ ସ୍ଥାପିତ ହୋଇଛି । ଏହି ଅନୁଷ୍ଠାନ ପ୍ରାୟ ଏକଶତ ବର୍ଷ ତଳର ଓ ଏହାକୁ ସର୍ବପ୍ରଥମ ସାରସ୍ୱତ ଅନୁଷ୍ଠାନ ବୋଲି ବିବେଚନା କରିବାକୁ ହେବ । କାଳକ୍ରମେ ଓଡ଼ିଶାର ପ୍ରାୟ ସମସ୍ତ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ହୋଇଅଛନ୍ତି । ପ୍ରଥମେ କେତେକ ସାହିତ୍ୟିକଙ୍କ ଅଦମ୍ୟ ଓ ଅକ୍ଳାନ୍ତ ଚେଷ୍ଟାରେ ଏହାର କାର୍ଯ୍ୟ ଚାଲୁଥିଲା । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଭକ୍ତକବି ମଧୁସୂଦନ ରାଓ, କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ବ୍ରଜସୁନ୍ଦର ଦାସ ଓ ଗଙ୍ଗାଧର ମେହେରଙ୍କ ନାମ ଏହି ବାଗରେ ଉଲ୍ଲେଖ ଯୋଗ୍ୟ ।

ଭକ୍ତକବି ମଧୁସୂଦନ ରାଓଙ୍କ ଉଦ୍ୟମରେ ପ୍ରଥମେ କଟକ ନର୍ମାଲ ଟ୍ରେନିଂ ସ୍କୁଲରେ ଏହାର ବୀଜ ବପନ କରାଯାଇଥିଲା—ଆଲୋଚନା ସଭା ନାମକ ଏକ ଅନୁଷ୍ଠାନ ମାଧ୍ୟମରେ । ଏହା ପ୍ରାୟ ୧୮୯୩ ମସିହା କଥା କେତେକଙ୍କ ମତରେ ୧୮୯୫ ମସିହା କଥା । ସେତେବେଳେ ଏହା କେବଳ ଛାତ୍ରମାନଙ୍କ ମଧ୍ୟରେ ଆବଦ୍ଧ ଥିଲା । କିନ୍ତୁ ୧୮୯୭ ମସିହା ବେଳକୁ ବାଗ୍ମୀ ପ୍ରବର ବିଶ୍ୱନାଥ କର ଉତ୍କଳ ସାହିତ୍ୟ ପ୍ରେସ ଆରମ୍ଭ କରି ଓ ତାହାପରେ "ଉତ୍କଳ ସାହିତ୍ୟ" ପତ୍ରିକା (୧୮୯୭) ପ୍ରକାଶ କଲେ । ତାଙ୍କର ପ୍ରେରଣାରେ ବହୁ ଲେଖକ ସୃଷ୍ଟି ହେଲେ ଏବଂ ସେମାନଙ୍କ ଲେଖା ତାଙ୍କର ପତ୍ରିକାରେ ପ୍ରକାଶିତ ହେବାର ସୁଯୋଗ ଲାଭ କଲା । ବିଶ୍ୱନାଥ କରଙ୍କ ସହିତ ଫକୀରମୋହନ ସେନାପତି, ରାଧାନାଥ ରାୟ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ଚିନ୍ତାମଣି ମହାନ୍ତି, ଗୋପାଳ ଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ ଓ ମଧୁସୂଦନ ଦାସ ପ୍ରମୁଖ ଯୋଗ ଦେଲେ । ଏହି ବରପୁତ୍ରମାନଙ୍କ ସମବେତ ଚେଷ୍ଟାରେ ଓଡ଼ିଆ ସାହିତ୍ୟର ଉନ୍ନତି, ପ୍ରଚାର ଓ ପ୍ରସାର ହୋଇଥିଲା ।

ବ୍ରିଟିଶ ଶାସନ ଅମଳରେ ଓଡ଼ିଶାର ଅନେକ ଅଞ୍ଚଳ ପଡ଼ୋଶୀ ପ୍ରଦେଶମାନଙ୍କ ଅଂଶ ରୂପେ ଥିଲା । ଓଡ଼ିଆ ଭାଷା ବ୍ୟବହୃତ ହେଉଥିବା ସେ ସବୁ ଅଞ୍ଚଳକୁ ଓଡ଼ିଶା ସହିତ ସାମିଲ୍ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଢ଼ିବାଲାଗି "ଉତ୍କଳ ସମ୍ମିଳନୀ" ଗଢ଼ାଯାଇଥିଲା । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ପରେ ଉତ୍କଳମଣି ଗୋପବନ୍ଧୁ ଦାସ ଏହାର ଅଧିନାୟକ ହେଲେ । ଉତ୍କଳମଣି ଗୋପବନ୍ଧୁ ଭାରତ କଂଗ୍ରେସ ଆନ୍ଦୋଳନର ଜଣେ ନେତା ଥିଲେ । ଭାଷା ଅନୁସାରେ ପ୍ରଦେଶ ଗଠନ କରିବା କୋଣସି ସର୍ବଭାରତୀୟ ସ୍ତରରେ ସେତେବେଳେ କଂଗ୍ରେସ ତରଫରୁ ଉଦ୍ୟମ ହେଉଥାଏ । ଏହି ଉଦ୍ୟମ ସହିତ ଗୋପବନ୍ଧୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସବୁକୁ ଏକାଠି କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ବିଷୟ ଯୋଗ କରିଥିଲେ । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ।

ମଧୁସୂଦନଙ୍କ ଚେଷ୍ଟାରେ ଉତ୍କଳ ସମ୍ମିଳନୀର ଅଧିବେଶନ ପ୍ରତିବର୍ଷ ହେଉଥାଏ । ୧୯୦୩ ମସିହାରେ କଟକ କନିକା ରାଜବାଟୀରେ ସମ୍ମିଳନୀର ଅଧିବେଶନ ହୋଇଥିଲା । ଏହି ସମ୍ମିଳନୀରେ ପ୍ରସ୍ତାବ ହେଲା ଯେ ଓଡ଼ିଆ ସାହିତ୍ୟର ଉନ୍ନତି, ଆଲୋଚନା, ଗବେଷଣା ଏବଂ ପ୍ରାଚୀନ ପୋଥି ଓ ତାମ୍ର ପତ୍ର ବା ଫଳକ ସଂଗ୍ରହ ପାଇଁ ସମସ୍ତ ଉଦ୍ୟମ କରାହେବ । ଏହି ପ୍ରସ୍ତାବ ଅନୁସାରୀ ୧୯୦୩ ମସିହାରେ ଉତ୍କଳ ସାହିତ୍ୟ ସମାଜର ହେଲା ନବ ଜନ୍ମ । ତତ୍ପରେ ପୂର୍ବୋକ୍ତ "ଆଲୋଚନା ସଭା" ଏହା ସହିତ ମିଳିତ ହେଲା ।

ପ୍ରଥମ କେତେକ ବର୍ଷ ଏହି ସାହିତ୍ୟ ସମାଜର କାର୍ଯ୍ୟ ଥିଲା ପ୍ରବନ୍ଧ ପାଠ, ସାହିତ୍ୟିକ ଓ ଐତିହାସିକ ବିଷୟରେ ଆଲୋଚନା ଓ ପୁସ୍ତକ ସଂଗ୍ରହ କରି ପାଠାଗାର ସ୍ଥାପନ କରିବା । ଶଶୀଭୂଷଣ ରାୟ, ଚନ୍ଦ୍ରମଣି ଆଚାର୍ଯ୍ୟ ଏବଂ ହିନ୍ଦୋଳ ରାଜା ସାହେବ ବହୁତ ପୁସ୍ତକ ଦାନ କରିଥିଲେ ଓ ଚନ୍ଦ୍ରମଣି ଆଚାର୍ଯ୍ୟ ଆଲମାରୀ ପ୍ରଦାନ କରିଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଚେଷ୍ଟାରେ କେତେକ ପ୍ରାଚୀନ ପୋଥି ସଂଗୃହୀତ ହୋଇଥିଲା । ଏହାର ଉଦ୍ୟୋକ୍ତାମାନଙ୍କ ଚେଷ୍ଟାରେ କେତେକ ତାମ୍ର ଫଳକ ଓ ଶିଳାଲିପି କଟକ ଜିଲ୍ଲାର ବିଭିନ୍ନ ସ୍ଥାନରୁ ସଂଗ୍ରହ କରାଯାଇଥିଲା । ରାୟ ବାହାଦୁର ଯୋଗେଶ ଚନ୍ଦ୍ର ରାୟ, ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ଓ ଶ୍ରୀ ଜଗବନ୍ଧୁ ସିଂହଙ୍କ ଉଦ୍ୟମରେ ଏକ ଗବେଷଣାଗାର ଆରମ୍ଭ କରାଯାଇଥିଲା ଓ ଶ୍ରୀ ଯୋଗେଶ ଚନ୍ଦ୍ର ରାୟ ଏହାର ଅଧ୍ୟକ୍ଷ ଥିଲେ । ଏହି ସାହିତ୍ୟ ସମାଜ ତରଫରୁ ଶ୍ରୀ ଗୋପିନାଥ ନନ୍ଦଙ୍କ ଲିଖିତ "ଓଡ଼ିଆ ଭାଷାକୋଷ" ପ୍ରକାଶିତ ହୋଇଥିଲା ।

୧୯୧୪ ମସିହାରେ ଏହି ଅନୁଷ୍ଠାନର ନିୟମାବଳୀ ପ୍ରସ୍ତୁତ ହୋଇ ୧୯୨୧ ମସିହାରେ ସୋସାଇଟି ରେଜିଷ୍ଟ୍ରେସନ ଆକ୍ଟ ଅନୁସାରେ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ଏହାର ପ୍ରଥମ ସମିତିରେ ଶ୍ରୀ ରମାଶଙ୍କର ରାୟ, ଶ୍ରୀବିଶ୍ୱନାଥ କର, ଶ୍ରୀ ଭିକାରୀ ଚରଣ

ପଟ୍ଟନାୟକ ଓ ଶ୍ରୀ କାଳିନ୍ଦୀଚରଣ ଦାସ, ଉଦ୍ୟୋକ୍ତା ରହିଲେ । ସଭ୍ୟମାନଙ୍କଠାରୁ ଅନୁଦାନ ସଂଗ୍ରହ ହୋଇ ପୁରସ୍କାର ବିତରଣ କରାଯାଉଥିଲା । ପୁରସ୍କାର ବିଜେତାଙ୍କ ମଧ୍ୟରେ ସେତେବେଳର ରେଭେନ୍‌ସା କଲେଜ ଛାତ୍ର ଓ ଅଧୁନା ସୁପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ ଅନ୍ନଦାଶଙ୍କରଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଓ ତାଙ୍କର ସାଥୀମାନେ ପରେ 'ସବୁଜ ସାହିତ୍ୟ ସମିତି' ପ୍ରତିଷ୍ଠା କରି ଓଡ଼ିଆ ସାହିତ୍ୟ ନବଯୁଗର ପ୍ରବର୍ତ୍ତନ କରିଥିଲେ । ଅନୁଷ୍ଠାନର ଆର୍ଥିକ ଅବସ୍ଥା ଆଦୌ ଭଲ ନଥିଲା । ବଡ଼ମ୍ବା, ବାମଣ୍ଡା, ଖଲ୍ଲିକୋଟ, ଖଡ଼ିଆଳ, ଖଣ୍ଡପଡ଼ା ଓ ଅନ୍ୟାନ୍ୟ କେତେକ କରଦ ରାଜ୍ୟ ଓ କେତେକ ଜମିଦାରଙ୍କର ଆର୍ଥିକ ସାହାଯ୍ୟରେ ଏହି ଅନୁଷ୍ଠାନ ଚାଲୁଥିଲା ।

ସଭା କରିବାର ସ୍ଥାନ ଏକ ସମସ୍ୟା ହୋଇଥିଲା । ପ୍ରଥମେ ପ୍ରଥମେ କେତେବର୍ଷ ବାର୍ଷିକ ସଭା ଓ ଉତ୍ସବ "ଉତ୍କଳ ସମ୍ମିଳନୀ" ମଣ୍ଡପରେ ଅନୁଷ୍ଠିତ ହେଲା । ତାହାପରେ କର୍ମଙ୍କର ଗୌରୀଶଙ୍କରଙ୍କ ଦାନ କଟକ ଟାଉନ୍‌ହଲ୍‌ରେ ସଭା ଅନୁଷ୍ଠିତ ହେଲା । ୧୯୧୮ ମସିହାରେ ଟାଉନ୍‌ହଲ୍ ନିକଟରେ ଏକ ଜମି କଟକ ମ୍ୟୁନିସିପାଲିଟି ପଟ୍ଟା-ସୂତ୍ରରେ ଦେଲେ । ଏହି ସ୍ଥାନରେ ଗୃହନିର୍ମାଣ ପାଇଁ ଅର୍ଥର ଅନଟନ ହେଲା । କେତେକ ରାଜା ଓ ଜମିଦାରଙ୍କ ସାମାନ୍ୟ ଅନୁଦାନ ବ୍ୟତୀତ ଆଳିର ରାଜା କିଛି ଅର୍ଥ ଦାନ କଲେ ଓ କେତେକ କରଦ ରାଜ୍ୟର ରାଜା କାଠ ଯୋଗାଇଦେଲେ । ମୟୂରଭଞ୍ଜର ମହାରାଜା ସର୍ବାଧିକ ଅର୍ଥ ସାହାଯ୍ୟ କରିଥିଲେ । ୧୯୨୮ ମସିହାରେ ବର୍ତ୍ତମାନର ସଭାଗୃହ ମୟୂରଭଞ୍ଜର ମହାରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା ଓ ଏହା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ସ୍ମୃତି ଉଦ୍ଦେଶ୍ୟରେ "ଶ୍ରୀରାମଚନ୍ଦ୍ର ଭବନ" ନାମରେ ନାମିତ କରାଗଲା ।

ଏହାପରେ ବିବିଧ ପ୍ରକାରର କାର୍ଯ୍ୟ ସମାହିତ ହେବାକୁ ଲାଗିଲା । ପୁସ୍ତକାଗାରରେ ବିଭିନ୍ନ ପ୍ରକାରର ପତ୍ରିକା ଓ ପୁସ୍ତକମାନ ସଂଗୃହୀତ ହୋଇ ରଖାଗଲା । ସେହି ସବୁ ପତ୍ରିକା ବର୍ତ୍ତମାନ ଓଡ଼ିଆ ସାହିତ୍ୟ ବିଷୟରେ ଗବେଷକଙ୍କର ବହୁ ସାହାଯ୍ୟରେ ଆସୁଛି । ରାଜା ରାମମୋହନ ରାୟ ଲାଇବ୍ରେରୀ ତରଫରୁ ଏହି ପୁସ୍ତକାଗାରକୁ ବହୁ ପୁସ୍ତକ ମିଳିଛି । ରାଜା ମହାରାଜାଙ୍କ ଦାନରେ ମଧ୍ୟ ଅନେକ ବହି କିଣାଯାଇଛି । ରାୟବାହାଦୂର ଚନ୍ଦ୍ରାମଣି ଆଚାର୍ଯ୍ୟ ଅନେକ ପୁସ୍ତକ ଦାନ କରିଛନ୍ତି । କେତେକ ଯୁବ ସାହିତ୍ୟିକଙ୍କ ଉଦ୍ୟମରେ ଏଠାରେ "ଓଡ଼ିଶା କ୍ଲବ" ନାମରେ ଏକ କ୍ଲବ ଆରମ୍ଭ କରାଯାଇଥିଲା ।

ଏହାର ଉଦ୍ଦେଶ୍ୟ ହେଲା ସାହିତ୍ୟ ସମାଜର ଉନ୍ନତିକଳ୍ପେ ଅନ୍ୟମାନଙ୍କ ଏଥି-ସହିତ ସମ୍ପୃକ୍ତ କରିବା । ସେ ନିମିତ୍ତ ସଭା ଓ ପ୍ରତିଯୋଗିତା ମାନ କରାଗଲା । କେତେକ ବର୍ଷ ପରେ ଏହି କ୍ଲବ୍ ବନ୍ଦ ହୋଇଗଲା । କିନ୍ତୁ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା ବନ୍ଦ ହେଲା ନାହିଁ । ଯୁବ ସାହିତ୍ୟିକମାନେ "ସବୁଜ ସାହିତ୍ୟ ସମିତି" ଗଢ଼ି ଓଡ଼ିଆ

ସାହିତ୍ୟର ଉନ୍ନତିକଳ୍ପେ ଚେଷ୍ଟାକଲେ, ଅନେକ ପୁସ୍ତକ ପ୍ରକାଶ କଲେ । ସେହି ତରୁଣ ସାହିତ୍ୟିକମାନଙ୍କ ସମୂହକୁ "ସବୁଜଯୁଗ" ବୋଲି କୁହାଗଲା । ପରେ ସେମାନେ ଓଡ଼ିଶାର ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଭାବରେ ଗଣ୍ୟ ହେଲେ ।

୧୯୩୩ ମସିହାରେ ଏହି ସାହିତ୍ୟ ସମାଜ ଆନୁକୂଲ୍ୟରେ "ଉତ୍କଳ ସଙ୍ଗୀତ ସମାଜ" ଗଢ଼ାହେଲା । ସେତେବେଳେ ସାହିତ୍ୟ ସମାଜର ଯୁଗ୍ମ ସମ୍ପାଦକ ପ୍ରଫେସର ଲକ୍ଷ୍ମୀକାନ୍ତ ଚୌଧୁରୀ ଏହାର ପ୍ରତିଷ୍ଠାତା ଥିଲେ । ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓ ଶ୍ରୀ ବ୍ରଜସୁନ୍ଦର ଦାସ ଏଥିରେ ସହଯୋଗ କରି ଏହାର ଉନ୍ନତି ସକାଶେ ବହୁତ ଚେଷ୍ଟା କରିଥିଲେ । ଶ୍ରୀରାମଚନ୍ଦ୍ର ଭବନରେ ଏକ ସଙ୍ଗୀତ ବିଦ୍ୟାଳୟ ସ୍ଥାପିତ ହେଲା । ଓଡ଼ିଶୀ ସଙ୍ଗୀତ ଓ ଓଡ଼ିଶୀ ନୃତ୍ୟର ଶିକ୍ଷା ଓ ପ୍ରସାର ଏହାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଲକ୍ଷ୍ମୀକାନ୍ତ ବାବୁ ଓ ଆର୍ତ୍ତବାବୁଙ୍କ ଉଦ୍ୟମରେ ରେଭେନ୍‌ସାକଲେଜରେ ଏହି ବିଦ୍ୟାଳୟର ଏକ ଅଂଶ ଖୋଲାଗଲା । ପ୍ରତିବର୍ଷ ସଙ୍ଗୀତ ପ୍ରତିଯୋଗିତା ଅନୁଷ୍ଠିତ ହୋଇ ପୁରସ୍କାର ବିତରଣ କରାଗଲା । ଲକ୍ଷ୍ମୀକାନ୍ତଙ୍କ ଅନ୍ତେ ଉତ୍କଳ ସଙ୍ଗୀତ ସମାଜ ଓ ବିଦ୍ୟାଳୟ ଅନ୍ୟସ୍ଥାନକୁ ସ୍ଥାନାନ୍ତରିତ ହୋଇ ବର୍ତ୍ତମାନ ପର୍ଯ୍ୟନ୍ତ କାର୍ଯ୍ୟ କରୁଅଛି ।

ସାହିତ୍ୟ ସମାଜର ବିଶିଷ୍ଟ କର୍ମକର୍ତ୍ତା ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଚେଷ୍ଟାରେ ଏହି ଅନୁଷ୍ଠାନ ଆନୁକୂଲ୍ୟରେ "ଗ୍ରନ୍ଥ ସାହିତ୍ୟ ସମାଜ" ଗଢ଼ାହେଲା । ବହୁ ଉଦୀୟମାନ ଯୁବକଙ୍କ ଚେଷ୍ଟାରେ ଏହାର ଉନ୍ନତି ହୋଇଥିଲା ଓ ପୁରାତନ ସାହିତ୍ୟ ବିଶେଷତଃ ଭଞ୍ଜ ସାହିତ୍ୟ ଆଲୋଚନାରେ ସେମାନେ ପାରଦର୍ଶିତା ଲାଭ କଲେ । ବର୍ତ୍ତମାନର "ଭଞ୍ଜ ଜୟନ୍ତୀ" ଓ "ଅଭିମନ୍ୟୁ ଜୟନ୍ତୀ"ର ପ୍ରଥମ ପ୍ରବର୍ତ୍ତକ ସେମାନେ ।

୧୯୩୧ ମସିହାରେ ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଓ ଶ୍ରୀ ବ୍ରଜମୋହନ ପଣ୍ଡା ଯଥାକ୍ରମେ ଉତ୍କଳ ଗୌରବ ମଧୁସୂଦନ ଓ ଗଙ୍ଗାଧର ମେହେରଙ୍କ ତୈଳଚିତ୍ର ପ୍ରଦାନ କରିଥିଲେ ଓ ତାହା ଶ୍ରୀରାମଚନ୍ଦ୍ର ଭବନ ଗୃହରେ ସ୍ଥାପିତ ହେଲା । ୧୯୪୧ ମସିହାରେ "ସାହିତ୍ୟ ସପ୍ତାହ" ଆଡ଼ମ୍ବର ସହିତ ପାଳନ କରାଯାଇଥିଲା । ପୁରାତନ ପୋଥି ପ୍ରଭୃତି ସଂଗ୍ରହ କରାଯାଇ ତାହାର ରକ୍ଷଣାବେକ୍ଷଣ ଓ ବିଭିନ୍ନ କବି ସାହିତ୍ୟିକ ଓ ସଙ୍ଗୀତଜ୍ଞ ପ୍ରତିକୃତି ରଖିବାର ସିଦ୍ଧାନ୍ତ ହେଲା ।

ଏକ ଉଲ୍ଲେଖଯୋଗ୍ୟ ବିଷୟ ଯେ ଅନେକ ସରକାରୀ ଅଫିସର ଓ ବଦାନ୍ୟ ବ୍ୟକ୍ତି ଯେଉଁମାନେକି ସାହିତ୍ୟ କ୍ଷେତ୍ରରେ ପରିଚିତ ନୁହନ୍ତି ସେମାନେ ଏହି ଅନୁଷ୍ଠାନର ଉନ୍ନତିକଳ୍ପେ ବିଶେଷ ସାହାଯ୍ୟ ଓ ସହଯୋଗ କରି ଅନୁଷ୍ଠାନର ବିଭିନ୍ନ ଉନ୍ନତି କରିଥିଲେ । ସେମାନେ ମଧ୍ୟ ଅନୁଷ୍ଠାନର କର୍ମକର୍ତ୍ତା ହୋଇଥିଲେ । ସେମାନଙ୍କ ମଧ୍ୟରେ ରେଭିନ୍ୟୁ କମିଶନର ଅଫିସର୍ ସୁପରିଣ୍ଟେଣ୍ଡେଣ୍ଟ୍ ରାୟବାହାଦୁର ଉମାଚରଣ ଦାସ

ଓ ତତ୍‌କାଳୀନ କଟକ ମ୍ୟୁନିସପାଲିଟିର ଏକ୍‌ଜିକ୍ୟୁଟିଭ୍ ଅଫିସର୍ ଶ୍ରୀ ସୋମନାଥ ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧୯୩୯-୪୦ ମସିହାରେ ତିନୋଟି ପୁସ୍ତକ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ହେଲା—ରାୟବାହାଦୁର ଭଗବତୀ ଚରଣ ପଟ୍ଟନାୟକଙ୍କ "ଗୃହଶିଳ୍ପ", ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟଙ୍କର "ଆମଦେଶ" ଓ ଶ୍ରୀ ଭରତ ନାୟକଙ୍କ "ଭାରତଭ୍ରମଣ ।" ଏତଦ୍‌ବ୍ୟତୀତ ବିଭିନ୍ନ ପ୍ରକାଶକମାନଙ୍କ ସହଯୋଗରେ କେତେକ ପୁସ୍ତକ ପ୍ରକାଶିତ କରାଯାଇ ଲାଭାଂଶରୁ କିଛି ଅର୍ଥ ପାଇବାର ବ୍ୟବସ୍ଥା ହୋଇଥିଲା ।

୧୯୪୧-୪୨ ମସିହା ବେଳକୁ ଏହାର ଭାଗ୍ୟାକାଶରେ ଏକ କଳା ମେଘର ଆବିର୍ଭାବ ହୋଇ ଘନୀଭୂତ ହେଲା । କେତେକ, ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଅନ୍ୟ କେତେକଙ୍କ ସହଯୋଗରେ ଏହି ଅନୁଷ୍ଠାନକୁ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟାକଲେ । ସେତେବେଳେ "ଓଡ଼ିଆ ପିପୁଲସ ଆସୋସିଏସନ୍" କେତେକ ମୁଷ୍ଟିମେୟ ଲୋକଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଜାତିଆଣ ଭିତ୍ତିରେ ଏହାର କାର୍ଯ୍ୟ ଚାଲିଥାଏ । ସେହିମାନେ ଉତ୍କଳ ସାହିତ୍ୟ ସମାଜକୁ ଅକ୍ତିଆର କରିବାକୁ ଲାଗିଲେ । ପାଠାଗାରକୁ ସାହିତ୍ୟ ସମାଜରୁ ଅଲଗା କରି "ଉତ୍କଳ ଗୌରବ ମଧୁସୂଦନ ପାଠାଗାର" ନାମରେ ଅନ୍ୟ ଏକ ରେଜେଷ୍ଟ୍ରିଭୁକ୍ତ ସଂସ୍ଥା ଅଧୀନରେ ରଖିଲେ ଓ ସେହିମାନେ ତାହାର କର୍ମକର୍ତ୍ତା ହେଲେ । ନିୟମାବଳୀ ପରିବର୍ତ୍ତନ କରି ଅନେକ ବାହାରର ଲୋକଙ୍କୁ ସଭ୍ୟ କରାଇଲେ । ଏପରିକି ଓକିଲ ମୋହରିରମାନଙ୍କୁ ଏଥିରେ ସଭ୍ୟ କରାଇ ନିର୍ବାଚନରେ ଆସିବାର କୃତକାର୍ଯ୍ୟ ହେବାର ବ୍ୟବସ୍ଥା କରାଗଲା । ଏହାଦ୍ୱାରା ଅପ୍ରୀତିକର ପରିସ୍ଥିତି ଘଟିଲା । କେତେକ କର୍ମକର୍ତ୍ତାଙ୍କ ବିରୋଧରେ ଫୌଜଦାରୀ ମକଦ୍ଦମା ଚାଲିଲା । ଖବର-କାଗଜରେ ଅନୁଷ୍ଠାନର କାର୍ଯ୍ୟ ବିରୋଧରେ ଅନେକ ବିଷୟ ପ୍ରକାଶିତ ହେଲା ।

ସାହିତ୍ୟ ସମାଜର ସଭାପତି ପ୍ରଫେସର ରତ୍ନାକର ପତିଙ୍କୁ ତାଙ୍କ ପଦରୁ ଇସ୍ତଫା ଦେବାଲାଗି ବାଧ କରାଗଲା । ଅନେକ କୃତବିଦ୍ୟ ସାହିତ୍ୟିକ ମଧ୍ୟ ଏଥିରୁ ଓହରି-ଗଲେ । ସେମାନଙ୍କ ଉଦ୍ୟମରେ "ଓଡ଼ିଆ ସାହିତ୍ୟ ପରିଷଦ" ନାମରେ ଆଉ ଏକ ଅନୁଷ୍ଠାନ ଗଢ଼ାହେଲା । ଏହାର ପ୍ରଥମ ଅଧିବେଶନ ପୁରୀ ଜଗନ୍ନାଥ ବଲ୍ଲଭ ମଠ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବହୁ ସାହିତ୍ୟିକ ଏଥିରେ ଯୋଗ ଦେଇଥିଲେ । ସେହି ଅନୁଷ୍ଠାନ ତରଫରୁ "ସହକାର" ପତ୍ରିକା ପ୍ରକାଶ କରାଗଲା । ଶେଷରେ କେତେକ ବୟୋବୃଦ୍ଧ ପ୍ରତିଷ୍ଠିତ ସାହିତ୍ୟିକଙ୍କ ଉଦ୍ୟମରେ ଏକ ମିଳିତ ସଭା ହୋଇ ସାହିତ୍ୟ ସମାଜର ଭାଗ୍ୟର ପରିବର୍ତ୍ତନ କରାଗଲା ।

୧୯୪୭ ମସିହାରେ କାଳନ୍ଦୀଚରଣ ପାଣିଗ୍ରାହୀ (ପଦ୍ମଭୂଷଣ)ଙ୍କ ଚେଷ୍ଟାରେ ଏହି ଅନୁଷ୍ଠାନ P.E.N. ର (Poets, Essayists and Novelists) ସଭ୍ୟ ହୋଇଥିଲା । P.E.N. ସମ୍ମିଳନୀରେ କାଳନ୍ଦୀଚରଣ ପାଣିଗ୍ରାହୀ, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ

ବାନାମ୍ବର ଆଚାର୍ଯ୍ୟ ଓ ସରଳା ଦେବୀଙ୍କ ଦ୍ୱାରା ନିବନ୍ଧ ଉପସ୍ଥାପିତ ଓ ପଠିତ ହୋଇଥିଲା । ଏହି ସମୟରେ "ଜାଗରଣ" ନାମକ ଏକ ପତ୍ରିକା ସାହିତ୍ୟ ସମାଜ ତରଫରୁ ପ୍ରକାଶିତ ହୋଇଥିଲା କିନ୍ତୁ ତାହା ଅଳ୍ପ କେତେକ ଦିନ ପରେ ବନ୍ଦ ହୋଇଥିଲା ।

୧୯୫୦ ମସିହା ବେଳକୁ ଏହି ଅନୁଷ୍ଠାନର ଭାଗ୍ୟରେ ବିଶେଷ ପରିବର୍ତ୍ତନ ହୋଇଥିଲା । ସେତେବେଳେ ଶ୍ରୀ ସୁଧାକର ପଟ୍ଟନାୟକ ଏହାର ଯୁଗ୍ମ ସମ୍ପାଦକ ଥାଆନ୍ତି ଓ ମୁଁ ସାଧାରଣ ସମ୍ପାଦକ ଭାବେ ନିର୍ବାଚିତ ହେଲି । ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ସଭାପତି ଥାଆନ୍ତି । କିନ୍ତୁ ଅଳ୍ପଦିନ ପରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇ ଯିବାରୁ ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତି ଏହାର ସଭାପତି ରହିଲେ ଓ ପରେ ଡକ୍ଟର ପ୍ରାଣକୃଷ୍ଣ ପରିଜା ସଭାପତି ହେଲେ ।

ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଏହି ଅନୁଷ୍ଠାନର ଉନ୍ନତି ସକାଶେ ବହୁତ ସାହାଯ୍ୟ କରୁଥିଲେ । ବିଭିନ୍ନ ଯୋଜନାମାନ ପ୍ରସ୍ତୁତ କରାଯାଇ ତାହା କରାଗଲା । ପୂର୍ବରୁ କରଦରାଜ୍ୟର ଜଣେ ରାଜା ସାହିତ୍ୟ ସମାଜକୁ କିଛି ଅର୍ଥ ଦାନ କରିଥିଲେ । ସେ ଅର୍ଥ କଲିକତାରେ ଟ୍ରେଜେରୀରେ ଗଚ୍ଛିତ ହୋଇ ରହିଯାଇଥିଲା । ସୁଧାକର ବାବୁଙ୍କ ଚେଷ୍ଟାରେ ସେ ଟଙ୍କା ଉଦ୍ଧାର କରି ଅଣାଯାଇଥିଲା । ସୁଧାକର ବାବୁ ଜଣେ ଦକ୍ଷ ଗବେଷକ । ସେତେବେଳେ ତାଙ୍କର ଐତିହାସିକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହେବାକୁ ଲାଗିଲା ଓ ପୁସ୍ତକ ମଧ୍ୟ ପ୍ରକାଶିତ ହେଲା ।

ଆର୍ତ୍ତବାବୁ ଓ ମୋ ଚେଷ୍ଟାରେ ଶ୍ରୀରାମଚନ୍ଦ୍ର ଭବନ ପରିସର ମଧ୍ୟରେ କବିବର ରାଧାନାଥ ରାୟଙ୍କର ଆବକ୍ଷ ପ୍ରତିମୂର୍ତ୍ତି ସ୍ଥାପିତ ହେଲା । ସେତେବେଳେ "ସମାଜ"ର ସମ୍ପାଦକ ଡକ୍ଟର ରାଧାନାଥ ରଥ ଓଡ଼ିଶାର ମନ୍ତ୍ରୀ ଥିଲେ । ଏହି ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ସେ ସମସ୍ତ ଅର୍ଥ ସାହାଯ୍ୟ କରିଥିଲେ । ସେତେବେଳେ ପାଞ୍ଚଗୋଟି ଆବକ୍ଷ ମୂର୍ତ୍ତି ସ୍ଥାପନ ପାଇଁ ସିଦ୍ଧାନ୍ତ ହୋଇଥିଲା । କିନ୍ତୁ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବାରୁ ମୂର୍ତ୍ତି ସ୍ଥାପନ ସେତିକରେ ରହିଗଲା । ତିନିଦିନ ଧରି ଏକ ସାହିତ୍ୟ ଉତ୍ସବ ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଉପସ୍ଥିତିରେ ଓ ରାୟବାହାଦୁର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ଓ ନୃତ୍ୟବିତ୍‌ମାନେ ସଙ୍ଗୀତ ଓ ନୃତ୍ୟ ପ୍ରଦର୍ଶନ କରିଥିଲେ ।

ଶ୍ରୀ ବାଳକୃଷ୍ଣ ପଟ୍ଟନାୟକଙ୍କ ରଚିତ ଓ ପ୍ରକାଶିତ କେତେକ ପୁସ୍ତକର ସ୍ୱତ୍ତ୍ୱ ସେ ସାହିତ୍ୟ ସମାଜକୁ ଦାନ କରି ତହିଁର ବିକ୍ରୟ ଲବ୍ଧ ଧନରେ ପୁସ୍ତକ ପ୍ରକାଶନ ପାଣ୍ଠି ଆରମ୍ଭ କରାଗଲା । ଆହୁରି ମଧ୍ୟ ପୁସ୍ତକ ପ୍ରକାଶକଙ୍କ ସହଯୋଗରେ କେତେକ ପୁସ୍ତକ ପ୍ରକାଶିତ ହୋଇ ତହିଁର ଲାଭାଂଶରୁ ଅର୍ଥ ସାହିତ୍ୟ ସମାଜକୁ ଆସିବାର ବ୍ୟବସ୍ଥା ହୋଇଥିଲା । ଅନେକ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଓ ସଙ୍ଗୀତଜ୍ଞଙ୍କ ପ୍ରତିକୃତି ସଭା ଗୃହରେ ସ୍ଥାପନ କରାଯାଇଥିଲା । ଶ୍ରୀରାମଚନ୍ଦ୍ର ଭବନ ଗୃହର ମରାମତି ଓ ରଙ୍ଗ କରାଯାଇ

ସମସ୍ତ ବିଜୁଳି ବ୍ୟବସ୍ଥା ବଦଳାଯାଇଥିଲା । ଓଡ଼ିଶା ବାହାରୁ ଆସୁଥିବା ବିଶିଷ୍ଟ ବ୍ୟକ୍ତିଙ୍କର ବକ୍ତୃତାର ବ୍ୟବସ୍ଥା କରାଯାଇଥିଲା । ପ୍ରବନ୍ଧ ଓ ଆବୃତ୍ତି ପ୍ରତିଯୋଗିତା କରାଯାଇ ପୁରସ୍କାର ବିତରଣ କରାହେଲା । ବିଶିଷ୍ଟ ଗୀତି କବିଙ୍କ କବିତା ସଙ୍ଗୀତରେ ପ୍ରଦର୍ଶନ କରିବାର ବ୍ୟବସ୍ଥା କରାଯାଇଥିଲା ।

୧୯୭୨ ମସିହାରେ ଅନୁଷ୍ଠାନର ହୀରକ ଜୟନ୍ତୀ ଅନୁଷ୍ଠିତ ହୋଇଥିଲା । ଏହି ଅବସରରେ ଏକ ସାହିତ୍ୟ ସମ୍ମିଳନୀ କରାଯାଇଥିଲା । ସବୁଜକବି ବୈକୁଣ୍ଠନାଥ ପଟ୍ଟନାୟକ ତାଙ୍କର ସମସ୍ତ ପୁସ୍ତକ ସାହିତ୍ୟ ସମାଜକୁ ଦାନ କରିଥିଲେ । ଏହାର ସର୍ତ୍ତ ହେଲା ଯେ ଏଥିରୁ ଲବ୍ଧ ଧନଦ୍ୱାରା ଦରିଦ୍ର ଓ ଅଭାବଗ୍ରସ୍ତ ସାହିତ୍ୟିକଙ୍କୁ ସାହାଯ୍ୟ ଦିଆଯିବ । ଓଡ଼ିଆ ସାହିତ୍ୟର ଚର୍ଚ୍ଚା ଓ ପ୍ରସାର ଉଦ୍ଦେଶ୍ୟରେ ପାଲା ପ୍ରତିଯୋଗିତା ଅନୁଷ୍ଠିତ ହୋଇ ପୁରସ୍କାର ଦିଆଯାଇଥିଲା । ୧୯୭୫ ମସିହାରେ "କଳିଙ୍ଗ ସାହିତ୍ୟ ସମାଜ" ସହଯୋଗରେ ବ୍ରହ୍ମପୁରଠାରେ ଏକ ସାହିତ୍ୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । "ସାହିତ୍ୟ ପତ୍ରିକା" ନାମରେ ଏକ ପତ୍ରିକା ପ୍ରକାଶିତ ହୋଇ ତାହା ଅଳ୍ପଦିନ ପରେ ବନ୍ଦ ହୋଇଗଲା ।

ବର୍ତ୍ତମାନ ବହୁ ବିଶିଷ୍ଟ ସାହିତ୍ୟିକଙ୍କ ପ୍ରତିକୃତି ଶ୍ରୀରାମଚନ୍ଦ୍ର ଭବନରେ ରଖିବାର ବ୍ୟବସ୍ଥା ହୋଇଛି । ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା କରାଯାଇ ପୁରସ୍କାର ବିତରଣ କରାଯାଇଛି । ସେଥି ସକାଶେ ବହୁ ବିଶିଷ୍ଟ ବ୍ୟକ୍ତି ଅନୁଦାନ ଦେଇଛନ୍ତି । ଦୁଃସ୍ଥ ସାହିତ୍ୟିକ ପାଣ୍ଠି ଖୋଲାଯାଇ ଦୁଃସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ ଦିଆଯାଉଛି । କବି ସମ୍ମିଳନୀ ଅନୁଷ୍ଠିତ ହେଉଛି । ବର୍ତ୍ତମାନ ହେଉଥିବା କାର୍ଯ୍ୟମାନଙ୍କ ମଧ୍ୟରେ ପୁସ୍ତକ ପ୍ରକାଶନ, ପୁରାତନ ପତ୍ରିକାମାନଙ୍କ ମାଇକ୍ରୋ ଫିଲ୍ମ କରିବା, ବିଶିଷ୍ଟ ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା ଦେବା ଅନ୍ତର୍ଗତ । କବିବର ରାଧାନାଥଙ୍କ ପ୍ରତିମୂର୍ତ୍ତି ସ୍ଥାପନ ପରେ ଆଉ ଯେଉଁ ପାଞ୍ଚଜଣଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରିବାର ଥିଲା ତାହା ଏବେ ସମ୍ପୂର୍ଣ୍ଣ କରାଯାଇଛି । ରାଧାନାଥଙ୍କ ଆବକ୍ଷ ମୂର୍ତ୍ତି ନିକଟରେ ଭକ୍ତକବି ମଧୁସୂଦନ, ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀରମୋହନ ଓ କବି ଗଙ୍ଗାଧର ମେହେରଙ୍କ ଆବକ୍ଷ ମୂର୍ତ୍ତି ସ୍ଥାପିତ ହେଉଛି । "ସମାଜ" ସମ୍ପାଦକ ଡକ୍ଟର ରାଧାନାଥ ରଥ ଏହାର ସମସ୍ତ ଭାର ବହନ କରିଛନ୍ତି । ଶ୍ରୀରାମଚନ୍ଦ୍ର ଭବନ ଗୃହର ସମ୍ପୂର୍ଣ୍ଣ ମରାମତି ଓ ରଙ୍ଗ କରାଯାଇଛି । ସଭାଗୃହର ବେଢ଼ା ମଧ୍ୟରେ ପାଇଖାନାର ଅଭାବ ଥିଲା । ବର୍ତ୍ତମାନ ପକ୍କା ପାଇଖାନା ନିର୍ମାଣ କରାଯାଇଛି । ସଭାଗୃହ ମଧ୍ୟରେ ଥିବା ପୁରାତନ କାଠଚଉକି ବଦଳାଇ ନୂତନ ବ୍ଲୋ ପ୍ଲାଷ୍ଟିକ ଚେୟାର ବ୍ୟବସ୍ଥା କରାଯାଇଛି । ସଭାମଞ୍ଚରେ ପୁନର୍ବିନ୍ୟାସ କରାଯାଇଛି । ସଭାଗୃହର ସମ୍ପ୍ରସାରଣ ପାଇଁ ସରକାରଙ୍କୁ ନିବେଦନ କରାହୋଇଛି ।

ସରକାରୀ ଓ ସାହିତ୍ୟ ଏକାଡେମୀ ଗ୍ରାଣ୍ଟ ଏହି ଅନୁଷ୍ଠାନ ଚଳାଇବାକୁ ଯଥେଷ୍ଟ ହେଉନାହିଁ; ଯଦିଓ ଏବେ ସରକାରୀ ଗ୍ରାଣ୍ଟକୁ ବୃଦ୍ଧି କରାଯାଇଛି । ଆର୍ଥିକ ଦୁରବସ୍ଥା ଲାଗିରହିଛି ଓ ତାହା ଉନ୍ନତିର ପ୍ରତିବନ୍ଧକ ହେଉଛି ।

ସାହିତ୍ୟ ସମାଜ ତରଫରୁ ଦିଆଯାଇଥିବା ପୁରସ୍କାର—

୧—ଉପନ୍ୟାସ ପାଇଁ କୁଞ୍ଜବିହାରୀ ପୁରସ୍କାର—ଡକ୍ଟର କୁଞ୍ଜବିହାରୀ ଦାସଙ୍କ ଦାନ ।

୨—ପ୍ରବନ୍ଧ ପାଇଁ ଉତ୍କଳ ସାହିତ୍ୟ ସମାଜ ପୁରସ୍କାର—ଉତ୍କଳ ସାହିତ୍ୟ ସମାଜ ପ୍ରଦତ୍ତ ।

୩—ପ୍ରବନ୍ଧ ପାଇଁ ଗିରିଜା ଶଙ୍କର ପୁରସ୍କାର—ଶ୍ରୀମତୀ ଦୁର୍ଗାମଣି ଦେବୀଙ୍କ ଦାନରେ ।

୪—ସଂସ୍କୃତ ଶ୍ଳୋକ ଆବୃତ୍ତି ଗୌରାଙ୍ଗ ଚରଣ ପୁରସ୍କାର—ଶ୍ରୀ ଗୋକୁଳ ଚନ୍ଦ୍ର କରଙ୍କ ପ୍ରଦତ୍ତ ।

୫—ପ୍ରବନ୍ଧ ପାଇଁ କର୍ମବୀର ଗୌରୀଶଙ୍କର ପୁରସ୍କାର—ପ୍ରଫେସର ଗିରିଜା ଶଙ୍କର ରାୟଙ୍କ ଦାନ ।

୬—ତାରାମଣି ସ୍ମୃତି ପୁରସ୍କାର—ଡକ୍ଟର କୁଞ୍ଜବିହାରୀ ଦାସଙ୍କ ଦାନ ।

୮—କବିତା ପାଇଁ ମନ ମୋହିନୀ ପୁରସ୍କାର—ସୁରେଶ ବଲ୍ଲଭ ଦାସଙ୍କ ଦାନ ।

୯—କ୍ଷୁଦ୍ରଗଳ୍ପ ପାଇଁ ପରଶୁରାମ ପୁରସ୍କାର—ଡକ୍ଟର ପ୍ରତିଭା ରାୟଙ୍କ ଦାନ ।

୧୦—ସବୁଜ ସାହିତ୍ୟ ପୁରସ୍କାର—ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଦାନ ।

ସାହିତ୍ୟ ସମାଜ ତରଫରୁ ପ୍ରକାଶିତ ପୁସ୍ତକ :—

୧ । ବୈକୁଣ୍ଠନାଥ ଗ୍ରନ୍ଥାବଳୀ—୧ମ ଓ ୨ୟ ଭାଗ ।

୨ । ଜବାହରଲାଲ୍ ନେହେରୁ ସ୍ମରଣିକା ।

୩ । ଭକ୍ତମାଳୀ ।

୪ । ଦୀନବନ୍ଧୁ ଗୋପବନ୍ଧୁ ।

୫ । ସାହିତ୍ୟିକ ଅଭିଭାଷଣ ।

୬ । ହୀରକ ଜୟନ୍ତୀ ସ୍ମରଣିକା ।

୭ । ବ୍ରହ୍ମପୁର ଲେଖକ ସମ୍ମିଳନୀ ପତ୍ରିକା ।

୮ । ଉତ୍କଳ ସାହିତ୍ୟ ସମାଜ ଇତିବୃତ୍ତ ।

୯ । ସଭା ଓ ସାହିତ୍ୟ ।

୧୦ । ସ୍ୱର୍ଣ୍ଣସେତୁ ।

୧୧ । ପୁରାତନ ପତ୍ରିକା ସଂରକ୍ଷଣ ।

୧୨ । ନାଟ୍ୟକାର ଜଗମୋହନ ଲାଲ୍ ।

୧୩ । ପ୍ରତିଭା ପଞ୍ଚକ ।

୧୪ । ଓଡ଼ିଆ ସାହିତ୍ୟରେ ହାସ୍ୟରସ ।

# ଉତ୍କଳ ସଙ୍ଗୀତ ସମାଜ

**ଶ୍ରୀ ଭୂପେନ ଘୋଷ**

ଯେତେବେଳେ ଭାରତରେ ବ୍ରିଟିଶ ଶାସନ ପ୍ରଚଳିତ ଥିଲା, ସେତେବେଳେ ସମାଜରେ ରକ୍ଷଣଶୀଳତା ଅତ୍ୟଧିକ ମାତ୍ରାରେ ବ୍ୟାପି ଯାଇଥିଲା—ଯାହା ଫଳରେ ଭାରତୀୟ ସଂସ୍କୃତି ତଥା ଓଡ଼ିଆ ସଂସ୍କୃତି ଅବକ୍ଷୟଗ୍ରସ୍ତ ହୋଇପଡ଼ିଥିଲା । ଓଡ଼ିଶାରେ ଓଡ଼ିଶୀ ଗୀତ ଓ ନୃତ୍ୟର ଚାହିଦା ନଥିଲା । ଓଡ଼ିଆ ଗୀତ ଓ ନୃତ୍ୟ ଶିକ୍ଷା ଦୂରେ ଥାଉ, କୌଣସି ପ୍ରକାର ନୃତ୍ୟ-ଗୀତକୁ ଦର୍ଶକ-ଦର୍ଶିକା ଭାବେ ଦେଖିବାକୁ ମଧ୍ୟ ଲୋକେ ଘୃଣା କରୁଥିଲେ ।

୧୯୩୨ ମସିହା ପର୍ଯ୍ୟନ୍ତ କଟକ ତଥା ଓଡ଼ିଶାରେ ନୃତ୍ୟ ଓ ସଙ୍ଗୀତ ଶିକ୍ଷା କରିବାକୁ କୌଣସି ଅନୁଷ୍ଠାନ ଓ ପାଠ୍ୟକ୍ରମ ନଥିଲା । ଶିକ୍ଷିତ ଓ ସମ୍ଭ୍ରାନ୍ତ ପରିବାରର ପୁଅ ଝିଅମାନେ ନୃତ୍ୟ ଓ ସଙ୍ଗୀତ ଶିକ୍ଷା କରିବାକୁ ନାକ ଟେକୁଥିଲେ । ତେଣୁ ଓଡ଼ିଶାରେ ଓଡ଼ିଶୀ ଗୀତ ଓ ନୃତ୍ୟର ବିକାଶ, ଚର୍ଚ୍ଚା ଓ ଶିକ୍ଷା ଦିଗରେ କ୍ଷୀଣ ତଥା ଘୃଣ୍ୟ ଅବସ୍ଥା ସୃଷ୍ଟି ହୋଇଥିଲା ।

ଏ ଦୃଷ୍ଟିରୁ ଓଡ଼ିଶୀ ଗୀତ ଓ ନୃତ୍ୟକୁ ପାଠ୍ୟକ୍ରମ ମାଧ୍ୟମରେ ଶିକ୍ଷା କରିବାକୁ ଏବଂ ଏହାକୁ ଓଡ଼ିଶାର ପୁରପଲ୍ଲୀରେ ଲୋକପ୍ରିୟ କରିବା ସଙ୍ଗେ ସଙ୍ଗେ ଓଡ଼ିଶାବାସୀଙ୍କ ହୃଦୟରେ ଜାଗରଣ ସୃଷ୍ଟି ଲକ୍ଷ୍ୟରେ ୧୯୩୩ ମସିହାରେ ରେଭେନ୍ସା କଲେଜର ସଂସ୍କୃତ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ କଟକରେ ଉତ୍କଳ ସଙ୍ଗୀତ ସମାଜ ପ୍ରତିଷ୍ଠା କରିଥିଲେ । କେବଳ ସେତିକି ନୁହେଁ, ଓଡ଼ିଶାର ପୁରପଲ୍ଲୀରେ ଲୁକ୍କାୟିତ ଥିବା ନୃତ୍ୟ ଓ ଗୀତର କଳାକାରମାନଙ୍କୁ ଏକତ୍ର କରି ସେମାନଙ୍କ ମଧ୍ୟରେ ଭାବର ଆଦାନ-ପ୍ରଦାନ କରିବା ପାଇଁ ଏବଂ ସେମାନଙ୍କୁ ଓଡ଼ିଶୀ ନୃତ୍ୟ—ଗୀତରେ ସଚେତନ କରିବାକୁ ପ୍ରତିଷ୍ଠାତା ଶ୍ରୀ ଚୌଧୁରୀ ୧୯୩୪ ମସିହାରେ ନିଖିଳ ଉତ୍କଳ ସଙ୍ଗୀତ ଓ ନୃତ୍ୟ ସମ୍ମିଳନୀ ତଥା ଓଡ଼ିଶୀ ନୃତ୍ୟ-ଗୀତ ପ୍ରତିଯୋଗିତା ଉତ୍କଳ ସଙ୍ଗୀତ ସମାଜ ଆନୁକୂଲ୍ୟରେ ଆରମ୍ଭ କରିଥିଲେ, ଯାହାକି ବର୍ତ୍ତମାନ ସୁଦ୍ଧା ଉତ୍କଳ ସଙ୍ଗୀତ ସମାଜ ନିରବଚ୍ଛିନ୍ନ ଭାବେ କଟକରେ କରି ଆସୁଛି । ଏହାର ପ୍ରଭାବରେ କଟକର ଅନ୍ୟାନ୍ୟ ଅନୁଷ୍ଠାନ ଏ ଧରଣର ପ୍ରତି-ଯୋଗିତା କରିବାକୁ ଆଗ୍ରହୀ ହୋଇଛନ୍ତି ।

ଶ୍ରୀ ଚୌଧୁରୀ ଉତ୍କଳ ସଙ୍ଗୀତ ସମାଜରେ ପାଠ୍ୟକ୍ରମ ମାଧ୍ୟମରେ ଏମ୍. ମିଉଜ୍‌ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟ-ଗୀତ ତଥା ଅନ୍ୟାନ୍ୟ ସଙ୍ଗୀତ ଓ ନୃତ୍ୟକୁ ଶିକ୍ଷାଦାନର କାର୍ଯ୍ୟ ଭାବରେ ୧୯୩୩ ମସିହାରେ ଆରମ୍ଭ କରିଥିଲେ—ଯାହାକି ବର୍ତ୍ତମାନ ପର୍ଯ୍ୟନ୍ତ ଉକ୍ତ ଅନୁଷ୍ଠାନ କାର୍ଯ୍ୟ କରୁଛି । କଳାକୁ ବ୍ୟବସାୟର ଊର୍ଦ୍ଧ୍ୱରେ ରଖି ଶିକ୍ଷାଦାନ କରିବାକୁ ତାଙ୍କର ଆଦର୍ଶ ଥିଲା । ତାଙ୍କର ଚିନ୍ତାଧାରା ଥିଲା ଯେ କଳାକୁ ବ୍ୟବସାୟ କଲେ ଶାସ୍ତ୍ରୀୟତା ଏବଂ ପବିତ୍ରତା କ୍ଷୁର୍ଣ୍ଣ ହୁଏ ।

## ନୂତନ ଉଦ୍ୟୋକ୍ତା ସୃଷ୍ଟି :

ଯେଉଁମାନେ ଅନ୍ତରରେ ବହୁ ସମୟ ଧରି ଉତ୍କଳ ସଙ୍ଗୀତ ସମାଜକୁ ପ୍ରାରମ୍ଭିକ ଅବସ୍ଥାରେ ଜୋରଦାର କରି ଗଢି ତୋଳିବାକୁ ପ୍ରତିଷ୍ଠାତା ଚୌଧୁରୀଙ୍କୁ ସକ୍ରିୟ ସାହାଯ୍ୟ କରିଥିଲେ—ସେମାନେ ହେଲେ ସର୍ବଶ୍ରୀ ହରେକୃଷ୍ଣ ମହତାବ, ରାୟ ସାହେବ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ମୋତିଲାଲ ଟିକୁ, ବି. ଦାସ, ନିତ୍ୟାନନ୍ଦ କାନୁନଗୋ, ପ୍ରଫେସର ଜି. ସି. ମହାନ୍ତି, ଆର. ଡି. କେଲକର, ରାୟ୍ରାହେବ ଏନ୍. ମହାନ୍ତି, ଲକ୍ଷ୍ମୀନାରାୟଣ ସାହୁ, ଶରତ କୁମାର ମିଶ୍ର, ବଗେଶ୍ୱର ମହାନ୍ତି, କାଶୀନାଥ ଦାସ, ମିସ୍ ପି. କର, ମହେଶଚନ୍ଦ୍ର ପ୍ରଧାନ, ମିସେସ ଏସ୍. ଚୌଧୁରୀ, ଜୟସିଂହ ଦାସ, ଡି. ଏନ୍. ପଟ୍ଟନାୟକ, ଡାକ୍ତର କରୁଣାକର ମାହାଲିକ, ଅନିରୁଦ୍ଧ ଦାସ, ରାଧାନାଥ ମିଶ୍ର, ପି. ସି. ପଟ୍ଟନାୟକ, ବ୍ରଜସୁନ୍ଦର ଦାସ, ବୋଧରାମ ଦୁବେ, ପଣ୍ଡିତ ଅନସୂୟା ପ୍ରସାଦ ପାଠକ, ବଛନ୍ଦ ଚରଣ ପଟ୍ଟନାୟକ, ମୁକୁନ୍ଦ ପ୍ରସାଦ ଦାସ, ଶ୍ରୀବତ୍ସ ପଟ୍ଟନାୟକ, ମଦନ ମୋହନ ପଟ୍ଟନାୟକ, ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ, ଗୋପିନାଥ ଦାସ, ପ୍ରଫେସର ନାରାୟଣ ମିଶ୍ର, ଶ୍ରୀମତୀ କେ. ଏମ୍. ଜୁଆର୍-ଦାର, ଚିନ୍ତାମଣି ମିଶ୍ର, ପ୍ରଫେସର ବି. ପ୍ରସାଦ, ବି. ଏନ୍. ଦାସ, ବି. ବି. ଚୌଧୁରୀ, ମିସ୍ ନିର୍ମଳା ନାୟକ, ଶ୍ରୀ ମନମୋହନ ଘୋଷ, ଶ୍ରୀ ମଧୁସୂଦନ ଘୋଷ, କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକ, ୰ ଶରତଚନ୍ଦ୍ର ମୁଖାର୍ଜୀ ଓ ସତ୍ୟସୁନ୍ଦର ମହାପାତ୍ର ପ୍ରମୁଖ ।

୧୯୬୯ ମସିହାରେ ପ୍ରତିଷ୍ଠାତା ଲକ୍ଷ୍ମୀକାନ୍ତ ଚୌଧୁରୀ ସ୍ୱର୍ଗାରୋହଣ କଲେ । ପ୍ରତିଷ୍ଠାତାଙ୍କ ମୃତ୍ୟୁ ପରେ ଉପରୋକ୍ତ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାବୃନ୍ଦ ସେମାନଙ୍କର ଅକ୍ଲାନ୍ତ ପରିଶ୍ରମ ଦ୍ୱାରା ଉତ୍କଳ ସଙ୍ଗୀତ ସମାଜକୁ ମଜଭୂତ କରିବା ଦ୍ୱାରା ସମାଜରେ ବ୍ୟାପିଥିବା ରକ୍ଷଣଶୀଳତା କ୍ରମେ କ୍ରମେ ଦୂର ହୋଇପାରିଲା । ଏ ବାଟରେ ଉତ୍କଳ ସଙ୍ଗୀତ ସମାଜ ଶିକ୍ଷିତ ଓ ସମ୍ଭ୍ରାନ୍ତ ବଂଶର ଝିଅମାନଙ୍କର ଆଖି ଖୋଲିବା ସଙ୍ଗେ ସଙ୍ଗେ ସେମାନେ ଏ ଅନୁଷ୍ଠାନରେ ଓଡ଼ିଶୀ ନୃତ୍ୟଗୀତ ବର୍ଷ ବର୍ଷ ଧରି ଶିକ୍ଷା କଲେ । ମୂଳତଃ କଟକରେ ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନ ଗଢ଼ି ଉଠିଲା—ଯେଉଁ ସବୁର ପ୍ରେରଣାଦାତା ଓ ଉତ୍ସାହଦାତା ହେଉଛି ଉତ୍କଳ ସଙ୍ଗୀତ ସମାଜ ।

## ଶିକ୍ଷକ ସୃଷ୍ଟି :

ଓଡ଼ିଶା ତଥା କଟକରେ ଓଡ଼ିଶୀ ନୃତ୍ୟ-ସଙ୍ଗୀତ ତଥା ଅନ୍ୟାନ୍ୟ ସଙ୍ଗୀତ ଓ ନୃତ୍ୟକୁ ଶିକ୍ଷା ଦେବାକୁ ଶିକ୍ଷକ-ଶିକ୍ଷୟିତ୍ରୀ ସୃଷ୍ଟି କରିବାରେ ଉତ୍କଳ ସଙ୍ଗୀତ ସମାଜ ଗଠନମୂଳକ ପଦକ୍ଷେପ ନେଇ ନିମ୍ନଲିଖିତ ପ୍ରତିଷ୍ଠିତ କଳାକାରମାନଙ୍କୁ ଶିକ୍ଷକ-ଶିକ୍ଷୟିତ୍ରୀ ଭାବେ ନିଯୁକ୍ତ ଦେଇଥିଲେ—ସେମାନେ ହେଲେ ଗୋକୁଳ ଶ୍ରୀଚନ୍ଦନ, ସିଂହାରୀ ଶ୍ୟାମସୁନ୍ଦର କର, କ୍ଷିତୀଶ ଚନ୍ଦ୍ର ମୈତ୍ର, ଶ୍ୟାମସୁନ୍ଦର ଧୀର, କାଶୀନାଥ ପୂଜାପଣ୍ଡା, ବାଳକୃଷ୍ଣ ଦାଶ, ଗୋପାଳ ପ୍ରସାଦ ଘୋଷ, ଉପେନ୍ଦ୍ର ତ୍ରିପାଠୀ, ନନ୍ଦନିଧି ଧଳ, ଲୋକନାଥ ପାଳ, ଝଣା ଦେହୁରୀ, ଶୁକଦେବ ପଣ୍ଡା, ବୀଣାପାଣି ମହାନ୍ତି, ପଙ୍କଜଚରଣ ଦାସ, ଦେବପ୍ରସାଦ ଦାସ, ମଧୁସୂଦନ ଘୋଷ, ଧୀରେନ ଦାସ, ନିତାଇ ଚରଣ ସିହ୍ନା, କିଶୋରକବି ଶ୍ୟାମସୁନ୍ଦର ଦାସ, ନବକିଶୋର ମିଶ୍ର, ଅଭିମନ୍ୟୁ ନାୟକ ଓ ଅଜିତ୍ କୁମାର ଯିଜାଟକ ।

ଏଥିମଧ୍ୟରେ ଉପର ବର୍ଣ୍ଣିତ କେତେକ ଶିକ୍ଷକଙ୍କର ମୃତ୍ୟୁ ହୋଇଯାଇଅଛି । ତେଣୁ ଏ ଅନୁଷ୍ଠାନ ମାଧ୍ୟମରେ ଶିକ୍ଷକତା କରି ଉପର ବର୍ଣ୍ଣିତ ଶିଳ୍ପୀବୃନ୍ଦ ଓଡ଼ିଶାର ସାଂସ୍କୃତିକ ଜଗତରେ ଯଶସ୍ୱୀ ହୋଇଛନ୍ତି ।

## ଓଡ଼ିଶୀ ନୃତ୍ୟରେ ଅନୁଷ୍ଠାନର ଅବଦାନ :

ପ୍ରିୟମ୍ବଦା ମହାନ୍ତି ରେଭେନ୍ସା ବାଳିକା ବିଦ୍ୟାଳୟରେ ନବମ ଶ୍ରେଣୀରେ ପଢ଼ୁଥିବା ବେଳେ ଉତ୍କଳ ସଙ୍ଗୀତ ସମାଜରେ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ନିକଟରେ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଥାନ୍ତି । ସ୍କୁଲ ଜୀବନ ପରେ ମିସ୍ ମହାନ୍ତି ରେଭେନ୍ସା କଲେଜର ଛାତ୍ରୀ ଥିବା ଅବସ୍ଥାରେ ୧୯୫୪ ମସିହାରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ନିଖିଳ ଭାରତ ବିଶ୍ୱବିଦ୍ୟାଳୟ ସାଂସ୍କୃତିକ ଉତ୍ସବରେ ଏକକ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ; ଏହାଦ୍ୱାରା ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟ ଭିତ୍ତି-ପ୍ରସ୍ତର ସ୍ଥାପିତ ହେଲା ।

ଉତ୍କଳ ସଙ୍ଗୀତ ସମାଜରେ ଗୁରୁ ପଙ୍କଜ ଚରଣ ଦାସ, ଭାଗ୍ୟଲକ୍ଷ୍ମୀ ପାତ୍ର ଓ ମାଧୁରୀ ମହାନ୍ତିଙ୍କୁ ଥାଳୀ ନୃତ୍ୟ ଶିକ୍ଷା ଦେଇଥିଲେ ।

୧୯୮୭ ମସିହାରେ ଉତ୍କଳ ସଙ୍ଗୀତ ସମାଜର ପୂର୍ବତନ ନୃତ୍ୟଛାତ୍ରୀ ପ୍ରିୟମ୍ବଦା ମହାନ୍ତି ଓଡ଼ିଶୀ ନୃତ୍ୟ ପାଇଁ ଜାତୀୟ ସ୍ତରରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିଲେ ।

ଉତ୍କଳ ସଙ୍ଗୀତ ସମାଜରେ ନୃତ୍ୟ ଶିକ୍ଷକ ଥିବା ଅବସ୍ଥାରେ ଶ୍ରୀ ଦେବପ୍ରସାଦ ଦାସ ୧୯୫୮ ମସିହାରେ ନୃତ୍ୟ ଶିଳ୍ପୀ ଇନ୍ଦ୍ରାଣୀ ରହମନଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷାଦେଇ ତାଙ୍କ ସହ ପାଶ୍ଚାତ୍ୟ ଦେଶକୁ ରହମନଙ୍କ ନୃତ୍ୟ ପରିବେଷଣ ପାଇଁ ଯାଇଥିଲେ ।

## ଓଡ଼ିଶୀ ଗୀତରେ ଅନୁଷ୍ଠାନର ଅବଦାନ :

ଉତ୍କଳ ସଙ୍ଗୀତ ସମାଜରେ ଶ୍ରୀ ବାଳକୃଷ୍ଣ ଦାଶ ଗୁରୁ ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନଙ୍କ ନିକଟରେ ଓଡ଼ିଶୀ ଗୀତ ଶିକ୍ଷା କରି ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ କଣ୍ଠ ସଙ୍ଗୀତ ଶିକ୍ଷା କରିବାକୁ କଲିକତା ଗଲେ । ପ୍ରାକ୍ତନ ଛାତ୍ର ବାଳକୃଷ୍ଣ ଦାଶ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଉତ୍କଳ ସଙ୍ଗୀତ ସମାଜରେ ଓଡ଼ିଶୀ ଗୀତ ଶିକ୍ଷାକରି ଓଡ଼ିଶାର ସଙ୍ଗୀତ ଜଗତରେ ତଥା କଟକ ଆକାଶବାଣୀ ଓ ଦୂରଦର୍ଶନରେ ଯେଉଁମାନେ ପ୍ରତିଷ୍ଠିତ କଣ୍ଠ ଶିଳ୍ପୀ ହୋଇଛନ୍ତି, ସେମାନେ ହେଲେ—ରାଧାମଣି ମହାପାତ୍ର (ବିଶ୍ୱକର୍ମା), ଭୁବନେଶ୍ୱରୀ ମିଶ୍ର, ଶୁକଦେବ ପତ୍ରୀ, କଲ୍ୟାଣୀ ଭଟ୍ଟାଚାର୍ଯ୍ୟ, ସ୍ନେହଲତା ପ୍ରହରାଜ, ନବକିଶୋର ମିଶ୍ର, ପଦ୍ମାଳୟା ରାଉତରାୟ, ଶିଶିର ଦାସ, ଆରତି ଗୋସ୍ୱାମୀ, ମମତା ମିଶ୍ର, ବୀଣାପାଣି ମହାପାତ୍ର, ମମତାରାଣୀ ପାତ୍ର, ଋଣ୍ଟି ମିଶ୍ର, ବାଗ୍ମୀ ମିଶ୍ର, ଅଞ୍ଜଳି ରାୟ, ପୁଷ୍ପଲତା ରାଉତରାୟ, ମଞ୍ଜୁଲତା ଧଳ, ଶ୍ୟାମାମଣି ଦେବୀ, ସଞ୍ଜୁକ୍ତା ମହାନ୍ତି, ସଙ୍ଗୀତା ମହାପାତ୍ର, ମହାପାତ୍ର ମିନତି ଭଞ୍ଜ, ସୁଜାତା ମିଶ୍ର, ଅଭିମନ୍ୟୁ ନାୟକ ଓ ଅଜିତ କୁମାର ସି. ଜାଚକ ।

ଅନୁଷ୍ଠାନର ପୂର୍ବତନ ଛାତ୍ରୀ ରାଧାମଣି ମହାପାତ୍ର ରାଜ୍ୟ ସ୍ତରରେ ଓଡ଼ିଶୀ ଗୀତ ପାଇଁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ସମ୍ମାନିତା ହୋଇଛନ୍ତି ।

## ଏକକ ଓଡ଼ିଶୀ ନୃତ୍ୟଶିଳ୍ପୀର ପରିଚୟ :

ଉତ୍କଳ ସଙ୍ଗୀତ ସମାଜର ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ ଏକକ ନୃତ୍ୟ ଶିଳ୍ପୀକୁ ଓଡ଼ିଶାର ସାଂସ୍କୃତିକ ଜଗତରେ ପରିଚୟ କରିବା ଅନ୍ୟତମ ଉଦ୍ଦେଶ୍ୟ । ଏହି ମର୍ମରେ ୧୯୫୭ ମସିହା ଡିସେମ୍ବର ମାସରେ ଉତ୍କଳ ସଙ୍ଗୀତ ସମାଜ ଦ୍ୱାରା ନାରୀସେବା ସଦନଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ ଓଡ଼ିଶୀ ନୃତ୍ୟଗୀତ ସମ୍ମିଳନୀରେ ଡ଼ି. ପି. ଆଇ. ବାମାଚରଣ ଦାସଙ୍କ ଦ୍ୱିତୀୟା କନ୍ୟା ବନ୍ଦନା ଦାସ ଓ ଡେପୁଟି ମାଜିଷ୍ଟ୍ରେଟ୍ ଶଚିଦାନନ୍ଦ ମିଶ୍ରଙ୍କ କନ୍ୟା ସୁଷମା ମିଶ୍ର (ଡେଜ) ପ୍ରତ୍ୟେକ ଏକକ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ପ୍ରତ୍ୟେକଙ୍କ ନୃତ୍ୟ ପରିବେଷଣର ସମୟ ସୀମା ଥିଲା ଅନ୍ୟୂନ ପଇଁତିରିଶ ମିନିଟ୍ ।

ଯେଉଁ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାମାନେ ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ହାର୍ଦ୍ଦିକ ସାହାଯ୍ୟ କରି ଉତ୍କଳ ସଙ୍ଗୀତ ସମାଜକୁ ବଳିଷ୍ଠ କରିଛନ୍ତି, ସେମାନେ ହେଲେ, ୰ ବାଞ୍ଛାନିଧି ମହାପାତ୍ର, ୰ ଭୈରବ ଚନ୍ଦ୍ର ମହାନ୍ତି, ୰ ଗୋପାଳ ଚନ୍ଦ୍ର ଦାସ, ଗୋପାଳ ଚନ୍ଦ୍ର ମିଶ୍ର, ଭଣ୍ଡାରୀ ଚରଣ ପଟ୍ଟନାୟକ, ୰ ଜମିଦାର ବ୍ରଜସୁନ୍ଦର ଦାସ, ୰ ଶରତ ଚନ୍ଦ୍ର ମୁଖାର୍ଜୀ,

ରଘୁନାଥ ପଟ୍ଟନାୟକ, ୰ ଆଡ଼ଭୋକେଟ୍ ମନମୋହନ ଘୋଷ, ୰ କଶାମଣି ଦେବୀ, ୰ ନବକିଶୋର ମହାନ୍ତି, ଜଷ୍ଟିସ୍ ନବକୁମାର ଦାସ, ବ୍ରଜବିହାରୀ ମିଶ୍ର, ୰ କମାଇଁଚରଣ ଦାସ, ରମାକାନ୍ତ ମହାପାତ୍ର, ନଗପ୍ରୀ ବିହାରୀ ମହାନ୍ତି, ସତ୍ୟସୁନ୍ଦର ମହାପାତ୍ର, ସ୍ନେହମୟୀ ମହାପାତ୍ର, ଶାରଦାପ୍ରସନ୍ନ ନାୟକ, ବିଜୟକୃଷ୍ଣ ମହାନ୍ତି, ୰ ଅଜୟ କୁମାର ଭୂୟାଁ, ୰ ହରପ୍ରିୟା ଦେବୀ, ଡାକ୍ତର ସନାତନ ମୁଖାର୍ଜୀ, ଉଚ୍ଛବାନନ୍ଦ ସାମନ୍ତରାୟ, ଗୋକୁଳଚନ୍ଦ୍ର କାନୁନ୍‌ଗୋ, ୰ ପ୍ରଭାମୟୀ ଦେବୀ, ରାମକୃଷ୍ଣ ନନ୍ଦ, ଭୂପେନ ଘୋଷ, ଡାକ୍ତର ଗିରିଜା ଶଙ୍କର ଦାସମହାପାତ୍ର, ଶ୍ରୀ ବୃନ୍ଦାବନ ନାୟକ, ପ୍ରମୁଖ ।

ଆଜକୁ କେତେବର୍ଷ ଧରି ବର୍ତ୍ତମାନ ପର୍ଯ୍ୟନ୍ତ ଉତ୍କଳ ସଙ୍ଗୀତ ସମାଜର କର୍ମକର୍ତ୍ତା ଭାବେ ଓ କାର୍ଯ୍ୟକାରୀ କମିଟି ସଭ୍ୟଭାବେ ଜଷ୍ଟିସ୍ ଯୁଗଳ କିଶୋର ମହାନ୍ତି, (ସଭାପତି) ଶ୍ରୀ ଆର୍ ଏନ. ଦାସ, ଅବସରପ୍ରାପ୍ତ ଡ଼. ଜ. କାର୍ଯ୍ୟକାରୀ ସଭାପତି, ଡାକ୍ତର ସନାତନ ମୁଖାର୍ଜୀ, ଶ୍ରୀ ନନ୍ଦନ କୁମାର ପରିଜା, ଉପେନ୍ଦ୍ର ମହାପାତ୍ର (ଉପସଭାପତିବୃନ୍ଦ) ଭୂପେନ ଘୋଷ (୧୯୫୫ରୁ ଏ ପର୍ଯ୍ୟନ୍ତ) ସାଧାରଣ ସମ୍ପାଦକ, ରଣଜିତ ସିଂହ (କୋଷାଧ୍ୟକ୍ଷ), ପ୍ରଭାତ କୁମାର ନନ୍ଦ (ନିର୍ବାହୀ ମନ୍ତ୍ରୀ), ସରୋଜ ପଟ୍ଟନାୟକ ନିର୍ବାହୀ ମନ୍ତ୍ରୀ, ଅଜୟ କିଶୋର ପଣ୍ଡା, (ସହକାରୀ ମନ୍ତ୍ରୀ), ଜଗପ୍ରାଣ ପ୍ରସାଦ-ଏମ.ଏ., ଡାକ୍ତର ଜେନାମଣି ନରେନ୍ଦ୍ର କୁମାର, ଖଣି ମାଲିକ ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଏମ. ଭି. ରାଓ, ବ୍ରଜକିଶୋର ସାହୁ, ଦଶରଥ ନାୟକ, ଉଚ୍ଛବାନନ୍ଦ ସାମନ୍ତରାୟ, ପ୍ରତାପ ସୁର, ନବକିଶୋର ମିଶ୍ର, ଶାନ୍ତିମୟ ପତି ପ୍ରମୁଖ କାର୍ଯ୍ୟକରୁଛନ୍ତି, ଫଳରେ ଅନୁଷ୍ଠାନକୁ ବହୁ ନୂତନ କର୍ମତତ୍ପର ବ୍ୟକ୍ତି ସାହାଯ୍ୟ କରୁଛନ୍ତି ।

### ଶିକ୍ଷକ ମଣ୍ଡଳୀ :

ଅଜିତ କୁମାର ପି. ଜାତକ; ହରେକୃଷ୍ଣ ମହାନ୍ତି, ଅଭିମନ୍ୟୁ ନାୟକ (ଓଡ଼ିଶୀ ଓ ହିନ୍ଦୁସ୍ଥାନୀ ଗୀତ) ଲକ୍ଷ୍ମୀଧର ଜେନା ଓ ରୂପାଲି ଦାସ (ଓଡ଼ିଶୀ ନୃତ୍ୟ) ବୈଷ୍ଣବ ଗିରି (ତବଲା), ଗଙ୍ଗାଧର ଦାସ (ଲଘୁ ସଙ୍ଗୀତ) ଶିକ୍ଷକ ଶିକ୍ଷୟିତ୍ରୀ ଭାବେ ଉତ୍କଳ ସଙ୍ଗୀତ ସମାଜରେ ବର୍ଷ ବର୍ଷ ଧରି କାର୍ଯ୍ୟକରୁଛନ୍ତି ।

ରାଜ୍ୟସ୍ତରରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଓଡ଼ିଶୀ ଗୀତରେ ସମ୍ମାନିତ ହୋଇ ଶୁକଦେବ ପତି ଆବଶ୍ୟକମତେ ଅଧ୍ୟକ୍ଷର ଦାୟିତ୍ୱ ତୁଲାଉଛନ୍ତି ।

### କଟକ ଆକାଶବାଣୀରେ ଅନୁଷ୍ଠାନର ଅବଦାନ :

୧୯୪୮ ମସିହା ଜାନୁଆରୀ ୨୮ ତାରିଖରେ କଟକରେ ଆକାଶବାଣୀ ପ୍ରତିଷ୍ଠିତ ହେଲା । ସେହି ସମୟରେ ଉତ୍କଳ ସଙ୍ଗୀତ ସମାଜ କଟକ ଆକାଶବାଣୀରୁ ଓଡ଼ିଶୀ ତଥା ଅନ୍ୟାନ୍ୟ ଗୀତର ପ୍ରଚାର ଉଦ୍ଦେଶ୍ୟରେ ବହୁ ଛାତ୍ର-ଛାତ୍ରୀଙ୍କୁ ଶିଳ୍ପୀ ପର୍ଯ୍ୟାୟଭୁକ୍ତ କରିବାରେ ସକ୍ରିୟ ସାହାଯ୍ୟ କରିଥିଲା ।

## ହରିଜନମାନଙ୍କର ସଙ୍ଗୀତ ପ୍ରତିଯୋଗିତା :

୧୯୩୮ ମସିହାରେ ଉତ୍କଳ ସଙ୍ଗୀତ ସମାଜ ହରିଜନ ଓ ଆଦିବାସୀମାନଙ୍କ ନିମନ୍ତେ ପଲ୍ଲୀ ଓ ଆଦିବାସୀ ଗୀତର ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ ଗୋଟିଏ ସଙ୍ଗୀତ ସମ୍ମିଳନୀ ପ୍ରତିଯୋଗିତା ଭିତ୍ତିରେ ଅନୁଷ୍ଠିତ କରାଇଥିଲା । ଏଥିରେ କଟକ, ଯାଜପୁର, ସମ୍ବଲପୁର, ପାରଳାଖେମୁଣ୍ଡି ଓ ଖଣ୍ଡସାହି ଅଞ୍ଚଳର ଶିଳ୍ପୀବୃନ୍ଦ ଭାଗ ନେଇଥିଲେ । ପାରଳାଖେମୁଣ୍ଡି ଶିଳ୍ପୀବୃନ୍ଦ ବିଚାରପତିଙ୍କ ସିଦ୍ଧାନ୍ତକ୍ରମେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲେ ।

ମୋଟ ଉପରେ ଉତ୍କଳ ସଙ୍ଗୀତ ସମାଜ କଟକ ତଥା ଓଡ଼ିଶାର ସର୍ବପ୍ରଥମ ଓ ପ୍ରାଚୀନ ସାଂସ୍କୃତିକ ଅନୁଷ୍ଠାନ—ଯେଉଁ ଅନୁଷ୍ଠାନ କି ଏ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟ-ଗୀତର ଶିକ୍ଷା ପ୍ରସାର ପାଇଁ ବିନା ବ୍ୟାବସାୟିକ ମନୋବୃତ୍ତିରେ କାର୍ଯ୍ୟ ୧୯୩୩ ମସିହାରୁ କରି ଓ ଆସୁଛି ।



# କଟକର ଚର୍ଚ୍ଚ

**ଅଧ୍ୟାପିକା ସରିତା ପାଣ୍ଡ**

ଧର୍ମ ଓ ସମାଜ ପରସ୍ପର ନିବିଡ଼ ସମ୍ପର୍କିତ । ପ୍ରତ୍ୟେକ ଧର୍ମର ପ୍ରାଧାନ୍ୟ ରହିଛି । ଅନ୍ୟ ଧର୍ମ ପରି ଖ୍ରୀଷ୍ଟଧର୍ମ ମଧ୍ୟ ପୃଥିବୀରେ ଏକ ବିଶେଷ ସ୍ଥାନ ଅଧିକାର କରିଛି । ଯେଉଁ ବ୍ୟକ୍ତି ଖ୍ରୀଷ୍ଟଙ୍କୁ ନିଜର ପ୍ରାଣକର୍ତ୍ତା ରୂପେ ଗ୍ରହଣ କରି ତାଙ୍କର ନାମରେ ଜୁବିତ ହୁଏ, ତାକୁ ଖ୍ରୀଷ୍ଟୀୟାନ କୁହାଯାଏ ।

ଖ୍ରୀଷ୍ଟଧର୍ମର ମୂଳ ଲକ୍ଷ୍ୟ ହେଉଛି ପ୍ରଭୁ ଯୀଶୁଙ୍କ ବାକ୍ୟକୁ ଅଣଖ୍ରୀଷ୍ଟୀୟ ଭାଇ ଓ ଭଉଣୀଙ୍କ ନିକଟରେ ପହଞ୍ଚାଇବା । ସେମାନଙ୍କ ମତରେ ଖ୍ରୀଷ୍ଟ ହେଉଛନ୍ତି ଏକ । ସେ ହେଉଛନ୍ତି ଅନନ୍ତ, ଅସୀମ ।

ଯେତେବେଳେ ଓଡ଼ିଶା ଅନ୍ଧକାର ମଧ୍ୟରେ ଗତି କରୁଥିଲା, ଠିକ୍ ସେତେବେଳେ ଖ୍ରୀଷ୍ଟୀୟାନ ମିଶନାରୀମାନେ ଇଂଲଣ୍ଡରୁ ଭାରତକୁ ଓ ଓଡ଼ିଶାକୁ ଆସି ଓଡ଼ିଶାବାସୀଙ୍କୁ ନୂତନ ଆଲୋକ ଦେଖାଇଥିଲେ । ନଅଙ୍କ ଦୁର୍ଭିକ୍ଷ ପରି ଅନ୍ୟାନ୍ୟ ପ୍ରାକୃତିକ ବିପର୍ଯ୍ୟୟରୁ ସେମାନଙ୍କୁ ଉଦ୍ଧାର କରିବାପାଇଁ ଉଦ୍ୟମ କରିଥିଲେ । ଏହାବ୍ୟତୀତ ସେମାନେ କେତେ ଶିକ୍ଷାନୁଷ୍ଠାନ, ଡାକ୍ତରଖାନା, ଗୀର୍ଜାଘର ଇତ୍ୟାଦି ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା କଲେ । ବିଶେଷ ଉଲ୍ଲେଖଯୋଗ୍ୟ କି, ମିଶନାରୀ ଭାଇମାନେ କଟକକୁ ସେମାନଙ୍କ କର୍ମ କ୍ଷେତ୍ରର କେନ୍ଦ୍ରସ୍ଥଳୀ ରୂପେ ବାଛିନେଇଥିଲେ ।

ଟେପର୍ସ, ବାମ୍ପଟନ ଓ ପେଗ୍‌ସ ସାହେବ ଏହି ତିନିଜଣ ବ୍ୟକ୍ତି ପ୍ରଥମେ ଇଂଲଣ୍ଡରୁ ଭାରତକୁ ଆସି ଓଡ଼ିଶାଠାରେ ଖ୍ରୀଷ୍ଟଧର୍ମ ପ୍ରଚାରର କେନ୍ଦ୍ରସ୍ଥଳୀ କରିବାପାଇଁ ମନସ୍ଥ କଲେ । ତେଣୁ ୧୮୨୨ ସାଲ ଫେବ୍ରୁୟାରୀ ମାସ ୧୨ ତାରିଖରେ ସେମାନେ ଓଡ଼ିଶା ଉପକୂଳରେ ପହଞ୍ଚିଲେ ଏବଂ ତାପରେ କଟକକୁ କେନାଲ ମଧ୍ୟ ଦେଇ ଆସିଥିଲେ । ତତ୍‌ପରେ, ସେମାନେ କଟକଠାରେ ନିଜର ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ । ଏହାର ଦୁଇବର୍ଷ ପରେ ମିଷ୍ଟର ବାମ୍ପଟନ ପୁରୀ ଅଭିମୁଖେ ଯାତ୍ରା କଲେ । ଚାର୍ଲସ ଲେସୀ ଡିସେମ୍ବର ମାସ ୧୮୨୩ ସାଲରେ କଟକଠାରେ ପହଞ୍ଚିଥିଲେ । ଡକ୍ଟର

ଆମ୍ପସ ସଙ୍ଗନ ମଧ୍ଯ ସ୍ତ୍ରୀଙ୍କ ୧୮୨୫ରେ କଟକ ଆସିଥିଲେ । ପେଗ୍‌ସଙ୍କ ପାଇଁ ଖୁବ୍ ଶୀଘ୍ର ବିଷାଦର କାଳିମା ଘୋଟି ଯାଇଥିଲା । ସେ ତାଙ୍କର ତିନି ପିଲାଙ୍କୁ କଟକଠାରେ ହରାଇଥିଲେ । ଭଗ୍ନ ହୃଦୟରେ ସେ ୧୮୨୫ ସାଲରେ ଇଂଲଣ୍ଡକୁ ଫେରି ଯାଇଥିଲେ । ୧୮୩୦ ସାଲ ଡିସେମ୍ବର ମାସ ୧୭ ତାରିଖରେ ବାମ୍ପଟନଙ୍କର ପୁରୁଷୋତ୍ତମ କ୍ଷେତ୍ରଠାରେ ପରଲୋକ ହୋଇଗଲା ଏବଂ ୧୮୫୦ ସାଲ ଜାନୁୟାରୀ ମାସ ୫ ତାରିଖ ଦିନ ପେଗ୍‌ସଙ୍କର ବ୍ରୁଟନ-ଓନ୍-ଟ୍ରେନଟଠାରେ ମୃତ୍ୟୁ ହେଲା ।

କଟକଠାରେ କେତେଗୁଡ଼ିଏ ଗୀର୍ଜାଘର ଦେଖିବାକୁ ମିଳେ ।

## ବାପ୍‌ଟିଷ୍ଟ ଚର୍ଚ୍ଚ :

୧୮୧୮ ସାଲରେ ଇଂଲଣ୍ଡଠାରେ ପ୍ରଥମ "ଜେନେରାଲ ବାପଟିଷ୍ଟ ମିଶନାରୀ ସୋସାଇଟି" (General Baptist Missionary Society) ପ୍ରତିଷ୍ଠା ହୋଇଥିଲା । ଏହି ସୋସାଇଟି ଭାରତକୁ କେତେଜଣ ମିଶନାରୀଙ୍କୁ ପ୍ରେରଣ କରିଥିଲା । ଯାହାଫଳରେ ସେମାନେ ଓଡ଼ିଶାର ରାଜଧାନୀ କଟକକୁ ଆସି ପ୍ରଚାର କାର୍ଯ୍ୟ ଆରମ୍ଭ କରିଥିଲେ ।

୧୮୨୨ ସାଲ ମାର୍ଚ୍ଚ ମାସରେ ବାମ୍ପଟନ ଓ ପେଗ୍‌ସ କେତେକ ଇଉରୋପୀୟ ଓ ଆଙ୍ଗ୍ଲୋଇଣ୍ଡିଆନ୍ ପିଲାମାନଙ୍କୁ ଏକତ୍ର କରି କଟକଠାରେ ସଣ୍ଡେସ୍କୁଲ ଆରମ୍ଭ କରିଥିଲେ । ୧୮୨୨ରୁ ୧୮୨୬ ମଧ୍ୟରେ ମିଶନାରୀମାନେ ବାସ କରୁଥିବା ଗୃହରେ ଉପାସନା କାର୍ଯ୍ୟ ହେଉଥିଲା । ୧୮୨୬ ସାଲରେ ତିନକୋଣିଆ ବଗିଚାଠାରେ ଏକ ନୂତନ ଗୀର୍ଜା ଘର ପ୍ରତିଷ୍ଠା କରାଗଲା । ମାତ୍ର ନିର୍ମାଣର ଦୁଇବର୍ଷ ପରେ ଏହି ଗୀର୍ଜାଘରଟି ବନ୍ୟା ଦ୍ୱାରା ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା । କିନ୍ତୁ ଈଶ୍ୱରଙ୍କ କୃପାରୁ ପୁନର୍ବାର ଆଉ ଏକ ଗୀର୍ଜାଘର ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରତିଷ୍ଠା କରାଯାଇ ପାରିଥିଲା । ଏହା ଓଡ଼ିଶାର ପ୍ରଥମ ପ୍ରୋଟେଷ୍ଟାଣ୍ଟ ଚର୍ଚ୍ଚ (First Protestant Church) ଥିଲା । ମାତ୍ର ଜନସଂଖ୍ୟା ବୃଦ୍ଧି ହେତୁ ୧୮୭୨ ସାଲରେ ମିଶନରୋଡ଼ଠାରେ ଏକ ନୂତନ ଗୀର୍ଜାଘର ନିର୍ମାଣ ପାଇଁ କାର୍ଯ୍ୟ ଆରମ୍ଭ ହେଲା ଏବଂ ୧୮୭୪ ସାଲରେ ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏହି ଗୃହ ନିର୍ମାଣ ପାଇଁ ଜନ୍ ଫ୍ରେଡେରିକ ବୋନଡ଼ (John Frederick Bond) ସବୁଠାରୁ ଅଧିକ ଅର୍ଥ ଦାନ କରିଥିଲେ । ସ୍ଥାନୀୟ ଖ୍ରୀଷ୍ଟୀୟାନ ଭାଇମାନେ ମଧ୍ୟ ଏଥିପାଇଁ ସାହାଯ୍ୟ କରିଥିଲେ । ଏହି ଗୃହନିର୍ମାଣ ପାଇଁ ପ୍ରାୟ ଏକ ଲକ୍ଷ ପଚିଶ ପଚିଶ ଟଙ୍କା ଖର୍ଚ୍ଚ ହୋଇଥିଲା ବୋଲି ହିସାବରୁ ଜଣାଯାଏ ।

ରେଭରେଣ୍ଡ ମେମ ସାହୁ, ବାବୁ ଅନାମ ଚନ୍ଦ୍ର ଦାସ, ରେଭ୍.ଦୋଳ ପାଣ୍ଡି, ବାବୁ ସଲୋମନ ଦାସ, ବାବୁ ମୁକୁନ୍ଦ ଦାସ, ବାବୁ ଶାମସନ ଚନ୍ଦ୍ର ଦାସ, ରେଭ୍ ଅକ୍ଷୟ କୁମାର ଦାସ, ବାବୁ ମିହିର ଲାଲ ଜ ଯାଚକ ଏବଂ ଡକ୍ଟର ଲକ୍ଷ୍ମୀ ରାଉତ ଇତ୍ୟାଦିଙ୍କ ବାପଟିଷ୍ଟ ଚର୍ଚ୍ଚ ପ୍ରତିଦାନ ଓ ପରିଶ୍ରମ ଆଜି ପର୍ଯ୍ୟନ୍ତ ସ୍ମରଣୀୟ ହୋଇ ରହିଛି ।

କଟକର ବାପଟିଷ୍ଟ ଚର୍ଚ୍ଚ ମାତୃମଣ୍ଡଳୀ ବା Mofher Church ଭାବରେ ଓଡ଼ିଶାରେ ପରିଚିତ । ଗଙ୍ଗାଧର ଷଡଙ୍ଗୀ ନାମରେ ଟାଙ୍ଗୀ ନିକଟରେ ବାସ କରୁଥିବା ଜଣେ ଓଡ଼ିଆ ଶିକ୍ଷିତ ବ୍ରାହ୍ମଣ ବ୍ୟକ୍ତି ପ୍ରଥମେ ଜୁବନ ବା ଜଳଦୀକ୍ଷା ଗ୍ରହଣ କରିଥିଲେ । ସେ ୧୮୨୮ ସାଲ ମାର୍ଚ୍ଚ ମାସ ୨୩ ତାରିଖ ଦିନ ଲେସି ସାହେବଙ୍କ ଦ୍ୱାରା ମହାନଦୀରେ ଜୁବନ ଗ୍ରହଣ କରି ଖ୍ରୀଷ୍ଟିୟାନ ରୂପେ ପରିଚିତ ହୋଇଥିଲେ । ତାଙ୍କ ସ୍ତ୍ରୀ ମଧ୍ୟ ଜଳଦୀକ୍ଷା ଗ୍ରହଣ କରିଥିଲେ । ଏହାପରେ କଟକର ଶେଷ ମରହଟ୍ଟା ରାଜାଙ୍କ ପୁଅ ରାମଚନ୍ଦ୍ର ଜୟାଚକ ୧୮୨୯ ସାଲ ମେ ମାସ ୧ ତାରିଖରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ଦୈତାରି ନାଏକ, ଶିବ ପାତ୍ର, କାନେଇ ପାତ୍ରୀ, କରୁଣା ମାହାନ୍ତି, ରଘୁ ଦାସ ଏବଂ ନିଲୋଚନ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାରେ ବାପଟିଷ୍ଟ ମିଶନ ପ୍ରତିଷ୍ଠା ହେବାର ୨୦ ବର୍ଷ ମଧ୍ୟରେ ପ୍ରାୟ ଏକ ହଜାର ବ୍ୟକ୍ତି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ୧୮୬୯ରେ କଟକ ତେଲୁଗୁ ବାପଟିଷ୍ଟ ଚର୍ଚ୍ଚ ଶ୍ରୀ ଦାସ ଅନ୍ତର୍ବେଦୀଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ତେଲୁଗୁ ଭାଷା ଓଡ଼ିଆ ଭାଷାଠାରୁ ସମ୍ପୂର୍ଣ୍ଣ ଭିନ୍ନ ଯୋଗୁଁ ସେମାନେ ପେନ୍‌ସନ ଲେନ୍‌ଠାରେ ତାଙ୍କର ଉପାସନା କାର୍ଯ୍ୟ କଲେ । କିନ୍ତୁ ପରେ ତିନକୋଣିଆ ବଗିଚାଠାରେ ତେଲଗୁମାନଙ୍କର ଉପାସନା କେନ୍ଦ୍ର କରାଯାଇଥିଲା ଏବଂ ଏହା ତେଲଗୁ ବାପଟିଷ୍ଟ ଚର୍ଚ୍ଚ ନାମରେ ପରିଚିତ ହେଲା । ବର୍ତ୍ତମାନ ତେଲୁଗୁ ଉପାସନା ମିଶନରୋଡ଼ର ଗୀର୍ଜା ଗୃହରେ ହେଉଛି । ଶ୍ରୀ ଦାସ ଅନ୍ତର୍ବେଦୀ ଏହି ତେଲୁଗୁ ଗୀର୍ଜାର ପ୍ରଥମ ପରିଚାଳକ ଥିଲେ । ତାଙ୍କ ପରେ ଶ୍ରୀ ପୁରୁଷୋତ୍ତମ ଚୌଧୁରୀ ପରିଚାଳକ ହୋଇଥିଲେ ।

ବାପଟିଷ୍ଟ ଚର୍ଚ୍ଚ ବ୍ୟତୀତ ଅନ୍ୟ କେତେକ ଚର୍ଚ୍ଚ ମଧ୍ୟ କଟକଠାରେ ସ୍ଥାପିତ ହୋଇଅଛି । ତାହାର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

### ଚର୍ଚ୍ଚ ଅଫ୍ ଗଡ୍—(Church of God) :

ଆମେରିକା ନିବାସୀ ଖ୍ରୀଷ୍ଟ ଧର୍ମ ପ୍ରଚାରକମାନେ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ଖ୍ରୀଷ୍ଟ ଧର୍ମ ପ୍ରଚାର ସଂସ୍ଥା ଗଠନ କରିଥିଲେ । ଯାହାର ନାମ Church of God Association of India ରଖାଗଲା । ଜନ୍ ଏ. ଡ଼. ଖାନ ଏହାର ସଭାପତି ଥିଲେ । ସେ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ ।

୧୯୦୫ ସାଲରେ ଜନ୍ ଏ: ଡ଼: ଖାନ କଲିକତାରୁ କଟକ ଆସି ଚର୍ଚ୍ଚ ଅଫ୍ ଗଡ଼ ଆସୋସିଏସନର ଏକ ଶାଖା କଟକରେ ସ୍ଥାପନ କରି ଖ୍ରୀଷ୍ଟ ଧର୍ମ ପ୍ରଚାର କାର୍ଯ୍ୟ ଆରମ୍ଭ କରି ସମ୍ମିଳିତ ଉପାସନା ପରିଚାଳନା କଲେ । ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ଓ ଅରୁଣ ହୃଦୟ ସେଥି କଲିକତାରୁ କଟକ ଆସି ଖାନ୍‌ଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କଲେ । ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ଜଣେ ଉତ୍ତମ ଗାୟକ ଏବଂ ଅନୁବାଦକ ଥିଲେ ।

ସେହିସମୟରେ କଟକ ନିବାସୀ ଫ୍ରେଡ଼େରିକ୍ ବଣ୍ଡ ଓ ରବର୍ଟଲିଙ୍କର କ୍ୟାଥଲିକ ଗୀର୍ଜା ପାର୍ଶ୍ବରେ ଏ ୭. ୩୮୫ ଡେସିମିଲ୍ ଜମିଥିଲା । ତାହା ବସୁ ବଲ୍ଲଭ ଘୋଷ ବାହାଦୂର ୨୫-୮-୧୮୯୮ ତାରିଖରେ ସେମାନଙ୍କଠାରୁ କ୍ରୟ କରିଥିଲେ । ଏହା ୧୦-୨-୧୯୧୧ ତାରିଖର ରେଜେଷ୍ଟ୍ରୀ ବିକ୍ରି ଖରିଦ ଦଲିଲରୁ ଜଣାଯାଏ । ଏହି ଜମିରେ ଏକ ସୁନ୍ଦର ବାସଗୃହ ଓ ବଗିଚାଥିଲା । ଏହି ଗୃହଟି ଏକ ଉଚ୍ଚ ଭୂମି ଉପରେ ନିର୍ମିତ ହୋଇଥିବାରୁ ଏହାକୁ "ମାଉଣ୍ଟ ହାଉସ" ନାମ ଦିଆଯାଇଥିଲା । ବାବୁ ରାମକୃଷ୍ଣ ଘୋଷ ଓ ବାବୁ ନିତ୍ୟାନନ୍ଦ ଘୋଷ ଉକ୍ତ ଜମି ଉତ୍ତରାଧିକାରୀ ସୂତ୍ରେ ପାଇଥିଲେ । Church of God Association ମେମାନଙ୍କ ନିକଟରୁ ସମୁଦାୟ ଏ ୭. ୩୮୫ ଡେ: ଜମି ନଅହଜାର ଟଙ୍କାରେ ଖରିଦ କଲେ । ଏହି ବିକ୍ରୀ ଖରିଦ ଦଲିଲ କଲିକତା ରେଜେଷ୍ଟ୍ରେରୀ ଅଫିସରେ ୧୯୧୧ ମସିହାରେ ୪୦୫ ନମ୍ବର ଦଲିଲ ଭାବରେ ରେଜେଷ୍ଟ୍ରେରୀ ହୋଇଥିଲା ।

ଜନ୍ ଏ. ଡ଼. ଖାନ ନିଜ ପରିବାର ସହିତ ଏଠାରେ ବାସ କଲେ । ମାତ୍ର ଏହି ବାସଗୃହ ଅତ୍ୟନ୍ତ ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଥିବାରୁ ଏବଂ ତାହା ବାସୋପଯୋଗୀ ହୋଇ ନଥିବାରୁ ଖାନ୍ ଭାଇ ଆପଣା ପରିବାର ସହିତ କଲିକତାରେ ବାସ କଲେ । ଏଠାରେ ଉଲ୍ଲେଖ କରାଯାଏ ଯେ ଏ· ଡ଼· ଖାନ୍‌ଙ୍କୁ କଟକରେ Bro-khan ବା ଖାନ୍‌ଭାଇ ବୋଲି ସମସ୍ତେ ଡାକୁଥିଲେ । ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ବିବାହ କରି କଟକରେ ବାସକଲେ ।

ଇତି ମଧ୍ୟରେ Church of God ମଣ୍ଡଳୀର ସଭ୍ୟ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ସେମାନେ ଉକ୍ତ ଏ ୭. ୩୮୫ ଡେ: ଖାସମାଲ ଜମି କଟକ କଲ୍ଲେକ୍ଟରଙ୍କ ନିକଟରୁ ୧-୪-୧୯୨୮ ତାରିଖରେ ବାର୍ଷିକ ଟ ୭୦-୩-୦ ଖଜଣାରେ ପଟ୍ଟା ନେଲେ । ତତ୍‌ପରେ ମଣ୍ଡଳୀ ପରିଚାଳନା ନିମନ୍ତେ ଏକ ସମ୍ବିଧାନ ପ୍ରସ୍ତୁତ କରାଯାଇ ୧୫-୧-୧୯୯୪ ତାରିଖରେ Societies Registration Act ଅନୁସାରେ Church of God Congregation, Cuttack ନାମରେ ରେଜେଷ୍ଟ୍ରି କରାଗଲା । ଉକ୍ତ ମଣ୍ଡଳୀର ସଭ୍ୟମାନଙ୍କ ମଧ୍ୟରେ ବେଞ୍ଜାମିନ ମହାନ୍ତି, ତାଙ୍କର ପୁତ୍ର ଯୋନାଥନ ମହାନ୍ତି, ପୂର୍ଣ୍ଣଚନ୍ଦ୍ର ଘୋଷ, ପ୍ରସନ୍ନ ଚନ୍ଦ୍ର ବେହେରା, ଆଶ୍ଚର୍ଯ୍ୟ ବାଞ୍ଛାନିଧି ସାହୁ, ପୂର୍ଣ୍ଣଚନ୍ଦ୍ର ମଣ୍ଡଳ, କୁମାରୀ ସନତ ମଣ୍ଡଳ, କୁମାରୀ ନଳିନୀ ମଣ୍ଡଳ, ଅରୁଣ ହୃଦୟ ସେଥ୍‌ଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ମଣ୍ଡଳୀର ସଭ୍ୟସଂଖ୍ୟା ବୃଦ୍ଧି ପାଇବାରୁ ୧୯୨୮ ସାଲରେ କ୍ୟାଣ୍ଟୋନ୍‌ମେଣ୍ଟ ରାସ୍ତା ପାର୍ଶ୍ବରେ ଗୋଟିଏ ପକ୍କା ଗୃହ ରବିବାର ଉପାସନା ଏବଂ ଅନ୍ୟାନ୍ୟ ଧର୍ମ ସମ୍ବନ୍ଧୀୟ ସଭା କରିବା ନିମନ୍ତେ ନିର୍ମାଣ କରାଗଲା । ଅବଶିଷ୍ଟ ଜମି ଖ୍ରୀଷ୍ଟ କଲେଜ କରିବା ନିମନ୍ତେ ଗ୍ରହଜାର ଟଙ୍କାରେ କଟକ ଖ୍ରୀଷ୍ଟିଆନ ଏଡ୍‌ୁକେଶନ ବୋର୍ଡ଼କୁ (Cuttack Christian Education Board) ହସ୍ତାନ୍ତର କଲେ । ମିଶନେରୀମାନେ ଅନାଥ ବାଳକ ବାଳିକା-ମାନଙ୍କ ନିମନ୍ତେ ୧୯୧୪ ସାଲରେ କଟକର ସେଲଟର ଛକ ନିକଟରେ ଏକ ଅନାଥାଶ୍ରମ ସ୍ଥାପନ କରିଥିଲେ ଯାହା ଆଜି ପର୍ଯ୍ୟନ୍ତ ପରିଚାଳିତ ହେଉଛି ।

## ରୋମାନ କ୍ୟାଥଲିକ ଚର୍ଚ୍ଚ—(Roman Catholic Church) :

ରୋମାନ୍ କ୍ୟାଥଲିକ୍ ଚର୍ଚ୍ଚ ମଧ୍ୟ ଖ୍ରୀଷ୍ଟଧର୍ମର ଏକ ଅଂଶ ଅଟେ । ସେମାନେ ଯୀଶୁଖ୍ରୀଷ୍ଟଙ୍କ ମାତା ମେରିଙ୍କୁ ବିଶ୍ୱାସ କରନ୍ତି । ୧୮୪୫ ସାଲରେ ସେମାନେ କଟକଠାରେ ତାଙ୍କର ଗୀର୍ଜାଗୃହ ପ୍ରତିଷ୍ଠା କରିଥିଲେ । ଇଉରୋପୀୟ, ଇଉରେସିଆନ୍ ଏବଂ ମାନ୍ଦ୍ରାଜର କେତେକ ବ୍ୟକ୍ତି ଏହି ଚର୍ଚ୍ଚର ସଭ୍ୟ ଅଟନ୍ତି । ଏହା ଏକ ସ୍କୁଲ ପରିଚାଳନା କରେ । ଏହାର ନାମ ପୂର୍ବେ ସେଣ୍ଟ ଯୋସେଫ ସ୍କୁଲଥିଲା । ପୂର୍ବେ ଏହି ସ୍କୁଲରେ ପୁଅ ଝିଅ ଉଭୟ ନାମ ଲେଖାଇ ପାରୁଥିଲେ । ମାତ୍ର ବର୍ତ୍ତମାନ କେବଳ ଝିଅମାନେ ଏହି ସ୍କୁଲରେ ନାମ ଲେଖାଉଛନ୍ତି । ତେଣୁ ଏହାର ନାମ ସେଣ୍ଟ୍ ଯୋସେଫ୍ ଗାର୍ଲସ ହାଇସ୍କୁଲ ରଖାଯାଇଛି ।

ସ୍କୁଲ ବ୍ୟତୀତ ଏକ ଅନାଥାଶ୍ରମ ଏହି ମିଶନ ଦ୍ୱାରା ପରିଚାଳିତ ହେଉଛି । ଏହା ୧୮୮୦ ମସିହାରେ ନିର୍ମିତ ହୋଇଥିଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହି କ୍ୟାଥଲିକ ମିଶନର ବାପ୍ଟିଷ୍ଟ ମିଶନ ପରି ବିଶେଷ କାର୍ଯ୍ୟକ୍ଷମ ନଥିଲା । ପ୍ରଥମେ ପର୍ତ୍ତୁଗୀଜମାନେ କଟକ ଠାରେ କ୍ୟାଥଲିକ ଚର୍ଚ୍ଚ ପ୍ରତିଷ୍ଠା କରିଥିଲେ ବୋଲି କେତେକ ବିଶ୍ୱାସ କରନ୍ତି । କଟକର କାଠଯୋଡ଼ି ନଦୀ କୂଳରେ ଏହି ପର୍ତ୍ତୁଗୀଜ ବଣିକମାନେ ଚର୍ଚ୍ଚ ପ୍ରତିଷ୍ଠା କରିଥିଲେ । କିନ୍ତୁ ଏହାର କିଛି ବର୍ଷ ପରେ କଟକ ଚଣ୍ଡୀ ନିକଟରେ ଏକ ନୂତନ ଗୀର୍ଜା ଗୃହ ପ୍ରତିଷ୍ଠା କରା ଯାଇଥିଲା ।

## ପେଣ୍ଟିକଷ୍ଟ ଚର୍ଚ୍ଚ (Pentcost Church) :

ପେଣ୍ଟିକଷ୍ଟ ଚର୍ଚ୍ଚ ଏକ ଭିନ୍ନ ଧର୍ମ ନୁହେଁ । ଏହା ମଧ୍ୟ ଖ୍ରୀଷ୍ଟଧର୍ମର ଏକ ଅଂଶ ବିଶେଷ । ସେମାନେ ମଧ୍ୟ ଯୀଶୁଖ୍ରୀଷ୍ଟ ଓ ବାଇବେଲକୁ ବିଶ୍ୱାସ କରନ୍ତି ।

୧୯୪୪ରେ ଭାଇମାସୀ ଉତ୍ତର ପ୍ରଦେଶରୁ ଆସି କଟକ ଠାରେ ପେଣ୍ଟିକଷ୍ଟ ଗୀର୍ଜା ଆରମ୍ଭ କରିଥିଲେ । ୧୯୪୫ ମସିହାରେ ଭାଇ କେ: ଜେ: ଫିଲିପ୍ସ ତ୍ରାଭାନକୋର୍‌ରୁ ଆସି ପବିତ୍ରଆତ୍ମାଙ୍କ ବିଷୟରେ ପ୍ରଚାର କରିଥିଲେ । ସେମାନେ ପ୍ରଥମେ ବାପଟିଷ୍ଟ ଚର୍ଚ୍ଚରେ ଉପାସନା କାର୍ଯ୍ୟ ଆରମ୍ଭ କରିଥିଲେ । କିନ୍ତୁ ଅସୁବିଧା ଯୋଗୁଁ ସେମାନେ ସୂତାହାଟରୁ ମନୋହାରିଣୀ ପାତ୍ରଙ୍କ ଗୃହରେ ୧୯୪୬ ସାଲରୁ ଉପାସନା କାର୍ଯ୍ୟ ଆରମ୍ଭ କଲେ । କିନ୍ତୁ ୧୯୪୯ ରେ ଏହା ସୂତା ହାଟରୁ ମକରବାଟ୍‌କୁ ଉଠିଯାଇଥିଲା ଏବଂ ଏହା ପରଠାରୁ ତାହା ଏବନ ଏଜର (Eben Ezer) ନାମରେ ପରିଚିତ ହେଲା । ବିଷ୍ଣୁ ପଟ୍ଟନାୟକ ଏବଂ ଆଲବର୍ଟ ଦାସ ଏହି ଦୁଇ ଜଣ ବ୍ୟକ୍ତି ପ୍ରଥମେ ପେଣ୍ଟିକଷ୍ଟ ଚର୍ଚ୍ଚର ସଭ୍ୟ ହୋଇଥିଲେ । ଏହାପରେ ଲାଲ ମୋହନ ପଟ୍ଟନାୟକ ଓ ବ୍ରଜାନନ୍ଦ ମହାନ୍ତି ବ୍ରହ୍ମପୁରରୁ କଟକକୁ ଆସି ପେଣ୍ଟିକଷ୍ଟ ଉପାସନାରେ ଯୋଗ ଦେଇଥିଲେ ।

## ଚର୍ଚ୍ଚ ଅଫ୍ ଇଂଲଣ୍ଡ (Church of England) :

ଅନ୍ୟାନ୍ୟ ଚର୍ଚ୍ଚ ପରି ଚର୍ଚ୍ଚ ଅଫ୍ ଇଂଲଣ୍ଡ ମଧ୍ୟ କଟକ ଠାରେ ଅବସ୍ଥିତ । କ୍ୟାଣ୍ଟନମେଣ୍ଟ ରୋଡ଼ଠାରେ ସେମାନେ ଏକ ସୁନ୍ଦର ଗୃହ ଉଚିତ ମୂଲ୍ୟରେ ପାଇ ସେଠାରେ ରବିବାର ଉପାସନା କାର୍ଯ୍ୟ ଆରମ୍ଭ କରିଥିଲେ । କେବଳ ଇଉରୋପୀୟ ବ୍ୟକ୍ତିମାନେ ଏହି ଉପାସନା କାର୍ଯ୍ୟରେ ଯୋଗ ଦେଇ ପାରୁଥିଲେ । ତେଣୁ ଏହି ଗୀର୍ଜାକୁ High church ବା Anglican church ମଧ୍ୟ କୁହାଗଲା ।

ବାଇବଲ ହେଉଛି ଖ୍ରୀଷ୍ଟୀୟମାନଙ୍କର ପବିତ୍ର ଗ୍ରନ୍ଥ । ଯଦିବା ଏହି ଧର୍ମର ବିଭିନ୍ନ ଶାଖା ଦେଖିବାକୁ ମିଳେ ସମସ୍ତେ କିନ୍ତୁ ବାଇବେଲକୁ ବିଶ୍ୱାସ କରନ୍ତି । ସେ ଯାହାହେଉ ଖ୍ରୀଷ୍ଟ ଧର୍ମ ଅଣ ଖ୍ରୀଷ୍ଟୀୟାନ ଭାଇ ଓ ଭଉଣୀଙ୍କ ମଧ୍ୟରେ ନୂତନ ପ୍ରେରଣା ସୃଷ୍ଟି କରିବାରେ ସାହାଯ୍ୟ କରିଅଛି ।



# କଟକରେ ବ୍ରାହ୍ମ ସମାଜ

ଶ୍ରୀ ନଗେନ୍ଦ୍ର ନାଥ ମହାପାତ୍ର

ବ୍ରାହ୍ମ ଧର୍ମକୁ ଗ୍ରହଣ କରି, ତାର ନୀତି ନିୟମକୁ ଅକ୍ଷରେ ଅକ୍ଷରେ ପାଳି, ଯେଉଁମାନେ ତାର ପ୍ରସାର ଦିଗରେ ଆଗେଇଲେ ସେମାନେ ହେଲେ ବ୍ରାହ୍ମ । ବ୍ରାହ୍ମ ବୋଇଲେ, ଯେଉଁମାନେ ଈଶ୍ୱର ଅଛନ୍ତି ବୋଲି ବିଶ୍ୱାସ କରନ୍ତି, ତାଙ୍କୁ ନିଜର ଅନ୍ତର ମଧ୍ୟରେ କେବଳ ପୂଜା କରନ୍ତି, ପରକାଳକୁ ବିଶ୍ୱାସ କରନ୍ତି, ସମଗ୍ର ନରନାରୀଙ୍କୁ ଭାଇ ଭଉଣୀ ଭାବେ ଦେଖନ୍ତି, ଦେବ ଦେବୀଙ୍କୁ ବା କୌଣସି ବ୍ୟକ୍ତିଙ୍କୁ ଈଶ୍ୱରଙ୍କ ଅବତାର ବୋଲି ଜ୍ଞାନ କରନ୍ତି ନାହିଁ, ସେହିମାନେ ହିଁ ପ୍ରକୃତରେ ବ୍ରାହ୍ମ । ତାଙ୍କର ସମାଜକୁ ବ୍ରାହ୍ମ ସମାଜ ବୋଲି କୁହା ଯାଇଛି ।

ଆମ ଭାରତ ବର୍ଷରେ ଫିରିଙ୍ଗି ଶାସନ କାଳରେ ପାଦ୍ରୀମାନେ, ଧନ, ଚାକିରି, ଜମିବାଡ଼ି, ସୁନ୍ଦରୀ ସ୍ତ୍ରୀର ଲୋଭ ଦେଖାଇ, ଜାତି ଧର୍ମ ବିଗ୍ଭରକୁ ନ ନେଇ ସଭିଙ୍କୁ ଖ୍ରୀଷ୍ଟାନ କରିବାକୁ ଲାଗି ପଡ଼ିଲେ । ସେଇ ଲୋଭରେ ବହୁତ ଲୋକ ସେଇ ଧର୍ମକୁ ଆଦରି ଗଲେ ସେତେବେଳେ । ଫଳରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଚିନ୍ତା କରିବାକୁ ପଡ଼ିଲା; ଯଦି ପାଦ୍ରୀମାନେ ଏହିପରି ଅତ୍ୟାଚାର ଚଳାଇବେ, ତେବେ ହିନ୍ଦୁଙ୍କର ସତ୍ତା ଆଉ ରହିବ ନାହିଁକି ?

ଏହି ଚିନ୍ତାରେ ପ୍ରଥମେ ୧୮୨୮ ଖ୍ରୀଷ୍ଟାବ୍ଦରେ ରାଜା ରାମମୋହନ ରାଏ, ଅତ୍ୟନ୍ତ ବ୍ୟସ୍ତ ହୋଇ, ଏହାର ପ୍ରତିକାର ପାଇଁ ପିତୁଳା ପୂଜା ବିନା, ଜାତି ଧର୍ମକୁ ନ ବିଗ୍ଭରି ଅଳ୍ପ କେତେକ ନୀତି ନିୟମରେ ଏକେଶ୍ୱର ବାଦର ପ୍ରଚାର ଆରମ୍ଭରେ ଲାଗି ପଡ଼ିଲେ କଲିକତା ଚିତ୍ପୁର ରୋଡ଼ ଠାରେ । ତାଙ୍କର ଲକ୍ଷ୍ୟ ହେଲା ଏହି ମାନସିକ ପୂଜା ଆରାଧନା ବା ବ୍ରାହ୍ମଧର୍ମ ପ୍ରଚାର କରି ପାଦ୍ରୀମାନଙ୍କର ଅତ୍ୟାଚାର ସମୂଳେ ନାଶ କରିବେ ।

ପ୍ରାୟ ଊନବିଂଶ ଶତାବ୍ଦୀ ଶେଷ ଓ ବିଂଶ ଶତାବ୍ଦୀର ଆରମ୍ଭର ମଧ୍ୟ ଭାଗରେ, ଅନ୍ତତଃ ଊନବିଂଶ ଶତାବ୍ଦୀରେ ରାଜା ରାମମୋହନ ରାଏ ନିଷ୍ଠାର ସହ ଲାଗି ପଡ଼ିଲେ । ତାଙ୍କ ସହିତ ଦେବେନ୍ଦ୍ର ନାଥ ଠାକୁର, ବ୍ରହ୍ମାନନ୍ଦ କେଶବ ଚନ୍ଦ୍ର ସେନ, ପଣ୍ଡିତ ଶିବନାଥ

ଶାସ୍ତ୍ରୀ ଏବଂ ରାମଚନ୍ଦ୍ର ବିଦ୍ୟାବାଗୀଶ ପ୍ରଭୃତି କେତେଜଣ ଗୁଣୀ ବିଦ୍ୱାନ ଲୋକ ମିଶ୍ର ପୂର୍ଣ୍ଣ ପ୍ରାଣରେ ଏହି ଧର୍ମ ପ୍ରଚାରରେ ଲାଗି ପଡ଼ିଲେ ।

ବଙ୍ଗଳା ପ୍ରଦେଶ ବ୍ୟତୀତ ଅନ୍ୟ କେତେକ ପ୍ରଦେଶରେ ଏହାର ପ୍ରସାର ମଧ୍ୟ ହୋଇଚାଲି ଏଇମାନଙ୍କ ଚେଷ୍ଟାରେ । ଆମ ଉତ୍କଳକୁ ମଧ୍ୟ ଛାଡ଼ି ପାରି ନାହାନ୍ତି । ଛାଡ଼ିବେ ବା କପରି ? ଯେଉଁ ମାଟିରେ ଜଗତର ନାଥ ସବୁ ଧର୍ମର ସଂଯୋଗ କାରି ମୂର୍ତ୍ତି ଜଗନ୍ନାଥ ବିରାଜିତ, ଯାହାର ସବୁ ବଡ଼, ବଡ଼ ଆହୁରି ଉତ୍କଳମଣିଙ୍କ ଭାଷାରେ ସଂସ୍କୃତ ସରୋବରରେ ଉତ୍କଳ କମଳ ଘରି, ସେଇ କମଳକୁ କିଏ ନ ଆଦରିବ ? ସବୁ ଧର୍ମ, ସବୁ ସମ୍ପ୍ରଦାୟ ଏଇଠି ଠୁଳ ହୋଇଛନ୍ତି । ବ୍ରାହ୍ମ ଧର୍ମ ବା ନ ଆସିବେ କପରି ? ଓଡ଼ିଆ ପୁଅ ବଡ଼ ଉଦାର ଓ ମହତ୍ତ୍ୱ । ଯିଏ ଯେତେବେଳେ ଆସିଲେ ତାଙ୍କୁ କୋଳେଇ ନେଲେ ବିନା ଦ୍ୱିଧାରେ । ଫଳରେ ଆମ ଓଡ଼ିଶାରେ ଦେଉଳ, ବୌଦ୍ଧ ବିହାର, ଜୈନ ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ମହିମା ଗାଦି, ମିଶନ, ମିଶନାରି ସଂସ୍ଥା, ଆହୁରି କେତେ କେତେ ସମାଜ ଓ ସଂସ୍ଥା ଛତୁ ଫୁଟିଲା ପରି ନିଜ ନିଜ ଆସ୍ଥାନ ଜମାଇଲେ ।

କଟକର ଓଡ଼ିଆ ବଜାରରେ ଏକ ଉଚ୍ଚ ଜାଗାରେ ଗୋଟିଏ ଏକ ମହଲା କୋଠାଘର ୧୮୬୯ ଖ୍ରୀଷ୍ଟାବ୍ଦରେ ତିଆରି ହୋଇଥିଲା । ତାର ଉପରେ ଲେଖାଅଛି "ଓଁ ବ୍ରହ୍ମ କୃପାହିଁ କେବଳମ୍" ଏବଂ ଉତ୍କଳ ବ୍ରାହ୍ମ ସମାଜ । ଚାରିପାଖ ପାଚେରି ଘେରା ଏକମାଣ ଜମି ଉପରେ ଏହି କୋଠିଟି ଠିଆ ହୋଇଛି । ଏଇଟି ଠିକ୍ ଗଙ୍ଗାମନ୍ଦିର ବନ ପୋଖରୀର ପଶ୍ଚିମ ପଟ କୂଳରେ ରହିଛି । ଏହି ଘରଟି ହେଲା ବ୍ରାହ୍ମ ଧର୍ମର ପୀଠସ୍ଥଳୀ ଓ ଉତ୍କଳର ବ୍ରାହ୍ମ ସମାଜ ଏବଂ ବ୍ରାହ୍ମ ସଂସ୍କୃତିର କେନ୍ଦ୍ରସ୍ଥଳୀ ।

ସେତେବେଳେ ଏପରି ସମାଜରେ ଯୋଗଦେଲେ ଆମର ଏଇ ମାଟିର ବିଶିଷ୍ଟ ଶିକ୍ଷାବିତ୍ ଜ୍ଞାନୀ ଗୁଣୀ ପ୍ୟାରୀମୋହନ ଆଚାର୍ଯ୍ୟ, ଭକ୍ତକବି ମଧୁସୂଦନ ରାଓ, ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟ ହେଲେ ସେମାନଙ୍କର ମନ୍ତ୍ରଦାତା । ସଭିଏ ଲାଗି ପଡ଼ିଲେ ଏହାର ଉନ୍ନତି ପଥରେ ଓ ହିନ୍ଦୁ ଧର୍ମର ମର୍ଯ୍ୟାଦା ରକ୍ଷା ପାଇଁ । ବାଗ୍ମୀ ବିଶ୍ୱନାଥ କର ମଧ୍ୟ ଯୋଗ ଦେଲେ ପରେ ।

ଏହି ଓଡ଼ିଆ ବଜାର ପୀଠସ୍ଥଳୀରେ ଉପାସନା ଶାସ୍ତ୍ର ଆଲୋଚନା ଚାଲିଲା । ଜାତି ଧର୍ମ ବିଚାରକୁ ନ ନେଇ ଯିଏ ଚାହିଁଲା ତାକୁ ଏହି ଧର୍ମରେ ସାମିଲ କରାଗଲା । କ୍ରମେ କ୍ରମେ ଏଥିରେ ସଭ୍ୟ ସଂଖ୍ୟା ବଢ଼ିବାକୁ ଲାଗିଲେ ।

ଉପାସନା ପ୍ରତି ରବିବାରରେ କରାଯାଏ । ପ୍ରାୟ ଦୁଇଶହ ସଭ୍ୟ ଯେଉଁମାନେ ଏହି ଜଗତର ଏକମାତ୍ର ସୃଷ୍ଟିକର୍ତ୍ତା, ପାଳନ କର୍ତ୍ତା, ସର୍ବବ୍ୟାପୀ, ସର୍ବାଶ୍ରୟ ନିରାକାର, ସର୍ବଶକ୍ତିମାନ, ଆନନ୍ଦମୟ ପରଂବ୍ରହ୍ମଙ୍କ ଆଶ୍ରୟ କଲେ ସେଇମାନେହିଁ ହେଲେ ବ୍ରାହ୍ମଧର୍ମୀ । ମଣିଷ ମଧ୍ୟରେ ଭ୍ରାତୃତ୍ୱ ସ୍ଥାପନ କରିବାର ଚେଷ୍ଟା, ଅଦ୍ୱିତୀୟ ନିରାକାର ପରଂବ୍ରହ୍ମଙ୍କୁ ଫୁଲଚନ୍ଦନ ପ୍ରଭୃତି ଦ୍ୱାରା ପୂଜା ନକରି ହୃଦୟର ଭକ୍ତିପ୍ରେମ ଓ ପବିତ୍ରତା ଦ୍ୱାରା ପୂଜା କରିବା ହେଲା ପ୍ରଧାନ ମତ ।

ମୋଟ ଉପରେ ଈଶ୍ୱରଙ୍କ ସ୍ୱରୂପ ଆତ୍ମାରେ ଉଦ୍ଭବ ହେବ, ମନ, ପ୍ରେମ ଓ ଭକ୍ତିରେ ପୂର୍ଣ୍ଣ ହେବ, ଯାହାଦ୍ୱାରା ଆତ୍ମା ଅନିତ୍ୟ ବିଷୟ ଚିନ୍ତା, ଏବଂ ପାପ ଓ ମାୟାରୁ ମୁକ୍ତ ହେବ ଓ ନିରାକାର ଈଶ୍ୱରଙ୍କୁ ପରମଗତି, ପରମଧନ, ପରମ ଆନନ୍ଦ ଜାଣି ତାଙ୍କୁ ଉପାସନା କରି ଉଚ୍ଚ ଆଦର୍ଶ ଦେଖାଇ ପାରିବ । ଯେଉଁ କାର୍ଯ୍ୟ ଦ୍ୱାରା ନିଜର, ନିଜ ପରିବାରର, ନିଜଗ୍ରାମର, ନିଜ ଦେଶର ଓ ସମଗ୍ର ଦେଶର କଲ୍ୟାଣ ହେବ ତାହା ବ୍ରହ୍ମଙ୍କର ପ୍ରିୟ କାର୍ଯ୍ୟ ବୋଲି ଧରି ନେବାକୁ ହେବ ।

ଏହି ବ୍ରାହ୍ମ ସମାଜର ଉପାସନାକୁ ଚାରିଭାଗରେ ବିଭକ୍ତ କରାଯାଇଛି । ଯଥା—

**ଉଦ୍‌ବୋଧନ**—ମନକୁ ସ୍ଥିର ରଖି ଚିନ୍ତା ଶୂନ୍ୟ ହୋଇ ଧର୍ମ ଭାବନା କରି ଦୟା ଓ ମହିମା ପ୍ରଭୃତିର ବର୍ଣ୍ଣନା କରିବା ।

**ଆରାଧନା**—ଈଶ୍ୱରଙ୍କ ସ୍ୱରୂପକୁ ଆଲୋଚନା କରି ହୃଦୟର ପ୍ରୀତି ଓ ଭକ୍ତି ତାଙ୍କୁ ଅର୍ପଣ କରିବା ।

**ଧ୍ୟାନ**—ଆରାଧନା କରୁ କରୁ, ଆତ୍ମା ଈଶ୍ୱରଙ୍କଠାରେ ମଗ୍ନ ହୋଇ ତାଙ୍କ ପ୍ରେମ, ପବିତ୍ରତା ଓ ଦୟା ପ୍ରଭୃତିର ଗଭୀର ଭାବରେ ମଜ୍ଜିଯିବା ।

**ପ୍ରାର୍ଥନା**—ନିଜର ମଳିନତା, ଦୁର୍ବଳତା ପାଇଁ ଅନୁତାପ କରି ଈଶ୍ୱରଙ୍କର ସତ୍ତ୍ୱ ଓ କରୁଣାକୁ ପାଥେୟ କରି ପାପ ତାପରୁ ନିସ୍ତାର ପାଇବା ଲାଗି ଗଭୀର ଭାବରେ ତାଙ୍କୁ ଚିନ୍ତା କରିବା ।

ବ୍ରାହ୍ମ ସମାଜର ପ୍ରାର୍ଥନା ସଭାରେ ନିମ୍ନ ଲିଖିତ କେତୋଟି ଶ୍ଳୋକ ପ୍ରାୟ ଗାନ କରାଯାଏ । ତାକୁ ମୂଳମନ୍ତ୍ର ବୋଲି ଧରିଥାନ୍ତି ।

ଉପାସନାର ଗୋଟିଏ ମୂଳମନ୍ତ୍ର ହେଲା—

"ସୁବିଶାଳମିଦଂ, ବିଶ୍ୱ ପବିତ୍ରଂ ବ୍ରହ୍ମ ମନ୍ଦିରମ୍
ଚେତସୁନିର୍ମଳଂ, ସ୍ତୀର୍ଥସତ୍ୟ ଶାସ୍ତ୍ର ମନଶ୍ୱରଂ ।।
ବିଶ୍ୱାସୋ ଧର୍ମ ମୂଳଂହି, ପ୍ରୀତି ପରମ ସାଧନମ୍
ପ୍ରାର୍ଥନାମସ୍ତୁ ବୈରାଗ୍ୟଂ ବ୍ରହ୍ମୈରେବଂ ପ୍ରକୀର୍ତ୍ତ୍ୟତେ ।।"

ଏହାର ଅର୍ଥ ଏହି ବିଶାଳ ବିଶ୍ୱ ପବିତ୍ର ବ୍ରାହ୍ମମନ୍ଦିର ଅଟେ । ସୁନିର୍ମଳ ଚିତ୍ତହିଁ, ତୀର୍ଥ ଏବଂ ସତହିଁ ଶାଶ୍ୱତ ଶାସ୍ତ୍ର । ବିଶ୍ୱାସ ଧର୍ମର ମୂଳ କାରଣ ଏବଂ ପ୍ରୀତି ପରମ ସାଧନ ଅଟେ । ସ୍ୱାର୍ଥ ତ୍ୟାଗ ଦ୍ୱାରାହିଁ ବୈରାଗ ଲାଭହୁଏ, ଏହାହିଁ ବ୍ରହ୍ମବାଣୀ ।

ଏହା ବ୍ୟତୀତ ସମବେତ କଣ୍ଠରେ ଗାୟନ କରାଯାଏ—

"ଅସତୋ ମାଂ ସଦ୍ ଗମୟ
ତମସୋ ମାଂ ଜ୍ୟୋତିର୍ଗମୟ,
ମୃତ୍ୟୋର୍ମା ମାଂ ଅମୃତଂ ଗାମୟ ।"

ପୁଣି ଭକ୍ତକବି ମଧୁସୂଦନ ରାଓଙ୍କର ରଚିତ ଅନେକ ସ୍ତବ ଓ ସ୍ତୁତି ମଧ୍ୟ ଭଜନରେ ସାମିଲ କରିବାକୁ ଛାଡ଼ନ୍ତି ନାହିଁ ।

ସାପ୍ତାହିକ କାର୍ଯ୍ୟକ୍ରମ ଛଡ଼ା ପ୍ରତିବର୍ଷ ଜାନୁୟାରୀ ୨୪ ତାରିଖରେ ଅନୁଷ୍ଠାନର ପ୍ରତିଷ୍ଠା ଦିବସରେ ସମାଜର ସଭ୍ୟଗଣ ଯୋଗଦେଇ ବାର୍ଷିକ ଉତ୍ସବ ପାଳନ କରନ୍ତି । ଭଜନ ଓ ଆଲୋଚନା ଦୁଇଦିନ ପର୍ଯ୍ୟନ୍ତ ଚାଲେ ।

କାଳର ଗତି ଅନୁସାରେ ଅନେକ ପୁରୁଣା ସଭ୍ୟ ଆରପାରିକି ଚାଲିଗଲେଣି । ପୁରୁଣା ସମ୍ପାଦକ ଶ୍ରୀରାମକୃଷ୍ଣ ରାଓଙ୍କ ମୃତ୍ୟୁପରେ ଏହି ସମାଜର ବହୁତ ଅବନତି ଘଟିଲା । ଏପରିକି ସେ ସ୍ଥାନଟି ପିଲାମାନଙ୍କର ପ୍ରାୟ ଖେଳପଡ଼ିଆ ହୋଇଗଲା । ଗୋରୁ ଗାଈଙ୍କର ଚରାଭୂଇଁ ପାଲଟିଗଲା । ସଭ୍ୟମାନେ ଉଦାସୀନ ହୋଇ ପଡ଼ିଲେ । ଏହି ସମୟରେ ମଧ୍ୟ ବଙ୍ଗଳାରେ ଏହି ବ୍ରାହ୍ମସମାଜ ଦୁଇଭାଗ ହୋଇଗଲା । ତାହା ହେଲା ସାଧାରଣ ବ୍ରାହ୍ମସମାଜ, ଓ ଭାରତ ବର୍ଷି ବ୍ରାହ୍ମ ସମାଜ । କେଶବ ସେନ୍ ଷ୍ଟ୍ରିଟରେ ଏହା ଘଟିଗଲା । ମାତ୍ର ଆମ ଓଡ଼ିଶାରେ ତାହା ମୁଣ୍ଡ ଟେକି ପାରି ନଥିଲା, ଏଠିକାର ସଭ୍ୟମାନେ ଏକମନ ଏକ ପ୍ରାଣରେ ସମାଜରେ ରହି ତାହାର କଲ୍ୟାଣ ଦୃଷ୍ଟିରୁ କାମ କରି ଚାଲିଲେ ।

ଏବେ ଶ୍ରୀଯୁକ୍ତ ବିକାଶଚନ୍ଦ୍ର ଦତ୍ତ ସମ୍ପାଦକ ଅଛନ୍ତି । ତାଙ୍କର ଚେଷ୍ଟାରେ ସମାଜର ଉନ୍ନତି ହେଉଛି । ଘରର ଚାରିପଟେ ନାନାପ୍ରକାରର ଗଛ ଲଗାଇ ଜାଗାଟିକୁ ସୁନ୍ଦର ଭାବେ ସେ ଗଢ଼ୁଛନ୍ତି । ସଭ୍ୟମାନଙ୍କୁ ଡକାଇ ପ୍ରାର୍ଥନା ଆଦି କରାଉଛନ୍ତି । ସେହି ସମାଜର ପରିସର ମଧ୍ୟରେ ବିଶିଷ୍ଟ କଳାକାର ଶ୍ରୀଯୁକ୍ତ ଅରୂପ ଲାଲ ଘୋଷ ବସବାସ କରି ସମାଜର ଉନ୍ନତି ପାଇଁ ଚେଷ୍ଟିତ ଅଛନ୍ତି ।



# ଜୋବ୍ରା ଖୁଣ୍ଟି ବା କଟକ ଠେଙ୍ଗା

ଶ୍ରୀ ସତ୍ୟପ୍ରିୟ ମହାପାତ୍ର

ଅନେକ ଲୋକ ଯାହାକୁ କଟକ କହନ୍ତି, ଆଉ ବାକୀ ଲୋକ ଯାହାକୁ ଜୋବ୍ରା ଖୁଣ୍ଟି ବୋଲି କହନ୍ତି । କେତେକ ଲୋକ ତାକୁ ବଣ୍ଟାଘର ଖୁଣ୍ଟ ମଧ୍ୟ କହିଥାନ୍ତି । ବର୍ତ୍ତମାନ କଟକର ପୂର୍ବ କୋଣରେ ମହାନଦୀ କୂଳ ଜୋବ୍ରା ଆନିକଟ ପାଖରେ ମହାନଦୀ ବ୍ୟାରେଜର ଅନତି ଦୂରରେ ଅବସ୍ଥିତ ଥିବା ଉଚ୍ଚତମ ଇଟା ଚୂନ ସିମେଣ୍ଟରେ ନିର୍ମିତ ପ୍ରାୟ ଏକ ଶହ ଫୁଟ ବିଶିଷ୍ଟ ଖମ୍ବକୁ ଲୋକେ ଜୋବ୍ରା ଖୁଣ୍ଟି ନାମରେ ଅଭିହିତ କରନ୍ତି । ମହାନଦୀ ବ୍ୟାରେଜ ତଥା ରିଙ୍ଗ୍ ରୋଡ୍ ଏହି ଖମ୍ବର ଉତ୍ତର ଦିଗରେ ନିର୍ମିତ ହୋଇଛି, ଯଦିଓ ଉକ୍ତ ଖୁଣ୍ଟିର ଅବସ୍ଥିତି କଟକ ସହରର ଦକ୍ଷିଣ ପୂର୍ବ କୋଣ ଅଟେ ।

ଖୁଣ୍ଟ, ଖୁଣ୍ଟି ଏବଂ ଠେଙ୍ଗା, ବାଡ଼ି ଭିତରେ ଥିବା ଅର୍ଥଗତ ପାର୍ଥକ୍ୟ ପ୍ରାୟ ସମସ୍ତେ ଜାଣନ୍ତି । ଆଉ ଯଦି କେହି ଜାଣି ନାହାନ୍ତି ତେବେ ସହଜରେ ଜାଣିବା ଉଚିତ । ଶବ୍ଦ ଗୁଡ଼ିକର ଆକ୍ଷରିକ ଅର୍ଥ ବୁଝିଲେ ଆମେ "ଖୁଣ୍ଟ"ର ଅର୍ଥ ଗୋଟେ 'ଖମ୍ବ' ମୋଟ 'କଳା' ଏବଂ 'ଖୁଣ୍ଟି'ର ଅର୍ଥ ଗୋଟେ ଖୁଣ୍ଟ ବା ଗୋଟେ କଳା ବୋଲି ବୁଝିଥାଉଁ । ବହୁକାଳରୁ ଆମ୍ଭେମାନେ ଏହି ଶବ୍ଦ ଦ୍ୱୟର ଅର୍ଥ ଏଭଳି ଧରି ନେଇଛୁ ଯେ ଜୋବ୍ରା ଖୁଣ୍ଟି ଓ ଜୋବ୍ରା ଠେଙ୍ଗାକୁ ଏକାର୍ଥବୋଧକ ଶବ୍ଦ ବୋଲି ବୁଝୁଛୁ । କିନ୍ତୁ ତାହା ପ୍ରକୃତରେ ଠେଙ୍ଗା ନୁହେଁ କି ଖୁଣ୍ଟି ନୁହେଁ । ଏହା ଏତେ ସହଜ କଥା ନୁହେଁ । ଏହା ଗବେଷଣାସାପେକ୍ଷ ଓ ତଥ୍ୟ ସମ୍ବଳିତ ।

କଟକ ନଗରର ହଜାର ବାର୍ଷିକୀ ପାଳିତ ହେଉଥିବା ଦୃଷ୍ଟିରୁ ବର୍ତ୍ତମାନ ଏହାର ବିଭିନ୍ନ ଦିଗ ଦିଗନ୍ତ ବିଷୟରେ ଆମର ପରମ ବନ୍ଧୁ ଡ: ବ୍ରଜମୋହନ ମହାନ୍ତି ତାଙ୍କ ସାଙ୍ଗସାଥୀମାନଙ୍କ ଉପରେ ଅହେତୁକୀ ଗୁରୁତର ଲଘୁଚାପ ଓ ଗୁରୁଚାପ ପକାଇ କେତେକ ଚଟକା ତାଜା ବହୁ ବହୁ ଐତିହାସିକ ତଥ୍ୟସମ୍ବଳିତ ସମ୍ବାଦ କିମ୍ବା କିମ୍ବଦନ୍ତୀ ପରିବେଷଣ କରିବାର ସୁଯୋଗ ଦେଇଛନ୍ତି । ଏହାଦ୍ୱାରା ଭୂଗୋଳ ପରିବର୍ତ୍ତନର ସମ୍ଭାବନା ଆଦୌ ନାହିଁ ।

ପୁରୁଷାନୁକ୍ରମେ ହିସାବ କଲେ କଟକରେ ୪୦ ପୁରୁଷର ଲୋକ ରହି ଆସିଲେଣି ବୋଲି ଜଷ୍ଟିସ୍ ଶ୍ରୀ ହରିହର ମହାପାତ୍ର କହନ୍ତି । କଟକକୁ ଲୋକେ ଓଡ଼ିଶାର ସାଂସ୍କୃତିକ ଚେନ୍ଦ୍ରାଘର କିମ୍ବା ପ୍ରାଣକେନ୍ଦ୍ର ବୋଲି କହିଥାନ୍ତି । କଟକର ପ୍ରାଚୀନତା ସହିତ ନବୀନତମ ସାଂସ୍କୃତିକ ପରମ୍ପରାର ସମନ୍ୱୟ ସାଧନ ହିଁ ଉକ୍ତ ସହସ୍ର ବାର୍ଷିକୀ ଉତ୍ସବ ପାଳନରେ ଆଭିମୁଖ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ମର୍କତକେଶରୀଙ୍କ ନିର୍ମିତ କାଠଯୋଡ଼ି ପଥରବନ୍ଧ ସହିତ ବର୍ତ୍ତମାନ ନିକଟ ଅତୀତରେ ବିଂଶ ଶତାବ୍ଦୀର ଉଭୟ କାଠଯୋଡ଼ି ଓ ମହାନଦୀର କୂଳେ କୂଳେ କଟକ ନଗରର ଚତୁପାର୍ଶ୍ୱରେ ଓଡ଼ିଶା ସରକାରଙ୍କ ଦ୍ୱାରା ନିର୍ମିତ ରିଙ୍ଗ୍‌ବନ୍ଧ ସମସ୍ତଙ୍କୁ ଚକିତ କରୁଛି ।

୧୮୬୬ ମସିହାର ଐତିହାସିକ ଭୟାବହ ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାରେ ହିଁ ସଙ୍ଘଟିତ ହୋଇ ଚିର ସ୍ମରଣୀୟ ହୋଇ ରହିଛି । କାରଣ ଏହି ଐତିହାସିକ ଦୁର୍ଭିକ୍ଷ ଦୁର୍ଘଟଣା ଘଟି ନଥିଲେ ଓଡ଼ିଶାର ଏତେ ଉନ୍ନତିକର ତଥା ଗଠନାତ୍ମକ କାର୍ଯ୍ୟକ୍ରମ ହୋଇନଥାନ୍ତା । ଯଦିଓ ୧୮୩୭ ମସିହାରେ ପ୍ରଥମେ ବ୍ୟାପ୍‌ଟିଷ୍ଟ୍ ଖ୍ରୀଷ୍ଟିୟାନମାନେ କଟକରେ ଛାପାଖାନା ପ୍ରତିଷ୍ଠା କରିଥିଲେ, ଯେଉଁଥିରୁ କି ତତ୍‌କାଳୀନ ପ୍ରସିଦ୍ଧ ତିନୋଟି ପତ୍ରିକା ଛପା ହୋଇ ପ୍ରସାର ଲାଭ କରିଥିଲା । ସେଗୁଡ଼ିକ ହେଲା ପ୍ରବୋଧ ଚନ୍ଦ୍ରିକା (୧୮୫୬), ଜ୍ଞାନାରୁଣ (୧୮୪୯) ଏବଂ ଅରୁଣୋଦୟ (୧୮୬୧) ।

ଐତିହାସିକ ଦୃଷ୍ଟିରେ ନିରୀକ୍ଷଣ କରିଲେ ଅନୁସନ୍ଧାନରୁ ଜଣାପଡ଼େ ଯେ ସମସାମୟିକ ଘଟଣାବଳୀ କଟକ ସହରର ବର୍ତ୍ତମାନ ଅବସ୍ଥା ପାଇଁ ଦାୟୀ । ୧୮୫୮ ମସିହାରେ ମହାନଦୀର ଯେଉଁ ଭୟାବହ ବନ୍ୟା କଟକ ସହରକୁ ଚମକାଇ ଭୟଭୀତ କରିଥିଲା, ତାହା ତତ୍କାଳୀନ ଜଣେ ଦକ୍ଷ ଇଂରାଜୀ ଇଞ୍ଜିନିୟରଙ୍କୁ କଟକକୁ ବନ୍ୟା ଦାଉରୁ ରକ୍ଷା କରିବା ପାଇଁ କଟକ ପର୍ଯ୍ୟନ୍ତ ଟାଣିଆଣିଥିଲା । ତାଙ୍କ ନାମଥିଲା କର୍ଣ୍ଣେଲ୍ ଆର୍ଥର୍ କଟନ୍ । ଗୋଦାବରୀ ନଦୀବନ୍ଧ ଯୋଜନା ପ୍ରସ୍ତୁତ କରିବା ଦାୟିତ୍ୱରେ ଥିବାବେଳେ କଟକ ସହରର ହୁଲୁସ୍ଥୁଲୁ ଅବସ୍ଥା ଶୁଣିପାରି ସେହି ଇଞ୍ଜିନିୟର ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ତତ୍‌କ୍ଷଣାତ୍ ଏଠାକୁ ଆସିବା କର୍ତ୍ତବ୍ୟ ବୋଲି ମନେକରିଲେ ଓ ଆସି ପହଞ୍ଚିଲେ ।

ମହାନଦୀ ଡେଲ୍‌ଟା ବିଷୟରେ ଅନୁସନ୍ଧାନ କରି ସଙ୍ଗେ ସଙ୍ଗେ ଏଠାରେ ଏକ ନଦୀବନ୍ଧ ଯୋଜନା ପ୍ରସ୍ତୁତ କରି ବନ୍ୟାନିୟନ୍ତ୍ରଣ, ଜଳସେଚନ ଓ ଜଳପଥରେ ଗମନାଗମନ ତଥା ବାଣିଜ୍ୟ କାରବାର ଏହି ପରି ତିନୋଟି ଉଦ୍ଦେଶ୍ୟ ସାଧନ ପାଇଁ ଉକ୍ତ ଆର୍ଥର୍ କଟନ୍ ପ୍ରସ୍ତାବ ଦେଲେ ।

୧୮୬୦ ମସିହାରେ "ଇଷ୍ଟ୍ ଇଣ୍ଡିଆ ଇରିଗେସନ ଆଣ୍ଡ୍ କେନାଲ୍ କମ୍ପାନୀ" ତିନୋଟି କେନାଲ୍ ଖୋଳିବା ପାଇଁ ମଧ୍ୟ ସ୍ଥାପିତ ହେଲା । ମହାନଦୀ କୂଳରେ କଟକର ଉପକଣ୍ଠରେ ଯେଉଁ ଯୋବ୍ରା ଆନିକଟ ବର୍ତ୍ତମାନ ଅବସ୍ଥିତ, ସେହିଠାରେ ହିଁ ଉପରୋକ୍ତ ନଦୀବନ୍ଧ ଖନନ କାର୍ଯ୍ୟ ଆରମ୍ଭ ହୋଇ ତାଳଦଣ୍ଡା ଓ ମାଛଗାଁ ଉପକେନାଲରେ

ଜଳଯୋଗାଣ ସଙ୍ଗେ ସଙ୍ଗେ ନିମ୍ନୋକ୍ତ ବିରୂପାନଦୀ ପାଖରୁ ପଟ୍ଟାମୁଣ୍ଡାଇ ଓ କେନ୍ଦ୍ରାପଡ଼ା କେନାଲ କାର୍ଯ୍ୟକାରୀ ହେଲା ।

ତତ୍କାଳୀନ ଆବଶ୍ୟକତା ଅନୁଯାୟୀ ମାତ୍ରାଧିକ ଧାନ ବହୁ ପରିମାଣରେ ଗୃହୀତ ଓଡ଼ିଶାରୁ ରପ୍ତାନୀ ହୋଇ ୧୮୬୬ ଦୁର୍ଭିକ୍ଷବେଳକୁ ଖାଦ୍ୟ ଅଭାବ ସୃଷ୍ଟି ହୋଇଥିଲା । ବେକାରୀ ସମସ୍ୟା ସାଙ୍ଗକୁ ଦରଦାମ ବୃଦ୍ଧି ଖାଦ୍ୟାଭାବକୁ ଦୁଇ ଗୁଣିତ କରି ପକାଇଲା । ତଥାପି ଉକ୍ତ ଦୁର୍ଭିକ୍ଷର କାରଣ ଅନୁଧାନ କରି ଦେଖାଗଲା, ଜଳାଭାବ ତଥା ମରୁଡ଼ି ଏବଂ ବନ୍ୟା ପ୍ରକୋପ ହିଁ ଗୃଷର କ୍ଷତି ଘଟାଉଛି । ଏଣୁ ବିଖ୍ୟାତ ଇଂରେଜ ପ୍ରଶାସକ ଜନ୍ ବିମ୍ସ୍‌ଙ୍କ ହସ୍ତକ୍ଷେପ ଫଳରେ ଅସମ୍ଭାଳ ଅବସ୍ଥା ସମ୍ଭାଳିବା ପାଇଁ କେତେକ ପ୍ରତିଷେଧକ ତଥା ପ୍ରଗତିମୂଳକ କାର୍ଯ୍ୟାନୁଷ୍ଠାନ ହାତକୁ ନିଆଯାଇଥିଲା ।

ମହାନଦୀରୁ ଯୋବ୍ରାଖୁଣ୍ଟିର ନିକଟରୁ ଉପରୋକ୍ତ ତିନୋଟି କେନାଲ୍ ଯଥା ତାଳଦଣ୍ଡା କେନାଲ୍, କେନ୍ଦ୍ରାପଡ଼ା କେନାଲ୍ ଓ ପଟ୍ଟାମୁଣ୍ଡାଇ କେନାଲ ଖନନ ଓ ବନ୍ଧ ତଥା ପୋଲ ଓ ଆନିକଟ ନିର୍ମାଣ ପାଇଁ ଅନେକ ବଡ଼ ବଡ଼ ଯନ୍ତ୍ରପାତି ଓ ମଜଭୁତ କଳକବଜା ଆବଶ୍ୟକ ହେଲା । ଉକ୍ତ କେନାଲଗୁଡ଼ିକର ରକ୍ଷଣାବେକ୍ଷଣ କାର୍ଯ୍ୟ ମଧ୍ୟ କମ୍ କଷ୍ଟସାଧ୍ୟ ନୁହେଁ । ସବୁ ଯନ୍ତ୍ରପାତି ଇଂଲଣ୍ଡରୁ ଆଣିବା ସମ୍ଭବ ହେଲା ନାହିଁ । କି ଆଣିଲେ ମଧ୍ୟ ଆବଶ୍ୟକ ବେଳେ ପହଞ୍ଚି ପାରିଲାନାହିଁ । ବେକାର ଓ ଭୋକିଲା ଲୋକଙ୍କୁ କାର୍ଯ୍ୟ ଯୋଗାଇବା ଓ ଖାଦ୍ୟ ସମସ୍ୟାର ସମାଧାନ ପାଇଁ ଉତ୍ପାଦନ ଶକ୍ତିର ବିନିଯୋଗ ପାଇଁ ୧୮୭୭ରେ ଜନ୍ ବିମସ୍ ସାହେବ ବିଦାୟ ନେବା ପୂର୍ବରୁ ଯୋବ୍ରାଠାରେ ଏକ ବିରାଟ ଯୋରଦାରିଆ ମଜଭୁତ କେନାଲ ସରଞ୍ଜାମ କାରଖାନା ବା ଓ୍ୱାର୍କସପ୍ ବା କର୍ମଶାଳା କାର୍ଯ୍ୟାଳୟ ପ୍ରତିଷ୍ଠା କରାଗଲା । ସେହିଠାରେ ଆଧୁନିକ ଯୁଗର ଲେଦ୍ ମେସିନ୍‌ଠାରୁ ଆରମ୍ଭ କରି କ୍ରେନ୍ ଚଳାଇବା ପାଇଁ ଆନୁଷଙ୍ଗିକ କଳକବ୍‌ଜା ବସାଗଲା । ସେତେବେଳେ ପାଣି ଓ କୋଇଲା ସାହାଯ୍ୟରେ ବଏଲର୍ (ପାକଯନ୍ତ୍ର) ବସାଇ ସେଥିରୁ ବିଦ୍ୟୁତଶକ୍ତି ବାହାର କରିବାକୁ ପଡୁଥିଲା ।

କୋଇଲା ଜଳିବାଦ୍ୱାରା ଯେଉଁ ଧୂଆଁ ନିର୍ଗତ ହେଲା, ତାହା ସହଜରେ ନିଷ୍କାସନ କରିବା ପାଇଁ ଚିମିନି ବସାଇବା ଆବଶ୍ୟକ ହେଲା । ତାହା ନହେଲେ କେବଳ ଯେ ସ୍ଥାନୀୟ ବାୟୁମଣ୍ଡଳ ଦୂଷିତ ହେବ ତାହାନୁହେଁ, କାରିଗର ତଥା ଶ୍ରମିକମାନେ ସାଙ୍ଘାତିକ ବେମାରିର ଶିକାର ହେବାର ସମ୍ଭାବନା ଦେଖାଦେଲା ଏବଂ ଧୂମାଧିକ୍ୟ ହେତୁ ମଧ୍ୟ ସୁରୁଖୁରୁରେ ଦକ୍ଷତା ସହିତ କାର୍ଯ୍ୟ ସମ୍ପାଦନ କରିବା ସହଜସାଧ୍ୟ ହେଲା ନାହିଁ । ଉପରି ଧୂଆଁ କାର୍ଯ୍ୟ କ୍ଷେତ୍ରରେ ବାଧା ସୃଷ୍ଟି କରିବ ନାହିଁ ଓ ତାହା କୋଠରୀ ଭିତରକୁ ନଆସି ମାଟି ତଳେ ତଳେ ଦୂରକୁ ଗ୍ଭଲିଯିବ ସେଥିପାଇଁ ସୁଚିନ୍ତିତ ପନ୍ଥା ଅବଲମ୍ବନ ପୂର୍ବକ ସୁଡ଼ଙ୍ଗ ଦ୍ୱାରା ଓ୍ୱାର୍କସପ୍‌ରୁ ଚିମିନି ପର୍ଯ୍ୟନ୍ତ ଧୂଆଁ ଯିବା ପାଇଁ ଭିତରେ ଭିତରେ ଟନେଲ୍ ତିଆରି କରାଗଲା । ପୁଣି ସେହି ଧୂଆଁ ଚିମିନିର ଭିତରେ ଭିତରେ ଯାଇ

ତାହାର ଊର୍ଦ୍ଧ୍ୱ ଭାଗରେ ଥିବା ଚହ୍ଲର ମୁହଁ ବାଟେ ଆକାଶକୁ ଦୂରେଇ ଛାଡ଼ିବାର ବ୍ୟବସ୍ଥା ହେଲା । ସେହି ମୁହଁର ଉଚ୍ଚତା ଭୂପୃଷ୍ଠଠାରୁ ପ୍ରାୟ ଶହେ ଫୁଟ ଉଚ୍ଚରେ ଅବସ୍ଥିତ । ଉକ୍ତ ମୁହଁ ପୂର୍ବୋକ୍ତ କଣ୍ଟକ ଠେଙ୍ଗା ବା ଯୋଗ୍ରାଖୁଣ୍ଟି ବା ଚମିନାସ୍ତମ୍ଭର ଉପର ଭାଗରେ ଅବସ୍ଥିତ ।

## ବତୀଖୁଣ୍ଟର ତାତ୍ପର୍ଯ୍ୟ :

ଏହି ଖୁମ୍ବ ନିକଟ ଅଞ୍ଚଳରେ ୧୯୭୧-୭୨ ମସିହାରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଭୟଙ୍କର ଝଡ଼ତୋଫାନ, ପ୍ରଳୟଙ୍କରୀ ବନ୍ୟା ଓ ବଜ୍ରପାତ ଫଳରେ ଅଗ୍ରଭାଗରୁ ପ୍ରାୟ ୨୦ ଫୁଟ ଭାଙ୍ଗିଗଲା । ତାହା ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଓ ମରାମତି ହେଲା । କେବଳ ସେତିକି ନୁହେଁ, ମହାନଦୀରେ ଯାତାୟାତ କରୁଥିବା ଦୂରବର୍ତ୍ତୀ ଲଞ୍ଚ ଓ ବୋଟେଇ ବଡ଼ ବଡ଼ ଡଙ୍ଗା ରାତିରେ ପରିଚାଳନା କରିବା ପାଇଁ ଏହି ଯୋଗ୍ରା ଖୁଣ୍ଟିର ଅଗ୍ରଭାଗରେ ଏକ ବଡ଼ ବିଜୁଳିବତି ବଲବ୍ ଲଗାଇ ଏହାକୁ ପ୍ରତିଦିନ ରାତିରେ ଜଳାଇବାର ବ୍ୟବସ୍ଥା ହେଲା । ବ୍ୟାବସାୟିକ ଦୃଷ୍ଟିକୋଣରୁ ଏହାର ଆଧୁନିକକରଣ କରିବାର ସାମାନ୍ୟତମ ସୁଯୋଗରେ ଯାହା ବି ଆଲୋକର ବ୍ୟବସ୍ଥା ହେଲା, ତାହା ଏବେ ବି ନାହିଁ । ବର୍ତ୍ତମାନ ପୂର୍ବୋକ୍ତ ବିରାଟକାୟ ବଏଲର୍ (ପାକଯନ୍ତ୍ର) ଆଉ ଏଠାରେ ନାହିଁ । ସ୍ଥାନୀୟ ଅଫିସର କହନ୍ତି ଯେ ତାହା ନିଲାମରେ ବିକ୍ରୀ ହୋଇଯାଇଛି ।

ଏହି ଲେଖକ ଗବେଷଣାତ୍ମକ ମନୋବୃତ୍ତି ନେଇ ସ୍ଥାନୀୟ ତଦନ୍ତ କରି ଜାଣିବାକୁ ପାଇଛନ୍ତି ଯେ ଉକ୍ତ କର୍ମଶାଳା ବା କାରଖାନାର କିୟଦଂଶ ସ୍ଥାନରେ ଶ୍ରୀ ବିଜୁ ପଟ୍ଟନାୟକ ଆଧୁନିକ ରେଫ୍ରିଜରେଟର୍ ତିଆରି କରିବା ପାଇଁ ଏକ କାରଖାନା ବସାଇ କ୍ଷତିଗ୍ରସ୍ତ ହେବାରୁ ସେ କାରଖାନା ମଧ୍ୟ ଆଜି ଭାଙ୍ଗିରୁଜି ଯାଇଛି ।

ଏହି ସ୍ଥାନରେ କାନ୍ଥରେ ଥିବା ସ୍ମୃତି ଫଳକରୁ ଜଣାଯାଏ ଯେ ଏଠାକାର ମୂଳଦୁଆ (ଭିତ୍ତିପ୍ରସ୍ତର ସ୍ଥାପନ) ୧୮୬୯ ମସିହା ଜାନୁୟାରୀ ୧ ତାରିଖ ଦିନ ଶ୍ରୀମତୀ ଜି. ଏଚ. ଫକ୍ନର୍‌ଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହି ସ୍ଥାନର ବିଶେଷତ୍ୱ ବା ଗୁରୁତ୍ୱ ସମ୍ବନ୍ଧରେ ପଚାରି ବୁଝିବାରେ ଜଣାଗଲା ଯେ ଏହି ଯୋଗ୍ରାଖୁଣ୍ଟି ବା କଣ୍ଟକ ଠେଙ୍ଗା ଏକ ଚମିନି ହୋଇଥିବାର ଏହା ଇତିହାସ ବା କ'ଣ ଥାଇପାରେ ? ଆସିଷ୍ଟାଣ୍ଟ ଇଂଜିନିୟର ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ର ତାଙ୍କ ଅବହେଳିତ ଅଫିସ୍ ବୁଲାଇ ଦେଖାଇଲେ ଓ ଆମ୍ଭଙ୍କୁ ପ୍ରକୃତରେ ହତାଶ କରିଲେ ।

ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ବେଳକୁ ମହାନଦୀ—ବିରୂପା—ବ୍ୟାରେଜ ଗଠନ ଓ ତତ୍ସଂଲଗ୍ନ ବନ୍ଧ ବାଡ଼ ତଥା ରାସ୍ତାଘାଟ ନିର୍ମାଣ, ଉକ୍ତ ଯୋଗ୍ରା ଆନିକଟ ଓ ତତ୍ସଂଲଗ୍ନ ଯୋଗ୍ରା ଖୁଣ୍ଟିର ଇତିହାସ ଓ ଭୂଗୋଳକୁ ମଧ୍ୟ ପରିବର୍ତ୍ତନ କରୁଛି ।

ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ଏବଂ ଏହାର ସହସ୍ର ବାର୍ଷିକୀ ଖ୍ରୀଷ୍ଟାବ୍ଦ ୯୮୯ ରୁ ୧୯୮୯ ପର୍ଯ୍ୟନ୍ତ ପାଳନ କରୁଛୁ ।

ନିରପେକ୍ଷ ଦୃଷ୍ଟିକୋଣରୁ ବିଚାର କଲେ ଦେଖାଯାଏ ଓଡ଼ିଶାର କଟକ ଗୋଟିଏ ପ୍ରଧାନ ବ୍ୟାବସାୟିକ କେନ୍ଦ୍ରରେ ଏବଂ ପରିଣତ ହୋଇଛି । ମିଶ୍ରିତ ସାଂସ୍କୃତିକ ପରମ୍ପରା ଏହାର ଦର୍ପଣ । ନାନା ଜାତି, ଧର୍ମ ଓ ନାନା ସମ୍ପ୍ରଦାୟର ଲୋକେ ଏଠାକୁ ଆସିଛନ୍ତି ଆପଣାର ଅର୍ଥନୈତିକ ତଥା ସାଂସ୍କୃତିକ ଉନ୍ନତି ସାଧନ ପାଇଁ । ସେମାନେ ମୌଳିକ ଉଦ୍ଦେଶ୍ୟ ସାଧନ କରି କଟକର ଚୁ ରୁଣା ଆଦିମ ଅଧିବାସୀମାନଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର କରି ସେମାନେ ଏବେ ବି ଛଦ୍ମବେଶରେ ସକ୍ରିୟ ଅଛନ୍ତି ।

ଆଗନ୍ତୁକ ସ୍ୱାର୍ଥାନ୍ୱେଷୀ ମନୁଷ୍ୟଗଣ ସାମନ୍ତବାଦୀ ତଥା ୧୮୦୩ ସମୟର ଇଷ୍ଟ-ଇଣ୍ଡିଆ କମ୍ପାନୀ ସଦୃଶ ସାମ୍ରାଜ୍ୟବାଦୀ । ଆମ୍ଭେମାନେ ଏବେ ମଧ୍ୟ କହୁଛୁ ଯେ ମୁସଲମାନ, ମୋଗଲ । ମରହଟ୍ଟା ତଥା ଇଂରେଜ ରାଜତ୍ୱର କବଳରୁ ଭାରତକୁ ସ୍ୱାଧୀନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ଓ କଟକକୁ ମଧ୍ୟ ୧୯୩୬ରେ ସ୍ୱାଧୀନ କରିଲୁ । କିନ୍ତୁ ଯେଉଁମାନେ ପ୍ରକୃତରେ ଚକ୍ରାନ୍ତ ତଥା ଷଡ଼ଯନ୍ତ୍ର କରି କଟକକୁ ମାଡ଼ିବସି ଆପଣା ଆପଣାର ରୋଜଗାର ଆସ୍ କଟକ ମାଟିରୁ ଜମିବାଡ଼ି ତଥା ଘରଡ଼ି ଅରୁ କରି ଗୁଳିଛନ୍ତି ସେମାନେ ଏବେ ବି ଆଧୁନିକ ପ୍ରଣାଳୀରେ ସକ୍ରିୟ ଅଛନ୍ତି । ସେମାନେ ସଂଶୋଧିତ ସାମ୍ବିଧାନିକ ଧର୍ମନିରପେକ୍ଷ ଅର୍ଥନୈତିକ ଗଣତାନ୍ତ୍ରିକ ସମାଜବାଦ ପ୍ରତିଷ୍ଠା କରିବାକୁ ଦେବେ ନାହିଁ ବୋଲି ଅହରହ ଲାଗିଛନ୍ତି । ସେମାନଙ୍କ ଚକ୍ରାନ୍ତ ସ୍ୱର୍ଗତ ମହାତ୍ମାଗାନ୍ଧି, ସ୍ୱର୍ଗତ ଇନ୍ଦିରାଗାନ୍ଧୀ ଓ ସ୍ୱର୍ଗତ ରାଜୀବ ଗାନ୍ଧୀଙ୍କୁ ରକ୍ଷାକରି ପାରିଲା ନାହିଁ । ଯେଉଁ ଦେଶରେ ପ୍ରଧାନମନ୍ତ୍ରୀଙ୍କ ଦେହରକ୍ଷୀ ନିଜର ମୁନିବକୁ ହତ୍ୟାକରିବାକୁ ପଶ୍ଚାତ୍ ନାହିଁ ସେ ଦେଶର କଟକ ଭଳି କ୍ଷୁଦ୍ରାଦପି କ୍ଷୁଦ୍ର ନଗରୀକୂଳିଆ ଏକ ହଜାରବର୍ଷିଆ ସ୍ଥାନ ନିଜସ୍ୱ ବଜାୟ ରଖିବା ଆଦୌ ସମ୍ଭବ ନୁହେଁ । ମୌଳିକତା ହିଁ ଭିନ୍ନ ସଂସ୍କୃତିର ସ୍ୱାଦ ଇତିହାସ ପୃଷ୍ଠାକୁ ବୈଭବ-ମଣ୍ଡିତ କରିପାରେ ।

କିନ୍ତୁ "ଯୋବ୍ରାଖୁଣ୍ଟି" ଏ ସବୁର ମୂକ ସାକ୍ଷୀ ହୋଇ ରହିଛି ଓ ରହିବ । ଏହା ଥରକୁ ଥର ପର୍ଯ୍ୟାୟକ୍ରମେ ପରିମାର୍ଜିତ ତଥା ପୁନଃନିର୍ମିତ ହେଉଥିବ । ମାତ୍ର ଏହାର ନିର୍ମାଣର ପ୍ରାଥମିକ ଆବଶ୍ୟକତା କ୍ରମଶଃ ଦୂରୀଭୂତ ହେଉଥିବ । କାରଣ କେନାଲଗୁଡ଼ିକ ନିଜ କାର୍ଯ୍ୟକ୍ରମ ବଦଳାଇ କେବଳ ଜଳସେଚନରେ ବ୍ୟସ୍ତଥିବା ଜଣାଯାଏ । ଇତିହାସ ପୃଷ୍ଠା ଲେଉଟାଇଲେ ୧୮୬୯ରେ ଜଣାଯାଏ "ଉତ୍କଳ ବ୍ରାହ୍ମ ସମାଜ" ପ୍ରତିଷ୍ଠା ହେବାପରେ ବିଖ୍ୟାତ ୮ ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ, ବିଶ୍ୱନାଥ କର ଓ ସାଧୁଚରଣ ରାୟ ପ୍ରମୁଖ ସମାଜରେ ଯୋଗଦାନ କରି ଏହାର ଆଦର୍ଶ ଓ ଦର୍ଶନ ପ୍ରଚାର ଓ ପ୍ରସାରରେ ସାହାଯ୍ୟ କଲେ । ଏସବୁ ଘଟଣା ଏ ଲେଖକଙ୍କ ମତରେ କଟକ ଭୂଗୋଳ ଉପରେ ଐତିହାସିକ ଘଟଣା ପ୍ରବାହ ଅଟେ । କାରଣ ନଅଙ୍କ ଦୁର୍ଭିକ୍ଷର କବଳଗ୍ରାସ କଟକର

ଆଦିମ ଅଧିବାସୀମାନଙ୍କୁ ତତ୍କାଳୀନ ବ୍ୟାବସାୟିକ ଲୋକମାନଙ୍କ ଅତ୍ୟାଚାର ଓ କୃତ୍ରିମ ଅବସ୍ଥା ଏଭଳି ଅତିଷ୍ଠ କରିଲା ଯେ କଟକ ବାହାରୁ ବହୁତ ଅନାହୂତ ବଦାନ୍ୟ ପରୋପକାରୀ ବନ୍ଧୁ ତଥା ଛଦ୍ମବେଶୀ ହିଂସ୍ର ଅଶାନ୍ତ ଗ୍ରହ ଅବାଧରେ ଆଗମନ କରିଥିଲେ । ଦୁର୍ଭିକ୍ଷ ବେଳର ଅବସ୍ଥାକୁ ବର୍ଣ୍ଣନା କରିବାକୁ ଯାଇ ଉକ୍ତ ପ୍ୟାରୀମୋହନ ଆଚାର୍ଯ୍ୟ ଉଲ୍ଲେଖ କରିଛନ୍ତି ଯେ ଲୋକେ ଖାଇବାକୁ ନପାଇ ଅଖାଦ୍ୟ ଖାଇଲେ । ଏପରିକି ନିଜ ପିଲା ମୁହଁରୁ ଛଡ଼ାଇ ରାକ୍ଷସ ଭଳି ମଲାଲୋକଙ୍କ ଶବରୁ ମାଂସ କାମୁଡ଼ି ଖାଇଲେ । ଅବସ୍ଥା ଦିନକୁଦିନ ଏତେ ଅସମ୍ଭାଳ ହେଲା ଯେ ହତ୍ୟା, ଆତ୍ମହତ୍ୟା, ଲୁଣ୍ଠନ ଡକେଇତି ପ୍ରଭୃତି ଅସାମାଜିକ ଅବସ୍ଥା ବ୍ୟାପକ ହୋଇ ଉଠିଲା । ଏସବୁ ଘଟଣା ଦୁର୍ଘଟଣାକୁ ଲୋକ ଲୋଚନକୁ ଆଣିବା ପାଇଁ ଭିକ୍ଟୋରିଆ ପ୍ରେସ୍, ବାମଣ୍ଡା ପ୍ରେସ୍, ଉତ୍କଳ ସାହିତ୍ୟ ପ୍ରେସ୍ ପ୍ରଭୃତି ସ୍ଥାପିତ ହୋଇ "ଉତ୍କଳ ଦୀପିକା" ସାଙ୍ଗକୁ "ଉତ୍କଳ ପୁତ୍ର" (୧୮୭୩), ଉତ୍କଳ ସାହିତ୍ୟ" (୧୮୯୭) ପ୍ରଭୃତି ସାହିତ୍ୟ ପତ୍ରିକାଗୁଡ଼ିକ ପ୍ରକାଶିତ ହେଲା ।

ତାତ୍କାଳୀନ ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଚିତ୍ରରାଜି କଟକର ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାପିତ ଉତ୍କଳ ଗୌରବ ମଧୁସୂଦନ ପାଠାଗାରରେ ବର୍ତ୍ତମାନ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ସଂରକ୍ଷିତ ସାହିତ୍ୟ ପତ୍ରିକାଗୁଡ଼ିକରୁ ଆମେ ପାଇଥାଉଁ ।

୧୮୭୩ ମସିହାରେ ଜମିଦାର କାଳୀପଦ ବାନାର୍ଜୀ "ଉତ୍କଳ ହିତୈଷୀ" ପ୍ରେସ୍ ସ୍ଥାପନ କରିଥିଲେ । କିନ୍ତୁ ଗୌରୀଶଙ୍କର ରାୟ ଯେଉଁ "ଉତ୍କଳ ପ୍ରିଣ୍ଟିଂ କମ୍ପାନୀ" ସ୍ଥାପନ କରିଲେ ତା'ର ମୁଖ୍ୟ ଅଂଶୀଦାର ଥିଲେ ତାଳଚେର, ବଡ଼ମ୍ବା, ଆଠଗଡ଼, ନୟାଗଡ଼ ଓ ନରସିଂହପୁରର ତାତ୍କାଳୀନ ରାଜା ସାହେବ ଆଉ କନିକାରାଜାଙ୍କ ଭଳି କେତେକ ଜମିଦାରବୃନ୍ଦ । ଏସବୁର ପଥପ୍ରଦର୍ଶକ ତଥା ମୂକ ସାକ୍ଷୀ ସେହି ଯୋବ୍ରାଖୁଣ୍ଟି ।



# ପ୍ରାଚୀନ ସାହିତ୍ୟ ଓ ପ୍ରାଚୀ ସମିତି

**ଡଃ ବଚିଦାନନ୍ଦ ମହାନ୍ତି**

ପ୍ରଥମ ବିଶ୍ୱଯୁଦ୍ଧର ଆରମ୍ଭକାଳ ୧୯୧୪ ମସିହାରେ ଆର୍ତ୍ତବଲ୍ଲଭ ରେଭେନ୍‌ସା କଲେଜରେ ଆରମ୍ଭ କଲେ ଅଧ୍ୟାପକର ଜୀବନ । କଲିକତା ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ଏମ୍‌. ଏ. ପାଶ୍ କରି ଆସିଥିବା ଏହି ନବୀନ ଯୁବକଙ୍କ ମନରେ ଥିଲି ଖେଳୁଆଡ଼ର ଭାବନା । ଯୌବନର ଉଦାମତା, ସମ୍ଭ୍ରାନ୍ତବଂଶର ଆଭିଜାତ୍ୟ ତାଙ୍କ ଶିରପ୍ରଶିରରେ । ଇଂରେଜ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ ମେଳରେ କିପରି ଭାବେ ପ୍ରକାଶ କରିବେ ଓଡ଼ିଆର ସ୍ୱାଭିମାନ ! ସେ କହନ୍ତି, ଅଧ୍ୟାପକ ହେବା ପରେ ହିଁ ମୋର ପ୍ରକୃତ ଅଧ୍ୟୟନ ଆରମ୍ଭ ହେଲା । ୧୯୧୪-୨୫ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ କାଳ କେବଳ ଅଧ୍ୟୟନ ଓ ଅଧ୍ୟାପନାରେ କଟାଇ ଦେଲେ ବୈଷ୍ଣବ ଧର୍ମର ଅନୁଶୀଳନ କରିବାରେ ।

ସମସାମୟିକ ସମାଲୋଚନା-ଧାରା ତାଙ୍କର ମନରେ ଗଭୀର ରେଖାପାତ କରିଥିଲା । ତେଣୁ ସେ ଚାହିଁଲେ, ପୁରାତନ ସାହିତ୍ୟ ସମ୍ପଦକୁ ଦେଶବାସୀଙ୍କ ଆଗରେ ପରିବେଷଣ କରିବେ । ଲୁପ୍ତ ରତ୍ନୋଦ୍ଧାର ନିମନ୍ତେ ମନରେ ତାଙ୍କର ଅଦମ୍ୟ କାମନା ଦେଖାଦେଲା । ଅଧ୍ୟାପକ ଗୁରୁଚରଣ ମହାନ୍ତି ଥିଲେ ରସାୟନ ଶାସ୍ତ୍ରର ଅଧ୍ୟାପକ । ପ୍ରାଚୀନ ସାହିତ୍ୟ ପ୍ରତି ଥିଲା ତାଙ୍କର ପରମ ଶ୍ରଦ୍ଧା । ଦିନେ ସେ ସ୍ୱରଧରି 'ବିଦଗ୍‌ଧ ଚିନ୍ତାମଣି' ପାଠ କରୁଥିବା ଅବସ୍ଥାରେ ତାଙ୍କୁ ଆର୍ତ୍ତବଲ୍ଲଭ ଦୂରରୁ ଶୁଣିଲେ । ତାଙ୍କ ପାଖକୁ ଯାଇ ଆର୍ତ୍ତବଲ୍ଲଭ ପଚାରିଲେ, 'କଣ ବୁଝୁଛ ନା ଖାଲି ପଢ଼ିଯାଉଛ ।' ଗୁରୁଚରଣଙ୍କ ସନ୍ଦେହ ମୋଚନ ପାଇଁ ସେ କିଛି ସମୟ ବୁଝାଇବାରେ ଲାଗିଲେ । ଏହାପରେ ମନରେ ତାଙ୍କର ରୂପ ନେଲା କିପରି ଅସଂଖ୍ୟ ଗୁରୁଚରଣଙ୍କୁ ସେ ଗୁରୁଦେବ ସାଜି ବୁଝାଇ ପାରିବେ । ଆରମ୍ଭ ହେଲା 'ବିଦଗ୍‌ଧ ଚିନ୍ତାମଣି'ର ଶୁଦ୍ଧ ପାଠ । ସେହି ୧୯୨୫ରେ ବିଦଗ୍‌ଧ ଚିନ୍ତାମଣି, ସ୍ତୁତି ଚିନ୍ତାମଣି, ରହସ୍ୟ ମଞ୍ଜରୀ ଓ ୧୯୨୬ରେ ଭୀମଭୋଇଙ୍କ ଭଜନମାଳା—ପ୍ରଥମ ଶତକ ଶୁଦ୍ଧପାଠ ସହ ପ୍ରକାଶ ପାଇଲା ।

ଏହି ସମୟରେ ବ୍ୟକ୍ତିଗତ ଉଦ୍ୟମରେ ପ୍ରକାଶ କରୁଥିବା ପୁସ୍ତକଗୁଡ଼ିକୁ ପ୍ରାଚୀ ସମିତି ପ୍ରତିଷ୍ଠା କରି 'ପ୍ରାଚୀ ଗ୍ରନ୍ଥମାଳା' ରୂପେ ପ୍ରକାଶ କଲେ । ୧୯୨୬ରେ

'ବ୍ରହ୍ମଶାଙ୍କୁଳ' ଓ 'ଅଣାକାର ସଂହିତା' ପ୍ରକାଶ ବେଳଠାରୁ ପ୍ରାଚୀ ଗ୍ରନ୍ଥମାଳାର ନମ୍ବର ଦେଖିବାକୁ ମିଳେ । ଏହି ସମସ୍ତରେ ଓଡ଼ିଶୀ ବୈଷ୍ଣବ ଧର୍ମ, (ଜ୍ଞାନମିଶ୍ରା ଭକ୍ତିବାଦ) ଗୌଡ଼ୀୟ ବୈଷ୍ଣବ ଧର୍ମ (ଶୁଦ୍ଧାଭକ୍ତିବାଦ) ଓ ସତ୍ୟ ମହିମାଧର୍ମର ପ୍ରତିପାଦନ ପାଇଁ ତାହାଙ୍କ ସମ୍ପାଦିତ ପୁସ୍ତକମାନଙ୍କର ମୁଖବନ୍ଧମାନଙ୍କରେ ଧର୍ମଦର୍ଶନର ଗଭୀର ଅନୁଶୀଳନ କରିବାରେ ଲାଗିଲେ ଆର୍ତ୍ତବଲ୍ଲଭ ।

ପ୍ରାଚୀନ ପୋଥିକୁ କୀଟମୁଖରୁ ରକ୍ଷାକରି ସାହିତ୍ୟର ଅଭିବୃଦ୍ଧି କରିବାପାଇଁ ଜାଗ୍ରତ ହେଲେ ଉତ୍କଳର ନବରତ୍ନ । ୧୯୨୭ ସାଲ ମାର୍ଚ୍ଚ ମାସରେ ଏକ ନିବେଦନ ପ୍ରଚାରିତ ହେଲା । 'ପ୍ରାଚୀ ସମିତି' ପ୍ରତିଷ୍ଠାର ଅଥମାରମ୍ଭ । ସେହି ନିବେଦନରେ ନବରତ୍ନ ଥିଲେ ଆର୍ତ୍ତବଲ୍ଲଭ ମହାନ୍ତି, ଗୁରୁଚରଣ ମହାନ୍ତି, ଶ୍ୟାମ ରାଉତ, କରୁଣାକର କର, କୁଳମଣି ଦାସ, ଆକୁଳ ମିଶ୍ର, ବଳଭଦ୍ରଚରଣ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ଚୌଧୁରୀ ଓ ଜଗଦାନନ୍ଦ ମହାନ୍ତି । ସେହି ନିବେଦନରେ ଥିଲା, "କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରି ଆମ୍ଭେମାନେ ଗୋଟିଏ ସମିତି ସ୍ଥାପନ କରିଛୁ । ଏହାର ନାମ 'ପ୍ରାଚୀ ସମିତି' ।" ଏହାର ସମ୍ପାଦକ କରୁଣାକର କର । ସମିତିର ଲକ୍ଷ୍ୟ ସମ୍ବନ୍ଧରେ ପ୍ରକାଶ କରିଥିଲେ— "ଜାତୀୟ ସାହିତ୍ୟର ଉଦ୍ଧାର ଓ ପ୍ରକାଶ ପ୍ରାଚୀ ସମିତିର ମୁଖ୍ୟ ଉଦ୍ଦେଶ୍ୟ । ଏହି ସମିତି ସେହି କାର୍ଯ୍ୟକୁ ବ୍ରତ ରୂପେ ଗ୍ରହଣ କରିଅଛି । × × ଯେଉଁମାନେ ଓଡ଼ିଶାର ଲୋପମୁଖୀ ପୁରାତନ ସାହିତ୍ୟର ଉଦ୍ଧାରର ଉପକାରିତା ହୃଦୟଙ୍ଗମ କରି କାର୍ଯ୍ୟ କରିବେ ସେମାନେ ଏହି ସମିତିର ସଭ୍ୟ ରହିବେ । ଏଥିରେ ଧନୀ ଦରିଦ୍ରର କିଛି ବାରଣ ନାହିଁ ।" "ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ତାଙ୍କ ସଙ୍କଳିତ ଓ ପ୍ରକାଶିତ ଯାବତୀୟ ଗ୍ରନ୍ଥ 'ପ୍ରାଚୀ ଗ୍ରନ୍ଥମାଳା'ର ଅନ୍ତର୍ଭୁକ୍ତ କରିଅଛନ୍ତି ।

ରହସ୍ୟମଞ୍ଜରୀ, ଗୁପ୍ତ ଚିନ୍ତାମଣି, କାର୍ତ୍ତିକ ମାହାତ୍ମ୍ୟ, ବୃହନ୍ନାରଦୀୟ ପୁରାଣ, ଉତ୍କଳ ସାହିତ୍ୟ ପ୍ରେସରେ ଛପା ହୋଇଥିଲା । 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ରାଧାନାଥ କୋ-ଅପରେଟିଭ୍ ପ୍ରେସରେ, ବଇଦେହୀ ଚିନ୍ତାମଣି, ଶ୍ୟାମ ଭୋଇଙ୍କ ଭଜନମାଳା (୧ମ ଓ ୨ୟ ଶତକ) ବ୍ରହ୍ମଶାଙ୍କୁଳ, ରସକଲ୍ଲୋଳ, ବଷ୍ଟୁଗର୍ଭ ପୁରାଣ, ପ୍ରେମ ପଞ୍ଚାମୃତ, ମଥୁରା ମଙ୍ଗଳ, ଷଡ଼ରିପୁ ଗୀତା, ଶିବ ସ୍ୱରୋଦୟ ମୁକୁର ପ୍ରେସରୁ ପ୍ରକାଶ ପାଇଲା । ବାଲେଶ୍ୱରର ଜମିଦାର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର 'ପ୍ରାଚୀ ସମିତି'କୁ ୧୯୨୯ ସାଲରେ ଗୋଟିଏ ପ୍ରେସ ଦାନ କରିବାରୁ ସେହି ପ୍ରାଚୀ ପ୍ରେସରୁ 'ପ୍ରେମଭକ୍ତି ବ୍ରହ୍ମଗୀତା' ପ୍ରକାଶିତ ହେଲା । ପ୍ରକାଶିତ ପୁସ୍ତକମାନଙ୍କ ବିକ୍ରୟ ପାଇଁ ଭୋଳାମିଆଁ ବଜାରରେ ଖୋଲାଗଲା 'ପ୍ରାଚୀ ଷ୍ଟୋର' । ସମିତି କାର୍ଯ୍ୟାଳୟ ବା ପ୍ରାଚୀ କର୍ମଭବନ ଓ ପୁସ୍ତକ ଦୋକାନ 'ପ୍ରାଚୀ ବୁକ୍ ଷ୍ଟଲ୍' ଗଣେଶଘାଟକୁ ଉଠିଗଲେ । ୧୯୩୧ରୁ ଏକ ଇଂରାଜୀ ତ୍ରୈମାସିକ ପତ୍ରିକା 'The Prachi' ମଧ୍ୟ ଏ ସମିତି ପକ୍ଷରୁ ପ୍ରକାଶ ପାଇଲା । ସମିତି, ପ୍ରେସ, ଷ୍ଟଲ୍ ଓ ପତ୍ରିକା—ଏ ଚାରୋଟି ଏକ ସଙ୍ଗେ ପ୍ରତିଷ୍ଠା କରିବା ଦ୍ୱାରା ସାମାନ୍ୟ ଦଶବର୍ଷ ମଧ୍ୟରେ ପୁରାତନ ସାହିତ୍ୟର ଉଦ୍ଧାର, ପ୍ରଚାର ଓ ପ୍ରସାର ଦିଗରେ ପ୍ରାଚୀ ସମିତି ଅସାଧ୍ୟ ସାଧନ କରିଥିଲା ।

ପ୍ରାଚୀ ପ୍ରକାଶିତ ୫୪ଟି ପୁସ୍ତକ ମଧ୍ୟରୁ ୩୭ ଖଣ୍ଡର ସମ୍ପାଦନା ଓ ମୁଖବନ୍ଧ ଲେଖିଥିଲେ ସ୍ୱୟଂ ଅଧ୍ୟାପକ ଆର୍ତ୍ତବଲ୍ଲଭ । ଅନ୍ୟ ୧୭ଟି ପୁସ୍ତକର ମୁଖବନ୍ଧର ଲେଖକ ହେଲେ—ପୂର୍ଣ୍ଣଚନ୍ଦ୍ରୋଦୟ—କୈଳାସ ଚନ୍ଦ୍ର ମହାପାତ୍ର, ପ୍ରେମ ପଞ୍ଚାମୃତ—ଲକ୍ଷ୍ମୀକାନ୍ତ ଗୈ୍ଛଧୁଖ୍ୟ, ମନ୍ମଥମଧ୍ୟମ ପ୍ରତିପାଦକ—ଘନଶ୍ୟାମ ଦାସ, ନାରାୟଣ ଶତକ—କରୁଣାକର କର, 'ଗୁରୁଭକ୍ତି ଗୀତା (୧ମ ଓ ୩ୟ ଖଣ୍ଡ) 'ଜମୁଦ୍ଧକୃଷ୍ଣ ଭଜନ', ଚଉତିଶା ମଧୁଚନ୍ଦ୍ର (୫ମ ଖଣ୍ଡ), ସାଧୁଗୀତି, ଖଡ଼ଙ୍ଗା ଭାଗବତ, ଶଶିରେଖା ଆଦିର ସମ୍ପାଦକ ବଳଦେବଚରଣ ପଟ୍ଟନାୟକ । ଆର୍ତ୍ତବଲ୍ଲଭଙ୍କ ପ୍ରଥମ ଦଶ ବର୍ଷର ପ୍ରସ୍ତୁତି ଓ ପର ଦଶ ବର୍ଷର ସାହିତ୍ୟସାଧନା ପ୍ରାଚୀ ସମିତିର ଥିଲା ମେରୁଦଣ୍ଡ । ପରବର୍ତ୍ତୀ ପରିସ୍ଥିତି ଜଟିଳ ହୋଇ ଉଠିଲା । ପ୍ରାଚୀ ପ୍ରେସରେ ନିଆଁ ଲାଗିଯିବା ଫଳରେ ଏ ସମସ୍ତ ଉଦ୍ୟମର ଶେଷ ପରିଣତି ପାଉଁଶ ଗଦାରେ ପରିଣତ ହେଲା ।

'ପ୍ରାଚୀ ସମିତି' ଭାଙ୍ଗିଗଲା । ତା ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲେ ପୁସ୍ତକ ପ୍ରକାଶନ, ବକ୍ତୃତା ଓ ପତ୍ରିକା ପରିଚାଳନା । ପ୍ରାଚୀ ସମିତିର ଅକାଳ ପତନ ଆର୍ତ୍ତବଲ୍ଲଭଙ୍କ ହୃଦୟକୁ ଯେଉଁ ଆଘାତ ଦେଇଥିଲା, ତାହା ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୁଲିପାରି ନ ଥିଲେ ।

ପରବର୍ତ୍ତୀ କାଳରେ ପ୍ରାଚୀ ସଂଗୃହୀତ ଅମୁଦ୍ରିତ ଗଣି ଗଣି ପୋଥି ଓ ପ୍ରକାଶିତ ପୁସ୍ତକାବଳୀ ସେ ଦାନ କରିଗଲେ ଉତ୍କଳ ବିଶ୍ୱବିଦ୍ୟାଳୟକୁ । ତଦାନୀନ୍ତନ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ସେଗୁଡ଼ିକୁ ଗ୍ରହଣ କଲାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରାଚୀ ସମିତିକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଉପଯୁକ୍ତ ଦାୟିତ୍ୱ ଭାବରେ ସେଗୁଡ଼ିକର ଉପଯୋଗ କରିବେ ବୋଲି ଆଶା ଓ ଆଶ୍ୱାସନା ଦେଇଥିଲେ । ଆର୍ତ୍ତବଲ୍ଲଭଙ୍କୁ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟର ପାଣ୍ଡୁଲିପି ବିଭାଗରେ ଅବୈତନିକ ନିର୍ଦ୍ଦେଶକ ଭାବେ ଏକ ସମ୍ମାନାସ୍ପଦ ନିଯୁକ୍ତି ଦେଇଥିଲେ । କେତେଦିନ ଯାଏ ଏହିପରି କାର୍ଯ୍ୟ ଚାଲିବା ପରେ ବିଚିନ ଅସନ୍ତୁଷ୍ଟ ଆର୍ତ୍ତବଲ୍ଲଭ ରୋଷଭରି ହୋଇ ସେ କାର୍ଯ୍ୟ ତ୍ୟାଗ କଲେ । ଏବେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ସେହି ଦାୟିତ୍ୱରେ ଦେବା କ୍ରମେ ରହିଛନ୍ତି । ମାତ୍ର 'ପ୍ରାଚୀ'ର କାର୍ଯ୍ୟ ଅସଂପୂର୍ଣ୍ଣ ।

ପ୍ରାଚୀ ପ୍ରକାଶିତ 'ପ୍ରାଚୀ ଗ୍ରନ୍ଥମାଳା'ର କ୍ରମିକ ନମ୍ବର ସହ ପ୍ରକାଶନ ସମୟ ନିର୍ଣ୍ଣୟ କରି ୫୩ଟି ପୁସ୍ତକର ଏକ ଗ୍ରନ୍ଥ ତାଲିକା ଡକ୍ଟର ନଟବର ସାମନ୍ତରାୟ "ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ" ପୁସ୍ତକର ପରିଶିଷ୍ଟ (୧)ରେ ଉଲ୍ଲେଖ କରିଛନ୍ତି ।

ପ୍ରାଚୀ ଗ୍ରନ୍ଥମାଳାର ସମ୍ପାଦନାରେ ବିଭିନ୍ନ ଲେଖକ ସହଯୋଗ କରିଥିଲେ ହେଁ ପ୍ରତ୍ୟେକଟି ଗ୍ରନ୍ଥ ପ୍ରକାଶନରେ ଯେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ପ୍ରତ୍ୟକ୍ଷ ବା ପ୍ରଚ୍ଛନ୍ନ ହସ୍ତର ସ୍ପର୍ଶ ରହିଥିଲା; ଏହା ନିଃସନ୍ଦେହ । ବିଶେଷତଃ ଲେଖକମାନଙ୍କ ଐତିହାସିକ କାଳ

ନିରୂପଣ ବେଳେ ସେ ନିଶ୍ଚିତ ଭାବେ ସ୍ୱକୀୟ ମତ ପ୍ରଦାନ କରି ଗ୍ରନ୍ଥର ଗୁଣାତ୍ମକ ମୂଲ୍ୟ ବୃଦ୍ଧି କରାଇଥିଲେ । ଏଣୁ ଯେଉଁ ଯେଉଁ ଗ୍ରନ୍ଥଗୁଡ଼ିକ ପ୍ରାଚୀ ସମିତି ଆନୁକୂଲ୍ୟରେ ପ୍ରକାଶ ପାଇଲା ସେଗୁଡ଼ିକର କାଳକ୍ରମ ଏହିପରି—

| କାଳ | କବି | କୃତି |
|---|---|---|
| ପଞ୍ଚଦଶ ଶତାବ୍ଦୀ ମଧ୍ୟଭାଗ | ବୃନ୍ଦାବନ ଦାସ | ରସବାରିଧି |
| ୧୫ଶ ଶେଷ ଓ ୧୬ଶ ଶତାବ୍ଦୀର ପ୍ରାରମ୍ଭ | ଅର୍ଜୁନ ଦାସ | ରାମବିଭା |
| ୧୬ଶ ଶତାବ୍ଦୀ ପ୍ରତାପରୁଦ୍ରଙ୍କ ରାଜତ୍ୱ (୧୪୯୭) | ଚୈତନ୍ୟ ଦାସ | ନିର୍ଗୁଣ ମାହାତ୍ମ୍ୟ ଓ ବିଷ୍ଣୁଗର୍ଭ ପୁରାଣ |
| ଷଷ୍ଠଦଶ ଶତାବ୍ଦୀ ପ୍ରଥମ ଭାଗ | ମଧୁସୂଦନ ଦାସ | ନଳ ଚରିତ |
| ୧୫୫୫ ସାଲ | ଶିଶୁଶଙ୍କର ଦାସ | ଉଷାଭିଳାଷ |
| ଷୋଡ଼ଶ | ବଳରାମ ଦାସ | ବଟ ଅବକାଶ (୧୫୦୫ରେ ଜଗମୋହନ ରାମାୟଣ ଓ ୧୫୧୦ରେ ଗୁପ୍ତଗୀତା ରଚିତ ହେବା ସ୍ଥିରକଲେ) |
| ଷୋଡ଼ଶ | ଅଚ୍ୟୁତାନନ୍ଦ ଦାସ | ବ୍ରହ୍ମଶଙ୍କୁଳ ଓ ଅଣାକାର ସଂହିତା ଗୁରୁଭକ୍ତି ଗୀତା ଗୟୁ ଖଣ୍ଡ, (ଏହାଙ୍କ ଜନ୍ମ ୧୫୧୧ ବା ୧୫୧୨ ବୋଲି ସ୍ଥିର କଲେ) |
| ଷୋଡ଼ଶ | ଦେବଦୁର୍ଲଭ ଦାସ | ରହସ୍ୟମଞ୍ଜରୀ (ଅଚ୍ୟୁତାନନ୍ଦଙ୍କ ସମସାମୟିକ ବୋଲି କହିଛନ୍ତି) |
| ଷୋଡ଼ଶ | ଯଶୋବନ୍ତ ଦାସ | ପ୍ରେମଭକ୍ତି ବ୍ରହ୍ମଗୀତା, ଶିବ ସ୍ୱରୋଦୟ (ଜନ୍ମ ୧୪୯୫-୧୫୦୦ ମଧ୍ୟରେ ୧୫୭୦-୮୦ ପର୍ଯ୍ୟନ୍ତ ଜୀବିତ ଥିଲେ) |
| ସପ୍ତଦଶ ଶତାବ୍ଦୀ | ପ୍ରତାପ ରାୟ | ଶଶିସେଣା (୧୬୫୫ ବେଳକୁ ରଚିତ) |
| ,, | କାର୍ତ୍ତିକ ଦାସ | ରୁକ୍ମିଣୀ ବିଭା (୧୬୦୦-୫୦ ସାଲ ମଧ୍ୟରେ ରଚିତ) (ଅପ୍ରକାଶିତ ନବାନୁରାଗ ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥିଶାଳାରେ ରହିଛି) |

| | | |
|---|---|---|
| ସପ୍ତଦଶ ଶତାବ୍ଦୀ | ଈଶ୍ୱର ଦାସ | ଶ୍ରୀଚୈତନ୍ୟ ଭାଗବତ (ଶ୍ରୀଚୈତନ୍ୟଙ୍କ ତିରୋଧାନର ୧୫୦ ବର୍ଷ ପରେ—୧୫୩୩+୧୫୦ = ୧୬୮୩) |
| ,, | ଦ୍ୱାରିକା ଦାସ (୧୬୬୨-୧୭୨୦) | ପରତେ ଗୀତା |
| ,, | ଭୂପତି ପଣ୍ଡିତ | ପ୍ରେମ ପଞ୍ଚାମୃତ (ଦିବ୍ୟସିଂହ ଦେବଙ୍କ ୮ମ ଅଙ୍କ ୧୬୯୫-୯୬ରେ ଗ୍ରନ୍ଥଶେଷ) |
| ,, | ବୃନ୍ଦାବନ ଦାସୀ | ପୂର୍ଣ୍ଣତମ ଚନ୍ଦ୍ରୋଦୟ (ଦିବ୍ୟସିଂହ ଦେବଙ୍କ ୧୩ ଅଙ୍କ—୧୬୯୯-୧୭୦୦ରେ ଶେଷ) |
| ଅଷ୍ଟାଦଶ ଶତାବ୍ଦୀ | ଦୀନକୃଷ୍ଣ ଦାସ | ରସକଲ୍ଲୋଳ, ଜଗମୋହନ ଛାନ୍ଦ |
| ,, | ଉପେନ୍ଦ୍ର ଭଞ୍ଜ (୧୬୭୦-୧୭୨୦) | ଲାବଣ୍ୟବତୀ (ଦିବ୍ୟସିଂହଙ୍କ ୨୭ ଅଙ୍କରେ ରଘଲେଖା ରଚିତ) |
| ,, | ଦନାଇ ଦାସ (୧୭୧୦-୧୭୭୦) | ଗୋପୀଭାଷା |
| ୧୮ଶ ଶତାବ୍ଦୀ | ଭକ୍ତଚରଣ (୧୭୨୯-୧୮୧୩) | ମଥୁରାମଙ୍ଗଳ |
| ,, | ବ୍ରଜନାଥ ବଡ଼ଜେନା (୧୭୩୦-୧୭୯୫) | ଚତୁର ବିନୋଦ |
| ,, | ଅଭିମନ୍ୟୁ ସାମନ୍ତସିଂହାର | ବିଦଗ୍ଧ ଚିନ୍ତାମଣି (ପାଞ୍ଚ ଭାଗରେ ପ୍ରକାଶିତ) |
| ,, | ଦୀନବନ୍ଧୁ ଖାଡ଼ଙ୍ଗା | ଖାଡ଼ଙ୍ଗା ଭାଗବତ |
| ,, | ପଦ୍ମନାଭ ଶ୍ରୀଚନ୍ଦନ | ଶଶିରେଖା |
| ଊନବିଂଶ ଶତାବ୍ଦୀ | ଭୀମ ଭୋଇ (୧୮୫୫-୧୮୯୫) | ସ୍ତୁତିଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା, ଭଜନମାଳା ୨ ଖଣ୍ଡ, ଶ୍ରୁତିନିଷେଧ ଗୀତା, ଚଉତିଶା ମଧୁଚକ୍ର ୫ ଖଣ୍ଡ |

ଏହି ୨୪ଟି କବିଙ୍କର ୪୦ଟି ପୁସ୍ତକ ପ୍ରକାଶନ ବ୍ୟତୀତ ମହିମାଧର୍ମ ସମ୍ପର୍କୀୟ ପୁସ୍ତକ ସାଧୁଗୀତ ୨ ଖଣ୍ଡ, ମହିମାଧର୍ମ ପ୍ରତିପାଦକ, ଜୟକୃଷ୍ଣ ଭଜନ ଆଦି ୪ ଖଣ୍ଡ

ଏବଂ ବୃହଦାରଣ୍ୟ ଗୁପ୍ତ, ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ, ନାରାୟଣ ଶତକ, ମାଦଳାପାଞ୍ଜି ଆଦି ବହୁ ଉପାଦେୟ ଗ୍ରନ୍ଥମାନ ପ୍ରକାଶିତ ହୋଇଥିଲା ।

ପ୍ରାଚୀ ସମିତିର ଦାୟାଦ ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟ ଲାବଣ୍ୟବତୀ, ପ୍ରେମପଞ୍ଚାମୃତ, ବିଦଗ୍‌ଧ ଚିନ୍ତାମଣି, ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, ମାଦଳାପାଞ୍ଜି ଓ ସୁଭଦ୍ର ଚିନ୍ତାମଣି ଆଦି କେତୋଟି ପାଠ୍ୟକ୍ରମରେ ଥିବା ପୁସ୍ତକମାନଙ୍କର ପୁନର୍ମୁଦ୍ରଣ କରାଇ-ଥିଲେ । ଆର୍ତ୍ତବଲ୍ଲଭଙ୍କ ଅନ୍ତିମ ଅବସ୍ଥାରେ ସାରଳା ମହାଭାରତ ସମ୍ପାଦନା କାଳରେ ଧନଞ୍ଜୟ ଭଞ୍ଜଙ୍କ 'ଲୀଳାବତୀ'ର ମଧ୍ୟ ସମ୍ପାଦନା କରିଥିବା ଏହି ଲେଖକ ଦେଖିଅଛୁ ।

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଦୀର୍ଘ ପାଞ୍ଚହି ବର୍ଷର ଓଡ଼ିଆ ସାହିତ୍ୟର ଇତିହାସକୁ ବିଧିବଦ୍ଧଭାବରେ ସଙ୍କଳନ କରିବାର ଯେଉଁ ଅଦମ୍ୟ ଉଦ୍ୟମ କରିଯାଇଛନ୍ତି, ସେଥିପାଇଁ ସେ ଏ ଜାତିର ସର୍ବଦା ନମସ୍ୟ ହୋଇ ରହିବେ । ପ୍ରାଚୀ ପ୍ରକାଶନର ସୁଦୀର୍ଘ, ମୂଲ୍ୟବାନ୍ ଓ ଉପାଦେୟ ମୁଖବନ୍ଧମାନଙ୍କରେ ସେ ଯେଉଁ ଅପୂର୍ବ ଅଧ୍ୟବସାୟ ଓ ଗବେଷକର ଅନ୍ତର୍ଦୃଷ୍ଟି ଦେଖାଇଛନ୍ତି ତାହା ଅଭୂତପୂର୍ବ ।

ଡକ୍ଟର ନଟବର ସାମନ୍ତରାୟଙ୍କ ଭାଷାରେ କୁହାଯାଇପାରେ, ବିଷୟ ନିର୍ବାଚନରେ ଉନ୍ନତଦୃଷ୍ଟି, ସମତୁଲ କରିବାରେ ଅପୂର୍ବ ସାହସିକତା, ଉପାଦାନ ସଂଗ୍ରହରେ ଅନନ୍ତ ଅଧ୍ୟବସାୟ, ପ୍ଲାନ୍ ଗଢ଼ିବାରେ ସୁଗଭୀର ବିଦ୍‌ବତ୍ତା ଓ ବଳିଷ୍ଠ କଳ୍ପନାଶକ୍ତି, ଏପରିକି ଫଳବିଶେଷରେ ସମାଲୋଚନା-ସଂସାରର ଅଂଶବିଶେଷ ଗଢ଼ିବାରେ ସମାଲୋଚକର ଯଥାର୍ଥ ବୈଜ୍ଞାନିକ ଦୃଷ୍ଟିକୋଣ ଏ ସମସ୍ତଙ୍କ ଅପୂର୍ବ ସହଯୋଗରେ ଆର୍ତ୍ତବଲ୍ଲଭ ଯେଉଁ ସାହିତ୍ୟ ସଂସାର ତିଆରି କରିଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ଏକାନ୍ତ ଅଭିନବ ଓ ଅଦ୍ୱିତୀୟ ।"

ଯଦି ପ୍ରାଚୀ ଗଠିତ ହୋଇ ନଥାନ୍ତା କିମ୍ବା ପ୍ରାଚୀ ଗ୍ରନ୍ଥମାଳା ପ୍ରକାଶ ପାଇନଥାନ୍ତା, ତେବେ ଆଜି ଓଡ଼ିଆ ସାହିତ୍ୟର ଯେପରି ବିରାଟ ବିକାଶ ଘଟିଅଛି ଓ ଘଟୁଅଛି ତାହା ସମ୍ଭବ ହୋଇ ନଥାନ୍ତା ।

ବହୁଲୁପ୍ତ ଗ୍ରନ୍ଥ ଉଦ୍ଧାର କରି ସେଗୁଡ଼ିକ ଶୁଦ୍ଧପାଠ ନିମନ୍ତେ ବିଭିନ୍ନ ପୋଥିମାନଙ୍କୁ ମିଳାଇ, ପାଦଟୀକା ଓ ଟିପ୍ପଣୀ ଦେଇ ସଙ୍କଳନ ଓ ସମ୍ପାଦନ କରିବା ଦ୍ୱାରା ପ୍ରକାଶନ କ୍ଷେତ୍ରରେ ପ୍ରାଚୀ ସମିତିର ଦାନ ଉଲ୍ଲେଖଯୋଗ୍ୟ । ଏମାନଙ୍କ ପ୍ରୟାସଫଳରେ ପ୍ରାଚୀନ ସାହିତ୍ୟ ନବକଳେବର ଧାରଣ କରି ପାଠକସମାଜ ସମକ୍ଷରେ ଉପସ୍ଥାପିତ ହୋଇପାରିଲା । 'ଲାବଣ୍ୟବତୀ'ର ସୁଦୀର୍ଘ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ କେବଳ ଅଳଙ୍କାର ଶାସ୍ତ୍ରସାଗର ମନ୍ଥନଜନିତ ରସାମୃତ ପରିବେଷଣରେ ପ୍ରୟାସ କରିନାହିଁ, ତତ୍ସଙ୍ଗେ କାବ୍ୟାମୋଦୀମାନଙ୍କୁ

କାବ୍ୟପାଠର ରସାସ୍ୱାଦନ ନିମିତ୍ତ ଦେଇଯାଇଛନ୍ତି ଦିଗ୍‌ଦର୍ଶନ । ଉପେନ୍ଦ୍ର ଭଞ୍ଜଙ୍କ ରଚନା ପ୍ରତି ବିଜୟଚନ୍ଦ୍ର ମଜୁମଦାର୍ ଯେଉଁ ଦୋଷ ପ୍ରଦର୍ଶନ କରି ଅଭିଯୋଗ ଆରୋପ କରିଥିଲେ, ସେ ସମସ୍ତ ଖଣ୍ଡନ କରି ଦେଇଯାଇଛନ୍ତି ଯଥାର୍ଥ ଉତ୍ତର ।

'ରସକଲ୍ଲୋଳ'ର ମୁଖବନ୍ଧରେ କବି ଦୀନକୃଷ୍ଣଙ୍କୁ ଇଟାଲୀୟ କବି ଦାନ୍ତେଙ୍କ ସହ ତୁଳନା କରାଯିବା ସଙ୍ଗେ ସଙ୍ଗେ ସେହି ଗଳିତ କୁଷ୍ଠ ପୀଡ଼ିତ କବିଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ ସହିତ କାବ୍ୟଗତ ସୌନ୍ଦର୍ଯ୍ୟ ଓ ଭାବଗତ ମାଧୁର୍ଯ୍ୟ ପ୍ରକଟନ କରିବା ଦିଗରେ ପ୍ରଯତ୍ନ କରାଯାଇଛି । 'ଜଗମୋହନ ଗ୍ରନ୍ଥ' ଓ 'ରସକଲ୍ଲୋଳ' କାରଙ୍କ କୃତି ଦୁଇ ଗ୍ରନ୍ଥର ତୁଳନାତ୍ମକ ଅଧ୍ୟୟନ କରି ଦର୍ଶାଯାଇଛି । ଆର୍ତ୍ତବଲ୍ଲଭଙ୍କ ସହକର୍ମୀଗଣ ମଧ୍ୟ ପ୍ରାଚୀନ ଗ୍ରନ୍ଥ ସମ୍ପାଦନ କାଳରେ ତାଙ୍କର ଆଚରିତ ମାର୍ଗ ଅନୁସରଣପୂର୍ବକ ଓଡ଼ିଆ ପ୍ରାଚୀନ ସାହିତ୍ୟ ଗବେଷଣା କ୍ଷେତ୍ରକୁ ଋଦ୍ଧିମନ୍ତ କରିଛନ୍ତି । ଏହି ମହାନ୍ କାର୍ଯ୍ୟକୁ ସେମାନେ ସ୍ୱଇଚ୍ଛାରେ ବରଣ କରିଥିଲେ । ସେମାନଙ୍କ ସେହି ସାଧନାର ସୁଫଳ ଲାଭ କରୁଛନ୍ତି ଆଜିର ଗବେଷକବୃନ୍ଦ ।

ଉତ୍କଳମାତାର ସେହି ସୁଯୋଗ୍ୟ ସନ୍ତାନଗଣ ଓଡ଼ିଆ ସାହିତ୍ୟ ଇତିହାସରେ ଯେ ଚିରସ୍ମରଣୀୟ ରହିବେ; ଏହା ନିଃସନ୍ଦେହ । 'ସ୍ତୁତିଚିନ୍ତାମଣି' ମୁଖବନ୍ଧରେ କବି ଭୀମଭୋଇଙ୍କ କବି ପ୍ରତିଭାର ମହତ୍ତ୍ୱ ଉପଲବ୍ଧିକରି ରସଗ୍ରାହୀ ଆର୍ତ୍ତବଲ୍ଲଭ ମନ୍ତବ୍ୟ ଦେଇଥିଲେ, "ଲୋକେ ତିଳକୁ ତାଳକରି ବର୍ଣ୍ଣନା କରନ୍ତି, ମାତ୍ର ମୁଁ ତାଳକୁ ତିଳ କରି ସୁଦ୍ଧା ବର୍ଣ୍ଣନା କରି ପାରୁନାହିଁ ।" ତାଙ୍କର ସେ ମହାନ୍ ଉକ୍ତି ପ୍ରାଚୀନ ସାହିତ୍ୟ ଉଦ୍ଧାରବ୍ରତୀ ପ୍ରାଚୀସମିତିର କୃତିତ୍ୱ ପ୍ରତି ମଧ୍ୟ ପ୍ରଯୁଜ୍ୟ ।



# ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ

ଡାଃ ଶୈଳେଶ୍ୱର ନନ୍ଦ

ଆଜି କଟକର ବଡ଼ ମେଡ଼ିକାଲ ବୋଲିଲେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଓ ତେତ୍‌ସଂଲଗ୍ନ ହସ୍‌ପିଟାଲକୁ ବୁଝାଏ । ବାସ୍ତବରେ ଏହା ଏକ ବୃହତ୍ତ ଅନୁଷ୍ଠାନ । କେବଳ ଭାରତରେ କାହିଁକି ସମଗ୍ର ଦକ୍ଷିଣ ପୂର୍ବ ଏସିଆର ଏକ ପ୍ରତିଷ୍ଠିତ ଚିକିତ୍ସା ମହାବିଦ୍ୟାଳୟ । ଏହି ମେଡ଼ିକାଲ କଲେଜର ଐତିହ୍ୟ ପ୍ରତି ସିଂହାବଲୋକନ କଲେ, ତିନି ଶହ ବର୍ଷର ଇତିହାସ ଦୃଷ୍ଟି ପଥାରୂଢ଼ ହୁଏ । ଉନ୍ମୋଚିତ ହୁଏ ଅନେକ ଅଜଣା କଥା । ହୁଏତ ଅତୀତର ଅମୂଲ୍ୟ ସ୍ମୃତି ସବୁ ମାଉଁଟି ଲେଖି ବସିଲେ ପୋଥିଏ ହେବ । କିନ୍ତୁ ଏତେ ବିସ୍ତାରିତ ବର୍ଣ୍ଣନା ପାଇଁ ପାଠକଙ୍କ ନିକଟରେ ହୁଏତ ସମୟ ବା ଧୈର୍ଯ୍ୟ ନଥିବ । ଏଣୁ ସଂକ୍ଷେପରେ ସୂଚନା ଦେବା ସମୀଚିନ ।

ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ । ମରହଟ୍ଟା ରାଜତ୍ୱର ସମୟ । ଭାରତବର୍ଷ ପରି ଏକ ଆର୍ଯ୍ୟଭୂମିରେ ଧର୍ମାନୁଚିନ୍ତା ଦେବାର୍ଚ୍ଚନା, ତଥା ତୀର୍ଥ ପର୍ଯ୍ୟଟନ ଓ ପୁଣ୍ୟ ସଂଗ୍ରହର ପ୍ରଥା ଅନେକଦିନରୁ ପ୍ରଚଳିତ । ଉତ୍କଳ ପରମ ଆରାଧ୍ୟଦେବ ଶ୍ରୀଜଗନ୍ନାଥଙ୍କ ପାଇଁ ଭାରତବର୍ଷର ଜନସାଧାରଣଙ୍କ ନିକଟରେ ସୁପରିଚିତ । ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଭାରତର କୋଣ ଅନୁକୋଣରୁ ତଥା ଭାରତ ବାହାରୁ ବହୁ ଭକ୍ତ ଓ ପରିବ୍ରାଜକ ଆସୁଥିଲେ । ପୁରୀ ସହିତ ଯୋଗସୂତ୍ର ଥିଲା ଜଗନ୍ନାଥ ସଡ଼କ, ଯାହା କଟକ ସହର ଦେଇ ଯାଇଥିଲା । ଯାତ୍ରୀମାନେ ଦିନ ଦିନ ଧରି ପରିଶ୍ରାନ୍ତ ହୋଇ ଆଗେଇ ଯାଉଥିଲେ ପୁରୀ ବଡ଼ଦାଣ୍ଡକୁ କିନ୍ତୁ ବିଶୁଦ୍ଧ ପାନୀୟ ଜଳର ଅଭାବ ଓ ଅସ୍ୱାସ୍ଥ୍ୟକର ପରିବେଶ ଏବଂ ଦୂଷିତ ବାତାବରଣ ହେତୁ ବହୁ ଯାତ୍ରୀ ଝାଡ଼ା, ବାନ୍ତି, ମହାମାରୀ ମେଲେରିଆ ଓ ଫାଇଲେରିଆ ଆଦି ରୋଗରେ ଆକ୍ରାନ୍ତ ହେଉଥିଲେ । ଏଣୁ ସେ ସମୟରେ ମରହଟ୍ଟା ରାଜାମାନେ ସଡ଼କ ଆଖପାଖରେ ଛୋଟ ଛୋଟ ଚିକିତ୍ସାଳୟ ବା ଡ଼ିସ୍‌ପେନସରି ମାନ ବସାଇଥିଲେ । ସେହି ସମୟରେ ଆଜିର ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ ପରିସର ଭିତରେ ଏକ ଡ଼ିସ୍‌ପେନ୍‌ସରି ବସାଯାଇଥିଲା । ତିନିଶହ ବର୍ଷ ତଳର ସେଇ ଛୋଟ ଡ଼ିସ୍‌ପେନ୍‌ସରି ଆଜି ଏକ ବୃହତ୍ତ ଚିକିତ୍ସା ମହାବିଦ୍ୟାଳୟର ରୂପ ନେଇ ଦଣ୍ଡାୟମାନ ।

୧୮୦୩ ରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କଲେ । ଏକଲପ୍ରାଥିକ ଚିକିତ୍ସା ପାଇଁ ଆବଶ୍ୟକତାକୁ ସେମାନେ ହୃଦୟଙ୍ଗମ କରି ଏହି କ୍ଷୁଦ୍ର ଡ଼ିସ୍‌ପେନସରୀକୁ ଏକ ଶ୍ରେଷ୍ଠ ହସ୍‌ପିଟାଲରେ ପରିଣତ କଲେ । ହସ୍‌ପିଟାଲରେ ବହିର୍ବିଭାଗ ବା ଆଉଟଡୋର ବ୍ୟତୀତ ଇନଡୋରର ବ୍ୟବସ୍ଥା ଥାଏ । ରୋଗୀ ଏଥିରେ ଭର୍ତ୍ତି ହୋଇ କିଛିଦିନ ପାଇଁ ଚିକିତ୍ସିତ ହୋଇ ଆରୋଗ୍ୟ ଲାଭ କରିବା ପରେ ଯାଉଥାଏ । ଇଂରେଜମାନେ ଏହି ହସ୍‌ପିଟାଲ ପାଇଁ ଯଥେଷ୍ଟ ଅର୍ଥ ପ୍ରଦାନ କରି ଏହାକୁ ସଂମୃଦ୍ଧ କରିଥିଲେ । କିନ୍ତୁ ୧୮୬୫-୬୬ର ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ଆର୍ଥିକ ମାନଦଣ୍ଡ ଭୁଷୁଡ଼ି ପଡ଼ିଥିଲା । ସରକାରୀ ଅର୍ଥ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମରେ ବିନିଯୋଗ ହେଲା । ତଥାପି ଏହି ହସ୍‌ପିଟାଲର ଆବଶ୍ୟକତା ପାଇଁ ଅର୍ଥ ଅନ୍ୟତ୍ରର ଫଣ୍ଡରୁ ଖର୍ଚ୍ଚ କରାଗଲା ଓ ଚିକିତ୍ସା କ୍ଷେତ୍ରରେ କୌଣସି ଅବହେଳା କରାଯାଇ ନଥିଲା ।

୧୮୭୫ ମସିହା ଏ ଅନୁଷ୍ଠାନର ଯାତ୍ରାପଥରେ ଏକ ସ୍ମରଣୀୟ ବର୍ଷ । କଟକର ତଦାନିନ୍ତନ ସିଭିଲ ସର୍ଜନ ଗୋଟି ସାହେବ ଡକ୍ଟର "ଷ୍ଟିଓ୍ୱାର୍ଟ" ଏହି ହସ୍‌ପିଟାଲକୁ କେନ୍ଦ୍ର କରି ଏକ ମେଡ଼ିକାଲ ସ୍କୁଲ ଗଠନ କରିବାର ସ୍ୱପ୍ନ ଦେଖିଲେ । ସେ ଲେଫଟେନାଣ୍ଟ ଗଭର୍ଣ୍ଣର ସାର୍ ରିଚାର୍ଡ଼ ଟେମ୍ପଲ ଓ ଡ଼ିଭିଜନାଲ୍ କମିଶନର ଟି. ଇ. ରେଭେନ୍‌ସାଙ୍କ ସହାୟତା ଫଳରେ ଏହି ମେଡ଼ିକାଲ ସ୍କୁଲ ସ୍ଥାପନ କଲେ ସେହିବର୍ଷ । ଏହି ସ୍କୁଲରୁ ଏଲ. ଏମ. ପି ଡ଼ିପ୍ଲୋମା ପ୍ରାପ୍ତ—ଲାଇସେନ୍‌ସିଏଟ ମେଡ଼ିକାଲ ପ୍ରାକ୍ଟିସନର ମାନେ ବାହାରିଲେ ଯେଉଁମାନେ ସାରା ଓଡ଼ିଶାରେ ଚିକିତ୍ସକ ଭାବେ ପୂଜିତ ହେଲେ । ଚିକିତ୍ସା ଜଗତରେ ଏକ ନୂତନ ଅଧ୍ୟାୟର ସୃଷ୍ଟି ହେଲା ଓଡ଼ିଶାରେ ।

୧୯୩୬ ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତ ହେଲା । ସେଯାଏଁ ଓଡ଼ିଶାରେ କୌଣସି ବିଶ୍ୱବିଦ୍ୟାଳୟ ବା ଇଉନିଭରସିଟି ନଥିଲା । କେବଳ ମାତ୍ର ୪ଟି ସାଧାରଣ କଲେଜ ଓଡ଼ିଶାରେ ଥିଲା । ମେଡ଼ିକାଲ ଓ ଇଞ୍ଜିନିଅରିଂ କଲେଜ ପାଠ ପାଇଁ ଛାତ୍ରମାନେ ଓଡ଼ିଶା ବାହାରକୁ ଯାଉଥିଲେ । ଏ ଅବସ୍ଥା ହୃଦୟଙ୍ଗମ କରି ତତ୍କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଓଡ଼ିଶାରେ ଏକ ଇଉନିଭରସିଟି ବସାଇବା କଥା ଚିନ୍ତା କରିଥିଲେ । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଆଗମନରେ ସମଗ୍ର ବିଶ୍ୱ ଅବ୍ୟବସ୍ଥିତ ହେବାରୁ ସମସ୍ତ ଯୋଜନା ନିଷ୍ପ୍ରଭ ହୋଇଗଲା ।

ପରେ ପରେ ୧୯୪୩ ରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ପ୍ରଥମ ବିଶ୍ୱବିଦ୍ୟାଳୟ ସ୍ୱପ୍ନ ଦେଖିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଲାଭକଲା ୧୯୪୩ ମସିହା ନଭେମ୍ବର ୨୭ରେ । ଏହି ଅବସରରେ ଆଉ ୭ଟି କଲେଜ ପ୍ରତିଷ୍ଠା କରାଗଲେ । ଏଥିରୁ ୬ଟି ସାଧାରଣ କଲେଜ ଓ ଗୋଟିଏ ମେଡ଼ିକାଲ କଲେଜ । ଓଡ଼ିଶାରେ ସେତେବେଳକୁ ସମୁଦାୟ କଲେଜ ସଂଖ୍ୟା ହେଲା ୧୨ଟି । ଓଡ଼ିଶା ମେଡ଼ିକାଲ ସ୍କୁଲ ପରିବର୍ତ୍ତିତ ହୋଇ ହେଲା ଓଡ଼ିଶା ମେଡ଼ିକାଲ କଲେଜ ।

ଓଡ଼ିଶା ମେଡ଼ିକାଲ ସ୍କୁଲର ଅଧ୍ୟକ୍ଷ ମେଜର ଏ. ଟି. ଆଣ୍ଡରସନ—ସ୍ୱାସ୍ଥ୍ୟ ନିର୍ଦ୍ଦେଶକ କର୍ଣ୍ଣେଲ ଏନ୍. ଗ୍ରେପ୍ରାଙ୍କୁ ପ୍ରବର୍ତ୍ତାଇ ଏହି ମେଡ଼ିକାଲ ସ୍କୁଲକୁ ମେଡ଼ିକାଲ

କଲେଜକୁ ଉନ୍ନୀତ କରାଇବାରେ ସେନାପତି ଥାଇଲେ । ସରକାରଙ୍କ ତରଫରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ମନ୍ତ୍ରିମଣ୍ଡଳର ବରିଷ୍ଠ ନେତା ଓ ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର, ଏହି ମେଡ଼ିକାଲ କଲେଜ ପ୍ରତିଷ୍ଠା ଦିଗରେ ମୁଖ୍ୟ ଭୂମିକା ନେଇଥିଲେ । ୧୯୪୪ ଜୁନ ପନ୍ଦରଦିନ "ଓଡ଼ିଶା ମେଡ଼ିକାଲ କଲେଜ" ଆରମ୍ଭ ହେଲା । ସେହି ମେଡ଼ିକାଲ ସ୍କୁଲ ପରିବେଶରେ ପ୍ରଥମ ବର୍ଷ ୨୨ ଜଣ ଛାତ୍ର ଏହି କଲେଜରେ ନାମ ଲେଖାଇଲେ ଓ ୧୯୪୯ରେ ଡାକ୍ତର ହୋଇ ବାହାରିଲେ । ଏହି କଲେଜ ୧୯୫୨ରେ ମେଡ଼ିକାଲ କାଉନ୍ସିଲର ଅନୁମୋଦନ ପାଇଲା । ଭାରତର ଅନ୍ୟାନ୍ୟ ମେଡ଼ିକାଲ କଲେଜ ସହ ସମକକ୍ଷ ହେବାକୁ ଦରକାର ପଡ଼ିଲା ପ୍ରଚୁର ଅର୍ଥ । ସ୍ୱାଧୀନତାପରେ କେତେକ ପରିମାଣ ଅର୍ଥ ମୟୂରଭଞ୍ଜ ମହାରାଜାଙ୍କଠାରୁ ମିଳିଲା । ଏଣୁ ପରବର୍ତ୍ତୀ ସମୟରେ ମୟୂରଭଞ୍ଜର ପୂର୍ବତନ ଜନପ୍ରିୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ନାମରେ ଏହି ଚିକିତ୍ସା ବିଦ୍ୟାଳୟ ନାମିତ ହେଲା । ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି ତଥା ସ୍ୱତନ୍ତ୍ର ସ୍ୱାଧୀନ ଉତ୍କଳର ଚିନ୍ତାନାୟକ ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଓଡ଼ିଶାର ଲକ୍ଷ ଲକ୍ଷ ରୋଗାକ୍ରାନ୍ତ ନିରିହ ଗରିବ ଜନସାଧାରଣଙ୍କ ପାଇଁ ତାଙ୍କ ଜୀବଦଶାରେ ବହୁ ପ୍ରଗତି ମୂଳକ କାର୍ଯ୍ୟ କରିଥିଲେ ।

୧୯୫୧ ରେ ତାଙ୍କର ନାମରେ ମେଡ଼ିକାଲ କଲେଜର ନାମକରଣ କରି ଓଡ଼ିଆ ଜାତି ତାର ଶ୍ରଦ୍ଧା ଓ ସମ୍ମାନ ନିବେଦନ କରିଛି ସେହି ଜାତିପ୍ରାଣ ଓ ଦେଶପ୍ରାଣ ରାଷ୍ଟ୍ର-ନାୟକଙ୍କ ଉଦ୍ଦେଶ୍ୟରେ ।

୨୨ ଜଣ ଛାତ୍ରଙ୍କୁ ନେଇ ଆରମ୍ଭ ହୋଇଥିବା ଏହି କଲେଜ ଆଜି ସହସ୍ରାଧିକ ଛାତ୍ରଙ୍କୁ ସ୍ନାତକ ଓ ସ୍ନାତକୋତ୍ତର ଓ ପୋଷ୍ଟ ଡକ୍ଟରାଲ ଡ଼ିଗ୍ରୀ ପାଇଁ ଶିକ୍ଷା ଦାନ କରୁଅଛି । ୧୯୬୦ରୁ ସ୍ନାତକୋତ୍ତର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହେଲାଣି । ୧୯୮୧ରୁ ପୋଷ୍ଟ ଡକ୍ଟରାଲ ତାଲିମ ଓ ଶିକ୍ଷା ଦିଆ ଗଲାଣି । ଆଜି ଚିକିତ୍ସା ବିଜ୍ଞାନରେ ୨୧ଟି ବିଷୟରେ ଉପାଧ୍ୟୋତ୍ତର ଶିକ୍ଷା ଓ ଦଶଟି ବିଭାଗରେ ସୁପର ସ୍ପେଶିଆଲାଇଜେସନ ବା ପୋଷ୍ଟ ଡକ୍ଟରାଲ ଡ଼ିଗ୍ରୀ ତାଲିମ ଦିଆ ଯାଉଛି । ଓଡ଼ିଶାର ଚିକିତ୍ସା ଜଗତରେ ଏକ ନୂତନ ଆଶା ଆଲୋକର ସନ୍ଧାନ ପ୍ରଗତିର ପ୍ରାବଲ୍ୟ ଅତିକ୍ରମ କରି ଆଗେଇ ଚାଲିଛି । ଭାରତବର୍ଷର ୧୦୯ ଟି ସରକାରୀ ଚିକିତ୍ସା ବିଜ୍ଞାନ କଲେଜ ମଧ୍ୟରୁ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଏକ ଅଗ୍ରଗଣ୍ୟ ଅନୁଷ୍ଠାନ ଯାହା ଶିକ୍ଷା ଓ ଚିକିତ୍ସା ପଦ୍ଧତିର ନୂତନ ମାର୍ଗ ପ୍ରଦର୍ଶନ କରିବାରେ ସମର୍ଥ ହୋଇଅଛି । ଆଜି ସ୍ୱାସ୍ଥ୍ୟସେବା, ଚିକିତ୍ସା, ତାଲିମ ଓ ଗବେଷଣା ଆଦି କ୍ଷେତ୍ରରେ ବହୁ ବୈଜ୍ଞାନିକ ସୃଷ୍ଟି କରିବାର ବଜ୍ର ଶପଥ ନେଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଆଗେଇ ଚାଲିଛି ଆଗକୁ ଆଗକୁ ନୂତନର ସନ୍ଧାନରେ ଏକବିଂଶ ଶତାବ୍ଦୀ ଆଡ଼କୁ ।

# କଟକ ନଗର ଓ ଜୈନଧର୍ମ

**ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ**

କଟକ ନଗର ଓଡ଼ିଶାର ପ୍ରାଚୀନ ରାଜଧାନୀ । ସାଂପ୍ରତିକ କାଳରେ ରାଜଧାନୀ ଭୁବନେଶ୍ୱରକୁ ଉଠିଯାଇଥିଲେ ହେଁ କଟକକୁ ଓଡ଼ିଶାର ସାଂସ୍କୃତିକ ରାଜଧାନୀ ବୋଲି କୁହାଯାଉଛି । ଏଠାକାର ସଂସ୍କୃତି କହିଲେ ଓଡ଼ିଶାର ସଂସ୍କୃତି, ଏଠାକାର ସାହିତ୍ୟ ଓଡ଼ିଆ ସାହିତ୍ୟ, ଏଠାରେ ପ୍ରଚୁରିତ ପ୍ରଚଳିତ ଧର୍ମଧାରଣା ଓଡ଼ିଆଜାତିର ଧର୍ମଧାରଣା । ତଥାକଥିତ ଅହଂମନ୍ୟ ସଂସ୍କୃତିବିତ୍‌ମାନେ ଓଡ଼ିଶାର ସଂସ୍କୃତି ଓ ସାହିତ୍ୟକୁ ବେଳେବେଳେ ବିଭ୍ରାନ୍ତ କରି ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ଇତ୍ୟାଦି ଆଞ୍ଚଳିକତାର ଅବତାରଣା କରାଇଥାନ୍ତି । ମାତ୍ର ଏ ପ୍ରକାର ଧାରଣା ନିହାତି ଅମୂଳକ । ଓଡ଼ିଆଙ୍କ ସ୍ୱାର୍ଥର ସଦା ସର୍ବଦା ପ୍ରତିକୂଳ । ଓଡ଼ିଆ ଜାତି ଗୋଟିଏ, ଏ ଜାତିର ସାହିତ୍ୟ ଗୋଟିଏ, ସଂସ୍କୃତି ଗୋଟିଏ ଏବଂ ଧର୍ମ ଧାରଣା ମଧ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ କେନ୍ଦ୍ର କରି ପରିବ୍ୟାପ୍ତ ହୋଇଛି ।

## ଓଡ଼ିଶା ଜୈନଭୂମି—ଜଗନ୍ନାଥ ଜୈନଦେବ :

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ତତ୍କାଳୀନ କଳିଙ୍ଗରେ ଜୈନଧର୍ମର ଅଖଣ୍ଡ ପ୍ରଭାବ ଥିଲା । ଏପରିକି ଖ୍ରୀଷ୍ଟପୂର୍ବ ୨୬୧ ରେ ଅଶୋକଙ୍କ କଳିଙ୍ଗ ଆକ୍ରମଣ ପରେ ମଧ୍ୟ ଖାରବେଳଙ୍କ ସମୟରେ ଜୈନଧର୍ମ କଳିଙ୍ଗର ରାଜଧର୍ମରୂପେ ପ୍ରତିଷ୍ଠା ଲାଭ କରିଥିଲା । ମଗଧର ରାଜା ନନ୍ଦଙ୍କୁ ପରାଜିତ କରି କଳିଙ୍ଗର ଜିନାସନକୁ ଫେରାଇ ଆଣି ପୁଣିଥରେ ପ୍ରତିଷ୍ଠା କରାଇବା କଥା ଖାରବେଳଙ୍କ ଶିଳାଲେଖରୁ ଜଣାଯାଏ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରତ୍ନସିଂହାସନ ହିଁ ଜିନାସନ । ଜୈନଧର୍ମର ୨୪ ଜଣ ପ୍ରସିଦ୍ଧ ତୀର୍ଥଙ୍କରଙ୍କ ମଧ୍ୟରୁ ମହାବୀର ଏବଂ ଆଉ ଚାରିପାଞ୍ଚ ଜଣଙ୍କୁ ବାଦଦେଲେ ପ୍ରାୟ ୧୯ ଜଣଙ୍କ ନାମରେ ନାଥ ରହିଛି । ତେଣୁ ଜୈନମାନେ ଶ୍ରୀଜଗନ୍ନାଥଙ୍କୁ ତାଙ୍କ ଧର୍ମର ଜଣେ ଅବତାର ପୁରୁଷ-ରୂପେ ଗ୍ରହଣ କରି ନେଇଥିବା ଅସମ୍ଭବ ନୁହେଁ । ମହାପ୍ରଭୁଙ୍କ ମହାପ୍ରସାଦରେ ହବିଷ୍ୟ ପାଇଁ ପ୍ରଯୁଜ୍ୟ ଦ୍ରବ୍ୟ ରହିବା ଜୈନଧର୍ମର ପ୍ରଭାବ କହିଲେ ଅସମୀଚୀନ ହେବନାହିଁ । ଅବଶ୍ୟ ପରବର୍ତ୍ତୀ କାଳରେ କୌଣସି ସାଧୁସନ୍ଥଙ୍କ ମତକୁ ସମ୍ମାନ ପ୍ରଦର୍ଶନ କରି ମହା-ପ୍ରସାଦରେ ବାଇଗଣ, କଖାରୁ ଇତ୍ୟାଦି ବହୁ ବୀଜଯୁକ୍ତ ପରିବା ସଂଯୁକ୍ତ ହୋଇଛି ।

କେଶରୀ ବଂଶର ଶେଷରାଜାଙ୍କୁ ପରାସ୍ତ କରି ଗଙ୍ଗବଂଶର ଚୋଡ଼ଗଙ୍ଗ ଦେବ ଷଡ଼ାନାଗୀ–
କଟକ ଠାରେ ଯେଉଁ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିଥିଲେ, ତାହାର ଐତିହାସିକ
ଅନୁସନ୍ଧାନ ବୋଧହୁଏ ଠିକ୍ ରୂପେ ହୋଇ ପାରିନାହିଁ । ପରବର୍ତ୍ତୀ କାଳରେ ସେହି ଗଙ୍ଗ
ବଂଶର ରାଜା ଅନଙ୍ଗଭୀମ ଦେବ ପୁରୀଠାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବଡ଼ ଦେଉଳ
ନିର୍ମାଣ କରିଥିଲେ ବୋଲି ଐତିହାସିକମାନେ କହନ୍ତି ।

## ଜୈନଧର୍ମର ପରିଚୟ ଓ ପ୍ରତିଷ୍ଠାତା :

ହିନ୍ଦୁଧର୍ମର ବର୍ଣ୍ଣାଶ୍ରମ ବିଭାଗୀକରଣ ଓ ଜାତିପ୍ରଥା ତଥା ଯଜ୍ଞ ନାମରେ ପଶୁ
ବଳିକୁ ବିରୋଧ କରି ଯେଉଁ ଦୁଇଟି ଧର୍ମ ମୁଣ୍ଡ ଟେକିଥିଲା ତାହାମଧ୍ୟରୁ ଜୈନଧର୍ମର
ନାମ ଉଲ୍ଲେଖଯୋଗ୍ୟ । ଖ୍ରୀ: ପୂ: ୫୪୦ରେ ଉତ୍ତର ବିହାରରେ ବୈଶାଳୀ ନଗରରେ ଏକ
କ୍ଷତ୍ରୀୟ ପରିବାରରେ ଜନ୍ମଗ୍ରହଣ କରିଥିବା ବର୍ଦ୍ଧମାନ ମହାବୀର ଏହି ଧର୍ମର ମୁଖ୍ୟ
ପ୍ରଚାରକ ଥିଲେ । ମହାବୀର ଦୀର୍ଘ ୩୦ ବର୍ଷକାଳ ଜୈନଧର୍ମ ପ୍ରଚାରରେ ବ୍ରତୀ
ହୋଇଥିଲେ । ବିଭିନ୍ନ ସ୍ଥାନ ପର୍ଯ୍ୟଟନ କାଳରେ ସେ ଓଡ଼ିଶାକୁ ଆସି କିଛିକାଳ ଅବସ୍ଥାନ
କରିଥିଲେ । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଅସଂଗ୍ରହ ଇତ୍ୟାଦି ପାଳନ କରିବା
ପାଇଁ ସେ ଉପଦେଶ ଦେଉଥିଲେ । ଜୈନଧର୍ମର ଅନ୍ୟ ତୀର୍ଥଙ୍କରମାନେ ଶରୀର ଉପର
ଓ ନିମ୍ନ ଅଂଶକୁ ବସ୍ତ୍ରାଚ୍ଛାଦିତ କରିବାକୁ କହିଥିଲାବେଳେ ମହାବୀର ସଂପୂର୍ଣ୍ଣ ଦିଗମ୍ବର
ରହିବା ପାଇଁ ପରାମର୍ଶ ଦେଲେ । ଫଳରେ ଜୈନମାନଙ୍କ ମଧ୍ୟରେ ଶ୍ୱେତାମ୍ବର ଓ
ଦିଗମ୍ବର ନାମରେ ଦୁଇଟି ଗୋଷ୍ଠୀ ସୃଷ୍ଟି ହେଲା । ପୂର୍ବବର୍ଣ୍ଣିତ ପଞ୍ଚକର୍ମ ସଂପାଦନ
କରିବାବେଳେ ଜୈନମାନେ "ତ୍ରିରତ୍ନ" ପ୍ରତି ଧ୍ୟାନ ଦେବାକୁ କୁହାଯାଇଛି । ତାହା
ହେଉଛି ସତ୍‌ଜ୍ଞାନ, ସତ୍‌କର୍ମ ଓ ପରିଶେଷରେ ମୋକ୍ଷ ବା ନିର୍ବାଣପ୍ରାପ୍ତି । ହିନ୍ଦୁମାନଙ୍କ
ପରି ଏମାନେ ପୂର୍ବଜନ୍ମ ଓ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି । ପୂର୍ବଜନ୍ମର ସଂସ୍କାର ନେଇ
ମଣିଷ ଏ ଜନ୍ମ ଭୋଗ କରୁଛି । ଏ ଜନ୍ମର ପୁରୁଷାର୍ଥ ବଳରେ ପରବର୍ତ୍ତୀ ଜନ୍ମ ପ୍ରଭାବିତ
ବୋଲି ସେମାନଙ୍କର ବିଶ୍ୱାସ ରହିଛି । ତେଣୁ ସଂସାର କ୍ଷେତ୍ରରେ ରହି ଆପଣାର
କୌଳିକ ବୃତ୍ତିଦ୍ୱାରା ଜୀବିକା ନିର୍ବାହ କରିବା ସଙ୍ଗେ ସଙ୍ଗେ ଶୁଦ୍ଧପୂତ ଜୀବନ ଓ ଜୈନ-
ଧର୍ମର ନୀତିନିୟମ ପାଳନ କଲେ କର୍ମର କୁ ସଂସ୍କାର ଆପେ ଆପେ ନଷ୍ଟ ହୋଇଯିବ
ବୋଲି ସେମାନେ ବିଶ୍ୱାସ କରନ୍ତି ।

## କଟକରେ ଜୈନଧର୍ମର ସ୍ୱାକ୍ଷର :

କଟକ ଭଳି ଏକ ଜନାକୀର୍ଣ୍ଣ ନଗରରେ ବହୁଭାଷା, ବହୁଜାତି, ବହୁ ରଙ୍ଗଢ଼ଙ୍ଗର
ଲୋକ ଏକତ୍ର ହୋଇଛନ୍ତି । ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଯେ କୌଣସି
ନଗରରେ ଏଭଳି ଅପୂର୍ବ ସମନ୍ୱୟ ସୁଲଭ ହୋଇଛି । ତେଣୁ ହିନ୍ଦୁ, ମୁସଲମାନ,
ଖ୍ରୀଷ୍ଟିୟାନ ଏବଂ ଶିଖଙ୍କ ଭଳି ଜୈନମାନେ କଟକରେ ଆପଣା ଆସ୍ଥାନ ଜମାଇ
ବସିଛନ୍ତି । ସେମାନେ ହୁଏତ ପ୍ରାଚୀନତା ଆଡ଼କୁ ଏତେ ଅନ୍ତର୍ଦୃଷ୍ଟି ଦେଇ ନାହାନ୍ତି
କିମ୍ବା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଏକାନ୍ତ ଭାବେ ଆପଣାର କରି ପାରି ନାହାନ୍ତି । ତଥାପି

ସତ୍ୟ ସନାତନ ହିନ୍ଦୁଧର୍ମର ଏକ ସଂସ୍କାରବାଦୀ ଗୋଷ୍ଠୀର ମୁଖପାତ୍ର ଭାବରେ ମହାବୀର ଜୈନ ଯେଉଁ ପ୍ରତିଷ୍ଠା ଅର୍ଜନ କରିଥିଲେ, ତାଙ୍କର ଦାୟାଦ ଭାବରେ ଗୌରବାନ୍ୱିତ ହେବାକୁ ଶ୍ରେୟସ୍କର ମଣୁଛନ୍ତି ।

## ଜୈନ ଧର୍ମରେ ଭିନ୍ନ ସଂପ୍ରଦାୟ :

ଏବେ କାଳର ଜୈନଧର୍ମ ଗୁଡ଼ିଏ ଭାଗରେ ବିଭକ୍ତ ହୋଇ ଯାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ମହାବୀରଙ୍କ ପ୍ରଦର୍ଶିତ ଧର୍ମପଥ ଓ ମତକୁ ସମ୍ମାନ ଦେଇ ଚାଲିଥିଲେ ହେଁ, ପ୍ରତି ସଂପ୍ରଦାୟର କଳ୍ପନା କିଛି ସ୍ୱାତନ୍ତ୍ର୍ୟ ରହିଛି । ବିଭିନ୍ନ ସଂପ୍ରଦାୟର ପ୍ରଚାରକମାନେ ପୃଥିବୀର ବିଭିନ୍ନ ସ୍ଥାନ ବୁଲି ଧର୍ମପ୍ରଚାରରେ ମନୋନିବେଶ କରିଛନ୍ତି । ଇତିହାସରେ ଛାତ୍ରମାନେ ଜାଣନ୍ତି ମହାବୀରଙ୍କ ପରେ ପରେ ଜୈନଧର୍ମ ଦୁଇଭାଗରେ ବିଭକ୍ତ ହୋଇଯାଇଥିଲା । ଯେଉଁମାନେ କୌଣସି ବସ୍ତ୍ର ପରିଧାନ ନକରି ଶରୀରକୁ ଗ୍ରୀଷ୍ମ, ବର୍ଷା, ଶୀତର ତାପ, ଆର୍ଦ୍ରତା ଓ ଶିଶିର ମଧ୍ୟକୁ ଉଦାସ ଭାବରେ ଠେଲିଦେଇ କୃଚ୍ଛ୍ର ସାଧନାରେ ବ୍ରତୀ ହୋଇଥିଲେ ସେମାନେ ଥିଲେ ଦିଗମ୍ବର । ଏଭଳି ଦିଗମ୍ବରମାନେ କେବେକେବେ କଟକ ଏବଂ ଭୁବନେଶ୍ୱର ସହରର ରାଜରାସ୍ତାରେ ଶିଷ୍ୟମାନଙ୍କ ଗହଣରେ ପଦବ୍ରଜରେ ଯାଇ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି । ଯେଉଁମାନେ ଶ୍ୱେତ ବସ୍ତ୍ର ପରିଧାନ କରି ମୁହଁରେ 'ଭୁଣ୍ଡି' ବାନ୍ଧି ବିଚରଣ କରନ୍ତି ସେମାନେ ହେଉଛନ୍ତି ଶ୍ୱେତାମ୍ବର । ଏମାନେ ଆଜିକାଲି କଟକ, ଭୁବନେଶ୍ୱର, ରାଉରକେଲା ଓ ଜଟଣୀଠାରେ ପ୍ରାୟ ଦେଖିବାକୁ ମିଳନ୍ତି । ପରବର୍ତ୍ତୀ କାଳରେ ସୃଷ୍ଟ 'ସ୍ଥାନକବାସୀ' ସଂପ୍ରଦାୟର ଜୈନମାନେ ଓଡ଼ିଶାର କଟକ, ବାଲେଶ୍ୱର, ଭଦ୍ରକ, ରାଉରକେଲା ଓ ସମ୍ବଲପୁର ଠାରେ ଦେଖାଯାଆନ୍ତି । କଟକ ସହରରେ 'ତେରାପନ୍ଥି' ନାମକ ଜୈନ ସଂପ୍ରଦାୟ ମଧ୍ୟ ଅବସ୍ଥାନ କରୁଛନ୍ତି । ତେଣୁ କଟକ ସହରରେ ଦିଗମ୍ବର, ଶ୍ୱେତାମ୍ବର, ସ୍ଥାନକବାସୀ ଓ ତେରାପନ୍ଥି ଏହି ଚାରି ସଂପ୍ରଦାୟର ଜୈନମାନେ ଏକତ୍ର ସହାବସ୍ଥାନ କରୁଛନ୍ତି ।

## କଟକରେ ଚାରୋଟି ମନ୍ଦିର :

ପୂଜା ପଦ୍ଧତିରେ ବିଭିନ୍ନତା ନେଇ ପ୍ରତ୍ୟେକ ସଂପ୍ରଦାୟ ସେମାନଙ୍କର ଗୋଟିଏ ଗୋଟିଏ ମନ୍ଦିର ପ୍ରତିଷ୍ଠା କରିଛନ୍ତି । କାଜିବଜାର ଠାରେ ଶ୍ୱେତାମ୍ବରମାନେ ସେମାନଙ୍କର ମନ୍ଦିର ପ୍ରତିଷ୍ଠା କଲେ ୧୯୭୪ ମସିହାରେ । ତା ପୂର୍ବରୁ ଅବଶ୍ୟ ଦିଗମ୍ବର ଜୈନମନ୍ଦିର ଚୌଧୁରୀ ବଜାର ଠାରେ ପ୍ରତିଷ୍ଠିତ ହୋଇ ସାରିଥିଲା । ତେରାପନ୍ଥିମାନେ କାଠଗଡ଼ା ସାହିଠାରେ ୧୯୮୯ ମସିହାରେ 'ତେରାପନ୍ଥି ଭବନ' ନିର୍ମାଣ କରିଛନ୍ତି । ତା ପୂର୍ବରୁ ୧୯୮୦-୮୧ ମସିହାରେ ବାଖରାବାଦଠାରେ ସ୍ଥାନକବାସୀମାନଙ୍କ 'ଅହିଂସା ଭବନ' ନିର୍ମିତ ହୋଇଛି । ଶ୍ୱେତାମ୍ବର ମନ୍ଦିର ମଧ୍ୟସ୍ଥ ମୂର୍ତ୍ତି ଚକ୍ଷୁବିଶିଷ୍ଟ ଏବଂ ଦିଗମ୍ବର ମନ୍ଦିର ମଧ୍ୟସ୍ଥ ମୂର୍ତ୍ତି ଚକ୍ଷୁହୀନ । ତେରାପନ୍ଥି ଭବନ ଓ ଅହିଂସାଭବନ ଦୁଇଟି ପ୍ରାର୍ଥନା ଘର । ଏଠାରେ କୌଣସି ମୂର୍ତ୍ତି ସ୍ଥାନ ପାଇ ନାହାନ୍ତି । ଅବଶ୍ୟ ସମସ୍ତ ଉପାସକ ୨୪ ତୀର୍ଥଙ୍କର

ଓ ମହାବୀରଙ୍କ ପ୍ରଶସ୍ତି ଚନ୍ଦ୍ରାବରେ ଚଢ଼ାଇଥିଲେ। ଦିଗମ୍ବର ଓ ଶ୍ୱେତାମ୍ବରପନ୍ଥିମାନଙ୍କ ମଧ୍ୟରେ ଅଧିକାଂଶ ହେଉଛନ୍ତି ମାରୱାଡ଼ି। ଦିଗମ୍ବର ଜୈନମାନେ ସାଧାରଣତଃ ରାଣୀହାଟ ଏବଂ କଲେଜ ଛକ ଆଖପାଖ ଅଞ୍ଚଳରେ ବସବାସ କରି ରହିଛନ୍ତି। ଶ୍ୱେତାମ୍ବର ଓ ସ୍ଥାନକବାସୀଙ୍କ ମଧ୍ୟରୁ ଅଧିକାଂଶ ପ୍ରାୟ ଗୁଜୁରାଟୀ। ସେମାନେ ପ୍ରାୟ ବାଲୁବଜାର, ନୟାସଡ଼କ, ଗୁହାଳ ଚୌକ, ଝୋଲାହାଟ, ବାଙ୍କାବଜାର, ଟାଉନହଲରୋଡ଼, କାଜିବଜାର, ଚଣ୍ଡୀମନ୍ଦିର, ଗୌରୀଶଙ୍କର ପାର୍କରେ ବହୁଳଭାବେ ଏବଂ ସହରର ଅନ୍ୟାନ୍ୟ ସ୍ଥାନରେ ଊଣା ଅଧିକେ ବସବାସ କରି ରହୁଛନ୍ତି।

## ଜୈନ ଧର୍ମାବଲମ୍ବୀଙ୍କ ପ୍ରଭାବ :

ଜୈନଧର୍ମ ଗ୍ରହଣ କରିଥିବା ଅଧିକାଂଶ କଟକବାସୀ ହେଉଛନ୍ତି ଗୁଜୁରାଟୀ କିମ୍ବା ମାରୱାଡ଼ି। ଗୁଜୁରାଟୀ ଜୈନମାନେ ସାଧାରଣତଃ ସୁନା ରୂପା ବ୍ୟବସାୟୀ କିମ୍ବା ବସ୍ତ୍ରାଳୟର ମାଲିକ। ମାରୱାଡ଼ି ଜୈନମାନେ ସାଧାରଣ ଭାବେ ବସ୍ତ୍ରାଳୟ ଖୋଲି ଟଙ୍କା ଅର୍ଜନ କରିବା ପରିଦୃଷ୍ଟ ହୋଇଥାଏ। ତେଣୁ ଜୈନମାନଙ୍କ ମଧ୍ୟରେ କ୍ୱଚିତ ଗରିବ ଲୋକ ଦେଖାଯାଆନ୍ତି। ସମସ୍ତେ ପ୍ରାୟ ଧନୀ, ସ୍ୱଚ୍ଛଳ ଅବସ୍ଥାସମ୍ପନ୍ନ। ସେମାନେ ବନ୍ଧୁବାନ୍ଧବ ସମ୍ପର୍କ ସ୍ଥାପନ କରିବା ସମୟରେ ଅତିଶୟ ଭାବେ ରକ୍ଷଣଶୀଳ ମନୋବୃତ୍ତି ପୋଷଣ କରିଥାନ୍ତି। ତେଣୁ ଓଡ଼ିଶାରେ ବା କଟକରେ ସମ୍ଭବ ନ ହେଲେ ବମ୍ବେ, କଲିକତା, ଦିଲ୍ଲୀ, ମାନ୍ଦ୍ରାଜ ପରି ବଡ଼ ବଡ଼ ବ୍ୟବସାୟ କେନ୍ଦ୍ରରେ ବାସ କରୁଥିବା ଜୈନମାନଙ୍କ ସହ ସେମାନେ ସମ୍ପର୍କ ସ୍ଥିର କରିଥାନ୍ତି। ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏଠାର ଜୈନମାନେ ପ୍ରାୟ କଟକ ଆସିଥିଲେ। ଆଜିକାଲି ଓଡ଼ିଆ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିବା ଜୈନମାନଙ୍କର ୫ ପୁରୁଷ ପୂର୍ବର ପୂର୍ବପୁରୁଷମାନେ ଏଠାରେ ଆସି ବସବାସ କରି ରହିଯାଇଛନ୍ତି। କ୍ରମେ କ୍ରମେ ସେହିମାନେ, ସେମାନଙ୍କ ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବଙ୍କୁ ନେଇ ଜୈନଧର୍ମର ଅନ୍ତର୍ଭୁକ୍ତ କରାଇଛନ୍ତି। ଫଳରେ ଜୈନଧର୍ମ ଗ୍ରହଣକାରୀଙ୍କ ମଧ୍ୟରେ କଟକ ସହରର କେହି ଓଡ଼ିଆ ଅଛନ୍ତି, ଏକଥା ସନ୍ଦେହଜନକ।

## ଉତ୍କଳରେ ଜୈନଧର୍ମର ପଦଚିହ୍ନ :

ମହାମେଘବାହନ ଐର ଖାରବେଳଙ୍କ ସମୟରୁ କଳିଙ୍ଗରେ ଜୈନଧର୍ମ ପ୍ରଭାବ ବିସ୍ତାର କରିଥିବା କଥା ପୂର୍ବରୁ ସୂଚାଇ ଦିଆଯାଇଛି। ଖାରବେଳଙ୍କ ପରବର୍ତ୍ତୀ ଶାସକମାନେ ମଧ୍ୟ ଜୈନଧର୍ମକୁ ରାଜଧର୍ମର ସମ୍ମାନ ପ୍ରଦାନ କରିଥିଲେ। ଫଳରେ ଦୀର୍ଘଦିନ ଧରି ଜୈନଧର୍ମ କଳିଙ୍ଗର ପୁରପଲ୍ଲୀରେ ପ୍ରଚଳିତ ହୋଇଥିଲା। ଜୈନଧର୍ମ ପ୍ରଚାରକମାନେ ମୁଖ୍ୟତଃ ଖଣ୍ଡଗିରି (କୁମାର ପର୍ବତ) ଓ ଉଦୟଗିରି (କୁମାରୀ ପର୍ବତ)କୁ ସେମାନଙ୍କର ମୁଖ୍ୟ ପ୍ରଚାରକେନ୍ଦ୍ର ରୂପେ ବାଛି ନେଇଥିଲେ। ଅଧିକାଂଶ ସମୟରେ ସେଠାରେ ଅବସ୍ଥାନ କରୁଥିଲେ। ଦୁଇଟିଯାକ ପର୍ବତ ଦେହରେ ଖୋଦିତ ଶିଳାଲେଖ ଏବଂ ଦର୍ଶନୀୟ ବସ୍ତୁକୁ ଦେଖିଲେ ଏବେ ମଧ୍ୟ ଆଶ୍ଚର୍ଯ୍ୟ ଲାଗେ, ଖ୍ରୀଷ୍ଟଜନ୍ମ ହେବାର ବହୁବର୍ଷ ପୂର୍ବରୁ ଏ ମାଟିର ଧର୍ମଧାରଣା ଉନ୍ନତ ଥିଲା। ଯୁଗ ଯୁଗ

ଧର ବଭିନ୍ନ ଧର୍ମର ବଦେଶାଗତ ପରିବ୍ରାଜକଗଣ ଖଣ୍ଡଗିରର ହାତୀଗୁମ୍ଫା, ସର୍ପଗୁମ୍ଫା, ବ୍ୟାଘ୍ରଗୁମ୍ଫା, ପବନଗୁମ୍ଫା, ସ୍ୱର୍ଗପୁରୀ ଏବଂ ମଞ୍ଚପୁରୀ ଇତ୍ୟାଦ ଦର୍ଶନ କର ଆଶ୍ଚର୍ଯ୍ୟଚକତ ହୋଇ ଯାଇଥିଲେ । ଖାରବେଳଙ୍କ ଦ୍ୱାରା ନର୍ମିତ ଜୈନଧର୍ମର ଏହ କାଳଜୟୀ କୀର୍ତ୍ତି ଇତହାସ ବକ୍ଷରେ ସ୍ୱର୍ଣ୍ଣାକ୍ଷରରେ ଲପିବଦ୍ଧ ହୋଇ ରହଛି ।

ଏତଦ୍‌ଭିନ୍ନ ଯାଜପୁର ନକଟବର୍ତ୍ତୀ ନରସିଂହପୁରର ଆଖଣ୍ଡଳେଶ୍ୱର ମନ୍ଦର, ବାଲେଶ୍ୱର ଜଲ୍ଲାର ଅଯୋଧ୍ୟା, ଖିଚଙ୍ଗର ଜଗନ୍ନାଥ ମନ୍ଦର, ମୟୂରଭଞ୍ଜ ଜଲ୍ଲାର ବାରପଦା ଓ କେନ୍ଦୁଝର ଜଲ୍ଲାର ବଇଦଖିଆଠାରେ ଜୈନ ସଂସ୍କୃତର ପଦଚହ୍ନ ସୁସ୍ପଷ୍ଟ ।

ପରବର୍ତ୍ତୀ କାଳରେ ୧୦୪୦ରୁ ୧୦୬୫ ଖ୍ରୀଷ୍ଟାବ୍ଦରେ ସୋମବଂଶୀ ରାଜାମାନେ ଶୈବ ଥିଲେ ମଧ୍ୟ ଜୈନଧର୍ମ ପ୍ରତ ସମ୍ମାନ ଅତୁଟ ରଖିଥିଲେ । ତେଣୁ ଖଣ୍ଡଗିର ଉଦୟଗିର ଗୁମ୍ଫାର ପରବର୍ଦ୍ଧନ ଓ ପୁନଃ ସଂସ୍କରଣ ସେ ସମୟରେ ହୋଇଥିବା ଅସମ୍ଭବ ନୁହେଁ । ସେଭଳ ଏକ ମୁନମନୋଲୋଭା ସ୍ଥଳୀକୁ ଶୈବ, ବୈଷ୍ଣବ, ଶାକ୍ତ ଓ ବୈଷ୍ଣବ ସନ୍ନ୍ୟାସୀମାନେ ମଧ୍ୟ ଆପଣାର ବହାରସ୍ଥଳୀ ରୂପେ ବାଛ ନେଇଛନ୍ତ । କଥା ହେଉଛି, ଜୈନଧର୍ମ ହନ୍ଦୁ ଧର୍ମର ଏକ ଅଙ୍ଗ ହୋଇଥିବାରୁ କାହାରକୁ ବରୋଧ କରେନାହିଁ । ସହାବସ୍ଥାନ ନୀତକୁ ଆଦର ନେଇଛି । ଅନ୍ୟ ଧର୍ମାବଲମ୍ବୀମାନେ ମଧ୍ୟ ଏହ ଧର୍ମ ଯେ ବହୁ ପ୍ରାଚୀନକାଳରୁ ଏ ମାଟିର ପାଣି ପବନରେ ପୁଷ୍ଟ ହୋଇଛି, ଏ କଥାକୁ ଠିକ୍ ଭାବେ ହୃଦୟଙ୍ଗମ କର କେବେ ନ୍‌କାଳେ ବୈରଭାବ ପୋଷଣ କରନାହାନ୍ତ । ସ୍ୱାଭାବକ ରୀତରେ ଧର୍ମର ଯାହା ଉତ୍ଥାନ ପତନ ହୋଇଛି ।

କେହ କେହ ପଣ୍ଡିତ ମତ ଦଅନ୍ତ, ଖଣ୍ଡଗିର ହେଉଛି ତତ୍କାଳୀନ ସମାଜର ପିତୃଲୋକ । ସମାଜର ବାନପ୍ରସ୍ଥ ବୃଦ୍ଧବୃଦ୍ଧାମାନେ ଗୁମ୍ଫାମାନଙ୍କରେ ଅବସ୍ଥାନ କରୁଥିଲେ । ଫଳରେ ଜନସଂଖ୍ୟା ସମସ୍ୟା ସୁଧୁର ଯାଉଥିଲା । ସମାଜର ସଂକଟକାଳରେ ଏହ ପ୍ରବୀଣ ପ୍ରାଜ୍ଞ ମାନମାନ୍ୟ ପୁରୁଷଗଣ ସମାଜର ପରଗୁଳକମାନଙ୍କୁ ସେମାନଙ୍କ ପୂର୍ବ ଅଭଜ୍ଞତାରୁ ସମସ୍ୟା ସମାଧାନର ପନ୍ଥା ବତାଇ ଦେଇଥିଲେ । ସେମାନଙ୍କ ଦୈନନ୍ଦନ ଚଳଣି ପାଇଁ ଶ୍ରାଦ୍ଧ ସମୟରେ ପିତୃପୁରୁଷଙ୍କୁ ଯାହା ଶ୍ରଦ୍ଧାରେ ଅର୍ପଣ କରାଯାଉଥିଲା ସେତକ ଯଥେଷ୍ଟ ଥିଲା । ଆଜକାଲି ପିଣ୍ଡଦାନ କର ଜଳରେ ଉଜାଁଇଲା ପର ପୂର୍ବେ କରାଯାଉ ନଥିଲା । ପ୍ରତ୍ୟକ୍ଷ ଭାବରେ ପିତୃପୁରୁଷଙ୍କୁ ପିଣ୍ଡଦାନ କରାଯାଉଥିଲା । ପିତୃପୁରୁଷମାନେ ମଧ୍ୟ ଉତ୍ତରପୁରୁଷମାନଙ୍କୁ ସ୍ୱଦେହରେ ଆସି ଆଶୀର୍ବାଦ ଦେଇ ଯାଉଥିଲେ । ଦୈନନ୍ଦନ ସମସ୍ୟା ସମାଧାନରେ ସହାୟକ ହେଉଥିଲେ । ମାତ୍ର ପରବାରର ଭରଣପୋଷଣ, ଆୟବ୍ୟୟ ସହତ ସଂପୃକ୍ତ ରହୁ ନ ଥିଲେ ।

## ଜୈନ ପୂଜା ପଦ୍ଧତି :

ବୟସ୍କ ଜୈନମାନେ ଅତି ନିଷ୍ଠା ସହକାରେ ସେମାନଙ୍କ ପୂଜା ଆରାଧନା କରିଥାଆନ୍ତି । ସତ୍ପ୍ରସିଦ୍ଧି ଓ ସାଧନା ପାଇଁ ସେମାନେ ନିୟମିତ ଜୀବନଚର୍ଯ୍ୟା ପ୍ରାପ୍ତ କରିଥାଆନ୍ତି । ପ୍ରତିଦିନ ମନ୍ଦିରକୁ ଯିବା, ଦର୍ଶନ କରିବା, ପ୍ରାର୍ଥନା କରିବା ଏବଂ ସାଧୁସନ୍ଥଙ୍କ ପ୍ରବଚନ ଶୁଣିବା ଇତ୍ୟାଦି ଧର୍ମଧାରଣାର ଅଙ୍ଗ ହୋଇ ରହିଛି ।

ବର୍ଷସାରା ସେମାନେ କିଛି ନା କିଛି ପର୍ବ ପାଳନ କରିଥାଆନ୍ତି । 'ପରୁଷାନ୍ପର୍ବ' ହେଉଛି ଜୈନମାନଙ୍କର ଅନ୍ୟତମ ମୁଖ୍ୟ ପର୍ବ । ଶ୍ରାବଣମାସ ଶୁକ୍ଳପକ୍ଷ ଦ୍ୱାଦଶୀତିଥିରୁ ଏହିପର୍ବ ଆରମ୍ଭ ହୋଇ ଗଣେଶ ଚତୁର୍ଥୀ ପରଦିନ ଅର୍ଥାତ୍ ଭାଦ୍ରବ ମାସ କୃଷ୍ଣପକ୍ଷ ପଞ୍ଚମୀତିଥିରେ ଶେଷ ହୁଏ । ଏହି ନବଦିନ ବ୍ୟାପୀ ପର୍ବରେ ଜୈନମାନେ ବ୍ରତ ରକ୍ଷା କରନ୍ତି । ଘରେ କେବଳ ଅରୁଆଚାଉଳ ଡାଲିମିଶା ଖେଚଡ଼ି ହୁଏ । କୌଣସି ପନିପରିବା ତରକାରୀ ଖାଇବା ମନା । ମହାବୀରଙ୍କ ପବିତ୍ର ଜନ୍ମତିଥି ହେଉଛି ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥି । ଏହି ଦିନଟିକୁ ସେମାନେ ନୂତନବର୍ଷ ଆରମ୍ଭର ଦିନ ରୂପେ ପାଳନ କରିଥାନ୍ତି । ସମସ୍ତେ ଆନନ୍ଦ ଉଲ୍ଲାସରେ ଏକତ୍ରିତ ହୋଇ ସହର ପରିକ୍ରମା କରନ୍ତି । ଅକ୍ଷୟତୃତୀୟା, କାର୍ତ୍ତିକ ପୂର୍ଣ୍ଣିମା ଓ ହୋଲି ଉତ୍ସବ ଜୈନମାନେ ମହାସମାରୋହରେ ପାଳନ କରିଥାନ୍ତି । ଏହିଦିନମାନଙ୍କରେ କଟକର ଜୈନମାନେ ଗୁଜୁରାଟର ଜୈନ ତୀର୍ଥକ୍ଷେତ୍ର 'ପଲିତାନା' ଏବଂ ବିହାରର 'ସମେତ୍‌ଶିଖର' ପରିଦର୍ଶନ କରି ଆପଣାକୁ ଧନ୍ୟ ମନେ କରନ୍ତି । ଜୈନଧର୍ମର ଆଦିତୀର୍ଥଙ୍କରଙ୍କ ପବିତ୍ର ଜନ୍ମତିଥି ହେଉଛି ଫାଲଗୁନ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି । ଏହି ଦିନଠାରୁ ସମ୍ପ୍ରଦାୟ ନିର୍ବିଶେଷରେ ଜୈନମାନେ 'ବର୍ଷିତପ' ପାଳନ କରନ୍ତି । ଦିନେଛଡ଼ା ଦିନେ ସେମାନେ ଉପବାସ କରନ୍ତି । ପଲିତାନା ବା ସମେତ୍‌ଶିଖର ତୀର୍ଥାଟନ କରି ଫେରି ଆସିବା ପର୍ଯ୍ୟନ୍ତ ଏହିଭଳି ଉପବାସ ବିଧି ରହିଥାଏ ।

ସତ୍ୟେ ସନାତନ ହିନ୍ଦୁ ଧର୍ମକୁ ଛାଡ଼ିଦେଲେ ବାକି ଯେତେ ଧର୍ମ ପ୍ରଚଳିତ ସେମାନଙ୍କ ମଧ୍ୟରେ ଜୈନଧର୍ମ ସର୍ବପ୍ରାଚୀନ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଧର୍ମ କଠୋର ନୀତିନିୟମ ଉପରେ ପର୍ଯ୍ୟବସିତ । ଜୀବନଚର୍ଯ୍ୟାରେ କଠୋରତା ଅବଲମ୍ବନ ପଦ୍ଧତି ମହାବୀରଙ୍କ ସମୟରୁ ଚଳିଆସିଛି । କୃଚ୍ଛ୍ର ସାଧନା କରି ଶରୀରକୁ କଷ୍ଟ ଦେଲେ ଯାଇ ସିଦ୍ଧିଲାଭ ହୁଏ ବୋଲି ଜୈନମାନେ ବିଶ୍ୱାସ କରନ୍ତି । ପ୍ରଥମେ ସେମାନେ ଖାଦ୍ୟପେୟ ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ଜୈନ ସମାଜ ସାଧାରଣତଃ ଶାକାହାରୀ । ଆମିଷ ଭୋଜନ କରିବା ଜୈନଧର୍ମ ଗ୍ରହଣକାରୀ ପକ୍ଷରେ ସମ୍ପୂର୍ଣ୍ଣ ରୂପେ ନିଷିଦ୍ଧ । ଜୀବହିଂସା ଓ ପ୍ରାଣୀବଧ କରିବା ସେମାନଙ୍କ ନୀତିବିରୁଦ୍ଧ । ତେଣୁ ନିରାମିଷ ଭୋଜନକୁ ସେମାନେ ଗ୍ରହଣ କରିବାକୁ ବାଧ୍ୟ । କଟକର ମାରୱାଡ଼ି ଓ ଗୁଜୁରାଟୀ ଜୈନ ସମାଜ ତରଫରୁ ବିଭିନ୍ନ ସ୍ଥାନରେ ଯେଉଁ ମାରୱାଡ଼ିବାସୀ ଓ ଗୁଜୁରାଟୀବାସୀ

ପରି ହୋଟେଲମାନ ଖୋଲାଯାଇଛି ତାହା ସମ୍ପୂର୍ଣ୍ଣରୂପେ ଶୁଦ୍ଧ ଶାକାହାରୀ ଭୋଜନାଳୟ । ସେଠାରେ ପିଆଜ ରସୁଣ ମଧ୍ୟ ବ୍ୟବହାର କରାଯାଏ ନାହିଁ ।

ରକ୍ଷଣଶୀଳ ଜୈନମାନେ ମୂଳଜାତୀୟ ପନିପରିବା ଗ୍ରହଣ କରନ୍ତି ନାହିଁ । ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ ସମାପ୍ତ କରିଥାଆନ୍ତି । ସୂର୍ଯ୍ୟାସ୍ତପରେ ଭୋଜନ କଲେ ଖାଦ୍ୟ ଓ ପାନୀୟରେ କୌଣସି ଜୀବଜନ୍ତୁ ଭୁଲ୍‌ବଶତଃ ପଡ଼ିଯାଇ ସେମାନଙ୍କର ପ୍ରାଣହାନି ହୋଇପିବାର ଆଶଂକା ଥିବାରୁ ସେମାନଙ୍କ ପକ୍ଷେ ରାତ୍ରିଭୋଜନ ନିଷିଦ୍ଧ କରାଯାଇଛି । ବାୟୁମଣ୍ଡଳରୁ ନିଃଶ୍ୱାସ ପ୍ରଶ୍ୱାସ ନେବାବେଳେ କୌଣସି କ୍ଷୁଦ୍ର ଜୀବାଣୁ ନାସାଗହ୍ୱର ମଧ୍ୟକୁ ପ୍ରବେଶ କରି ମୃତ୍ୟୁବରଣ କରିପାରନ୍ତି, ଏହି ଆଶଂକାରେ ଜୈନମାନେ ମୁଖରେ କନାର 'ଭୁଣ୍ଡି' ବାନ୍ଧିଥିବାର ପରିଲକ୍ଷିତ ହୁଏ । ଆଜିକାଲି ଜୈନମାନେ ପ୍ରାୟ 'ଭୁଣ୍ଡି' ବାନ୍ଧୁ ନାହାନ୍ତି । କେବଳ ଧର୍ମପ୍ରଚାରକମାନେ 'ଭୁଣ୍ଡି'କୁ କଣ୍ଠି, କୌପିନ, ଶ୍ୱେତବସ୍ତ୍ର ଭଳି ସେମାନଙ୍କର ଏକପ୍ରକାର ପୋଷାଭୂଷଣ ରୂପେ ଗ୍ରହଣ କରୁଛନ୍ତି । ବ୍ୟବସାୟରେ ଲିପ୍ତ ଜୈନସମାଜ ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ କରିବା ପଦ୍ଧତିକୁ ମଧ୍ୟ କ୍ରମେ କ୍ରମେ ପାଶୋରି ଦେଲେଣି । କେତେବେଳେ ବ୍ୟବସାୟ କେନ୍ଦ୍ରରୁ ଗୃହକୁ ପ୍ରତ୍ୟାବର୍ତ୍ତନ କରିବେ, ତା'ର କୌଣସି ଠିକ୍ ଠିକଣା ନଥାଏ । ତେଣୁ ରାତ୍ରିଅଧରେ ମଧ୍ୟ ଭୋଜନ କରିବା ଅସମ୍ଭବ ନୁହେଁ ।

## ସଂଖ୍ୟାନ୍ୟୂନ—ପ୍ରଭାବ ଅଧିକ :

ଜୈନମାନେ କଟକ ସହରରେ ଅଧିକ ସଂଖ୍ୟକ ନୁହନ୍ତି । ଅନ୍ୟ ଧର୍ମାବଲମ୍ବୀଙ୍କ ତୁଳନାରେ ସେମାନେ ଖୁବ୍ କମ ସଂଖ୍ୟକ । ମାତ୍ର ସେମାନଙ୍କ ଚାଲିଚଳନ, ପୂଜାପଦ୍ଧତି, ଆଚାର ବ୍ୟବହାର ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ଏହି ସ୍ୱାତନ୍ତ୍ର୍ୟ ରକ୍ଷାକରିବା ପାଇଁ ସେମାନେ ଚେଷ୍ଟିତ । ଏପରିକି ଜୈନ ଛଡ଼ା ଅନ୍ୟ ଧର୍ମରେ ବିବାହ କରିବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ଜୈନମାନଙ୍କର ଧର୍ମାନ୍ତର ଗ୍ରହଣ ଏବଂ ଅନ୍ୟ ଜାତିରେ ବିବାହ ପ୍ରାୟ ଶୁଣାଯାଏ ନାହିଁ । ଯଦି କାଁ ଭାଁ କେଉଁଠି କେମିତି ଘଟିଯାଏ, ତାହାକୁ ଜୈନ ସମାଜ କଠୋର ଭାବେ ଦମନ କରିବାକୁ ଚେଷ୍ଟା କରନ୍ତି । ତେଣୁ ଭାରତୀୟ ସଂସ୍କୃତିର ପ୍ରକୃତ ଦାୟାଦ ବୋଲି ଜନସାଧାରଣ ସେମାନଙ୍କୁ ସମ୍ମାନ ଦିଅନ୍ତି । ସାମାଜିକ ସ୍ତରରେ ବ୍ୟବସାୟୀ ଗୋଷ୍ଠୀ ହୋଇଥିବାରୁ ସେମାନଙ୍କର ସମାଜରେ ପ୍ରଭାବ ରହିବା ସ୍ୱାଭାବିକ ।

## ମାତୃଭାଷାରେ ମମତା :

କଟକର ଜୈନମାନଙ୍କ ମଧ୍ୟରୁ ଅଧିକାଂଶ ଗୁଜୁରାଟୀ । ତେଣୁ ସେମାନେ ଦିଗମ୍ବର ହୁଅନ୍ତୁ, ଶ୍ୱେତାମ୍ବର ହୁଅନ୍ତୁ, ସ୍ଥାନକବାସୀ ବା ତେରାପନ୍ଥୀ ହୁଅନ୍ତୁ, ଗୁଜୁରାଟୀ ଭାଷାରେ ଜଣେ ଅନ୍ୟଜଣକ ସହିତ କଥାବାର୍ତ୍ତା କରନ୍ତି । ପିଲାମାନଙ୍କୁ ଗୁଜୁରାଟୀ

ବିଦ୍ୟାଳୟରେ ଶିକ୍ଷାଦାନ କରାଇଥାଆନ୍ତି । ସାମାଜିକ ମିଳନବେଳେ ଯେତେ କାମ ଥାଉ ପଛକେ ଏକତ୍ର ହୁଅନ୍ତି । ସେମାନଙ୍କ ମଧ୍ୟରେ ଏକତା ଓ ମୈତ୍ରୀକୁ ଦୃଢ଼ ରଖିବା ପାଇଁ ଶ୍ରୀ ଗୁଜୁରାଟୀ ସମାଜ, ନିଖିଳଉତ୍କଳ ଗୁଜୁରାଟୀସମାଜ ଗଠିତ ହୋଇଛି । କଟକ ସହରରେ ବାସ କରୁଥିବା ଯେକୌଣସି ଗୁଜୁରାଟୀ ପ୍ରଥମେ ଜୈନଧର୍ମର ଏକ ସମ୍ପ୍ରଦାୟର ସଭ୍ୟଶ୍ରେଣୀଭୁକ୍ତ ହୁଅନ୍ତି । ଶ୍ରୀ ଗୁଜୁରାଟୀ ସମାଜ ଓ ନିଖିଳଉତ୍କଳ ଗୁଜୁରାଟୀ ସମାଜର ମଧ୍ୟ ସଭ୍ୟ ହୁଅନ୍ତି । ତା ବ୍ୟତୀତ ସେମାନେ ଗୁଜୁରାଟରୁ ଆସିଥିବା ନିର୍ଦ୍ଦିଷ୍ଟ ଅଞ୍ଚଳ ସହିତ ମଧ୍ୟ ଯୋଗସୂତ୍ର ସ୍ଥାପନ କରିଥାଆନ୍ତି । ସୁରାଟ୍ ହରିଓମ୍ ଆଶ୍ରମ ସହିତ ସମ୍ପର୍କ ରକ୍ଷାକରିଥିବା ବାବୁଲାଲ ଦୋଶୀଙ୍କ ପ୍ରସଙ୍ଗ ଉତ୍ଥାପନ କଲେ ଏଠାରେ ଅପ୍ରାସଙ୍ଗିକ ହେବନାହିଁ । ଗୁଜୁରାଟୀ ଜୈନମାନେ ମିଳିତ ଭାବେ ଏଯାବତ୍ କଟକ ସହରରେ ଯେତିକ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ଗଠନ କରିଛନ୍ତି ବାବୁଭାଇ ସେମାନଙ୍କର ପଥପ୍ରଦର୍ଶକ । ଶୈଶବରୁ ପିତୃମାତୃହୀନ ବାଳକଟିକୁ ଆଈମା ପାଳନ କରିଥିଲେ । ପାଠପଢ଼ାରେ ମନ ନଦେଇ ନାଚତାମସା ଦେଖିବା ଏବଂ ସେଥିରେ ଅଭିନୟ କରିବାରେ ପିଲାଟି ମନୋନିବେଶ କଲା । ଶେଷରେ ବଡ଼ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ-ଦେଲା । ୧୯୩୪ ମସିହାରୁ କଟକରେ ଅବସ୍ଥାନ କରି ବାବୁଲାଲ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସହ ସୁସମ୍ପର୍କ ସ୍ଥାପନ କରି ସାରିଥିଲେ ।

୧୯୪୨ ମସିହାରେ ସେ ଭାରତଛାଡ଼ ଆନ୍ଦୋଳନରେ ଝାସଦେଲେ । ୧୯୪୪ରେ ସୋସାଲିଷ୍ଟ ପାର୍ଟିରେ ଯୋଗଦେଲେ । କଟକ ତଥା ଓଡ଼ିଶାର ସାଂସ୍କୃତିକ ବିକାଶ ପାଇଁ ସେ ଅନବରତ ଚେଷ୍ଟିତ ଥିଲେ । ଓଡ଼ିଶୀ ସଙ୍ଗୀତର ବିକାଶ ତଥା ଓଡ଼ିଶୀ ନୃତ୍ୟର ପ୍ରଚୁର ପ୍ରସାର ପାଇଁ କଟକଠାରେ ତାଙ୍କର ପ୍ରଚେଷ୍ଟାରେ "କଳାବିକାଶକେନ୍ଦ୍ର" ପ୍ରତିଷ୍ଠିତ ହେଲା । କେବଳ ସେତିକ ନୁହେଁ ଲୋକପ୍ରିୟ ଓଡ଼ିଆ ଉପନ୍ୟାସର କଥାବସ୍ତୁକୁ ନେଇ ଆଦର୍ଶବାଦୀ ଓଡ଼ିଆ ଚଳଚ୍ଚିତ୍ର ପ୍ରଯୋଜନାରେ ମଧ୍ୟ ସେ ମନୋନିବେଶ କରିଥିଲେ । ୧୯୮୫ ମସିହାରେ ଶେଷନିଃଶ୍ୱାସ ତ୍ୟାଗକରିବା ପର୍ଯ୍ୟନ୍ତ ସେ ଓଡ଼ିଆ ସଂସ୍କୃତି ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲେ ।

## ସମାଜର ଧାରକ ଧର୍ମ :

ଧର୍ମ କଦାପି କେବେ ସମାଜର ବାଧକ ହୁଏନାହିଁ । ଧାରଣ କରିଥିବାରୁ ଏହାକୁ ଧର୍ମ ବୋଲି କୁହାଯାଏ । ତେଣୁ ଯେ କୌଣସି ସାମାଜିକ ଚଳଣିକୁ ଠିକଣା ବାଟରେ ପରିଚାଳିତ କରିବା ଦିଗରେ ଧର୍ମର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜୈନଧର୍ମ କଟକର ମାରୱାଡ଼ି ସମାଜ ଓ ଜୈନସମାଜକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ସମଗ୍ର ଉତ୍କଳୀୟ ସଂସ୍କୃତି ସହିତ ସଂହତି ରକ୍ଷାକରି ଆଗେଇ ଚାଲିଛି । କଟକବାସୀ ଜନସାଧାରଣଙ୍କୁ ମଧ୍ୟ ବିଶେଷଭାବେ ପ୍ରଭାବିତ କରିବାକୁ ସକ୍ଷମ ହୋଇପାରିଛି ।

କୁହାଯାଉଛି ଇନ୍ଦ୍ରଭୂତି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରଣିପାତ କରି ତାଙ୍କ ଜ୍ଞାନସିଦ୍ଧି ପୁସ୍ତକ ରଚନା ଆରମ୍ଭ କରିଛନ୍ତି—

"ପ୍ରଣିପତ୍ୟ ଜଗନ୍ନାଥଂ
ସର୍ବଜିନ ବରାର୍ଚ୍ଚିତଂ
ସର୍ବ ବୁଦ୍ଧମୟଂ ସିଦ୍ଧି
ବ୍ୟାପିନୋ ଗଗନୋପମମ୍ ।"

[ ଜ୍ଞାନସିଦ୍ଧି ଅଧ୍ୟାୟ-୧, ଶ୍ଳୋକ ୧ ]

ଏଠାକାର ଇନ୍ଦ୍ରଭୂତି ଉଡ୍ଡିୟାନର ଜଗନ୍ନାଥଙ୍କୁ ସର୍ବଜିନ ବରାର୍ଚ୍ଚିତ, ସର୍ବବୁଦ୍ଧମୟ ସିଦ୍ଧିରେ ବ୍ୟାପୀ ଓ ଗଗନପରି ଶୂନ୍ୟ ବୋଲି କହିଛନ୍ତି । ଜଗନ୍ନାଥଙ୍କୁ ନିରାକାର ରୂପେ କଳ୍ପନା କରାଯାଉଥିଲେ ମଧ୍ୟ ପ୍ରସିଦ୍ଧ ଜିନ୍‌ଙ୍କଦ୍ୱାରା ଅର୍ଚ୍ଚିତ ବୋଲି କହିବା ନିଶ୍ଚିତରୂପେ ଉଲ୍ଲେଖଯୋଗ୍ୟ । ଏହି ଶ୍ଳୋକରୁ ଜୈନ ଓ ବୌଦ୍ଧଧର୍ମକୁ ଆଣି ଶ୍ରୀଜଗନ୍ନାଥ ଧର୍ମ ସହିତ ଏକତ୍ର କରିଦିଆଯାଇଛି କହିଲେ ଭୁଲ୍ ହେବନାହିଁ ।

ଦଶମ ଶତାବ୍ଦୀରେ ପ୍ରତିଷ୍ଠିତ ପ୍ରାଚୀନତମ ନଗର କଟକରେ ଜୈନସମାଜର ପ୍ରଭାବ ଖୁବ୍ କମ୍ ନୁହଇଁ । ତଥାପି ଉତ୍କଳୀୟ ଧର୍ମଧାରଣା, ସାମାଜିକ ଶୃଙ୍ଖଳିତ ଚଳଣି ଚମତ୍କ ସହ ତାଳମିଳାଇ ଯେପରି ଏହା ପ୍ରଗତି ପଥରେ ଆଗେଇ ଚାଲିଛି, ତାହା ଜାତୀୟ ସଂହତି ପାଇଁ ଏକାନ୍ତ ଅପରିହାର୍ଯ୍ୟ ।



# କଳାବିକାଶ କେନ୍ଦ୍ର

ଶ୍ରୀ ରଣଧୀର ଦାସ

କଳାବିକାଶ କେନ୍ଦ୍ର କେବଳ ଓଡ଼ିଶାର ଏକ ପ୍ରଖ୍ୟାତ ପ୍ରାଚୀନ ନୃତ୍ୟ ସଙ୍ଗୀତ ଶିକ୍ଷାନୁଷ୍ଠାନ ନୁହେଁ ଭାରତର ଅନ୍ୟତମ ସୁପରିଚିତ ନୃତ୍ୟ ସଙ୍ଗୀତ ଅନୁଷ୍ଠାନ ଭାବରେ କଳାପ୍ରେମୀଙ୍କ ନିକଟରେ ଆଦୃତ । ୪୦ ବର୍ଷରେ ପାଦ ଦେଇଥିବା କେନ୍ଦ୍ର ପରିଚାଳିତ ଭାରତୀୟ ନୃତ୍ୟ ସଙ୍ଗୀତ ମହାବିଦ୍ୟାଳୟର ଅନେକ ସୁଖ ଦୁଃଖ ଅଭାବ ଅନାଟନ ଏବଂ ସଂଘର୍ଷ ମଧ୍ୟରେ ଗତି କରିଛି । ସ୍ୱାଧୀନତା ପରେ ଓଡ଼ିଶାରେ ଯେତେବେଳେ ନୃତ୍ୟ ସଙ୍ଗୀତ ସଂପର୍କରେ ଖୁବ୍ ବେଶି ଚର୍ଚ୍ଚା ହେଉ ନଥିଲା ସେତେବେଳେ କଟକରେ ଜଣେ ପାର୍ଶ୍ୱଦେଶୀ ଗୁଜରାଟୀ ଯୁବକଙ୍କ ମନରେ ସଙ୍ଗୀତ, ନୃତ୍ୟ, କଳା ସଂପର୍କରେ କୁନି କୁନି ପିଲାଙ୍କୁ ଶିକ୍ଷା ଦେବାପାଇଁ ଗୋଟିଏ ଅନୁଷ୍ଠାନ ଗଢ଼ିବା ପାଇଁ ନିଶା ଘୋଟିଗଲା । ସେ ଭୁଲିଗଲେ ଖାଇବା ପିଇବା । ୧୯୫୨ ଅଗଷ୍ଟ ୧୦ ତାରିଖରେ ଓଡ଼ିଆ ବଜାରର ମାସିକ ଟ୨୫/- ଭଡ଼ାରେ ଗୋଟିଏ ଘରେ ସ୍ଥାପିତ ହେଲା "କଳା ବିକାଶ କେନ୍ଦ୍ର" ।

କେନ୍ଦ୍ରର ରେଜିଷ୍ଟ୍ରେସନ ପାଇଁ ସମ୍ବିଧାନ ପ୍ରଣୟନରେ ସହଯୋଗ କରିଥିଲେ ଶ୍ରୀ ଗୋବିନ୍ଦ ଦାସ, ଶ୍ରୀ ବାଙ୍କବିହାରୀ ଦାସ ଏବଂ ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ ।

କେନ୍ଦ୍ରର ଛାତ୍ରଛାତ୍ରୀଙ୍କ ସଂଖ୍ୟା କ୍ରମଶଃ ବଢ଼ି ଚାଲିଲା । ରାଣୀହାଟରେ ଆଉ ଏକ ଦୁଇ ମହଲା କୋଠାରେ ମାସିକ ଟ ୨୫୦/- ଭଡ଼ାରେ ସ୍ଥାନାନ୍ତରିତ ହୋଇ କଳା ବିକାଶ କେନ୍ଦ୍ର ଶିକ୍ଷାଦାନ କାର୍ଯ୍ୟକ୍ରମ ଚାଲିଲା । କିନ୍ତୁ ଗୁଜରାଟୀ ଯୁବକଙ୍କ ମନରେ ଅନେକ ଆଶା ଅନେକ ସ୍ୱପ୍ନ । କେନ୍ଦ୍ରର ଗୋଟିଏ ନିଜସ୍ୱ ଘର ତୋଳିବା ପାଇଁ ଚିନ୍ତା କଟିଗଲା । ୧୯୫୭ ମସିହାରେ ମିଶନ ରୋଡ଼ର ଇଉନିୟନ କ୍ଲବ ପାଖରେ ଖାଲଡିପ ଜଙ୍ଗଲ ପୂର୍ଣ୍ଣ ୧୪ ଗୁଣ୍ଠ ଜାଗା ମାତ୍ର ୪୦୦ ଟଙ୍କା ସଲାମି ଦେଇ ହସ୍ତଗତ ହେଲା । ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଓ କଟକର ଜିଲ୍ଲାପାଳ ସର୍ଦ୍ଦାର ଅମର ସିଂହ ସାହାଯ୍ୟରେ ଏଇ ସ୍ଥାନଟି ଲିଜ୍ ମିଳିଥିଲା ।

୧୯୫୮ ଅଗଷ୍ଟ ୧୫ ତାରିଖରେ ଡକ୍ଟର ମହତାବ ଲୋକାଲ ଡେଭଲପମେଣ୍ଟ ଫଣ୍ଡରୁ ୧୦ହଜାର ଟଙ୍କା ସାହାଯ୍ୟ ଦେଇ କଳା ବିକାଶ କେନ୍ଦ୍ର ଗୃହ ନିର୍ମାଣର ଶିଳାନ୍ୟାସ

କଲେ । ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଜରିଆରେ ଓଡ଼ିଶା ସରକାର ପଚାଶ ହଜାର ଟଙ୍କାର ଇଟା ଯୋଗାଇ ଦେଇଥିଲେ । ସେଇ ଗୁଜରାଟୀ ଯୁବକ ବାବୁଲାଲ ଦୋଶୀଙ୍କ ମନ ଆନନ୍ଦରେ ପୂରି ଉଠିଲା । କିନ୍ତୁ ପୂନଶ୍ଚ ଚିନ୍ତା ଏଇ ଘର କରିବା ପାଇଁ ତିନି ଲକ୍ଷଟଙ୍କା ଆବଶ୍ୟକ ।

୧୯୫୭ ମସିହା ମାର୍ଚ୍ଚ ୯ ତାରିଖ ଦିନ କେନ୍ଦ୍ରର ବିଶେଷ ଉତ୍ସବରେ ବନ୍ଧୁ ଶ୍ରୀ ବୈକୁଣ୍ଠନାଥ ମହାନ୍ତିଙ୍କ ଓ ଅନ୍ୟାନ୍ୟ ସଦସ୍ୟମାନଙ୍କ ସମ୍ମୁଖରେ ସେ ଶପଥ ଗ୍ରହଣ କଲେ ଯେ ପର୍ଯ୍ୟନ୍ତ କେନ୍ଦ୍ରର ଗୃହନିର୍ମାଣ ନ ହୋଇଛି ସେ ପର୍ଯ୍ୟନ୍ତ ସେ ଜୋତା ମାଡ଼ିବେ ନାହିଁ, ସନ୍ଧ୍ୟା ୬ ଟାରୁ ସକାଳ ୬ଟା ପର୍ଯ୍ୟନ୍ତ, ଅନ୍ନଜଳ ଗ୍ରହଣ କରିବେ ନାହିଁ, ଗଦିରେ ଶୋଇବେ ନାହିଁ । ପ୍ରତିଦିନ ଅନ୍ୟୂନ ଟ୧୦୦/- କେନ୍ଦ୍ର ପାଇଁ ସଂଗ୍ରହ କରିବେ । ସେ ଶପଥ ସେ ପୂରଣ କଲେ ଏବଂ ଓଡ଼ିଶା ଓ ଓଡ଼ିଶା ବାହାରେ ବୁଲି ବୁଲି ବନ୍ଧୁ ମାନଙ୍କ ସାହାଯ୍ୟରେ ସେ ଲକ୍ଷ୍ୟ ପୂରଣ ହେବା ପର୍ଯ୍ୟନ୍ତ ଅର୍ଥସଂଗ୍ରହ କରିଥିଲେ । ପରୀକ୍ଷିତ ହେଲା ଆନ୍ତରିକ ନିଷ୍ଠା ଓ ସାଧନା ଥିଲେ ସଫଳତା ଅବଶ୍ୟମ୍ଭାବୀ ।

କଳାବିକାଶ କେନ୍ଦ୍ରର ପ୍ରଥମ ସଭାପତି ଥିଲେ ଡଃ ପ୍ରାଣକୃଷ୍ଣ ପରିଜା ଓ ପ୍ରଥମ ସଂପାଦକ ଥିଲେ ବିଶ୍ୱନାଥ ଗର୍ଗ ଏବଂ ପ୍ରଥମ ଟ୍ରଷ୍ଟୀ ଥିଲେ ଯଶୋଧାରା ଗାନ୍ଧୀ । ବର୍ତ୍ତମାନର ପ୍ରଖ୍ୟାତ ନୃତ୍ୟଗୁରୁ ଶ୍ରୀ ମାୟାଧର ରାଉତ ମାତ୍ର ଟ୧୫/- ମାସିକ ଦରମାରେ କେନ୍ଦ୍ରରେ ନୃତ୍ୟ ଶିକ୍ଷା ଦେଉଥିଲେ । ଭାରତର ପ୍ରଖ୍ୟାତ ନୃତ୍ୟଗୁରୁ ପଦ୍ମଭୂଷଣ ଶ୍ରୀ କେଳୁଚରଣ ମହାପାତ୍ର ୨୦ଟଙ୍କା ମାସିକ ଦରମାରେ କେନ୍ଦ୍ରରେ ଯୋଗ ଦେଇଥିଲେ । ଶ୍ରୀ ରାଖାଲ ଚନ୍ଦ୍ର ମହାନ୍ତି କେନ୍ଦ୍ରରେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଆଂଶିକ ଭାବରେ ଶିକ୍ଷକ ହିସାବରେ କାର୍ଯ୍ୟ କରୁଥିଲେ । ସଙ୍ଗୀତ ନିର୍ଦ୍ଦେଶକ ଶ୍ରୀ ବାଳକୃଷ୍ଣ ଦାସ ମଧ୍ୟ କେନ୍ଦ୍ରରେ ଶିକ୍ଷକ ଭାବେ କାର୍ଯ୍ୟ କରୁଥିଲେ ।

କଳା ବିକାଶ କେନ୍ଦ୍ର ଓଡ଼ିଶାର ଏକମାତ୍ର ଅନୁଷ୍ଠାନ ପ୍ରଥମ କରି ଓଡ଼ିଶୀନୃତ୍ୟ ଓ ଗୀତର ବିଧିବଦ୍ଧ ୪ ବର୍ଷିଆ ପାଠ୍ୟକ୍ରମ ପ୍ରସ୍ତୁତ କରିଥିଲା । ୧୯୫୩-୫୪ ଶିକ୍ଷାବର୍ଷରେ ବିଧିବଦ୍ଧ ଭାବରେ କବିଚନ୍ଦ୍ର ଡଃ କାଳୀଚରଣ ପଟ୍ଟନାୟକ, ଦୟାନିଧି ଦାସ, ନୀଳମାଧବ ବୋଷ ଓ ଶିକ୍ଷାଗୁରୁଙ୍କ ତତ୍ତ୍ୱାବଧାନରେ ଓଡ଼ିଶୀ ନୃତ୍ୟ ଓ ଗୀତର ୪ ବର୍ଷିଆ ପାଠ୍ୟକ୍ରମର ପ୍ରବର୍ତ୍ତନ କରାଯାଇଥିଲା । ଏହି ଓଡ଼ିଶୀ ନୃତ୍ୟକୁ ସରକାରୀ ସ୍ୱୀକୃତି କରାଇବା ଦିଗରେ ୧୯୫୭ ରୁ ୧୯୬୮ ପର୍ଯ୍ୟନ୍ତ କେନ୍ଦ୍ର ଆପ୍ରାଣ ଉଦ୍ୟମ କରିଥିଲା ।

ଓଡ଼ିଶୀ ସଙ୍ଗୀତର ପ୍ରଥମ ପାଠ୍ୟକ୍ରମର ଛାତ୍ରଥିଲେ ଆଜିର ନାମକରା କଳାକାର ସର୍ବଶ୍ରୀ ରାଖାଲ ଚନ୍ଦ୍ର ମହାନ୍ତି, ଭିକାରି ଚରଣ ବଳ, ଅର୍ଜୁନ ଚରଣ ସାମଲ, ରଘୁନାଥ ନନ୍ଦ, ଅକ୍ଷୟ କୁମାର ମହାନ୍ତି, ଡଃ ମନୋରଞ୍ଜନ ପ୍ରଷ୍ଟି, ନବୀନ ଚନ୍ଦ୍ର ପଟ୍ଟନାୟକ, ଇନ୍ଦିରା ରାୟ ପ୍ରମୁଖ । କେନ୍ଦ୍ର ପ୍ରଚେଷ୍ଟାରେ ଶ୍ରୀ ମାୟାଧର ରାଉତଙ୍କୁ ଓ ଶ୍ରୀ ନବଘନ ମିଶ୍ରଙ୍କୁ ମାନ୍ଦ୍ରାଜର କଳାକେନ୍ଦ୍ର ଓ ଲକ୍ଷ୍ନୌର ମରିସ କଲେଜକୁ ନୃତ୍ୟ ଓ ବେହେଲାରେ

ଉଚ୍ଚଶିକ୍ଷା ପାଇଁ ପଠାଟଲେ । ଓଡ଼ିଶୀ ଷ୍ଟେଟ୍‌ ବୋର୍ଡ଼ର ଅଧ୍ୟକ୍ଷ ଶ୍ରୀମତୀ କୁମ୍‌କୁମ୍‌ ମହାନ୍ତି କଳାବିକାଶ କେନ୍ଦ୍ରର ଟ୍ରଷ୍ଟୀ ।

ଏହି ଅନୁଷ୍ଠାନରେ ଓଡ଼ିଶୀ ନୃତ୍ୟ, ଓଡ଼ିଶୀ କଣ୍ଠ ସଙ୍ଗୀତ, ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ କଣ୍ଠ ସଙ୍ଗୀତ, ଭାଓଲିନ୍‌, ଗିଟାର, ତବଲା, ସୁଗମ ସଙ୍ଗୀତ ୭ଟି ବିଭାଗ ରହିଛି । ୧୯୮୪ ଠାରୁ ଗୁରୁକଳା ଶିକ୍ଷା ପାଇଁ ଚମ୍ପକଲାଲ ମେହେତା ଗୁରୁକଳା କେନ୍ଦ୍ର ସ୍ଥାପିତ ହୋଇଛି । ମୋଟ ପାଠ୍ୟକ୍ରମର ସମୟ ସୀମା ୭ ବର୍ଷ । ୭ ବର୍ଷ ବା ତଦୁର୍ଦ୍ଧ୍ୱ ଛାତ୍ର ଛାତ୍ରୀ ଏଥିରେ ନାମ ଲେଖାଇ ପାରିବେ । ବର୍ତ୍ତମାନ ଛାତ୍ରଛାତ୍ରୀଙ୍କ ସଂଖ୍ୟା ୫୨୦ । ଶିକ୍ଷକଙ୍କ ସଂଖ୍ୟା ପନ୍ଦର ଏବଂ ସହଯୋଗୀଙ୍କ ସଂଖ୍ୟା ପାଞ୍ଚ । ପ୍ରଶାସନ କାର୍ଯ୍ୟର ସହଯୋଗ କରିବା ପାଇଁ ୧୫ ଜଣ କର୍ମଚାରୀ ଅଛନ୍ତି । ୧୯୯୧ ଶିକ୍ଷା ବର୍ଷରୁ କଳା ବିକାଶ କେନ୍ଦ୍ର ମଧ୍ୟପ୍ରଦେଶର ଖଇରାଗଡ଼ ଇନ୍ଦିରା କଳା ସଙ୍ଗୀତ ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା କରାଯାଉଛି । ଏହି ବିଶ୍ୱବିଦ୍ୟାଳୟର ଡ଼ିଗ୍ରୀ ପାଠ୍ୟକ୍ରମ ଭାରତର ସମସ୍ତ ରାଜ୍ୟରେ ସ୍ୱୀକୃତ ।

ସ୍ୱାଧୀନତା ପ୍ରାପ୍ତି ପରେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ଲୁପ୍ତ ଗୌରବର ପୁନଃ ପ୍ରତିଷ୍ଠା ଓଡ଼ିଶାର ସାଂସ୍କୃତିକ ପୁନର୍ଜାଗରଣରେ ଏକ ଉଲ୍ଲେଖନୀୟ ଘଟଣା । କଳାବିକାଶ କେନ୍ଦ୍ରର ଗବେଷଣା ବିଭାଗ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଙ୍ଗୀତ ଶିକ୍ଷାଦାନ ନିମନ୍ତେ ଏକ ବିଧିସମ୍ମତ ପାଠ୍ୟକ୍ରମ ପ୍ରଣୟନ କରିଥିଲା । ବୋଧହୁଏ ଏ ଦିଗରେ ଓଡ଼ିଶାରେ ଏହା ଥିଲା ସର୍ବପ୍ରଥମ ଉଦ୍ୟମ । ସେହିପରି ସହରୀ ସଂସ୍କୃତିର ପ୍ରଭାବରୁ ଅଦ୍ୟାବଧି ମୁକ୍ତ ରହିଥିବା ଓଡ଼ିଶାର ପଲ୍ଲୀନୃତ୍ୟ ଓ ଆଦିବାସୀ ନୃତ୍ୟର ନିଜସ୍ୱ ସୌନ୍ଦର୍ଯ୍ୟକୁ ଅକ୍ଷୁର୍ଣ୍ଣ ରଖି ତାହାର ଲୋକପ୍ରିୟତା ବୃଦ୍ଧି ନିମନ୍ତେ କେନ୍ଦ୍ରର ଗବେଷଣା ବିଭାଗ ନିଜ ସୀମିତ ସମ୍ବଳକୁ ଭିତ୍ତିକରି ଓଡ଼ିଶାର ସମସ୍ତ ଜିଲ୍ଲାର ପଲ୍ଲୀ ନୃତ୍ୟ ସର୍ଭେ କରିଛନ୍ତି ଏବଂ ପ୍ରତିଜିଲ୍ଲା ଲାଗି ଗୋଟିଏ ଗୋଟିଏ ସଚିତ୍ର ସର୍ଭେ ରିପୋର୍ଟ ପ୍ରକାଶ କରିଛନ୍ତି । ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଏହି ନୃତ୍ୟ ସଙ୍ଗୀତ ଶିକ୍ଷା ଦେଇ ପଲ୍ଲୀ ଓ ଆଦିବାସୀ ନୃତ୍ୟକଳାର ଲୋକପ୍ରିୟତା ବୃଦ୍ଧି ନିମନ୍ତେ କଳାବିକାଶ କେନ୍ଦ୍ରର ଉଦ୍ୟମ ପୂର୍ବଭଳି ଏବେ ମଧ୍ୟ ସକ୍ରିୟ ରହିଛି ।

ଦୂରଦୂରାନ୍ତରୁ ଆସୁଥିବା ଛାତ୍ରୀମାନଙ୍କର ରହିବା ସୁବିଧା ପାଇଁ ୭୦ ଜଣ ଛାତ୍ରୀ ରହିବା ପାଇଁ ଛାତ୍ରୀନିବାସ ରହିଛି । ୧୧୦ ଜଣ କର୍ମଜୀବୀ ମହିଳା ରହିବା ପାଇଁ 'ତୃପ୍ତି ଘୋଷ କର୍ମଜୀବୀ ମହିଳା ନିବାସ' କେନ୍ଦ୍ର ପରିସର ମଧ୍ୟରେ ରହିଛି ।

କେନ୍ଦ୍ର ନୃତ୍ୟରେ ବିଶେଷ ପାରଦର୍ଶିତା ଥିବା ଛାତ୍ରଛାତ୍ରୀଙ୍କ ପାଇଁ ଏକ ଉଚ୍ଚତର ତାଲିମ କାର୍ଯ୍ୟକ୍ରମ ଗ୍ରହଣ କରିଛି । କେନ୍ଦ୍ର ତରଫରୁ ଏକ ମାସିକ ଗ୍ରୀଷ୍ମ ଶିକ୍ଷା ଶିବିରରେ ଜାପାନ, ଆମେରିକା, ଆର୍ଜେଣ୍ଟିନା, ସିଙ୍ଗାପୁର, ଓ ଶ୍ରୀଲଙ୍କାରୁ ଅନେକ ନୃତ୍ୟ ଶିଳ୍ପୀ ଯୋଗଦେଇ ଓଡ଼ିଶୀ ନୃତ୍ୟ ଶିକ୍ଷାଲାଭ କରିଛନ୍ତି । ଫଳରେ ଭାରତ ବାହାରେ ସେମାନେ ଓଡ଼ିଶୀ ନୃତ୍ୟ ପ୍ରଚାର ଲାଭରେ ସହଯୋଗ କରୁଛନ୍ତି ।

ନାଟ୍ୟାଭିନୟକୁ ପ୍ରୋତ୍ସାହନ ଦେବା ନିମନ୍ତେ କେନ୍ଦ୍ରର 'ଅଭିନୟ ବିଭାଗ' ଆଗ୍ରହୀ ନାଟ୍ୟାନୁଷ୍ଠାନଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥାନ୍ତି । ବର୍ଷକୁ କେନ୍ଦ୍ର ଯୋଜନାରୁ ୫-୬ଟି ନାଟକ ପରିବେଷଣ କରାଯାଇଥାଏ ।

ଶିଶୁ ଓ କିଶୋର କିଶୋରୀଙ୍କ ଠାରେ ଲୁଚି ରହିଥିବା କଳାପ୍ରତିଭା ଉପଯୁକ୍ତ ବିକାଶ ନିମନ୍ତେ କେନ୍ଦ୍ର ପରିଚାଳିତ । ଶିଶୁମଞ୍ଜରୀ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରିଥାଏ । ଅନନ୍ତରୟ ଶିଶୁ ଗ୍ରନ୍ଥାଗାରରେ କିଶୋର ଶିଶୁମାନଙ୍କ ପାଇଁ ଉପଯୋଗୀ ୯୯୩୯ଟି ପୁସ୍ତକ ରହିଛି । ପୁସ୍ତକ କ୍ରୟ ନିମନ୍ତେ ଏହି ଗ୍ରନ୍ଥାଗାର ଓଡ଼ିଶା ସରକାରଙ୍କ ଠାରୁ ସାମୟିକ ଅନୁଦାନ ଲାଭ କରିଥାଏ । ଗବେଷଣାର ସୁବିଧା ପାଇଁ ଏକ ଲାଇବ୍ରେରୀରେ ବିଭିନ୍ନ ଭାଷାର ୯୮୮ଟି ଗବେଷଣାମୂଳକ ଉପାଦେୟ ପୁସ୍ତକ ରହିଛି ।

କଳାବିକାଶ କେନ୍ଦ୍ରରେ ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ବ୍ୟବହୃତ ଓ ବିଶେଷ ପ୍ରକାରର ବାଦ୍ୟଯନ୍ତ୍ର, ବେଶ ପୋଷାକ ଅଳଙ୍କାର ଏବଂ ଅନ୍ୟାନ୍ୟ ବୈଶିଷ୍ଟ୍ୟ ପୂର୍ଣ୍ଣ କଳା ସାମଗ୍ରୀର ଏକ ଶ୍ରେଷ୍ଠ ସଂଗ୍ରହାଳୟ ରହିଛି । ଏହି ସଂଗ୍ରହାଳୟରେ ଆଗ୍ରହୀ ଦର୍ଶକଙ୍କ ପରିଦର୍ଶନ ନିମନ୍ତେ ସଂଗୃହୀତ ସାମଗ୍ରୀଗୁଡ଼ିକୁ ଭଲ ଭାବରେ ସଜାଇ ରଖାଯାଇଛି ।

କଳାବିକାଶ କେନ୍ଦ୍ର ଟ୍ରଷ୍ଟ ଅଧୀନରେ ଏକ ପରାମର୍ଶଦାତା କମିଟି ଦୈନନ୍ଦିନ ସମସ୍ତ କାର୍ଯ୍ୟ ପରିଚାଳନା କରିଥାଏ । ସାଧାରଣ ସମ୍ପାଦକହିଁ କେନ୍ଦ୍ର ପ୍ରଶାସନର ମୁଖ୍ୟ । ସମ୍ପ୍ରତି ଜଷ୍ଟିସ ହରିହର ମହାପାତ୍ର ଟ୍ରଷ୍ଟ ଓ ପରାମର୍ଶଦାତା କମିଟିର ସଭାପତି ଅଛନ୍ତି ।

କଳାବିକାଶ କେନ୍ଦ୍ରର ପ୍ରାଣପ୍ରତିଷ୍ଠାତା ବାବୁଲାଲ ଦୋଶୀ ସେପ୍ଟେମ୍ବର ୨୫ ତାରିଖ ୧୯୮୩ରେ ତାଙ୍କ ପ୍ରିୟ କଳାବିକାଶ କେନ୍ଦ୍ର ଛାଡ଼ି ଚାଲିଗଲେ । ସ୍ୱର୍ଗତ ବାବୁଲାଲ ଦୋଶୀଙ୍କର ଅତୁଳନୀୟ ତ୍ୟାଗ ଓ ନିଷ୍ଠା ଭୁଲିବାର ନୁହେଁ ।

କଟକ ସହରର କଳା ସଂସ୍କୃତି କହିଲେ କଳାବିକାଶ କେନ୍ଦ୍ରକୁ ବୁଝାଏ । ଓଡ଼ିଶାର କଳାଜଗତକୁ କଳାବିକାଶ କେନ୍ଦ୍ରର ଉଲ୍ଲେଖନୀୟ ଅବଦାନ ରହିଛି ।



# ଶୈଳବାଳା ମହିଳା ମହାବିଦ୍ୟାଳୟ

**ଡଃ ଅର୍ଚ୍ଚନା ନାୟକ**

ମଧୁସ୍ମୃତିର ଗୌରବଧନ୍ୟ ଶୈଳବାଳା ମହିଳା ମହାବିଦ୍ୟାଳୟର ଇତିହାସ ଲେଖିବା ପୂର୍ବରୁ ଏହି ମହାବିଦ୍ୟାଳୟର ପରିସର ମଧ୍ୟରେ ମଧୁବାବୁଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ କରି ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଜବାହାର ଲାଲ ନେହେରୁଙ୍କର ପ୍ରଦତ୍ତ ଭାଷଣର କିୟଦଂଶ ଉଦ୍ଧାର କରି ସେହି ଯୁଗପୁରୁଷଙ୍କର ଓଡ଼ିଶାର ଏହି ପ୍ରଥମ ମହିଳା ଶିକ୍ଷାନୁଷ୍ଠାନ ପ୍ରତି ଅବଦାନର କଥା ସ୍ମରଣ କରାଇ ଦେଉଛି ।

ଜବାହରଲାଲ କହିଥିଲେ—"Madhusudan Das was a great man not only of Orissa, but of the whole India. This College is the proof of his foresight and vision. if he had not moved for the progress of female education this institution could not have raised its head."

ଏହି ମହାବିଦ୍ୟାଳୟର ଇତିହାସ ରେଭେନ୍ସା ଗାର୍ଲସ୍ ସ୍କୁଲର ଇତିହାସ ସହିତ ଏକ ସମୟରେ ଜଡ଼ିତ ହୋଇଥିଲା । ୧୮୬୬ ମସିହାରେ ଓଡ଼ିଶାରେ ପଡ଼ିଥିବା ଭୟଙ୍କର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ସାମାଜିକ, ଅର୍ଥନୀତିକ ଓ ସାଂସ୍କୃତିକ ଜୀବନଧାରାକୁ ଦୀର୍ଘକାଳ ଧରି ଦୁଃଖଦ ଓ ତିକ୍ତ ସ୍ମୃତିରେ ଆଚ୍ଛନ୍ନ କରିଥିଲେ ମଧ୍ୟ ଏହାର ମାତ୍ର ତିନିବର୍ଷ ପରେ ଝିଅମାନଙ୍କର ପାଠପଢ଼ିବା ପାଇଁ ଗୋଟିଏ ଛୋଟିଆ ସ୍କୁଲ ଜଣେ ବଙ୍ଗାଳୀ ଭଦ୍ରଲୋକ ଅବିନାଶଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର କଟକ ସହରର ବାଲୁବଜାରସ୍ଥିତ ଗୃହରେ ଆରମ୍ଭ ହୋଇଥିଲା । ସେ ସ୍କୁଲର ନାମ ଥିଲା କଟକ ହିନ୍ଦୁ ଗାର୍ଲସ ସ୍କୁଲ । ସେହି ସ୍କୁଲଟିର ପରିବର୍ଦ୍ଧିତ ରୂପ ହେଲା ରେଭେନ୍ସା ଗାର୍ଲସ ସ୍କୁଲ ।

୧୯୦୩ ବେଳକୁ ଏହି ସ୍କୁଲରେ ପାଠ ପଢ଼ୁଥିଲେ ୪୫ ଜଣ ବଙ୍ଗାଳୀ ଓ ୧୧ ଜଣ ଓଡ଼ିଆ ଝିଅ । ଏହି ଉପସ୍ଥାନର ବିଶେଷ କିଛି ଅଗ୍ରଗତି ବେଶ୍ କିଛିବର୍ଷ ଧରି ଘଟିନଥିଲା । ଏହି ସମୟରେ ଆବିର୍ଭାବ ଘଟିଥିଲା ଓଡ଼ିଆ ଜାତିର ପ୍ରାଣପୁରୁଷ ମଧୁବାବୁଙ୍କର, ଯିଏ ବୁଝିଥିଲେ ନାରୀଶିକ୍ଷାର ପ୍ରସାର ବିନା ଜାତୀୟ ଜାଗରଣ ଅସମ୍ଭବ ।

ତେଣୁ ଓଡ଼ିଶାରେ ନାରୀଶିକ୍ଷାର ପ୍ରସାର ପାଇଁ ପ୍ରତିଷ୍ଠିତ ଏହି ଏକମାତ୍ର ଦୁର୍ବଳ ଅନୁଷ୍ଠାନଟିକୁ ସେ ସବୁପ୍ରକାର ସାହାଯ୍ୟ ଦେଇ ଉଠାଇବାର ପ୍ରଚେଷ୍ଟା କରିଥିଲେ । ଯାହା ଫଳରେ ୧୯୦୮ ବେଳକୁ ଏହି ସ୍କୁଲର ଛାତ୍ରୀମାନେ ମାଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ପାଠପଢ଼ିବାର ସୁଯୋଗ ପାଇଲେ ।

ମଧୁବାବୁ ନିଜର ପାଳିତା କନ୍ୟା ଶୈଳବାଳା ଦାସଙ୍କୁ ଉଚ୍ଚତର ଶିକ୍ଷାଲାଭ ପାଇଁ ଇଂଲଣ୍ଡ ପଠାଇଥିଲେ । ଇଂଲଣ୍ଡରୁ ଫେରି ମିସ୍ ଶୈଳବାଳା ଦାସ ରେଭେନ୍‌ସା ଗାର୍ଲସ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଭାବରେ ଯୋଗଦେଇ ଅନୁଷ୍ଠାନଟିର ସାମଗ୍ରିକ ବିକାଶ ସାଧନରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ।

୧୯୧୨ ମସିହାରେ ବଙ୍ଗଳାରୁ ବିହାର ଓ ଓଡ଼ିଶା ଅଲଗା ହୋଇଗଲା । ତେଣୁ ଏହି ନୂତନ ପ୍ରଦେଶର ଶିକ୍ଷାସମସ୍ୟା ସମ୍ପର୍କରେ ସରକାରୀ ସ୍ତରରେ ବିଚାର କରାଗଲା । ଏହି ଉଦ୍ଦେଶ୍ୟରେ ଗଠିତ ହୋଇଥିବା ଏକ ଶିକ୍ଷାବୋର୍ଡ ରାଞ୍ଚିରେ ବସିଥିଲା । ଏହି ବୋର୍ଡରେ ଶ୍ରୀମତୀ ବ୍ୟାଙ୍କସ୍ ଏବଂ ମିସ୍ ଶୈଳବାଳା ଦାସ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । ତେଣୁ ଏହି ବୋର୍ଡର ସୁପାରିଶରେ ୧୯୧୫ରେ ରେଭେନ୍‌ସା ଗାର୍ଲସ ସ୍କୁଲରେ ଇଣ୍ଟର ମିଡ଼ିଏଟ୍ କ୍ଲାସ ଖୋଲିଲା ଏବଂ ପ୍ରଥମ ସୂତ୍ରପାତ ଘଟିଲା ଏକ ମହିଳା ମହାବିଦ୍ୟାଳୟର ।

୧୯୧୭ରେ ଚୌଧୁରୀ ବଜାରର ଏକ ନୂତନ କୋଠାକୁ ସ୍କୁଲ ସହିତ କଲେଜଟି ମଧ୍ୟ ଉଠିଆସିଲା । ଇଣ୍ଟରମିଡ଼ିଏଟ କଲେଜ ଭାବରେ ରହିଥିବା ଏହି ଶିକ୍ଷାନୁଷ୍ଠାନଟି ୧୯୪୭ ମସିହାରେ ସ୍ନାତକ ଶ୍ରେଣୀବିଶିଷ୍ଟ ଏକ ପ୍ରଥମ ଶ୍ରେଣୀୟ ମହାବିଦ୍ୟାଳୟ ଭାବରେ ସ୍ୱୀକୃତି ପାଇଲା । କିନ୍ତୁ ଏହାର ସ୍ୱତନ୍ତ୍ର ଗୃହ ନଥିବାରୁ ସ୍କୁଲରେ ସକାଳବେଳା କ୍ଲାସ ହେଉଥିଲା । ଏହି ସ୍କୁଲର ପରିସର ମଧ୍ୟରେ ଏକ ଛାତ୍ରୀନିବାସ ନିର୍ମାଣ କରାଗଲା ଯେଉଁଥିରେ ସ୍କୁଲ ଓ କଲେଜ ଉଭୟର ଛାତ୍ରୀମାନେ ରହିବାର ସୁଯୋଗ ପାଇଲେ । ୧୯୧୭ ମସିହାରୁ ୧୯୫୨ ମସିହା ପର୍ଯ୍ୟନ୍ତ ଏହି ଦୁଇଟି ଅନୁଷ୍ଠାନ ଗୋଟିଏ ଛାତତଳେ କାର୍ଯ୍ୟ କରୁଥିଲେ ।

ମଧୁବାବୁଙ୍କର ପାଳିତା କନ୍ୟା ଶୈଳବାଳା ୧୯୫୨ରେ ମଧୁବାବୁଙ୍କର ଗୃହର ଏକ ଅଂଶ "ମଧୁସ୍ମୃତି"କୁ ମହିଳା କଲେଜ କରିବାପାଇଁ ସରକାରଙ୍କୁ ଦାନ କରିଥିଲେ ଓ ପରେ ଅନ୍ୟଅଂଶ "ମଧୁମନ୍ଦିର"କୁ ସରକାରଙ୍କୁ ଷାଠିଏ ହଜାର ଟଙ୍କାରେ ବିକ୍ରୀ କରିଦେଇଥିଲେ । ଉକ୍ତ ମସିହାରେ ଏହି ଅନୁଷ୍ଠାନଟି ଶୈଳବାଳାଙ୍କ ନାମରେ ନାମିତ ହୋଇଥିଲା ।

ଓଡ଼ିଶାର ଏହି ପ୍ରଥମ ମହିଳା ଶିକ୍ଷାନୁଷ୍ଠାନଟି ନିଜର ଏକ ସ୍ୱତନ୍ତ୍ର ଗୃହ ଲାଭ କରିପାରିଲା ସତ କିନ୍ତୁ ଏହା ଏକ ବାସଗୃହ ହୋଇଥିବାରୁ ଏଥିରେ ଗୋଟିଏ କଲେଜ ପରିଚାଳନା କରିବା ସୁବିଧାଜନକ ହେଲାନାହିଁ । ତେଣୁ ସରକାର କେତେକ ନୂତନ

ଶ୍ରେଣୀଗୃହ ନିର୍ମାଣ କରିବା ସଙ୍ଗେ ଶହେଜଣ ଛାତ୍ରୀ ରହିପାରିବା ପରି ଗୋଟିଏ ଛାତ୍ରୀ-ନିବାସ ମଧ୍ୟ ନିର୍ମାଣ କଲେ । ୧୯୬୨ ମସିହାରେ ଏହି କଲେଜର ଠିକ୍ ବିପରୀତ ଭାଗରେ ଅନ୍ୟ ଏକ ନୂତନ ଗୃହ ନିର୍ମାଣ କରାଗଲା, ଯେଉଁଥିରେ କି ପ୍ରଥମବର୍ଷ ବିଜ୍ଞାନ-ଶ୍ରେଣୀ ଆରମ୍ଭ ହୋଇଥିଲା । ୧୯୬୨ ମସିହାରେ ବିଜ୍ଞାନରେ ସ୍ନାତକ ଶ୍ରେଣୀରେ ପଢ଼ିବାର ସୁଯୋଗ ଛାତ୍ରୀମାନେ ପାଇଥିଲେ ଏବଂ ୧୯୭୩-୭୪ ବେଳକୁ ବିଜ୍ଞାନରେ ସମ୍ମାନଶ୍ରେଣୀ ଖୋଲିଥିଲା ।

ଏହି ମହାବିଦ୍ୟାଳୟରେ ୧୯୮୨-୮୩ରେ କେବଳ ଗୃହବିଜ୍ଞାନ ବିଷୟରେ ସ୍ନାତକୋତ୍ତର ଶିକ୍ଷାଦାନର ବ୍ୟବସ୍ଥା ହୋଇଯାଇଛି ଏବଂ ୟୁନିଭରସିଟି ଗ୍ରାଣ୍ଟସ୍ କମିଶନଙ୍କ ଆନୁକୂଲ୍ୟରେ ଏକ ଉନ୍ନତ ମାନର ପାଠାଗାରଟିଏ ନିର୍ମିତ ହୋଇଥିବାରୁ ଅଧ୍ୟୟନ ଓ ଅଧ୍ୟାପନାରେ ବିଶେଷ ସହାୟତା ମିଳିପାରୁଛି ।

ଏକଦା ବିହାର-ଓଡ଼ିଶାର ଏକମାତ୍ର ମହିଳା ଶିକ୍ଷାନୁଷ୍ଠାନ ଭାବରେ ଆରମ୍ଭ ହୋଇଥିବା ଏହି ମହାବିଦ୍ୟାଳୟ ଓଡ଼ିଶାର ସର୍ବଶ୍ରେଷ୍ଠ ମହିଳା ଶିକ୍ଷାଳୟରେ ବିକଶିତ ହୋଇ ପାରିଛି । ବର୍ତ୍ତମାନ ଏହି ଅନୁଷ୍ଠାନର ଛାତ୍ରୀସଂଖ୍ୟା ଆଠଶହରୁ ଊର୍ଦ୍ଧ୍ୱ ହେବ । ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱୀକୃତିପ୍ରାପ୍ତ ସମସ୍ତ ବିଷୟ ସମ୍ମାନ (ଅନର୍ସ) ସହିତ ପଢ଼ିବାର ସୁଯୋଗ ଛାତ୍ରୀମାନେ ପାଉଛନ୍ତି । କଲେଜ ପରିସରରେ ଥିବା ତିନୋଟି ଛାତ୍ରୀ-ନିବାସରେ ପ୍ରାୟ ଛ' ଶହ ପର୍ଯ୍ୟନ୍ତ ଛାତ୍ରୀ ରହିପାରିବାର ବ୍ୟବସ୍ଥାଥିବାରୁ ଓଡ଼ିଶାର ଦୂରଦୂରାନ୍ତରୁ ମେଧାବୀ ଛାତ୍ରୀମାନେ ଏଠାରେ ଅଧ୍ୟୟନ କରିବାପାଇଁ ଆଗ୍ରହ ପ୍ରକାଶ କରନ୍ତି । ଏହି ଅନୁଷ୍ଠାନରେ ଅଧ୍ୟାପନା କରୁଥିବା ଅଧ୍ୟାପିକା ଓ ଅଧ୍ୟାପକଙ୍କ ସଂଖ୍ୟା ଶହେରୁ ଅଧିକ । ଏମାନଙ୍କ ମଧ୍ୟରେ ଉଚ୍ଚତର ଗବେଷଣା କରିଥିବା ଅଧ୍ୟାପିକା ଓ ଅଧ୍ୟାପକ ପ୍ରାୟ ପଚିଶ ଜଣ ଅଛନ୍ତି ।

ଏହି ଅନୁଷ୍ଠାନର ପରମ୍ପରାକୁ ସୁଦୃଢ଼ କରି ଏହାର ସର୍ବପ୍ରକାର ବିକାଶ ସାଧନ କରିଥିବା ବିଶିଷ୍ଟ ଅଧ୍ୟକ୍ଷା ଶ୍ରୀମତୀ ବ୍ୟାକ୍‌ସ, ଶ୍ରୀମତୀ ନିର୍ମଳା ନାୟକ, ସୁଧାଂଶୁବାଳା ହାଜରା, ଶ୍ରୀମତୀ ଆଇ. ଏଲ୍. ସିହ୍ନା ଓ ମିସ୍ ରମାଦେବୀ ପ୍ରଭୃତିଙ୍କର ଅବଦାନ ଚିରସ୍ମରଣୀୟ ।

ଓଡ଼ିଶା ଓ ଓଡ଼ିଶା ବାହାରେ ସର୍ବକ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ପ୍ରତିଷ୍ଠିତା ନାରୀମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଏହି ଅନୁଷ୍ଠାନର ଛାତ୍ରୀ ଏବଂ ଏବର ଛାତ୍ରୀମାନେ ମଧ୍ୟ ସମସ୍ତ ସମ୍ଭାବନାର ନିର୍ଭର ପ୍ରତିଶ୍ରୁତି ପରି ମନେହୁଅନ୍ତି ।

ବର୍ତ୍ତମାନର ପରିପ୍ରେକ୍ଷୀରେ ବିଚାର କଲେ କଲେଜରେ ସ୍ଥାନାଭାବ ଏକ ଉତ୍କଟ ସମସ୍ୟା ଭାବରେ ଦେଖା ଦେଇଛି । ଛାତ୍ରୀସଂଖ୍ୟା ବୃଦ୍ଧି ଓ ଶ୍ରେଣୀଗୃହର ଅଭାବ ଥିବାବେଳେ ବର୍ଷର ବିଭିନ୍ନ ସମୟରେ ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ପରୀକ୍ଷା ପରିଚାଳନା, ଓ ପରୀକ୍ଷାଖାତାର କେନ୍ଦ୍ରୀୟ ମୂଲ୍ୟାୟନ ପ୍ରଭୃତି କରାଯାଉଥିବାରୁ ଶିକ୍ଷାଦାନଜନିତ କେତେକ ନିଶ୍ଚିତ ଅସୁବିଧା ସୃଷ୍ଟି ହେଉଛି । ଛାତ୍ରୀମାନଙ୍କ ପାଇଁ ଖେଳପଡ଼ିଆ,

କମନ୍‌ରୁମ୍‌ ଓ ବର୍ଷସାରା ବିଭିନ୍ନ ସମୟରେ ଅନୁଷ୍ଠିତ ହେଉଥିବା ସଭାସମିତି ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଅଡ଼ିଟୋରିୟମଟିଏ ଏବଂ ପରୀକ୍ଷା ପରିଚାଳନା ପାଇଁ ସ୍ୱତନ୍ତ୍ର ବୃହତ୍‌ ପ୍ରକୋଷ୍ଠଟିରେ ଅଭାବ ଜନିତ ଅସୁବିଧା ଏହି ଅନୁଷ୍ଠାନ ସହିତ ସମ୍ପୃକ୍ତ ସମସ୍ତେ ଅଙ୍ଗେ ନିଭାଉଛନ୍ତି । ଅନୁଷ୍ଠାନରେ ଶତାଧିକ ଅଧ୍ୟାପିକା କାର୍ଯ୍ୟରତ ଥିଲେ ମଧ୍ୟ ମାତ୍ର ଦୁଇଟି ଷ୍ଟାଫ୍‌ କ୍ୱାର୍ଟର ରହିଛି । ଯଦିବା ଦୀର୍ଘକାଳ ଧରି ବିବାଦମାନ ରହିଥିବା ଜମି କଲେଜ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତରିତ କେତେବର୍ଷ ତଳୁ ହୋଇସାରିଛି ତଥାପି କୌଣସି ନିର୍ମାଣ ପ୍ରକଳ୍ପ ଏପର୍ଯ୍ୟନ୍ତ ଆରମ୍ଭ ହୋଇପାରିନାହିଁ ।

ତଥାପି ସମସ୍ତପ୍ରକାର ଅସୁବିଧା ସତ୍ତ୍ୱେ ଏ ଅନୁଷ୍ଠାନ ତା'ର ଗୌରବ ଅକ୍ଷୁଣ୍ଣ ରଖିପାରିଛି । ୧୯୧୫ ମସିହାରେ ସ୍ୱତନ୍ତ୍ର ଭାବରେ ପ୍ରତିଷ୍ଠିତ ଏହି ମହିଳା ମହାବିଦ୍ୟାଳୟ ୧୯୯୦ ମସିହାରେ ତା'ର ପ୍ଲାଟିନମ ଜୁବିଲି ମହାସମାରୋହରେ ପାଳନ କରିପାରିଛି ।

ଶୈଳବାଳା ମହିଳା ମହାବିଦ୍ୟାଳୟର ପରମ ଗୌରବର ପ୍ରଧାନ କାରଣ ହେଉଛି ମଧୁବାବୁଙ୍କର ସ୍ମୃତିରକ୍ଷା । ଏହାର ଦୁଇଟି ପ୍ରକୋଷ୍ଠରେ ମଧୁବାବୁଙ୍କର ବ୍ୟବହୃତ ସାଧାରଣ ଜିନିଷ ଓ ତାଙ୍କର ସଂଗୃହୀତ କେତେକ ବିରଳବସ୍ତୁ, ଦୁର୍ଲଭ କାଗଜ ଏବଂ ରେକର୍ଡ଼ ପତ୍ର ସଂରକ୍ଷିତ ହୋଇଛି ।

ଯେଉଁଠାରେ ମଧୁବାବୁ ଏକ ଆଧୁନିକ ଓ ପ୍ରଗତିଶୀଳ ଓଡ଼ିଶାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, ସର୍ବଭାରତୀୟ ସ୍ତରରେ କେବଳ ନୁହେଁ ଆନ୍ତର୍ଜାତିକ ସ୍ତରରେ ମଧ୍ୟ ଓଡ଼ିଶାକୁ ଏକ ମର୍ଯ୍ୟାଦାପୂର୍ଣ୍ଣ ବିଶିଷ୍ଟ ସ୍ଥାନରେ ଅଧିଷ୍ଠିତ କରିବାକୁ ଚାହିଁଥିଲେ, ନାରୀଶିକ୍ଷାର ପ୍ରସାର ଓ ବିକାଶ କରି ଜାତୀୟ ଜାଗରଣ ଓ ରାଜ୍ୟର ସାମଗ୍ରିକ ପ୍ରଗତିସାଧନର ସ୍ୱପ୍ନ ଦେଖିଥିଲେ···ସେହି ସମସ୍ତ ପୁଣ୍ୟସ୍ମୃତିକୁ ଧାରଣ କରିଥିବା ଓଡ଼ିଶାର ଗର୍ବ ଓ ଗୌରବର କାରଣ ଏହି ଅନୁଷ୍ଠାନର ସର୍ବବିଧ ଉନ୍ନତିସାଧନ, ଓଡ଼ିଶାର ପ୍ରତିଟି ସାଧାରଣ ମଣିଷର ପବିତ୍ର କର୍ତ୍ତବ୍ୟ ।



